# ଜଣେ ଶାସକର ସ୍ମୃତି

## ଜନ୍ ବୀମ୍ସ୍



ଅନୁବାଦ : ଡକ୍ଟର ଶ୍ୟାମସୁନ୍ଦର ମିଶ୍ର

# ଜଣେ ଶାସକର ସ୍ମୃତି

ଲେଖକ

**ଜନ୍ ବୀମ୍ସ**

ଅନୁବାଦ :

**ଡକ୍ଟର ଶ୍ୟାମସୁନ୍ଦର ମିଶ୍ର**

ଅବସରପ୍ରାପ୍ତ ପ୍ରାଧ୍ୟାପକ

ରେଭେନ୍ସା କଲେଜ,

କଟକ

ପ୍ରକାଶକ



କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର

# ଜଣେ ଶାସକର ସ୍ମୃତି

ପ୍ରକାଶକ:
ଶ୍ରୀ ନୃସିଂହପ୍ରସାଦ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୭୫୩୦୦୨

ତୃତୀୟ ସଂସ୍କରଣ : ବାହୁଡ଼ା ଦଶମୀ, ୨୦୧୫

ମୁଦ୍ରଣ : ମୀନାକ୍ଷୀ ଡି.ଟି.ପି. ଏବଂ ସଙ୍ଗୀତା ପ୍ରିଣ୍ଟର୍ସ, କଟକ

ମୂଲ୍ୟ : ଟ.୨୩୦-୦୦ ମାତ୍ର

# JANE SHASAKARA SMRUTI

by John Beams

Translated by :
Prof. Dr. Shyamsundar Mishra

Published by :
Sri N.P. Misra
Cuttack Students' Store
Balubazar, Cuttack - 753002

Third Edition : July, 2015

Printer :
Minakshi D.T.P. & Sangeeta Printers, Cuttack

Price : Rs. 230-00 only

# ଉତ୍ସର୍ଗ

ମୋର ଉତ୍‌ଥାନପତନମୟ ଶିକ୍ଷା ଓ କର୍ମଜୀବନ ମଧ୍ୟରେ ଯାହା ମୁଁ ହରେଇଛି, ତାହା ମୋର ଭୁଲ୍‌ଭ୍ରାନ୍ତି ପାଇଁ ଏବଂ ଯାହା ପାଇଛି ତାହା ମୋର ପରମ ବନ୍ଧୁ ଶିକ୍ଷକ ଓ ଦିଗ୍‌ଦର୍ଶକ ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶଙ୍କ ପାଇଁ । ଆଜି ମୋର କର୍ମଜୀବନର ଶେଷରେ ମୋ ପ୍ରତି ତାଙ୍କର ଅନାହୂତ ଓ ସ୍ୱତଃସ୍ଫୂର୍ତ୍ତ ସ୍ନେହ ଓ ସହାନୁଭୂତିକୁ ସ୍ମରଣ କରୁଚି ଏବଂ ତାଙ୍କର ଉଦାର କରକମଳରେ ଏ ପୁସ୍ତକଟିକୁ ଉତ୍ସର୍ଗ କରୁଛି ।

ଶ୍ୟାମସୁନ୍ଦର
୧୯୯୦

# ଯେଉଁମାନଙ୍କ ପ୍ରତି ମୁଁ କୃତଜ୍ଞ

ଶ୍ରୀ ରାଧାଗୋବିନ୍ଦ ନାୟକ— ୧୯୭୫ ମାର୍ଚ୍ଚ ମାସରେ ଜଣେ ଅଧ୍ୟାପକ ବନ୍ଧୁଙ୍କଠାରୁ Memoirs of a Bengal Civilian ବହିଟି ଆଣି ପଢ଼ିଲା ପରେ ଏହାକୁ ଅନୁବାଦ କରିବାପାଇଁ ପ୍ରବଳ ଆଗ୍ରହ ସୃଷ୍ଟି ହେଲା ଏବଂ ସାଙ୍ଗେ ସାଙ୍ଗେ କାମ ଆରମ୍ଭ କରିଦେଲି । ଅଳ୍ପ କିଛି କାମ ହେବାପରେ ଦିନେ ସେଇ ବନ୍ଧୁ ପୁଣି ଫେରେଇ ଦେବେ କହି ବହିଟି ମାଗିନେଲେ; କିନ୍ତୁ ଆଉ ଫେରେଇ ପାରିଲେ ନାହିଁ । ଆଉ ଗୋଟିଏ କପିର ବହୁ ସନ୍ଧାନ କଲି । ଓଡ଼ିଶାରେ ହୁଏତ କେତେକ ଅନୁଷ୍ଠାନ ବା ବ୍ୟକ୍ତିବିଶେଷଙ୍କଠାରେ ତାହା ଥାଇପାରେ; କିନ୍ତୁ ମୋ ପାଇଁ ତାହା ଦୁଷ୍ପ୍ରାପ୍ୟ ଥିଲା । କେତେକ ବନ୍ଧୁଙ୍କ ମାଧ୍ୟମରେ ମୁଁ କଲିକତା, ଦିଲ୍ଲୀ ଓ ବମ୍ବେର ବଡ଼ ପୁସ୍ତକ ବ୍ୟବସାୟୀ ଓ ଆମଦାନୀକାରୀଙ୍କଠାରେ ମଧ୍ୟ ନିଷ୍ଫଳ ଅନୁସନ୍ଧାନ କଲି । ଲଣ୍ଡନର ଏହାର ପ୍ରକାଶକଙ୍କଠାରେ ମଧ୍ୟ ଏହା ନ ଥିବାର ଖବର ଆସିଲା । ସେତିକିବେଳେ ବଲାଙ୍ଗୀର ରାଜେନ୍ଦ୍ର ମହାବିଦ୍ୟାଳୟର ଲାଇବ୍ରେରିଆନ ଶ୍ରୀ ନାୟକ ଡଗରର ଜଣେ ଧାରାବାହିକ ଲେଖକ ଥିଲେ । ଡଗରର ସେ ସମୟର ପରିଚାଳକ ମୋର ବଡ଼ଭାଇ ଶ୍ରୀ ଫତୁରାନନ୍ଦଙ୍କ ମାଧ୍ୟମରେ ତାଙ୍କ ସହ ସମ୍ପର୍କ ସ୍ଥାପନ କଲି । ସେ ଅତି ଆଗ୍ରହ ଓ ପ୍ରବଳ ବିଶ୍ୱାସର ସହ ବହିଟି ଯୋଗାଇ ଦେଇଥିଲେ । କାମ ସାରି ଯଥାସମୟରେ ବହିଟି ତାଙ୍କୁ ଫେରାଇ ଦେଇଛି । ଶ୍ରୀ ନାୟକଙ୍କୁ ମୁଁ ବ୍ୟକ୍ତିଗତ ଭାବେ ଜାଣି ନାହିଁ; କିନ୍ତୁ ସେହି ନେପଥ୍ୟ ବନ୍ଧୁଙ୍କୁ କେଉଁ ଭାଷାରେ ଧନ୍ୟବାଦ ଦେବି ତାହା ଜାଣିପାରୁ ନାହିଁ ।

ଥେରେସେ ମେରୀ— (Therese Marie) – ସମସାମୟିକ ଅନେକ ଇଂରେଜ ଲେଖକଙ୍କ ପରି ବୀମ୍‌ସ ମଧ୍ୟ ଭାବବିହ୍ୱଳ ଅବସ୍ଥାରେ ଫରାସୀ ଶବ୍ଦ, ବାକ୍ୟାଂଶ ଓ କବିତା ବ୍ୟବହାର କରିଛନ୍ତି । ତାହା ମୋତେ ଖୁବ୍ ଅସୁବିଧାରେ ପକାଇଲା ଏବଂ ଜଣେ ଫରାସୀ ଜ୍ଞାନ ଥିବା ବ୍ୟକ୍ତିର ସନ୍ଧାନ କରୁ କରୁ ମୁଁ ପହଞ୍ଚିଲି କଟକର ସେଣ୍ଟ୍ ଯୋସେଫ କନ୍‌ଭେଣ୍ଟର ସେ ସମୟର ମଦର ସୁପିରିଅର ଶ୍ରୀମତୀ ମେରୀଙ୍କ ପାଖରେ ୧୯୭୭ରେ । ସେ ନିଜେ ଜଣେ ଫରାସୀ ମହିଳା, ଅତ୍ୟନ୍ତ ବୃଦ୍ଧା; କିନ୍ତୁ ମହତ୍ ହୃଦୟା । ସେ ମୋ ଅସୁବିଧା ହୃଦୟଙ୍ଗମ କରି ଯଥେଷ୍ଟ ଧୈର୍ଯ୍ୟର ସହ ମୁଁ ଟିପିଥିବା ସମସ୍ତ ଫରାସୀ ପଦ ଓ କବିତାର ଇଂରାଜୀ ଅନୁବାଦ କରିଦେଇଥିଲେ । ତା' ନ ହୋଇଥିଲେ ଅନୁବାଦ ପୂର୍ଣ୍ଣାଙ୍ଗ ହୋଇ ନଥାନ୍ତା । ସେ କହୁଥିଲେ, ବୀମ୍‌ସଙ୍କ ବ୍ୟବହୃତ ଫରାସୀ ଭାଷା ଖୁବ୍ ପୁରୁଣା । ସେ ଯାହାହେଉ ଶ୍ରୀମତୀ ମେରୀଙ୍କ ପ୍ରତି ମୋର ସମ୍ମାନ ଆଜି ମଧ୍ୟ ନୂତନ ହୋଇ ରହିଛି ।

ଶ୍ରୀ ହୃଦୟାନନ୍ଦ ନାୟକ (ଚାଟାର୍ଡ଼ ଆକାଉଣ୍ଟାଣ୍ଟ୍)— ଅନୂଦିତ ବହିଟିର ଓଡ଼ିଶା ଅଂଶରୁ କିଛି 'ଡଗର'ରେ ଧାରାବାହିକ ପ୍ରକାଶିତ ହେଉଥିବାବେଳେ ମୋର ପରମ ଶୁଭାନୁଧ୍ୟାୟୀ

ସମ୍ମାନନୀୟ ଶ୍ରୀ ନାୟକ ମୋର ଅନୁବାଦରେ ଥିବା କେତେକ ଦୁର୍ବଳତା ସମ୍ପର୍କରେ ମୋତେ ସଚେତନ କରାଇ ଦେଲେ । ମୁଁ ଆଉଥରେ ପାଣ୍ଡୁଲିପିଟି ପଢ଼ି ଦେଖିଲି ଯେ, ତାଙ୍କର ମତାମତ ସମ୍ପୂର୍ଣ୍ଣ ଯଥାର୍ଥ । ଗଠନମୂଳକ ଦୋଷଦର୍ଶନ କେବଳ ଜଣେ ଘନିଷ୍ଠ ବନ୍ଧୁ ଓ ପ୍ରବୀଣ ପାଠକହିଁ କରିପାରେ । ଶ୍ରୀ ନାୟକଙ୍କ ଠାରେ ମୁଁ ଉଭୟ ଗୁଣ ଦେଖିଆସିଛି । ପାଣ୍ଡୁଲିପିଟି ଆଉଥରେ ସଂଶୋଧନ କଲି । ସେଥିରେ କେତେଦୂର ସଫଳ ହେଲି କହିପାରିବି ନାହିଁ; କିନ୍ତୁ ପିତୃପ୍ରତିମ ଶ୍ରୀ ନାୟକଙ୍କ ଉପଦେଶ ମୋର ଚିରଦିନ ସ୍ମରଣ ରହିବ ।

**ଅଧ୍ୟାପକ ଡକ୍ଟର କୃଷ୍ଣପ୍ରସାଦ ମିଶ୍ର (କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର)—**

୧୯୭୭ର ଶେଷ ଭାଗରେ ପାଣ୍ଡୁଲିପିଟି ସମ୍ପୂର୍ଣ୍ଣ କରି ଓଡ଼ିଶାର ସବବୃହତ୍ ବୋଲି କୁହାଯାଉଥିବା ଏକ ପ୍ରକାଶନ ସଂସ୍ଥାକୁ ଦେଲି । ସେ ଆଗ୍ରହର ସହ ଗ୍ରହଣ କଲେ । ସାଙ୍ଗେ ସାଙ୍ଗେ ମୁଦ୍ରଣ କାର୍ଯ୍ୟ ଆରମ୍ଭ ହେଲା; କିନ୍ତୁ ଅଳ୍ପ କେତେ ଫର୍ମା ମୁଦ୍ରଣ ପରେ ବହୁବର୍ଷ ଧରି କାର୍ଯ୍ୟ ବନ୍ଦ ହେଲା । ପୁସ୍ତକଟିର ମୁଦ୍ରିତ ରୂପ ଦେଖିବାପାଇଁ ମୋର ଆୟୁ ସମ୍ଭବତଃ ଏତେ ଦୀର୍ଘ ନୁହେଁ ବୋଲି ଦର୍ଶାଇ ପାଣ୍ଡୁଲିପିଟି ଫେରସ୍ତ ମାଗିଲି ଏବଂ ସେ ଦୟାକରି ମୋତେ ତାହା ଫେରାଇ ଦେଲେ । କିଛିଦିନ ପରେ ମୁଁ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର'ର ଦ୍ୱାରସ୍ଥ ହେଲି ପ୍ରକାଶ ପାଇଁ । ଏହି ସଂସ୍ଥାର ତତ୍ତ୍ୱାବଧାରକ ଡକ୍ଟର ମିଶ୍ର ସେ ପାଣ୍ଡୁଲିପିଟିକୁ ଗ୍ରହଣ କରିବାର ଦୁଇମାସ ମଧ୍ୟରେ ମୁଦ୍ରଣ କାର୍ଯ୍ୟ ଆରମ୍ଭ କଲେ ଓ ନିରବଚ୍ଛିନ୍ନ ଭାବରେ ଶେଷ କଲେ । ମୁଁ ତାଙ୍କର ମଙ୍ଗଳ କାମନା କରୁଛି ।

**ସଦୁରାନନ୍ଦ—** ମୋର ବଡ଼ଭାଇ ଶ୍ରୀ ସଦୁରାନନ୍ଦ ତାଙ୍କର ଚକ୍ଷୁହୀନତା ସତ୍ତ୍ୱେ ମୋର ପ୍ରତ୍ୟେକ ଲେଖାକୁ ଶୁଣିବା ପାଇଁ ଆଗ୍ରହ ପ୍ରକାଶ କରନ୍ତି; ଏବଂ ଶୁଣିସାରି ଉଚ୍ଛ୍ୱସିତ ପ୍ରଶଂସା କରନ୍ତି । ବେଳେ ବେଳେ ପରାମର୍ଶ ମଧ୍ୟ ଦିଅନ୍ତି । ମୋର ସ୍ୱଭାବଗତ ଆଳସ୍ୟପରାୟଣତା ତାଙ୍କ ପ୍ରେରଣାଯୋଗୁଁ କେତେକ ପରିମାଣରେ ଘୁଞ୍ଚିଚି ଓ ପାଣ୍ଡୁଲିପିଟି ଶେଷ କରିବାରେ ସାହାଯ୍ୟ କରିଚି । ପୁସ୍ତକଟିର ମୁଦ୍ରଣ ରୂପ ଦେଖିବା ପାଇଁ ମୋଠାରୁ ସେ ଅଧିକ ବ୍ୟାକୁଳତା ପ୍ରକାଶ କରି ଆସିଛନ୍ତି । ତାଙ୍କଠାରେ ମୋର ବିନମ୍ର ଭକ୍ତିଭାବ ପ୍ରକାଶ କରୁଛି ।

**ଶ୍ରୀ ଆଲୋକ ମିଶ୍ର—** ପ୍ରକାଶକଙ୍କ ସହ ବାରମ୍ବାର ସଂଯୋଗ ରକ୍ଷାକରି ଏବଂ ମୁଦ୍ରଣକାର୍ଯ୍ୟ ତ୍ୱରାନ୍ୱିତ କରାଇ ପୁସ୍ତକଟିକୁ ଯଥାଶୀଘ୍ର ଲୋକଲୋଚନକୁ ଅଣାଇବାରେ ମୋର ପୁତ୍ର, ଆନନ୍ଦ ପ୍ରେସର ତତ୍ତ୍ୱାବଧାରକ ଆଲୋକର ଅବଦାନ ମଧ୍ୟ କମ୍ ନୁହେଁ । ତାକୁ ମୁଁ ସ୍ନେହ ଓ ଶ୍ରଦ୍ଧା ଜଣାଉଛି ।

କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ଓ ଆନନ୍ଦ ପ୍ରେସର କର୍ମଚାରୀମାନଙ୍କର ସହାନୁଭୂତିଶୀଳତାକୁ ମଧ୍ୟ ସାଧୁବାଦ ଜଣାଉଚି ।

ଡକ୍ଟର ଶ୍ୟାମସୁନ୍ଦର ମିଶ୍ର
୧୯୯୨

# ପୂର୍ବାଭାଷ

ଏହି ବର୍ଣ୍ଣନାଟି ୧୮୭୫ରେ ମୁଁ କଟକରେ ମ୍ୟାଜିଷ୍ଟ୍ରେଟ୍ ଓ କଲେକ୍ଟର ଥିବାବେଳେ ଆରମ୍ଭ ହୋଇଥିଲା ଏବଂ ମଝିରେ ମଝିରେ ୧୮୭୮ ପର୍ଯ୍ୟନ୍ତ ଚାଲିଲା । ତା'ପରେ ମୋର ଚିଟାଉଙ୍ଗ ବଦଳି ଓ ଅନ୍ୟାନ୍ୟ କାରଣ ଯୋଗୁଁ ଏହାକୁ ବନ୍ଦ କରି ଦିଆଗଲା । ୧୮୮୦ରେ ଚିନ୍‌ସୁରାରେ ମୁଁ ଏଥିପାଇଁ ଉଦ୍ୟମ କଲି; କିନ୍ତୁ ଏକ ଅଦ୍ଭୁତ କଥା ଦେଖିଲି । ବହୁତ ଦିନ ତଳେ ଘଟିଥିବା ଘଟଣାକୁ ମୁଁ ଯେତେ ମନେ ରଖିପାରିଛି, ନିକଟରେ ଘଟିଥିବା ଘଟଣାକୁ ସେତେ ଭଲ ମନେପକେଇ ପାରୁ ନାହିଁ । ମୋର ବର୍ଣ୍ଣନାକୁ ୧୮୭୦ ପର୍ଯ୍ୟନ୍ତ ଆଣିଲା ପରେ ପରଘଟଣାଗୁଡ଼ିକ ଆହୁରି ଅତୀତ ହୋଇ ମୋର ସ୍ମରଣକୁ ଆସିବାଯାଏ ମୋତେ ଅପେକ୍ଷା କରିବାକୁ ପଡ଼ିଲା । ତେଣୁ ପାଣ୍ଡୁଲିପିଟିକୁ ଥୋଇଦେବାକୁ ପଡ଼ିଲା ଏବଂ କ୍ରମେ କ୍ରମେ ସେ ବିଷୟ ଭୁଲିଗଲି । ୧୮୯୬ରେ ସିଭିଲ ସେବା ସଂସ୍ଥାରୁ ଅବସର ନେଇ ଇଂଲଣ୍ଡକୁ ଫେରିଲା ପରେ ମୁଁ ପୁଣି ଏହାକୁ ଆରମ୍ଭ କରୁଛି; ଏବଂ ଆଉଥରେ ପଢ଼ି ଦେଖୁଛି ଯେ ସେଥିରେ ଅନେକ ଜିନିଷ ଅଛି ଯାହାକୁ ମୁଁ ଅନ୍ୟ ପ୍ରକାର ଲେଖିଥାଆନ୍ତି, ଆଉ କେତେକ ଅଛି ଯାହାକି ଠିକ୍ ନୁହେଁ; ତେଣୁ ମୂଳରୁ ଆଉଥରେ ଲେଖିବା ଭଲ ବୋଲି ମନେକଲି ।

ଯଦିପଚରାଯାଏ ଯେ ଏପରି ଜଣେ ଅଜ୍ଞାତ ବ୍ୟକ୍ତି ତା'ର ଜୀବନ କଥା ଲେଖିବାକୁ ଉପଯୁକ୍ତ ବୋଲି ମନେ କରୁଛି କାହିଁକି ? ତା'ର ଉତ୍ତରରେ ମୁଁ କହୁଛି ଯେ ସାଧାରଣ ସ୍ତରର ଜଣେ ସାଧାରଣ ମଧ୍ୟବିତ୍ତ ଇଂରାଜୀ ବ୍ୟକ୍ତି ମୁଁ; ଏବଂ ଠିକ୍ ସେଇଥିପାଇଁ ହିଁ ମୁଁ ଲେଖିଛି । ପ୍ରସିଦ୍ଧ ଓ ପ୍ରତିଭାଶାଳୀ ଲୋକଙ୍କର ବହୁସଂଖ୍ୟକ ଜୀବନୀ ରହିଛି; କିନ୍ତୁ ସେମାନେ ଯେ ପ୍ରସିଦ୍ଧ ସେଇଟା ହିଁ ସେମାନଙ୍କୁ ସାଧାରଣ ନଶ୍ୱର ମାନବ ପର୍ଯ୍ୟାୟରୁ ଅଲଗା କରିଦେଉଛି । ତେଣୁ ସେମାନଙ୍କ ଜୀବନୀ ସେମାନଙ୍କର ମହତ୍‌କାର୍ଯ୍ୟ ଯୋଗୁଁ ଖୁବ୍ ମନୋମୁଗ୍ଧକର ହୋଇଥିଲେ ମଧ୍ୟ ସେମାନଙ୍କ ସମସାମୟିକ ସାଧାରଣ ସ୍ତରର ଲୋକଙ୍କଠାରୁ ଅଲଗା । ମୁଁ ଭାବୁଛି ଏହା ପରବର୍ତ୍ତୀ କାଳ ପାଇଁ, ଅନ୍ତତଃ ମୋ ବଂଶଧରମାନଙ୍କ ପାଇଁ । ଏହାର ପଠନ ଏଥିପାଇଁ ମନୋରଞ୍ଜକ ହେବ ଯେ ରାଣୀ ଭିକ୍ଟୋରିଆଙ୍କ ରାଜତ୍ୱ ସମୟରେ ଜଣେ ସାଧାରଣ ସାମାଜିକ ସ୍ତରର ବ୍ୟକ୍ତି କିପରି ରହୁଥିଲା । ସେହିପରି ଥିଲା ମୋର ଜୀବନ ଏବଂ ସେହିପରି ଥିଲା ସେ ସମୟରେ ମୋ ପରି ହଜାର ହଜାର ଲୋକଙ୍କ ଜୀବନ ଏବଂ ଭାରତ, ଯେଉଁଠାରେ ମୁଁ ମୋ ଜୀବନର ଦୀର୍ଘ ଅଂଶ ଅତିବାହିତ କରିଥିଲି, ପରିବର୍ତ୍ତିତ ହୋଇଯାଉଛି; ଏବଂ ମୋ ସମୟରେ ସେଠାରେ ଥିବା ବହୁ ଅନୁଷ୍ଠାନ ଓ ଅବସ୍ଥା ଚାଲିଯାଉଛି; ଏବଂ ମୋ ଜୀବନର ଭାରତୀୟ ଅଂଶଟି ବୋଧହୁଏ ବିଗତ ଅବସ୍ଥାର ଏକ ଆବଶ୍ୟକୀୟ ଦଲିଲ ହୋଇପାରେ । ସର୍ବଶେଷରେ ମୋର ବଂଶଧରଗଣ ଯଦି ଏହି ପୃଷ୍ଠାଗୁଡ଼ିକ କେବେ ପଢ଼ନ୍ତି, ତେବେ ସେମାନଙ୍କ ପୂର୍ବପୁରୁଷମାନେ କି ଧରଣର ଲୋକ ଥିଲେ, ତାହା ଜାଣିବାରେ ଆଗ୍ରହୀ ହୋଇପାରନ୍ତି ଏବଂ ଯଦିବା କେହି-ଏ ପୃଷ୍ଠାଗୁଡ଼ିକ ପଢ଼ିବାରେ ଆଗ୍ରହୀ ନ ହୁଅନ୍ତି, ସେ ସବୁ ଲେଖି ମୁଁ ଆମୋଦ ଅନୁଭବ କରୁଥିବାରୁ ତାହାହିଁ ଅନ୍ୟ ଯେ କୌଣସି କର୍ମଭଳି ଏହା ଲେଖିବାର ଏକ ବଡ଼ କାରଣ ।

୧୨ ଅକ୍ଟୋବର ୧୮୯୬
ନେଦରକ୍ଲେ ହାଉସ୍
ବିଶପସ୍ ହଲ, ଟନଟନ ନିକଟ

ଜନ ବୀମ୍‌ସ
ସମରସେଟସାୟାର

# ସଙ୍କଳକଙ୍କ ପକ୍ଷରୁ
## (ପ୍ରଥମ ସଂସ୍କରଣର ଭୂମିକା)

'ଜଣେ ଶାସକର ସ୍ମୃତି' ପୁସ୍ତକଟି ପ୍ରକାଶିତ ହେବାଦ୍ୱାରା ଦୁଇଟି ଉଦ୍ଦେଶ୍ୟ ସାଧିତ ହେବାର ଆଶା କରାଯାଏ । ପ୍ରଥମଟି ହେଲା ପୂଜ୍ୟପୂଜା ଏବଂ ଦ୍ୱିତୀୟଟି ହେଉଛି ଊନବିଂଶ ଶତାବ୍ଦୀର ଓଡ଼ିଶା ଇତିହାସ ବହୁ ଅନୁଦ୍‌ଘାଟିତ ତଥ୍ୟର ଆବିଷ୍କାର ଏବଂ କେତେକ ପ୍ରତିଷ୍ଠିତ ବିଶ୍ୱାସର ଖଣ୍ଡନ । ଜନ୍ ବୀମ୍‌ସଙ୍କର ଓଡ଼ିଶା ପ୍ରତି କେତେ ଆନ୍ତରିକତା ଥିଲା ତାହା ଏ ଯୁଗର ନୂତନ ପୁରୁଷ କଳ୍ପନା କରିବା କଷ୍ଟସାଧ୍ୟ । ଓଡ଼ିଆ ଭାଷାକୁ ପଡ଼ୋଶୀମାନଙ୍କ ଚକ୍ରାନ୍ତରୁ ରକ୍ଷା କରିବାରେ, ଓଡ଼ିଆ ସାହିତ୍ୟର ପ୍ରାଚୀନ ବିଭବକୁ ବିଶ୍ୱ ଦରବାରରେ ପରିବେଷଣ କରିବାରେ, ଭାରତୀୟ ଭାଷାମାନଙ୍କ ମଧ୍ୟରେ ଓଡ଼ିଆ ଭାଷାର ଗୁରୁତ୍ୱକୁ ତୁଳନାତ୍ମକ ରୀତିରେ ପ୍ରତିଷ୍ଠା କରିବାରେ ତାଙ୍କର ଅବଦାନ ମହନୀୟ । ଏହାଛଡ଼ା ଶିକ୍ଷା ବିସ୍ତାର, ଦୁର୍ଭିକ୍ଷ ନିରାକରଣ, ବାଣିଜ୍ୟ ବ୍ୟବସାୟର ପ୍ରସାର, ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ, ପୋତାଶ୍ରୟର ବିକାଶ, ପ୍ରଜା-ସାଧାରଣଙ୍କୁ ନ୍ୟାୟ ପ୍ରଦାନ କ୍ଷେତ୍ରରେ ମଧ୍ୟ ତାଙ୍କଭଳି ଆଉ ଜଣେ ବିଦେଶୀ ପ୍ରଶାସକ ଓଡ଼ିଶାକୁ ଆସି ନାହାନ୍ତି । ୯ ବର୍ଷର ଓଡ଼ିଶା ରହଣି ମଧ୍ୟରେ ସେ ଓଡ଼ିଶାକୁ ଭଲ ପାଇଥିଲେ ଏବଂ ଓଡ଼ିଶାରୁ ଚାଲିଯିବା ପରେ ଓଡ଼ିଶାକୁ ଝୁରି ହେଉଥିଲେ । ପୁଣି କଟକ ସହର ପ୍ରତି ତାଙ୍କର ଆକର୍ଷଣ ଥିଲା ସର୍ବାଧିକ । ସେ କହୁଥିଲେ ଯେ, ସେ ସମୟର ଏ ଅପ୍ରାନ୍ତ ସ୍ଥଳକୁ କୌଣସି ଇଂରେଜ ଅଫିସର ଆସିବାକୁ ରାଜି ହେଉ ନ ଥିଲେ; କିନ୍ତୁ ଯେଉଁମାନେ ଆସୁଥିଲେ ସେମାନେ ଆଉ ଫେରିବାକୁ ରାଜି ହେଉ ନଥିଲେ । ଶାସନ କ୍ଷେତ୍ରରେ ଓଡ଼ିଶାର ସ୍ୱାର୍ଥରକ୍ଷା ପାଇଁ ସେ ବେଳେ ବେଳେ ପ୍ରଶାସକୀୟ ବିଧି ନିଷେଧ ମାନୁ ନଥିଲେ; ଏବଂ ସେଥିପାଇଁ ବେଳେ ବେଳେ ଉଚ୍ଚକର୍ତ୍ତାଙ୍କ ବିରାଗଭାଜନ ହେଉଥିଲେ । ଜଣେ ଖ୍ରୀଷ୍ଟିଆନ ଓ ଜଣେ ବିଦେଶୀ ଶାସକ ହିସାବରେ ତାଙ୍କର ସେ ସମୟର କେତେକ ବିଚାର ହୁଏତ ଆଜି ଗ୍ରହଣୀୟ ହୋଇ ନ ପାରେ; କିନ୍ତୁ ସେଥିରେ ତାଙ୍କ ଓଡ଼ିଶା ପ୍ରେମର ଆନ୍ତରିକତା ଅସ୍ୱୀକୃତ ହୋଇ ନ ପାରେ ।

କିଛିଦିନ ତଳେ ତାଙ୍କର ପୁରୁଣା ଆଲୋକଚିତ୍ର ଖଣ୍ଡେ ଉତ୍କଳ ସାହିତ୍ୟ ସମାଜ ଭବନରେ ଟଙ୍ଗା ହୋଇଥିଲା; କିନ୍ତୁ ତାହା ଏବେ ଆଉ ପ୍ରଦର୍ଶିତ ହେଉ ନାହିଁ । ଟି.ଇ.ରେଭେନ୍ସାଙ୍କର ସେ ଅଧସ୍ତନ କର୍ମଚାରୀ ଥିଲେ; କିନ୍ତୁ ଓଡ଼ିଶା ପ୍ରତି ତାଙ୍କର ବହୁମୁଖୀ ଅବଦାନ ରେଭେନ୍‌ସାଙ୍କ ତୁଳନାରେ କୌଣସି ଗୁଣରେ କମ୍ ନୁହେଁ । ଏ ଲେଖାଟି ପଢ଼ିବା ପରେ ଏହା ନିଶ୍ଚୟ ପାଠକ ହୃଦୟଙ୍ଗମ କରିବେ । ଅଥଚ ତାଙ୍କର ସ୍ମରଣ ପାଇଁ ସମଗ୍ର ଓଡ଼ିଶାରେ ଖଣ୍ଡେ ଇଟା ମଧ୍ୟ ଥୁଆହୋଇ ନାହିଁ । ଯଦି ଏହି ପୁସ୍ତକ ସେହି ଇଟାଟିର କାର୍ଯ୍ୟ ସମ୍ପାଦନ କରିପାରେ ତେବେ ଶ୍ରମ ସାର୍ଥକ ମନେକରିବି ।

ଡକ୍ଟର ଶ୍ୟାମସୁନ୍ଦର ମିଶ୍ର

# ଦ୍ୱିତୀୟ ସଂସ୍କରଣ ସମ୍ପର୍କରେ

୧୯୯୨ଠାରୁ ୨୦୦୪ ଦୀର୍ଘ ବାରବର୍ଷ ବିତିଯାଇଛି ଯାହାକୁ ଏକ ଯୁଗ କୁହାଯାଏ । ଏହା ମଧ୍ୟରେ ଆମେ ଏକ ନୂତନ ଶତାବ୍ଦୀରେ ପ୍ରବେଶ କରିଛୁ । ଆଜିର ଭାରତରେ ଓଡ଼ିଶାରେ ଏବଂ ଜନ୍ ବୀମ୍‌ସଙ୍କ ପ୍ରିୟ କର୍ମସ୍ଥଳୀ କଟକ ସହରରେ ବହୁ ଆକାଙ୍‌କ୍ଷିତ ଓ ଅନାକାଙ୍‌କ୍ଷିତ ପରିବର୍ତ୍ତନ ହୋଇଯାଇଛି । ତଥାପି ଏ ପୁସ୍ତକର ଗୁରୁତ୍ୱ ପୂର୍ବଠାରୁ ବଢ଼ିଛି; କାରଣ ଏକବିଂଶ ଶତକର ତରୁଣ ସମାଜ ପାଇଁ ଊନବିଂଶ ଶତକର ରାଜନୀତିକ, ସାମାଜିକ ଓ ପ୍ରଶାସନିକ ବ୍ୟବସ୍ଥାର ଅଧ୍ୟୟନ ଆହୁରି ରୋମାଞ୍ଚକର, ଆହୁରି ପ୍ରେରଣାଧର୍ମୀ ଓ ଆହୁରି ଶିକ୍ଷାପ୍ରଦ ହୋଇଯାଇଛି । ସେସବୁ ଏବେ ଇତିହାସର ତଥ୍ୟାବଳିରେ ପରିଣତ ହୋଇଛି ଯାହା ଉତ୍କଳପ୍ରେମୀ ଏହି ଇଂରେଜ ପ୍ରଶାସକ ସତ୍ୟଦ୍ରଷ୍ଟା ବୀମ୍‌ସ ପରିବେଷଣ କରିଯାଇଛନ୍ତି ।

ଯେଉଁ ସଦାଶୟବୃନ୍ଦ ଏହି ପୁସ୍ତକଟି ରଚନା ପାଇଁ ମୋତେ ପରୋକ୍ଷ ଓ ପ୍ରତ୍ୟକ୍ଷ ସାହାଯ୍ୟ ଓ ପ୍ରେରଣା ଦେଇଥିଲେ ସେମାନଙ୍କ ମଧ୍ୟରୁ ଅଧିକାଂଶ ଇହସଂସାର ତ୍ୟାଗକଲେଣି, ସେମାନଙ୍କ ଅବଦାନକୁ ମୁଁ ଆଜି ଶ୍ରଦ୍ଧାର ସହ ସ୍ମରଣ କରିବା ସଙ୍ଗେ ସଙ୍ଗେ ମୋର ବନ୍ଧୁ ସହକର୍ମୀ ଓ ଓଡ଼ିଶାର କେତେକ ପ୍ରବୀଣ ବୁଦ୍ଧିଜୀବୀମାନଙ୍କଠାରୁ ଯେଉଁ ପ୍ରଶଂସାର ବାଣୀ ଶୁଣିଛି ଓ ପତ୍ର ପାଇଛି ସେସବୁ ମଧ୍ୟ ଗଭୀରଭାବେ ମନେପକାଉଛି ।

ଏହି ସଂସ୍କରଣଟିକୁ ଆଧୁନିକ ମୁଦ୍ରଣ ଶିଳ୍ପଯୋଗ୍ୟ ନୂତନ ଆକର୍ଷଣୀୟ ରୂପ ପ୍ରଦାନ କରିଥିବା ଯୋଗୁ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର୍‌ର ତତ୍ତ୍ୱାବଧାରକ ଓ ଉପଦେଷ୍ଟା ଶ୍ରୀ ଅନନ୍ତ ମିଶ୍ରଙ୍କ ସୁଯୋଗ୍ୟ ଦାୟାଦ ଶ୍ରଦ୍ଧେୟ ଶ୍ରୀମାନ୍ ନୃସିଂହ ପ୍ରସାଦ ଓ ଶ୍ରୀମାନ୍ ରଘୁନାଥ ଏବଂ ପ୍ରତିଷ୍ଠାନର କର୍ମଚାରୀମାନଙ୍କଠାରେ ମୋର କୃତଜ୍ଞତା ପ୍ରକାଶ କରୁଛି ।

ଡକ୍ଟର ଶ୍ୟାମସୁନ୍ଦର ମିଶ୍ର

# ଲେଖକଙ୍କ ଜୀବନୀ ଓ ସୃଷ୍ଟିର ସଂକ୍ଷିପ୍ତ ପରିଚୟ

ଜନ୍ମ ୧୯୩୨, ଝାଞ୍ଜିରୀମଙ୍ଗଳା, କଟକ, ପିତା–ପଦ୍ମନାଭ ମିଶ୍ର, ମାତା–ମାଣିକ୍ୟ ଦେବୀ, ଶିକ୍ଷା–ରାଣୀହାଟ ହାଇସ୍କୁଲ, ରେଭେନ୍ସା କଲେଜ ଏମ୍.ଏ.–୧୯୫୫, ଡକ୍ଟରେଟ–୧୯୮୫, ଆନୁଷ୍ଠାନିକ ସମ୍ପର୍କ– ଉତ୍କଳ ସାହିତ୍ୟ ସମାଜ ସରସ ସାହିତ୍ୟ ସମିତି, ହାସ୍ୟବିକାଶ କେନ୍ଦ୍ର, କଟକ; ଲେଖକ ସହଯୋଗ ସମିତି, ଶିକ୍ଷା ବିକାସ ସମିତି, ଉତ୍କଳ ସମ୍ମିଳନୀ, ସାପ୍ତାହିକ 'ରାଷ୍ଟ୍ରଦୀପ', ଦ୍ବିମାସିକ 'ଶିକ୍ଷାସୃଜନୀ' ଇତ୍ୟାଦିରେ ବିଭିନ୍ନ ଦାୟିତ୍ୱରେ ଅବସ୍ଥାପିତ ।

**ବର୍ତ୍ତମାନ ସୁଦ୍ଧା ପ୍ରକାଶିତ କେତୋଟି ପ୍ରଧାନ ପୁସ୍ତକ :**

(୧) ଉପନ୍ୟାସ–ଚକୋରୀ (ସାମାଜିକ), ଯୋଗଜନ୍ମା (ରାଜନୀତିକ ବ୍ୟଙ୍ଗ) ।

(୨) ସାହିତ୍ୟ ଆଲୋଚନା–ରାଧାନାଥ ଦର୍ଶନ, ଗୋଦାବରୀଶ ମହାପାତ୍ର, ଓଡ଼ିଆ ସାହିତ୍ୟକୁ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଦାନ (ଗବେଷଣା ନିବନ୍ଧ) ।

(୩) କ୍ଷୁଦ୍ରଗଳ୍ପ–ସ୍ୱୟଂ ସମ୍ପୂର୍ଣ୍ଣା ।

(୪) ରମ୍ୟଚରନା–ଢିଙ୍କି ଦେ ଚମକାଇ ।

(୫) ଶିଶୁ ଓ କିଶୋର ସାହିତ୍ୟ–ଅନୁପମା (ଗଳ୍ପ), ମହତ ସହିବା ଜନ (ଗଳ୍ପ); କଥା ସରିତ ସାଗର (ଅନୁବାଦ କାହାଣୀ) ।

(୬) ଜୀବନୀ-ଗୁରୁଗୋବିନ୍ଦ ସିଂହ, କୃଷ୍ଣଚନ୍ଦ୍ର ଗାନ୍ଧି ।

(୭) ଜାତୀୟତା ଭିତ୍ତିକ-କାଶ୍ମୀର-କାଲିର ଗୌରବ ଆଜିର ଗୌରବ ଆସନ୍ତା କାଲିର ।

(୮) ଅନୁବାଦ-ଜଣେ ଶାସକର ସ୍ମୃତି (ଜନ୍ ବୀମ୍ସଙ୍କ ଜୀବନୀ ଆଧାରିତ ଇଂରାଜୀରୁ), ନରେନ୍ଦ୍ର ଲୁଥରଙ୍କ ଶ୍ରେଷ୍ଠ ହାସ୍ୟଗଳ୍ପ (ମୂଳ ଉର୍ଦ୍ଦୁ ରଚନାରୁ), ଦୈବଗୁରୁ (ସାଇବାବାଙ୍କ ଦର୍ଶନ ଆଧାରିତ, ଇଂରାଜୀରୁ) ।

(୯) ଶିକ୍ଷା ସମ୍ପର୍କୀୟ-ସରସ୍ୱତୀ ଶିଶୁ ମନ୍ଦିର ଏକ ପରିଚୟ- ମୂଳ ହିନ୍ଦୀ ଶିକ୍ଷାର ଭାରତୀୟକରଣ କାହିଁକି ।

(୧୦) ସଂକଳନ : Utkal A Souvenir 1997 ଉତ୍କଳ ସମ୍ମିଳନୀ ଶତାବ୍ଦୀ ସଂକଳନ ୧୯୦୩ ।

**ଡକ୍ଟର ଶ୍ୟାମସୁନ୍ଦର ମିଶ୍ର**

# ସୂଚୀ


| | |
|---|---|
| ପ୍ରଥମ ପରିଚ୍ଛେଦ | ୧ |
| ପୂର୍ବପୁରୁଷ | |
| ଦ୍ୱିତୀୟ ପରିଚ୍ଛେଦ | ୧୫ |
| ବାଲ୍ୟକାଳ : ୧୮୩୭-୧୮୪୪ | |
| ତୃତୀୟ ପରିଚ୍ଛେଦ | ୩୨ |
| ମର୍ଚ୍ଚେଣ୍ଟ ଟେଲର୍ସ : ୧୮୪୬-୧୮୫୫ | |
| ଚତୁର୍ଥ ପରିଚ୍ଛେଦ | ୪୯ |
| ହେଲିବରୀ : ୧୮୫୬-୧୮୫୭ | |
| ପଞ୍ଚମ ପରିଚ୍ଛେଦ | ୬୪ |
| ଭାରତ ପଥେ : ୧୮୫୮ | |
| ଷଷ୍ଠ ପରିଚ୍ଛେଦ | ୭୧ |
| କଲିକତା : ୧୮୫୮-୧୮୫୯ | |
| ସପ୍ତମ ପରିଚ୍ଛେଦ | ୮୫ |
| ପଞ୍ଜାବ-ଗୁଜୁରାଟ : ୧୮୫୯ | |
| ଅଷ୍ଟମ ପରିଚ୍ଛେଦ | ୧୦୪ |
| ବିବାହ : ୧୮୬୦ | |
| ନବମ ପରିଚ୍ଛେଦ | ୧୧୬ |
| ଅମ୍ବାଲା ଓ ଲୁଧିଆନା : ୧୮୬୧ | |
| ଦଶମ ପରିଚ୍ଛେଦ | ୧୨୫ |
| ସାହାବାଦ ଓ ପୂର୍ଣ୍ଣିଆ : ୧୮୬୧-୧୮୬୨ | |
| ଏକାଦଶ ପରିଚ୍ଛେଦ | ୧୪୪ |
| ପୂର୍ଣ୍ଣିଆ : ୧୮୬୨-୧୮୬୩ | |

ଦ୍ୱାଦଶ ପରିଚ୍ଛେଦ ୧୫୮
ପୂର୍ଣ୍ଣିଆ : ୧୮୬୫-୧୮୬୬
ତ୍ରୟୋଦଶ ପରିଚ୍ଛେଦ ୧୭୦
ଚମ୍ପାରଣ : ୧୮୬୬-୧୮୬୭
ଚତୁର୍ଦ୍ଦଶ ପରିଚ୍ଛେଦ ୧୮୯
ଛୁଟିରେ ଘରକୁ : ୧୮୬୮
ପଞ୍ଚଦଶ ପରିଚ୍ଛେଦ ୧୯୩
ବାଲେଶ୍ୱର :୧୮୬୯-୧୮୭୦
ଷୋଡ଼ଶ ପରିଚ୍ଛେଦ ୨୧୧
ବାଲେଶ୍ୱର :୧୮୭୧-୧୮୭୩
ସପ୍ତଦଶ ପରିଚ୍ଛେଦ ୨୨୩
କଟକ : ୧୮୭୩
ଅଷ୍ଟାଦଶ ପରିଚ୍ଛେଦ ୨୩୭
କଟକ : ୧୮୭୪
ଊନବିଂଶ ପରିଚ୍ଛେଦ ୨୫୮
କଟକ : ୧୮୭୫-୭୭
ବିଂଶ ପରିଚ୍ଛେଦ ୨୮୯
ଚିଟାଗଙ୍ଗ (ଚଟ୍ଟଗ୍ରାମ) : ୧୮୭୮-୧୮୭୯
ପରିଶିଷ୍ଟ-୧ ୩୧୫
ଜଣେ ପରବର୍ତ୍ତୀ ଶାସକଙ୍କ ଦୃଷ୍ଟିରେ
ପରିଶିଷ୍ଟ-୨ ୩୧୯
ଶେଷ କଥା



# ପ୍ରଥମ ପରିଚ୍ଛେଦ

## ପୂର୍ବପୁରୁଷ

ମୋ ବିଷୟରେ କିଛି ଲେଖିବା ପୂର୍ବରୁ ମୋ ପୂର୍ବପୁରୁଷଙ୍କ କଥା କିଛି କହିବା ଦରକାର । ଆମ ଜାଣିବାରେ ସେମାନେ ଦୁଇଟି ଦଳରେ ବିଭକ୍ତ । ଗୋଟିଏ ଏକାଦଶ ଶତାବ୍ଦୀରୁ ଆରମ୍ଭ ହୋଇ ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ବ୍ୟାପ୍ତ । ଅନ୍ୟଟି ସପ୍ତଦଶ ଶତାବ୍ଦୀରୁ ଶେଷରୁ ଆରମ୍ଭ ହୋଇ ନିରବଚ୍ଛିନ୍ନ ଭାବରେ ଆଜିପର୍ଯ୍ୟନ୍ତ ଚାଲିଆସିଛି । ପ୍ରଥମ ଦଳଟି ସହ ଆମର ସମ୍ପର୍କ ସନ୍ଦେହଜନକ ନ ହେଲେ ହେଁ ପରିଷ୍କାର ବାରିହୁଏ ନାହିଁ; ତେଣୁ ସେମାନଙ୍କ ସମ୍ପର୍କରେ ସୁପ୍ରତିଷ୍ଠିତ କେତେକ ତଥ୍ୟ ମାତ୍ର ମୁଁ ଉଲ୍ଲେଖ କରିବି ।

ଅବଶ୍ୟ ସବୁ ସମ୍ଭ୍ରାନ୍ତ ଇଂରାଜୀ ବଂଶ ପରି ସେମାନେ 'ବିଜେତାଙ୍କ ସହ ଆସିଥିଲେ', ଏପରି ଏକ ଦାବିକୁ ଅଳସ ଅହମିକା ବୋଲି ହସି ଉଡ଼ାଇଦେବା ଗୋଟାଏ ରୀତି ହୋଇଯାଇଛି; କିନ୍ତୁ ଆମେ ଯେ ପ୍ରକୃତରେ ଏହି ପରିବାରରୁ ଆସିଛୁ ଏହା ଅନ୍ତତଃ ଆମ ପକ୍ଷେ ସତ୍ୟ । ଏବେ ଯୁଦ୍ଧ ବିବରଣୀରେ ଡ୍ୟୁକ୍ ଉଇଲିଅମ୍‌ଙ୍କ ଅନୁଚରମାନଙ୍କ ନାମ ତାଲିକା ମଧ୍ୟରେ ବେଲମିସ୍ ନାମ ଅଛି । ଏହା ମଧ୍ୟ ବେଲମେଇସ୍, ବ୍ୟୁମେଇସ୍, ବାଲମ୍ ଏବଂ ଅନ୍ୟ ପ୍ରକାରେ ଉଚ୍ଚାରିତ ହୁଏ । ସେ ସମୟର ଉଚ୍ଚାରଣର କୌଣସି ନିୟମ ନ ଥିଲା । ନୋରମାନ ବାହିନୀରେ ସେଇ ବଂଶାରେ ତିନି ଭାଇ ଥିଲେ ଉଇଲିଅମ୍, ରିଚାର୍ଡ୍ ଓ ୱାଲ୍‌ଟର୍ । ଗୋଟିଏ ଅଭିଲେଖରେ ସେମାନେ ଆଲେଙ୍କନ ନିକଟସ୍ଥ ବ୍ୟୁମେଜରୁ, ଅନ୍ୟଟିରେ ସେମାନେ ଅଭିଗନନ ନିକଟସ୍ଥ ଲେ ବ୍ୟୁମସ୍‌ରୁ ଆସିଥିବାର ଉଲ୍ଲେଖ ଅଛି । ସେମାନେ ସ୍ରେସବରୀର ଆର୍ଲ ରୋଗର ଡି.ମଣ୍ଟଗୋମେରୀଙ୍କ ବାହିନୀରେ ସମ୍ପୃକ୍ତ ଥିଲେ ଏବଂ ସ୍ରୋପସାୟାରରେ ଟଙ୍ଗ୍ ଓ ଡୋନିଙ୍ଗଟନ୍ ଜମିଦାରୀ ସହ ଡର୍ବିସାୟାର୍‌ରେ ଆସବି ଜମିଦାରୀ ମଧ୍ୟ ପାଇଥିଲେ । ରିଚାର୍ଡ୍ ଥିଲେ ଜଣେ ଧର୍ମଯାଜକ । ସେ ୧୧୦୮ରେ ଲଣ୍ଡନର ବିଶପ ଏବଂ ଉଏଲସ୍ ମାର୍ଚ୍ଚେସ୍ ଓ୍ୟାଡ଼େନ ପଦବୀ ପାଇଥିଲେ । ସେ ତାଙ୍କର ସମସ୍ତ ଯାଜକୀୟ ଉପାର୍ଜନ ସେଣ୍ଟପଲ୍ କ୍ୟାଥେଡ୍ରାଲର ପୁନର୍ନିର୍ମାଣରେ ବ୍ୟୟ କରିଥିଲେ । ତାଙ୍କ ପୁତୁରାଙ୍କ ନାମ ମଧ୍ୟ ରିଚାର୍ଡ୍ । ସେ ୧୧୪୫ ଆଡ଼କୁ ଲଣ୍ଡନର ବିଶପ ହେଲେ । ଟଙ୍ଗ୍ ଓ ଡୋନିଙ୍ଗଟନ୍ ଶାଖା ଲୋପ ପାଇଗଲେ— ପ୍ରଥମଟି ୧୨୦୦ ସାଲ ଓ ଦ୍ୱିତୀୟଟି ୧୩୨୯ ସାଲରେ; କିନ୍ତୁ ତୃତୀୟ ଶାଖାଟିଏ ଲିମବର୍ଗମାଗନାର ହେନେରୀ ଡି ବେଲମିସ୍‌ଙ୍କ ପ୍ରତିନିଧିତ୍ୱରେ ଲିଙ୍କନସାୟାରରେ ପ୍ରତିଷ୍ଠିତ ହୋଇଥିଲା ଏବଂ ଆଉ ଗୋଟିଏ ଶାଖା ହଣ୍ଟିଡନସାୟାରରେ ସଟ୍ରିବ୍ୟୁମିସ୍‌ଠାରେ ପ୍ରତିଷ୍ଠିତ ହେଲା । ଡି.ବ୍ୟୁମିସ୍ ନାମକ ଜଣେ ଲୋକର ଜମି ମଧ୍ୟ ରିଡ଼ିଙ୍ଗ ନିକଟର ସସେକ୍‌ସରେ ଥିଲା । ସେଠାରେ ଏବେ ବି 'ବ୍ୟୁମିସ୍ କ୍ୟାଲେସ' ନାମରେ ଜୀର୍ଣ୍ଣ ଦୁର୍ଗଟିଏ ଅଛି । ୧୪୫୦ ଆଡ଼କୁ ଏହି ନାମରେ ଥିବା ଅନେକ

ଲୋକଙ୍କ ନାମ ବିଭିନ୍ନ ସ୍ଥାନରେ ବିଛାଇ ହୋଇଥିବାର ସୂଚନା ମିଳେ । ରୋଜେସ୍ ଯୁଦ୍ଧରେ ଏହି ପରିବାର ବିସ୍ମୃତି ଗର୍ଭରେ ଲୋପ ପାଇଗଲେ । କେବଳ ନାମ ନୁହେଁ ସେମାନଙ୍କ ପଦକ ଓ ଚିହ୍ନ ପ୍ରଭୃତି ଆମେ ବର୍ତ୍ତମାନ ବ୍ୟବହାର କରୁଥିବା ପଦକ ସହ ସମାନ ଥିବାରୁ ଆମେ ସେଇ ବଂଶରୁ ଆସିଥିବୁ ବୋଲି ସମ୍ଭାବନାକୁ ସମର୍ଥନ କରାଯାଇପାରେ । ଏହା ଯଦି ହୁଏ ତେବେ ଯେଉଁ ଶାଖାଟି ରିଡ଼ିଂ ନିକଟରେ ରହିଥିଲେ, ଆମେ ସେଥିରୁ ଆସିଥିବା ଅଧିକ ସମ୍ଭବ । କାରଣ ଦୁଇ ଶତାବ୍ଦୀ ପରେ ବ୍ୟୁମେସ୍ ବା ବୀମ୍‌ସ ନାମ ବର୍କସାୟାର ଓ ନର୍ଥଉଇକ ସାୟାରରେ ବେଶ୍ ପରିଚିତ ଥିଲେ । ସେମାନଙ୍କ ମଧ୍ୟରୁ କେତେଜଣ ଚିପେନହାମ୍‌ର ବ୍ୟାଙ୍କ୍ ବ୍ୟବସାୟୀ ଥିଲେ ।

ବୋଧହୁଏ ଏହି ଶାଖାର ବଂଶଧର ଥିଲେ ଜନ୍ ବୀମ୍‌ସ । ସେ ୧୭୨୮ରେ ବ୍ରିଷ୍ଟଲ ନିକଟ ରେଭରେଣ୍ଡ ଜନ୍ ପାଓ୍ୱାରଙ୍କ କନ୍ୟା ସାରାଙ୍କୁ ବିବାହ କରିଥିଲେ । ତାଙ୍କୁ ରୋଗର୍ ବୀମ୍‌ସ ବୋଲି ମଧ୍ୟ କୁହାଯାଉଥିଲା । (ମୋ ଜେଜେବାପା ଏପରି ଉଲ୍ଲେଖ କରିଥିବା କେତେକ କାଗଜ ମୋ ପାଖରେ ଅଛି) । କାହିଁକି ମୁଁ ଜାଣେନା । ସେ ୧୬୯୫ରେ ଜନ୍ମ ହୋଇଥିଲେ ବୋଲି କୁହାଯାଏ । ସମ୍ଭବତଃ ସେ ହେଉଛନ୍ତି ଆମ ପରିବାରର ପ୍ରତିଷ୍ଠାତା । ରେଭରେଣ୍ଡ ଜନ୍ ପାଓ୍ୱାର୍ ୨୬ ମାର୍ଚ୍ଚ ୧୭୪୩ରେ ତାଙ୍କର ଏକ ଇଚ୍ଛାପତ୍ରରେ କ୍ଲିଫ୍‌ଟନ୍‌ରେ ଥିବା ତାଙ୍କର ସମସ୍ତ ସମ୍ପତ୍ତିକୁ ତାଙ୍କ ଝିଅ ସାରାର ପୁଅ ଜନ୍ ବୀମ୍‌ସକୁ ଦେଇଯାଇଥିଲେ । ଏହି ସମ୍ପତ୍ତି ଏହି ପରିବାରରେ କେତେବର୍ଷ ଧରି ରହିଲା, କିଛି ଅଂଶ ଏ ପର୍ଯ୍ୟନ୍ତ ମଧ୍ୟ ଅଛି । ପ୍ରଥମ ଜନ୍ ତଥା ରୋଗରଙ୍କ ସାମାଜିକ ସ୍ଥିତି ଖୁବ୍ ଭଲ ଥିବାର ମନେହେଉ ନ ଥିଲେ ମଧ୍ୟ ସେ ଭଦ୍ର ପରିବାରରେ ଜନ୍ମ ହୋଇଥିଲେ । ସେ ଥିଲେ ଜଣେ ଆର୍ମିଗର । ତାଙ୍କର କିମ୍ବା ତାଙ୍କ ପୁଅଙ୍କ ବ୍ୟବହୃତ ଦୁଇଟି ବର୍ମ, ଆକାଶୀରଙ୍ଗର ଛ'ଟି ପୋଷାକ ଅଛି । ସେହି ସବୁ ପୋଷାକର ସଙ୍କେତ ଓ ପଦକ ସବୁ ପୂର୍ବର ନରମାନ ଡି. ବ୍ୟୁମିସ୍‌ଙ୍କ ପୋଷାକର ପଦକ ଓ ସନ୍ତକ ପରି ।

ପ୍ରଥମ ଜନ୍‌ଙ୍କର ଦୁଇଟି ପୁଅ ଥିଲେ— ଦ୍ୱିତୀୟ ଜନ୍ ଓ ଜର୍ଜ । ଏହାଛଡ଼ା ତାଙ୍କ ବିଷୟରେ ମୁଁ ଆଉ କିଛି ଜାଣେ ନାହିଁ । ୧୭୮୬ ଡିସେମ୍ବର ୨ ତାରିଖରେ ଲଣ୍ଡନର ଲର୍ଡ଼ ମେୟରଙ୍କ ଆଗରେ ଗିଲଡ୍‌ହଲଠାରେ ଏହି ଜର୍ଜ କରିଥିବା ଏକ ସତ୍ୟପାଠରେ ଦ୍ୱିତୀୟ ଜନ୍‌ଙ୍କ ବିଷୟରେ କୁହାଯାଇଛି— ''ସରେ ପ୍ରଦେଶର ସେଣ୍ଟ୍‌ଜାଭିଅର୍ସ ସାଉଥ୍‌ୱାର୍ଡ଼ ଗିର୍ଜାଞ୍ଚଳରେ ଥିବା ସେଣ୍ଟମେରୀ ଓଭେରୀ ଗିର୍ଜା ପ୍ରାଙ୍ଗଣରେ ଖାଦ୍ୟଦାତା ମୃତ'' ଏବଂ ଜର୍ଜ ନିଜେ ଅକ୍‌ସଫୋର୍ଡ଼ ଷ୍ଟ୍ରିଟରେ ଜଣେ ମାଂସକଟାଳି ଥିଲେ ବୋଲି କୁହାଯାଇଛି । ନରମାନ ବ୍ୟାନରମ୍ୟାନଙ୍କ ବଂଶଧରମାନେ ଏହିପରି ଆବି ଯୁଦ୍ଧ ତାଲିକାର ବ୍ୟକ୍ତିମାନଙ୍କ ବଂଶଧରମାନଙ୍କ ପରି ପୃଥିବୀପୃଷ୍ଠରେ ରହି ଆସିଛନ୍ତି । କ୍ଲିଭଲାଣ୍ଡର ଡଚେସ୍ ଦର୍ଶାଇଛନ୍ତି ଯେ, ଏହି ସବୁ ପ୍ରାଚୀନ ନାମ ଗ୍ରାମର ଚାଷୀମାନଙ୍କଠାରେ ରହିଥିଲେ ମଧ୍ୟ ସମ୍ଭ୍ରାନ୍ତ ପରିବାରମାନଙ୍କରୁ ଲୋପ ପାଇଅଛି ।

୧୭୪୯ରେ ଦ୍ୱିତୀୟ ଜନ୍ ସାରା ହାଲିଡେଙ୍କୁ ବିବାହ କଲେ । ତାଙ୍କର ଦୁଇ ପୁଅ, ଦୁଇ ଝିଅ ହେଲେ । ତାଙ୍କର ତେରମାସର ଜ୍ୟେଷ୍ଠପୁତ୍ରର ଅତି ଶୋଚନୀୟ ମୃତ୍ୟୁ ହେଲା ।

ପିତା ବାହାରକୁ ଯାଇଥିଲେ ଏବଂ ଘରକୁ ଫେରି କିଛି ସମୟ ଦ୍ୱାର ବନ୍ଧ ପାଖରେ ଜଣେ ବନ୍ଧୁଙ୍କ ସହ କଥାବାର୍ତ୍ତା ହେଉଥିଲେ । ଜଣେ ଧାତ୍ରୀ ଉପର ମହଲା ଝରକା ପାଖରେ ଥିଲା ଏବଂ ଶିଶୁଟି ଯେପରି ବାପାଙ୍କୁ ଦେଖିପାରିବ ସେଥିପାଇଁ ତାକୁ ଝରକା ବାହାରକୁ ଟେକି ଧରିଲା । ପିଲାଟି ତା ବାପାଙ୍କୁ ଦେଖି ଆଗ୍ରହରେ ଡେଇଁଲା ଓ ପାଳିକାର ହାତରୁ ଖସି ଦୁଆରବନ୍ଧ ପାଖରେ ତା' ବାପାର ପାଦ ପାଖରେ ପଡ଼ି ଖଣ୍ଡ ଖଣ୍ଡ ହୋଇଗଲା ! ତାଙ୍କର ଦ୍ୱିତୀୟ ପୁଅ ତୃତୀୟ ଜନ୍ ୧୭୫୪ରେ ଜନ୍ମ ହେଲେ ଏବଂ ପିକାଡ଼ିଲିର ଜେମସ୍ ଗିର୍ଜାରେ ଦୀକ୍ଷା ଗ୍ରହଣ କଲେ । ଶହେବର୍ଷପରେ ମୋ ବାପା ସେହି ଗିର୍ଜାରେ ସହକାରୀ ପ୍ରଚାରକ ଥିବାବେଳେ ସେହି ଦୀକ୍ଷାର ପ୍ରମାଣପତ୍ର ପାଇଥିଲେ । ଝିଅ ଦୁଇଟିଙ୍କ ନାମ ଥିଲା ସାରା ଓ ମେରୀ । ମେରୀ କ୍ୟାନୋପ ବୋଲି ଜଣକୁ ବିବାହ କରିଥିଲା; କିନ୍ତୁ ଏତିକି ଛଡ଼ା ସେମାନଙ୍କ ବିଷୟରେ ଆଉ କିଛି ଖବର ରଖି ନାହିଁ ।

ତୃତୀୟ ଜେମସ୍ ପ୍ରଥମେ ବ୍ୟବସାୟ କରୁଥିଲେ । କାରଣ ଉପରୋକ୍ତ ଶପଥ ପତ୍ରରେ ସେ ନିଜକୁ କହିଛନ୍ତି 'ଲଣ୍ଡନର ଟେମସ୍ ଷ୍ଟିଟର; କିନ୍ତୁ ବର୍ତ୍ତମାନ ବ୍ରିଷ୍ଟଲର ହଟ୍‌ୱେଲସ୍ ନିକଟ କ୍ଲିଫଟନ ନିବାସୀ' । ତାଙ୍କ ପିତାଙ୍କ ମୃତ୍ୟୁ ପରେ ସେ କ୍ଲିଫ୍‌ଟନ ଜମିଦାରୀ ପାଇଲେ । ଯେଉଁ ଘରେ ସେ ରହିଥିଲେ ତାହା ଏ ପର୍ଯ୍ୟନ୍ତ ହଟ୍‌ୱେଲ୍‌ର ଠିକ୍ ଉପରେ ଗ୍ରାନ୍‌ବି ପାହାଡ଼ର ନିମ୍ନାଂଶରେ ରହିଛି । ସେତେବେଳେ ଏହା ଖୁବ୍ ଭଲ ଥିବ । ବର୍ତ୍ତମାନ ଏହା ଦୁଇଭାଗ ହୋଇ ଭାଗେ ଦୋକାନକୁ ଭଡ଼ା ଦିଆଯାଇଛି । ସମଗ୍ର ପାହାଡ଼ର ପାର୍ଶ୍ୱଦେଶଟି ଏହାର ଉଦ୍ୟାନ ଥିଲା ଏବଂ ଏହାର ଚତୁର୍ଦ୍ଦିଗରେ ଥିବା କ୍ଷେତ 'ବୀମ୍‌ସଙ୍କ ପାହାଡ଼ିଆ କ୍ଷେତ' ବୋଲି କୁହାଯାଉଥିଲା । ସେସବୁ ଏବଂ ବଗିଚାର ଅଧିକାଂଶ ଭାଗ ବର୍ତ୍ତମାନ ଘର ହୋଇଗଲାଣି । ହିଲଫିଲଡ୍‌ଠାରେ ମୋର ପ୍ରପିତାମହ ମୃତ୍ୟୁ ପର୍ଯ୍ୟନ୍ତ ରହିଥିଲେ । ସେ ସାରା ରିଭର୍ସ ନାମ୍ନୀ ବିଧବାଙ୍କୁ ବିବାହ କରିଥିଲେ, (ସେମାନେ ସମସ୍ତେ ସାରାନାମ୍ନୀ କନ୍ୟାମାନଙ୍କୁ ବାହାହୋଇଥିବା ମନେହୁଏ) । ଯାହାଙ୍କ କୁମାରୀ ନାମ ଥିଲା ଇଭି ଲିପ୍ । ସେ ଥିଲେ ବୁଦ୍ଧିମତୀ, ଦୃଢ଼ମନା (ତାଙ୍କର ଛୋଟ ପ୍ରତିରୂପଟିଏ ମୁଁ ରଖିଛି) ତୃତୀୟ ଜନ୍ ମଦ ଓ ଜୁଆରେ ମାତି ଉଚ୍ଛୃଙ୍ଖଳ ଜୀବନ ବିତାଉଥିଲେ । ତାଙ୍କର ବହୁ ଦୁର୍ନାମ ଶୁଣାଯାଏ । ସେ ବ୍ରିଷ୍ଟଲ୍‌ର ଗୋଟିଏ କ୍ଲବ୍‌ର ସଭ୍ୟ ଥିଲେ ଯେଉଁଠି ଖୁବ୍ ଜୁଆଖେଳ ହେଉଥିଲା ଏବଂ ସେଇଥିରେ ସେ କ୍ଲିଫ୍‌ଟନ୍ ସମ୍ପତ୍ତିର ଅଧିକାଂଶ ଭାଗ ଉଡ଼ାଇ ଦେଇଥିଲେ । କ୍ଲିଫ୍‌ଟନ୍ ସେତେବେଳେ ଥିଲା ପଲ୍ଲୀ, କିନ୍ତୁ ପରେ ପରେ ସୁନ୍ଦର ଜଳସେଚିତ ଅଞ୍ଚଳରେ ପରିଣତ ହେଲା ଏବଂ ଜୁଆରେ ହରାଇଥିବା ସମ୍ପତ୍ତି ଖୁବ୍ ମୂଲ୍ୟବାନ୍ ହୋଇଗଲା । ମୋର ସମ୍ପର୍କୀୟ, ବୃଦ୍ଧ ବେଞ୍ଜାମିନ କ୍ଲିଫ୍‌ଟନ୍‌ର ପ୍ରତ୍ୟେକ ଇଞ୍ଚର ଇତିହାସ ଜାଣନ୍ତି । ତାଙ୍କଠାରୁ ମୁଁ ସବୁ ଶୁଣିଛି । ସେ ଅନେକ ସମୟରେ ଦୀର୍ଘନିଃଶ୍ୱାସ ପକାଇ କହନ୍ତି ଯେ, ଏହି ପ୍ରପିତାମହ ଏପରି କରି ନ ଥିଲେ ଆମେ ଲକ୍ଷପତି ହୋଇଥାଆନ୍ତୁ । ସେ ବିଚରା ଦୁଃଖରେ ପାଗଳ ହୋଇ ୧୭୮୯ରେ ମଲେ । ତାଙ୍କର ଦୁଇଟି ପୁଅ ତାଙ୍କ ପୂର୍ବରୁ ଶୈଶବାବସ୍ଥାରୁ ମରିଥିଲେ । ବଞ୍ଚିଥିବା ଅନ୍ୟ ଦୁଇଟି ପିଲା ହେଲେ ମୋ ଜେଜେବାପା ୪ର୍ଥ ଜନ୍; ଜନ୍ମ ୧୬ ମେ ୧୭୮୧ ଏବଂ ସାରା ଜନ୍ମ ୧୭୮୩ । ସାରା ବାହା ହୋଇଥିଲେ ବ୍ରିଷ୍ଟଲର ଜଣେ ଡାକ୍ତର ବେଞ୍ଜାମିନ୍ ଗୁସ୍ତାଭ

ବରୋଜଙ୍କୁ । ସେମାନଙ୍କର ଥିଲେ ଚାରି ପୁଅ, ଦୁଇ ଝିଅ । ସେମାନଙ୍କ କଥା ପରେ ବରାବର କହିବି ।

ମୋର ବିଧବା ପ୍ରପିତାମହୀ କ୍ଲିଫଟନ୍ ସମ୍ପତ୍ତିର ସୁନ୍ଦର ରକ୍ଷଣାବେକ୍ଷଣ କରି ସମ୍ମାନଜନକ ଆୟପନ୍ଥା ମଧ ସୃଷ୍ଟି କଲେ । ସେ ତୃତୀୟ ଥର ପାଇଁ ଜଣେ ନାବିକ କ୍ୟାପଟେନ ପାଓ୍ବେଲଙ୍କୁ ବିବାହ କଲେ । ପାଓ୍ବେଲଙ୍କ ମୃତ୍ୟୁ ପରେ ମଧ ସେ ବଞ୍ଚିରହି ୧୮୪୦ ମାର୍ଚ୍ଚ ୧୯ରେ ମଲେ । ବେନ୍ ବରୋଜ ମୋତେ କହିଥିଲେ ଯେ ୪ର୍ଥ ଥର ବିବାହ ପାଇଁ ସେ ଇଚ୍ଛୁକ ଥିଲେ କିନ୍ତୁ ତାଙ୍କ ସନ୍ତାନ ଓ ନାତିନାତୁଣୀମାନେ ବହୁ କଷ୍ଟରେ ତାଙ୍କୁ ନିବୃତ୍ତ କରାଇଲେ । ସମସ୍ତ ସମ୍ପତ୍ତି ତାଙ୍କ ନାମରେ ଥିବାରୁ ସେ ସ୍ୱଚ୍ଛଳ ଅବସ୍ଥାରେ ହିଲଫୋର୍ଡ ହାଉସଠାରେ ରହୁଥିଲେ । ସେ ସାମାଜିକ ସମ୍ପର୍କ ଭଲ ପାଉଥିଲେ ଓ ବଡ଼ ବଡ଼ ଭୋଜି ଦେଉଥିଲେ । କ୍ଲିଫଟନ ସମାଜରେ ତାଙ୍କର ସ୍ଥାନ ଉଚ୍ଚରେ ଥିଲା । ସେ ଜଣେ ଦୀର୍ଘାଙ୍ଗୀ, ରୁକ୍ଷ ସ୍ୱଭାବର ନାରୀ ଥିଲେ ବୋଲି ଶୁଣିଛି । ବାପା ତାଙ୍କୁ କହୁଥିଲେ 'ଅନ୍ତର୍ବାସ ତଳର ସୈନିକା ।' ସେ ତାଙ୍କ ପୁଅ, ମୋ ଜେଜେବାପାଙ୍କୁ ଡୋରସେଟସାୟାର ସେରବୋର୍ଣ୍ଣ ଗ୍ରାମାର ସ୍କୁଲକୁ ପଠାଇଲେ । ସେଠାରୁ ସେ ଆକ୍ସଫୋଡ଼ର ଏକସେଟର କଲେଜକୁ ଗଲେ ଓ ପରେ ଲିଙ୍କନ କଲେଜକୁ ଚାଲିଆସିଲେ । ଏଇଠି ତାଙ୍କ ଚରିତ୍ରରେ ବିକୃତି ଓ ଉତ୍ତେଜନା ଦେଖାଦେଲା । ସେ ପର୍ଯ୍ୟନ୍ତ ବି.ଏ. ସ୍ନାତକ ପରୀକ୍ଷାସବୁ ପ୍ରତ୍ୟେକ କଲେଜରେ ଅଲଗା ହେଉଥିଲା କିନ୍ତୁ ସେ ସମୟରୁ ନୂତନ ନିୟମ ଅନୁଯାୟୀ ବିଶ୍ୱବିଦ୍ୟାଳୟ ଦ୍ୱାରା ପରୀକ୍ଷା କରାଗଲା ଓ ସ୍ନାତକ ଉପାଧି ପ୍ରଦାନ କରାଗଲା । ଅନେକ କଲେଜର ମୁଖ୍ୟ, ବିଶେଷକରି ଲିଙ୍କନ୍‌ର ରେକ୍ଟର ଏହି ପରିବର୍ତ୍ତନର ପ୍ରବଳ ପ୍ରତିବାଦ କଲେ । ପ୍ରଚାର ହେଲା ଯେ ପରୀକ୍ଷକମାନେ ଆବାଧ କଲେଜର ଛାତ୍ରମାନଙ୍କ ବିରୋଧରେ ପକ୍ଷପାତ କରିବେ । ଖୁବ୍ ଅଶାନ୍ତି ସୃଷ୍ଟି ହେଲା । ମୋ ଜେଜେବାପା ସ୍ୱଭାବତଃ ଏଥିରେ ଖୁବ୍ ଉତ୍ତେଜିତ ଥିଲେ । ରାଗରେ ତାତି ସେ କଲେଜ ଯାଉଥିଲେ ଏବଂ ସବୁଥିରେ କେବଳ ଅନ୍ୟାୟ ହେଉଛି ବୋଲି ଭାବୁଥିଲେ । ଉଚ୍ଚାଙ୍ଗ ସାହିତ୍ୟର ଉଚ୍ଚମାନ ପରୀକ୍ଷାରେ ତାଙ୍କ ପାଇଁ ଆରିଷ୍ଟୋଟଲ୍‌ରୁ ପଡ଼ିଥିଲା । ପରେ ସେ ବହୁବାର କହିଛନ୍ତି ଯେ ଏଇ ପ୍ରଶ୍ନ ଉପରେ ତାଙ୍କର ପୂର୍ଣ୍ଣ ଦକ୍ଷତା ଥିଲା । ମନେହୁଏ ପରୀକ୍ଷକମାନେ ଆରିଷ୍ଟଟଲଙ୍କ ଲେଖାର ଅଂଶବିଶେଷ ପରୀକ୍ଷାମୂଳକ ଭାବରେ ପ୍ରଶ୍ନ ପକାଇଥିଲେ । ସେସବୁରେ ସେ ସନ୍ତୋଷଜନକ ଭାବରେ ଉତ୍ତୀର୍ଣ୍ଣ ହୋଇଯିବାରୁ ସେଇ ପରୀକ୍ଷାପାଇଁ ଉଦ୍ଦିଷ୍ଟ ନ ଥିବା କେତେକ ଅଂଶରୁ ତାଙ୍କୁ ପ୍ରଶ୍ନ ଦିଆଗଲା । ସେ ଭାବିଲେ ଯେ ସେ ଲିଙ୍କନର ଛାତ୍ର ହୋଇଥିବାରୁ ତାଙ୍କୁ ଫେଲ୍ କରାଇବା ପାଇଁ ଏପରି କରାହେଉଛି । ତେଣୁ ସେ ପରୀକ୍ଷା ଦେବାକୁ ମନା କରିଦେଇ, ପରୀକ୍ଷକଙ୍କ ଉପରକୁ ବହିପତ୍ର ଫିଙ୍ଗି ଗୁଡ଼ାଏ ଗାଳିଗୁଲଜ କରି ହଲ୍‌ରୁ ବାହାରି ଆସିଲେ ବୋଲି କହୁଥିଲେ । ଏଥିପାଇଁ ସେ ଦଣ୍ଡିତ ହୋଇଥିବାର ପ୍ରମାଣ ମିଳେ ନାହିଁ, କିନ୍ତୁ ୧୮୦୬ର ଶ୍ରେଣୀ ତାଲିକାରେ ତାଙ୍କ ନାମ ଉଚ୍ଚାଙ୍ଗ ସାହିତ୍ୟର ୨ୟ ଶ୍ରେଣୀରେ ବାହାରିଥିଲା । ସେ ସର୍ବଦା ଜୋର ଦେଇ କହୁଥିଲେ ଯେ, ସେ ବର୍ଷ ପ୍ରଥମ ଶ୍ରେଣୀ ପାଇଥିବା ସାର ରବର୍ଟ ପିଲ୍ ଓ ଅନ୍ୟାନ୍ୟମାନଙ୍କଠାରୁ ସେ ପ୍ରବୀଣ ଥିଲେ ମଧ ଉପରୋକ୍ତ କାରଣରୁ ତାଙ୍କୁ ପ୍ରଥମ ଶ୍ରେଣୀରୁ ବଞ୍ଚିତ କରାଗଲା ।

ବାପା ମୋତେ କହୁଥିଲେ ଯେ ସେ ସମୟରେ ଏ ଘଟଣା ଖୁବ୍ ଜଣାଶୁଣା ଥିଲା ଓ ସେ ନିଜେ ଜେଜେବାପା ଓ ସାମସମୟିକ ଅନେକ ଲୋକଙ୍କୁ ପଚାରି ଏହାର ସତ୍ୟତା ଜାଣିପାରିଥିଲେ । ଏହାପରେ ସେ ଲିଙ୍କନସ୍ ଇନ୍‌କୁ ଗଲେ ଏବଂ ଯଥାସମୟରେ ୧୮୧୧ରେ ଓକିଲାତି ପାଇଁ ଡାକରା ପାଇଲେ ।

ଅକ୍ଳାନ୍ତ ପରିଶ୍ରମ ଓ ବିଚକ୍ଷଣ ବୁଦ୍ଧି ଫଳରେ ସେ ବ୍ୟବସାୟରେ ଶୀଘ୍ର ଉନ୍ନତି କଲେ ମଧ୍ୟ ସେ ଅତ୍ୟନ୍ତ କ୍ରୋଧୀ ଥିଲେ । ଜଣେ ନିରପେକ୍ଷ ଡ୍ରାଫଟ୍‌ଲେଖାଳି ଓ ବ୍ୟକ୍ତିଗତ ପରାମର୍ଶଦାତା ଭାବରେ ସେ ପ୍ରସିଦ୍ଧ ଥିଲେ । ଓକିଲ ଭାବରେ ବେଶି ସୁନାମ ତାଙ୍କର ନ ଥିଲା । କ୍ରୋଧ ଓ ରୁକ୍ଷତା ଫଳରେ ବିଚାରପତିମାନଙ୍କଠାରେ ସେ ଅପ୍ରିୟ ଥିଲେ । 'କ୍ରୋଧୀ ବୀମ୍‌ସ' ନାମରେ ଏକ ଡାକନାମ ସେ ଅର୍ଜନ କରିଥିଲେ । ତାଙ୍କ ବିଷୟରେ ପ୍ରସିଦ୍ଧ ଜନ୍‌ଡୋଏଲ୍‌ଙ୍କ ଅଙ୍କିତ ଏକ ବ୍ୟଙ୍ଗଚିତ୍ର ଅଛି । ସେଥିରେ ଦେଖାଯାଇଛି ଯେ ସେତେବେଳେ ତିଆରି ହେଉଥିବା ଲିଙ୍କନସ୍‌ଇନ୍‌ର ନୂତନ ହଲଘରେ ଛକିବାଗରେ ଦିଆଯାଇଥିବା କଡ଼ିକାଠ (Cross beam) ତଳେ ଓକିଲଙ୍କ ଗାଉନ୍ ପିନ୍ଧି ସେ ଠିଆ ହୋଇଛନ୍ତି; ତଳେ ଲେଖା ହୋଇଛି କ୍ରସ୍ ବିମ୍‌ସ (ଇଂରାଜୀରେ କ୍ରସ୍ ଅର୍ଥ କ୍ରୋଧୀ ହୋଇଥିବାରୁ ଏହି ଚିତ୍ରରେ ୪ର୍ଥ ଜନ୍ ବୀମ୍‌ସଙ୍କୁ ବ୍ୟଙ୍ଗ କରାଯାଇଛି) ଏହି ଛବିପାଇଁ ସେ ଗର୍ବ ଅନୁଭବ କରୁଥିଲେ ଏବଂ ତାହାକୁ ନିଜଘରେ ଟାଙ୍ଗିଥିଲେ । ଛୁଟି ସମୟରେ ସେ ତାଙ୍କ ମା'ଙ୍କ ସହ ହିଲଫୋଡ୍ ହାଉସରେ ରହୁଥିଲେ । ତାଙ୍କ ସଙ୍ଗେ ତାଙ୍କର ବାରମ୍ବାର କଳହ ହେଉଥିଲା । ବ୍ରିଷ୍ଟଲଠାରୁ ବାର ମାଇଲ ଦକ୍ଷିଣରେ ଯେଉଁ ଘରେ ଓ ଜମିଦାରୀରେ ସେ ରହୁଥିଲେ ତାହା ଏ ପର୍ଯ୍ୟନ୍ତ ଆମ ପରିବାରର ଅଛି । ସେ ରୟାଲ୍ ବ୍ରିଷ୍ଟଲ୍ ସ୍ୱେଚ୍ଛାସେବୀ ବାହିନୀର ଅଫିସର୍ ଥିଲେ । ସେତେବେଳେ ୟୁରୋପ ଯୁଦ୍ଧ ଖୁବ୍ ଜୋରରେ ଚାଲିଥାଏ ଏବଂ ରାଜ୍ୟର ବିଭିନ୍ନ ଅଞ୍ଚଳରେ ଏହି ବାହିନୀମାନ ଗଠିତ ହେଉଥାଏ । ସମ୍ଭବତଃ ୧୮୧୧ ପୂର୍ବରୁ ସେ ତାଙ୍କର ପ୍ରଥମା ପତ୍ନୀ ମେରୀ କୋଲିନସ୍‌ଙ୍କୁ ବିବାହ କରିଥିଲେ । ମୁଁ ଶୁଣିଛି ସେ ଥିଲେ ଖୁବ୍ ସୁନ୍ଦରୀ, ସ୍ୱାମୀ ଅନୁରକ୍ତା, କ୍ଷୀଣାଙ୍ଗୀ ଏବଂ ଉତ୍ସବ ଆମୋଦପ୍ରିୟତା ହେତୁ ସ୍ୱାସ୍ଥ୍ୟ ପ୍ରତି ଅଯତ୍ନଶୀଳା । ତାଙ୍କର ସମ୍ପର୍କୀୟ ଜଣେ ଡାକ୍ତର ଭାଇ ତାଙ୍କୁ ଅତ୍ୟଧିକ ପରିଶ୍ରମ, ନୃତ୍ୟ ଓ ଉତ୍ସବରେ ନ ମାତିବା ପାଇଁ ସତର୍କ କରାଇଦେଇଥିଲେ; କିନ୍ତୁ କେହି ଏଥିପ୍ରତି କର୍ଣ୍ଣପାତ କଲେ ନାହିଁ । ଦିନେ ସନ୍ଧ୍ୟାବେଳେ ହିଲଫୋଡ୍ ହାଉସଠାରେ ଏକ ଭୋଜିବେଳେ ଏକ ଧମନୀ ଛିଡ଼ିଯାଇ ସେ ଶଯ୍ୟାଶାୟିନୀ ହେଲେ ଏବଂ ଅଳ୍ପ କେତେ ଘଣ୍ଟାରେ ମରିଗଲେ । ବର୍ଷକରୁ କିଛି ଅଧିକ ବୈବାହିକ ଜୀବନରେ ତାଙ୍କର କୌଣସି ସନ୍ତାନ ନ ଥିଲା । ମନେହୁଏ ଜେଜେବାପା ଏହି ବିଚ୍ଛେଦ ଗଭୀରଭାବରେ ଅନୁଭବ କରିଥିଲେ କିନ୍ତୁ ତାଙ୍କ ବିଷୟ କେବେ ଉଠାଇ ନ ଥିଲେ କିମ୍ବା ନିଜ ମୃତ୍ୟୁ ବେଳେ ମଧ୍ୟ ତାଙ୍କ ସମ୍ପର୍କରେ କିଛି ସୂଚନା ଦେଇଯାଇ ନ ଥିଲେ; କେତେକ ପୁରୁଣା ବହିରେ 'ମେରୀ କୋଲିନସ୍' ନାମ ଲେଖାଥିଲା ମାତ୍ର । ବର୍ଷେ ପରେ ଜେଜେବାପା ପୁଣି ବିବାହ କଲେ ଗ୍ରିନ୍‌ଉଇଚର ଚିକିତ୍ସକ ଡ : ଥୋମାସ୍ କାରନାରଭନ୍‌ଙ୍କ ଏକମାତ୍ର କନ୍ୟା ଓ ଉତ୍ତରାଧିକାରିଣୀ ମେରୀ ପିଅରସନଙ୍କୁ । ସେ ବ୍ୟକ୍ତି ୟର୍କର ଜଣେ ଚିକିତ୍ସକ ଜନ ପିଅରସନଙ୍କ କନ୍ୟା ଜିନ୍ ପିଅରସନଙ୍କୁ ବିବାହ କରିଥିଲେ । ଜନ୍ ପିଅରସନଙ୍କ ସ୍ତ୍ରୀ

ଏଲିଜାବେଥ୍ ହେଉଛନ୍ତି ୟର୍କସାୟାର ପରିବାରର ଅବଶେଷ ସାର୍ ହରକୁଲସ ବକ୍‌ଙ୍କ ଉତ୍ତରାଧିକାରିଣୀ । ସେହି ପରିବାର ବଂଶ ପରମ୍ପରା ଅଦ୍ଭୁତ ଖ୍ରୀଷ୍ଟିଆନ୍ ନାମ ସବୁ ବହନ କରୁଥିଲେ । ବକ୍‌ଙ୍କର ସେହି ସମ୍ପତ୍ତି ତାଙ୍କ କନ୍ୟା ଶ୍ରୀମତୀ ପିଅରସନ୍, ତାଙ୍କ କନ୍ୟା ଶ୍ରୀମତୀ କାରନାରଭନ ଏବଂ ତାଙ୍କ କନ୍ୟାଙ୍କ ମାଧ୍ୟମରେ ଆମ ପରିବାରକୁ ଆସିଲା । ଭୂସମ୍ପତ୍ତି ସମ୍ଭବତଃ ସବୁ ବିକ୍ରି ହୋଇଯାଇଥିଲା; କିନ୍ତୁ କୁମାରୀ କରନାରନଭ୍ ଜେଜେବାପାଙ୍କ ପାଇଁ ଇଷ୍ଟଇଣ୍ଡିଆ ଷ୍ଟକ୍‌ରେ ଥିବା ୩୬,୦୦୦ ପାଉଣ୍ଡ ଆଣିଥିଲେ ଏବଂ କେତେକ ଜାଗାରେ ଥିବା ଘରବାଡ଼ି ମଧ୍ୟ । ଡ: କରନାର୍‌ଭନ୍‌ଙ୍କ ଏକ ବିରାଟ ତୈଳଚିତ୍ର ବାସଲେର ଭୋଜନକକ୍ଷରେ ଥିଲା । ତାହା ଜଣେ ଗେଡ଼ା, ଗୋଲ ମାଖୁନା ମୁହଁ, କ୍ଷୀଣଶରୀର, ନୀଳଚକ୍ଷୁ ଓ ଗୁଣ୍ଡମଖାବାଳରେ ମୁଣ୍ଡପଛରେ ଗଣ୍ଠି ପଡ଼ିଥିବା ବ୍ୟକ୍ତିର । ବିରାଟ ଲାଲ କୋଟରେ ଇସ୍ପାତର ବୋତାମ ଲାଗିଛି ଏବଂ ଛାତି ଉପରେ କୁଞ୍ଚକରା ଫିତା ଝୁଲୁଚି । ମୋ ଭାଇ ହ୍ୟାରୀ ଓ ଦ୍ୱିତୀୟ ପୁଅ ଫ୍ରେଡ଼େରିକର ତାଙ୍କ ସହ ଖୁବ୍ ସୌସାଦୃଶ୍ୟ ଅଛି ଏବଂ ମୋର ଅନେକ ନାତିନାତୁଣୀଙ୍କଠାରେ ମୁଁ ସେଇ ସାଦୃଶ୍ୟ ଖୋଜୁଛି ।

ବୃଦ୍ଧ କାରନାରଭନ୍ ଓ ମୋ ଜେଜେବାପା ଥିଲେ ଏକାଭଳି କଡ଼ା ମିଜାଜର ଏବଂ ସର୍ବଦା କଳି କରୁଥିଲେ, ବିଶେଷ କରି ଆର୍ଥିକ ବିଷୟରେ । କଳି ଏତେ ବଢ଼ିଲା ଯେ ତରୁଣ ଦମ୍ପତିଙ୍କ ବିବାହ ସମୟରେ ଯଦିଓ ସେମାନେ ଏକାଘରେ ରହିବା ସ୍ଥିର କରିଥିଲେ ତାହା ଆଉ ଠିକ୍ ମନେ କଲେ ନାହିଁ । ମୋ ଜେଜେମା ତାଙ୍କ ମା ଶ୍ରୀମତୀ କାରନାରଭନ୍‌ଙ୍କ ପ୍ରତି ଖୁବ୍ ଆସକ୍ତ ଥିବାରୁ ଦୁଇ ମହିଳା ଅଲଗା ହେବା ପସନ୍ଦ କଲେ ନାହିଁ, ତେଣୁ ଏକ ସାଲିସ ହେଲା । ଡା: କାରନାରଭନ୍ କ୍ରୁମ୍‌ସହିଲ ଉପରେ ଥିବା ଲାଲ ଇଟାର ଏକ ବଡ଼ ଘରେ ରହିଲେ । ସେ ଘର ଉତ୍ତରମୁହାଁ କିନ୍ତୁ କିଛି ପୂର୍ବକୁ ଏକାଭଳି ବଡ଼ ଆଉ ଗୋଟିଏ ଲାଲଇଟାର ଦକ୍ଷିଣମୁହାଁ ଘର ଥିଲା । ତାଙ୍କର ସେ ଘରଟା ସେ ଜେଜେବାପାଙ୍କୁ ଦେଇଥିଲେ । ଜେଜେବାପା ସେଇଠି କେତେ ବର୍ଷ ଥିଲେ । ଉଚ୍ଚା ପାହାଡ଼ର ଗ୍ରିନ୍‌ଉଇଚ୍ ଆଡ଼କୁ ଥିବା ଢାଲୁରେ ଏବଂ ରେଞ୍ଜରସ୍ ଲଜ୍‌ର ବିପରୀତ ପଟରେ ଉଦ୍ୟାନ ପ୍ରାଚୀରର ବାହାର ପଟେ ଏ ଦୁଇଟି ଘର ।

ଏଇ ଘରେ ୧୮୧୫ ଫେବୃୟାରୀ ପହିଲାରେ ମୋ ବାପା ଥମାସ ବୀମ୍‌ସଙ୍କ ଜନ୍ମ । ଡ: କାରନାରଭନ୍‌ଙ୍କ ନାମରେ ସେ ନାମିତ ହେଲେ । ବଡ଼ପୁଅକୁ ଜନ୍ ବୋଲି ନାଁ ଦେବାର ଯେଉଁ ପାରିବାରିକ ପରମ୍ପରା ଥିଲା ସେଥିରେ ଏହା ଏକ ବ୍ୟତିକ୍ରମ ହେଲା । ଅନ୍ଧବିଶ୍ୱାସୀ ମନେ କରିବ ତାହାହିଁ ତାଙ୍କର ଦୁର୍ଭାଗ୍ୟ ଆଣିଲା । ସେଇ ଘରେ ୧୮୧୭ ଫେବୃୟାରୀ ୨୨ରେ କକା ୫ମ ଜନ୍ ଜନ୍ମ ହେଲେ । ଏ ବିବାହରୁ ଏ ଦୁଇଟି ପିଲା ହେଲେ । କକାଙ୍କ ଜନ୍ମପରେ କାରନାରଭନ୍ ମରିଗଲେ ଏବଂ ତାଙ୍କ ପତ୍ନୀ ଗ୍ରୀନଉଇଚ ଡାକ୍ତରଖାନା ପାଖ ଏକ ବଡ଼ ଘରକୁ ଚାଲିଗଲେ ଏବଂ ସେଠାରେ ଅନେକ ବର୍ଷ ରହିଲେ । ତାଙ୍କ ସହ କୁମାରୀ ସ୍ମିଥ୍ ନାମକ ଅଦ୍ଭୁତ ପ୍ରକାରର ଜଣେ ୟର୍କସାୟାର ବୃଦ୍ଧା ରହୁଥିଲେ । ସେ ଥିଲେ ମୋର ଧର୍ମମାତା ଏବଂ ୩୦ରୁ ଊର୍ଦ୍ଧ୍ୱବର୍ଷ ସେଠାରେ ରହି ମଲାବେଳକୁ ମୋ ନାଁରେ ଏକ ଇଚ୍ଛାପତ୍ର ରଖିଯାଇଥିଲେ । ବାପା ତାଙ୍କ ଜେଜେମାଙ୍କର ଅତି ପ୍ରିୟ ଥିଲେ ଏବଂ ଅଧିକାଂଶ ଛୁଟି ତାଙ୍କ ପାଖରେ କଟାଉଥିଲେ ।

ବାପାଙ୍କ ମୃତ୍ୟୁ ପରେ ମୋର ଭାରତରେ ଥିବା ସମୟରେ ଦୁର୍ଭାଗ୍ୟବଶତଃ ପୁସ୍ତକାଗାରଟି ସହ ତାଙ୍କର ସବୁ ବ୍ୟକ୍ତିଗତ କାଗଜପତ୍ର ନଷ୍ଟ ହୋଇଯିବାରୁ ମୁଁ ସବୁ ଘଟଣାର ସଠିକ୍ ତାରିଖ ଦେଇପାରୁନି । ବାପା ଓ ଜେଜେବାପାଙ୍କଠାରୁ ଯେପରି ଶୁଣିଛି ସେପରି କହୁଛି । ଯେଉଁ ଅଳ୍ପ କାଗଜପତ୍ର ପାଇଛି ସେଥିରୁ କେତୋଟି ମାତ୍ର ଘଟଣାର ସଠିକ ତାରିଖ ଦେବି ।

ପ୍ରାୟ ୧୮୧୮ରେ ଜେଜେବାପା ଗ୍ରିନହାଉସ ଘର ଛାଡ଼ି ୨୪ ବେଡ଼ଫୋର୍ଡ଼ଠାରେ ନିଜ ଘରେ ରହିଲେ, ଛୁଟି କଟାଉଥିଲେ ରିଙ୍ଗଟନଠାରେ । ଶିକାର କରିବାକୁ ସେ ଖୁବ୍ ଭଲ ପାଉଥିଲେ । ସେହି ଅଞ୍ଚଳରେ ଜେଜେମାଙ୍କର ଅନେକ ବନ୍ଧୁ ଥିଲେ । ସେମାନଙ୍କ ମଧ୍ୟରେ ଥିଲେ ହାନା ମୋର । ସେ ବାର୍ଲିଉଡ୍ ନିକଟରେ ରହୁଥିଲେ ଏବଂ ତାଙ୍କ ସମୟରେ ଥିଲେ ଜଣେ ପ୍ରସିଦ୍ଧ ଲେଖିକା, ବୋଧହୁଏ ବର୍ତ୍ତମାନ ବିସ୍ମୃତ । ଜେଜେମା ଥିଲେ ଉଚ୍ଚଶିକ୍ଷିତା, ସାହିତ୍ୟ ଓ କଳା ପ୍ରତି ଅନୁରକ୍ତା ଏବଂ ଲଣ୍ଡନର ସଂସ୍କୃତିସମ୍ପନ୍ନ ସମାଜଦ୍ୱାରା ପରିବେଷ୍ଟିତା । ଜେଜେବାପା ମଧ୍ୟ ଖୁବ୍ ପଢ଼ାପଢ଼ି କରିଥିଲେ ଏବଂ ମନର ସଂଯମ ଥିଲେ ଖୁବ୍ ସୁନ୍ଦର ଲୋକ ହୋଇ ଥାଆନ୍ତେ । ବୃଦ୍ଧ ବୟସରେ ମଧ୍ୟ ତାଙ୍କ କଥାବାର୍ତ୍ତାରେ ଖୁବ୍ ଆକର୍ଷଣ ଥିଲା । ବାପା ମୋତେ କହୁଥିଲେ ଯେ, ଯୁବକବେଳେ ସମାଜରେ ତାଙ୍କର ଖୁବ୍ ସୁନାମ ଥିଲା । ତାଙ୍କ ସ୍ତ୍ରୀଙ୍କ ଆଲବମ୍‌ରେ ସେ ଲେଖିଥିବା କେତେକ କବିତା ଏବେ ମଧ୍ୟ ମୋ ପାଖରେ ଅଛି । ସେଗୁଡ଼ିକ ଖୁବ୍ ସୁନ୍ଦର ଓ ଚାତୁର୍ଯ୍ୟପୂର୍ଣ୍ଣ ।

ବ୍ରିଷ୍ଟଲ ବାଟ ଦେଇ ଲଣ୍ଡନ ଯିବା ବାଟରେ ଜେଜେବାପା ନିୟମିତ ତାଙ୍କ ମା'ଙ୍କ ପାଖକୁ ଯାଉଥିଲେ ଏବଂ ସମ୍ପତ୍ତି ପରିଚାଳନା ସମ୍ପର୍କରେ ଏତେ କଳହ କରୁଥିଲେ ଯେ, ଜଣାଯାଏ ସେମାନଙ୍କ ମଧ୍ୟରେ ବିଶେଷ ଆନ୍ତରିକତା ନ ଥିଲା । ତାଙ୍କ ଭଉଣୀ ଶ୍ରୀମତୀ ବରୋ ଥିଲେ ଜଣେ ଖୁବ୍ ଧାର୍ମିକ ମହିଳା କିନ୍ତୁ ତାଙ୍କ ସାଙ୍ଗରେ ମଧ୍ୟ ତାଙ୍କର ଭଲ ସମ୍ପର୍କ ନ ଥିଲା । ତାଙ୍କୁ ସେ ସର୍ବଦା 'କପଟ ଭାଷିଣୀ ଜେଜେବେଲ' ବୋଲି କହୁଥିଲେ । ତାଙ୍କ ଶାଶୁ ଶ୍ରୀମତୀ କାରନାରଭନ୍ ମଧ୍ୟ ତାଙ୍କୁ ଆଦୌ ଭଲପାଉ ନ ଥିଲେ । ଅନେକ ସମୟରେ ରବିବାର ଦିନ ସ୍ତ୍ରୀଙ୍କୁ ଧରି ସେ ଗ୍ରୀନ୍‌ଉଇଚ୍ ଯାଇ ବୃଦ୍ଧାଙ୍କର ଦୁର୍ଦ୍ଦଶା ଆହୁରି ବଢ଼ାଇଦେଉଥିଲେ । ଯିବାର ଦିନକ ଆଗରୁ ଭୋଜିପାଇଁ ମାଛ, ଶିକାର ବା ହରିଣ ମାଂସ ପଠାଇ ଦେଉଥିଲେ ଏବଂ ଭଲରନ୍ଧା ହେଲା ନାହିଁ ବୋଲି ଖୁବ୍ ବିରକ୍ତ ହେଉଥିଲେ । ସେ ବହୁ ପରିମାଣରେ ଖାଉଥିଲେ କିନ୍ତୁ ପିଉଥିଲେ କମ୍; ବହୁ ପାନ କରାଯାଉଥିବା ସେ ଯୁଗରେ ସେପରି ଲୋକ କ୍ୱଚିତ୍ ଥିଲେ ।

ଏହି ପରିବେଶରେ ବାପାଙ୍କ ବାଲ୍ୟଜୀବନ କଟିଲା । ସେ ତାଙ୍କ ବାପାଙ୍କୁ କ୍ୱଚିତ୍ ଦେଖୁଥିଲେ ଲିଙ୍କନଇନ୍‌ରେ ଥିବା ଓଲଡ୍‌ସ୍କୋୟାର ଦୁଇନମ୍ବର କକ୍ଷରେ ସେ ଦିନକଯାକ ରହନ୍ତି । ସନ୍ଧ୍ୟାପରେ ଆସି ବହୁ ପରିମାଣରେ ଖାଇ, ଅଳ୍ପ କିଛି ବିଅର ପିଅନ୍ତି ଏବଂ ତାପରେ ଦୁଇଗ୍ଲାସ ହେବ ପୋଟର ପିଅନ୍ତି । ତାପରେ ପଢ଼ା ଘରକୁ ଯାଇ କବାଟ ବନ୍ଦକରି ଅଧିକାଂଶତଃ ଅଧରାତିଯାଏ ନିଜ କାଗଜପତ୍ରରେ ଲାଗନ୍ତି । ସୁସ୍ଥଶରୀର ଥିବାରୁ ପରଦିନ ଭୋରରୁ ସେହିପରି ସତେଜ ହୋଇ ଉଠନ୍ତି କିନ୍ତୁ ବଦ୍‌ରାଗୀ ଭାବ ମଧ୍ୟ ସେହିପରି ଥାଏ । ମୁଁ ଶୁଣିଛି ତାଙ୍କ ସମୟରେ ସେ ବାର୍ଷିକ ୫୦୦୦ ପାଉଣ୍ଡ ରୋଜଗାର କରୁଥିଲେ ଏବଂ ସେଥିରୁ ୨୦୦୦ ପାଉଣ୍ଡ ତାଙ୍କ

ସ୍ତ୍ରୀଙ୍କ ପାଖରେ ରହୁଥିଲା । ତେଣୁ ସେ ସମୟ ପାଇଁ ସେ ନିଶ୍ଚୟ ଥିଲେ ଧନୀ । ସେ ଥିଲେ ମଧ୍ୟମ ଉଚ୍ଚତା ଓ ଚଉଡ଼ା କାନ୍ଧ ବିଶିଷ୍ଟ ସବଳ ଶରୀର ବ୍ୟକ୍ତି, ତୀକ୍ଷ୍ଣ ରୌଦ୍ରଦଗ୍ଧ ମୁଖ, ଈଗଲପରି ନାକ, ବାଦାମୀ ବର୍ଣ୍ଣର ଶାଣିତ ଚକ୍ଷୁ, ଉଚ୍ଚ ଓ ଚଉଡ଼ା କପାଳ ଏବଂ ତର୍ଜନ ଭଙ୍ଗୀର ଏପରି ଏକ କ୍ରୋଧୀଭାବ ଯାହା ମୁଁ ଆଉ କାହାଠାରେ ଦେଖି ନାହିଁ, କିନ୍ତୁ କୌଣସି ବିଷୟରେ ସନ୍ତୁଷ୍ଟ ବା ଆଗ୍ରହୀ ଥିବାବେଳେ ତାଙ୍କ ମୁହଁ ଉଜ୍ଜ୍ୱଳ ହୋଇଉଠେ ଏବଂ କୁଟିଳ ରେଖାସବୁ ଲିଭିଯାଇ ସେ ଖୁବ୍ ସୁନ୍ଦର ଓ ବୁଦ୍ଧିମାନ୍ ଲୋକପରି ଦେଖାଯାନ୍ତି । ଜେଜେମା ତାଙ୍କ ଛବିରୁ ବିଶେଷ ସୁନ୍ଦର ଦେଖାଯାନ୍ତି ନାହିଁ । ସେ ଥିଲେ ବିରାଟକାୟା, ନିଦା ଗୋଲାକାର ଶରୀର ବିଶିଷ୍ଟ ଏବଂ ଜଣେ ବିରାଟ ଭୟଙ୍କର ବୃଦ୍ଧା ରୂପେ ପରିଚିତା । ବାପା କିନ୍ତୁ କହୁଥିଲେ ଯେ ସେ ଥିଲେ ଜଣେ ନମ୍ର, ଭଦ୍ର, ସଂସ୍କୃତିସମ୍ପନ୍ନା, କମନୀୟାଙ୍ଗୀ ନାରୀ । ଅବଶ୍ୟ ସେ ସ୍ୱୀକାର କରୁଥିଲେ ଯେ ସେ ଥିଲେ ବଦଖର୍ଚ୍ଚୀ, ଲୋକଦେଖାଣିଆ ଦାସୀ, ପୋଷାକ ଓ ଉପକରଣରେ ଆଗ୍ରହୀ ।

୧୮୨୨ରେ ବାପା ଡେଲାଫୋସ୍ ନାମକ ଜଣେ ବ୍ୟକ୍ତିଙ୍କ ଦ୍ୱାରା ପରିଚାଳିତ ରିଚମଣ୍ଡ ଗ୍ରୀନ ଉପରେ ଥିବା ଏକ ସ୍କୁଲକୁ ପଠାଗଲେ । ତାଙ୍କ ପରେ ପ୍ରସିଦ୍ଧ ପରିବ୍ରାଜକ ସାର୍ ରିଚାର୍ଡ଼ ବରଟନ୍ ମଧ୍ୟ ସେଇ ସ୍କୁଲରେ ପଢୁଥିଲେ ବୋଲି ମୁଁ ପରେ ପରେ ଜାଣିଲି । ସ୍କୁଲଟି ଏବେ ୧୮୬୮ରେ ମଧ୍ୟ ଅଛି କିନ୍ତୁ ତା ନାଁ ହୋଇଛି 'କଲେଜିଏଟ ଇନଷ୍ଟିଚ୍ୟୁଟ' ମିଲଟନ ଯାହାକୁ କହିଥାଆନ୍ତେ 'ଅତି ଜଣାଶୁଣା ପୁରୁଣା ସ୍କୁଲ' । ବର୍ଷେ ଦୁଇବର୍ଷ ପରେ ମୋ କକା ମଧ୍ୟ ସେଠାକୁ ଗଲେ । ଡେଲ୍‌ଫୋସ୍‌ଙ୍କ ପାଖରେ ପିଲାମାନେ ବିଶେଷ କିଛି ଶିଖିପାରିଲେ ନାହିଁ ଏବଂ ୧୮୨୪ରେ ସେମାନେ ଉଇଞ୍ଚେଷ୍ଟରକୁ ପଠାହେଲେ । ସେତେବେଳେ ସେ ସ୍କୁଲର ହେଡ୍‌ମାଷ୍ଟର ଥିଲେ ଡା:ଉଇଲିଅମ୍, ପରେ ସେ ହେଲେ ନ୍ୟୁ କଲେଜର ଓ୍ୟାଡେନ । ବାପା ଅତ୍ୟନ୍ତ ଶ୍ରଦ୍ଧା ଓ ଭକ୍ତିର ସହ ତାଙ୍କ କଥା କହୁଥିଲେ । ସେଠାରେ ଥିବା ବାଜେ ଖଟଣି ଓ ଅନ୍ୟାନ୍ୟ ରୁକ୍ଷତା ସତ୍ତ୍ୱେ ଆଠବର୍ଷ କାଳ ସେ ସେଠାରେ କଟାଇଲେ । ସେଭଳି ଏକ ମହାନ୍ ସ୍କୁଲର ଛାତ୍ର ହୋଇଥିବାରୁ ସେ ଗର୍ବ ଅନୁଭବ କରୁଥିଲେ ।

ଏହି ସ୍କୁଲକୁ ବାଛିବା ହେଉଛି ଜେଜେବାପାଙ୍କ ହାମ୍ପସାୟାର ଯିବା ଯୋଜନାର ଏକ ଅଂଶ, ଯାହାକି ଏହି ସମୟରେ କାର୍ଯ୍ୟକାରୀ ହେଲା । ବୃଦ୍ଧା ଶ୍ରୀମତୀ କାରନାଭରନ ଗ୍ରୀଷ୍ମକାଳଟା ସାଉଦାମ୍ପଟନରେ କାଟିବାକୁ ଭଲ ପାଉଥିଲେ । ସେତେବେଳେ ତାହା ସମୁଦ୍ର ତଟର ଏକ ଶାନ୍ତ ସହର ଥିଲା ଏବଂ ଜେଜେବାପା ବେଳେ ବେଳେ ତାଙ୍କ ସ୍ତ୍ରୀଙ୍କୁ ନେଇ ଶାଶୁଙ୍କ ପାଖରେ ରହିବାକୁ ଯାଉଥିଲେ । ଥରେ ଗ୍ରୀଷ୍ମକାଳରେ ସେ ତାଙ୍କୁ ସେଠାରେ ଛାଡ଼ିଦେଲେ, ମୁଁ ଭାବୁଛି ୧୮୨୫ କି ୧୮୨୬ ହେବ ଏବଂ ନିଜେ ଶିକାର ପାଇଁ କାଓସ୍ଲିପ ଲଜ୍‌କୁ ଚାଲିଗଲେ । ଏହାର ଅଳ୍ପ କିଛି ପୂର୍ବରୁ ତାଙ୍କର ଉପପିତା କାପଟେନ ପାଓ୍ୱେଲ ପକ୍ଷାଘାତଗ୍ରସ୍ତ ହୋଇ ପଡ଼ିଥିଲେ ଏବଂ ଅଳ୍ପ ସୁସ୍ଥ ହେବାପରେ ଏକ ଇଚ୍ଛାପତ୍ର କରିବା ଇଚ୍ଛା ପ୍ରକାଶ କଲେ । ଏଥିପାଇଁ ସେ ମୋ ଜେଜେବାପାଙ୍କ ପରାମର୍ଶ ନେଲେ । କିନ୍ତୁ ବରୋଜ ପରିବାରର ୧୫ରୁ ୨୦ବର୍ଷର ପିଲା ଉଇଲିୟମ, ଜନ୍, ବେନ, ଡିକ୍ ଭାବିଲେ ଯେ ଜେଜେବାପା ସେମାନଙ୍କ ବାପାମାଙ୍କୁ ଫୁସ୍‌ଲାଇ

ଇଚ୍ଛାପତ୍ରରେ ନିଜ ନାମରେ ସମସ୍ତ ସମ୍ପତ୍ତି କରିନେବାକୁ ଚେଷ୍ଟା କରୁଛନ୍ତି । ସେମାନେ ସେ କୋଠରି ଭିତରକୁ ପଶିଯାଇ ଗୋଇଠା ଧକ୍‌କା ମାରି ତାଙ୍କୁ ତଳ ମହଲାକୁ ବାହାର କରି ଆଣିଲେ— ଏହା ସେମାନେ ନିଜେ କହିଲେ । ସେମାନଙ୍କ ବାପା ଡ. ବରୋଜ କିଛି ବର୍ଷ ପୂର୍ବରୁ ୧୮୨୩ରେ ମରିଯାଇଥିଲେ ଏବଂ ଏହି ପିଲାମାନେ ସେମାନଙ୍କ ମା'ଙ୍କ ସ୍ମୃତି ରକ୍ଷାକରିବା ନିଜ ଦାୟିତ୍ୱ ବୋଲି ବିଚାର କଲେ । ଜେଜେବାପା କେବଳ ସଚ୍ଚୋଟ ପରାମର୍ଶ ଦେଉଥିଲେ କି ସେ ପିଲାମାନେ ମନେକଲାପରି ଏତେ ନୀଚକାର୍ଯ୍ୟ କରୁଥିଲେ ତାହା ମୁଁ ଜାଣିପାରି ନାହିଁ । କିନ୍ତୁ ଏହା ସତ ଯେ ସେମାନେ ଜେଜେବାପାଙ୍କୁ ହିଲଫୋର୍ଡ଼ ହାଉସରୁ ତଡ଼ିଦେଲେ ଏବଂ ଆଉ ସେ ସେମାନଙ୍କୁ, ସେ ଜାଗା ଓ ତାଙ୍କ ମା ଓ ଭଉଣୀଙ୍କୁ ଜମା ଦେଖି ନାହାନ୍ତି । ସେମାନେ ସମସ୍ତେ ପଇସାପତ୍ର ପାଇଁ ଜେଜେବାପାଙ୍କ ସହ ଏତେ କଳି କରୁଥିଲେ ଯେ ଏ ଧରଣର ଭୟଙ୍କର କାଣ୍ଡ ଓ ସେ ସମ୍ପର୍କୀୟ ବହୁ ବର୍ଣ୍ଣିତ ଗପ ଶୁଣି କେହି ଆଶ୍ଚର୍ଯ୍ୟ ହେବେ ନାହିଁ ।

ଜେଜେବାପା କାଓସ୍ଲିପ୍ ଲଜକୁ ଚାଲି ଆସିଥିଲେ କିନ୍ତୁ ଦିନେ ଦୁଇଦିନ ପରେ ଦିନେ ସକାଳେ ବ୍ରିଷ୍ଟଲରୁ ଏକ ଚିଠି ପାଇ ଏତେ ରାଗିଗଲେ ଯେ ସାଙ୍ଗେ ସାଙ୍ଗେ ତାଙ୍କ ଏକଘୋଡ଼ିଆ ଗାଡ଼ି ମଗାଇ ସକାଳ ଖାଇବା ନ ଛୁଇଁ, ଚପଲ ପିନ୍ଧିଥିବା ଅବସ୍ଥାରେ ବାହାରି ପଡ଼ିଲେ । ତାଙ୍କ ମଦ୍ୟପ୍ରସ୍ତୁତକାରୀ ବୁଢ଼ା ଜେମସ୍ ତାଙ୍କ ଜୋତାକୁ ଧରି ତାଙ୍କ ପଛରେ ଦଉଡ଼ିଲା, କିନ୍ତୁ ତାଙ୍କୁ ଅଟକାଇ ସେ ହଳକ ତାଙ୍କ ଗୋଡ଼ରେ ପିନ୍ଧାଇବାକୁ ତାକୁ ବହୁତ ଦଉଡ଼ିବାକୁ ପଡ଼ିଲା । ସେ ତାଙ୍କ ସ୍ତ୍ରୀଙ୍କୁ ଦେଖା କରିବାକୁ ସାଉଦାମ୍ପଟନ ଯିବାକୁ ଇଚ୍ଛା କରିଥିଲେ ଏବଂ ବାଟରେ ନ୍ୟୁ ଫରେଷ୍ଟରେ ଗୋଟିଏ ଛୋଟିଆ ଜମିଦାରୀ ବିକ୍ରି ହେଉଥିବା ଶୁଣିଲେ । ତାହା ତାଙ୍କ ଯିବାବାଟରେ ପଡୁନଥିଲେ ମଧ ତାହା ଦେଖିବାପାଇଁ ସେ ସେହି ବାଟ ଦେଇ ବୁଲିଗଲେ ଏବଂ ତାହା ଦେଖି ଏତେ ସନ୍ତୁଷ୍ଟ ହୋଇଗଲେ ଯେ ଶେଷରେ ତାକୁ କିଣିଦେଲେ । ସେଇଠାରେ ସେ ରହିଲେ ଓ ମଲେ । ଏହାର ନାମ ବାସଲେ ଲଜ୍ । ଧଳାରଙ୍ଗ ଦିଆ ଏହି ଅନୁଚ୍ଚ ଦୋମହଲା ଘରଟିରେ ଥିଲା ଗୋଟିଆ ଗୋଥିକ ଶୈଳୀର ଝରକା, ବାରଣ୍ଡାରେ ଦୁଇଟି ତିନିକୋଣୀ କାନ୍ଥ ଓ ପ୍ରତ୍ୟେକରେ ଗୋଟିଏ ଲେଖାଏଁ କାଠର କ୍ରୁଶ, ସମୁଦାୟ ଦୃଶ୍ୟଟା ଲଣ୍ଡନରେ ପ୍ରଚଳିତ ଗୋଥିକ ଶୈଳୀର ଭ୍ରାନ୍ତି ସୃଷ୍ଟି କରୁଥିଲା । ଆଗପଟଯାକ ଗୋଲାପ ଓ ମିରଟଲ ଗଛ ଭର୍ତ୍ତି ହୋଇଥିବାରୁ ଗୃହର ଅଂଶକମାତ୍ର ଦେଖାଯାଉଥିଲା । ଏଥିରେ ଥିଲା ୧୮୨ ଏକରର ପଡ଼ିଆ ଭୂମି, ସୁସଜ୍ଜିତ ଭୂଭାଗ । ଦୁଇଟି ସୁନ୍ଦର ଉଦ୍ୟାନପଥ ଏଠାକୁ ପଡ଼ିଥିଲା— ପ୍ରତ୍ୟେକଟି ଅଧମାଇଲିଏ ଲମ୍ୱ ବୋଲି ଶୁଣିଥିଲି କିନ୍ତୁ କେବେ ମାପି ନାହିଁ । ସୋଲେଣ୍ଟ ନଦୀର ଆରପଟେ, ଦୂରରେ ନିଡ଼ଲସ୍ ଓ ୱାଇଟ ଦ୍ୱୀପର ଦୃଶ୍ୟ ଖୁବ୍ ଚମତ୍କାର ଦିଶୁଥିଲା । ଭିତରର ଅନୁଚ୍ଚ ଛୋଟ ଛୋଟ କୋଠରିରେ ଚଳିବା ଥିଲା ଅସୁବିଧାଜନକ କିନ୍ତୁ ଜେଜେମା ସେଗୁଡ଼ିକୁ ସେ ସମୟର ମହାର୍ଘ ଭଙ୍ଗୀରେ ସଜେଇଥିଲେ— ମୂଲ୍ୟବାନ୍ କିନ୍ତୁ ରୁଚିହୀନ । ଯାହାହେଉ ସଂଗୃହୀତ ବହି ଓ ଚୀନାମାଟି ଜିନିଷଗୁଡ଼ିକ ଥିଲା ମୂଲ୍ୟବାନ୍ ଓ ସୁନ୍ଦର ।

୧୮୩୨ ଅଗଷ୍ଟ ୧୫ରେ ଜେଜେବାପା ରାଜପରାମର୍ଶଦାତା ଓ ଲିଙ୍କନଇନ୍‌ର ସଭ୍ୟରୂପେ ନିଯୁକ୍ତି ପାଇଲେ । ସେଇବର୍ଷ ସେ ପ୍ରଧାନଶିକ୍ଷକଙ୍କ ବାରଣ ସତ୍ତ୍ୱେ, ବାପାଙ୍କୁ ମାତ୍ର

ସତର ବର୍ଷ ବୟସରେ ଉଇନ୍‌ଚେଷ୍ଟରରୁ ନେଇ ଅକ୍‌ସଫୋର୍ଡ଼ ପଠାଇବା ପାଇଁ ଜୋର ଦେଲେ । ବାପା ଲିଙ୍କନଇନ୍ କଲେଜରେ ନାଁ ଲେଖାଇ ପ୍ରଚୁର ସମୟ ନଷ୍ଟ କଲେ । ସେ ଶିକାର ଓ ମୁଷ୍ଟିଯୁଦ୍ଧ ଅଭ୍ୟାସ କଲେ ଯାହାକି ପରବର୍ତ୍ତୀ କାଳରେ ସେ ସମୟର ସବୁଠାରୁ ସୌଖୀନ କ୍ରୀଡ଼ାରୂପେ ଗଣାହେଉଥିଲା । ନିଜର ପୋଷାକପତ୍ର ବିଷୟରେ ମଧ ସେ ଏହି ସମୟରେ ଖୁବ୍ ସଚେତନ ଥିବା ଜଣାପଡ଼େ । ଦରଜି ଦୋକାନ ଖର୍ଚ୍ଚ ବହୁତ ହେଲା । ସେତେବେଳର ସ୍ନାତକ ଛାତ୍ର ଚକ୍‌ଚକ୍ କନାର ଗଳାବନ୍ଧ ଓ ହାତମୋଜାକୁ ନେଇ ଗର୍ବ କିଣୁଥିଲେ । ନିଜେ ପରିମିତ ପରିମାଣ ମଦ୍ୟପାନ କରୁଥିଲେ ମଧ ଯଥେଷ୍ଟ ପରିମାଣରେ ପୋର୍ଟ ଓ ଶେରୀ କିଣୁଥିଲେ । ଏହି ଦୁଇ ପ୍ରକାର ମଦ୍ୟ ସେତେବେଳେ ସାଧାରଣରେ ଲୋକପ୍ରିୟ ଥିଲା । ଜଣେ ଧନୀଲୋକର ବଡ଼ପୁଅ ଓ ବିରାଟ ସମ୍ପତ୍ତିର ଉତ୍ତରାଧିକାରୀ ଯେପରି ଜୀବନ ବିତାଇବା ଆଶା କରାଯାଏ, ସେ ସେହିପରି କରୁଥିଲେ । ବହୁ ଧାରକରଜ ହୋଇଗଲେ ମାଙ୍କର ପ୍ରିୟପୁତ୍ର ଭାବରେ ପରିଶୋଧ କରିବାରେ କିଛି ଅସୁବିଧା ହେଉନଥିଲା । ଅକ୍‌ସଫୋର୍ଡ଼ରେ କରିଥିବା ଋଣ ଯୋଗୁଁ ସେ କେବେ ଅସୁବିଧା ଭୋଗିବା ମୁଁ ଜାଣି ନାହିଁ । ତାହା ହୋଇଥିଲେ ମୁଁ ନିଶ୍ଚୟ ଶୁଣିଥାନ୍ତି କାରଣ ମୋର ସ୍ନେହପ୍ରବଣ ପିତା ତାଙ୍କ ପାରିବାରିକ ଜୀବନର ସବୁକଥା ମୋତେ କହିବାକୁ ଖୁବ୍ ଭଲ ପାଉଥିଲେ । ସେ ସମୟରେ ଅକ୍‌ସଫୋର୍ଡ଼ରେ ବିଦ୍ୟାର ସ୍ତର ଥିଲା କମ୍— ଛୋଟ କଲେଜମାନଙ୍କରେ ତ ଆହୁରି କମ୍ । ଲିଙ୍କନ ତ ଓରଅଲ ପରି ନୁହେଁ କିନ୍ତୁ ଏହାର ଶିକ୍ଷକମାନେ ଆରନଲଡ୍, ନ୍ୟୁମାନ ବା ସେମାନଙ୍କ ସହକର୍ମୀମାନଙ୍କ ପରି ନୁହନ୍ତି । ତାଙ୍କ ସମୟରେ ସେଠାରେ ଟ୍ରାକ୍‌ଟରିଆନ ଧର୍ମୀୟ ଆନ୍ଦୋଳନ ଚାଲିଥିଲେ ମଧ ବାପା ବିଶ୍ୱବିଦ୍ୟାଳୟର କୌଣସି ବୌଦ୍ଧିକ କାର୍ଯ୍ୟକ୍ରମରେ ଭାଗନେଲାପରି ଜଣାଯାଏ ନାହିଁ । ପରବର୍ତ୍ତୀ ଜୀବନରେ ସେ ଆରନଲଡ୍‌ଙ୍କ ଅନୁଗାମୀ ହେଲେ, କେବଲ୍ ବା ନ୍ୟୁମାନଙ୍କର ନୁହେଁ । ୧୮୩୫ରେ କେବଳ ପାଶଡିଗ୍ରୀ ଧରି ବିଶ୍ୱବିଦ୍ୟାଳୟ ତ୍ୟାଗ କଲେ, ଉଚ୍ଚମାନପାଇଁ ଇଚ୍ଛା କଲେ ନାହିଁ । ଏପରି ଶିକ୍ଷକମାନଙ୍କ ପାଖରେ ପଢ଼ି ସେ ଯେ ପାରିଲେ ନାହିଁ, ତାହାହିଁ ଆଶ୍ଚର୍ଯ୍ୟ ! ପରେ ଏଇମାନଙ୍କ ମଧରୁ ଜଣେ ବୃଦ୍ଧ କଲକଟ୍‌ଙ୍କୁ ମୁଁ ଭେଟିଛି । ସେ ଥିଲେ ମସୃଣ ଦେହର ସର୍ବଦା ମାତାଲ ଜଣେ ଅଧାର୍ମିକ ଧର୍ମଯାଜକ । ତାଙ୍କ ମୁହଁ ଲାଲ ଓ ସେ ତଣ୍ଡିଫୁଲ ଭଳି ଏକ ରୁକ୍ଷ ଏବଂ କୃତ୍ରିମ କେଶ ସାଧାରଣତଃ ବଙ୍କେଇ କରି ପିନ୍ଧିଥାଆନ୍ତି । ତାଙ୍କ ମୁହଁରୁ ସର୍ବଦା କଡ଼ା ଶେରୀର ଗନ୍ଧ ବାହାରୁଥାଏ । ଯଦିଓ ବହୁ ଜ୍ଞାନର ଭଣ୍ଡାର (ବାପାଙ୍କ ମତରେ) ସେ ସବୁକୁ କିଛି କାମରେ ଲଗାଇପାରୁ ନ ଥିଲେ । ଶୁଣାଯାଏ ତାଙ୍କର ତଥାକଥିତ ଧାର୍ମିକ ବକ୍ତୃତାମାନଙ୍କରେ ସେ ଲୋକଙ୍କ ଆଗରେ ଗ୍ରୀକ୍ ଟେଷ୍ଟାମେଣ୍ଟର ବ୍ୟାଖ୍ୟା କରନ୍ତି । ସବୁଥର ସେ ତିନୋଟି— ମାତ୍ର ତିନୋଟି ପ୍ରଶ୍ନ ପଚାରନ୍ତି । ସେଗୁଡ଼ିକ ହେଲା– ଖାଣ୍ଟି (Genuine) ଓ ମୌଳିକ (Authentic) ଭିତରେ ପାର୍ଥକ୍ୟ, ପବିତ୍ର ଭୂମିର ତିନୋଟି ବିଭାଗ (ଜୁଡ଼ା, ସାମାରିଆ ଓ ଗାଲିଲୀ) ଏବଂ ବାରଜଣ ଧର୍ମସଂସ୍କାରକ (Apostle)ଙ୍କ ନାମ ।

ଅକ୍‌ସଫୋର୍ଡ଼ ଛାଡ଼ିବାପରେ ବାପା ସୈନ୍ୟବିଭାଗରେ ଯିବାକୁ ଇଚ୍ଛାକଲେ । ଅଶ୍ୱବାହିନୀରେ ଯିବା ତାଙ୍କର ଖୁବ୍ ଇଚ୍ଛା ଥିଲା । ଜୀବନର ଶେଷ ପର୍ଯ୍ୟନ୍ତ ସେ ଭଲ

ଘୋଡ଼ସବାର ଥିଲେ । ବୋଧହୁଏ ଭଲ ସୈନିକ ହୋଇଥାଆନ୍ତେ; କିନ୍ତୁ ୱାଟରଲୁ ପରେ ଇଂଲଣ୍ଡ ଦୀର୍ଘଦିନ ଶାନ୍ତ ରହିଥିଲା । କୋଡ଼ିଏ ବର୍ଷ ପରେ କ୍ରିମିଆ ଯୁଦ୍ଧ ଲାଗିବା ପର୍ଯ୍ୟନ୍ତ ସେ ଆଉ ଯୁଦ୍ଧକ୍ଷେତ୍ର ଦେଖି ନ ଥାନ୍ତେ । କୌଣସି ଅଜ୍ଞାତ କାରଣରୁ ଜେଜେବାପା ଜୋର ଦେଲେ ଯେ ସେ ଗିର୍ଜା କାମରେ ଯାଆନ୍ତୁ । ସେପରି ଏକ ଧନ୍ଦାପାଇଁ ବାପାଙ୍କର ପ୍ରବଳ ଅନିଚ୍ଛା ଥିଲା । ପ୍ରବଳ ଭିଡ଼ାଓଟରା ପରେ ସେ ରାଜି ହୋଇଗଲେ । ସେତେବେଳକୁ ତାଙ୍କୁ ମାତ୍ର କୋଡ଼ିଏ ବର୍ଷ; ଯାଜକ ପଦରେ ନିଯୁକ୍ତି ପାଇଁ ତାହା ଖୁବ୍ କମ୍ । ତେଣୁ ନିଷ୍କର୍ମା ଭାବରେ ବାସଲେ କିମ୍ବା ଗ୍ରୀନ୍‌ଉଇଚ୍‌ଠାରେ ତାଙ୍କ ଜେଜେମା ଶ୍ରୀମତୀ କାରନାଭରନଙ୍କ ପାଖରେ କଟାଇଲେ । ସେଠାରେ ତାଙ୍କର ବିଭିନ୍ନ ଆକର୍ଷଣସବୁ ଏତେ ବଢ଼ିଗଲା ଯେ ସେସବୁ ଯୋଗାଇବା ତାଙ୍କର ସେହି ସମ୍ମାନନୀୟା ସମ୍ପର୍କୀୟାଙ୍କ ପକ୍ଷରେ ସମ୍ଭବ ହେଲା ନାହିଁ ।

ତାଙ୍କ ଅଭିରୁଚିର ଜଣେ ଯୁବକ ପକ୍ଷରେ ବାସଲେର ଜୀବନ ନିଶ୍ଚୟ ବିରକ୍ତିକର ଥିବ, କାରଣ ଅକ୍‌ସଫୋର୍ଡ଼ଠାରେ ସେ ବିଶେଷ ପଢ଼ାପଢ଼ି କରିନଥିଲେ ମଧ ତାଙ୍କର ଜ୍ଞାନସ୍ପୃହା ଥିଲା ପ୍ରବଳ ଓ ସେ ବହୁ ବହି ପଢୁଥିଲେ । ଅନୁସନ୍ଧିତ୍ସୁ ଲୋକମାନଙ୍କ ସମ୍ପର୍କରେ ଆସି ସେମାନଙ୍କ ସହ କଷ୍ଟକର ଓ ଜଟିଳ ବିଷୟରେ ଦୀର୍ଘକାଳ ଆଲୋଚନା କରିବାକୁ ସେ ପ୍ରବଳ ଇଚ୍ଛା କରୁଥିଲେ । ବିଚାରପତି ପଦ ନ ପାଇବାରୁ ଜେଜେବାପା ବିରକ୍ତ ହୋଇ ୧୮୩୫ରେ ଆଇନ୍ ବ୍ୟବସାୟରୁ ଅବସର ନେଲେ । ତାଙ୍କର ସହକର୍ମୀମାନେ କହନ୍ତି ବଦ୍‌ରାଗୀ ଗୁଣ ନ ଥିଲେ, ସେ ବିଚାରପତି ପଦ ପାଇଥାନ୍ତେ । ସେ ଦେବାଳିଆ (Bankruptcy) ବିଭାଗର କମିଶନର ଥିଲେ ଏବଂ ଆଉ ଗୋଟିଏ ଦୁଇଟି ଭଲ ନିଯୁକ୍ତି ମଧ ପାଇଥିଲେ କିନ୍ତୁ ତାଙ୍କର ଆକାଙ୍‌କ୍ଷିତ ବିଚାରପତି ପଦ ପାଇଲେ ନାହିଁ । ଏହି ନୈରାଶ୍ୟ ଓ କେତେକ ଅସୁସ୍ଥତା ହେତୁ ସେ ସେହି ବର୍ଷ ଅବସର ନେଇ ବାସଲେଠାରେ ଗ୍ରାମ୍ୟ ଭଦ୍ରଲୋକ ପରି ବାସ କରିବାକୁ ଲାଗିଲେ । ସେ ଜଷ୍ଟିସ ଅଫ୍ ପିସ୍, କାଉଣ୍ଟିର ଡେପୁଟୀ ଲେଫଟନାଣ୍ଟ, ସେସନ୍‌ସର ଚେୟାରମ୍ୟାନ୍ ଏବଂ ଆଉ କେତେକ ଅଧିକାର ପାଇଲେ । ବିରାଟ ଅଞ୍ଚଳର ପଶୁଚୋର ଓ ଅପରାଧୀମାନଙ୍କ ହୃଦୟରେ ସେ ଆତଙ୍କ ସୃଷ୍ଟି କଲେ । ବାସଲେଠାରେ ତାଙ୍କର ଏକ ବିଚାରକକ୍ଷ ଥିଲା । ସେଠାରେ ସେ ଅପରାଧ ବିଚାର କରି ଦଣ୍ଡ ଦେଉଥିଲେ । ସେ ଅନ୍ୟାନ୍ୟ ବିଚାରକମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ବିସ୍ତାର କରୁଥିଲେ, ସହରର ପାଦ୍ରୀ ଓ ସ୍ଥାନୀୟ ଆଇନ୍‌ଜୀବୀମାନଙ୍କର ଆତଙ୍କ ହୋଇଥିଲେ ଏବଂ ହାମ୍ପସାୟାରର ସେ ଅଞ୍ଚଳରେ ଜଣେ ପ୍ରସିଦ୍ଧ ବ୍ୟକ୍ତି ହୋଇଗଲେ । ଶିକାରୀ କୁକୁରଙ୍କ ଦ୍ୱାରା ଶିକାର କରିବାରେ ମଧ ତାଙ୍କର ଖୁବ୍ ସଉକ ଥିଲା । ଗୁଡ଼ିଏ ଜାତିଆ ଗ୍ରେ ହାଉଣ୍ଡ କୁକୁର ରଖି ସେମାନଙ୍କ କାର୍ଯ୍ୟକଳାପ, ତାଲିମ ଓ ରୋଗର ନିଦାନପତ୍ର ସମ୍ପର୍କୀୟ ସୂଚନାର ଟିପାଖାତାମାନ ଭର୍ତ୍ତି କରିଥିଲେ । ବୈଜ୍ଞାନିକ ପ୍ରଣାଳୀର ଚାଷରେ ମଧ ସେ ହାତ ଦେଇଥିଲେ ଏବଂ ବିଶ୍ୱାସ କରୁଥିଲେ ଯେ ବାସଲେର କଠିନ ମାଟିରୁ ମଧ ଅର୍ଥ ଉପାର୍ଜନ କରିହେବ । ଏଇ ଝୁଙ୍କ୍‌ରେ ସେ ବହୁ ଅର୍ଥଶ୍ରାଦ୍ଧ କଲେ କିନ୍ତୁ କିଛି ଲାଭ ହେଲା ନାହିଁ । ସେ ମଧ ଅନେକ ପଢୁଥିଲେ— ବହୁବିଧ ବିଷୟରେ ପଢୁଥିଲେ । ତାଙ୍କ ମଲାପରେ ତାଙ୍କ ପୁସ୍ତକାଗାରରେ ଏପରି ଖଣ୍ଡେ ବହି ନ ଥିଲା ଯାହାର ପୃଷ୍ଠାର କଡ଼ସବୁ ତାଙ୍କର ଛୋଟ କିନ୍ତୁ

ସୁସ୍ପଷ୍ଟ ପେନ୍‌ସିଲ ଲେଖାରେ ପୂରିନଥିଲା । ପୁନଶ୍ଚ ସେ ତିନିଟି ଭାଗରେ ଖଣ୍ଡେ ଉପନ୍ୟାସ ଲେଖିଥିଲେ, ଏହାର ନାମ 'ମ୍ୟାଡ୍‌ନେସ୍ ଦି ରେଜ୍' । ମୁଁ ଏହା ପଢ଼ିଛି କିନ୍ତୁ କିପରି ଲାଗିଲା ସ୍ମରଣ ନାହିଁ ।

ଜେଜେମା କବିତା ପଢୁଥିଲେ, ପିଆନୋ ବଜାଉଥିଲେ, ରୁଚିପୂର୍ଣ୍ଣ ଓ ଭାବପ୍ରବଣ ଭାବରେ ଆଳାପ କରୁଥିଲେ । ସେସବୁ ମୋ ବାପା ଓ ତାଙ୍କ ପାଖରେ ବସିରହି ଶୁଣିବାକୁ ରାଜିଥିବା ମହିଳାମାନେ ଶୁଣୁଥିଲେ । ସେ ଆଚାର ଓ ସାଇତା ରହିବା ଯୋଗ୍ୟ ଖାଦ୍ୟମାନ ପ୍ରସ୍ତୁତ କରୁଥିଲେ । ସେ ସମୟର ଚଳଣି ଅନୁଯାୟୀ ତାଙ୍କ ବନ୍ଧୁମାନଙ୍କ ପାଖକୁ ଲମ୍ବାଚିଠିମାନ ଲେଖୁଥିଲେ ଏବଂ କେହି ଜଣେ ପାର୍ଲିଆମେଣ୍ଟ ସଭ୍ୟଙ୍କଠାରୁ ଡାକମୋହର ଛାଡ଼ ସୁପାରିସ କରାଇନେବା ପର୍ଯ୍ୟନ୍ତ ସେଗୁଡ଼ିକୁ ସାଇତି ରଖୁଥିଲେ । ମୋ ଜକା ଜନ୍ ଥିଲେ ଜଣେ ରକ୍ଷ, ଅମଣିଷ ଯୁବକ, ରୀତିମତ ଜଣେ ଟନି ଲମ୍ପକିନ୍ । ପାନଶାଳାରେ ବସି ମଦଖାଇବା ଓ ଗାଁଗହଳରେ ନିକମା କୃଷକମାନଙ୍କ ସହ ପାଟିତୁଣ୍ଡ କରିବା ବା ସମ୍ପର୍କ ରଖିବାକୁ ସେ ଭଲ ପାଉଥିଲେ । ସେ ପ୍ରଚୁର ଭୋଜନ ଓ ମଦ୍ୟପାନ କରିପାରୁଥିଲେ । ତାଙ୍କୁ 'ଦି ବୁଲ୍ ଆଣ୍ଡ ମାଉଥ' ବୋଲି କୁହାଯାଉଥିଲା । ସେ ପଢ଼ାପଢ଼ିରେ ନିୟମିତ ଥିଲେ ଏବଂ ଲିଙ୍କନସ୍ ଇନ୍‌ଠାରେ କେତେକ ଆନୁଷ୍ଠାନିକ ଭୋଜି ଖାଇବା ପରେ ଓକିଲାତିରେ ଯୋଗଦେବା ପାଇଁ ଡାକରା ପାଇଲେ ।

ଜେଜେବାପାଙ୍କ ଗ୍ରେହାଉଣ୍ଡ କୁକୁର ଓ ପକ୍ଷୀମନଙ୍କର ଖତ, ଜେଜେମାଙ୍କର ଭାବପ୍ରବଣ କଥାବାର୍ତ୍ତା ଏବଂ କକାଙ୍କ ରକ୍ଷତାରେ ବାପା କ୍ରମେ ବିରକ୍ତ ହୋଇପଡ଼ିଲେ ଏବଂ ଅଧିକରୁ ଅଧିକ ସମୟ ଗ୍ରୀନ୍‌ଉଇଚରେ କଟାଇବାକୁ ଲାଗିଲେ । ଏହାରି ଫଳରେ ଏକ ଗୁରୁତର ଘଟଣା ଘଟିଗଲା ।

ଗ୍ରୀନ୍‌ଉଇଚ ଡାକ୍ତରଖାନା ଯେଉଁମାନଙ୍କ ପାଇଁ ତିଆରି ହୋଇଥିଲା ସେତେବେଳକୁ ସେମାନେ ସେ ଜାଗା ପୂରା ଛାଡ଼ିନଥିଲେ । ଏହାର ବିରାଟ କକ୍ଷମାନଙ୍କରେ ନେପୋଲିଅନଙ୍କ ଯୁଦ୍ଧରେ ଅକର୍ମଣ୍ୟ ହୋଇଥିବା ନାବିକମାନେ ରହୁଥିଲେ। ବଡ଼ ଘରଗୁଡ଼ିକର କାନ୍ଥକୁ ଲାଗି ତିଆରି ହୋଇଥିବା କାଠର ନିଜ ନିଜ କୋଠରିରେ ସେମାନେ ରହୁଥିଲେ । ଏଠାରେ ଥିବା ବହୁସଂଖ୍ୟକ ନୌବାହିନୀ ଅଫିସର ଯୁଦ୍ଧରେ କ୍ଷତବିକ୍ଷତ ହୋଇଥିଲେ ଏବଂ ଅବସରଭତ୍ତାପରି ସେମାନଙ୍କୁ ଏ ସ୍ଥାନଗୁଡ଼ିକ ଦିଆଯାଇଥିଲା । ସେମାନଙ୍କ ମଧ୍ୟରେ ଥିଲେ ଜଣେ ଲେଫ୍‌ଟନାଣ୍ଟ୍ ଯୋଶେଫ୍ ଡ୍ୟୁସନାପ । ସେ ଥିଲେ ଦୀର୍ଘକାୟ, ପୃଥୁଳ, ଶୁଭ୍ରକେଶ ଓ ଲାଲମୁଖବିଶିଷ୍ଟ ସରଳ ବୃଦ୍ଧ । ସେଣ୍ଟଭିନ୍‌ସେଣ୍ଟ ଅନ୍ତରୀପର ଯୁଦ୍ଧରେ କାନ୍ଧରେ ଗୁଳି ବାଜି ଆହତ ହୋଇ କର୍ମକ୍ଷେତ୍ର ଛାଡ଼ିବା ପୂର୍ବରୁ ସେ ବହୁ ଯୁଦ୍ଧରେ ଯୋଗ ଦେଇଥିଲେ । ଏହି ଗୁଳିଟି କଢ଼ାହୋଇ ନ ଥିଲା ଏବଂ ଖରାପ ପାଗରେ ବ୍ୟଥା ଦେଉଥିଲା । ଏହି ବ୍ୟଥା ଲାଘବ କରିବା ପାଇଁ ସେ ପ୍ରଚୁର ରମ୍ ଓ ପାଣି ପିଉଥିଲେ ଏବଂ ଡିବଡିନ୍‌ଙ୍କର ପ୍ରସିଦ୍ଧ ସାଗର ସଙ୍ଗୀତ ସବୁ ଭଙ୍ଗାଭଙ୍ଗା ସ୍ୱରରେ ଗାନ ନୁହେଁତ, ଗର୍ଜନ କରୁଥିଲେ । ସେ ଥିଲେ ଉଡ୍‌ଷ୍ଟକ୍‌ର ଜଣେ ହାତମୋଜାବୁଣାଳିର ପୁଅ । ତାଙ୍କ ବାପା ଥିଲେ ହ୍ୟାଗେନଟ୍ ପରିବାରର ଲୋକ ଯେଉଁମାନେ କି ନାନ୍ତେସର ଏଡ଼ିକ୍ଟ ପ୍ରତ୍ୟାହାର

ସମୟରେ ଇଂଲଣ୍ଡରେ ଆଶ୍ରୟ ନେଇଥିଲେ । ତାଙ୍କ ନାଁ କ୍ରମେ ଅପଭ୍ରଂଷ ହୋଇ ବ୍ରୁ୍ୟସ୍‌ନାପ୍ ହେଲା । ଚାକିରି କାଳରେ ନ୍ୟୁଫାଉଣ୍ଡଲାଣ୍ଡର ସେଣ୍ଟ ଜନସ୍‌ଠାରେ ଥିଲାବେଳେ ସେ ଲିଟଲ୍ ନାମକ ଜଣେ ବ୍ୟବସାୟୀଙ୍କ କନ୍ୟାଙ୍କୁ ବିବାହ କରିଥିଲେ । ସେଇ ବଣିକଙ୍କ ସ୍ତ୍ରୀ ଥିଲେ ଜଣେ ଫରାସୀ କାନାଡ଼ୀୟ ଏଲେ ଜେଇସ୍ । ଗ୍ରୀନ୍‌ଉଇଚ ଡାକ୍ତରଖାନାରେ ରହିବା ପରଠାରୁ ତାଙ୍କର ପିଲା ହେବାକୁ ଲାଗିଲେ ଏବଂ ଅଳ୍ପ କେତେବର୍ଷ ଭିତରେ ଛ'ଟି ଝିଅ ଓ ଦୁଇଟି ପୁଅର ବୋଝ ତାଙ୍କର ହୋଇଗଲା । ସେମାନେ ସମସ୍ତେ ସେଇ ଘରର ବିରାଟ ବାରଣ୍ଡାମାନଙ୍କରେ ଅବସରଭୋଗୀ ବୃଦ୍ଧମାନଙ୍କ ସହ ଖେଳି ଅର୍ଦ୍ଧଶିକ୍ଷିତ ଭାବରେ ବଢ଼ିଲେ । ବଡ଼ଝିଅ ଏଲିଜା କିଛି ଶିକ୍ଷା ପାଇଥିଲା ଏବଂ ଅନ୍ୟମାନଙ୍କୁ କିଛି ଶିଖାଇଥିବ । ଅଧିକାଂଶ ଝିଅ ସୁନ୍ଦରୀ କିନ୍ତୁ ପୁଅମାନେ ପିଲାଦିନ୍‌ଠାରୁ ସମସ୍ତ ପ୍ରକାର କୁତ୍ସିତ କର୍ମରେ ନିଯୁକ୍ତ ରହିଥିଲେ ।

ଡାକ୍ତରଖାନା ପ୍ରାଙ୍ଗଣରେ ସପ୍ତାହକୁ ଥରେ ଦୁଇଥର ସୁନ୍ଦର ବ୍ୟାଣ୍ଡ ବାଜେ ଏବଂ ଗ୍ରୀନ୍‌ଉଇଚର ସମସ୍ତ 'ଶିକ୍ଷିତ' ସମ୍ପ୍ରଦାୟ ସେଠାରେ ଏକତ୍ର ହୁଅନ୍ତି । ଏଇ ସମୟରେ ବ୍ରୁ୍ୟସନାପଙ୍କ କନ୍ୟାମାନେ ଭଲ ପୋଷାକ ପିନ୍ଧି ଭଦ୍ରଭାବରେ ରହୁଥିଲେ ଏବଂ ବୟସ ବୃଦ୍ଧି ସଙ୍ଗେ ସ୍ଥାନୀୟ ଯୁବକମାନଙ୍କୁ ଆକର୍ଷିତ କଲେ । ବଡ଼ଟି ଜର୍ଜ ଷ୍ଟୁଆଟ୍ ନାମରେ ଜଣେ ଅବସରପ୍ରାପ୍ତ ନୌକ୍ୟାପଟେନଙ୍କୁ ବିବାହ କରିଥିଲା । ସିଲୋନର୍ କଲମ୍ବୋରେ ଏକ ପ୍ରସିଦ୍ଧ ପ୍ରତିଷ୍ଠାନରେ ତାଙ୍କର ଅଂଶ ଥିଲା । ଦ୍ୱିତୀୟ ଝିଅ ଲୁସିଆ ଓ ପଞ୍ଚମା ଭର୍ଜିନିଆ ମଧ୍ୟ ଭଲଜାଗାରେ ବିବାହ କଲେ । ମୋ ବାପା ଚତୁର୍ଥୀ କନ୍ୟା ସୁସାନା ଆମେଲିଆର ପ୍ରେମରେ ପଡ଼ିଲେ । ସେ ବାପାଙ୍କଠାରୁ ଚାରିବର୍ଷ ବଡ଼ ଥିଲେ ମଧ୍ୟ ତାଙ୍କର ପରିବାର ବାପାଙ୍କୁ ଜାଲରେ ପକାଇବାରେ କମା ହେଲା କଲେ ନାହିଁ । ୧୮୩୬ ଅପ୍ରେଲ୍ ୬ରେ କାମ୍ବରୱେଲ ପାରିସଚର୍ଚ୍ଚରେ ସେମାନଙ୍କ ବିବାହ ହେଲା । ବାପାଙ୍କର ପିତାମାତା ଉଭୟଙ୍କର ଏ ବିବାହରେ ପ୍ରବଳ ଅନିଚ୍ଛା ଥିଲା । ପ୍ରବଳ ଆତ୍ମଗର୍ବିଣୀ ତାଙ୍କ ମା ତାଙ୍କୁ ଖୁବ୍ ଭଲ ପାଉଥିବା ସତ୍ତ୍ୱେ ବା ଭଲପାଉଥିବା ଯୋଗୁଁ ମନରେ ଖୁବ୍ ଆହତ ହେଲେ ଏବଂ ସେ ବଞ୍ଚିଥିବା ପର୍ଯ୍ୟନ୍ତ ତାଙ୍କ ବୋହୂସହ କଥାବାର୍ତ୍ତା ବା ତାଙ୍କ ଖୋଜଖବର ନେଇ ନ ଥିଲେ । ଜେଜେବାପା, ବାପାଙ୍କୁ ରୋକ୍‌ଠୋକ୍ କହିଦେଲେ ଯେ ଏପରି ନୀଚ ବିବାହ କରି ସେ ନିଜ ତଣ୍ଟି ନିଜେ କାଟିଛି । ସେ ତାଙ୍କୁ ବା ତାଙ୍କ ସ୍ତ୍ରୀଙ୍କୁ ବାସଲେକୁ ଡକାଇଲେ ନାହିଁ । ସେ ବାପାଙ୍କୁ ବାର୍ଷିକ ୧୦୦ ପାଉଣ୍ଡ କରି ଭତ୍ତା ଦେଲେ ଏବଂ ତାକୁ ଆଉ ବଢ଼ାଇଲେ ନାହିଁ, ବରଂ ବେଳେ ବେଳେ ତାଙ୍କ ଉପରେ ବେଶି ବିରକ୍ତ ହୋଇଗଲେ ମଝିରେ ମଝିରେ ତାହା ବନ୍ଦ କରି ଦେଉଥିଲେ । ସେ ସମୟରେ ସୈନ୍ୟବାହିନୀର ନିଯୁକ୍ତିକୁ କିଣିବାକୁ ପଡୁଥିଲା । ତାହାର ଆଉ କୌଣସି ସମ୍ଭାବନା ନ ଦେଖି ସେ ଭାଗ୍ୟ ଆଦରି ରହିଲେ । ଏହି ସମୟରେ ଜର୍ସିର ଡି କାଟରେଟ୍ ନାମକ ଜଣେ ଭଦ୍ରଲୋକ ଜର୍ସିର ଲୋକେ ଥରେ ଇଂଲଣ୍ଡ ଜୟ କରିଥିଲେ ବୋଲି କହିଦେବାରୁ ସେଥିରେ ଉତ୍ତେଜିତ ହୋଇ ବାପା ତାଙ୍କ ସହ ପ୍ରାୟ ଦ୍ୱନ୍ଦ୍ୱଯୁଦ୍ଧରେ ପ୍ରବୃତ୍ତ ହୋଇଯାଇଥିଲେ । ଜର୍ସି ଯେ ଦିନେ ନର୍ମାଣ୍ଡିର ଅଂଶ ଥିଲା, ତେଣୁ ଏହାର ବିଜେତା ଡ୍ୟୁକ ଉଇଲିଅମ୍‌ଙ୍କ ଅଧୀନରେ ଥିଲା । ଏହି ବାସ୍ତବତାକୁ କାର୍ଟରେଟ ଏଡ଼େଇ ଦେଉଥିଲେ । ଏ କଥାକୁ ହସି ଉଡ଼ାଇଦେବା ପରିବର୍ତ୍ତେ ବାପା କାର୍ଟରେଟଙ୍କୁ 'Crapaud

Francais' ଫରାସୀ ଗୋଷ୍ଠୀର କହି ଗାଳିଦେଲେ । କେତେଜଣ ବିବେକୀ ବନ୍ଧୁ ହସ୍ତକ୍ଷେପ କରି ଏହି ଉତ୍ତ୍ୟକ୍ତ ଯୁବକଦ୍ୱୟଙ୍କୁ ଶାନ୍ତ କରାଇଲେ ।

ଜର୍ସିଠାରେ ବିଳମ୍ବିତ ମଧୁଚନ୍ଦ୍ରିକା ଯାପନକରି ସ୍ତ୍ରୀଙ୍କୁ ତାଙ୍କ ପିତାମାତାଙ୍କ ପାଖରେ ଗ୍ରୀନ୍‌ଉଇଚଠାରେ ଛାଡ଼ି ଗିର୍ଜାରେ ଯୋଗଦେବା ପୂର୍ବରୁ ବାପା ଏମ୍.ଏ. କରିବା ପାଇଁ ଅକ୍‌ସଫୋର୍ଡ଼ ଗଲେ । ତା'ପରେ ସେ କିଛିଦିନ ଧରି ଗୁରୁତର ବେମାର ପଡ଼ିଲେ । ୧୮୩୬-୩୭ର ପୂରା ଶୀତଦିନଟା ଏବଂ ତା'ପର ବସନ୍ତକାଳଟା ସେ କେଉଁଠି କିପରି କଟାଇଲେ ମୁଁ ଜାଣେନା । ବାସଲେର ଦ୍ୱାର ତାଙ୍କ ପାଇଁ ବନ୍ଦ ଥିଲା । ନୈରାଶ୍ୟଗ୍ରସ୍ତ ଶ୍ରୀମତୀ କାରନାରଭନ୍‌ଙ୍କର ମଧ ଖୁବ୍ ଆନ୍ତରିକତା ନ ଥିଲା ଏବଂ ଡୁସନାପ୍ ପରିବାର ମଧ ବୀମସ୍ ପରିବାର ପ୍ରତି ସନ୍ତୁଷ୍ଟ ନ ଥିଲେ ଏବଂ ସେମାନଙ୍କୁ 'ଅହଙ୍କାରୀ', 'ଗର୍ବୀ', 'ଆତ୍ମାଭିମାନୀ' ପ୍ରଭୃତି କହୁଥିଲେ ।

ଏହିପରି ଅବାଂଛିତ ପ୍ରଭାବରେ ପଡ଼ି ବାପାମା ଅସୁଖୀ ହୋଇପଡ଼ିଲେ ଏବଂ ପରସ୍ପରଙ୍କୁ ନିନ୍ଦା ଓ ଦୋଷ ଦେବାକୁ ଆରମ୍ଭ କଲେ । ଏହି ଅବସ୍ଥା ସେମାନଙ୍କ ଜୀବନଯାକ ରହିଲା । ସେମାନେ ଯେ ପରସ୍ପରର ଅନୁପଯୁକ୍ତ ଏବଂ ସେମାନଙ୍କ ମଧ୍ୟରେ ଭାବ ଓ ଅନୁଭାବର କିଛିମାତ୍ର ସାମ୍ୟ ନାହିଁ ଏହି କଥା ଭାବିବାକୁ ଆରମ୍ଭ କଲେ । ଏଇ ବାହାଘର ପରେ ବାପାଙ୍କ ଜୀବନରୁ ସବୁ ସୁଖ ସରିଗଲା ଏବଂ ଦାରିଦ୍ର୍ୟ ଓ ନୈରାଶ୍ୟ ବିରୋଧରେ ଆଜୀବନ ସଂଗ୍ରାମ ଆରମ୍ଭ ହୋଇଗଲା । ଅଠେଇଶ ବର୍ଷ ପରେ ତାଙ୍କ ଜୀବନର ଅବସାନରେ ହିଁ ଏହି ସଂଗ୍ରାମର ଅବସାନ ହେଲା ।



# ଦ୍ୱିତୀୟ ପରିଚ୍ଛେଦ

## ବାଲ୍ୟକାଳ - ୧୮୩୭-୧୮୪୪

ମୁଁ ଗ୍ରୀନଉଇଚ୍‌ର ରାଜକୀୟ ନୌବାହିନୀ ଡାକ୍ତରଖାନାରେ ଲେଫ୍‌ଟେନାଣ୍ଟ ଡ୍ୟୁସ୍‌ନାପଙ୍କ ଘରେ ୧୮୩୭ ଜୁନ୍ ୨୧ ତାରିଖ ସକାଳ ଗୋଟାଏ ବେଳେ ଜନ୍ମଲାଭ କଲି । ମୋ ଜନ୍ମର କେତେ ଘଣ୍ଟା ପୂର୍ବରୁ ଖୁବ୍ ଗରମ ହେତୁ ମୋ ମା'ଙ୍କ ଶୟନକକ୍ଷର ଝରକା ଖୋଲାହେବା ବେଳକୁ ସେ ରାଜା ଚତୁର୍ଥ ଉଇଲିଅମ୍‌ଙ୍କ ମୃତ୍ୟୁସୂଚକ ସେଣ୍ଟପଲ୍ ଗିର୍ଜାର ବିରାଟ ଘଣ୍ଟା ବାଜୁଥିବାର ଶୁଣିଲେ । ବର୍ତ୍ତମାନର ମହାମହିମାନ୍ୱିତା ରାଣୀ ଭିକ୍ଟୋରିଆ, ଭଗବାନ୍ ତାଙ୍କୁ ଦୀର୍ଘ ପରମାୟୁ ଦିଅନ୍ତୁ, ମୋର ଏ ଧରାପୃଷ୍ଠକୁ ଆସିବାର ମାତ୍ର କେତେ ଘଣ୍ଟା ପୂର୍ବରୁ ସିଂହାସନ ଆରୋହଣ କରିଥିଲେ । ମତେ ପ୍ରାୟ ଷାଠିଏ ହେଲା ଏବଂ ସେ ଏବେବି ରାଜୁତି କରୁଛନ୍ତି ।

ଡାକ୍ତରଖାନାର ଗିର୍ଜାରେ ମୋର ଦୀକ୍ଷା ଉତ୍ସବ ହୋଇଗଲା । ଜେଜେବାପା, ସମସ୍ତ ମତାନ୍ତର ସତ୍ତ୍ୱେ ସେପର୍ଯ୍ୟନ୍ତ ମଧ୍ୟ ଆବଶ୍ୟକ ମନେ କଲେ ବାପାଙ୍କ କାମରେ ହସ୍ତକ୍ଷେପ କରୁଥିଲେ । ସେ ମୋ ନାମ ଆଇଲିଫ୍‌ଗ୍ରୀନ୍ ଦେବାପାଇଁ ଇଚ୍ଛା କରିଥିଲେ । ଯେଉଁ ପୁରୁଣା ବ୍ରିଷ୍ଟଲ୍ ବ୍ୟବସାୟୀଙ୍କଠାରୁ ସେ କ୍ଲିଫଟନ୍ ସମ୍ପତ୍ତି ଆଣିଥିଲେ ଏ ନାମ ତାଙ୍କ ପାଇଁ ଉଦ୍ଦିଷ୍ଟ । ଏ ନାମ ଉପରେ ସେ କାହିଁକି ଜୋର ଦେଉଥିଲେ କେହି ଜାଣିପାରିଲେ ନାହିଁ ଏବଂ ବାପା ଏହାର ଏତେ ବିରୋଧ କଲେ ଯେ, ତାହା ହୋଇପାରିଲା ନାହିଁ । ତା'ପରେ ସ୍ଥିର ହେଲା ଯେ, ମୋର ପୁରୁଣା ପାରିବାରିକ ନାମ ଜନ୍ ରହିବ । ସେ ବର୍ଷର ଶେଷଆଡ଼କୁ ଜେଜେବାପା ତାଙ୍କର ଜଣେ ପୁରାତନ ବନ୍ଧୁଙ୍କ ସହାୟତାରେ ବାପାଙ୍କୁ 'ଟାଇଟ୍‌ଲ ଟୁ ଅର୍ଡ଼ର' ଦିଆଇଲେ । ଫଳରେ ଆମେ ୧୮୩୮ର ଆରମ୍ଭରେ ପୁରୁଣା ଗ୍ରାମକୁ ଗଲୁ । ମା ଓ ମୁଁ ହିଲ୍‌ଫିଲଡ୍ ହାଉସରେ ବୃଦ୍ଧା ପାଓ୍ୱେଲଙ୍କ ସହ ରହିଲାବେଳେ ବାପା ଘର ବ୍ୟବସ୍ଥା କରିବାକୁ ଗଲେ । ବାପା ତାଙ୍କ ଜେଜେମା କିମ୍ବା ବରୋ ପରିବାରକୁ ସେତେ ଭଲ ପାଉନଥିଲେ; କିନ୍ତୁ ମା'ଙ୍କର ସେମାନଙ୍କ ସହ ଭଲ ପଡୁଥିବା ପରି ମନେହୁଏ ।

ଏଇଠି, ଏଇ ସମୟରେ ମୋର ସ୍ମରଣ ରହିଲା ଭଳି ପ୍ରଥମ ଘଟଣା ଘଟିଲା । ଏହା କେମିତି ଓ କାହିଁକି ହେଲା ତାହା ମୁଁ ଅନେକ ବର୍ଷ ପର୍ଯ୍ୟନ୍ତ ଜାଣିପାରି ନ ଥିଲି । ମୋତେ ପନ୍ଦର ଷୋହଳ ବର୍ଷ ହେଲାବେଳେ ଥରେ ମୁଁ ମା'ଙ୍କୁ କହୁଥିଲି ଯେ ରାତିରେ ଶୋଇଥିବାବେଳେ ମୋର ଏକ ଅଦ୍ଭୁତ ଅନୁଭୂତି ହେଉଛି, ମନେ ହେଉଛି ମୁଁ ଚିତ୍ ହୋଇ ଶୋଇରହି ମୋର ଅଳ୍ପ କେତେଇଞ୍ଚ ଉପରେ ଥିବା କୌଣସି କଠିନ ପଦାର୍ଥକୁ ଦୁଇହାତରେ ପେଲୁଛି କିନ୍ତୁ ଘୁଞ୍ଚାଇ ପାରୁ ନାହିଁ; ଯେପରିକି ମୁଁ ବାକ୍‌ସ ମଧ୍ୟରେ ବନ୍ଦ ହୋଇଯାଇଛି ଯାହାର ଘୋଡ଼ଣିକୁ ମୁଁ ଖୋଲିପାରୁ ନାହିଁ । ପୂର୍ବରୁ ବାରମ୍ବାର ମୋର ଏପରି ରାତ୍ରିକାଳୀନ ଅନୁଭୂତି ହୋଇଛି ବୋଲି ଶୁଣି ମା ଖୁବ୍

ଚକିତ ହୋଇପଡ଼ିଲେ । ତା'ପରେ ସେ ମୋତେ କହିଲେ ଯେ ୧୮୩୮ରେ ଆମେ ହ୍ୱାଇଟଫିଲଡ୍‌ରେ ଥିବାବେଳେ, ତାଙ୍କର ମନେପଡ଼େ ଥରେ ମୋତେ ଏକ ଚାରିଖୁଣ୍ଟିଆ ଖଟରେ ତକିଆରେ ଭଲକରି ଘୋଡ଼ାଇ ଦେଇଥିଲେ । ତା'ପରେ ସନ୍ଧ୍ୟାରେ ବିଶ୍ରାମ ନେବାପାଇଁ ସେ ବୈଠକଘରକୁ ଚାଲିଗଲେ । ହଠାତ୍ ଉପରୁ ତୀବ୍ର ଚିତ୍କାର ଶୁଣି ମା ଏବଂ ବଡ଼ରୋ ପରିବାରର ଦୁଇ ଝିଅ ସାରା ଓ ମେରୀ ଶୋଇବା ଘରକୁ ଧାଇଁଯାଇ ଦେଖିଲେ ଯେ ଶେଯ ଖାଲି କିନ୍ତୁ ମୋ ଚିତ୍କାରର ଅନୁସରଣ କରି ସେମାନେ ଶଯ୍ୟା ନିକଟରେ ଏକ ବିରାଟ ଆଲମାରି ତଳ ଖୋଜିଲେ । ତାହାରି ତଳେ ମୁଁ ଚିତ୍‌ହୋଇ ପଡ଼ିରହି ମୋ ଅଳ୍ପକେତେ ଇଞ୍ଚ ଉପରେ ଥିବା ତାର ତଳ ଅଂଶକୁ ପ୍ରାଣପଣେ ପେଲୁଥିବାର ଦେଖି ସେମାନେ ସ୍ତବ୍ଧ ହୋଇଗଲେ । ମୁଁ ସର୍ବଦା ଚଞ୍ଚଳ ଥିବାରୁ ଏବଂ ଶୋଇବା ବେଳେ ଗଡ଼ୁଥିବାରୁ କେତେବେଳେ ଶେଯରୁ ଖସିଯାଇ ସେଇ ବିରାଟ ଆସବାବଟାର ତଳକୁ ଗଡ଼ିଯାଇଥିବି । ଏଇ ବିଷୟଟା ଅନେକ ବର୍ଷଯାଏ ମୁଁ ସ୍ୱପ୍ନରେ ଦେଖିଲି ।

ଅଳ୍ପ କେତେଦିନ ପରେ ବାପା ଫେରି ଆମକୁ ସମୁଦ୍ରକୂଳର ଏକ ସୁନ୍ଦର ଗ୍ରାମ୍ୟନିବାସ କ୍ଲିଭ୍‌ଡନକୁ ନେଇଗଲେ । କିଙ୍ଗସ୍‌ଟନ ସିମୂରଠାରୁ ତାହା ମାତ୍ର ଦୁଇମାଇଲ । କମ୍ ଭଡ଼ାରେ ବାପା ଆମପାଇଁ ଏକ ଓଦାଳିଆ, ଅନ୍ଧାରୁଆ କୋଠରି ଥିବା ଘର ନେଲେ । ସେତେବେଳକୁ ସେ କିଛି ଦରମା ପାଉନଥିଲେ, ପାଉଥିଲେ ମାତ୍ର ବାର୍ଷିକ ଶହେ ପାଉଣ୍ଡର ଖୋରାକି । ସେଇ ଗିର୍ଜାଧୀନ ଅଞ୍ଚଳ ଥିଲା ନୀଚା ସନ୍ତସନିଆ ଭୂମି । ସେଠାରେ ବିଶୃଙ୍ଖଳିତ ଭାବରେ ଏଣେତେଣେ ବାସକରୁଥିବା ଲୋକେ ଦୁର୍ଦ୍ଦାନ୍ତ, ପାଶବିକ, ନୀତିହୀନ, ମାତାଲ ଓ ଚୋର ଥିଲେ । ବାପା ଯଦି ନିକଟସ୍ଥ ରିଙ୍ଗଟନଠାରେ ତାଙ୍କ ଯୌବନର ଅନେକ କାଳ କଟାଇ ନ ଥାନ୍ତେ, ତେବେ ସେମାନଙ୍କ କଥାବାର୍ତ୍ତା ବୁଝିବା କଷ୍ଟକର ହୋଇଥାନ୍ତା । ସେଠାରେ ପ୍ରାୟ ସମାଜ ନ ଥିଲା କହିଲେ ଚଳେ । ରେକ୍ଟର ବହୁକାମ ଦାୟିତ୍ୱରେ ଥାଇ ଅନୁପସ୍ଥିତ ରହୁଥିଲେ ଏବଂ ଭଦ୍ରଲୋକ ବାସିନ୍ଦା କେହି ନ ଥିଲେ । ବାପା ସେ ଅଞ୍ଚଳର ବହୁସ୍ଥାନ ପାଦରେ ବୁଲୁଥିଲେ ଏବଂ ଯେଉଁ ଅଳ୍ପ ବହି ମିଳୁଥିଲା, ତାକୁ ପଢ଼ି ସମୟ କଟାଉଥିଲେ ! ବହି, ସୌହାର୍ଦ୍ଦ୍ୟ, ଉତ୍ସାହ ଓ ଉପଦେଶ ପାଇଁ ସେ ତାଙ୍କରି ଭଳି ଆଉଜଣେ ଉଚ୍ଚଶିକ୍ଷିତ ରେକ୍ଟର ରେଭରେଣ୍ଡ ଥମ୍ପସନଙ୍କ ନିକଟରେ ଋଣୀ ଥିଲେ । ସେ ବ୍ୟକ୍ତି ସେଠାର ପିଲାଙ୍କୁ ପଢ଼ାଇ ଓ ଜର୍ମାନ ଅନୁବାଦ କରି କିଛି ରୋଜଗାର କରୁଥିଲେ । ମୋର ରୁଗ୍‌ଣା ମା ସେଇ ସନ୍ତସନ୍ତିଆ ଛୋଟଘରେ ବେପରବାୟ ଭାବରେ ଚଲାବୁଲା କରୁଥିବା ମୂଷାମାନଙ୍କ ଦ୍ୱାରା ଭୟତ୍ରସ୍ତ ହୋଇ ଖଟ ଉପରେ ପଡ଼ିରହିଥାଆନ୍ତି । ଅବଶ୍ୟ କିଛିଦିନ ପରେ ବାପା ପାଖ ଗ୍ରାମରେ ଅଧିକ ଆରାମର ଏକ ଘର ପାଇଲେ ଏବଂ ସେଇଠାରେ ୧୮୩୮ ଡିସେମ୍ବର ୨୧ରେ ତାଙ୍କର ଦ୍ୱିତୀୟପୁତ୍ର ଜାତ ହେଲା । ସେ ପିଲାର ନାମକରଣ ପାଇଁ ପୁଣି ଜେଜେବାପା ହସ୍ତକ୍ଷେପ କଲେ ଏବଂ ପିଅରସନ୍ ଥମ୍ପସନ୍ ରଖିବାକୁ ସ୍ଥିର କଲେ । ମୋ ବାପାଙ୍କ ଘୋର ପ୍ରତିବାଦ ସତ୍ତ୍ୱେ ଏଥର ତାଙ୍କ କଥା ରହିଲା ଏବଂ କିଙ୍ଗସ୍‌ଟନ ସିମୂର ଗିର୍ଜାରେ ବାପା ନାମକରଣ ଉତ୍ସବ କରାଇଲେ । ଖରାପଖାଦ୍ୟ ଓ ନିଃସଙ୍ଗ ଜୀବନ ହେତୁ ମା'ଙ୍କ ସ୍ୱାସ୍ଥ୍ୟ ଖରାପ ଥିଲା ଏବଂ ମୋ ଭାଇ ପିଅରସନ୍‌ର ସ୍ୱାସ୍ଥ୍ୟ ପ୍ରଥମ ବର୍ଷେ ଦୁଇବର୍ଷ ଖରାପ ରହିଲା ।

୧୮୩୯ରେ ବାଥ୍ ଓ ୱେଲସ୍‌ର ବିଶପ ବାପାଙ୍କୁ ଯାଜକର ଅଧିକାର ଦେଲେ ଏବଂ ରେକ୍ଟରଙ୍କ ଅନିଚ୍ଛାସତ୍ତ୍ୱେ ତାଙ୍କପାଇଁ ବାର୍ଷିକ ୭୫ ପାଉଣ୍ଡ ମଞ୍ଜୁର କଲେ; କିନ୍ତୁ ଅଳ୍ପ କିଛିଦିନ ପରେ କ୍ଲିଭଲାଣ୍ଡର କ୍ୟୁରେଟ୍ ହୋଇ ସେ ବାର୍ଷିକ ୧୨୦ ପାଉଣ୍ଡ ଦରମା ପାଇଲେ । ତାଙ୍କ ପିତାଙ୍କଠାରୁ ପାଉଥିବା ବାର୍ଷିକ ୧୦୦ ପାଉଣ୍ଡ ସହ ଏହା ତାଙ୍କୁ ଚରମ ଦାରିଦ୍ର୍ୟରୁ ରକ୍ଷା କରିଥିଲା । ସମୁଦ୍ର ତୀରରେ ଗୋଟିଏ ଛୋଟ ସୁନ୍ଦର ଘର ନେଲେ । ମା ଓ ପିଲାମାନଙ୍କ ପାଇଁ ସମୁଦ୍ର ସ୍ନାନ ଭଲ ଫଳ ଦେଲା । ବାପା ସବଳ, ଦକ୍ଷ ସନ୍ତରଣକାରୀ ଥିବାରୁ କାମକୁ ଯିବା ପୂର୍ବରୁ ଦୈନିକ ସକାଳେ ସନ୍ତରଣ କଲେ । ଏଠାରେ ସମାଜ ଉତ୍କୃଷ୍ଟତର ଥିଲା ଏବଂ ସ୍ଥାନୀୟ ପ୍ରସିଦ୍ଧ ବ୍ୟକ୍ତି କ୍ଲିଭଲାଣ୍ଡ କୋଟର ସାର୍ ଆବ୍ରାହାମ ଏଲଟନ୍‌ଙ୍କର ସୌହାର୍ଦ୍ଦ୍ୟ ସେମାନଙ୍କ ପ୍ରତି ଥିଲା । ବ୍ରିଷ୍ଟଲରୁ ବନ୍ଧୁବାନ୍ଧବମାନେ ପ୍ରତି ଗ୍ରୀଷ୍ମକାଳରେ ଆସୁଥିଲେ ଏବଂ ସେମାନଙ୍କ ସହ ସାକ୍ଷାତ କରି ମା ଖୁବ୍ ଆନନ୍ଦ ପାଇଲେ । ମୋଟ ଉପରେ ୧୮୩୯ ବେଳକୁ ଅବସ୍ଥା ଅନେକ ଭଲ ହୋଇଯାଇଥିଲା ।

ତଥାପି ବାପା ମା ସର୍ବଦା କଳହ କରୁଥିଲେ । ମୁଁ ଆଶ୍ଚର୍ଯ୍ୟ ହେଉଥିଲି ଏପରି ସମ୍ପୂର୍ଣ୍ଣ ବିରୋଧୀ ଭାବର ବ୍ୟକ୍ତି ବିବାହ କଲେ କିପରି ! ଶାରୀରିକ ଓ ମାନସିକ ଦୃଷ୍ଟିକୋଣରୁ ସେମାନେ ପରସ୍ପର ବିପରୀତ । ବାପା ଜଣେ ଦୀର୍ଘାଙ୍ଗ, ରକ୍ତବର୍ଣ୍ଣର, ଛ'ଫୁଟିଆ, ଚଉଡ଼ାକାନ୍ଧର ଶକ୍ତିଶାଳୀ ଏବଂ କର୍ମପ୍ରବଣ ବ୍ୟକ୍ତି । ତାଙ୍କର ଥିଲା ଉଜ୍ଜ୍ୱଳ ଲାଲବର୍ଣ୍ଣର କେଶ, ତୀକ୍ଷ୍ଣ, ନୀଳ ଚକ୍ଷୁ, ଶ୍ୱେତ କପାଳ ଏବଂ ଅନ୍ୟ ସବୁ ଦୃଷ୍ଟିରୁ ସେ ଖୁବ୍ ସୁନ୍ଦର ଦିଶୁଥାନ୍ତେ ଯଦି ବସନ୍ତ ରୋଗ ତାଙ୍କୁ ଅତି ବିକୃତ କରିଦେଇ ନ ଥାନ୍ତା । ସେ ଅନର୍ଗଳ ଗପନ୍ତି ଏବଂ ଭଲ ମନରେ ଥିବାବେଳେ ଶବ୍ଦ ଓ କୋଳାହଳ ଭଲ ପାଆନ୍ତି । ବ୍ୟାୟାମ, ମୁଷ୍ଟିଯୁଦ୍ଧ, କ୍ରିକେଟ ଖେଳ, ଘୋଡ଼ାଚଢ଼ା, ଭ୍ରମଣ ଓ ସନ୍ତରଣ ପ୍ରଭୃତି ତାଙ୍କର ପ୍ରିୟ । ତା'ଛଡ଼ା ସେ ସବୁପ୍ରକାର ବିଷୟରେ ପଢୁଥିଲେ, ଅସମ୍ଭବ ସ୍ମରଣଶକ୍ତିର ଅଧିକାରୀ ଥିଲେ । ତାଙ୍କ ପରିବାରର ଅନ୍ୟମାନଙ୍କ ପରି ସେ ବଦ୍‌ରାଗୀ ଥିଲେ ମଧ୍ୟ କ୍ଷଣକେ ଶାନ୍ତ ହେଉଥିଲେ; ନିର୍ଭୀକ, ସ୍ପଷ୍ଟବକ୍ତା ଓ ସମ୍ମାନାସ୍ପଦ ମଧ୍ୟ ଥିଲେ । ବାହ୍ୟ କ୍ରିୟାକର୍ମ ପ୍ରତି ସେ ଖୁବ୍ କମ୍ ଗୁରୁତ୍ୱ ଦେଉଥିଲେ ମଧ୍ୟ ସେ ଥିଲେ ଧାର୍ମିକ ଓ ନୈଷ୍ଠିକ ଖ୍ରୀଷ୍ଟିଆନ । ତାଙ୍କ ବନ୍ଧୁ ଚାର୍ଲସ କିଙ୍ଗଲେ କହନ୍ତି ସେ ଜଣାଯାଉଥିଲେ ଜଣେ 'ପ୍ରବଳ ଖ୍ରୀଷ୍ଟିଆନ୍' ପରି । ଗିର୍ଜା ଭିତରକୁ ଯିବାପାଇଁ ଇଚ୍ଛା କରୁନଥିଲେ ମଧ୍ୟ ଥରେ ସେଠାକୁ ଗଲେ ମନଧ୍ୟାନ ଦେଇ ଏପରି ଧର୍ମପ୍ରଚାରକର କାର୍ଯ୍ୟ କରୁଥିଲେ ଯେ, ତାହା ଦେଖି ମୋ ଅଜା ଯେ କି ତାଙ୍କୁ ଜଣେ 'ବଢ଼ିଆ ଡଣ୍ଡିକଟା ବଦମାସ' କହୁଥିଲେ, ସେଥିରେ ସେ ଯୋଗ କରୁଥିଲେ ଯେ ସେ ଦେଖିଥିବା ସମସ୍ତ ଯାଜକମାନଙ୍କ ମଧ୍ୟରେ ସେ ସର୍ବୋତ୍ତମ ।

ମୋ ମା ଥିଲେ ଅତ୍ୟନ୍ତ କ୍ଷୀଣାଙ୍ଗୀ, ଶରୀର ଓ ମୁଖମଣ୍ଡଳ ଗଠନରେ ଅତ୍ୟନ୍ତ ସୁନ୍ଦରୀ । ତାଙ୍କର କେଶ ଗାଢ଼ କୃଷ୍ଣନୀଳ, ବର୍ଣ୍ଣ ଶେତା-ପୀତାଭ, ଆକୃତି ସୁନ୍ଦର ସୁଗଠିତ । ଦେଖିବାକୁ ସେ ଜଣେ ପୂରାପୂରି ଫରାସୀ ସ୍ତ୍ରୀଲୋକ ପରି Petite et Proprtte କ୍ଷୀଣାଙ୍ଗୀ ଶୁଚିମତୀ ବାଳିକା । ତାଙ୍କ ପିତା ଫରାସୀ ହୁଗ୍‌ନାଟ ଜାତୀୟ ଏବଂ ମା ଫରାସୀ କାନାଡ଼ୀୟ ହୋଇଥିବାରୁ ଏପରି ହେବା ସ୍ୱାଭାବିକ । ସେ ଥିଲେ କଡ଼ା କିନ୍ତୁ ଖାଣ୍ଟି ଲୋକ, ନିଖୁଣ ଭାବରେ

ଔପଚାରିକ ଓ ବିଧିବଦ୍ଧ, ମନୋବୃତ୍ତିରେ କଠୋର ଓ ଶୀତଳ, ଅବଶ୍ୟ ଖୁବ୍ ନୈଷ୍ଠିକ ଭାବରେ ଧାର୍ମିକ । କୌଣସି ପ୍ରକାର ଜ୍ଞାନ ଆହରଣ ପାଇଁ ତାଙ୍କର ଆଗ୍ରହ ଆଦୌ ନ ଥିଲା ଏବଂ ସୂଚୀକାମରେ ସେ ସବୁବେଳେ ଲାଗି ରହୁଥିଲେ । ମୋ ସ୍ମୃତିରେ ମା'ଙ୍କର କିଛି ନା କିଛି ସୂଚୀକର୍ମରେ ନିଯୁକ୍ତ ଛବି ସର୍ବଦା ଜୀବନ୍ତ ଅଛି । ଏପରି ଜଣେ କୋଳାହଳପ୍ରବଣ, ତେଜି, କାମନାସକ୍ତ ପୁରୁଷ ଏପରି ଜଣେ ନୀରବ, ଭାବହୀନ ସ୍ତ୍ରୀପ୍ରତି କିପରି ଆକୃଷ୍ଟ ହେଲେ ସେ ରହସ୍ୟର ସମାଧାନ ଅସମ୍ଭବ । ସେମାନଙ୍କ ମଧ୍ୟରେ ପରବର୍ତ୍ତୀ ବହୁ ମନୋମାଳିନ୍ୟ ପରି ପ୍ରଥମ କଳହର ସୃଷ୍ଟି ହୁଏ ମା'ଙ୍କର ନିଜ ପରିବାର ପ୍ରତି ଅତ୍ୟଧିକ ଏବଂ ଅଯୌକ୍ତିକ ଆକର୍ଷଣର ପ୍ରଦର୍ଶନ ଯୋଗୁଁ । ସୀରସେଟ୍‌କୁ ଆସି ସେ ତାଙ୍କ ମା ଓ ଭଉଣୀମାନଙ୍କ ସଙ୍ଗେ ବରାବର ପତ୍ରାଳାପ କଲେ । ଏହା ଖୁବ୍ ସ୍ୱାଭାବିକ ଏବଂ ବର୍ତ୍ତମାନ ସମୟ ହୋଇଥିଲେ କିଛି ଅସୁବିଧା ନ ଥିଲା; କିନ୍ତୁ ୧୮୩୯ରେ ପେନିମୁଦ୍ରାର ଡାକକାର୍ଡ଼ ନ ଥିଲା । ବର୍ତ୍ତମାନ ପରି ପ୍ରେରକକୁ ଡାକଖର୍ଚ୍ଚ ଦେବାକୁ ପଡୁନଥିବାରୁ ପାଇବାଲୋକକୁ ବହୁ ଖର୍ଚ୍ଚ କରିବାକୁ ପଡୁଥିଲା । ଡାକଖର୍ଚ୍ଚ ଦେଇପାରୁ ନ ଥିବାରୁ ଗରିବଙ୍କ ନାମରେ ଥିବା ଚିଠି ଡାକଘରେ ସପ୍ତାହବ୍ୟାପୀ, ଏପରିକି ମାସବ୍ୟାପୀ ମଧ୍ୟ ପଡ଼ି ରହୁଥିଲା । ମା ଯେତେବେଳେ ତାଙ୍କର କୌଣସି ଭଉଣୀଙ୍କଠାରୁ ପ୍ରତ୍ୟେକ ପନ୍ଦର ଦିନରେ କିମ୍ବା ଆହୁରି ଶୀଘ୍ର ବିଡ଼ାଏ ଚିଠି ପାଉଥିଲେ ଏବଂ ସେଥିପାଇଁ ବାପାଙ୍କୁ ଅଧକ୍ରାଉନ ବା ଅଧିକ ଦେବାକୁ ପଡ଼ିଲା, ସେ ଏହାର ପ୍ରତିବାଦ କଲେ । ଆହୁରି ମଧ୍ୟ ସେ ଜାଣିଥିଲେ ଯେ ସେଇ ସବୁ ଚିଠିରେ ଏଣୁତେଣୁ ବାଜେ ଗପ ଓ ତାଙ୍କ ପ୍ରତି ଗାଳିଛଡ଼ା ଆଉ କିଛି ନ ଥିବ । ଟମ୍ (ବାପାଙ୍କ ଡାକ ନାମ) ମା'ଙ୍କ ପରିବାର ଦୃଷ୍ଟିରେ ଏକ ଘୃଣ୍ୟ ରାକ୍ଷସ ହୋଇଗଲେ । ଦାରିଦ୍ର୍ୟ ସହ କଠୋର ସଂଗ୍ରାମରତ ମୋର ଦରିଦ୍ର ପିତା ଏପରି ଘନଘନ ଚିଠି ପାଇଁ ଅର୍ଥ ଦେଇ ପାରିବେନି ବୋଲି ଧମକାଇବାରୁ ମା ଏବଂ ତାଙ୍କ ପରିବାର ଖୁବ୍ ତର୍ଜନ ଗର୍ଜନ କଲେ ଏବଂ ଘୋର କଳହ ଆରମ୍ଭ ହେଲା ।

ଉଭୟ ପଟର ସୁଭାଗ୍ୟକୁ ବାପା ୧୮୪୦ରେ ସମରସେଟ ଛାଡ଼ି ଲଣ୍ଡନ ଯିବାପାଇଁ ସ୍ଥିର କଲେ । ଲଣ୍ଡନର ଉତ୍ତରପୂର୍ବ ଉପକଣ୍ଠରେ ଷ୍ଟାମ୍ଫୋଡ଼ହିଲ ଗିର୍ଜାରେ ସେ କ୍ୟୁରେଟ ପଦବୀ ପାଇଲେ, କିପରି ପାଇଲେ ମୁଁ ଜାଣି ନାହିଁ । ସେତେବେଳେ ସେ ସ୍ଥାନ ଗାଁଟିଏ ଥିଲା । ସେତେବେଳକୁ ମୁଁ ତିନିବର୍ଷର ପିଲା ମାତ୍ର । ଆମର ଲଣ୍ଡନ ଯିବାର କୁହୁଡ଼ିଆ ସ୍ମୃତି ଟିକିଏ ମୋର ଅଛି । ମା, ଆମ ଧାଈ ଏମ୍ମା କାମେରୌଁ, ମୁଁ ଓ ମୋ ଭାଇ ପିଅରସନ୍ ଦିନେ ସନ୍ଧ୍ୟାରେ ବ୍ରିଷ୍ଟଲ୍‌ରୁ ଗାଡ଼ିରେ ବସିଲୁ । ତା'ପରେ ଏକ ଭୟଙ୍କର ଲମ୍ବା ରାତ୍ରି, ଶବ୍ଦାୟିତ ଓ ଆନ୍ଦୋଳିତ ଯାନ, ତା ଭିତରେ ମୁଁ ଓ ମୋ ଭାଇ ବରାବର ସ୍ତ୍ରୀଲୋକ ଦୁହିଁଙ୍କ ଆଣ୍ଠୁ ଉପରୁ, ସେମାନେ ଢୁଳାଉଥିବା ବେଳେ ତଳକୁ ଖସିପଡ଼ି ତବାତଳେ ବିଛା ହୋଇଥିବା ଓଦା ଦୁର୍ଗନ୍ଧ ନଡ଼ା ଉପରେ ଯାତ୍ରୀମାନଙ୍କ ଗୋଡ଼ ତଳେ ଗଳି ପଡୁଥାଉ । ଆମେ କାନ୍ଦିଉଠିଲେ କେହି ଜଣେ ଆମକୁ ଗୋଟାଇ ନେଉଥାଆନ୍ତି । ସକାଳେ ଆମେ ଲଣ୍ଡନର ସ୍ନୋହିଲଠାରେ ଥିବା ସାରାମେନହେଡ଼ଠାରେ ପହଞ୍ଚିଲୁ । ସେଠି ମୋ ବାପା ଓ କକା ଜନ୍ ଆସି ଆମକୁ ବଗିଗାଡ଼ିରେ ଷ୍ଟାମ୍ଫୋଡ଼ହିଲକୁ ନେଇଗଲେ । ଆମେ ଗୋଟିଏ ଖୁବ୍ ଛୋଟ ଘରେ ରହିଲୁ । ଗୋଟିଏ ଛାତ ତଳେ, ଅଧାକାନ୍ଥି

ଦ୍ୱାରା ତାହା ଅଲଗା । ସମାନ ଆକାରର ଆଗରେ ଖଣ୍ଡେ ବଗିଚା ଓ ପଛରେ ଲମ୍ବା ଖାଲି ଜାଗା । ଏଇଠାରେ ୧୮୪୦ ଜୁନ୍ ୧୮ରେ ମୋ ତୃତୀୟ ଭାଇ ଉଇଲିଅମ କାରନାଭରନ୍ ଜନ୍ମ ହେଲା । ବାପାଙ୍କର ଜଣେ ସମ୍ପର୍କୀୟ ଭାଇ ଉଇଲିୟମ ବରୋଜ୍ ସେତେବେଳେ ଲଣ୍ଡନରେ ଡାକ୍ତରୀ ପଢୁଥିଲେ ଏବଂ ପ୍ରସୂତି କାଳରେ ମା'ଙ୍କର ଦେଖାଚାହାଁ କରୁଥିଲେ । ଦାରିଦ୍ର୍ୟ ହେତୁ ଡାକ୍ତରଙ୍କୁ ପଇସା ଦେବାପାଇଁ ବାପାଙ୍କର ସାମର୍ଥ୍ୟ ନ ଥିବାରୁ ସେ ପଇସା ନେଲେ ନାହିଁ । ତାଙ୍କରି ନାମାନୁସାରେ ତା'ର ନାମ ରହିଲା, 'କାରନାଭରନ' ସଂଜ୍ଞାଟି ମୋର ପ୍ରପିତାମହୀ ବୃଦ୍ଧା ଶ୍ରୀମତୀ କାରନାଭରନ୍‌ଙ୍କ ସ୍ମୃତିପାଇଁ ଯୋଗ କରାଗଲା । ସେ ମୋ ବାପାଙ୍କୁ ଖୁବ୍ ଭଲ ପାଉଥିଲେ ଏବଂ ସେଇ ସମୟରେ ତାଙ୍କର ମୃତ୍ୟୁ ହୋଇଥିଲା । ଷ୍ଟାମୋଡ୍ ହିଲଠାରେ ଆମେ ବେଶି ଦିନ ରହିଲୁ ନାହିଁ । ହିଥ୍‌କୋଟ ନାମରେ ଜଣେ ପ୍ରସିଦ୍ଧ ଧର୍ମାଚାର୍ଯ୍ୟ ବାପାଙ୍କୁ ଡକାଇଲେ । ୧୮୪୧ରେ ବାପା ଚେଲସାରେ ଏକ କ୍ୟୁରେଟ ପଦ ପାଇଲେ । ସେଠାର ରେକ୍ଟର ରେଭରେଣ୍ଡ ଚାର୍ଲସ କିଙ୍ଗସଲେ ଥିଲେ ଜଣେ ସହୃଦୟ ବୃଦ୍ଧ ବ୍ୟକ୍ତି ଏବଂ ତାଙ୍କ ପୁଅ ପ୍ରସିଦ୍ଧ ଲେଖକ ଚାର୍ଲସ୍ ଓ ହେନେରୀ ଥିଲେ ବାପାଙ୍କ ଘନିଷ୍ଠ ବନ୍ଧୁ । ମୋର ମନେଅଛି ଗୋଟିଏ କୋଠରିର କଣକୁ ଛୋଟ ଚଉକିଟିରେ ମତେ ବସେଇ ଦେଇ ବାପା ଓ ଚାର୍ଲସ କିଙ୍ଗସ୍‌ଲେ ଦାତମୋଜା ଗଳାଇ ମୁଷ୍ଟିଯୁଦ୍ଧ କରନ୍ତି; ମୁଁ ତାହା ଦେଖି ଡରିଯାଉଥାଏ । ତା'ପରେ ସେମାନେ ଦସ୍ତାପତ୍ରଭରା ପୋଟର ମଦ ମଗାନ୍ତି ଏବଂ ସାମ୍ୟବାଦ, ଶ୍ରମଜୀବୀ ଓ ସେହିପରି ଅନ୍ୟାନ୍ୟ ବିଷୟରେ (ଯାହା ପରେ ବୁଝିଲି) ଘମାଘୋଟ ଆଲୋଚନା କରନ୍ତି । ସେଠାରେ ମଧ୍ୟ ଥିଲେ ସୌମ୍ୟ ସୁନ୍ଦର ବ୍ୟକ୍ତି ଉଇଲିଅମ ବ୍ରିଟନ, ଯେ କି ପରେ ଜର୍ସିର ଡିନ୍ ହେଲେ ଏବଂ ଆଉ ଦୁଇଜଣ ଯାହାଙ୍କ ସହ ବାପା ଖୁବ୍ ମିଳାମିଶା କରୁଥିଲେ । କିଙ୍ଗସ୍ ପ୍ୟାରେଡ୍‌ଠାରେ ଯେଉଁ ମହିଳାଙ୍କ ଘରେ ଆମେ ଥିଲୁ ବ୍ରିଟନ ତାଙ୍କର ଅତି ସୁନ୍ଦରୀ କନ୍ୟା ଆନି ମେରୀର ପ୍ରେମରେ ପଡ଼ିଲେ । ସେ ଯେ କାହିଁକି ତା ମା ଓ ଭାଇର ସମ୍ମତି ନେଇ ତାକୁ ଖୋଲାଖୋଲି ବିବାହ ନ କଲେ ତାର କାରଣ ଜଣା ପଡ଼ିଲାନି । ନେଇ ପଳାଇବାଟାକୁ ବୋଧହୁଏ ସେ ଅଧିକ ରୋମାଞ୍ଚକର ଓ ଅନୁଭୂତିମୟ ବୋଲି ମନେ କଲେ । ଦିନେ ସକାଳେ ସେମାନେ ଘରୁ ପଳାଇଯାଇ ନଗରର ଏକ ଗିର୍ଜାରେ ବିବାହ କଲେ । ଅନ୍ୟ ବନ୍ଧୁମାନଙ୍କ ସହ ମୋ ବାପା ସେମାନଙ୍କୁ ଖୋଜି କେଣ୍ଟର ଏକ ଗ୍ରାମ୍ୟ କୁଟୀରରେ ଆବିଷ୍କାର କଲେ ଏବଂ ଫେରିବାକୁ ପ୍ରବର୍ତ୍ତାଇଲେ । କିନ୍ତୁ ବ୍ରିଟନ ଚେଲସା ଛାଡ଼ି ଚାଲିଯିବା ପାଇଁ ଉପଯୁକ୍ତ ମନେକଲେ ଓ ଅନେକ ବର୍ଷ ପର୍ଯ୍ୟନ୍ତ ଆମେ ଆଉ ତାଙ୍କୁ ଦେଖିଲୁ ନାହିଁ । ଆମେ ମଧ୍ୟ ମେଲବରୋ ସ୍କୋୟାରଠାରେ ଥିବା ଏକ ଘରକୁ ଉଠିଗଲୁ । ଚେଲସା ଓ ବ୍ରମ୍ପଟନ ମଝିରେ ପଡ଼ିଆ ଓ ବଜାର ନିକଟ ବଗିଚା ଭିତରର ଏଇ ଛୋଟିଆ ଘରଟି ବର୍ତ୍ତମାନ ଭଙ୍ଗାହୋଇ ନୂଆ ତିଆରି ହୋଇଗଲାଣି । ସେଇଠାରେ ମୁଁ ଓ ମୋ ଭାଇମାନେ ଏଣେତେଣେ ମନ ଖୁସିରେ ଘୂରୁଥିଲୁ ।

୧୮୪୨ରେ ମା ଶକ୍ତ ବେମାର ପଡ଼ିଲେ, ଅସମୟରେ ପିଲାଟାଏ ଜନ୍ମ ହୋଇ ମରିଗଲା । ତା'ପରେ ସୁସ୍ଥହେବା ପାଇଁ ସେ ଓ ମୋର ଭାଇମାନେ ମାର୍ଗେଟ ଚାଲିଗଲେ ଏବଂ ଏକ ଅସ୍ତ୍ରୋପଚାର ପାଇଁ ମୁଁ ରହିଲି । କିଛିଦିନ ପୂର୍ବରୁ ଖୋଲା କବାଟର ତାଳାରେ ପିଚିହୋଇ

ମୋ ବାଁପଟ ଆଖିପତା ଖୁବ୍ ଜୋରରେ କଟିଯାଇଥିଲା । ଘା ଯଥାସମୟରେ ଶୁଖିଲା କିନ୍ତୁ ସେହି ସ୍ଥାନରେ ମାଂସ ପିଣ୍ଡୁଳାଟିଏ ବାହାରି ଏତେ ବଢ଼ିଲା ଯେ ଆଖି ଘୋଡ଼େଇ ହୋଇପଡ଼ିଲା । ଶେଷରେ ଡାକ୍ତରମାନେ ସ୍ଥିର କଲେ ଯେ ତାକୁ କାଟିଦେବାକୁ ହେବ । ସେତେବେଳକୁ ମୋତେ ପାଞ୍ଚବର୍ଷ ମାତ୍ର ହୋଇଥିଲେ ସୁଦ୍ଧା ସବୁ ଘଟଣା ମନେଅଛି । ଗ୍ରୀଷ୍ମକାଳର ଏକ ସୁନ୍ଦର ଦିନରେ ବାପା ଖାଇବାକୁ ଆସିବାବେଳେ ତାଙ୍କ ସହ ଥିଲେ ଗମ୍ଭୀର, ସ୍ଥିର ଦୃଷ୍ଟିର ତିନିଜଣ ଭଦ୍ରବ୍ୟକ୍ତି । ସେମାନେ ବସି ଖିଆପିଆ କଲେ । ତା'ପରେ ଆମ ପାରିବାରିକ ଡାକ୍ତର ଆସି ମୋତେ ଦୋମହଲା ଉପର ବଡ଼ ଶୋଇବାଘରକୁ ନେଇଗଲେ । ସେଠାରେ ମୋତେ ଉଚ୍ଚା, ଅଣ-ଓସାରିଆ ଟେବୁଲରେ ବାନ୍ଧି ଦିଆଗଲା । ଏମା କାମେରୋଁ ମୋ ପାଖରେ ଠିଆହୋଇ କାନ୍ଦକାନ୍ଦ ହୋଇ ଥରିଲା ସ୍ୱରରେ କହୁଥାନ୍ତି ଯେ ଏଥିରେ ଡରିବାର କିଛି ନାହିଁ । ସେ ତିନିଜଣଯାକ ଗମ୍ଭୀର ଭଦ୍ରବ୍ୟକ୍ତି ଆସି ସେ ମାଂସପିଣ୍ଡୁଳାକୁ, ହାତରେ ଧରି ଫୁସ୍‌ଫାସ୍ କଥାବାର୍ତ୍ତା ହେଲେ । ମୁଁ ପ୍ରାଣାନ୍ତକ ଭାବରେ ଭୀତତ୍ରସ୍ତ ହୋଇପଡ଼ିଲି । ହଠାତ୍ ତୀବ୍ର ଯନ୍ତ୍ରଣା ଅନୁଭୂତ ହେଲା । ଏହାପରେ ଆଖି ବନ୍ଧା ହୋଇ ଅନେକ ଦିନ ମୁଁ ଶେଯରେ ପଡ଼ିଲି । ସେ ଜ୍ଞାନୀ ଭଦ୍ରମହୋଦୟଗଣ ସେଇ ପିଣ୍ଡୁଳାଟିକୁ ତାଙ୍କ ସାଙ୍ଗରେ ନେଇଗଲେ ଏବଂ ମୋର ମନେହୁଏ ତାହା ଏ ପର୍ଯ୍ୟନ୍ତ କେଉଁଠି ସ୍ପିରିଟ ଭିତରେ ସୁରକ୍ଷିତ ଅଛି, କାରଣ ମୁଁ ଶୁଣିଛି ଏହା ଥିଲା ସମ୍ପୂର୍ଣ୍ଣ ବିଶେଷ ଧରଣର ଏକ ବର୍ଦ୍ଧିତ ମାଂସପିଣ୍ଡୁଳା ଯାହାକି ଡାକ୍ତରୀ ବିଜ୍ଞାନ କ୍ଷେତ୍ରରେ ଖୁବ୍ ଆଗ୍ରହ ସୃଷ୍ଟି କରିଥିଲା । ଆଉ ଟିକିଏ ବୟସ୍କ ହୋଇଥିଲେ ସେତେବେଳେ ବୋଧହୁଏ ମୁଁ ଏଥିପାଇଁ ଆତ୍ମପ୍ରସାଦ ଅନୁଭବ କରିଥାଆନ୍ତି ।

ମା ଫେରିଲାବେଳକୁ ମୁଁ ଭଲ ହୋଇଯାଇଥିଲି କିନ୍ତୁ ସେ ମୋତେ ଛାଡ଼ି ଚାଲିଯାଇଥିବାରୁ ଖୁବ୍ ଅନୁତାପ କଲାପରି ମନେହେଲା ଏବଂ ମୋ ପ୍ରତି ସେ ଏତେ ସ୍ନେହପ୍ରବଣ ଓ କୋମଳ ହୋଇଉଠିଲେ ଯେ ଏହା ପୂର୍ବରୁ ବା ପରେ ସେପରି ଥିବାର ମୋର ମନେ ନାହିଁ । ମୋର ମନେହୁଏ ଏସବୁ ଘଟଣା ନ ଜଣାଇ ତାଙ୍କୁ ପଠାଇ ଦିଆଯାଇଥିଲା କାରଣ ତାଙ୍କ ବେମାର ଓ ଦୁର୍ବଳତା ସମୟରେ ମୋ ଅସ୍ତ୍ରଚିକିତ୍ସାର ଦୃଶ୍ୟ ସେ ସମ୍ଭାଳିପାରି ନ ଥାନ୍ତେ । ସେ ସମୟରେ ମୋତେ ଏତେ ଗେହ୍ଲା କରାଗଲା ଯେ ମୁଁ ଟିକିଏ ଆତ୍ମାଭିମାନୀ ଓ ଦାମ୍ଭିକ ହୋଇପଡ଼ିଲି । ସୌଭାଗ୍ୟବଶତଃ ସ୍କୁଲକୁ ଗଲାବେଳକୁ ମୋଠାରୁ ସେସବୁ ବାହାରି ଯାଇଥିଲା । ଅନେକ ଜିନିଷ କରିବା ମୁଁ ଶିଖିଲି ଏବଂ ଶୀଘ୍ର ସହଜରେ ପଢ଼ାପଢ଼ି କରିବା ଶିଖିଗଲି; ଅଧାଅଧି ବୁଝିପାରୁ ନ ଥିଲେ ମଧ ଘଣ୍ଟାଘଣ୍ଟା ଧରି ତଳେ ଶୋଇରହି ବହିକୁ ଚାହିଁଲି । ମା ଯେ କହନ୍ତି ମୁଁ ତିନିବର୍ଷବେଳୁ ପଢ଼ାପଢ଼ି ଶିଖିଥିଲି ତାହା ବିଶ୍ୱାସଯୋଗ୍ୟ ମନେହୁଏ ନାହିଁ; କିନ୍ତୁ ସେ ଅପ୍ରିୟ ହେଲେ ମଧ ସତ୍ୟବାଦିନୀ, କିଛି ସତ୍ୟତା ନ ଥିଲେ ସେ ଏକଥା କହନ୍ତେ ନାହିଁ । ଚେଲସାରେ ଲାଟିନ୍ ଶିଖି ମା'ଙ୍କ ଆଗରେ ବାଇବେଲ ପଢ଼ିବା ମୋର ମନେଅଛି । ରାସ୍ତା ଓ ପୁରୁଣା କାଠପୋଲ ଉପରେ ବୁଲୁବୁଲୁ ଆମେ ଧର୍ମଶାସ୍ତ୍ର ଚର୍ଚ୍ଚା କରୁଥିଲୁ । ଚେଲସା କିନ୍ତୁ ଥିଲା ସନ୍ତସନ୍ତିଆ, ଅସ୍ୱାସ୍ଥ୍ୟକର ଯେଉଁଠି ଆମେ ସବୁବେଳେ ବେମାର ପଡୁଥିଲୁ, ତେଣୁ ବାପା ଅନିଚ୍ଛାସତ୍ତ୍ୱେ ଶେଷକୁ ସେଠା ଛାଡ଼ିବାକୁ ମନସ୍ଥ କଲେ । ଚେଲସାରେ ତାଙ୍କର ଅସଂଖ୍ୟ

ବନ୍ଧୁମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ଔପନିବେଶିକ ଦପ୍ତରର ଜଣେ ଉଚ୍ଚ ପଦାଧିକାରୀ ଜାସପର୍ ବ୍ଲଣ୍ଟ । ତାଙ୍କ ଭାଇ ହେନେରୀ ବ୍ଲଣ୍ଟ ଟ୍ରିନିଟି ଗିର୍ଜାରେ ଅନେକ ବର୍ଷ ଧରି ଅନ୍ତେବାସୀ ଥିଲେ ଏବଂ ସାସଙ୍ଗ ଏଭାଞ୍ଜେଲିକ୍ ଗୋଷ୍ଠୀର ପ୍ରଖ୍ୟାତ ପ୍ରଚାରକ ଥିଲେ କିନ୍ତୁ ସେହି ସମୟରେ ସେ ଷ୍ଟେଥାଟ୍ସର ରେକ୍ଟର ଥିଲେ । ଜାସପର୍ ବ୍ଲଣ୍ଟ ମଧ୍ୟ ଚେଲସାରୁ ଷ୍ଟ୍ରେଥାମ୍‌କୁ ବଦଳି ହେଲେ ଏବଂ ତାହା ଶୁଣି ବାପା ମଧ୍ୟ ପରିବର୍ତ୍ତନ ପାଇଁ ଇଚ୍ଛା କଲେ ଏବଂ ଏକ କ୍ୟୁରେଟ୍ ପଦ ଦେବାପାଇଁ ତାଙ୍କ ଭାଇ ହେନେରୀ ବ୍ଲଣ୍ଟଙ୍କୁ ମଙ୍ଗାଇଥିଲେ ।

୧୮୪୩ ପ୍ରଥମ ଭାଗରେ ଆମେ ଷ୍ଟ୍ରେଥାମ୍ ଆସିଲୁ । ଏଠାରେ ଆମ ରହଣି ଆମ ବାଲ୍ୟ ବୟସର ସବୁଠାରୁ ଆନନ୍ଦର ସମୟ ଏବଂ ବାପାଙ୍କ ନୈରାଶ୍ୟ ଜଞ୍ଜାଳମୟ ଜୀବନର ଏକ ମରୁଦ୍ୟାନ ପରି ଜଣାପଡ଼େ । ପିଲା ଥିଲେ ମଧ୍ୟ ସେ ସ୍ଥାନଟି ମୋର ଭଲ ମନେଅଛି । ବୋଧହୁଏ ପରବର୍ତ୍ତୀ କାଳରେ ସେଠାକୁ ବାରମ୍ବାର ଯାଇ ବହୁସମୟ ରହିବା ଫଳରେ ମୋର ସେ ସ୍ମୃତି ମାର୍ଜିତ ହୋଇଯାଇଛି । ୧୮୯୫ରେ ମୁଁ ଯେତେବେଳେ ଶେଷଥର ପାଇଁ ସେଠାକୁ ଗଲି ସେଠାରେ ଏତେ ପରିବର୍ତ୍ତନ ହୋଇଯାଇଥିଲା ଯେ, ବାଟ ପାଇବା ମୋ ପକ୍ଷରେ କଷ୍ଟକର ହେଲା । ୧୮୪୨ର ଶାନ୍ତ ପଲ୍ଲୀ ଗ୍ରାମ ବର୍ତ୍ତମାନ ହୋଇଛି କର୍ମମୁଖର ଉପନଗରୀ । ବ୍ରିଗ୍‌ଟନକୁ ଯାଇଥିବା ବଡ଼ରାସ୍ତା ଧାଡ଼ିଧାଡ଼ି କେତେକ ବସତି ଭେଦକରି ଲଣ୍ଡନର ଏକ୍‌ସଚେଞ୍ଜଠାରୁ ପଞ୍ଚମ ମାଇଲଖୁଣ୍ଟିଠାରେ ମୁକ୍ତ ପ୍ରାନ୍ତରରେ ମିଶିଛି । ବାଟଯାକ ଗହନବାଡ଼, କିଛି କିଛି ଉଦ୍ୟାନ ଓ ନଗରର ବ୍ୟବସାୟୀମାନଙ୍କର ଘର, ମଝିରେ ମଝିରେ ପଡ଼େ କେଉଁଠି କିପରି ଛୋଟ ପୁରୁଣା ଢଙ୍ଗର ଉଦ୍ୟାନ, ଆଗରେ ଘୋଡ଼ାଙ୍କ ବିଶ୍ରାମସ୍ଥଳ ଥିବା ଗୋଟାଏ ଦି'ଟା ଚଟିଘର । ଏସବୁ ପାରିହୋଇ ରାସ୍ତା ଏକ ସବୁଜ ତ୍ରିକୋଣ ସୃଷ୍ଟି କରିଛି । ସେଠାରେ ଅଛି ଆଉ କେତୋଟା ସୁନ୍ଦର ଦୋକାନ, ଗୋଟାଏ ଚଟିଘର, ଗୋଟାଏ କାରାଗାର, ଯାହାର କବାଟସବୁରେ ମୋଟା କଣ୍ଟାସବୁ ପିଟା ହେଇଛି ଏବଂ ଆଗରେ ଗୋଟାଏ ପମ୍ପ । ପଶ୍ଚିମର ବିରାଟ ଶ୍ମଶାନଭୂମିରେ ଠିଆହୋଇଛି ଏକ ଗିର୍ଜା ଏବଂ ତା'ପରେ ଛାୟା ଶୀତଳ ଉଦ୍ୟାନ ଥାଇ ଆରାମପ୍ରଦ ରେକ୍ଟର ନିବାସ । ଏଇଠାରେ ରାସ୍ତା ଦୁଇପଟକୁ ଯାଇଛି, ଗୋଟିଏ ଟୁଟିଂକୁ ଏବଂ ଅନ୍ୟଟି ମିଚାମକୁ । ଏଇ ରାସ୍ତାମାନଙ୍କ ମିଳନସ୍ଥଳରେ ଥିଲା ତିନିଚାରିଟି ପ୍ରଶସ୍ତ ପୁରୁଣା ଘର ଯେଉଁଥିରୁ ଗୋଟିଏ ବାପା ନେଇଥିଲେ । ବର୍ତ୍ତମାନ ସେସବୁ ଭାଙ୍ଗି ଦିଆଯାଇ ତା'ସ୍ଥଳରେ ଏକ ରୋମାନ ଗିର୍ଜା ଓ ଯାଜକନିବାସ ହୋଇଛି । ଏହି ବଡ଼ ରାସ୍ତା ସବୁଜିମା ପାରିହୋଇ ପୁଣି ପ୍ରାନ୍ତର ମଧ୍ୟ ଦେଇ ଯାଇଛି । ପ୍ରଶସ୍ତ ସୁରକ୍ଷିତ ଭୂମି ଉପରେ କେଉଁଠି କିପରି ସୁନ୍ଦର ଘରମାନ ଠିଆ ହୋଇଛି, ଶେଷରେ ଯାଇ ପହଞ୍ଚିଛି ଷ୍ଟ୍ରେଥାମ୍ କମନ୍‌ରେ । ଏହା ସେଦିନ ପରି ଏବେ ମଧ୍ୟ ପାହାଡ଼ର ନର୍‌ଉଡ୍ ଆଡ଼କୁ ଥିବା ଗଡ଼ାଣିରେ ଅବସ୍ଥିତ । ଦକ୍ଷିଣପଟେ ଧାଡ଼ିଏ ବଡ଼ବଡ଼ ଘର ଏବଂ ଶୀର୍ଷଦେଶରେ କେତୋଟି ସୁନ୍ଦର ଆକର୍ଷଣୀୟ ଘର । ଏହାପରେ ଥିଲା ବୃକ୍ଷଛାୟାଶୋଭିତ ଗଳିସବୁରେ ବାଡ଼— ବସନ୍ତ ଋତୁରେ ଧଳା ଦିଶୁଥାନ୍ତି ଏବଂ ଶରତରେ ଆମେ ସେଠୁ ବହୁତ ବାଦାମ ସଂଗ୍ରହ କରୁ । କମନ ଉପରୁ ବିସ୍ତୃତ ତରଙ୍ଗାୟିତ ଗ୍ରାମାଞ୍ଚଳର ଚମତ୍କାର ଦୃଶ୍ୟ ଦେଖାଯାଏ; ଉତ୍ତରରେ ଲଣ୍ଡନ, ପଶ୍ଚିମରେ ଉଇମ୍‌ବ୍ଲଡ଼ନ ଏବଂ ଦକ୍ଷିଣରେ କ୍ରଏଡ଼ନ୍ ପର୍ଯ୍ୟନ୍ତ ।

ଏଠାରେ ବାପାଙ୍କ ଦରମା ପୂର୍ବରୁ ଅଧିକ ଥିଲା ଏବଂ ଗୃହୋପଯୋଗୀ ସ୍ଥାୟୀ ଆସବାବ ନ ଥିବାରୁ ସେ ନିଜେ ଆସବାବ ସବୁ ଖଞ୍ଜିବାରେ ଲାଗିଲେ । ଅନେକ ବର୍ଷ ପର୍ଯ୍ୟନ୍ତ ମୁଁ ଜାଣିପାରିଲି ନାହିଁ ଏହା ସେ କିପରି କଲେ । ମନେହୁଏ ବୃଦ୍ଧ କାରନାଭରନ୍ ଜେଜେବାପାଙ୍କ ଉପରେ ଅସନ୍ତୁଷ୍ଟ ହୋଇ ତାଙ୍କ ଇଚ୍ଛାପତ୍ରରେ ତାଙ୍କ ସମ୍ପତ୍ତିକୁ (ଇଷ୍ଟଇଣ୍ଡିଆ ଷ୍ଟକ୍‌ର ୩୬୦୦୦ ପାଉଣ୍ଡ) ତାଙ୍କ କନ୍ୟାକୁ ଦେଇ ସେଥିରେ ଏପରି ଖଞ୍ଜି ଦେଇଥିଲେ ଯେ, ତା' ଉପରେ ଯେପରି ଜେଜେବାପାଙ୍କ ନିୟନ୍ତ୍ରଣ ରହିବ ନାହିଁ । ସେ ସେହି ଅର୍ଥର ସୁଧ ଓ ଘରଭଡ଼ା ଆଜୀବନ ଜେଜେମାଙ୍କୁ ଏବଂ ତାଙ୍କ ପରେ ଯଦି ଜେଜେବାପା ବଞ୍ଚିରହନ୍ତି ତାଙ୍କୁ ଏବଂ ତାଙ୍କ ପରେ ବଞ୍ଚିଥିବା ଉତ୍ତରାଧିକାରୀର ମୃତ୍ୟୁ ପରେ ତା'ର ସନ୍ତାନମାନଙ୍କୁ ସମାନ ଭାବରେ ଦେଇଯାଇଥିଲେ । ଫଳରେ ମୋର ବାପା ଏବଂ କକା ଦୁଇଜଣ ମାତ୍ର ସନ୍ତାନ ଥିବାରୁ ପ୍ରତ୍ୟେକେ ୧୮୦୦୦ ପାଉଣ୍ଡ ପାଇଲେ । ଜେଜେବାପା ତାଙ୍କର ପ୍ରତ୍ୟେକ ପୁଅଙ୍କୁ, ସେମାନଙ୍କ ଯାହା କିଛି ଅଭାବ ଅସୁବିଧା ଥାଉନା କାହିଁକି ବାର୍ଷିକ ୧୦୦ ପାଉଣ୍ଡ ଦେଲେ; ବେଶି ନୁହେଁ କି କମ୍ ନୁହେଁ ଏବଂ ଯେତେବେଳେ ସେ ସେମାନଙ୍କ ଉପରେ ଅସନ୍ତୁଷ୍ଟ ହୁଅନ୍ତି, ଯାହାକି ଅନେକ ସମୟରେ ହୁଏ, ଏହି ଭତ୍ତା ବନ୍ଦକରି ଦେଇ ବାପାଙ୍କୁ ଅତି କଷ୍ଟରେ ପକାଇ ଦିଅନ୍ତି । ବାପା ଓ ଜେଜେବାପାଙ୍କ କାମର ବିଚାର କରିବା ମୋ ପକ୍ଷରେ ଉଚିତ ବା ସମ୍ଭବ ନୁହେଁ । ମୁଁ ଏତିକି କେବଳ କହିପାରେ ଯେ ସେମାନଙ୍କ ମଧ୍ୟରେ ସର୍ବଦା ବାଦବିବାଦ ଲାଗୁଥିଲା ଏବଂ ପିଲାଦିନୁ ମୋତେ ଧାରଣା ଦିଆ ହୋଇଥିଲା ଯେ, ଜେଜେବାପା ଜଣେ ଅନ୍ୟାୟୀ, କଠିନ ହୃଦୟର ଅତ୍ୟାଚାରୀ ବୃଦ୍ଧ, ଯେ କି ଅର୍ଥର ଦୋଳାରେ ଦୋଳି ଖେଳୁଥିଲେ ମଧ୍ୟ ତାଙ୍କ ପୁଅମାନଙ୍କୁ ସେମାନଙ୍କ ଜୀବନଧାରଣର ଅତ୍ୟାବଶ୍ୟକତାରୁ ମଧ୍ୟ ବଞ୍ଚିତ ରଖୁଛନ୍ତି । ମୋ ମନ ମଧ୍ୟରେ ସେ ସର୍ବଦା ବୃଦ୍ଧ ରାଲଫ୍ ନିକ୍‌ଲେବିର ସାଦୃଶ୍ୟ ସୃଷ୍ଟି କରିଥାନ୍ତି । ଡିକେନ୍‌ସ୍‌ଙ୍କ ଉପନ୍ୟାସର ରାଲଫ୍ ମୂଳଚରିତ୍ରଟି ମଧ୍ୟ ଜେଜେବାପାଙ୍କ ସହ ଅଦ୍ଭୁତ ଭାବରେ ସମାନ । କିନ୍ତୁ ବାପାଙ୍କ ଆଡୁ ମଧ୍ୟ ସମ୍ଭବତଃ ଭୁଲ୍ ରହିଥିଲା । ତାହା ମୋର ବିଚାର୍ଯ୍ୟ ନୁହେଁ । ଯାହାହେଉ ପରିବାର ବଢ଼ିବା ସଙ୍ଗେ ଖର୍ଚ୍ଚ ବଢ଼ିବାରୁ ବାପା, ତାଙ୍କ ବାପାଙ୍କ ମୃତ୍ୟୁପରେ ଯେଉଁ ୧୮୦୦୦ ପାଉଣ୍ଡ ପାଇବାର ଥିଲା ତାହାରି ସିକ୍ୟୁରିଟି ଉପରେ ସେ ଅର୍ଥ ଉଠାଇବାକୁ ଲାଗିଲେ । ଜେଜେବାପା, ବାପାଙ୍କର ଏହି କାମ ଜାଣିପାରି ଖୁବ୍ ରାଗିଲେ । ସେ ଏହାର ପ୍ରତିଶୋଧ ନେଲେ, ଯାହାକି ପରେ ତାଙ୍କର କରିଥିବା ଇଚ୍ଛାପତ୍ରରୁ ଜଣାଯିବ ।

ମୋର ସନ୍ଦେହ ହୁଏ ଏପରି ଭାବରେ ଅର୍ଥ ସଂଗ୍ରହ କରି ବାପା ଷ୍ଟେଥାମ୍‌ରେ ଆମର ସୁନ୍ଦର ଘରଟିର ସାଜସଜ୍ଜା କରିଥିଲେ ଏବଂ ସେଇଟି ଅତି ମନୋରମ ଥିଲା । ରେକ୍ଟର ଶ୍ରୀ ବ୍ଲଷ୍ଟ ଅତି ବୃଦ୍ଧ ଓ ଜରାଗ୍ରସ୍ତ ହୋଇପଡ଼ିବାରୁ କାମ କରିପାରିଲେ ନାହିଁ, ତେଣୁ ସେ ଗିର୍ଜାଞ୍ଚଳର ସମସ୍ତ କାର୍ଯ୍ୟ ବାପା ଓ ତାଙ୍କ ସାଥି ନ୍ୟୁରେଟ୍‌ଙ୍କୁ କରିବାକୁ ପଡ଼ିଲା । ଏଥିରେ ସେ ଖୁବ୍ ଆଗ୍ରହ ଓ ଗୌରବବୋଧ ସହ ଲାଗିପଡ଼ିଲେ । ଷ୍ଟେଥାମ୍‌ର ସମାଜ ପ୍ରାୟ ପୂରାପୂରି ନଗରର ଧନୀ ବ୍ୟବସାୟୀମାନଙ୍କର, ଯେଉଁମାନଙ୍କର ପୃଷ୍ଠପୋଷକତା ଖୁବ୍ କମ୍ ଥିଲେ ମଧ୍ୟ ଭଦ୍ରାମି, ବଦାନ୍ୟତା ଓ ସାମାଜିକତା ଥିଲା । ଏହି ଦୟାର୍ଦ୍ର ଲୋକମାନଙ୍କ ମଧ୍ୟରୁ ଅନେକ ଆମର

ଆଜୀବନ ବନ୍ଧୁ ହୋଇ ରହିଲେ । ମହିଳାମାନେ ଆମ ତିନି ଭାଇ ସେମାନଙ୍କ ପିଲାଙ୍କ ସହ ଖେଳିବାକୁ ଭଲ ପାଉଥିଲେ ଏବଂ ଆମ ଦିନଗୁଡ଼ିକ ସେମାନଙ୍କର ସେଇ ଚମତ୍କାର ନିବାସମାନଙ୍କରେ ଆନନ୍ଦମୁଖରିତ ହୋଇ କଟୁଥିଲା । ଆମର ଶିଶୁମନରେ ସେଇ ପ୍ରାସାଦଗୁଡ଼ିକ ସବୁପ୍ରକାର ଆମୋଦପୂର୍ଣ୍ଣ ପରି ଜଣାଯାଉଥିଲା । ସୁନ୍ଦର ସୁରକ୍ଷିତ ଉଦ୍ୟାନ, ସେଥିରେ ଥିବା ବୃକ୍ଷଚାରାପାଳନ ଗୃହ, ଚିକ୍କଣ କୋମଳ ଘାସ ପ୍ରାନ୍ତର, ଛାୟାପ୍ରଦ ସାଇପ୍ରେସ୍ ଓ ଲାଇମଗଛ, ଘରମାନଙ୍କରେ ଥିବା ଘୋଡ଼ାଦୋଳି ଏବଂ ବାହାରେ ଗଛଶାଖାରୁ ଝୁଲୁଥିବା ଦୋଳିସବୁ ମୋତେ ଭଲ ଲାଗୁଥିଲା । ଏହି ସହୃଦୟ ଲୋକମାନଙ୍କ ନାମ ସବୁରେ ମୋ ବ୍ୟତୀତ ଆଉ କାହାରି ଆଗ୍ରହ ନ ଥିବ, ତଥାପି ସେମାନଙ୍କୁ ମନେ ପକାଇବାକୁ ଭଲଲାଗେ । ସେଠାରେ ଥିଲେ ଜଣେ ପଶମ ବ୍ୟବସାୟୀ ବଳିଷ୍ଠ ବୃଦ୍ଧ କୋଷ୍ଟର ଭଦ୍ର ଦୀର୍ଘକାୟ ତତ୍ତ୍ୱବାସୀ ଏବଂ ତାଙ୍କର ଦୁଇ ସୁନ୍ଦରୀ କନ୍ୟା ଜୁଲିଆ ଓ ଏମ୍ମା । ଜୁଲିଆ ହେଉଛି ମୋତେ ଭଲଲାଗିଥିବା ଝିଅମାନଙ୍କ ମଧ୍ୟରେ ଦ୍ୱିତୀୟା, ଯଦିଓ ମୋଠାରୁ ବୟସରେ ପ୍ରାୟ ପନ୍ଦରବର୍ଷ ବଡ଼ । ପ୍ରଥମାଟି ହେଉଛି ବୟସ ଓ ସ୍ନେହ ଆକର୍ଷଣ ଦୃଷ୍ଟିରୁ ପ୍ରଥମା, ଜଣେ ଇଂରାଜୀ ମହିଳାଙ୍କୁ ବିବାହ କରିଥିବା ସ୍ପେନୀୟ ବ୍ୟବସାୟୀଙ୍କ କନ୍ୟା ଜୁଲିଆନା ଆରୋଏଭ । ଜୁଲିଆନାକୁ ମୁଁ ନିବିଡ଼ ତଦ୍‌ଗତ ପ୍ରାଣରେ ଭଲ ପାଉଥିଲି । ମୋର ବୟସ ଥିଲା ଛ'ବର୍ଷ, ତା'ର ନଅ । ଏତେ ସୁନ୍ଦରୀ, ଚତୁରୀ, ସାହସିନୀ ନାୟିକା ଆଉ ନ ଥିବେ । ସେ ଅତି ଉଗ୍ର, ଦୁର୍ଦ୍ଦମ ଜାତୀୟ ଏକ ଟଟୁଘୋଡ଼ା ଚଢୁଥିଲା, ଗଛ ଚଢୁଥିଲା, ବଗିଚା ପାଚେରି ଉପର ଦେଇ ଦଉଡୁଥିଲା ଏବଂ ସବୁପ୍ରକାର ଆମାଜୋନୀୟ କସରତ କରୁଥିଲା । ତା' ପକେଟରେ ସର୍ବଦା ଆପେଲ୍ ବା ମିଠେଇ ଥାଏ ଯାହାକୁ ସେ ମୋ ସହ ଭାଗ କରେ, ପିଅରସନ୍ କି ଉଇଲିକୁ କିଛି ଦିଏ ନାହିଁ । କେତେ ମମତାମୟୀ ବିଚରା ଜୁଲିଆନା ! ଖୁବ୍ କମ୍ ବୟସରେ ସେ ଗୋଟିଏ ପଶୁକୁ ବାହାହେଲା ଯେ କି ତା'ପ୍ରତି ଦୁର୍ବ୍ୟବହାର କଲା ଏବଂ କୋଡ଼ିଏ ବର୍ଷ ନ ହେଉଣୁ ସେ ମରିଗଲା । ଭଗବାନ୍ ଯାହାଙ୍କୁ ଭଲ ପାଆନ୍ତି ସେ ଶୀଘ୍ର ମରେ । ତା'ପରେ ଥିଲେ କୋଓ୍ୱି ପରିବାର, ଯାହାଙ୍କୁ ମୁଁ ପରେ କଲିକତାରେ ଭେଟିଥିଲି; ରେକ୍ଟର ବ୍ଲଣ୍ଟ ଏବଂ ତାଙ୍କ ଭାଇ ଜାସପର୍‌ଙ୍କ ଅନେକ ଯୁବକପୁତ୍ର ଏବଂ ହକିନ୍‌ସ୍ ପରିବାର ଯାହାଙ୍କ କଥା ମୁଁ ପରେ କହିବି; ସେଇ ଗିର୍ଜାଞ୍ଚଳର ପ୍ରସିଦ୍ଧ ଜମିଦାର ବୃଦ୍ଧ ବେରିଆ ଟ୍ୟୁଙ୍କର ପୁଅ ଡିକିଟ୍ୟୁ । ଏଇ ବୃଦ୍ଧ ଟ୍ୟୁ ତାଙ୍କ ଜମି ଉପରେ କାହାକୁ ଘର ତୋଳିବାକୁ ଅନୁମତି ନ ଦେବାରୁ ହିଁ ଷ୍ଟ୍ରେଥାମ୍‌ର ପଲ୍ଲୀ ପରିବେଶ ସେ ପର୍ଯ୍ୟନ୍ତ ରହିପାରିଥିଲା । ମୁଁ ସେ ସମସ୍ତଙ୍କ ନାଁ କହିପାରୁ ନାହିଁ । ସମସ୍ତେ ଦୟାଳୁ, ସ୍ନେହୀ ଲୋକ ଥିଲେ ଏବଂ ସୁନ୍ଦର ଜାଗାରେ ବାସ କରୁଥିଲେ । ଷ୍ଟ୍ରେଥାମ୍ ଥିଲା ସ୍ୱର୍ଗ, ଭୂସ୍ୱର୍ଗ, ଦେବୋପମ ଧନିକ ନଗରବାସୀଙ୍କ ବାସସ୍ଥଳୀ ।

ରେକ୍ଟର ନିବାସ ପରେ ଥିଲା ଟୁଥିଂକମନ୍ । ଏବେ ବି ଅଛି କିନ୍ତୁ ହାୟ ! ବହୁ ପରିବର୍ତ୍ତନ ହୋଇଯାଇଛି । ସେତେବେଳେ ଏହା ଥିଲା ଦୁର୍ଗମ ଭୀମ ବନଭୂମି । ଏହାର ଗୋଟିଏ ପଟେ ଉଚ୍ଚ ଗହଳ ବୃକ୍ଷରାଜି, ସମ୍ମୁଖରେ ନୀଡ଼ଶୋଭିତ ଏଲମ୍ ବୃକ୍ଷଶ୍ରେଣୀ, ଡାହାଣପଟେ ଗୋଟିଏ ହ୍ରଦ, ବାମପଟେ ଛାୟାଶୀତଳ ପଥ; ତାରି ଭିତରେ ରହିଛି ଏକ ଲମ୍ବା, ଅନୁଚ୍ଚ ଧବଳ ଗୃହ, ସାମନାରେ ପୋଟିକୋ । ଏଇ ହେଉଛି ଷ୍ଟ୍ରେଥାମ ହାଉସ୍, ଯେଉଁଠି ଥରେ ଥ୍ରେଲସ୍ ବାସ

କରୁଥିଲେ ଏବଂ ଯେଉଁଠିକି ସୁବିଖ୍ୟାତ୍ ଡ. ଜନ୍‌ସନ୍ ବରାବର ଯାଉଥିଲେ । ସେଠାର ଲୋକଙ୍କୁ ଆମେ ଚିହ୍ନିଥିଲୁ ଏବଂ ପିଲାଙ୍କ ସାଙ୍ଗରେ ଖେଳିବାକୁ ଅନେକ ସମୟରେ ଯାଉଥିଲୁ । ବନଭୂମିର ଅଭ୍ୟନ୍ତରରେ ମାଟି ଢିପ ଉପରେ ଥିଲା ଗୋଟିଏ ଛୋଟ ଗୋଲାକାର ଗ୍ରୀଷ୍ମନିବାସ ଗୃହ । ଆମକୁ ଖୁବ୍ ଗୁରୁତ୍ୱ ସହକାରେ ସର୍ବଦା କୁହାଯାଉଥିଲା ଯେ ଡ. ଜନ୍‌ସନ୍ ଏଇଠାରେ ତାଙ୍କ ଅଭିଧାନ ଲେଖିଥିଲେ । ସେତେବେଳେ ମଧ୍ୟ ମୁଁ ଆଶ୍ଚର୍ଯ୍ୟ ହେଉଥିଲି ଏତେ ଛୋଟ ଘରେ କିପରି ସେ ଏ କାମ କରିପାରୁଥିଲେ ।

କମନ୍ ଉପରେ ଛୋଟ ନଦୀର କଡ଼ରେ ବଡ଼ ବଡ଼ ଏଲମ୍ ଗଛର ତଳେ ଆମେ କେତେ ସୁନ୍ଦର ସକାଳ ଅତିବାହିତ କରିଛୁ ! ସାଙ୍ଗରେ ଥାଏ ବିଶ୍ୱାସୀ ଧାଈ ଏମ୍‌ମା କ୍ୟାମେରନ୍; ରସ୍ ଲଟିରେ ଝୁଡ଼ି ବୁଣ୍ଡ, ବାଦାମ, ଆକ୍ରନ୍ ଗୋଟାଉ, ଜାମୁକୋଳି ଓ 'ହ' ଫଳ ଖୋଜିବୁଲୁ ଏବଂ ଛୋଟ ଛୋଟ ପୋକ ଓ ଜନ୍ତୁଜନ୍ତାଙ୍କୁ ଧରି ହଇରାଣ କରୁ । ଅନ୍ୟ ଦିଗରେ ଥିଲା ଲେଭେଣ୍ଡର ଓ ଗୋଲାପ ଦ୍ୱାରା ସୁରକ୍ଷିତ ମିଚାମ କ୍ଷେତ୍ର । ଆଉ ଏକ ଦିଗରେ ଷ୍ଟ୍ରେଥାମ୍ କମନ୍‌ର ପବନରେ ଆମେ ଦୌଡ଼ାଦୌଡ଼ି କରୁ । ଜୁଲିଆନା, ମୋ ଅତି ଦୁଃସାହସିନୀ ବାନ୍ଧବୀ, ନିର୍ଭୟରେ ତା' ଟଟୁଘୋଡ଼ା ଦଉଡ଼ାଏ । ପୋଟଲାଣ୍ଡର ଡିଉକ୍ ଘରଆଡ଼େ ପଡ଼ିଥିବା ଉଠାପକା ରାସ୍ତାକଡ଼ରେ ଗଛତଳେ ଆମେ ପିଲାମାନେ ବଣଭୋଜି କରୁ । ସେତେବେଳେ ଏବଂ ଅନେକ ବର୍ଷ ପର୍ଯ୍ୟନ୍ତ ମୁଁ ପଢ଼ିଥିବା ସବୁ କବିତା, ଉପନ୍ୟାସ ଓ ନାଟକର ଦୃଶ୍ୟସମୂହକୁ ମୁଁ ଷ୍ଟ୍ରେଥାମ୍‌ର ସେହି ପ୍ରିୟସ୍ଥଳୀରେ ଘଟୁଥିବାର କଳ୍ପନା କରୁଥିଲି । ପୋଟଲାଣ୍ଡ ଲେନ୍‌ରେ ଅନୁଚରମାନଙ୍କ ସହ ଡିଉକ୍ ଓରଲାଣ୍ଡୋ, ଟଚ୍‌ଷ୍ଟୋନ ଓ ଆଡ୍ରେ ଯେପରିକି ସେଠାରେ ରହୁଥିଲେ, ଦୁଃଖିନୀ ଢାକ୍ସି କ୍ରଏଡ଼ନ୍ ଆଡ଼କୁ ବହିଯାଉଥିବା ଝରଣା ତୀରରେ ବସି ରହିଥିଲେ, ସିଲରଙ୍କ ଡକାଏତ୍‌ମାନେ, କ୍ୟାଣ୍ଟରବରୀର ତୀର୍ଥଯାତ୍ରୀମାନେ ଏବଂ କଲେରିଜ୍‌ଙ୍କ ଖ୍ରୀଷ୍ଟାବେଲ୍ ଯେପରିକି ସେଇଠାରେ ହିଁ ବାସ କରୁଥିଲେ । ଛ'ବର୍ଷ ବୟସରେ ମୁଁ ଏଇସବୁ ବହି ପଢ଼ିଦେଇଥିଲି ବୋଲି କହୁ ନାହିଁ କିନ୍ତୁ ଅଳ୍ପ କେତେବର୍ଷ ପରେ ଯେତେବେଳେ ପଢ଼ିଲି ସେହି ଦୃଶ୍ୟ ମଧ୍ୟରେ ମୁଁ ସେସବୁର ଚିତ୍ରଣ କଳ୍ପନା କରିଗଲି । ବିଭିନ୍ନ ଗୋଷ୍ଠୀର ଲୋକ ମୋଟାମୋଟି ଭାବରେ ନିଜ ନିଜ ସ୍ଥାନରେ ରହି ଯାଉଥିଲେ । ଫଲ୍‌ଷ୍ଟାଫ୍, ପ୍ରିନ୍‌ସ ହଲ ଓ ତାଙ୍କ ପରିଚାରକମାନେ ଟୁଥ୍‌କମନରେ ହିଁ ଆସିଯାଉଥିଲେ । ସେମାନଙ୍କୁ ଆଉ କେଉଁଠାରେ ମୁଁ କଳ୍ପନା କରିପାରୁ ନ ଥିଲି । ଷ୍ଟ୍ରେଥାମ୍ କମନକୁ ତ ସେମାନେ ଆଦୌ ଯାଉନଥିଲେ । ଇଂରେଜ ଇତିହାସର ଅଧିକାଂଶ ଘଟଣା ଯେ ଏହି ଟେମ୍ପଲ୍ ଉଦ୍ୟାନମାନଙ୍କ ମଧ୍ୟରେ ଘଟିଯାଉଥିଲା ତାହାର କାରଣ ବୋଧହୁଏ ନଗରକୁ ବାସ କରିବାକୁ ନ ଯିବା ପର୍ଯ୍ୟନ୍ତ ମୁଁ ଇତିହାସ ପଢ଼ି ନ ଥିଲି ବୋଲି । କିନ୍ତୁ ସ୍କଟ୍ ରାଣୀ ମେରୀଙ୍କୁ ଷ୍ଟ୍ରେଥାମ୍ କମନର ପାଦଦେଶରେ ଥିବା ଠିକ୍ ପିଏଡ଼ବୁଲ୍ ଆଗରେ ହଣାଯାଇଥିଲା ଏଇଟା ସର୍ବଦା ନିଶ୍ଚିତ ।

ସେଇ କମ୍ ବୟସରେ ମୁଁ ସବୁ ପ୍ରକାର ବହି ପଢୁଥିଲି । କେହି ମୋ ପାଇଁ ବହି ବାଛିଦେଉ ନ ଥିଲେ । ବାପାଙ୍କ ବହି ମୁଁ ପଢୁଥିବା ଦେଖିଲେ ସେ ମୋ କାନମୋଡ଼ି ଦେଉଥିଲେ ଏବଂ ମା ସେସବୁ ମୋଠାରୁ ଛଡ଼େଇ ନେଉଥିଲେ, କାଳେ ସେଥିରେ କିଛି ମନ୍ଦ କଥା ଥିବ

ବୋଲି । ମୋ ଦେଖିବାରେ ମା'ଙ୍କର ପାଠ ବାଇବେଲ ଓ ମୋଟା ମୋଟା ଧର୍ମପୁସ୍ତକରେ ସୀମାବଦ୍ଧ ଥିଲା । 'ସ୍ମ୍ୟଟିନି ଅନ୍ ଦି ବାଉଣ୍ଟି' ବହିଟି ମୁଁ ଆଗ୍ରହରେ ଘଣ୍ଟା ଘଣ୍ଟା ଧରି ପଢୁଥିଲି । ଦିନେ ମା' ସେଇଟିକୁ ନେଇ ସେଥିରେ 'ଡି—ଡି' ଶବ୍ଦ ଥିବାର ଦେଖି ତାହା ମୋତେ ପଢ଼ିବାକୁ ଦେଇଥିବାରୁ ଏମ୍‌ମା କାମେରନ୍‌କୁ ଗାଳିଦେଲେ । ତା'ପରେ ସେ ବହି କୁଆଡ଼େ ଗଲା ମୁଁ ଦେଖି ନାହିଁ । ପଢ଼ାରେ ଏପରି ବାଧା ପାଇବାରୁ ସ୍ୱଭାବତଃ ମୁଁ ଠକାମିର ଆଶ୍ରୟ ନେଲି ଏବଂ ବହିସବୁ କୌଶଳରେ ନେଇ ଉପର ଘରେ ଲୁଚାଇ ରଖୁଥିଲି । ହୁଡ୍‌ଙ୍କର 'ହଣ୍ଟେଡ୍ ହାଉସ୍' ପଢ଼ିବାବେଳେ ଯେଉଁ ଭୟ ଓ ପ୍ରବଳ ହୃତ୍‌କମ୍ପ ଅନୁଭବ କରିଥିଲି, ତାହା ଭୁଲି ହେବ ନାହିଁ । ଏକ ଗ୍ରୀଷ୍ମ ସନ୍ଧ୍ୟାରେ ଅନ୍ଧାର ଘନେଇ ଆସୁଥିବା ବେଳେ ଆମ ଘରେ ମୁଁ ଏକୁଟିଆ ଥିବା ସମୟରେ ଏହାକୁ ପଢୁଥିଲି ଏବଂ ଏତେ ଭୀତତ୍ରସ୍ତ ହୋଇପଡ଼ିଲି ଯେ ପାହାଚ କଡ଼ କାନ୍ଥରେ ନିର୍ବେଦ ଭାବରେ ଆଉଜି ରହିଲି । ଏମ୍ମା ଓ ମୋ ଭାଇ ବୁଲିସାରି ଆସିଲେ । ତା'ପରେ ଯାଇଁ ମୋତେ ସେଇ ନିର୍ବାକ ଅବସ୍ଥାରେ ଶୁଆଇ ଦିଆଗଲା ।

ଏହି ସମୟରେ ଦିନେ ଛିନ୍ନ ଓ ମଳିନ ବସ୍ତ୍ର ପରିହିତ ଜଣେ ଲୋକ ପହଞ୍ଚିଲେ । ସେ ହେଉଛନ୍ତି ଯୋସେଫ ଡୁସ୍‌ନାପ୍, ମା'ଙ୍କ ଦୁଇଭାଇ ମଧ୍ୟରୁ ବଡ଼ଜଣକ । ସେ କେତେବର୍ଷ ତଳେ ସମୁଦ୍ରକୁ ବାଣିଜ୍ୟ ଜାହାଜରେ ଯାଇ ଆଉ ଦେଖା ନ ଥିଲେ । ବହୁଦିନ ପରେ ଫେରିଆସି ସେ ଏକ ଲମ୍ବା ଗପ କହିଲେ ଯାହାକୁ କି କେହି ପ୍ରାୟ ବିଶ୍ୱାସ କଲେ ନାହିଁ । ପ୍ରଶାନ୍ତ ମହାସାଗରରେ କୁଆଡ଼େ ଜାହାଜ ବୁଡ଼ିଗଲା ଏବଂ ବହୁଦିନ ଧରି ତାଙ୍କୁ ବର୍ବରମାନଙ୍କ ମେଳରେ ବାସ କରିବାକୁ ପଡ଼ିଲା । ଉପର ମହଲାର ଏକ କୋଠରିରେ ତାଙ୍କୁ ରଖାଗଲା । ସେଇଠି ତାଙ୍କ ସଙ୍ଗେ ମୁଁ ଗୋଟିଏ ସନ୍ଧ୍ୟା ରହିଲି ଏବଂ ପାଇପ୍ ଧୂଆଁ ପିଇ ସେ ଜାହାଜବୁଡ଼ି, ଜଳଦସ୍ୟୁ ଏବଂ ବର୍ବରଙ୍କ ବିଷୟରେ ଯେଉଁ ଅଦ୍ଭୁତ କଥାର ଜାଲ ବୁଣିଲେ ତାହା ଶୁଣି ଖୁବ୍ ଆନନ୍ଦ ପାଇଲି । ସେ ହଠାତ୍ ପଳେଇଲେ ଏବଂ ପରେ ମୁଁ ଜାଣିଲି ଯେ ଗୋଟିଏ ଚାକରାଣୀ ସହ ଖରାପ ବ୍ୟବହାର କରୁଥିବାବେଳେ ସେ ବାପାଙ୍କ ହାବୁଡ଼ରେ ପଡ଼ିଲେ । ତାଙ୍କ ଭାଇ ଚାର୍ଲସଙ୍କ ପରି ସେ ଅତି ଅଶ୍ଲୀଳ ଓ ପତିତ ।

ଦିନେ ହଠାତ୍ ବାପାଙ୍କ ସହକର୍ମୀ କ୍ୟୁରେଟ, ତାଙ୍କରି ପରି ଜଣେ 'ବଳଶାଳୀ ଖ୍ରୀଷ୍ଟିଆନ', କ୍ୟୁବିଟ ପାଗଳ ହୋଇଗଲେ । ଦିନେ ରବିବାର ସକାଳେ ବାପା ଗିର୍ଜାରେ ପ୍ରାର୍ଥନା ପଢୁଥିବାବେଳେ ସେ ପୂରା ଯାଜକର ପୋଷାକ ପିନ୍ଧି ପାର୍ଶ୍ୱପଥ ଦେଇ ମାଡ଼ିଆସିଲେ ଏବଂ ପଢ଼ା ଟେବୁଲ ପାଖକୁ ଧସେଇ ପଶିବାର ଚେଷ୍ଟାକଲେ । ତାଙ୍କୁ ତଡ଼ିବା ପାଇଁ ତତ୍ତ୍ୱାବଧାରକ ବିଫଳ ପ୍ରୟାସ କରୁଥିବାବେଳେ ବାପା ଉପସ୍ଥିତ ବୁଦ୍ଧିର ସହ ଶାନ୍ତରହି ପଢ଼ିଲାଗିଲେ । ଜଣେ ବଳିଷ୍ଠ ଯୁବକ ଶ୍ରୋତାମାନଙ୍କ ସାହାଯ୍ୟରେ ସେହି ଅଭାଗାକୁ କେତେ ପାହୁଣ୍ଡ ହଟେଇ ଦେଇପାରିଲେ ମଧ୍ୟ ସେ ଗିର୍ଜାର ଏକ ଆସ୍ଥାନକୁ ଜାବୁଡ଼ି ଧରିବାରୁ ଅଧିକ ହଟାଇପାରିଲେ ନାହିଁ । ସେଇ ସମୟରେ ବୃଦ୍ଧ କୋଷ୍ଟର ତାଙ୍କ ସ୍ଥାନ ଛାଡ଼ି ଆଗେଇ ଆସିଲେ ଏବଂ ତାଙ୍କ ଚଉଡ଼ା ପିଠି ସାହାଯ୍ୟରେ ଜୋର କରୁଥିବା କ୍ୟୁବିଟ୍‌ଙ୍କୁ ଦୃଢ଼ ଓ ଧୀର ଭାବରେ ପାର୍ଶ୍ୱପଥ ଦେଇ ଗିର୍ଜା ଅଗଣାକୁ ବାହାର କରିଦେଲେ । ସେଠାରୁ କେତେଜଣ ଲୋକ ତାଙ୍କୁ ଧରିନେଇଗଲେ ।

ତା'ପରେ ଶ୍ରମକ୍ଷମ ସେହି ବୃଦ୍ଧ ତତ୍ୱବାସୀ ଧୀରେସୁସ୍ଥେ ଫେରିଆସି ନିଜ ଆସ୍ଥାନରେ ବସି ଶୁଣିବାକୁ ଲାଗିଲେ, ଯେପରିକି କିଛି ଘଟି ନାହିଁ । ଏପରି ପରୀକ୍ଷାର ମୁହୂର୍ତ୍ତରେ ଶାନ୍ତ, ସଂଯତ ରହିଥିବାରୁ ବାପାଙ୍କୁ ଖୁବ୍ ପ୍ରଶଂସା ଓ ଧନ୍ୟବାଦ ଦିଆଗଲା । ସେହି ଗିର୍ଜାଞ୍ଚଳରେ ବାପାଙ୍କର ପୂର୍ବରୁ ଥିବା ସୁନାମ ଏହି ଘଟଣାରେ ଆହୁରି ବଢ଼ିଗଲା ।

ଏହି ବର୍ଷ ଜେଜେମାଙ୍କୁ ପକ୍ଷାଘାତ ହେଲା ଏବଂ ସେ ଆଉ କେତେବର୍ଷ ବଞ୍ଚିରହିଲେ ମଧ୍ୟ ଶରୀରର ଗୋଟିଏ ପଟ ଅଚଳ ହୋଇ ପଡ଼ିବାରୁ ବାଡ଼ିଧରି ଠୁକେଇ ଚାଲିଲେ । ଜେଜେବାପା ବାପାଙ୍କୁ ବାସଲେ ନିମନ୍ତ୍ରଣ କଲେ ଯେଉଁଠିକି ସେ ବିବାହ ବେଳୁ ଯାଇନଥିଲେ ଏବଂ ସେଠାରେ ତାଙ୍କ ପ୍ରତି ଖୁବ୍ ସ୍ନେହ ଦେଖାଇଲେ ଯେଉଁଟା ଥିଲା ଅତି ଆଶ୍ଚର୍ଯ୍ୟର କଥା । ସେ ବୃଦ୍ଧ ମଧ୍ୟ ଷ୍ଟେଥାମ୍‌କୁ ବୁଲିଆସିଲେ; ସେ ସ୍ଥାନଟି ଦେଖି ଖୁସି ହେଲେ ଓ ସେଠାରେ ବାପାଙ୍କ ଲୋକପ୍ରିୟତା ଦେଖି ଆତ୍ମପ୍ରସାଦ ଅନୁଭବ କଲେ ।

ରବିବାର ଉପରଓଳି ଜଣେ ଦୀର୍ଘ, ବଳିଷ୍ଠ ବ୍ୟକ୍ତି ଗୁଡ଼ିଏ କୁକୁର ସାଙ୍ଗରେ ଧରି ମୋଟା କୋଟ ପିନ୍ଧି ଆସନ୍ତି ଏବଂ ଘଣ୍ଟା ଘଣ୍ଟା ଧରି ବାପାଙ୍କ ସହ ଧର୍ମ ବିଷୟରେ ଯୁକ୍ତିତର୍କ କରନ୍ତି । ସେ ଜଣେ ଉଗ୍ର କାଲଭିନ୍ ଗୋଷ୍ଠୀର ଲୋକ ଏବଂ ତାଙ୍କର ଏପରି ଆତ୍ମସନ୍ତୋଷ ମୂଳକ ଧାରଣା ଥିଲା ଯେ ସେ ଯାହା କିଛି ଥାଆନ୍ତୁ ନା କାହିଁକି ନିଶ୍ଚିତ ରୂପେ ମୁକ୍ତି ପାଇବା ପାଇଁ ବଛା ଯାଇଛନ୍ତି, ଯେତେବେଳେ କି ଅନ୍ୟମାନଙ୍କ ପାଇଁ ନର୍କକୁ ଯିବା ସୁନିଶ୍ଚିତ । ସେ ସମୟରେ ବାପା କିଛିଟା ଏଭାଞ୍ଜେଲିକପନ୍ଥୀ ଥିଲେ ମଧ୍ୟ କେବେ ଉଗ୍ର କଲଭିନ୍‌ପନ୍ଥୀ ନ ଥିଲେ କିମ୍ବା ତାଙ୍କ ବନ୍ଧୁ ଚାର୍ଲସ୍ କିଙ୍ଗସ୍‌ଲେଙ୍କ ପରି ଉଦାରଦଳିଆ, ଯାହାକି ପରେ 'ବ୍ରଡ୍‌ଚର୍ଚ୍ଚ' ବୋଲି କଥିତ ହେଲା, ସେପରି ମଧ୍ୟ ନ ଥିଲେ । ସେ ଓ ଗ୍ରୀଅରୀ 'ବିଶ୍ୱାସ ଉପରେ ପ୍ରମାଣ', 'ନିର୍ବାଚନ ଓ ସେଇ ସମ୍ପର୍କୀୟ ବିଷୟମାନଙ୍କ ଉପରେ ତର୍କକରି ଖୁବ୍ ଉତ୍ତେଜିତ ହୋଇପଡୁଥିଲେ ମଧ୍ୟ କୌଣସି ସ୍ଥିର ସିଦ୍ଧାନ୍ତରେ ପହଞ୍ଚୁ ନ ଥିଲେ । ଗ୍ରୀଅରୀ ଗ୍ରୀନ୍‌ଉଇଚରେ ଥିବା ବେଳୁ ବାପାଙ୍କ ପରିଚିତ । ପରେ ମୁଁ ତାଙ୍କ ବିଷୟରେ କହିବାର ସୁଯୋଗ ପାଇବି ।

ଷ୍ଟେଥାମରେ ସେ ସୁଖର ଦିନ ହଠାତ୍ ସରିଗଲା । ୧୮୪୩ ଶରତକାଳରେ ଶ୍ରୀଯୁକ୍ତ ବ୍ଲଣ୍ଟ ମରିଗଲେ ଓ ସେ ଗିର୍ଜାଞ୍ଚଳରେ ଶୋକର ଛାୟା ଖେଳିଗଲା । ତାଙ୍କୁ ଜାଣିଥିବା ସମସ୍ତଙ୍କର ସେ ସ୍ନେହାସ୍ପଦ ଥିଲେ । ନୈଷ୍ଠିକ, ସରଳ, ଧର୍ମପରାୟଣ, ନମ୍ର, ଦୟାଳୁ, ସହୃଦୟ ଓ ସର୍ବଦା ହାସ୍ୟମୁଖର ଥିଲେ ସେ । ଦାରୁଣ ବ୍ୟାଧିଗ୍ରସ୍ତ ଥିବାବେଳେ ମଧ୍ୟ ସେ ଥିଲେ ସେହିପରି । ଥରେ ଅଧେ ମୁଁ ଦେଖେ ଜୀର୍ଣ୍ଣ ଶୀର୍ଣ୍ଣ ଅବସ୍ଥାରେ ଗ୍ରୀଷ୍ମର ପ୍ରଚଣ୍ଡ ତାତିରେ ବସିରହି ହସି ହସି ତାଙ୍କ ପ୍ରିୟ ଲେଖକମାନଙ୍କ ବହିରୁ ଉଦ୍ଧୃତିମାନ ଦେଉଥାନ୍ତି, ଯେପରିକି ଶେଷ ସମୟ ବହୁତ ଦୂର ଅଛି, ଯଦିଓ ସେ ଭଲରୂପେ ଜାଣିଥିଲେ ଯେ ସେ ଅଳ୍ପ କେତେ ସପ୍ତାହରୁ ବେଶି ବଞ୍ଚିବେ ନାହିଁ । ସେଇ ବାଲ୍ୟବୟସରୁ ମଧ୍ୟ ତାଙ୍କ ସ୍ୱଭାବର ପ୍ରଭାବ ମୋ ଉପରେ ଖୁବ୍ ପଡ଼ିଥିଲା ।

ମୋର ମନେହୁଏ ଷ୍ଟେଥାମ୍ ରହଣି ଖର୍ଚ୍ଚ ବାର୍ଷିକ ୧,୨୦୦ ପାଉଣ୍ଡ ହେଉଥିଲା, କିନ୍ତୁ ଯେଉଁ ସୁନ୍ଦର ଘର, ସଫଳ କାମ ଓ ସହୃଦୟ ସମାଜ ସେଠି ଥିଲା ସେ ଦୃଷ୍ଟିରୁ ସେ ଖର୍ଚ୍ଚ

ଯଥାଯୋଗ୍ୟ । ବେଡ଼ଫୋର୍ଡ଼ର ଡ୍ୟୁକ ହେଉଛନ୍ତି ସେଠାର ମାଲିକ । ସେ ସେହି ଅଞ୍ଚଳଟିକୁ ବିକିବାକୁ ଚାହିଁଲେ । ଜେଜେବାପା ସେ ବାସଗୃହଟି, ବାପାଙ୍କ ପାଇଁ କିଣିବା ଇଚ୍ଛା କଲେ । ହୁଏତ ଏହା ତାଙ୍କର ବାପାଙ୍କ ପ୍ରତି ବଢ଼ିଥିବା ସ୍ନେହଯୋଗୁଁ କିମ୍ବା ଜେଜେମାଙ୍କ ଦ୍ୱାରା ପ୍ରରୋଚିତ ହୋଇ । ଜେଜେମା ନିଜ ମୃତ୍ୟୁ ପୂର୍ବରୁ ତାଙ୍କ ପ୍ରିୟ ପୁତ୍ର ଥଇଥାନ ହେବା ଦେଖିବାକୁ ଇଚ୍ଛା କରୁଥିଲେ । ସେ ସ୍ଥାନ, କର୍ମ ଓ ଅବସ୍ଥା ସବୁ ଥିଲା ବାପାଙ୍କ ପ୍ରିୟ, ତେଣୁ ତାହା କିଣିବା ନିଶ୍ଚୟ ଲୋଭନୀୟ କିନ୍ତୁ ସମସ୍ତ ମାନ୍ୟାସ୍ପଦ ବ୍ୟକ୍ତିଙ୍କ ଦୃଷ୍ଟିରେ ଏହି ବିକ୍ରିବଟା ଗିର୍ଜା ବିରୋଧରେ ଏକ ରହସ୍ୟଜନକ ସାଇମୋନି ଶ୍ରେଣୀୟ ଅପରାଧ ହୋଇଥାଆନ୍ତା; ତେଣୁ ବାପା ତାହା କିଣିବେନି ବୋଲି ମନା କରିଦେଲେ । ବହୁ ଅନ୍ତର୍ଦ୍ୱନ୍ଦ୍ୱ ସେ ଭୋଗିଲେ । ସେଠାରେ ଅନେକ ଲୋକ ଥିଲେ ଯେଉଁମାନେ ଉତ୍ତମ ଓ ଧାର୍ମିକ ହେଲେ ମଧ ନିସ୍ପୃହ । ସେମାନେ ବାପାଙ୍କୁ ଏପରି ହାସ୍ୟାସ୍ପଦ ଭାବରେ ଭାବପ୍ରବଣ ନ ହେବା ପାଇଁ କହିଲେ । କିନ୍ତୁ ତାଙ୍କ ଜୀବନର ଆଦର୍ଶ ଦୃଷ୍ଟିରୁ ସେ ଥିଲେ ନିଶ୍ଚୟ ଠିକ୍ । ସେ ଏହା ପରିତ୍ୟାଗ କରିଦେଲେ ଓ ଦୁଃଖ କିନ୍ତୁ ଦୃଢ଼ ଚିତ୍ତରେ ପୁଣି ସଂସାରିକ କ୍ଷେତ୍ରରେ ଆଗେଇଲେ । ନୂଆ ରେକ୍ଟର ଶ୍ରୀଯୁକ୍ତ ନିକୋଲ (ଛପନ ବର୍ଷ ପରେ ୧୮୯୯ରେ ମୁଁ ଏହା ଲେଖୁଥିବାବେଳେ ସେ ସେଇଠି ରେକ୍ଟର ଅଛନ୍ତି । ତାଙ୍କୁ ବର୍ତ୍ତମାନ 'ଆଧୁନିକ ଉଚ୍ଚ ଗିର୍ଜାଧିକାରୀ' କୁହାଯାଏ । ୧୮୪୩ରେ ତାଙ୍କୁ ଖୁବ୍ ପ୍ରଗତିଶୀଳ ମନେ କରାଯାଉଥିଲା) ସେତେବେଳର ବଢ଼ିଉଠୁଥିବା 'ପୁସେଇଟ୍' ପନ୍ଥାର ଥିଲେ ଏବଂ ବାପା ତାଙ୍କ ସାଙ୍ଗରେ ରହିପାରିଲେ ନାହିଁ । ସୁନ୍ଦର ଘରଟି ଛାଡ଼ିଦେବାକୁ ହେଲା ଏବଂ ସହୃଦୟ ବନ୍ଧୁମାନେ ଚାଲିଗଲେ । ବାପାଙ୍କ ଚାଲିଆସିବାରେ ନିରାନନ୍ଦ ଖେଳିଗଲା । ଗିର୍ଜାଞ୍ଚଳର ଲୋକେ ଚାନ୍ଦାକରି ତାଙ୍କୁ ରୁପାର ବିରାଟ ଥାଳି ଓ ବହି କିଣିବାକୁ ୬୦ପାଉଣ୍ଡ ଦେଲେ । ଠିକ୍ ୬୦ ପାଉଣ୍ଡର ବହି କିଣାଗଲା ଏବଂ ରୁପାଥାଳିଟି ଜେଜେବାପାଙ୍କର ବହୁପ୍ରକାର ଥାଳି ସଂଗ୍ରହରେ ରଖାଯିବାପାଇଁ ବାସଲେ ପଠାଇ ଦିଆଗଲା । ମା ସର୍ବଦା କହନ୍ତି ଯେ ସେହିଦିନଠାରୁ ବାପାଙ୍କର କିଣା ଅଭ୍ୟାସ ହେଲା, ଫଳରେ ବାଜେ ଖର୍ଚ୍ଚ ବଢ଼ିଲା । ତା'ପରେ କେତେବର୍ଷ ପର୍ଯ୍ୟନ୍ତ ବହିକିଣାରେ ତାଙ୍କର ଅତ୍ୟଧିକ ଖର୍ଚ୍ଚ ପାଇଁ ଏହି ୬୦ ପାଉଣ୍ଡର ଦାନକୁ କାରଣ ରୂପେ ସେ ଦର୍ଶାଉଥିଲେ ।

ଆମେ ସେଠା ଛାଡ଼ିବାକୁ କେତେ ମାସ ଲାଗିଲା ଏବଂ ନଭେମ୍ବର ୨୩, ୧୮୪୩ରେ ଆମର ଚତୁର୍ଥ ଭାଇ ଜନ୍ମ ହେଲା । ସଦ୍ୟମୃତ ରେକ୍ଟରଙ୍କ ନାମାନୁସାରେ ତା' ନାଁ ହେଲା ହେନେରୀ ବ୍ଲଣ୍ଟ । ତାଙ୍କର ବିଧବା ପତ୍ନୀ ତାର ଧର୍ମମାତା ଥିଲେ । ଚଳାଚଳ ପାଇଁ ସକ୍ଷମ ହେବା ମାତ୍ରେ ମି. ଷ୍ଟ୍ରେଥାମର ବନ୍ଧୁ ଫିଲିପସ୍ ପରିବାର ସହ ରହିବାପାଇଁ ଓ୍ୱାଇଟ ଦ୍ୱୀପକୁ ଗଲେ । ମାଙ୍କଲିନ୍‌ଠାରେ ସେମାନଙ୍କର ଏକ ଘର ଥିଲା । ସେଠାରୁ ମା' ବାସଲେ ଗଲେ । ବିବାହ ପରଠାରୁ ସେ ପ୍ରଥମଥର ସେଠାକୁ ନିମନ୍ତ୍ରିତ ହେଲେ । ଏହି ସମୟରେ ବାପା ନୂଆ କ୍ୟୁରେଟ୍ ପଦଟିଏ ଖୋଜୁଥିଲେ । ସେଣ୍ଟପଲ୍ ଗିର୍ଜାର ରେଭରେଣ୍ଡ ଥମାସ୍ ଡେଲ୍‌ଙ୍କ ଅଧୀନରେ ସେ ଗୋଟିଏ ପଦବୀ ପାଇଲେ । ଡେଲ୍ ଥିଲେ ଗେଡ଼ା, ମୋଟା, ଆଡ଼ମ୍ବର ପ୍ରିୟ, ରାଗୀ ଭଦ୍ରଲୋକ; ତାଙ୍କ ପୂର୍ବ ରେକ୍ଟରଙ୍କଠାରୁ ସମ୍ପୂର୍ଣ୍ଣ ଅଲଗା । ୧୮୪୪ରେ ପ୍ରଥମ ଭାଗରେ ଆମେ

ଲଣ୍ଡନକୁ ଏକ ମଳିନ ଧୂମାଚ୍ଛାଦିତ ଘରକୁ ଗଲୁ । ସେଇଟା ସେଣ୍ଟ ଆଣ୍ଡ୍ରୁ ଗିର୍ଜା ନିକଟ ହୋଲବର୍ଣ୍ଣର ଦକ୍ଷିଣପଟ ଦେଇ ଯାଉଥିବା ରାସ୍ତାରେ ବୋତଲ ଆକାରର ଅଗଣା ଥିବା ୨୧ ନଂ ବାର୍ଟଲେ ବିଲଡ଼ିଂ । ଏଇଟା ନିହାତି ବିବର୍ଣ୍ଣ, କୁତ୍ସିତ ଜାଗା, ବାୟୁମଣ୍ଡଳରେ ଧୂଆଁ, କୁହୁଡ଼ି ଓ ଶ୍ୱାସରୁଦ୍ଧକାରୀ ଅବସ୍ଥା ପୂରି ରହିଥିଲା । ଆମେ ପିଲାସବୁ, ଯେଉଁମାନେ କି ଆମ ପ୍ରିୟ ଷ୍ଟ୍ରେଥାମ୍‌ର ସବୁଜପଥ ଓ ମୁକ୍ତବାୟୁ ପ୍ରବାହିତ ସାର୍ବଜନିତ ସ୍ଥଳରୁ ଯାଇଥିଲୁ ସେମାନଙ୍କୁ ତାହା ଏକ ଅଦ୍ଭୁତ ବନ୍ଦିଶାଳା ପରି ଲାଗିଲା । କେଉଁ ଦୋଷରୁ ଆମେ ସେଠାରେ ଆବଦ୍ଧ ହେଲୁ ଜାଣିପାରିଲୁ ନାହିଁ । ଆମେ ତିନିଜଣଯାକ ନିଃସଙ୍ଗତା ଓ ଅବହେଳା ମଧ୍ୟରେ ନିସ୍ତେଜ ହୋଇପଡ଼ିଲୁ । ସବୁଜକ୍ଷେତ୍ର ବଦଳରେ ଆମ ଚତୁର୍ଦ୍ଦିଗରେ ଥିଲା ଇଟା ଗୃହରାଜିର ଅସରନ୍ତି ଧାଡ଼ି । ହୋଲବର୍ଣ୍ଣ, ନ୍ୟୁଗେଟ୍ ଓ ଫେରିଙ୍ଗଟନ୍ ହାଟ ଅଞ୍ଚଳରେ ବୁଲୁବୁଲୁ, ବାପାଙ୍କର ଜଣେ ବନ୍ଧୁ ଯେଉଁଦିନ ଆମକୁ ଟେମ୍ପଲ୍ ଉଦ୍ୟାନରେ ବୁଲିବାକୁ ଅନୁମତି ଦେଲେ ସେଦିନଟି ଆମର ଆନନ୍ଦର ଦିନ ବୋଲି ମନେହେଲା । ସେଠାକୁ ଆମେ ପ୍ରତିଦିନ ଗଲୁ ଏବଂ ସେଇ ଶାନ୍ତ ଉଦ୍ୟାନ, ମନୋରମ ଭ୍ରମଣପଥ, ଉଜ୍ଜ୍ୱଳବର୍ଣ୍ଣର ପୁଷ୍ପରାଜି, ନୌକା ଓ ଷ୍ଟିମର ଭର୍ତ୍ତି ଚଳଚଞ୍ଚଳ ନଦୀ ଏସବୁ ଜନାକୀର୍ଣ୍ଣ ରାସ୍ତା ଓ ସେଥିରେ ଦଉଡ଼ୁଥିବା ଜନତାର ସ୍ରୋତ ମଧ୍ୟରୁ ରକ୍ଷାକରି ଶାନ୍ତି ପ୍ରଦାନ କରେ । ଏଇ ଦୃଶ୍ୟାବଳି ମଧ୍ୟରେ ମୁଁ ପଢ଼ିଥିବା ବହିର କଳ୍ପନା କରିବାକୁ ଲାଗିଲି । ସେଠାରେ ମୁଖ୍ୟତଃ ଅଷ୍ଟମ ହେନେରୀ ଏବଂ କାର୍ଡ଼ିନାଲ ଓଲସେ, ସାର୍ ଥମାସ୍ ମୋର, ସେକ୍‌ସପିଅର ଓ ବେନ୍ ଜନସନ୍, ସାର୍ ଓ୍ୱାଲଟର ରାଲେ ଏବଂ ସହୃଦୟା ରାଣୀ ବେସ୍‌ହିଁ କଳ୍ପନାରେ ବାସ କରୁଥିଲେ ।

ଏହି ବର୍ଷ ବାପାଙ୍କୁ ପ୍ରବଳ ହଇଜା ହେଲା ଏବଂ ସେ ସୁସ୍ଥ ହେବାପରେ ମା' ଓ ସେ ଓ୍ୱାଇଟଦ୍ୱୀପକୁ ଅନେକ ଦିନପାଇଁ ଭ୍ରମଣରେ ଗଲେ । ସେମାନେ ଛୋଟ ପିଲାଟିକୁ ସାଙ୍ଗରେ ନେଲେ କିନ୍ତୁ ମୁଁ, ପିଅରସନ୍ ଓ ଉଇଲି ବାରଟ୍‌ଲେଙ୍କ ଉପର ଘରେ ରହିଲୁ । ଏମ୍ମା କାମେରନ ବାହାହୋଇ ଚାଲିଯାଇଥିଲା ଏବଂ ଯେଉଁ ଚାକରାଣୀର ଦାୟିତ୍ୱରେ ଆମେ ଥିଲୁ ସେ ରୋଷେଇଘରେ ଅନ୍ୟ ଚାକରାଣୀମାନଙ୍କ ସହ ରହିବାକୁ ଚାହୁଁଥିଲା ଏବଂ ଆମ ଖାଇବା ଆଣିବା ଛଡ଼ା ଅନ୍ୟ ସମୟରେ କ୍ୱଚିତ୍ ଆମ ପାଖକୁ ଆସୁଥିଲା । ଆମେ ଯେ ସେ ଘରେ ନିଆଁ ଲଗାଇ ଦେଇ ନ ଥିଲୁ ବା ଅନ୍ୟ କୌଣସି ଦୁଷ୍ଟାମି କରି ନ ଥିଲୁ ତାହାହିଁ ଆଶ୍ଚର୍ଯ୍ୟର କଥା ! ଆମ କୋଠରିର ଝରକା ଥିଲା ଛାତରେ ଏବଂ ଆମେ ସେଠାକୁ ଉଠି ବାହାରକୁ ଦେଖିପାରୁ ନ ଥିଲୁ । ପଛପଟେ ଯେଉଁ ଘରସବୁ ଦେଖାଯାଉଥିଲା ସେଗୁଡ଼ିକର ଅଗଣା ଅନ୍ଧାରିଆ ଏବଂ ଫେଟର୍‌ଲେନ୍ ପଛପଟର ଯେଉଁ ଘରସବୁ ଦେଖାଯାଉଥିଲା ସେଠି ଲୁଗାସବୁ ଶୁଖାଯାଉଥିଲା ଏବଂ ନିମ୍ନର ବସତିରୁ ଛିଣ୍ଡାଲୁଗା ପିନ୍ଧା କାଙ୍ଗାଳିଆ ପିଲାଗୁଡ଼ାକୁ ଦେଖୁଥିଲୁ । ସେମାନେ ଆମକୁ ଦେଖି ଖତେଇ ହୁଅନ୍ତି, ଧମକଚମକ ଦିଅନ୍ତି ଓ ଅଶ୍ଳୀଳ କଥା କହନ୍ତି । ତେଣୁ ଆମେ ସେ ଆଡ଼କୁ ଚାହିଁବାକୁ ଇଚ୍ଛା କରୁ ନାହିଁ । ସନ୍ଧ୍ୟା ସମୟରେ ସେମାନେ ଅନେକ ସମୟରେ ଆଲୁଅ ଆଣିବାକୁ ଭୁଲିଯାଆନ୍ତି ଏବଂ ଆମେ ସେଇ ପିଲାଙ୍କ ଘର ଦେଖେଁ। ଜାକିଜୁକି ହୋଇ ବସିରହି କଳ୍ପନା କରୁ ଯେ ସେଇଟା ସମସ୍ତ ପ୍ରକାର ଆମୋଦ ଓ ରହସ୍ୟପୂର୍ଣ୍ଣ କୌଣସି ଦୁର୍ଗ ବା ପ୍ରାସାଦ ଏବଂ ଯୋଦ୍ଧା, ଜାଦୁକର, ପରୀ ଏବଂ ଅନ୍ୟାନ୍ୟ ଅଦ୍ଭୁତ, ଅଦ୍ଭୁତ କଥା ସବୁ କୁହାକୋହି ହେଉ ।

ଆମ ସମସ୍ତଙ୍କୁ ବସନ୍ତ ହେବାରୁ ବାପାମା ଫେରିଆସିଲେ । ମୋତେ ଓ ପିଅରସନ୍‌କୁ ଖୁବ୍ କମ୍ ହୋଇଥିଲା ଏବଂ ମୋର ଗୋଟେ ଦୁଇଟା ଦାଗ ରହିଲା । ଭଲ ହେବା ମାତ୍ରେ ବାପା ମୋତେ ବାସ୍‌ଲେ ନେଇଗଲେ । ନୂଆ ରେଲଯୋଗେ ଆମେ ଭକ୍‌ସହଲ ନାଇନ୍ ଏଲମ୍ ଷ୍ଟେସନରୁ ଗଲୁ । ଏହା ଦକ୍ଷିଣପଶ୍ଚିମ ରେଲବାଇର ଶେଷ ଷ୍ଟେସନ ଥିଲା । ସେ ରାସ୍ତା ସାଉଦାମ୍ପଟନରେ ଶେଷ ହେଲା । ସେଇଠାରେ ଜେଜେବାପାଙ୍କ ଗାଡ଼ିବାଲା ରୋଲାଣ୍ଡ 'କ୍ଲାରେନ୍‌ସ' (ଦୁଇ ଘୋଡ଼ା ଯୋଚା ବଡ଼ ବଳଦଗାଡ଼ି)ନୁ ଆଣି ଆମକୁ ଭେଟିଲା । ନ୍ୟୁ ଫରେଷ୍ଟ ଭିତର ଦେଇ ଆମ ଗାଡ଼ି ଚାଲିଲା । ଅତି ପୁରାତନ ବୃକ୍ଷରାଜି ଏବଂ ଧାଇଁ ପଳାଉଥିବା ମୃଗଯୂଥ ଦେଖି ଆମେ ଖୁବ୍ ଆନନ୍ଦିତ ହେଲୁ । ଆମେ ବେଶିଦିନ ରହିଲୁ ନାହିଁ ଏବଂ ସେଠା ରହଣି ସମୟରେ ମୋର ବିଶେଷ କିଛି ମନେ ନାହିଁ । ଏକ ବ୍ୟବସ୍ଥାନୁଯାୟୀ ଜେଜେବାପା ମୋ ଭାଇ ପିଅରସନ୍‌କୁ ନିଜ ପାଖରେ ରଖିବାପାଇଁ ନେଲେ ଏବଂ ଅନେକ ବର୍ଷ ପର୍ଯ୍ୟନ୍ତ ଆମେ ଆଉ ତାଙ୍କୁ ଦେଖିପାରିଲୁ ନାହିଁ । ମୋର ବିଶ୍ୱାସ ସେ ମୋତେ ନେବାପାଇଁ କହିଥିଲେ; କିନ୍ତୁ ମୋର ବିଦ୍ୟାଳୟକୁ ଯିବାର ଥିବାରୁ ମନାକରି ଦିଆଗଲା ।

ମୋ କକା ଜନ୍ ପ୍ରୁଣିଥରେ ଏହି ସମୟରେ ଆମ ଜୀବନଧାରା ମଧ୍ୟକୁ ଆସିଗଲେ । ଲିଙ୍କନସ୍‌ଇନ୍‌ରେ ଥିବା ଆଇନ୍ ବ୍ୟବସାୟୀ ଗୋଷ୍ଠୀ ମଧ୍ୟକୁ ତାଙ୍କୁ ଡକାଗଲା ଏବଂ ଜେଜେବାପାଙ୍କର ସେ ପର୍ଯ୍ୟନ୍ତ ସୁଦ୍ଧା ଆଇନ୍ ପରାମର୍ଶଦାତାମାନଙ୍କ ସହ ଯେଉଁ ବ୍ୟାପକ ସମ୍ପର୍କ ଓ ସୁନାମ ଥିଲା ସେଥିରେ ତାଙ୍କର ଖୁବ୍ ଭଲ ହୋଇଥାନ୍ତା; କିନ୍ତୁ ତାଙ୍କର ଅନିୟମିତ ଓ ମନ୍ଦ ପ୍ରକୃତି ଏଥିରେ ବାଧା ହେଲା । ଲିଙ୍କନସ୍‌ଇନ ଛାଡ଼ି ସେ ହୋଲବର୍ଣ୍ଣ ବାହାରେ ଷ୍ଟେପଲସ୍‌ଇନ୍ ନାମକ ଏକ ଛୋଟ ଅନ୍ଧାରିଆ ସ୍ଥାନରେ ବ୍ୟବସାୟର ଘର ନେଲେ; ଏତେ ଅପରିଚ୍ଛନ୍ନ କୋଠରିସବୁ ମୁଁ ଆଉ କୋଉଠି ଦେଖି ନାହିଁ । ସେଇଠାରେ ସେ ତାଙ୍କଠାରୁ ଆହୁରି ମନ୍ଦ ପ୍ରକୃତିର ସାତୋଟି ରାକ୍ଷସ ନିଜ ଚାରିପଟେ ଜମେଇଲେ । ତାଙ୍କ ସମ୍ପର୍କୀୟ ଭାଇ ହେଉଛନ୍ତି ଉଇଲିଅମ ବରୋଜ, ସହରର ଜଣେ ଧୂର୍ତ୍ତ, ଆଳସ୍ୟପରାୟଣ, ଅମିତାଚାରୀ ଡାକ୍ତର ଯାହାଙ୍କର କି କେହି ରୋଗୀ ନ ଥାନ୍ତି । ତାଙ୍କରି ଜରିଆରେ ସେ କେତେକ ଯୁବକ ଡାକ୍ତରୀଛାତ୍ର ପାଇଲେ ଯେଉଁମାନଙ୍କୁ ସେ ଲାଟିନ୍ ଓ ଗ୍ରୀକ୍ ପଢ଼ାଇବା କଥା । ଡାକ୍ତରୀ ଡିଗ୍ରୀ ପାଇଁ ସେତେବେଳେ ସେହି ବିଷୟଗୁଡ଼ିକ ଦରକାର ପଡୁଥିଲା । କିନ୍ତୁ ମୋ କକାଙ୍କ ବ୍ୟବସାୟ କୋଠରିରେ ଅନ୍ୟ କାମ ଅପେକ୍ଷା ମଦପିଆ ଓ ଜୁଆଖେଳ ବେଶି ହେଉଥିଲା । ଉଇଲିଅମ୍ ବରୋଜଙ୍କ ବ୍ୟତୀତ ମୋ କକାଙ୍କ ଅନ୍ୟ ସହଯୋଗୀ ଥିଲେ ହର୍ଡ଼ ନାମକ ଜଣେ ଦୁର୍ବୃତ୍ତ, ଅପରିଚ୍ଛନ୍ନ, କୁଦର୍ଶନ ଡାକ୍ତରୀଛାତ୍ର ଏବଂ ଶ୍ରୀ ଆଲଫ୍ରେଡ୍ ବିଷ୍ଟନ, ମୋ ମାଉସୀ ଭର୍ଜିନିଆଙ୍କ (ସେମାନେ ତାଙ୍କୁ ଭିର୍ଜି ମଧ ଡାକନ୍ତି) ସ୍ୱାମୀ । ବିଷ୍ଟନ (ତାଙ୍କୁ ଆଲଫ୍ରେଡ୍ ମଉସା ଡାକିବାକୁ ମୋତେ କୁହାଯାଏ) ହେଉଛନ୍ତି ଜଣେ ଅଦ୍ଭୁତ ଚରିତ୍ରର ବ୍ୟକ୍ତି । ତାଙ୍କ ବାପା ଥିଲେ ଏକ ଭଦ୍ର ପରିବାରର । ମୋର ମନେହୁଏ ସେ କୌଣସି ଦୂତାବାସର କର୍ମଚାରୀ ବା ସେହିପରି କିଛି ଥିଲେ— ଐତିହ୍ୟର ଅସ୍ପଷ୍ଟତା ହେଉଛି ସମଗ୍ର ବିଷ୍ଟନ ପରିବାରର ପ୍ରଧାନ ଚରିତ୍ର ଏବଂ ମୁଁ ଯେତେବେଳେ ତାଙ୍କୁ ଜାଣିଲି ସେ ଆମେଲିଆ ଓ ଆନେ ନାମ୍ନୀ ତାଙ୍କ ଦୁଇ କନ୍ୟାଙ୍କୁ ଧରି ଏଠିସେଠି ରହି ଚଳୁଥିଲେ,

କିପରି ଚଳୁଥିଲେ ଜାଣେନା । ସମସ୍ତେ ଅତ୍ୟନ୍ତ ରୁଚିସମ୍ପନ୍ନ, ଚତୁର, ତୀକ୍ଷ୍ଣବୁଦ୍ଧି, ଉତ୍ତମ ପରିପାଟୀ ଓ ବ୍ୟବହାରରେ ମୁଗ୍ଧ କରିଦେବା ଭଳି ଲୋକ; କିନ୍ତୁ ସାଧୁତା ଓ ନୈତିକତାଠାରୁ ସମ୍ପୂର୍ଣ୍ଣ ଦୂରରେ । ବାପାଙ୍କ ପାଇଁ ସେମାନେ ଥିଲେ ବିଷମ ସମସ୍ୟା ପରି କାରଣ ସେ ଯେଉଁଠି ରହନ୍ତୁ ନା କାହିଁକି ଭାଗ୍ୟର ନିଶ୍ଚିତ ଗତିପରି ସେମାନେ ନିଶ୍ଚୟ ଯାଇ ସେଠାରେ ପହଞ୍ଚିବେ; ବାପାଙ୍କ ନାଁ କହି ସେମାନେ କରଜ କରିବେ, ଧାରରେ ଗୃହୋପକରଣ ଆଣି ଘର ସଜାଡ଼ିବେ ଏବଂ ସ୍ଥାନୀୟ ବ୍ୟବସାୟୀଙ୍କଠାରୁ ବାକି ଆଣିବେ, କିଛି ସମୟ ପରେ ଧାରଦାତାମାନେ ଯେତେବେଳେ ହଇରାଣ କରିବେ କାହାର ନ ଶୁଝି ହଠାତ୍ ଅନ୍ତର୍ଦ୍ଧାନ ହୋଇଯିବେ । କୁଆଡ଼େ ଯାଆନ୍ତି କିଛିଦିନ ପର୍ଯ୍ୟନ୍ତ କେହି ଜାଣିପାରନ୍ତି ନାହିଁ ଏବଂ ତା'ପରେ ଇଂଲଣ୍ଡର କୌଣସି ଦୂରସ୍ଥାନରେ ସେମାନେ ଥିବାର ଖବର ମିଳେ । ମୋର ମନେଅଛି ଆଲଫ୍ରେଡ୍ ବୀଷ୍ଟନ୍ ଏକସେଟର, ତା'ପରେ ଡର୍ବି ଏବଂ ପରେ ହାଷ୍ଟିଙ୍ଗସ୍‌ରେ ବାସ କରୁଥିଲେ । ଥରେ ସେ ପ୍ରିମରୋଜହିଲ୍‌ରେ ମଧ୍ୟ ରହୁଥିଲେ । ସେ ସର୍ବଦା ଭଲ ପୋଷାକ ପିନ୍ଧୁଥିଲେ; ତାଙ୍କର ଅନେକ ଉଚ୍ଚପଦାଧିକାରୀ ବନ୍ଧୁ ଥିଲେ ।

ଆଦ୍ୟ ଯୌବନରେ ସେ ସାର୍ ଲାସି ଇଭାନସ୍‌ଙ୍କ ଅଧୀନରେ ସ୍ୱେଚ୍ଛାସେବୀ ବାହିନୀରେ ଯୋଗ ଦେଇଥିଲେ । ମିଥ୍ୟା ଦାବିଦାର ଡନ୍‌ମିଗୁଏଲଙ୍କ ବିରୋଧରେ ତରୁଣୀ ରାଣୀ ମାରିଆଙ୍କୁ ସାହାଯ୍ୟ କରୁଥିବା ଏହି ଦଳରେ ଯୋଗ ଦେଇ ସେ ସମଗ୍ର ବିପ୍ଳବ ସମୟ ସେଠାରେ ରହିଥିଲେ । ତା'ପରେ କୌଣସି ରହସ୍ୟଜନକ ଉପାୟରେ ସେ ରେଲବାଇରେ ନିଯୁକ୍ତି ପାଇଲେ; କିନ୍ତୁ ଯାହା କିଛି ସାମାନ୍ୟ ସମ୍ପତ୍ତି ତାଙ୍କର ଥିଲା ତାହା ସେ ଜୁଆଖେଳ ଓ ଘୋଡ଼ାଦୌଡ଼ ବାଜିରୁ ପାଇଥିଲେ ବୋଲି ମନେହୁଏ । ଦୋକାନୀମାନଙ୍କୁ କେବେ ଧାର ପରିଶୋଧ କରୁ ନ ଥିବାରୁ ତାଙ୍କର ପକେଟ ଖର୍ଚ୍ଚ ଯଥେଷ୍ଟ ରହୁଥିଲା, ତେଣୁ ସ୍ତ୍ରୀ ଓ ପିଲାମାନେ ମଳିନ ବସ୍ତ୍ର ପିନ୍ଧି ଅନେକ ସମୟରେ ପ୍ରାୟ ଉପବାସ ରହୁଥିଲେ ମଧ୍ୟ ସେ ନିଜେ କଷ୍ଟ ଭୋଗୁ ନ ଥିଲେ, ନିଜର ଭଲ ଯତ୍ନ ନେଉଥିଲେ ।

ବାପା ନିଜ ଭାଇକୁ ଏପରି ବଦନାମୀ ଲୋକଙ୍କଠାରୁ ଦୂରେଇ ଆଣିବା ପାଇଁ ବହୁ ନିଷ୍ଫଳ ଚେଷ୍ଟା କଲେ । ଯାହାହେଉ ଜୁଆବେପାରରୁ କେତେ ପ୍ରକାର ଅସମ୍ମାନଜନକ ଘଟଣା ବାହାରିବାରୁ ଅଳ୍ପଦିନ ପରେ ସେ ଦୂରେଇ ଆସିଲେ । କିଛିଦିନ ପାଇଁ ଜକା ଷ୍ଟେପସ୍ ଇନ୍ ତ୍ୟାଗକରି ବାପ୍‌ଲେ ଘରକୁ ଚାଲିଗଲେ । ସେଠାରୁ ସେ ସାଲିସବରୀରେ ଥିବା କୌଣସି ବନ୍ଧୁଙ୍କ ସହ ରହିବା ପାଇଁ ଗଲେ ଏବଂ ସେଠାରେ ଏପରି ଏକ ଘଟଣା ଘଟିଲା ଯେଉଁଥିରେ ଜେଜେବାପା ନ ଥିଲେ ସେ ସୁସଂଯତ ହୋଇ ସଫଳ କର୍ମଜୀବନକୁ ଫେରିପାରି ନ ଥାନ୍ତେ । ସାଲିସ୍‌ବରୀର ଜଣେ ଗାଉଁଲି ଭଦ୍ରବ୍ୟକ୍ତିଙ୍କ କନ୍ୟା କୁମାରୀ ବର୍ଜେସ ନାମ୍ନୀ ଜଣେ ସୁନ୍ଦରୀ ବାଳିକାର ପ୍ରେମରେ ସେ ପଡ଼ିଲେ । ସେ ତାଙ୍କୁ ପ୍ରସ୍ତାବ ଦେଲେ ଏବଂ ତାହା ଗୃହୀତ ହେଲା । କନ୍ୟାର ବାପା ମଧ୍ୟ ସ୍ୱୀକୃତି ଦେଲେ; କିନ୍ତୁ ପୁରୁଣାକାଳିଆ ଅଭିଭାବକ ଭାବରେ ପକ୍‌କା ସ୍ଥିର କରିବାକୁ ଚାହିଁଲେ । ସେ ତାଙ୍କ ଝିଅକୁ କିଛି ପରିମାଣ ଅର୍ଥ (ଠିକ୍ କେତେ ମୋର ମନେ ନାହିଁ) ଦେବାକୁ ସ୍ୱୀକୃତ ହେଲେ, ଏଇ ସର୍ତ୍ତରେ ଯେ ଜେଜେବାପା ମଧ୍ୟ ସେତିକି ଦେବେ । ଜେଜେବାପା ସହଜରେ

ଏଇ ପରିମାଣ ଦେଇପାରିଥାନ୍ତେ; କିନ୍ତୁ ପୂରାପୂରି ମନା କରିଦେଲେ । ସେ କହିଲେ ଯେ ତାଙ୍କର ପ୍ରତ୍ୟେକ ପୁଅପାଇଁ ସେ ବାର୍ଷିକ ୧୦୦ ପାଉଣ୍ଡ ଦେଉଛନ୍ତି; ତାହାହିଁ ସେମାନଙ୍କ ପାଇଁ ଯଥେଷ୍ଟ ବୋଲି ସେ ଭାବନ୍ତି । ଅତି କଠୋର ଭାବରେ ଅଧିକ ଛଦାମଟିଏ ଦେବାକୁ ମଧ୍ୟ ସେ ମନା କରିଦେଲେ । ପ୍ରେମିକଦ୍ୱୟ ଚୁପ୍ ରହିଲେ ନାହିଁ । ସେମାନେ ଗୁପ୍ତରେ ଦେଖାକରି କ'ଣ କରିବାକୁ ହେବ ବିଚାର କରୁଥାନ୍ତି ଏବଂ ଅଦ୍ଭୁତ ଯୋଜନାସବୁ କରୁଥାନ୍ତି; କିନ୍ତୁ ବୃଦ୍ଧ ବର୍କେସ ସେମାନଙ୍କୁ ଦେଖିପକାଇଲେ ଏବଂ ସାଙ୍ଗେ ସାଙ୍ଗେ ତାଙ୍କ କନ୍ୟାକୁ ବିଦେଶ ପଠାଇଦେଇ ମୋ ଜଜା କି ତାଙ୍କ ପରିବାର ସହ କୌଣସି ଯୋଗାଯୋଗ ରଖିବାକୁ ମନା କରିଦେଲେ । ଜଜା ଭଗ୍ନହୃଦୟ ହୋଇପଡ଼ିଲେ । ସେ ଯେ କୁଆଡ଼େ ଚାଲିଗଲେ କେହି ଜାଣିପାରିଲେ ନାହିଁ ଏବଂ କେତେବର୍ଷ ପର୍ଯ୍ୟନ୍ତ ଆଉ ଆସିଲେ ନାହିଁ । ଯେତେବେଳେ ସେ ଫେରିଲେ ତାଙ୍କ ଅବସ୍ଥା ଆହୁରି ଖରାପ ହୋଇଯାଇଥିଲା— ସେ ବିଷୟରେ ମୁଁ ଯଥାସ୍ଥାନରେ କହିବି । ଆଲଫ୍ରେଡ୍ ବାଷ୍ଟନ୍ ସିଂହଳରେ ଏକ ନିଯୁକ୍ତି ପାଇଲେ । ଜୁଆଖେଳ ଘଟଣା ବିସ୍ମୃତ ହେବା ପର୍ଯ୍ୟନ୍ତ ସେ ସେଠାରେ ରହିଲେ । ଛ'ମାସ ପରେ ସେ ପୁଣି ଇଂଲାଣ୍ଡ ଚାଲିଆସିଲେ । ଉଇଲିଅମ ବରୋଜ ଇଟାଲି ଯାଇ ଅନେକବର୍ଷ ସେଠାରେ ରହିଲେ । ହର୍ଡ୍ ମଧ୍ୟ ଅନ୍ତର୍ଦ୍ଧାନ ହୋଇଗଲା ।

ମୁଁ ବର୍ତ୍ତମାନ ପୁରୁଷର ପୋଷାକ ପିନ୍ଧିଲି । ଏ ପର୍ଯ୍ୟନ୍ତ ସେ ସମୟର ପୋଷାକ ପିନ୍ଧୁଥିଲି— ଝିଅଙ୍କ ପରି ଫ୍ରକ୍ ଏବଂ ଧଳାକନାର ପ୍ୟାଣ୍ଟ । ବର୍ତ୍ତମାନ ମୋର ହେଲା କନାର ଜ୍ୟାକେଟ୍, କୋଟ, ଖୁବ୍ ଛୋଟ ଟ୍ରାଉଜର, କୋଟ ଉପରେ ବୋତାମ, ଟାଣ ଗୋଲାକାର ଧଳା ଘୋଡ଼ାବାଳରେ ତିଆରି ଟୋପି, ସେଥିରେ ପୁଣି ଲମ୍ବା ଟାସେଲ୍, ଉପର ପଟ ଚମଡ଼ା ଏବଂ ବୁଟର ଜୋତା । ଏଇ ପୋଷାକରେ ମୁଁ ରୟାଲ ଏକସ୍‌ଚେଞ୍ଜକୁ ଉଦ୍‌ଘାଟନ କରିବାକୁ ଯାଉଥିବା ରାଣୀ ଓ ଯୁବରାଜ ଆଲଫ୍ରେଡ୍‌କୁ ଦେଖିବାକୁ ଯାଇଥିଲି । ରାଣୀ ଧଳା କୁଟାରେ ତିଆରି, ଅଷ୍ଟ୍ରିଚ ପରର ପେନ୍ଥା ଲାଗିଥିବା ଏକ ବିରାଟ ସଛିଦ୍ର ଟୋପି ପିନ୍ଧିଥିବାରୁ ତାଙ୍କୁ ଦେଖିପାରିଲି ନାହିଁ; କିନ୍ତୁ ଲହୁଣି ରଙ୍ଗର ଛ'ଟି ଘୋଡ଼ାଯୁକ୍ତ, ସୁନା ଛାଉଣିକରା ତାଙ୍କର ବଡ଼ ଗାଡ଼ିଟି ମୋ ଉପରେ ଖୁବ୍ ପ୍ରଭାବ ପକାଇଲା । ଶୋଭାଯାତ୍ରା ଗଲାପରେ ଆମେ ଟେମ୍ପଲ ଗିର୍ଜା ଦେଖିଗଲୁ ଯେଉଁଠି ମୁଁ ଟେମ୍ପଲାର ଗୋଷ୍ଠୀର ଗମ୍ବୁଜମାନ ଦେଖି ଆଶ୍ଚର୍ଯ୍ୟ ହୋଇଗଲି । ସେଇ ରାତିରେ ମୁଁ ଏକ ଭୟଙ୍କର ସ୍ୱପ୍ନ ଦେଖିଲି ଯେ ବହୁସଂଖ୍ୟାରେ ଟେମ୍ପଲାର ବାହିନୀ ସିଂହ ଉପରେ ଚଢ଼ି ଆଗେଇ ଆସୁଚନ୍ତି ଏବଂ ଭୟଙ୍କର ଉଚ୍ଚ ସ୍ୱରରେ ଗୀତ ଗାଉଚନ୍ତି, ''ତୁମେ ସିଂହ ଓ ସାପ ଉପରେ ଯିବ, ସିଂହଶିଶୁ ଓ ଡ୍ରାଗନକୁ ତୁମେ ଗୋଡ଼ରେ ଦଳି ଦେଇଯିବ ।'' ମୁଁ ଚିତ୍କାର କରି ଉଠିପଡ଼ିଲି ଏବଂ ମୋତେ ଚୁପ୍ କରିବାକୁ ସେମାନେ ବହୁତ ହଇଚଇ କଲେ । ପରଜୀବନରେ ମୁଁ ସତରେ ବହୁ ସିଂହ ଓ ସାପକୁ ଦଳି ଦେଇଛି ଏବଂ ଅନେକ ସମୟରେ ସେଇ ସ୍ୱପ୍ନ କଥା ଭାବିଛି ।



# ତୃତୀୟ ପରିଚ୍ଛେଦ

## ମର୍ଚ୍ଚେଣ୍ଟ ଟେଲର୍ସ ୧୮୪୬-୧୮୫୫

୧୮୪୫ ଜାନୁୟାରୀରେ ମୋତେ ପୁରାତନ ପ୍ରିୟ ଷ୍ଟ୍ରେଥାମର ବିଦ୍ୟାଳୟକୁ ପଠାଗଲା ଏବଂ ସେଠାକୁ ଫେରିଆସି ମୁଁ ଖୁବ୍ ଖୁସି ହେଲି । ଷ୍ଟ୍ରେଥାମ ଏକାଡ଼େମୀ ନାମରେ କଥିତ ସେହି ବିଦ୍ୟାଳୟ ଶ୍ରୀ ଲୁଇସ୍ ଏଡ଼ୱାର୍ଡ଼ସ୍ ନାମକ ଜଣେ ଗେଡ଼ା, ବଳିଷ୍ଠ, ଦୟାର୍ଦ୍ର ବୃଦ୍ଧ ୱେଲସ୍‌ବାସୀଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ମୁଁ ତାଙ୍କର ଓ ତାଙ୍କ ସ୍ତ୍ରୀ ସୁଳାଙ୍ଗୀ, କୋମଳା ଓ ମାତୃହୃଦୟସମ୍ପନ୍ନା ମହିଳାଙ୍କର ପ୍ରିୟ ଥିଲି । ବିଦ୍ୟାଳୟଟି ଏ ପର୍ଯ୍ୟନ୍ତ ମଧ୍ୟ ଉନ୍ନତ ରହିଛି । ଏହା ଷ୍ଟ୍ରେଥାମ କମନ ପାଦଦେଶରେ, ଧାଡ଼ିଏ ଅନୁଚ୍ଚ ଧଳାଘର, ଯଥେଷ୍ଟ ସ୍ଥାନ ଥିବା ପ୍ରଶସ୍ତ କୋଠରି ସଂଯୁକ୍ତ । ଆଗବର୍ଷ ମୁଁ ଏହାକୁ ଦେଖିବାକୁ ଯାଇଥିଲି ଏବଂ ତାହା ସେହିପରି ଥିବାର ଦେଖିଲି । ଏଠା ଛାତ୍ରମାନେ ଏକ ଅପୂର୍ବ ମିଶ୍ରଣ, ଅଧିକାଂଶ ହେଉଛନ୍ତି ଲଣ୍ଡନ ବ୍ୟବସାୟୀଙ୍କ ପୁଅ ଯେଉଁମାନେ ଯଥେଷ୍ଟ ବ୍ୟବସାୟିକ ଶିକ୍ଷା ପାଉଛନ୍ତି । ସେମାନେ ଷୋହଳ ସତରବର୍ଷ ଯାଏ ବିଦ୍ୟାଳୟରେ ରହି ତା'ପରେ ମୋର ମନେହୁଏ ବାପାଙ୍କ ବ୍ୟବସାୟରେ ଲାଗିଯାଆନ୍ତି । ସେମାନେ ଥିଲେ ଅତ୍ୟନ୍ତ ଉଦ୍ଧତ ତରୁଣ ଗୋଷ୍ଠୀର । କିନ୍ତୁ ଅଳ୍ପ କେତେଜଣ ଭଦ୍ରଲୋକ ପିଲା ମଧ୍ୟ ସେଠାରେ ଥିଲେ ଯେଉଁମାନେ କି କେନ୍ଦ୍ରୀୟ ପବ୍ଲିକ୍ ସ୍କୁଲମାନଙ୍କୁ ଯିବାପାଇଁ ପ୍ରସ୍ତୁତ ହେଉଥିଲେ । ଆମେମାନେ ନିଜର ଗୁରୁତ୍ୱ ଅନୁଭବ କଲୁ ।

ସେତେବେଳେ ମୁଁ ଜାଣି ନ ଥିଲି ଯେ ସେଣ୍ଟମାରୀ ଓଭାରିଙ୍କ ଚର୍ଚ୍ଚର ପୃଷ୍ଠପୋଷକଙ୍କଠାରୁ ମୋର ମାତ୍ର ଚାରି ପୁରୁଷର ବ୍ୟବଧାନ । ମୁଁ ଭାବୁଛି ବାପା ମଧ୍ୟ ଜାଣି ନ ଥିଲେ ଯଦିଓ ସେ ନରମ୍ୟାନ ବ୍ୟାରନ ଓ ବିଶପ ଡି. ବେଲମେମାନଙ୍କ ସମ୍ପର୍କରେ ସବୁ କିଛି ଜାଣିଥିଲେ । ଆମେ ଭଦ୍ରଲୋକଙ୍କ ପିଲାମାନେ ଲାଟିନ ପଢ଼ିଥିବାର ସ୍ୱାତନ୍ତ୍ର୍ୟ ଯୋଗୁଁ ଗର୍ବ କରୁଥିଲୁ ଯେତେବେଳେ କି ବ୍ୟବସାୟୀଙ୍କ ପିଲାମାନେ ଅଙ୍କ ଓ ହିସାବ ରଖା ବିଷୟରେ ଲାଗିଥିଲେ । ଲାଟିନ ପଢ଼ିବାକୁ ମୁଁ ପ୍ରେରଣା ପାଇଲା ବେଳେ ଅଙ୍କ ପ୍ରତି ଥିବା ମୋର ଅବହେଳାକୁ ଆଖିବୁଜି ଦିଆଯାଉଥିଲା । ଫଳରେ ଜୀବନଯାକ ହିସାବଜ୍ଞାନ ଓ ହିସାବ ରଖାରେ ମୋତେ ଅସୁବିଧା ଭୋଗିବାକୁ ହେଲା ।

ଷ୍ଟ୍ରେଥାମ୍‌ରେ ଆମର ଜୀବନ ଥିଲା ସରଳ ଓ ସୁସ୍ଥ । କାନଫଟା ଘଣ୍ଟାଧ୍ୱନି ଶୁଣି ସାତଟା ବେଳେ ଆମେ ଉଠୁ, ହାତମୁହଁ ଧୋଇ ପୋଷାକ ପିନ୍ଧି ଆମେ ବିରାଟ ଶ୍ରେଣୀକକ୍ଷକୁ ପ୍ରବେଶ କରୁ । ଏହି ଚୂନଧଉଳା କକ୍ଷରେ ଧାଡ଼ି ଧାଡ଼ି ବେଞ୍ଚ ଡେସ୍କ । ସେଠାରେ ପ୍ରାର୍ଥନା ପଢ଼ା ଆରମ୍ଭ ହୁଏ । ନଅଟା ବେଳେ ଚାକରମାନେ ଆଣନ୍ତି ବଡ଼ ବଡ଼ ପରାତରେ ପାଉଁରୁଟି ଓ ଲହୁଣି, ମଗ୍‌ମାନଙ୍କରେ କ୍ଷୀର ଓ ପାଣି । ଭୂରିଭୋଜନ ପରେ କମନର ଗୋଟିଏ ପାଖକୁ

ଦୁଇଜଣ ଲେଖାଏଁ ଧାଡ଼ି ହୋଇ ଆମେ ଯାଉ । ଉପରେ ଆମେ ଧାଡ଼ି ଭାଙ୍ଗି କିଛି ସମୟ ଖେଳୁ ଏବଂ କମନର ଅନ୍ୟପାଖ ଦେଇ ଧାଡ଼ିକରି ପୁଣି ଫେରିଆସୁ । ସକାଳ ପାଠ ସାଢ଼େ ଦଶଟାରୁ ଗୋଟାଏ ପର୍ଯ୍ୟନ୍ତ ହୁଏ । ତା'ପରେ ଆମେ ଧାଡ଼ିକରି ଭୋଜନ ଘରକୁ ଯାଉ । ସେଠାରେ ଯଥେଷ୍ଟ ପରିମାଣରେ ମାଂସ, ପରିବା ଓ ପୁଡ଼ିଂର ଭୋଜନ ଦିଆଯାଏ ଆଉ ପ୍ରତ୍ୟେକଙ୍କୁ ଛୋଟ ଗ୍ଲାସେ ବିଅର । ଏଡ଼ୱାର୍ଡ଼ଠାରେ ଖାଦ୍ୟ ସର୍ବଦା ପ୍ରଚୁର । ତା'ପରେ ସାଢ଼େ ଦୁଇଟା ପର୍ଯ୍ୟନ୍ତ ପଢ଼ିଆରେ । ତା'ପରେ ପାଞ୍ଚଟା ଯାଏ ଓପରଓଳିର ବିଦ୍ୟାଳୟପାଠ; ପୁଣି ଛ'ଟାଯାଏ ଖେଳ ଏବଂ ଛ'ଟାବେଳେ ପୁଣି ଆସେ କ୍ଷୀର, ପାଉଁରୁଟି, ଲହୁଣି । ଏହାପରେ ଆମେ ନ'ଟା ବେଳଯାଏ ବସି ଆମୋଦ ପ୍ରମୋଦ କରୁ । ଗ୍ରୀଷ୍ମକାଳରେ ଅଧିକାଂଶ ଦିନ ଆମେ କମନରେ କ୍ରିକେଟ, ରାଉଣ୍ଡର କିମ୍ବା ଅନ୍ୟ କିଛି ଖେଳି କଟାଉ କିମ୍ବା ଗ୍ରେହାଉଣ୍ଡ ଲେନ୍‌କୁ ଯାଉ । ସେଠାରେ ଆମକୁ ମନ ଖୁସିରେ ପଢ଼ିଆରେ ଖେଳିବା ପାଇଁ ଛାଡ଼ି ଦିଆଯାଏ । ସନ୍ଧ୍ୟାରେ ପ୍ରାର୍ଥନା ପରେ ଆମକୁ ଗଣାହୋଇ ଫେରାଇ ଅଣାହୁଏ ଆମ ଶୋଇବା ଜାଗାକୁ । ପ୍ରଥମେ ମୁଁ ଟିକିଏ ଘରକୁ ଝୁରୁଥିଲି ଏବଂ ବିଦ୍ୟାଳୟର ସବୁଠାରୁ ଛୋଟ ପିଲା ହୋଇଥିବାରୁ ମୋତେ ଖୁବ୍ ଭୟଭୀତ କରାହେଉଥିଲା ! ମୁଁ ଥିଲି ମୋଟା ହୋଇ ଗୋଲଗାଲ ପିଲାଟିଏ, ତେଣୁ ବୋଧହୁଏ ଧକ୍କାଟାଏ, ଗୋଇଠାଟାଏ ମାରିବାକୁ ସେମାନଙ୍କ ଲୋଭ ହେଉଥିଲା, କିନ୍ତୁ ଶୀଘ୍ର ଆତ୍ମରକ୍ଷା କରିବା ମୁଁ ଶିଖିଗଲି ଓ ମୋର ଘରମୁହାଁ ଦୋଷ ଦୂର ହୋଇଗଲା । ପାଠପଢ଼ା କ୍ଷେତ୍ରରେ ମୁଁ ଲାଟିନ୍‌ର କାଇଜର ଓ ଓଭିଡ଼୍ ପର୍ଯ୍ୟନ୍ତ ପଢ଼ିଗଲି; ଫରାସୀ ବ୍ୟାକରଣ ଏବଂ ବଛାବଛା ବହି ଥିବା ବିଦ୍ୟାଳୟ ପୁସ୍ତକାଗାରଟିକୁ ଗୋଟାପଣେ ସାରିଦେଲି । ସହୃଦୟ ଷ୍ଟ୍ରେଥାମବାସୀ ମୋ ବାପାଙ୍କୁ ମନେ ପକାଇ ଅଧାଛୁଟି ଦିନମାନଙ୍କରେ ସେମାନଙ୍କ ଘରକୁ ନିମନ୍ତ୍ରଣ କରୁଥିଲେ । କୁଳିଆନା ଆରୋଏଭ ଚାଲିଯାଇଥିଲା ଏବଂ ତା ଜାଗାରେ କୁଳିଆ କାଷ୍ଟର ହେଲା ମୋର ଦେବୀପ୍ରତିମା । ମନେହୁଏ ସେ ଥିଲା ଷୋହଳ କିମ୍ବା ତଦୂର୍ଦ୍ଧ୍ୱ ବୟସର, ଦୀର୍ଘାଙ୍ଗୀ, ମାଂସଳ, ଗୋଲାପବର୍ଣ୍ଣା, ହାସ୍ୟମୁଖୀ ଓ ସ୍ୱର୍ଗୀୟ ସଦ୍‌ଗୁଣସମ୍ପନ୍ନା । ସେ ମୋତେ ଗେହ୍ଲା କରେ ଓ ମୋ ସାଙ୍ଗେ ପଢ଼େ । ଅନେକ ସୁଖକର ଅପରାହ୍ନ ଆମେ ଏକତ୍ର କାଟୁ । ରାତିରେ ବିଦ୍ୟାଳୟକୁ ଫେରିଗଲାବେଳେ ବୁଢ଼ା କୋଷ୍ଟର ମୋତେ ଅଧକ୍ରାଉନ୍‌ଟିଏ ଦିଅନ୍ତି । ଆଉ ମଧ ସେଠାରେ ଥିଲେ ହୁଚିନସ୍ ନାମରେ ଲୋହିତ ଚର୍ମ, କୌତୁକିଆ ଜଣେ ବୃଦ୍ଧ ଦନ୍ତ ଚିକିତ୍ସକ । ସେ ହାନୋଭର ସ୍କୋୟାରରେ ରହୁଥିଲେ ମଧ ଷ୍ଟ୍ରେଥାମରେ ତାଙ୍କର ଏକ ପଲ୍ଲୀଗୃହ ଥିଲା । ତାଙ୍କ ବଡ଼ ପରିବାର ଗ୍ରୀଷ୍ମଦିନଟା ସେଠାରେ କଟାନ୍ତି । ତାଙ୍କର ଦୁଇଟି ପୁଅ ଆର୍ଥର ଓ ଫିଲିପ୍ ମୋ ସଙ୍ଗରେ ଏଡ଼ୱାର୍ଡ଼ସ୍‌ରେ ରହୁଥିଲେ । ଫିଲିପ୍‌ପରେ ଏକ ବିରାଟ ବ୍ୟକ୍ତିତ୍ୱରେ ପଦାର୍ପଣ କରି ହେଲା ସାର୍ ଫିଲ୍‌ପ ପେରସିଭାଲ ହଚିନସ୍ କେ.ସି.ଆଇ.ଇ, ଭାଇସରଏ କାଉନସିଲର ସଭ୍ୟ, ଦାମ୍ଭିକ, ଅହମିକାସର୍ବସ୍ୱ ବ୍ୟକ୍ତି । ବ୍ଲଣ୍ଟଙ୍କର କେତେଜଣ ସାନ ସାନ ପୁଅ ମଧ ସେଇ ବିଦ୍ୟାଳୟରେ ଥିଲେ । ସେଥିରୁ ଜଣେ ବର୍ତ୍ତମାନ ବିଶପ । ମୋଟ ଉପରେ ଏଡ୍‌ୱାର୍ଡ଼ସ୍‌ରେ ମୁଁ ଖୁବ୍ ଆନନ୍ଦରେ ଥିଲି ।

୧୮୪୬ରେ ବାପା ଆଉ କାନନ୍‌ଡେଲରେ ରହି ନ ପାରିବାରୁ ସେଣ୍ଟବ୍ରାଇଟ ଗିର୍ଜା ଛାଡ଼ି ଉତ୍ତର ଲଣ୍ଡନର ସେଣ୍ଟ ପାନକ୍ରାସ୍‌ଠାରେ ଏକ କ୍ୟୁରେଟ ପଦରେ ଯୋଗଦେଲେ । ୩୪

ବରଟନ୍ ଷ୍ଟ୍ରିଟ ବରଟନ କ୍ରିସେଣ୍ଟକୁ ଆମେ ଫେରିଆସିଲୁ । ଏହା ଛୋଟ ଜାଗା କିନ୍ତୁ ସୁନ୍ଦର ଓ ସମ୍ଭ୍ରାନ୍ତ ଏବଂ ବାଉଟର କୋଠାଠାରୁ ଖୁବ୍ କମ୍ ଅନ୍ଧାରିଆ ଓ ଅପରିଷ୍କାର । ୧୮୪୭ରେ ମୋତେ ଏଡ୍‌ୱାର୍ଡ୍‌ସ୍‌ରୁ ମରଚେଣ୍ଟସ୍ ଟେଲରସ୍‌କୁ ନିଆଗଲା । ବାପାଙ୍କର ଇଚ୍ଛା ଥିଲା ମୋତେ ତାଙ୍କ ପ୍ରିୟ ଉଇଞ୍ଚେଷ୍ଟରରେ ଦେବାପାଇଁ କିନ୍ତୁ ତାଙ୍କର ସମ୍ବଳ ନ ଥିଲା ଏବଂ ଜେଜେବାପା ମଧ୍ୟ ତାଙ୍କୁ ସାହାଯ୍ୟ କଲେ ନାହିଁ । ଏଡ୍‌ୱାର୍ଡ୍‌ଙ୍କ ପୁଅ ଷ୍ଟିଫେନ୍ ମର୍ଚ୍ଚାଣ୍ଟ ଟେଲରସ୍‌ରେ ଥିଲେ ଏବଂ ସେଠାରୁ ଅକ୍ସଫୋର୍ଡ୍‌ର ମେର୍‌ଟନ କଲେଜରେ ପୋଷ୍ଟମାଷ୍ଟର ଚାକିରି ପାଇଥିଲେ । ସେତେବେଳେ ସେ ସେହିଠାରେ ଥିଲେ । ଏଡ୍‌ୱାର୍ଡ୍‌ସ ମର୍ଚ୍ଚାଣ୍ଟ ଟେଲର୍ସରେ ତାଙ୍କର ପୁଅର କୃତିତ୍ୱରେ ଏତେ ସନ୍ତୁଷ୍ଟ ଥିଲେ ଯେ ମୋତେ ସେଇଠିକି ପଠାଇବାକୁ ବାପାଙ୍କୁ ଜୋର ପରାମର୍ଶ ଦେଲେ । ଆର୍‌ଥର୍ ଓ ଫିଲିପ୍ ହଚିନସ୍, ଫ୍ରେଡ୍ରେରିକ ଓ ଆର୍‌ଥର୍ ବ୍ଲଣ୍ଟ ମଧ୍ୟ ସେଠାକୁ ପଠାହେଲେ । ତେଣୁ ନୂତନ ବିଦ୍ୟାଳୟରେ ମୋର କେତେକ ବନ୍ଧୁ ମଧ୍ୟ ହୋଇଗଲେ ।

ଜେଜେମା ୧୮୪୬ର ବସନ୍ତ କାଳରେ ୬୮ ବର୍ଷ ବୟସରେ ମରିଗଲେ । ତାଙ୍କୁ ହରାଇ ବାପା ଶୋକାଭିଭୂତ ହୋଇଗଲେ । ସେହି ବର୍ଷ କିମ୍ବା ପର ବର୍ଷ ଜେଜେବାପା ଲିଙ୍କନ୍ ଇନ୍‌ର କୋଷାଧ୍ୟକ୍ଷ ହୋଇ ଆମସହ ରହିବା ପାଇଁ ଲଣ୍ଡନ ଆସିଲେ । ସେହି ପଦ ବଳରେ ସେ ଥିଲେ ସେହି ସମାଜର ମୁଖ୍ୟ ଏବଂ ନୂଆ ହଲ ଘରର ଉଦ୍‌ଘାଟନ ଉପଲକ୍ଷେ ବଡ଼ ଭୋଜି ସଭାରେ ମହାମାନ୍ୟା ରାଣୀଙ୍କୁ ଅଭ୍ୟର୍ଥନା କରିବା ତାଙ୍କ ଭାଗ୍ୟରେ ଜୁଟିଲା । ସରକାରୀ ଭାବରେ ଘୋଷଣା କରାଗଲା ଯେ ରାଣୀ କୋଷାଧ୍ୟକ୍ଷଙ୍କୁ ବାରୋନେଟ ପଦରେ ଭୂଷିତ କରିବେ କିନ୍ତୁ ସେ ସେଥିରେ ଉପସ୍ଥିତ ରହି ପାରିବେନି ବୋଲି କହିଦେବାରୁ ବାପା ଖୁବ୍ ବିରକ୍ତ ହେଲେ । ତାଙ୍କୁ କୁହାଗଲା ଯେ ବାରୋନେଟ ହେବାର ଦେୟ ୩୦୦ ପାଉଣ୍ଡ ଖଣ୍ଡେ ସ୍ଥିର ହୋଇଛି ଏବଂ ସେହି ପରିମାଣ ଦେବାପାଇଁ ସେ ସକ୍ଷମ ଥିଲେ ମଧ୍ୟ ତାହା ବ୍ୟୟ କରିବା ସେ ଇଚ୍ଛା କଲେ ନାହିଁ । ତେଣୁ ବାପାଙ୍କ ଅନୁରୋଧ ସତ୍ତ୍ୱେ ସେ ସେଥିରୁ ଅଲଗା ରହିଲେ ଏବଂ ଦ୍ୱିତୀୟ ପଦାଧିକାରୀ ରାଣୀଙ୍କୁ ଅଭ୍ୟର୍ଥନା କରି ସେ ପଦବୀ ଲାଭକଲେ ।

୧୮୪୭ ଜାନୁୟାରୀରେ ମୁଁ ମରଚାଣ୍ଟ ଟେଲର୍ସ ବିଦ୍ୟାଳୟର ୩ୟ ଫର୍ମରେ ଭର୍ତ୍ତି ହେଲି । ଏହି ବିଦ୍ୟାଳୟ ଥେମସ୍ ଷ୍ଟ୍ରିଟ୍‌ରୁ ସିଧାଭାବରେ ଉପରକୁ ଉଠିଥିବା ସରୁ ରାସ୍ତା ସଫୋକ୍ ଲେନ୍‌ରେ ଅବସ୍ଥିତ । ବିଦ୍ୟାଳୟ ଏହି ଉଠାଣି ରାସ୍ତାର ପ୍ରାୟ ସମଗ୍ର ପୂର୍ବଭାଗଟି ଅଧିକାର କରିଛି । ଅପରପାର୍ଶ୍ୱରେ ଦୁଇଟି ବୋର୍ଡ଼ିଂ ଘର ଯେଉଁଠି ଅନେକ ପିଲା ରହନ୍ତି । ନିମ୍ନାଂଶରେ ପ୍ରଧାନ ଶିକ୍ଷକଙ୍କ ଘର ବିଦ୍ୟାଳୟକୁ ଲାଗିଛି । ବିଦ୍ୟାଳୟଟି ୧୬୭୦ରେ ତିଆରି ଲାଲ ଇଟାର ଲମ୍ବା ଦୋମହଲା କୋଠା, ଲଣ୍ଡନର ଭୀଷଣ ଅଗ୍ନିକାଣ୍ଡ ପରେ ଆଉ ଥରେ ତିଆରି ହୋଇଥିଲା । ଏହାର ଉପରାଂଶରେ ଗୋଲାକୃତି ଲମ୍ବା ଚାରୋଟି ଝରକା ରହିଛି । ମଝିରେ ମଝିରେ ସ୍ତମ୍ଭ, ବିରାଟ ବଡ଼ ପ୍ରବେଶଦ୍ୱାର ଉପରେ ମରଚାଣ୍ଟ ଟେଲର କମ୍ପାନୀର ସଙ୍କେତ ରହିଥିଲା । ତଳ ମହଲାରେ ଥିଲା ଏକ ଅନ୍ଧାରିଆ ହଲଘର କିମ୍ବା ଯାହାକୁ କୁହାଯାଉଥିଲା 'ଖିଲାଣ ଦ୍ୱାରା ଆବଦ୍ଧ ପଥ' ଯେ କି ବଡ଼ ବଡ଼ ସ୍ତମ୍ଭଦ୍ୱାରା ଛାତକୁ ଧରି ରଖିଥିଲା, କେତେକ ଶ୍ରେଣୀକକ୍ଷ ଏବଂ ଏକ ଲମ୍ବ ଅଣଓସାରିଆ ଅଗଣା । ଏହି ଅଗଣାର ତିନିପଟ ବଦ୍ୟାଳୟର ଘରଦ୍ୱାରା ଏବଂ ଚତୁର୍ଥ

ପଟଟି ସଂଲଗ୍ନ ଅନ୍ୟ ଘରଗୁଡ଼ିକୁ ପଛ କରି ଉଚ୍ଚ ସମତଳ ପ୍ରାଚୀରଦ୍ୱାରା ବେଷ୍ଟିତ । ଏହି ଗର୍ତ୍ତପରି ସ୍ଥାନରୁ ଛୋଟ ଚେନାଏ ଅନ୍ଧାରୁଆ ଆକାଶ ମାତ୍ର ଦେଖାଯାଉଥାଏ । ଉପର ମହଲାକୁ ପଡ଼ିଛି ଚଉଡ଼ା ପାହାଚ । ସେଠାରେ ଅଛି ପ୍ରଧାନ ଶ୍ରେଣୀକକ୍ଷ, ଖୁବ୍ ଲମ୍ବା, ଚଉଡ଼ା ବଖରା; ଦୁଇପଟେ ଆଠୋଟି ଝରକା ଦେଇ ଆଲୋକ ଆସେ, ଉଭୟ ପଟେ ତିନିଥାକ ହୋଇ ଶ୍ରେଣୀଗୃହର ଲମ୍ବା ଧାଡ଼ି, ପ୍ରାୟ ଆଠଫୁଟ ଉଚ୍ଚରେ ଧଳାରଙ୍ଗ ହୋଇଥିବା ପଟା ହଲଘର ଚାରିପଟେ ମରାହୋଇଥାଏ । ତା ଉପରକୁ କାନ୍ଥସବୁ ଫାଙ୍କା, ଚୂନ ଧଉଳା, କେବଳ ଗୋଟିଏ ପଟେ, ଦୁଇ ଝରକା ମଝିରେ ଗୋଟିଏ ଫଳକରେ ୧୮୦୦ ସାଲରୁ ବର୍ଷକୁ ବର୍ଷ ମନିଟରମାନଙ୍କ ନାମ ରଙ୍ଗରେ ଲେଖାହୋଇଥାଏ । ଉପରମୁଣ୍ଡରେ ରହିଛି ଗୋଟିଏ ବେଦିକା ଯାହାର ମଝିରେ ହଲଘରର ଲମ୍ବବାଗରେ ପଡ଼ିଛି ବିଶାଳକାୟ ପୁରାତନ ଟେବୁଲ । ଏହାର ଉପରିଭାଗଟାଯାକ ପୂର୍ବବର୍ତ୍ତୀ ପିଲାଙ୍କ ନାମସବୁ ଖୋଳାହୋଇଛି । ଏହି ଟେବୁଲର ମୁଣ୍ଡପଟେ ପଡ଼ିଛି ଡେସ୍କ, ସ୍ପେନୀୟ ଚେଷ୍ଟନଟରେ ତିଆରି ସୁନ୍ଦର କାରୁକାର୍ଯ୍ୟକରା ବିରାଟ ଚଉକି, ଯାହାର ପଛପଟେ ରହିଛି କମ୍ପାନୀର ସଙ୍କେତ । ଏହା ଥିଲା ପ୍ରଧାନଶିକ୍ଷକଙ୍କ ଆସନ ଏବଂ ହଲଯାକ ମଝିରେ ମଝିରେ ଅଧସ୍ତନ ଶିକ୍ଷକମାନଙ୍କ ପାଇଁ ସେହିପରି ଆସନମାନ ଥିଲା । ବେଦିକାର ଦକ୍ଷିଣ ପୂର୍ବ କୋଣରେ ଗୋଟିଏ କବାଟ ଯେଉଁଠାରୁ ସାଧାରଣ ଲୋକଲୋଚନରୁ ଦୂରରେ ଥିବା ଷଷ୍ଠ ଓ ଶେଷଶ୍ରେଣୀର ପଢ଼ାକକ୍ଷକୁ ଯିବା ରାସ୍ତା ପଡ଼ିଛି । ତା'ପରେ ଅଛି 'ଭଜନାଳୟ' ଯାହାକି ପୂର୍ବେ ସେହି ନାମରେ ବରମିଙ୍ଗହାମର୍ ଡ୍ୟୁକ୍‌ଙ୍କର ଥିଲା । ସେହି ଜାଗାଟିକୁ କମ୍ପାନୀ ତାଙ୍କ ସ୍କୁଲପାଇଁ କିଣିଲେ । ପ୍ରଧାନଶିକ୍ଷକଙ୍କ ଘରୋଇକକ୍ଷ ରୂପେ ବ୍ୟବହୃତ ଏହି ବଖରାରେ ଧାଡ଼ିଧାଡ଼ି ବହିଥାକ ଉପରେ ପ୍ରତିଷ୍ଠାତା ସାର୍ ଜନ୍ ହ୍ୱାଇଟ ଏବଂ ଏଇ ବିଦ୍ୟାଳୟରେ ପଢ଼ିଥିବା ଅନ୍ୟାନ୍ୟ ପ୍ରଧାନ ବ୍ୟକ୍ତିଙ୍କ ପୂର୍ଣ୍ଣାବୟବ ଛବିସବୁ ରହିଥାଏ । ଏହି କକ୍ଷରୁ ପ୍ରଧାନଶିକ୍ଷକଙ୍କ ନିବାସକୁ ବାଟ ଅଛି ।

ବିଦ୍ୟାଳୟର ୧୦ଟି ଶ୍ରେଣୀରେ ପ୍ରାୟ ୨୫୦ରୁ ୩୦୦ପିଲା ଥିଲେ । ପ୍ରତ୍ୟେକ ଛ'ମାସରେ ପରୀକ୍ଷା ହେଉଥିଲା ଏବଂ ବଡ଼ ବକ୍ତୃତା ଦିବସ ଅନୁଷ୍ଠିତ ହେଉଥିଲା । ଏହି ଦିବସରେ ଶିକ୍ଷକମାନେ, ବିଶେଷଧରଣର ପରିଚ୍ଛଦ ପିନ୍ଧି କମ୍ପାନୀର ଓ୍ୟାଡ଼େନମାନେ, ବହୁ ଦର୍ଶକ ଓ ପୂର୍ବତନ ଛାତ୍ର ଯୋଗ ଦେଉଥିଲେ । ବକ୍ତୃତା ହେଉଥିଲା, ନାଟକ ଅଭିନୀତ ହେଉଥିଲା ଏବଂ ବହୁ ଆନନ୍ଦ ଉତ୍ସବ ମଧ୍ୟରେ ପୁରସ୍କାର ବିତରଣ ହେଉଥିଲା । ଜୁନ୍ ୧୧ ତାରିଖ ସେଣ୍ଟ୍ ବାର୍ଣ୍ଣାବାସ ଦିନଟି ଥିଲା ମହାନ୍ ଦିବସ । ଅକ୍‌ସଫୋର୍ଡ଼ର ସେଣ୍ଟଜନ କଲେଜରୁ ଆସିଥିବା ପ୍ରଧାନଶିକ୍ଷକ ଡ. ଜେମସ୍ ଅଗଷ୍ଟସ୍ ହେସି ଥିଲେ ଖର୍ବକାୟ, ପୃଥୁଳ ଓ ସର୍ବଦା ହଇଚଇ କରୁଥିବା କିନ୍ତୁ ଖୁବ୍ ଦୟାଳୁ, ପରିଶ୍ରମୀ ଓ ଦୃଢ଼ଚେତା ବ୍ୟକ୍ତି । ଅନ୍ୟ ଶିକ୍ଷକମାନଙ୍କର କେବଳ ସ୍ମରଣଯୋଗ୍ୟ ପଦାର୍ଥ ହେଉଛି ସେମାନଙ୍କ ଲମ୍ବା ବେତ, ଯେଉଁଥିରେ ସାମାନ୍ୟ ଭୁଲ ଲାଗି ସେମାନେ ଆମକୁ ନିର୍ଦ୍ଦୟ ଭାବରେ ପିଟୁଥିଲେ । ଏହିସବୁ 'ବେଣ୍ଡର୍' (ନମ୍ରକାରୀ) ଦ୍ୱାରା ମୋର ପିଠିପଟରୁ ବାହାରିଥିବା ରକ୍ତଲଗା ଜାମା ସହିତ ରାତିରେ ମୁଁ ଘରକୁ ଫେରିଛି । ମନେହୁଏ 'ବେଣ୍ଡର' ଥିଲା ଏହି ବିଦ୍ୟାଳୟର ବେତମାଡ଼ ପ୍ରଥାର ଏକ ବିଶେଷତ୍ୱ । ଶିକ୍ଷକ ପିଲାଙ୍କ ମୁଣ୍ଡ ଉପର ବାଳକୁ ଧରନ୍ତି— ବର୍ତ୍ତମାନ ଅପେକ୍ଷା ସେତେବେଳେ ପିଲାମାନେ ବେଶି ଲମ୍ବବାଳ

ରଖୁଥିଲେ— ତାହାଙ୍କୁ ଭିଡ଼ିଆଣି ପିଠିରେ କଷିକରି ପିଟନ୍ତି । ଦ୍ୱିତୀୟ ଶିକ୍ଷକ ବୃଦ୍ଧ ଡି.ଏନ୍. ଥିଲେ ଡେଙ୍ଗା ମୋଟା ବ୍ୟକ୍ତି । ସେ ଥିଲେ ଜଣେ ଘୋଡ଼ସବାର ବାହିନୀର ଅଫିସର୍; ବେଣ୍ଟର୍‌ରେ ଥିଲେ ବିଶେଷ ରୂପେ ଦକ୍ଷ । ଆମ ଫରାସୀ ଶିକ୍ଷକ ଏମ୍.ଡେଲିଲେ ଥିଲେ ପୃଥୁଳ, ସହୃଦୟ ଉତ୍ସାହୀ ବ୍ୟକ୍ତି, ଚେହେରା ଓ ମୁଖଭଙ୍ଗୀରେ ଫରାସୀ ଲୋକ ଅପେକ୍ଷା ବେଶି ଇଂରାଜୀ ପରି । ସେ ଥିଲେ ଆମର ସବୁଠାରୁ ପ୍ରିୟ ଶିକ୍ଷକ । ଭଲ ପଢ଼ାଉଥିଲେ, କିନ୍ତୁ ସେ ସମୟରେ ଫରାସୀକୁ କମ୍ ଗୁରୁତ୍ୱ ଦିଆଯାଉଥିଲା ।

ମର୍‌ଚାଣ୍ଟ ଟେଲର୍ସରେ ଦିନକର କାର୍ଯ୍ୟନିର୍ଘଣ୍ଟ ଥିଲା ଏହିପରି— ଦୈନିକ ଠିକ୍ ନ'ଟାବେଳେ ଡାକ୍ତର ଆସନ୍ତି ଏବଂ ଡେସ୍କରେ ବେତ ପିଟି ବଜ୍ର ସ୍ୱରରେ କହନ୍ତି— 'ଆଗେଇ ଆସ', ସାଙ୍ଗେ ସାଙ୍ଗେ ଷଷ୍ଠ ଶ୍ରେଣୀର ସବୁଠୁ ପଛରେ ଥିବା ପିଲା ହଲଘରର ପଛକଡ଼ ଦେଇ ଧାଇଁଆସେ ଓ ବଡ଼ କବାଟଟାକୁ ବନ୍ଦ କରେ । ଏହି କବାଟର କିଳିଣି ନାହିଁ; ପିଲାଟି କବାଟର ବଡ଼ ଲୁହା କୁହୁଣ୍ଡଖଳ ଭିତରେ ହାତ ଭର୍ତ୍ତିକରି କବାଟକୁ ବନ୍ଦ କରି ରଖେ । ଯେଉଁ ପିଲାମାନେ ପଛରେ ଆସନ୍ତି ସେମାନେ କବାଟକୁ ବାହାରୁ ଟାଣି ପିଲାଟିର ବଳକୁ ଖୁବ୍ ଜୋରରେ ପରୀକ୍ଷା କରନ୍ତି । (ସ୍କଟଲ୍ୟାଣ୍ଡର ଜେମସ୍-୧ଙ୍କ ହତ୍ୟାକାରୀମାନଙ୍କୁ କବାଟ ଦେଇ ଅଟକାଉଥିବା କ୍ୟାଥେରାଇନ୍ ଡଗଲାସଙ୍କ ପରି ମରଚାଣ୍ଟ ଟେଲର୍ସର ସେ ପିଲାଟିର ହାତ ଯାହା ଭାଙ୍ଗି ଯାଉନଥିଲା, ଯଦିଓ ଅନେକ ସମୟରେ ଖଣ୍ଡିଆ ଖାବରାହେଉଥିଲା) ତା'ପରେ ଆଉ ଜଣେ ଷଷ୍ଠ ଶ୍ରେଣୀର ପିଲା ମଣ୍ଡପତଳକୁ ଧାଇଁଯାଇଁ ସେଠାରେ ଗୋଟାଏ ବହିକୁ ଖୋଲାକରି ରଖିଦେଉଥିଲା । ଏଥିପାଇଁ ଗୋଟିଏ ସୁନ୍ଦର, ପୁରୁଣା ହାଲୁକା ଅଭିଧାନ ବ୍ୟବହୃତ ହେଉଥିଲା । ତା'ପରେ ପାଳି ଅନୁଯାୟୀ ଜଣେ ମନିଟର ସୁନ୍ଦର ଭାବେ ଚିତ୍ରିତ ଗୋଟିଏ ପ୍ରାର୍ଥନା ବହି ନେଇଯାଇ ସେଇ ଅଭିଧାନ ଉପରେ ଆଣ୍ଠେଇପଡ଼ି ଯେତେଶୀଘ୍ର ପାରେ ପ୍ରାର୍ଥନା ଲାଟିନରେ ପଢ଼ିଯାଏ । ବିଦ୍ୟାଳୟର ଆଉ ସବୁ ପିଲା ପାଟିକରି ତା'ସହ ଯୋଗଦିଅନ୍ତି । ତାହାର ଶେଷ ଶବ୍ଦାବଳି 'ଇନ୍‌ସେକୁଲା ସେକୁଲୋରମ୍। ଆମେନ' କୁହାସରିବାମାତ୍ରେ କବାଟ ଖୋଲିଦିଆଯାଏ ଏବଂ ଡେରିରେ ଆସିଥିବା ପିଲାମାନଙ୍କୁ ଭିତରକୁ ଛଡ଼ାଯାଏ, ଦଣ୍ଡଦେବାପାଇଁ ସେମାନଙ୍କ ନାମ ଟିପାଯାଏ । ଦଣ୍ଡ ହେଉଛି ଭିର୍‌ଜିଲ୍‌ରୁ ଶହେ ଧାଡ଼ି ଲେଖିବା । ତା'ପରେ ପାଠ ଆରମ୍ଭ ହୁଏ । କେତେକ ଶ୍ରେଣୀର ପିଲା ତଳମହଲାରେ ଥିବା ଶ୍ରେଣୀକକ୍ଷମାନଙ୍କୁ ଯାଆନ୍ତି ଏବଂ ଅନ୍ୟମାନେ, ସେମାନେ ଖାଲି କରିଥିବା ସ୍ଥାନମାନଙ୍କରେ ବିଛେଇ ହୋଇଯାନ୍ତି ।

ସବୁ ଶ୍ରେଣୀର ପ୍ରଥମ କାର୍ଯ୍ୟ ହେଲା 'ଭାଗ'ର ପୁନରାବୃତ୍ତି କରିବା । ଏହା ହେଉଛି ରାତିରୁ ଘୋଷି ରଖିଥିବା ଜଣେ ଲାଟିନ୍ କବିଙ୍କ କବିତାର ପ୍ରାୟ କୋଡ଼ିଏ ଧାଡ଼ି; ସୋମବାରଦିନ ଏପିଷ୍ଟଲ ଏବଂ ରବିବାର ଦିନ ଗୋସପେଲ୍‌ରୁ । ଏହିପରି ଭାବରେ ମୁଁ ଭିର୍‌ଜିଲ୍ ଓ ହୋରେସ୍‌ଙ୍କର ପ୍ରାୟ ସମୁଦାୟଟା ମୁଖସ୍ଥ କରିଦେଇଥିଲି । ତା'ପରେ ଚାଲେ 'ପାଠର ଅନୁଶୀଳନ' ଲାଟିନ୍‌ର ଖଣ୍ଡେ ବହିରୁ ଏବଂ ଷଷ୍ଠ ଓ ଶେଷ ବର୍ଷରେ ରାତିରେ ପଢ଼ିଥିବା ଗ୍ରୀକ୍ କବିତାରୁ । ସେ ସବୁ ଆରନଲଡ୍ ନାମକ ଜଣକ ଦ୍ୱାରା ସମ୍ପାଦିତ ହୋଇଥିଲା ଏବଂ ସେଥିରେ ବାଲବସ୍ ଓ ତା' ବନ୍ଧୁ କାୟସ୍‌ଙ୍କ ବିଷୟରେ ଅନେକ କିଛି ଲେଖାଥିଲା । ବାଲ୍‌ବସ୍‌ଙ୍କ ପ୍ରସିଦ୍ଧ ଉକ୍ତି 'ସୈନ୍ୟବାହିନୀର

କଥା ସରିଗଲା । (Actum est de exercitu) ଏକ ସ୍ଥାୟୀ କୌତୁକରେ ପରିଣତ ହେଲା । ବାସ୍ତବିକ ଆମର ସମସ୍ତ କାର୍ଯ୍ୟ ଥଟ୍ଟା ପରିହାସରେ ହିଁ କରାଯାଉଥିଲା ଏବଂ ଆମ ଭିତରୁ ଅନେକ ଚିତ୍ରାଙ୍କନ ପ୍ରିୟ ଆମେ ପଢୁଥିବା ସବୁ କିଛିକୁ ଚିତ୍ରକରି ଦେଉଥିଲେ । ମୋ ପୁରୁଣା ସ୍କୁଲବହିର ପ୍ରତ୍ୟେକ ଖାଲିସ୍ଥାନ ଭର୍ତ୍ତି ହୋଇଥିବା ଏହି କାରୁକାର୍ଯ୍ୟ ପାଇଁ ଡି. ଏନ୍‌ଙ୍କ ବେତର ଆଘାତ ମୋ ହାତରେ ବାଜିଥିଲା । ବିଦ୍ୟାଳୟ ଛାଡ଼ିବାର ଅନେକ ବର୍ଷ ପରେ ଡ. ହେସି ମୋତେ କହିଲେ ଯେ ତାଙ୍କ ପାଖରେ ମଝିରେ ମଝିରେ ଖାଲି କାଗଜ ଥିବା ଖଣ୍ଡେ ଇଉକ୍ଲିଡ୍ ବହି ସେ ପର୍ଯ୍ୟନ୍ତ ସାଇତା ଥିଲା ଯାହାର ଖାଲି ପୃଷ୍ଠାଗୁଡ଼ିକରେ ମୁଁ କାଳି ଓ କଲମରେ ଥୁସିଡାଇଡ୍‌ଙ୍କ ରଚିତ ପେରିକ୍ଲିସଙ୍କ ବକ୍ତୃତା, ହୋରେସଙ୍କ କବିତା ଓ ଅନ୍ୟାନ୍ୟ ବିଷୟରୁ ଛବି ସବୁ ଆଙ୍କିଥିଲି । ପେରିକ୍ଲିସ ଦେଖାଯାଉଥିଲେ ତାଙ୍କରି (ଡ. ହେସି) ଭଳି ଟୋପି ଓ ଗାଉନ୍ ପିନ୍ଧା ମାଂସଳ ଗଣ୍ଡ ଓ ଉଦରଯୁକ୍ତ । ଥରେ ଥୁସିଡାଇଡ୍‌ଙ୍କ କବିତାରେ ଆମେ ଏକ ଲାଟିନ୍ ଶବ୍ଦ ଦେଖିଲୁ ଯାହାର ଅର୍ଥ ଆମକୁ ସେ ଡକ୍ଟର (ହେସି) କହିଲେ ଆହୁଲାମରା ଫନ୍ଦରେ ଆହୁଲାକୁ ବାନ୍ଧିବାପାଇଁ ଚମଡ଼ାର ଦଉଡ଼ି ଏବଂ ଆହୁରି କହିଲେ ଯେ, ଆଗ ଛୁଟି ସମୟରେ ଜୁରିଚ ହ୍ରଦର ନୌକାରେ ଠିକ୍ ସେହିପରି ଚମଡ଼ା ଦଉଡ଼ି ସେ ଦେଖିଛନ୍ତି । ତେଣୁ ମୁଁ ଟୋପି ଓ ଗାଉନ ପିନ୍ଧା ଡକ୍ଟରଙ୍କ ଛବି ଆଙ୍କିଥିଲି ଯେ କି 'ସୁନ୍ଦର ଜୁରିଚ ହ୍ରଦ କୂଳରେ' ନୌକାରେ ଆହୁଲା ମାରୁଛନ୍ତି ଏବଂ ଏକ ବିରାଟ ଚମଡ଼ା ଦଉଡ଼ିଟିଏ ଟାଣି ଧଇଁସଇଁ ହେଉଛନ୍ତି । ସେ ନିଜ ପ୍ରତିକୃତିକୁ ଚିହ୍ନିପାରିଲେ ଏବଂ ଖୁବ୍ ଆନନ୍ଦିତ ହେଲେ ।

ଗୋଟାଏ ବେଳେ ପୁଣି ପ୍ରାର୍ଥନା ହୁଏ । ଏଥର ଷଷ୍ଠଶ୍ରେଣୀର ପିଲାଟାଏ ଅଳ୍ପସମୟ ମଧ୍ୟରେ ପ୍ରାର୍ଥନା ପଢ଼ି ଦେଇଯାଏ । ମନିଟରଠାରୁ ନିମ୍ନତା ସୂଚାଇବା ପାଇଁ ତାକୁ ଅଭିଧାନ ଦିଆଯାଏ ନାହିଁ; ଖାଲି ପଟା ଉପରେ ଆଣ୍ଠେଇବାକୁ ପଡ଼େ । ତା'ପରେ ଆମେ ଖାଇବା ପାଇଁ ଯାଉ । ଉପର ଓଳିର ବିଦ୍ୟାଳୟ ଦୁଇଟାରୁ ଚାରିଟା । ଏହି ସମୟରେ ଡକ୍ଟର ଆସନ୍ତି ନାହିଁ, ଏହି ସମୟରେ ଉଚ୍ଚ ଶ୍ରେଣୀର ପିଲାଙ୍କୁ ଇଉକ୍ଲିଡ୍ ଓ ବୀଜଗଣିତ ଏବଂ ନିମ୍ନଶ୍ରେଣୀରେ ଗଣିତ ପଢ଼ାଯାଏ । ବିଦ୍ୟାଳୟ ଛୁଟି ହୁଏ ଶୀତଦିନେ ଚାରିଟା ଓ ଗ୍ରୀଷ୍ମଦିନେ ସାଢ଼େଚାରିଟାରେ । ଶନିବାରଟା ଥିଲା ଅଧା ଛୁଟି, ବଡ଼ଦିନ ଛୁଟି ତିନିସପ୍ତାହ, ଇଷ୍ଟର ଛୁଟି ଏକ ସପ୍ତାହ ଏବଂ ଜୁଲାଇ ଅଗଷ୍ଟରେ ଛ'ସପ୍ତାହ ।

ପ୍ରଥମ ଦୁଇବର୍ଷ ମୁଁ ବିଦ୍ୟାଳୟ ସାମନାରେ ଥିବା ଏକ ବୋର୍ଡ଼ିଂ ଘରେ ରହିଲି । ଏହି ଘରଟି କୁମାରୀ ଟାଉନସେଣ୍ଡ ଓରଫ୍ 'ଅଗ୍ନିମୁଖୀ' ଏବଂ ତାଙ୍କ ଝିଆରୀ କୁମାରୀ ଜର୍ଜିଙ୍କଦ୍ୱାରା ପରିଚାଳିତ । ବୁଢ଼ୀ ଅଗ୍ନିମୁଖୀ ଥିଲେ ଖରତୁଣ୍ଡୀ, ତୀକ୍ଷ୍ଣଲୋଚନା, ଲୋଳିତଚର୍ମା ଏକ ଡାହାଣୀ ପରି, ଯାହାଙ୍କୁ ଆମେ ସମସ୍ତେ ଭୟ ଓ ଘୃଣା କରୁଥିଲୁ; କୁମାରୀ ଜର୍ଜି ଥିଲେ ଆୟତ, ନମ୍ର ଓ ବଳଦ ପରି ନିରାହ ଦୃଷ୍ଟିସମ୍ପନ୍ନା, ଧୈର୍ଯ୍ୟଶୀଳା, ପରିଶ୍ରମୀ ଯାହାଙ୍କୁ ଆମେ ସମସ୍ତେ ଭକ୍ତି କରୁଥିଲୁ ଏବଂ ସେ ତାଙ୍କ ଖୁଡ଼ୀଙ୍କ କ୍ରୋଧରୁ ଆମକୁ ଘଣ୍ଟ ଘୋଡ଼େଇ ରଖୁଥିଲେ । ଆମେ ପିଲାମାନେ ଅବଶ୍ୟ ଖୁବ୍ ଦୁଷ୍ଟାମି ଓ ପାଟିତୁଣ୍ଡ କରୁଥିଲୁ । ସେ ଜାଗା ଏକଦା ନଗରର କୌଣସି ଧନୀ ବଣିକର ବାସଗୃହ ଥିଲା । ସେଇ ପୁରୁଣାକାଳିଆ ଘରେ ଆବଦ୍ଧ ରହିବା ଆମ ପକ୍ଷରେ

ଖୁବ୍ ବିରକ୍ତିକର ଥିଲା । ବିଚାରୀ ବୁଢ଼ୀ ଅଗ୍ନିମୁଖୀଙ୍କୁ ଆମେ ଭାରି ହଇରାଣ କରୁଥିଲୁ; କିନ୍ତୁ ସ୍ନେହାସ୍ପଦା କୁମାରୀ ଜର୍ଜି ଥିଲେ ଆମପାଇଁ ଦେବୀପରି ଏବଂ ଆମେ ତାଙ୍କ ପାଇଁ ସବୁ କିଛି କରିବାକୁ ପ୍ରସ୍ତୁତ ଥିଲୁ । ମୋର ମନେହୁଏ କିଛିଦିନ ପରେ କେହି ଜଣେ ଡାକ୍ତର ମୋ ବାପାଙ୍କୁ କହିଲେ ଯେ ମୋର ବ୍ୟାୟାମ କରିବା ଆବଶ୍ୟକ ଏବଂ ସେତିକିବେଳକୁ ଅଗ୍ନିମୁଖୀ ସହ ମୋର ୧୫୦ତମ ଖଣ୍ଡଯୁଦ୍ଧ ହୋଇଯାଇଥିବାରୁ ସେ ମୋତେ ତାଙ୍କ ଘରେ ଆଉ ରଖିବାପାଇଁ ମନା କରି ଦେଲେ । ମୁଁ ଘରେ ରହିଲି ଏବଂ ସକାଳୁ ବିଦ୍ୟାଳୟକୁ ଆସି ସନ୍ଧ୍ୟାକୁ ଫେରିଲି । ହାନୋଭର ସ୍କୋୟାରରେ ରହୁଥିବା ଫିଲିପ୍ ହଚିନସ୍‌ଙ୍କୁ କ୍ୱାଡ୍ରାଣ୍ଟ ମୋଡ଼ ପାଖରେ (ବର୍ତ୍ତମାନ ଯେଉଁଠି ପିକାଡ଼ିଲି ସର୍କସ ଅଛି) ଭେଟେ ଏବଂ ଆମେ ଏକାଠି ସଫୋକଲେନ୍‌ରେ ଯାଉ, ଯାଉନା ତ ଦଉଡୁ । ବର୍ତ୍ତମାନ (୧୮୮୬) ଖେଳକସରତକୁ ଶିକ୍ଷାରେ ଯେଉଁ ପ୍ରାଧାନ୍ୟ ଦିଆଯାଉଛି, ଆମ ସମୟରେ ତାହା ଆଦୌ ନ ଥିଲା । ବର୍ଷେ ଅବଶ୍ୟ ତା. ହେସି ଆମେ କ୍ରିକେଟ ଖେଳିବାକୁ ହାକ୍‌ନିଠାରେ ପଡ଼ିଆଟିଏ ଭଡ଼ା ନେଇଥିଲେ କିନ୍ତୁ ବାଟ ଥିଲା ବହୁତ ଦୂର ଏବଂ ଏତେ କମ୍ ପିଲା ସେଠାକୁ ଗଲେ ଯେ ଗୋଟିଏ ଋତୁପରେ ସେଇଟିକୁ ଛାଡ଼ି ଦିଆଗଲା । ତା'ପରେ ମୁଁ ବିଦ୍ୟାଳୟରେ ଥିବାପର୍ଯ୍ୟନ୍ତ ବାହାର ଖେଳପାଇଁ ଆଉ କିଛି ପ୍ରଚେଷ୍ଟା ହୋଇ ନ ଥିଲା ।

୧୮୪୬ ବା ୪୭ରେ ବାପା ସେଣ୍ଟ୍ ପାନକ୍ରାସ୍ ଛାଡ଼ିଲେ କାରଣ କାନନଡେଲ ସେଣ୍ଟବ୍ରାଇଡ଼ଠାରୁ ଦୁର୍ଭାଗ୍ୟବଶତଃ ସେଇ ଗିର୍ଜାଞ୍ଚଳକୁ ବଦଳିହେଲେ । ସେ ପ୍ରଚାରକ ସହକାରୀ ରୂପେ ନିଯୁକ୍ତି ପାଇଲେ— ପ୍ରକୃତରେ ତାହା ହେଉଛି ଉଚ୍ଚତର କ୍ୟୁରେଟ ପଦ । ସେଣ୍ଟ ଜେମସ୍ ପିକାଡ଼ିଲିର ଏହି ପଦଟି ରେଭରେଣ୍ଡ ଜେ.ଜାକସନ୍‌ଙ୍କ ଅଧୀନରେ । ସେ ଥିଲେ ନମ୍ର, ପବିତ୍ର କିନ୍ତୁ ମଧମ ଧରଣର ଲୋକ । ସେ ପରେ ଲିଙ୍କନ୍‌ର ବିଶପ ହେବା ଫଳରେ ଲଣ୍ଡନର ବିଶପ ହେଲେ । ଆମେ ଗୋଟିଏ ଘରର ଉପର ଅଂଶରେ ନଂ ୨୩ ଗ୍ରେଟ୍ ପଲ୍‌ଟେନିଷ୍ଟ୍ରିଟ୍ ଗୋଲଡେନ ସ୍କୋୟାର ନିକଟ ଏକ ନୀରବ ଅପରିଚ୍ଛନ୍ନ ଗଳିରେ ବାସକଲୁ ।

୧୮୪୭ ସେପ୍‌ଟେମ୍ବର ୨୪ରେ ମୋ ଭଉଣୀ ମେରୀ ପିଅରସନ୍ ବୀମସ୍ ଜନ୍ମହେଲା । ଏହାପରେ ମୋ ବାପାମାଙ୍କର ଆଉ କୌଣସି ସନ୍ତାନ ନ ଥିଲେ । ଏଇ ଘରେ ମୋର ସମସ୍ତ ତରୁଣ ବୟସ କଟିଗଲା । ସେ ଜୀବନ ଥିଲା ଶୁଷ୍କ, ନୀରସ ଓ ବିରକ୍ତିକର ଏବଂ ସମୟ କାଟିବା ପାଇଁ ସେଠାରେ କିଛି ଘଟଣା ପ୍ରାୟ ନ ଥିଲା । ମୁଁ ଲାଟିନ୍, ଗ୍ରୀକ୍ ଓ ଫରାସୀ ଶିଖିଲି (ବିଶେଷ ଭାବରେ ଫରାସୀ ଯାହା ମୋତେ ଖୁବ୍ ଭଲ ଲାଗୁଥିଲା) କିଛି ହିବ୍ରୁ, ଅଳ୍ପ କିଛି ଗଣିତ ଏବଂ ସାମାନ୍ୟ ଇତିହାସ ଓ ଭୂଗୋଳ ଶିଖିଲି, କିନ୍ତୁ ସେ ସମୟର ବିଦ୍ୟାଳୟମାନଙ୍କରେ 'କ୍ଲାସିକ'ଗୁଡ଼ିକୁ ସର୍ବଶ୍ରେଷ୍ଠ ଜ୍ଞାନ ବୋଲି ବିଚାର କରାଯାଉଥିଲା; ଅନ୍ୟସବୁ ତା ତୁଳନାରେ ଥିଲା ନିମ୍ନସ୍ତରର ଓ ଗୁରୁତ୍ୱହୀନ । ବାପା ଥିଲେ ରୁକ୍ଷ, ନିଜ ବହି ଓ ଗିର୍ଜାଞ୍ଚଳର କାମରେ ସର୍ବଦା ମଗ୍ନ, ଦାରିଦ୍ର୍ୟ ପୀଡ଼ିତ ଏବଂ ଜଣେ ଭୃତ୍ୟର ଦରମାରେ ଜଣେ ଭଦ୍ରଲୋକର ଥାଟ୍ ବଜାୟ ରଖିବା ପାଇଁ ସତତ ସଂଗ୍ରାମରତ, ମା ଥିଲେ ନୀରବ, ନିସ୍ପୃହ ଓ ସହାନୁଭୂତିହୀନ । ୧୮୪୮ରେ ମୋତେ ସ୍କାରଲେଟ୍ ଜ୍ୱର ହେଲା ଏବଂ ଆମ ଦୁର୍ଭାଗ୍ୟକୁ

ବାପା ଖାଦ୍ୟ ଓ ସ୍ୱାସ୍ଥ୍ୟରକ୍ଷା ସମ୍ପର୍କରେ କେତେକ ବହି ପଢ଼ି ଏପରି ଧାରଣା ମୁଣ୍ଡରେ ପୂରେଇଲେ ଯେ ଆମେ ସବୁ ଖୁବ୍ ବେଶି ଖାଉଛୁ; ତେଣୁ ସେହି ସମୟଠାରୁ ସେ ନିଜକୁ, ନିଜ ପରିବାରକୁ ଅଭୁକ୍ତ ରଖାଇଲେ; ଯାହା ଫଳରେ ଅନ୍ୟ କେତେକ ପଦାର୍ଥ ସହ ରୋଗର ବୀଜ ବପନ କଲେ, ଯେଉଁ ରୋଗ ଫଳରେ ତାଙ୍କର ମୃତ୍ୟୁ ହେଲା । କପେ ହାଲୁକା ଚାହା, ଦୁଇ ଆଙ୍ଗୁଳ ମୋଟ ଘୁଷୁରି ମାଂସର ଛୋଟ ଭଜାଖଣ୍ଡେ ଥିଲା ଆମର ପ୍ରାତରାଶ, ଯାହା ଖାଇ ଆମେ ବହୁଦୂର ଚାଲି ଚାଲି ବିଦ୍ୟାଳୟ ଯାଉ ଏବଂ ଗୋଟାଏ ଯାଏ କାମ କରୁ, ତା'ପରେ ପ୍ରଧାନଶିକ୍ଷକଙ୍କ ଘରେ ଖାଉ ଓ ପୁଣି ଚାରିଟା ଯାଏ କାମ କରୁ । ତା'ପରେ ମୁଁ ଚାଲି ଚାଲି ଘରକୁ ଫେରେ ଓ ପୁଣି ସାତଟା ଯାଏ କାମକରେ । ସାତଟାବେଳେ ପୁଣି କପେ ହାଲୁକା ଚା ସାଙ୍ଗକୁ ଦୁଇଖଣ୍ଡ ପାତଳ ଲହୁଣିଲଗା ପାଉଁରୁଟିରେ ମୋର ଦିନର ଖାଦ୍ୟ ଶେଷ ହୁଏ । ପ୍ରଧାନଶିକ୍ଷକ ଡା ହେସିଙ୍ଗ ଘରେ ଯଦି ସାଦାସିଧା ହେଲେ ମଧ ମଧ୍ୟାହ୍ନରେ ଗୋଟାଏ ପୂରା ଭୋଜନ ମିଳୁ ନ ଥାନ୍ତା, ତେବେ ଯଥେଷ୍ଟ ଖାଦ୍ୟାଭାବରୁ ମୁଁ ହୁଏତ ବେମାର ପଡ଼ି ଯାଇଥାଆନ୍ତି । ମିଠେଇ, ଜାମ୍, ସସ୍ ଏପରିକି ସହଜପଚ୍ୟ କଞ୍ଚାପରିବା କିମ୍ବା ଗ୍ରୀଷ୍ମକାଳର ଫଳ ମଧ ଆମ ପାଇଁ ସମ୍ପୂର୍ଣ୍ଣ ନିଷେଧ ଥିଲା । ଛୁଟି ଦିନରେ— ସବୁ ସନ୍ଥଙ୍କ ଦିବସଗୁଡ଼ିକ ଛୁଟିଦିନ୍-ମୋତେ ପ୍ରାତରାଶ ପରେ ସିଧା ବହୁଦୂର ଗ୍ରାମାଞ୍ଚଳକୁ ବୁଲିବାକୁ ପଠେଇ ଦିଆହେଉଥିଲା ଏବଂ ସନ୍ଧ୍ୟା ପୂର୍ବରୁ ନ ଫେରିବାକୁ କଡ଼ା ହୁକୁମ ଦିଆଯାଉଥିଲା । ମୋତେ ଗୋଟିଏ ସିଲିଂ ଦିଆଯାଇ ରୋଗ କିମ୍ବା ଜରୁରି ଆବଶ୍ୟକତା ବ୍ୟତୀତ ଅନ୍ୟଥା ତାହା ଖର୍ଚ୍ଚ ନ କରିବା ପାଇଁ କଡ଼ା ନିର୍ଦ୍ଦେଶ ମିଳୁଥିଲା । ସେ ମୁଦ୍ରାଟି ଯଦି ମୁଁ ସେହିପରି ନ ଆଣେ ତ ରାଗରେ ମୋତେ ନାନା ପଚରା ଉଚୁରା କରାଯାଉଥିଲା, ତାପରେ କେତେଦିନ ଧରି ଲାଞ୍ଛନା ମିଳୁଥିଲା । ଲଣ୍ଡନର ଇଟା ସୁରକିର ଦୁର୍ଭେଦ୍ୟତା ମଧରେ ମାସ ମାସ ଧରି ରହିବା ଫଳରେ ସବୁଜ ପ୍ରାନ୍ତର ଓ ବୃକ୍ଷରାଜିପ୍ରତି ମୋର ଆକର୍ଷଣ ଏତେ ପ୍ରବଳ ଥିଲା ଯେ ଏହି ସମୟରେ ମୁଁ ଗ୍ରାମାଞ୍ଚଳରେ ମାଇଲ ମାଇଲ ଧରି ବୁଲିଲି କିନ୍ତୁ ବେଳେ ବେଳେ କ୍ଷୁଧା ମୋତେ କାବୁ କରି ଦେଉଥିଲା । ସେହି ଏକମାତ୍ର ମୁଦ୍ରାଟିକୁ ଖର୍ଚ୍ଚ କରିବାକୁ ସାହସ ନ କରି ଖାଲି ପେଟରେ କ୍ଲାନ୍ତି ହେତୁ ମୁଁ ପ୍ରାୟ ମୂର୍ଚ୍ଛିତ ହୋଇପଡ଼େ ଏବଂ ଘରେ ପହଞ୍ଚିଲାବେଳକୁ ଗୋଟିଏ ପାଦକୁ ଅନ୍ୟ ପାଦ ପଛରେ ଘୋଷାରିବାର ଶକ୍ତି ମଧ ନ ଥାଏ । ଚା'ପାନ ସମୟ ପରେ ପହଞ୍ଚିଲେ ଖାଲିପେଟରେ ଶୋଇବାକୁ ପଡ଼େ କାରଣ ଖାଇବା ସମୟ ଛଡ଼ା ଅନ୍ୟ ସମୟରେ ଖାଇବା ମନା ଥିଲା ।

ମତେ ଆଶ୍ଚର୍ଯ୍ୟ ଲାଗେ ମା ମଧ ମୋ ପକେଟରେ ଅନ୍ତତଃ କେଇଟା ବିସ୍କୁଟ କି ସାଣ୍ଡଉଇଚ୍ ଦେଉ ନ ଥିଲେ । ଏ ସବୁ ଛୋଟ ଛୋଟ ବିଷୟରେ ଦୃଷ୍ଟି ଦେବା ତାଙ୍କର ଅଭ୍ୟାସ ନ ଥିଲା । ଥରେ ମୁଁ ବାରନେଟ ପର୍ଯ୍ୟନ୍ତ ଚାଲି ଚାଲି ଏବଂ ଫେରି ରିଜେଣ୍ଟ ପାର୍କରେ ପହଞ୍ଚିଲା ବେଳକୁ ଏତେ ରୁଗ୍ଣ ଓ ମୂର୍ଚ୍ଛିତ ହେବାପରି ଅନୁଭବ କଲି ଯେ, ପାର୍କ ସାମନା ଘରେ ରହୁଥିବା ରୋଜ ମାଉସୀଙ୍କ ଘରକୁ ସାହସ କରି ଚାଲିଗଲି । ସେ ଓ ତାଙ୍କ ସ୍ୱାମୀ ଖାଉଥିଲେ ଏବଂ ମୋ କଥା ଶୁଣି ଓ ମୋତେ ଏତେ ରୁଗ୍ଣ ଥିବା ଦେଖି ସେମାନେ ପେଟେ ଖାଇବାକୁ ଓ ପ୍ରଚୁର ଉଷ୍ମ ମଦ୍ୟ ଓ ପାଣି ଦେଲେ ଓ ସୋଫା ଉପରେ ଘଣ୍ଟାଏ ଶୁଆଇ ପକାଇଲେ । ତା'ପରେ ମାଉସୀ ଗାଡ଼ିରେ ବସାଇ ମତେ ଘରକୁ ଆଣିଲେ, ବାପା ଓ ମାଙ୍କୁ ସେମାନଙ୍କର ଅମାନୁଷିକତା ପାଇଁ

ଗାଳିଦେଲେ । ତାର ଏକମାତ୍ର ଫଳ ହେଲା ଯେ, ଅନେକ ଦିନ ପର୍ଯ୍ୟନ୍ତ ମୋତେ ଲାଞ୍ଛନା ମିଳିଲା । ଏହି ସମୟରେ ପିଅରସନ୍ ବାସ୍‌ଲେରୁ ଆସି କିଙ୍ଗସ୍ କଲେଜକୁ ଗଲା ଏବଂ ଉଇଲି ତା ସ୍ଥାନରେ ବାସ୍‌ଲେ ଗଲା ।

୧୮୫୧ରେ ହାଇଡ୍ ପାର୍କଠାରେ ଗ୍ରେଟ୍ ଏକ୍‌ଜିବିସନ୍ ପ୍ୟାଲେସ୍ ତିଆରି ହେଲା । ସାର ଜୋସେଫ ପାକ୍‌ସଟନ୍‌ଙ୍କ ଦ୍ୱାରା କଳ୍ପିତ ଏହି ଅଭିନବ ସୁନ୍ଦର କାଚର ଘରଟି ତିଆରି ହେଉଥିବାର ପ୍ରତ୍ୟେକ ସ୍ତର ଆମେ ଦେଖୁଥିଲୁ । ପ୍ରଦର୍ଶନୀ ପରେ ଏହା ସିଡ଼େନହାମଠାରେ ବୃହଦାକାରରେ ନିର୍ମିତ ହୋଇ କ୍ରିଷ୍ଟାଲ ପ୍ୟାଲେସ୍ ନାମ ଲାଭକଲା । ଏହା ସମ୍ପୂର୍ଣ୍ଣ ହୋଇ ଉଦ୍‌ଘାଟିତ ହେବା ପରେ ଆମକୁ ଅନେକ ଥର ତାହା ଦେଖିବାକୁ ନିଆଯାଇଛି ଏବଂ ସେଠାରେ ସଂଗୃହୀତ ନୂତନ ଓ ସୁନ୍ଦର ପଦାର୍ଥଗୁଡ଼ିକ ମୋର ଏ ପର୍ଯ୍ୟନ୍ତ ମନେଅଛି । ଦେଶ ବିଦେଶରୁ ଆସିଥିବା ବହୁଲୋକ ଲଣ୍ଡନରେ ଭର୍ତ୍ତି ହୋଇଥିଲେ । ବିଦେଶୀମାନଙ୍କ ସୁବିଧା ସକାଶେ ବାପା ସେଣ୍ଟ୍ ଜେମସ୍ ଭଜନାଳୟରେ ଫରାସୀ ଭାଷାରେ ଏକ ପ୍ରାର୍ଥନାର ଆୟୋଜନ କରିଥିଲେ । ହାଭରଫିଲଡ଼୍ ଥିଲେ ଏଠାର ଯାଜକ । ବାପା ଓ ମୋତେ ଛାଡ଼ିଦେଲେ ଆଉ କେହି ଇଂରାଜୀ ବା ବିଦେଶୀ ଏହି ପ୍ରାର୍ଥନା ଅନୁଷ୍ଠାନଗୁଡ଼ିକୁ ଯାଇ ନ ଥିଲେ ।

ବୃଦ୍ଧ ହାଭରଫିଲଡ଼୍ ନିଜ ଫରାସୀ ଜ୍ଞାନ ପାଇଁ ଗର୍ବ କରୁଥିଲେ ଏବଂ ତାଙ୍କ ପାଖରେ ଫରାସୀ କହିବା ପାଇଁ ଏବଂ ଫରାସୀ ବହି ପଢ଼ିବା ପାଇଁ ମୋତେ ସର୍ବଦା କହୁଥିଲେ । କହିବା ବାହୁଲ୍ୟ ସେ ମୋତେ ଅନେକ ଦରକାରୀ କଥା ଶିକ୍ଷା ଦେଇଥିଲେ । ଶିକ୍ଷାଦୀକ୍ଷା ପାଇଁ ପିଅରସନ୍‌ର ବିଶେଷ ଆଗ୍ରହ ନ ଥିଲା ଏବଂ ବହୁଦିନ ଗ୍ରାମରେ ରହି ତାର ରୁଚି ମଧ ଗାଉଁଲି ହୋଇଯାଇଥିଲା । ଲଣ୍ଡନକୁ ସେ ଘୃଣା କରୁଥିଲା ଏବଂ ପାଠ ପଢୁ ନ ଥିବାରୁ ବାପା ତାକୁ ଭଲ ପାଉ ନ ଥିଲେ । କିଙ୍ଗସ୍ କଲେଜରେ ଏପରି ଏକ ଖରାପ ବ୍ୟବସ୍ଥା ଥିଲା ଯେ (ଉପଯୁକ୍ତ ପ୍ରହାର ଦ୍ୱାରା ସଂଶୋଧନ ନ କରି) ସେମାନେ ବିଦ୍ୟାଳୟ ଛୁଟି ପରେ ପିଲାଙ୍କୁ ଘଣ୍ଟାଏ ଅଟକ ରଖୁଥିଲେ ଏବଂ ସେମାନେ ଯେପରି ତାଙ୍କ ବାପାମାନଙ୍କଠାରୁ ଏ ଦଣ୍ଡକୁ ଲୁଚାଇ ନ ପାରିବେ ସେଥିପାଇଁ ତାଙ୍କୁ ଏକ 'ଅଟକ କାର୍ଡ଼' ଦିଆଯାଉଥିଲା । ଯାହାକୁ ସେମାନେ ବାପାଙ୍କ ଦସ୍ତଖତ କରାଇ ପରଦିନ ସକାଳେ ବିଦ୍ୟାଳୟକୁ ଫେରାଇ ଆଣୁଥିଲେ । ପିଅରସନ୍ 'ଅଟକ କାର୍ଡ଼' ଧରି ଘରକୁ ଫେରିଲା, ଯାହାକି ଅଧିକାଂଶ ଦିନ ଘଟୁଥିଲା, ବାପାଙ୍କଠାରୁ ମାଡ଼ ଖାଉଥିଲା । ବାପାଙ୍କ ପରି ଜଣେ ଦକ୍ଷ ମୁଷ୍ଟି ଯୋଦ୍ଧାଙ୍କଠାରୁ ମାଡ଼ ଖାଇବା ସହଜ ବ୍ୟାପାର ନ ଥିଲା । ଥରେ ବାପା ସନ୍ଧ୍ୟାର ପାଠଟା ପଢ଼ାଇବାରେ ପିଅରସନକୁ ସାହାଯ୍ୟ କରିବେ ବୋଲି ଭାବିଲେ; କିନ୍ତୁ ତାଙ୍କର ଏହି ସଦୁଦ୍ଦେଶ୍ୟମୂଳକ ଯୋଜନା ସମ୍ପୂର୍ଣ୍ଣ ନିଷ୍ଫଳ ହେଲା । ତାର କାରଣ ପିଅରସନ ପ୍ରକୃତରେ ଯେତେ ଗଧ ନୁହେଁ ତାଠାରୁ ବେଶି ଗଧ ପରି ଭାବ ପ୍ରକଟ କରି ବାପାଙ୍କ ତୁରୁତୁରିଆ ଓ ଅଧୈର୍ଯ୍ୟ ମନକୁ ଆହୁରି ଉତ୍ତେଜିତ କଲା । କାଇଜରଙ୍କ ଦୁଇଟା ଧାଡ଼ିକୁ ସେ ଯେତେବେଳେ ଘଣ୍ଟାଏ ପର୍ଯ୍ୟନ୍ତ ଜାଣି ଜାଣି ଭୁଲ କଲା ବାପା ଧୈର୍ଯ୍ୟହୀନ ହୋଇ ତାକୁ ଧକ୍‌କାଟାଏ ଦେଇ ଶୋଇବାକୁ ପଠାଇଦେଲେ । 'ଯା ଶୋଇ ପଡ଼ିବୁ' ଥିଲା ବାପାଙ୍କ ଆମ ପ୍ରତି ସବୁ ସମୟର ଦଣ୍ଡବିଧାନ । ଦୁଇଟା ସୁସ୍ଥ ସବଳ ବାଳକ ଗୋଟାଏ ଛୋଟ ଅନ୍ଧାରୁଆ ଘରେ ଆବଦ୍ଧ ହୋଇ

ରହିଲେ ନିଶ୍ଚୟ ସମୟେ ସମୟେ ପାଟିତୁଣ୍ଡ କରିବେ ଏବଂ ଆମେ ଅନେକ ସମୟରେ ଆମ ତଳ କୋଠରିରେ ବାପାଙ୍କର ଧର୍ମବାଣୀ ଲେଖାପଢ଼ାରେ ବାଧା ସୃଷ୍ଟି କରୁଥିଲୁ ଏବଂ ଏଭଳି ଭାବରେ ଶୋଇବା ପାଇଁ ପଠା ହେଉଥିଲୁ । ସବା ସାନ ପୁଅ ହ୍ୟାରି ବାପାଙ୍କର ଅତି ପ୍ରିୟ ଥିଲା । ସୁନ୍ଦର କୌତୁକିଆ ଛୋଟ ପିଲାଟି ଭିତରେ ପୂରିଥିଲା ଅଦ୍ଭୁତ ସୁନ୍ଦର କଳ୍ପନାବଳି । ସେ ନିଜର ଏକ କାଳ୍ପନିକ ସଂସାର ମଧ୍ୟରେ ବାସ କରୁଥିଲା, ଯେଉଁଥିରେ ଥିଲେ ଅପୂର୍ବ ବସ୍ତୁ ଓ ମାନବ, ଯେଉଁମାନଙ୍କ କଥା ଓ କାର୍ଯ୍ୟସବୁ ସେ ଆମ ଆଗରେ ବହୁ ଗୁରୁତ୍ୱ ଦେଇ ବାରମ୍ବାର କହୁଥିଲା । ଏମାନଙ୍କ ଭିତରୁ ପ୍ରଧାନ ହେଉଛନ୍ତି ଜୋଡ଼ ସି ମାଜମାଗଲାସଟସ୍ । ତାଙ୍କର ଥିଲା ଛବି ନାମକ ଏକ ପାନୀୟ ଯାହାକୁ ଝିଣ୍ଟିକାମାନେ ଲାଗି ସାରିଦେଉଥିଲେ... । ଏହା ପୂର୍ବରୁ ହ୍ୟାରିର ମୁଣ୍ଡରେ ପାଣି ଜମିବା ରୋଗ ହୋଇଥିଲା ଏବଂ କେତେଦିନ ପର୍ଯ୍ୟନ୍ତ ଦୁର୍ବଳ ଓ ରୋଗଣା ହୋଇ ରହିଲା । କଳ୍ପନା ରାଜ୍ୟର ଏକ ସୁନ୍ଦର ଛୋଟ ରୋଗଣା ପିଲାଟି ସକାଳେ ଖାଇବା ପାଇଁ ଆସି ଆମେ ଆମ ପାଇଁ ଥିବା ଖୁବ୍ କମ୍ ଖାଦ୍ୟକୁ ନୀରବରେ ବସି ଖାଉଥିବାବେଳେ ସେ ନୀରବତା ଭଙ୍ଗ କରି ହଠାତ୍ ପାଟିକରି ଉଠିବ ''କାଲି ରାତିରେ ଝିଣ୍ଟିକାମାନେ ଲାଗି ଛବି ସାରିଦେଲେ'' । ଏହା ଶୁଣି ବାପା ଉଚ୍ଚ ସ୍ୱରରେ ହସି ଉଠିବାବେଳେ ହ୍ୟାରି ତାଙ୍କ ଆଡ଼କୁ ବିରସ ସତୃଷ୍ଣ ଆଖିରେ ଚାହିଁ ରହିଥିବ ।

ପ୍ରଦର୍ଶନୀକୁ ଆସିଥିବା ଅସଂଖ୍ୟ ଦର୍ଶକମାନଙ୍କ ମଧ୍ୟରେ ଆଶାତୀତ ଭାବରେ ଆସି ପହଞ୍ଚିଲେ ଜନକକା । ବିରାଟ ରୁକ୍ଷ ଚେହେରା, ମୁହଁ ଲାଲ ଦେଖାଯାଉଥିଲା । ବୋଧହୁଏ ସେ ୟର୍କସାୟାର ଚାଲିଯାଇଥିଲେ ଯେଉଁଠି ଶ୍ରୀମତୀ କାରନାଭରନ୍‌ଙ୍କ ପୂର୍ବତନ ବାନ୍ଧବୀ ବୃଦ୍ଧା କୁମାରୀ ସ୍ମିଥ ତାଙ୍କର ସମ୍ପର୍କୀୟା ସିମୋଇ ପରିବାର ସହ ବାସ କରୁଥିଲେ । ସେ କକାଙ୍କୁ ସାହାଯ୍ୟ ଦେବାକୁ ଇଚ୍ଛା କଲେନି ବା ସକ୍ଷମ ହେଲେନି । ତେଣୁ ଅନ୍ୟ ଏକ ଛୋଟ ସହରକୁ ସେ ଚାଲିଗଲେ । ସେଠି ଥିଲା ଚାପେଲଥ୍ରୋପ୍ ନାମକ ଛୋଟ ଅପରିଚ୍ଛନ୍ନ ଗାଁଟିଏ । ଏଇଠାରେ ସେ ନିଜକୁ ଜଣେ ପଶୁପାଳକ ରୂପେ ପ୍ରତିଷ୍ଠିତ କରି ନିଜଠାରୁ ବହୁ ନୀଚ ଏବଂ ମୋର ମନେହୁଏ ସବୁ ଦୃଷ୍ଟିରୁ ଅସୁନ୍ଦରୀ ଜଣେ ସ୍ତ୍ରୀଲୋକ ଏଲେନ୍ ବ୍ୟାରନ୍‌କୁ ବିବାହ କଲେ । ସେ ହେଉଛନ୍ତି ବ୍ରେଟନର ସାର ଜର୍ଜ ବ୍ରୁମଣ୍ଡଙ୍କ ଜଣେ ହଳିଆର କନ୍ୟା । କକା ମୋତେ ଖୁବ୍ ଭଲ ପାଇଲେ । ସେ ମୋତେ ନେଇ ବହୁ ଜାଗା ବୁଲାବୁଲି କଲେ ଏବଂ ବାଟରେ ପଡୁଥିବା ପ୍ରାୟ ସବୁ ପାନାଗାରରେ ଆମେ ଅଟକି ବିଅର ପିଇଲୁ । ବାପାଙ୍କର ଅତ୍ୟଧିକ ଭୋଜନ ସଂଯମରେ ଆମେ ଅଭ୍ୟସ୍ତ ଥିବାରୁ ମତେ ଏହା ଖୁବ୍ ଆଶ୍ଚର୍ଯ୍ୟ ଲାଗିଲା । ବାପାଙ୍କ ଉପଦେଶ କ୍ରମେ ସେ ବାସ୍‌ଲେ ଗଲେ ଏବଂ ଜେଜେବାପାଙ୍କ ସହ ବୁଝାମଣା ହୋଇ ବାସ୍‌ଲେଠାରୁ ମାଇଲିଏ ଦୂରରେ ବିନା ଭଡ଼ାରେ ତାଙ୍କୁ ଏକ ଛୋଟ ନିବାସ ଓ ତା ଚାରିପଟରେ ଥିବା ଜମି ଦିଆଗଲା । ସ୍ତ୍ରୀ ଓ ଦୁଇ ପୁଅଙ୍କୁ ଆଣିବାକୁ ସେ ଲଣ୍ଡନ ଦେଇ ୟର୍କସାୟାର ଫେରିଲାବେଳେ ଲମ୍ବା ଛୁଟି ଥିବାରୁ ମୋତେ ସାଙ୍ଗରେ ନେଲେ । ମୁଁ ସେ ଉତ୍ତରାଞ୍ଚଳରେ ପନ୍ଦରଦିନ ଖଣ୍ଡେ ରହିଲି; ତାହା ମୋ ଜୀବନରେ ସେଇ ଥରକ ମାତ୍ର । କକା ୟର୍କସାୟାରର ଯେଉଁ ଚାଷୀମାନଙ୍କ ମେଳରେ ରହୁଥିଲେ ସେମାନେ ମୋତେ ଭଲ ଲାଗିଲେ ନାହିଁ । ମୁଁ ସେମାନଙ୍କ ଭାଷା ଭଲ ବୁଝିପାରିଲି ନାହିଁ ଏବଂ

ମୋର ମନେହେଲା ସେମାନେ ଖୁବ୍ ରୁକ୍ଷ, ଅମାର୍ଜିତ ଓ ହିଂସ୍ର । କିନ୍ତୁ ଲିଭରପୁଲ ଓ ମାଞ୍ଚେଷ୍ଟର ବୁଲିବାକୁ ଭଲଲାଗିଲା । ଗୋଟିଏ କୋଇଲା ଖଣି ଭିତରକୁ ଗଲି । ସେ ବର୍ଷର ବଡ଼ଦିନ ଛୁଟି କକାଙ୍କ ସହ ଆର୍ଣ୍ଡଉଡ଼ର ଏକ ନୂଆ ଘରେ କଟାଇଲି । ପିଅରସନ୍ ଜେଜେବାପାଙ୍କ ପାଖରେ ବାସ୍‌ଲେରେ ଥିଲା ଏବଂ ମୁଁ ପ୍ରାୟ ପ୍ରତିଦିନ ସେଠାକୁ ଯାଉଥିଲି । ବୁଢ଼ାଙ୍କର ମୋ ପ୍ରତି ସ୍ନେହ ଜନ୍ମ ଆସିଯାଇଥିଲା ଏବଂ ତାଙ୍କ ପାଦପାଖରେ ବସି କଥାକହି ତାଙ୍କୁ ଆମୋଦିତ କରୁଥିଲି । ମୋତେ ତାଙ୍କ ବ୍ୟବହାର ବାପାଙ୍କଠାରୁ ଭଲ ଲାଗିଲା । ତାଙ୍କ ସ୍ୱଭାବ କମ୍ ରୁକ୍ଷ, ବୈଚିତ୍ର୍ୟଯୁକ୍ତ ଏବଂ ରୁଚିକର । ସେତେବେଳେ ବାପା ଦାରିଦ୍ର୍ୟ ସହ ଯେଉଁ ସଂଗ୍ରାମ କରୁଥିଲେ, ତାହା ତାଙ୍କର ନ ଥିଲା । ବେଳେ ବେଳେ ସେ ଭୀଷଣ ରାଗିଯାଉଥିଲେ ଏବଂ ଭୟଙ୍କର ପ୍ରତିଜ୍ଞା ସବୁ କରି ଶପଥ ନେଉଥିଲେ, ରାଗରେ ଲାଲ ପଡ଼ିଯାଉଥିଲେ ଯାହା ଫଳରେ ସମସ୍ତେ ଥରି ଯାଉଥିଲେ । ସେ କାହାସହ ନ ମିଶି ପ୍ରାୟ ସମ୍ପୂର୍ଣ୍ଣ ଏକାକୀ ରହୁଥିଲେ । କେବଳ ମାଜିଷ୍ଟ୍ରେଟ୍ ବିଚାରରେ ଅଧକ୍ଷତା ପାଇଁ ଯାହା ଲିମିଙ୍ଗଟନ୍ ଯାଉଥିଲେ । କକା ବେଳେ ବେଳେ ତାଙ୍କ ସହ ଦେଖା କରିବାକୁ ଆସନ୍ତି— ମାମୁଲି ଦେଖା । ସେମାନେ ଅତି ବେଶି ନମ୍ରତାର ସହ ଚାପି ଚାପି କଥାବାର୍ତ୍ତା ଆରମ୍ଭ କରନ୍ତି ଏବଂ ବିଦାୟ ନେଲାବେଳେ ମାଝିମାନଙ୍କ ପରି ପରସ୍ପର ପ୍ରତି ଅଭିସମ୍ପାତ ବର୍ଷଣ କରୁଥାଆନ୍ତି । ତା'ପରେ କକା ମଦ୍ୟ ପରିବେଷଣକାରୀ ବୁଢ଼ା ଆଲେ ସାଙ୍ଗରେ ଗିଲାସେ ବିଅର ପିଇବାକୁ ଯାଆନ୍ତି; କିନ୍ତୁ ସେଠାରେ ସେ ଅଳ୍ପ ସମୟ ନ ରହୁଣୁ ଜେଜେବାପା ଘଣ୍ଟାବଜାଇ ସେ ମଦୁଆ ବଦମାସକୁ (ଖୁସିରେ ଦିଆଯାଇଥିବା ନାମ) ଘରୁ ବାହାର କରିଦେବାପାଇଁ ଏଲିକୁ ଆଦେଶ ଦିଅନ୍ତି । ସେ ଘରେ ଆଉ ଥରେ ଗୋଡ଼ ଦେଲେ ଭୟଙ୍କର ଅଭିଶାପ ସବୁ ପଡ଼ିବା ବିଷୟରେ ଶପଥ କରି କରି କକା ଚାଲିଯାଆନ୍ତି; କିନ୍ତୁ ପର ସପ୍ତାହରେ ପୁଣି ଆସନ୍ତି ଏବଂ କିଛି ଘଟିନଥିବା ପରି ଦୁହିଁଙ୍କ ସାକ୍ଷାତ ହୁଏ ।

କକାଙ୍କ ରୁଚି ଅତି ନିମ୍ନସ୍ତରର ଥିଲା । ତାଙ୍କର ଅଧିକାଂଶ ସମୟ କଟୁଥିଲା ଗାଁ ଗହଳରେ ବୁଲିବୁଲି ଏବଂ ବିଭିନ୍ନ ସର୍ବସାଧାରଣ ଭୋଜନାଳୟର ନିକଟବର୍ତ୍ତୀ ଅଞ୍ଚଳର ଅତି ନୀଚ ଦୁଷ୍କର୍ମା ବଦମାସଙ୍କ ସାଙ୍ଗରେ ମଦ ଓ ଧୂଆଁ ପିଇବାରେ । ତାଙ୍କର ଛ'ଏକର ଭୂମିରେ ସେ କୃଷିକର୍ମ କରିବା କଥା; କିନ୍ତୁ ସେଥିରେ ତାଙ୍କର ବିଶେଷ ଧ୍ୟାନ ନ ଥିଲା । ଦିନତମାମ ସେ ଗ୍ରାମାଞ୍ଚଳରେ ବୁଲୁଥିଲେ । ଥରେ ସେ ନ୍ୟୁ ଫରେଷ୍ଟର ସୁନ୍ଦରତମ ଅଂଶ ମଧଦେଇ ମତେ ସାଲିସ୍‌ବରୀ ନେଇଗଲେ । ସେଠାରେ ସେ ଦୁଇଦିନ ରହିଲେ । କକା ସାଲିସ୍‌ବରୀ ହାଟରୁ ଗୋରୁ କିଣୁଥିବାବେଳେ ମୁଁ ସେହି ପୁରାତନ ନଗରୀ ଓ ଗିର୍ଜାଘର ଆବିଷ୍କାର କରି ସନ୍ତୋଷ ଲାଭ କଲି । ଏହି ସମୟରେ ସେ ମୋତେ ସାଲିସ୍‌ବରୀ ନିକଟସ୍ଥ ଏକ ଗ୍ରାମକୁ ନେଇଗଲେ ଯେଉଁଠି ତାଙ୍କର ପ୍ରଥମ ପ୍ରେମିକା କୁମାରୀ ବର୍ଜେସ୍ ରହୁଥିଲେ ଏବଂ ସେଇ ଦୁଃଖକର ଘଟଣା କହିଲେ ଯାହାକି ମୁଁ ଆଗରୁ ବର୍ଣ୍ଣନା କରିସାରିଛି । ଯେଉଁ ଘରେ କୁମାରୀ ବର୍ଜେସ୍ ରହୁଥିଲେ, ତାରି ଆଗ ରାସ୍ତାରେ ଏକ ଲୁହା ଧାରଣା ଉପରେ ଆମେ ବସିରହିଥିବାବେଳେ ସେ ଏ ଘଟଣା କହିଲେ । ସେଇଟା ଥିଲା ସୁନ୍ଦର, ବଡ଼ ଘର, କିନ୍ତୁ ପରିତ୍ୟକ୍ତ ଓ ବନ୍ଦ ହୋଇପଡ଼ିଥିଲା । ବୁଢ଼ା ମରିଯାଇଥିଲେ ଏବଂ ସେ ପରିବାର କୁଆଡ଼େ ଗଲେ କେହି ଜାଣି ନ ଥିଲେ ।

୧୮୫୨ରେ ମୋ ଭାଇ ଉଇଲିକୁ ନୌବାହିନୀର ପ୍ରସ୍ତୁତି ପାଇଁ ଡ. ବର୍ନିଙ୍କ ବିଦ୍ୟାଳୟକୁ ପଠାଗଲା ଏବଂ ହ୍ୟାରିକୁ ଷ୍ଟେଥାମ୍‌ର ଏଡ୍‌ୱାଡ୍‌କୁ ପଠାଗଲା । ଏଡ୍‌ୱାଡ୍ ଅବସର ନେଇଥିଲେ ଏବଂ ତାଙ୍କ ସ୍ଥାନରେ ଆସିଥିଲେ ହଡ୍‌ସନ୍, ଯାହାଙ୍କ ସମୟରେ ବିଦ୍ୟାଳୟର ବହୁତ ପତନ ହୋଇଥିଲା । ମୁଁ ପୁଣି ଆର୍ଣ୍ଣଉଡ୍‌ରେ ଜଜାଙ୍କ ପାଖରେ ରହିବାକୁ ଗଲି । ସେଠାରେ କେତେ ସପ୍ତାହ ରହିବାପରେ ଛୁଟିର ବାକି ଅଂଶ ବାସ୍‌ଲେରେ କାଟିବାପାଇଁ ଜେଜେବାପା ମୋତେ ଡକାଇଲେ । ବୁଢ଼ା ମୋ ସହ ଭଲ କଥାବାର୍ତ୍ତା ହେଉଥିଲେ ଏବଂ ଥରେ ଦୁଇଥର ଭଲ ବକସିସ୍ ମଧ ଦେଇଥିଲେ । ସେ ଦୁର୍ବଳ ହୋଇ ପଡ଼ୁଥିଲେ ଏବଂ ପ୍ରତିଦିନ ସାତଟାବେଳେ ତାଙ୍କୁ ଶୋଇବାକୁ ନିଆ ହେଉଥିଲା । ସନ୍ଧ୍ୟାର ବାକି ଅଂଶ ପିଅରସନ୍ ଓ ମୁଁ ରୋଷେଇ ଘରେ କଟାଉଥିଲୁ । ତଳେ ପଥର ବିଛା ହୋଇଥିବା ଏଇ ଘର ମଧରେ ବିରାଟ ଅଗ୍ନିସ୍ଥାନ ଓ ଲମ୍ବ କାଷ୍ଠାସନମାନ ଥିଲା । ସବୁଠାରୁ ଉଷ୍ମ ଅଂଶରେ ବସିଥାଏ ଗୃହରକ୍ଷିଣୀ ଶ୍ରୀମତୀ ସ୍ଲିମାନ୍ । ସେ ଦୀର୍ଘାଙ୍ଗୀ, ସୁନ୍ଦରୀ ଓ ଜଣେ ସାହସିନୀ ସ୍ତ୍ରୀଲୋକ । କଳା ପୋଷାକରେ ଧଳା କଲାର ଓ କଫ୍ ବ୍ୟବହାର କରେ । ତା'ର ଅଭ୍ୟାସ ଯେ, ଖାଇସାରିବା ପରେ ସେ ଘଣ୍ଟାଏ ଖଣ୍ଡେ ତା'ର ମାଲିକ ନିକଟରେ ବସିରହି ଗ୍ଲାସେ ପୋର୍ଟମଦ ପିଇବ ଏବଂ ପଡ଼ୋଶୀ ଲୋକମାନଙ୍କ ସମ୍ପର୍କରେ ଗୁଡ଼ାଏ ବଦନାମୀ ଗପ କରି ଆମୋଦିତ ହେବ । ତା'ର ଏକ ଜାରଜ ପୁଅ ଥିଲା, ଯାହାକୁ ସେ ନିଜ ପୁତୁରା ବୋଲି ଚଳେଇ ନେଇଥିଲା ଏବଂ ମୋର ମନେହୁଏ ଜେଜେବାପାଙ୍କ ପ୍ରଭାବ ଫଳରେ ତା'ପାଇଁ ଗୋଟିଏ ଷ୍ଟିମର୍‌ରେ ଇଂଜିନିୟର୍ ଭାବେ ଚାକିରିଟିଏ ଯୋଗାଡ଼ କରିପାରିଥିଲା । ସେ ପୁଅଟି ଥିଲା ଚତୁର, ଭଦ୍ର ପିଲାଟିଏ ଏବଂ ପିଅରସନ୍‌ର ଅତି ପ୍ରିୟ । ବେଳେ ବେଳେ ସେ ବାସ୍‌ଲେକୁ ବୁଲିଆସେ । ସ୍ଲିମାନ ଥିଲା ମଦଖୋରଣୀ । ସେ ଓ ବୁଢ଼ା ମଦପରିବେଷଣକାରୀ ଆଲେ ଏକାଠି ବସି ମଦ ପିଉଥିଲେ ଏବଂ ସେମାନେ ଭିତରେ ଭିତରେ ବାହା ହୋଇଛନ୍ତି ବୋଲି ଚୁପ୍‌ଚାପ୍ ଶୁଣାଯାଉଥିଲା । ବଡ଼ି ସକାଳୁ ଆଲେକୁ ଶ୍ରୀମତୀ ସ୍ଲିମାନର ଶୋଇବା ଘରୁ ବାହାରିବାର ଦେଖାଯାଉଥିଲା । ତେଣୁ ରାତିରେ ସେ ସେଠି ରହିଥିଲା ବୋଲି ଭାବିବା ଅଯୌକ୍ତିକ ନ ଥିଲା । ପିଅରସନ ଓ ମତେ ଏକଥା କୁହାଯାଉ ନ ଥିଲେ ମଧ ଆମର ତରୁଣସୁଲଭ ଅନୁସନ୍ଧିତ୍ସା ଏ ସବୁ ଘଟଣାରେ ଖୁବ୍ ଉତ୍ତେଜିତ ହେଉଥିଲା । ସନ୍ଧ୍ୟାବେଳେ ସେଇ ବଡ଼ ରୋଷେଇଘରଟା କୋଳାହଳମୟ ହୋଇଯାଉଥିଲା ଏବଂ ଜେଜେବାପା ସେ ଘରୁ ଦୂରରେ ଶୋଉଥିବାରୁ ଏକଥା ବୋଧହୁଏ ଜାଣିପାରୁ ନ ଥିଲେ । ଆଲେ ବେହେଲା ବଜାଇ ଗୀତ ଗାଉଥିବାବେଳେ ସ୍ଲିମାନ ବ୍ରାଣ୍ଡି ଓ ପାଣି ମିଶାଇ ପିଇ ମାତାଲ ଅବସ୍ଥାରେ ତାଳଦେଇ ମୁଣ୍ଡ ହଲାଉଥିଲା । ଗୀତଗୁଡ଼ିକ ଆଦୌ ଭଲ ବା ରୁଚିକର ନ ଥିଲା । ସୁପକାରିଣୀ ଶ୍ରୀମତୀ ଥୋମାସ୍ ଅତି ନିରୀହ, ଦାରିଦ୍ର୍ୟପ୍ରପୀଡ଼ିତ, ସଙ୍କୁଚିତ ଜୀବଟିଏ ହେଲେହେଁ ଥିଲେ ଜଣେ ସିଦ୍ଧହସ୍ତା କାରିଗର । ନ'ଟା ବେଳେ ସେ ଟେବୁଲ ଉପରେ ରାତ୍ରିର ଉଷ୍ମ ଭୂରିଭୋଜନ ପରଷି ଦେଉଥିଲେ । ଅନେକ ସମୟରେ ମୁଁ ଭାବେ ଯେ, ବାସ୍‌ଲେର ରନ୍ଧନଶାଳାରେ ଥରକରେ ଯେତେ ପରିମାଣ ଖିଆହୁଏ, ବାପାଙ୍କ ଖାନାଟେବୁଲରେ ତାହା ସପ୍ତାହେ ଯାଆନ୍ତା । ଜେଜେବାପାଙ୍କ ଚାକରମାନେ ତାଙ୍କର ପୁଅମାନଙ୍କ ଅପେକ୍ଷା ଭଲ ଚଳୁଥିଲେ । ବଡ଼ ବଡ଼

ଢଗରେ କଡ଼ା ଘରରନ୍ଧା ଏଲ୍ ମଦ, ମେଣ୍ଢା ବା ଗୋମାଂସର ଗରମ ବଡ଼ ବଡ଼ ଗଣ୍ଡି, ବହୁ ପରିମାଣରେ ଗରମ ମଟର, ପାଉଁରୁଟି, ଛେନା ଓ ପରିବା ଖିଆ ହେଉଥିଲା ଏବଂ ଆମେ ଲୋଭୀ ଓ କ୍ଷୁଧାର୍ତ୍ତ ବାଳକମାନେ ଖୁବ୍ ଆନନ୍ଦରେ ଏ ଭୋଜି ଖାଉଥିଲୁ । ତା'ପରେ ଆହୁରି ବେହେଲାବାଦନ ଓ ମଦ୍ୟପାନ ଚାଲୁଥିଲା ଯେ ପର୍ଯ୍ୟନ୍ତ ଶ୍ରୀମତୀ ସ୍ଲିମାନ ମାତାଲ ଅବସ୍ଥାରେ ଚିତ୍କାର କରି କରି କିମ୍ବା ଅର୍ଦ୍ଧଚୈତନ୍ୟ ଅବସ୍ଥାରେ ଚାକରାଣୀମାନଙ୍କ ଦ୍ୱାରା ଶେଯ ଉପରକୁ ବୁହା ନ ହୋଇଛି । ଜେଜେବାପା ସମ୍ପୂର୍ଣ୍ଣ ରୂପେ ତାଙ୍କର ତିନିଜଣ ଭୃତ୍ୟ ସ୍ଲିମାନ, ଆଲେ ଏବଂ ରୋଲାଣ୍ଡର ଅଧୀନ ହୋଇଯାଇଥିଲେ । ଶେଷୋକ୍ତଟି ଥିଲା ଗାଡ଼ିବାଲା, ଗୁମାସ୍ତା ଓ ତତ୍ତ୍ୱାବଧାରକ । ସେ ଘୋଡ଼ାଶାଳ ନିକଟ ଏକ କୁଟୀରରେ ରହୁଥିଲା । ତାରି ଜରିଆରେ ଜେଜେବାପା ତାଙ୍କ ଚାଷବାସ କାମ ପରିଚାଳନା କରୁଥିଲେ ଏବଂ ଗୁଆନୋ, ଫସ୍‌ପେଟ୍ ଏବଂ ଅନ୍ୟାନ୍ୟ ରାସାୟନିକ ସାରରେ ପରୀକ୍ଷା ଚଳାଇ ଏତେ ଅର୍ଥ ନଷ୍ଟ କରିଥିଲେ । ରୋଲାଣ୍ଡ ଥିଲା ଗୋଟାଏ ଖର୍ବାକୃତି, ଶୁଖିଲାମୁହାଁ, ଲୋହିତଚର୍ମ ବୃଦ୍ଧ— ଏକ 'ବିଶେଷ ଧରଣର ବ୍ୟାପଟିଷ୍ଟ' ଧର୍ମ ସମ୍ପ୍ରଦାୟର ଏବଂ ଆମେ ସମସ୍ତେ ତାଙ୍କୁ ଜଣେ ପୋଖତ ପ୍ରବଞ୍ଚକ ବୋଲି ଭାବୁଥିଲୁ; କିନ୍ତୁ ତାଙ୍କୁ ଅତି ସ୍ୱାଦକର ମଦ ରାନ୍ଧି ଆସୁଥିଲା ଏବଂ ତା' ସ୍ତ୍ରୀ ଦୁଧ କାରବାର କରି ଭଲ ଲହୁଣି କରୁଥିଲା ଏବଂ ଡେଭୋନସାୟାର ଅଞ୍ଚଳର ସ୍ତ୍ରୀଲୋକ ହୋଇଥିବାରୁ ଏପରି ମାଖନ କରିପାରୁଥିଲା ଯେ, ଯାହା ଅନ୍ୟ କୋଉଠି ମିଳିବ ନାହିଁ । ସପ୍ତାହକୁ ଏତେ ଆଉନ୍‌ସ ମାଂସ, ଏତେ କପ୍ ହାଲକା ଚା ଦ୍ୱାରା ଆମକୁ କ୍ଷୁଧାର୍ତ୍ତ ରଖିବାର ବାପାଙ୍କ ପଦ୍ଧତି ପରେ ବାସ୍‌ଲେରେ ଖାଦ୍ୟ ଓ ପାନୀୟରେ ଏତେ ଖର୍ଚ୍ଚ ସର୍ବଦା ଆଶ୍ଚର୍ଯ୍ୟଜନକ ବୋଧ ହେଉଥିଲା ।

ପରେ ପରେ ସ୍ଲିମାନ ଓ ଆଲେଙ୍କ ଭିତରେ ଭୀଷଣ ଝଗଡ଼ା ଲାଗିଗଲା, କାରଣ ମୋତେ ଜଣା ନାହିଁ, ଯାହାଫଳରେ ଆଲେ ଚାକିରିରୁ ଇସ୍ତଫା ଦେଲା । ତା' ସ୍ଥାନରେ ମଦ୍ୟ ପରିବେଷଣକାରୀ ପଦରେ ଯୋଗଦେଲା ବାଟସ୍ ନାମରେ ଜଣେ ଯୁବକ, ଯେ କି ଶ୍ରୀମତୀ ସ୍ଲିମାନର ସବୁ ପ୍ରକାର ଆବଶ୍ୟକତାକୁ ଶେଷ ପର୍ଯ୍ୟନ୍ତ ସମସ୍ତ ଆନ୍ତରିକତାର ସହ ପୂରଣ କରୁଥିଲା । ଶେଷ ମଧ ବେଶିଦୂର ନ ଥିଲା । ୧୮୫୩ର ଶରତ ଋତୁରେ ମୋତେ ଓ ପିଅରସନ୍‌କୁ ବାସ୍‌ଲେକୁ ନ ଡକାଇ ଜେଜେବାପା ବାପା ଓ ମାଙ୍କୁ ଡାକିବାକୁ ଇଚ୍ଛାକଲେ । ସେ ବେମାର ଥିଲେ ଓ ଖୁବ୍ ଦବି ଯାଇଥିଲେ ଏବଂ ବୋଧହୁଏ ଆମଭଳି ବାଳକମାନଙ୍କ ଅପେକ୍ଷା ଅଧିକତର ଭଲ ସଂସର୍ଗ ଇଚ୍ଛା କରୁଥିଲେ । ଦିନେ ମା ତାଙ୍କୁ ହାମ୍ପସାୟାର ଖବରକାଗଜ ପଢ଼ି ଶୁଣାଉଥିବାବେଳେ ଏପରି ଏକ ସ୍ଥାନୀୟ ରାଜନୀତି ସମ୍ପର୍କୀୟ ବିଷୟକୁ ଆସିଲେ, ଯେଉଁଥିରେ ଜେଜେବାପା ଖୁବ୍ ଆଗ୍ରହୀ ଥିଲେ । ସେ ବିଷୟକ କଥାରେ ସେ ବିରକ୍ତ ହେଲେ । ରାଗିଯାଇ ସେ ଲେଖକ ଉପରେ ଗାଳି ଦେଲେ ଏବଂ ତାଙ୍କ ସ୍ୱଭାବସୁଲଭ ରୀତିରେ ଶପଥ ଓ ଅଭିଶାପ ସବୁ ବର୍ଷିବାକୁ ଲାଗିଲେ । ସଙ୍ଗେ ସଙ୍ଗେ ତାଙ୍କ ମୁହଁ କଳାପଡ଼ିଗଲା, ମୁଣ୍ଡ ଛାତି ଉପରେ ଢଳିପଡ଼ିଲା ଏବଂ ସେ ଅଣନିଃଶ୍ୱାସୀ ହୋଇପଡ଼ିଲେ । ଚାକରମାନଙ୍କୁ ଡକାହୋଇ ତାଙ୍କୁ ଶେଯ ଉପରକୁ ନିଆଗଲା । ଘୋଡ଼ାରେ ଚଢ଼ି ଜଣେ ଲୋକ ଡାକ୍ତର ଡାକିବାକୁ ଗଲା । ଡାକ୍ତର ତାହା ସନ୍ନ୍ୟାସ ରୋଗଜନିତ ମୂର୍ଚ୍ଛାବୋଲି ଘୋଷଣା କଲେ । କିଛିଦିନ ଧରି ସେ ଅଚେତ

ରହିଲେ । ସେତେବେଳେ କଷ୍ଟରେ ନେଉଥିବା ନିଃଶ୍ୱାସ ଶବ୍ଦ ଘରଯାକ ଶୁଭୁଥିଲା । ୧୮୫୩ ଅକ୍ଟୋବର ୧୫ରେ ୭୨ ବର୍ଷ ବୟସରେ ସେ ମଲେ । ମିଲ୍‌ଟନ୍ ଗିର୍ଜାରେ ତାଙ୍କ ପାରିବାରିକ କବରସ୍ଥାନରେ ତାଙ୍କ ସ୍ତ୍ରୀଙ୍କ ପାଖରେ ତାଙ୍କୁ ପୋତାଗଲା; ତାଙ୍କ ସ୍ମୃତିରେ ବାପା ଗୋଟିଏ ମାର୍ବଲ ଫଳକ ସ୍ଥାପନ କଲେ ।

ତାଙ୍କର ଇଚ୍ଛାପତ୍ରରେ ସେ ବାସ୍‌ଲେ ନିବାସ ଓ ଜମିକୁ ବାପାଙ୍କୁ ଦେଇଯାଇଥିଲେ; କିନ୍ତୁ ସେଥିରେ ମୋତେ ଓ ମୋ ଜ୍ୟେଷ୍ଠପୁତ୍ରକୁ ସ୍ୱତ୍ୱ ଦେଇଥିଲେ । ମୋର ସନ୍ତାନ ନ ଥିଲେ ମୋର ପ୍ରତ୍ୟେକ ଭାଇ ଓ ସେମାନଙ୍କ ସନ୍ତାନମାନଙ୍କୁ ଏବଂ ଅନ୍ୟମାନଙ୍କୁ, ଏପରି ଯେତେଜଣଙ୍କୁ ଦିଆଯାଇପାରେ । ସେଥିରେ ପୁଣି ଖଞ୍ଜାଯାଇଥିଲା ଶ୍ରୀମତୀ ସ୍ଲିମାନଙ୍କୁ ବାର୍ଷିକ ଦେୟ ୧୦୦ ପାଉଣ୍ଡ ଏବଂ ରୋଲାଣ୍ଡଙ୍କୁ ଆଉ ୪୦ପାଉଣ୍ଡ । ହେରଫୋଡ଼୍‌ସାୟାରରେ ଥିବା ଜମିଦାରୀକୁ ସେ ଜନ୍‌କକାଙ୍କୁ ଦେଇ ଖଞ୍ଜିଥିଲେ ଯେ ସେଥିରୁ ମୋ ମା ଓ କକାଙ୍କ ସ୍ତ୍ରୀ ପ୍ରତ୍ୟେକେ ୩୦ ପାଉଣ୍ଡ ପାଇବେ । କ୍ଲିଫ୍‌ଟନ୍ ଓ ରିଙ୍ଗଟନରେ ଥିବା ପରିବାରର ମୂଳ ସମ୍ପତ୍ତି ଓ ଗ୍ରୀନଉଇଚ ଘର ଓ ବହୁପରିମାଣ ଅର୍ଥ ପିଅରସନ୍‌କୁ ଦିଆଯାଇଥିଲା ଓ ସେଥିରେ ମଧ୍ୟ ସଯତ୍ନରେ ସ୍ୱତ୍ୱ ଆରୋପ କରାହୋଇଥିଲା । ମୋ ଭାଇ ଉଇଲି ଓ ହ୍ୟାରି ଏବଂ ଭଉଣୀ ମେରୀ ପାଇଁ ୫୦୦ ପାଉଣ୍ଡ ଲେଖାଏଁ ରଖାଯାଇଥିଲା ଏବଂ ମେରୀକୁ ତାଙ୍କ ସ୍ତ୍ରୀଙ୍କ ଅଳଙ୍କାରସବୁ ଦିଆଯାଇଥିଲା । ଇଚ୍ଛାପତ୍ରରେ ସେ ଲେଖିଥିଲେ ଯେ ତାଙ୍କର ସମ୍ପତ୍ତି ସେ ଏହିପରି ଭାବରେ ବାନ୍ଧିଦେଇଗଲେ ଯେପରିକି ତାଙ୍କ ପୁଅମାନେ କାରନାଭରନଙ୍କଠାରୁ ଉତ୍ତରାଧିକାର ସୂତ୍ରେ ପାଇଥିବା ୩୬୦୦୦ ପାଉଣ୍ଡକୁ ଯେପରି ନଷ୍ଟ କଲେ ସେପରି ନ ହୁଏ । ଏହି ଦାନକୁ ସେମାନେ ଉପଭୋଗ କରିବା ପାଇଁ ଅନ୍ୟାନ୍ୟ ସର୍ତ୍ତ ଓ ଆଇନଗତ ବାଧା ମଧ୍ୟ ଖଞ୍ଜାଯାଇଥିଲା । ସେ ତାଙ୍କର ବହି, ଚିତ୍ରକଳା ଓ ବାସନ ବାସ୍‌ଲେ ଜମିଦାରୀରେ ବଂଶାନୁକ୍ରମେ ଭୋଗଦଖଲ ପାଇଁ ରଖିଦେଇଗଲେ । ସେ ନିଶ୍ଚୟ ଆଶା କରିଥିଲେ ଯେ, ବାପା ସେଠାରେ ବସବାସ କରିବେ; କିନ୍ତୁ ତାକୁ ରକ୍ଷଣାବେକ୍ଷଣ କରିବାପାଇଁ କିଛି ଅର୍ଥ ରଖିଯିବାକୁ ସେ ଭୁଲିଗଲେ । କାରନାଭରନ ଅର୍ଥରୁ ବାପାଙ୍କ ଅଂଶ ୧୮୦୦୦ ପାଉଣ୍ଡ ସମ୍ପୂର୍ଣ୍ଣ ରୂପେ ନ ହେଲେ ମଧ୍ୟ ପ୍ରାୟ ସମସ୍ତ ପ୍ରାପ୍ତି ଆଶାରେ ପୂର୍ବରୁ ଖର୍ଚ୍ଚହୋଇ ଯାଇଥିଲା । କେତେବର୍ଷ ପର୍ଯ୍ୟନ୍ତ ପରୀକ୍ଷାମୂଳକ ଭାବରେ ବାସ୍‌ଲେରେ ରହିବାକୁ ବାପା ଚେଷ୍ଟାକଲେ; କିନ୍ତୁ ପରେ ଅର୍ଥ ଯୋଗାଇ ନ ପାରିବାରୁ ପରିତ୍ୟାଗ କଲେ । ଯାହାହେଉ ଜେଜେବାପାଙ୍କ ମୃତ୍ୟୁ ଠିକ୍ ସମୟରେ ହୋଇ ବାପାଙ୍କ ଦାରିଦ୍ର୍ୟକୁ କିଛି ପ... ଲାଘବ କଲା, ଯଦିଓ ସେ ଯେତେ ପରିମାଣରେ ଆଶା କରିଥିବେ ସମ୍ଭବତଃ ସେତେ ...

ବର୍ତ୍ତମାନ ଆମ ଜୀବନରେ ବହୁତ ପରିବର୍ତ୍ତନ ହୋଇଗଲା । ବାପା ବାସ୍‌ଲେକୁ ନିଜ ହାତରେ ରଖିବାର ଚେଷ୍ଟାକଲେ, ଯଦିଓ ତାହାକୁ ଭଡ଼ା ଦେଇଦେବା ସମ୍ଭବତଃ ତାଙ୍କର ଉଚିତ ଥିଲା ଏବଂ ସେ ଏଭଳି ଧନୀ ନ ଥିଲେ, ଯାହାଦ୍ୱାରାକି ସେଣ୍ଟ ଜେମ୍‌ସ୍‌ର କାମଟା ଛାଡ଼ି ଚଳିପାରନ୍ତେ । ତେଣୁ ମା ବାସ୍‌ଲେରେ ରହିଲେ ଏବଂ ବାପା ଓ ମୁଁ ରହିଲୁ ପୁଲଟେନି ଷ୍ଟ୍ରିଟ୍‌ରେ । ସେ ଘରର ଅଧିକାଂଶ ଅଂଶ ଛାଡ଼ିଦେଇ ଦୁଇଟି ଶୋଇବା ଘର, ଗୋଟିଏ ବୈଠକଘର ରଖିଲୁ । ଘରେ ଆମେ ସେହିପରି କମ୍ ପରିମାଣର ପ୍ରାତଃଭୋଜନ କରୁ; କିନ୍ତୁ ମୁଁ ପୂର୍ବପରି ନି... ...

ବିଦ୍ୟାଳୟରେ ଖାଏ । ବାପା ଖାଆନ୍ତି ହୋଟେଲରେ । ସେ ସମୟରେ ୱେଷ୍ଟଏଣ୍ଡରେ ଆଜିକାଲିକା ପରି ଏତେସବୁ ଚମତ୍କାର ରେସ୍ତୋରାଁ ନ ଥିଲା । ଏଭଳି ମାତ୍ର ଗୋଟିଏ ଥିଲା ଷ୍ଟ୍ରାଣ୍ଡର୍ ସିମ୍ପସନ୍ । ଛୁଟିଦିନ ଆମେ ବାସ୍‌ଲେରେ କାଟୁଥିଲୁ । ସେଠାରେ ଜେଜେବାପାଙ୍କର ବିରାଟ ପୁସ୍ତକାଗାରରେ ମୋର ପୂର୍ଣ୍ଣ ଅଧିକାର ଥିଲା । ପୁସ୍ତକାଗାରଟି ଥିଲା ଅଦ୍ଭୁତ ଏକ ମିଶ୍ରଣ । ଅନେକ ଆଇନ ବହି ସାଙ୍ଗକୁ କେତେକ ପୁରୁଣା ଦୁଷ୍ପ୍ରାପ୍ୟ ବହି ଓ ସପ୍ତଦଶ ଅଷ୍ଟାଦଶ ଶତାବ୍ଦୀ ସାହିତ୍ୟର ସମୁଦାୟ ଅପୂର୍ବ ଜଗତ । ଲୋଭରେ ମୁଁ ସେଗୁଡ଼ାକ ପଢ଼ି ପକେଇଲି । ମନେଅଛି ମୁଁ ସେଠାରେ ପଢ଼ିଥିଲି ଡନ୍ କ୍ୱିକ୍‌ସୋ, ରାବେଲା, ଗିଲ୍‌ବ୍ଲାସ, ଦି'ରାମବ୍ଲେର୍, ଟାଟଲର୍, ସ୍ପେକ୍‌ଟାଟର, ବ୍ରିଟିଶ ନାଟ୍ୟକାରମାନଙ୍କର ଶିକ୍ଷାମୂଳକ ନାଟକାବଳି, ଶ୍ରୀମତୀ ଆଫ୍ରାବେନ୍ ଏବଂ ଶ୍ରୀମତୀ ସେଣ୍ଟଲିଭର, ସେରିଡାନ, ସ୍ମୋଲେଟ, ଗୋଲଡ୍‌ସ୍ମିଥ୍ ଓ ଅନ୍ୟାନ୍ୟ, ଆହୁରି ମଧ ଫିଲ୍‌ଡିଂ ଓ ଅନ୍ୟାନ୍ୟ ଅଜ୍ଞାତ ଲେଖକମାନଙ୍କ ଲେଖାସବୁ । ସେଠାରେ ମଧ ଥିଲା ହୋଗାର୍ଥଙ୍କ ଚିତ୍ରର ବଡ଼ ବହିସବୁ, ଗିଲ୍‌ରେ, ରୋଲାଣ୍ଡସନ, ଏଚ୍.ବି.ଓ. ଅନ୍ୟମାନଙ୍କ ବ୍ୟଙ୍ଗଚିତ୍ର । ପୁଣି ଥାକ ପରେ ଥାକ ପୁରାତନ ଏଲଜେଭିର ସାହିତ୍ୟ ଏବଂ ଆଲଡାଇନ୍ ସଂସ୍କରଣ, ଇଞ୍ଚେ ଦୁଇଇଞ୍ଚ ଲମ୍ବ ଛୋଟ ଅପରିଷ୍କାର ବହିସବୁ, ଏରାସ୍‌ମି କୋଲାକ୍ୱା, ମୁର୍‌ଙ୍କ ୟୁଟୋପିଆ, ୟୁଫେଅସ୍, ସିଡ୍‌ନିଙ୍କ ଆରକାଡ଼ିଆ, ବ୍ରାଉନ୍‌ଙ୍କ ଆରଜେନିସ୍, ସେହିପରି ବେନ୍ ଜନ୍‌ସନ୍‌ଙ୍କଠାରୁ ବାଇରନ୍‌ଙ୍କ ପର୍ଯ୍ୟନ୍ତ ସବୁ କବି, ସେକ୍‌ସପିଅରଙ୍କ ବିଭିନ୍ନ ସଂସ୍କରଣ ଏବଂ ଆହୁରି ଅନେକ ଯାହା ବର୍ତ୍ତମାନ ମୋର ସ୍ମରଣ ନାହିଁ । ମୋ ହାତରେ ସର୍ବଦା ଖଣ୍ଡେ ବହି ରହୁଥିଲା । ଗ୍ରୀଷ୍ମକାଳର ସବୁଠାରୁ ମନୋରମ ସମୟତକ ନ୍ୟୁ ଫରେଷ୍ଟ୍‌ର ସୁନ୍ଦର ଉପବନପଥ ଆଡ଼କୁ ଚାଲିଯାଇ ପ୍ରକାଣ୍ଡ ବିଚ୍‌ଗଛ ତଳେ ବହି ଧରି ବସିଯାଉଥିଲି । ଅନ୍ୟ ସମୟରେ ପୃଷ୍ଠା ମୋଡ଼ାହୋଇ ରଖାହୋଇଥିବା ଓଜନିଆ ବହିର ଥାକଗୁଡ଼ାକ ସାମନାରେ ପଡ଼ିଥିବା ସିଡ଼ିର ଆଗ ଧାପରେ ବସି ରହୁଥିଲି । ବହିର ଏକ ସମ୍ପୂର୍ଣ୍ଣ ତାଲିକା କରିବା ମୁଁ ଆରମ୍ଭ କଲି; କିନ୍ତୁ କହିବା ବାହୁଲ୍ୟ ଯେ ଭଲ ଲାଗୁଥିବା ପ୍ରତ୍ୟେକ ବହିକୁ ପଢ଼ିବା ପାଇଁ ଅଟକି ଯାଉଥିବାରୁ ସେ କାମରେ ଆଗେଇ ପାରିଲି ନାହିଁ । ଆମର ଥିଲା ଡାକବୁହା ଚାରିଚକିଆ (ଫିଟନ) ଗାଡ଼ିଟିଏ ଓ ଘୋଡ଼ା । ସେଥିରେ ବସି ମା ଲମ୍ବା ଭ୍ରମଣରେ ଯାଉଥିଲେ, ବିଶେଷକରି ବଜାର ସଉଦା କରିବା ପାଇଁ ଲିମିଙ୍ଗଟନକୁ । ତାହା ଛ'ମାଇଲ ଦୂର ହେଲେ ମଧ ପାଖରେ ଆଉ ଦୋକାନ ନ ଥିଲା । ଆମର ମଧ ନ୍ୟୁ ଫରେଷ୍ଟର ଅମଣିଆ ଟଟୁ ଘୋଡ଼ାଟିଏ ଥିଲା । ମୁଁ ତା' ଉପରେ ଚଢ଼ି ଶିଖିଲି ଏବଂ ବଣଯାକ ମାଇଲ ମାଇଲ ଧରି ବୁଲିଲି । ସମୁଦ୍ର ମଧ ବିଶେଷ ଦୂର ନ ଥିଲା ଏବଂ ପିଅରସନ୍ ଓ ମୁଁ ସେଠାକୁ ଗାଧୋଇ ଯାଇ ପହଁରୁ । ଅତିଶୀଘ୍ର ମୁଁ ଭଲ ପହଁରା ଶିଖିଗଲି ।

ଛୁଟି ଶେଷରେ ମୁଁ ଦୁଃଖରେ କିନ୍ତୁ ଉନ୍ନତ ସ୍ୱାସ୍ଥ୍ୟ ନେଇ ଲଣ୍ଡନ ଫେରେ । ବାପା ସନ୍ଧ୍ୟା ସମୟରେ ମୋସହ କଥାବାର୍ତ୍ତା କରନ୍ତି । ତାଙ୍କର ସେ କଥାସବୁ ଖୁବ୍ ଆଗ୍ରହ ସୃଷ୍ଟି କରେ କାରଣ ତାଙ୍କ ଜ୍ଞାନଦୀପ୍ତ ମନ ମଧ୍ୟରୁ ସେ ବିଭିନ୍ନ ପ୍ରକାରର ଜ୍ଞାତବ୍ୟ ବିଷୟର ବନ୍ୟା ସୃଷ୍ଟି କରି ଥାଆନ୍ତି । ମୋର ମନେଅଛି, ଏହି ସମୟରେ ମୁଁ ଆଲବର୍‌ମାର୍‌ଲ ଷ୍ଟ୍ରିଟରେ ଥିବା ରୟାଲ ଇନ୍‌ଷ୍ଟିଚ୍ୟୁଟକୁ ଫାରାଡ଼େଙ୍କ ବକ୍ତୃତା ଶୁଣିବାକୁ ଯାଇଥିଲି । ଫାରାଡ଼େଙ୍କ ଭାଷଣ ସ୍ୱଭାବ

ସୁଲଭ ଭାବରେ ଜ୍ଞାନଦୀପ୍ତ ଓ ଉପଦେଶାତ୍ମକ ଥିଲା । ବକ୍ତୃତା ଶେଷରେ ଦର୍ଶକମଣ୍ଡଳିରେ ଥିବା ନର୍ ଦମ୍ବରଲ୍ୟାଣ୍ଡର ଡ୍ୟୁକ ଆଗେଇଆସି ବକ୍ତୃତାର ପ୍ରଶଂସା କଲେ । ଫାରାଡ଼େ ପ୍ରାୟ ଭୂମି ପର୍ଯ୍ୟନ୍ତ ନଇଁ ପଡ଼ିଲେ । ବାପା ଅସନ୍ତୁଷ୍ଟ ହୋଇ କହିଲେ— "ଇଏ ହେଉଛି ବ୍ରିଟିଶ ତୋଷାମଦପ୍ରିୟତାର ଏକ ନମୁନା । ଏ ଯୁଗର ସର୍ବଶ୍ରେଷ୍ଠ ରସାୟନବିତ୍ ସେହି କିଛିନୁହେଁଟା ପାଖରେ ନଇଁ ଯାଉଛନ୍ତି, କାରଣ ସେ ଜଣେ ଡ୍ୟୁକ ! ଏଇଟା ବିରକ୍ତିକର ।" କିନ୍ତୁ ସେ ଡ୍ୟୁକ କେବଳ ଜଣେ ଉଚ୍ଚସ୍ତରୀୟ ବୁଦ୍ଧିଜୀବୀ ନ ଥିଲେ, କଳା ଓ ବିଜ୍ଞାନର ଜଣେ ଉଦାର ପୃଷ୍ଠପୋଷକ ଥିଲେ । ମୁଁ ଭାବୁଛି ଏପରି ଲୋକେ, ସେମାନେ ଯେଉଁ ଜ୍ଞାନୀମାନଙ୍କୁ ସାହାଯ୍ୟ କରନ୍ତି ସେମାନଙ୍କ ପରି ସମ୍ମାନଯୋଗ୍ୟ । ଭିର୍ଜିଲଙ୍କ ପରି ମୋସେନାଙ୍କର ମଧ୍ୟ ଆବଶ୍ୟକତା ଅଛି ।

ଏହି ସମୟରେ ମୁଁ ଆମ ବିଦ୍ୟାଳୟର ସଂକୀର୍ଣ୍ଣ ପରିସର ମଧ୍ୟରେ କ୍ରମେ ଅଧୈର୍ଯ୍ୟ ହୋଇପଡୁଥିଲି । ମୁଁ ଷଷ୍ଠଫର୍ମକୁ ଗଲି ଯେଉଁଠି ପିଲା ସଂଖ୍ୟା ମାତ୍ର କୋଡ଼ିଏରେ ସୀମିତ ଏବଂ ସମସ୍ତେ ଆତ୍ମଗୌରବସୂଚକ କଲର ଓ ଚଉଡ଼ା କଡ଼ା ଗଳାବନ୍ଧ ପିନ୍ଧିବାର ସୁଯୋଗ ଲାଭକଲେ । ଏହି କଲର ହେଉଛି ବହଳ ମଣ୍ଡଦିଆ ଦୁଇଖଣ୍ଡ ତ୍ରିକୋଣାକାର କନା । ଏହି କନା ଗଳା ଖଣ୍ଡିଆ କରେ, ଗାଲ ଫୋଡ଼ି ହୋଇଯାଏ ଓ ସବୁଦୃଷ୍ଟିରୁ ଅସୁବିଧାଜନକ ହୋଇଥିଲେ ମଧ୍ୟ ଆମେ ପିଲାମାନେ ଏହାକୁ ଭଲ ପାଉଥିଲୁ କାରଣ ଏହା ଥିଲା ବୟସ୍କ ମଣିଷର ମୁଦ୍ରା । ବିଦ୍ୟାଳୟରେ ଥିଲି ଖୁବ୍ ଢିଲା, କାରଣ ମୁଁ କହିଛି ବିଦ୍ୟାଳୟରେ ଦିଆଯାଉଥିବା ସୀମିତ ଶିକ୍ଷାଠାରୁ ତା'ବାହାରେ ଥିବା ବହୁ ପ୍ରକାର ଶିକ୍ଷଣୀୟ ବିଷୟରେ ମୁଁ ଆଗ୍ରହୀ ଥିଲି । ଫରାସୀ ଭାଷାପ୍ରତି ମୋର ଆଗ୍ରହ ତେବେ ବି ରହିଥିଲା; କିନ୍ତୁ ଗ୍ରୀକ୍ ଓ ଲାଟିନ୍ ମୋତେ ଭଲ ଲାଗୁନଥିଲା । ମୋତେ କଦବା କ୍ୱଚିତ ଯେଉଁ ପଇସା ମିଳୁଥିଲା ସେଥିରେ ମୁଁ ଗୋଟିଏ ଜର୍ମାନ ଅଭିଧାନ ଓ ସିଲର୍‌ଙ୍କ ଡନ୍‌କରଲୋ ଏବଂ ଉଇଲ୍‌ହେଲମ୍ ଟେଲ କିଣିଲି ଏବଂ ପିଅରସନ୍‌ର ଜର୍ମାନ ବ୍ୟାକରଣ ବହିଟିର ସାହାଯ୍ୟ ନେଇ ମୁଁ ସେଗୁଡ଼ିକ ପଢ଼ିବା ଶିଖୁଥିଲି । ପିଅରସନ୍ କିଙ୍ଗସଲେ କଲେଜରେ ଜର୍ମାନ ଓ ମର୍ଚ୍ଚେଣ୍ଟଟେଲର୍ସରେ ଆମେ ପଢ଼ିନଥିବା ଅନେକ ବିଷୟ ଶିଖିଲା ।

କକାଙ୍କ ପରି ବାପା ମଧ୍ୟ ବୁଲାଚଲା କରିବା ପ୍ରିୟ ଥିଲେ ଏବଂ ଛୁଟିଦିନମାନଙ୍କରେ ମୋତେ ସାଙ୍ଗରେ ନେଇ ଅତି ଦୂର ରାସ୍ତାରେ ବୁଲିଯାଉଥିଲେ । ଆମେ ହାମ୍ପଟନକୋଟ ଯାଇ ଫେରିଆସୁଥିଲୁ; ଏପିଙ୍ଗ ଫରେଷ୍ଟ ଏବଂ ଅନ୍ୟ ଦୂରସ୍ଥାନମାନଙ୍କୁ ଯାଉଥିଲୁ । ବାଟଯାକ ସେ ବହୁତ କଥା କହନ୍ତି । ସେ ଯଦି ମୋତେ ଏତେ ଦୂର ବାଟ ନେଉ ନ ଥାଆନ୍ତେ ଏବଂ ଅଳ୍ପ ଖାଇବାକୁ ଦେଉ ନ ଥାନ୍ତେ ତେବେ ତାଙ୍କ ସହ ଭ୍ରମଣରୁ ଯେତେ ଆନନ୍ଦ ପାଉଥିଲି ତାଠାରୁ ଯଥେଷ୍ଟ ବେଶି ଆନନ୍ଦ ପାଇଥାଆନ୍ତି ।

ଏଇ ସମୟର ଜୀବନ ସମ୍ପର୍କରେ ମୁଁ ଆଉ ବେଶି ସମୟ ନେବି ନାହିଁ । ସେ ସବୁର ଟିକିନିଖି ବିବରଣୀ ମୋପରି ଅନ୍ୟମାନଙ୍କୁ ଏତେ ଆଗ୍ରହୀ କରିବ ନାହିଁ । କେବଳ କହିରଖେ ଯେ, ମୁଁ ନାଇଟ ବ୍ରିଜ ରାଇଡ଼ିଂ ସ୍କୁଲରେ ନିୟମିତ ଘୋଡ଼ାଚଢ଼ା ଶିକ୍ଷା କରୁଥିଲି । ସେଠାରେ

ହର୍ସଗାର୍ଡ୍‌ର ଘୋଡ଼ାଚଢ଼ା ଶିଖାଳିଙ୍କ ଦ୍ୱାରା ଆମେ ଶିକ୍ଷା ପାଉଥିଲୁ । ତାଙ୍କଠାରୁ ମୁଁ ଲମ୍ବା ପାଉଁଦାନିରେ ସାମରିକ କାଇଦାରେ ବସିବା ଶିଖିଲି, ଯେଉଁଟା କି ଏପର୍ଯ୍ୟନ୍ତ ଅନୁସରଣ କରି ଆସିଚି । ସେ ସମୟରେ ମୁଁ କିଛି ଚିତ୍ରାଙ୍କନ ମଧ୍ୟ ଶିକ୍ଷା କରିଥିଲି ଏବଂ ନିଜେ ନିଜେ ଖୁବ୍ ଅଧ୍ୟବସାୟ ଓ ପରିଶ୍ରମ କରି ପାଣିରଙ୍ଗର ଚିତ୍ର କରିଥିଲି । ମୋତେ ସଙ୍ଗୀତ ଶିଖାଇବା ପାଇଁ ମଧ୍ୟ ଗୋଟିଏ ଚେଷ୍ଟା ହୋଇଥିଲା; କିନ୍ତୁ ଏହି ବିଷୟରେ ମୋର ଆଦୌ ଆଗ୍ରହ ବା ଇଚ୍ଛା ନ ଥିବାରୁ ସେ ଉଦ୍ୟମ ସମ୍ପୂର୍ଣ୍ଣ ବ୍ୟର୍ଥ ହେଲା । ଏହି ଚେଷ୍ଟା ନିଷ୍ଫଳ ବୋଲି ଯଥାଶୀଘ୍ର ପରିତ୍ୟକ୍ତ ହେଲା । ସେଥିରେ ମୁଁ ସନ୍ତୋଷ ଲାଭ କଲି ।



# ଚତୁର୍ଥ ପରିଚ୍ଛେଦ

## ହେଲିବରୀ : ୧୮୫୬-୧୮୫୭

୧୮୫୪ରେ ୧୭ବର୍ଷ ବୟସରେ ମୁଁ ଖୁବ୍ ବୟସ୍କ ହୋଇଗଲିଣି ବୋଲି ନିଜକୁ ବିଚାରୁଥିବାବେଳେ ମୋ ଦୃଷ୍ଟିରେ ଏକ ପ୍ରଶସ୍ତତର ଦିଗ ଖୋଲିଗଲା । ଦିନେ ବାପା ନଗରର ରାଜରାସ୍ତାରେ ଚାଲିଯାଉଥିବାବେଳେ ହଠାତ୍ ଜଣକ ସହ ମୁହାଁମୁହିଁ ହୋଇଗଲେ । ସେ ହେଉଛନ୍ତି ସେଇ ଗ୍ରୀଅରି, ଯିଏ ଷ୍ଟ୍ରେଥାମ୍‌କୁ ସବୁ ଉପରଓଳି ଆସି ବିଭିନ୍ନ ଧର୍ମ ସମ୍ବନ୍ଧୀୟ ବିଷୟରେ ତର୍କ କରୁଥିଲେ । ବହୁଦିନ ପରେ ଭେଟି ଦୁଇବନ୍ଧୁ ଖୁବ୍ ଖୁସି ହେଲେ । ପୁଟନ୍ନି ଯାଇ ତାଙ୍କୁ ସାକ୍ଷାତ୍ କରିବାକୁ ସେ ବାପାଙ୍କୁ ନିମନ୍ତ୍ରଣ କଲେ । ଜୁଲାଇର ଏକ ମନୋରମ ସନ୍ଧ୍ୟାରେ ଆମେ ପୁଟ୍‌ନି ଯାଇ ସେଠାରେ ଫ୍ଲାଟହାଉସ ଆବିଷ୍କାର କଲୁ । ଲଣ୍ଡନ ଉପକଣ୍ଠରେ ଥିବା ଏହି ସୁନ୍ଦର ଘରସବୁ ବର୍ତ୍ତମାନ ବିରଳ । ଏହି ଘରଟିରେ ଇଟାପାଚେରିଘେରା ସୁନ୍ଦର ବିରାଟ ଉଦ୍ୟାନ ଏବଂ ସାମନାରେ ବହୁପ୍ରକାରର ମୋଡ଼ି ମୋଡ଼ି ଓ କୁଣ୍ଢ଼ କୁଣ୍ଢ଼ ହୋଇଥିବା ଫାଟକ ଥିଲା । ଆମେ ଭିତରକୁ ଗଲୁ । ସେଠାରେ ବହୁଲୋକ ଭୋଜନ ସାରି ମଦ୍ୟପାନ କରୁଥିଲେ । କହିବା ବାହୁଲ୍ୟ ଯେ ମୋତେ କାଳେ ବେଶି ଖୁଆଇ ଦିଆଯିବ, ସେଥିପାଇଁ ବାପା ଜାଣିଶୁଣି ଭୋଜନ ପରେ ପହଞ୍ଚିଲେ । ଖାଇବା ବିଷୟରେ ସେ ଏତେ ଭୀତତ୍ରସ୍ତ ! ଶ୍ରୀ ଗ୍ରୀଅରିଙ୍କ ଡାହାଣ ପାଖରେ ଧଳାପୋଷାକ ପିନ୍ଧି ଡେଙ୍ଗାଳିଆ ଝିଅଟିଏ ବସିଥିଲା । ତା' ମୁହଁ ମୁଁ ଅନ୍ଧାରରେ ଭଲ ଦେଖିପାରିଲି ନାହିଁ; କିନ୍ତୁ କଥାବାର୍ତ୍ତାର ସ୍ୱରରୁ ପିତା ଓ ପୁତ୍ରୀ ମଧ୍ୟରେ ଥିବା ସ୍ନେହ, ବାତ୍ସଲ୍ୟ, ସେବା ଓ ସହୃଦୟତାର ସୂଚନା ପାଇଲି । ଆମ ନିଜ ଘରେ ଏପରି ପ୍ରେମର ବାହ୍ୟ ପରିପ୍ରକାଶ କେବେ ନଥିବାରୁ ଏହି ବାପ ଓ ତାଙ୍କ ପୁଅଝିଅମାନଙ୍କର ସ୍ନେହସହୃଦୟତାପୂର୍ଣ୍ଣ ସ୍ୱର ଅତି ଅଭିନବ ବୋଧ ହୋଇ ମୋତେ ଚମକୃତ କଲା । ବାପା ସ୍ୱଭାବସୁଲଭ ରୀତିରେ ସେହି ସମାବେଶରେ ବକ୍ତୃତା ଦେବା ଆରମ୍ଭ କରିଦେଲେ । ଶ୍ରୀମତୀ ଗ୍ରୀଅରି ଚିତ୍କାର କରି ଓ ହସି ନିରର୍ଥକ କଥାସବୁ କହୁଥିବାବେଳେ ମୁଁ ଏଲେନ୍ ଗ୍ରୀଅରିକୁ ଲକ୍ଷ୍ୟ କରୁଥିଲି । ସନ୍ଧ୍ୟାଟି ଆନନ୍ଦରେ କାଟିଲୁ । ଭୋଜନ ପରେ ଏଲେନ୍ ପିଆନୋ ବଜାଇଲା ଏବଂ ତା'ର ଦି'ଭାଇ ହେନରୀ ଓ ଆଲଫ୍ରେଡ୍ ଗାଇଲେ ଓ ତାଙ୍କ ବାପା ମୋ ପାଖରେ ବସି ଅନେକ ସମୟ ପର୍ଯ୍ୟନ୍ତ କଥାବାର୍ତ୍ତା ହେଲେ । କିପରି ମୁଁ ଜାଣେନା, ମୋର ମନେହେଲା ଯେ ଏଇ ଝିଅଟିକୁ ମୁଁ ବାହାହେବି ଏବଂ ସେଇ ରାତିରେ ମୁଁ ଘରକୁ ଫେରି ସୁଯୋଗ ଆସିବା ମାତ୍ରେ ତାହା କରିବାକୁ ସଂକଳ୍ପ କଲି । ଦୁଇବର୍ଷକାଳ ମୁଁ ବାସ୍‌ଲେ ନିକଟ ଟ୍ୟୁଟନର କୋଲନେଲ୍ ମାରିଆଟ୍‌ଙ୍କ ଝିଅ ଏବଂ ଏକଦା ଅତି ଜନପ୍ରିୟ ସାମୁଦ୍ରିକ ଉପନ୍ୟାସାବଳିର ପ୍ରସିଦ୍ଧ ଲେଖକ କ୍ୟାପଟେନ ମାରିଆଟଙ୍କ ଝିଆରୀ ଆଗନେସ୍ ମାରିଆଟ୍‌କୁ ଗଭୀର ପ୍ରେମ କରିଥିଲି। ସେଇ ମୂଲ୍ୟବାନ୍

କିନ୍ତୁ ହାୟ, ନିରର୍ଥକ ଆକର୍ଷଣରୁ ଠିକ୍ ସେତିକିବେଳେ ମୁଁ ନିଷ୍କୃତି ପାଇଥାଏ । ଆମେ ମାରିଆଟ୍ ପରିବାରର ଖୁବ୍ ଅନ୍ତରଙ୍ଗ ଥିଲୁ, କିନ୍ତୁ ସୁନ୍ଦରୀ ଆଗନେସ୍ ମୋ ଆବେଦନର ପ୍ରତ୍ୟୁତ୍ତର ଦେଲା ନାହିଁ । ଏହି ସମୟରେ ସେମାନେ ହାମ୍ପସାୟାରରୁ ଚାଲିଗଲେ ଏବଂ ଆଉ ତାଙ୍କୁ ଆମେ ଦେଖି ନାହୁଁ । କିଛିଦିନ ମୋ ହୃଦୟ ଶୂନ୍ୟ ରହିଲା । ଲେଟିସ୍ ବାଷ୍ଟନ ନାମ୍ନୀ ମୋର ଜଣେ ସମ୍ପର୍କୀୟା ଦୀର୍ଘାଙ୍ଗୀ ସୁନ୍ଦରୀ ଝିଅକୁ ଅଭିନେତାମାନଙ୍କ ଭାଷାରେ ମୁଁ ମାତ୍ର 'ବିଚାରାଧୀନ' ଭାବେ ହାତରେ ରଖିଥିଲି, ମୋ ପାଖରେ କିଛି କାମ ନ ଥିବାବେଳେ କିଛି ଥଟ୍ଟାକୌତୁକ କରିବା ପାଇଁ । ଲେଟିସ୍‌ର ଅବଶ୍ୟ ପ୍ରଶ୍ନ ଉଠୁ ନ ଥିଲା । ଦୁଃଖର କଥା ୧୮୫୪ ନଭେମ୍ବରରେ ଶ୍ରୀ ଗ୍ରୀଅରିଙ୍କ ହଠାତ୍ ମୃତ୍ୟୁ ଫଳରେ କିଛିଦିନ ପାଇଁ ସେ ପରିବାର ସହ ସମ୍ପର୍କ ଛିନ୍ନ ହୋଇଗଲା । ଅନେକ ବର୍ଷ ପର୍ଯ୍ୟନ୍ତ ସେ ତାଙ୍କର ଜଣେ ବନ୍ଧୁ ଶ୍ରୀ ଜନ୍ ବାଲ୍‌ଙ୍କ ସହ ଏକତ୍ର ପୁଟ୍‌ନିରେ ଥିବା ଘରେ ରହୁଥିଲେ ଏବଂ ତାଙ୍କ ମୃତ୍ୟୁଶଯ୍ୟାରେ ସେ ତାଙ୍କ ସ୍ତ୍ରୀ ଓ ପିଲାଙ୍କ ଦାୟିତ୍ୱ ଶ୍ରୀ ବାଲ୍‌ଙ୍କ ହାତରେ ବିଶ୍ୱାସରେ ସମର୍ପି ଦେଲେ । ବାଲ୍ ମଧ ବଞ୍ଚିଥିବା ପର୍ଯ୍ୟନ୍ତ ଏହି ବିଶ୍ୱାସ ରକ୍ଷା କରିଥିଲେ; ଅବଶ୍ୟ କେତେଦିନ ପାଇଁ ସେମାନେ କୌଣସି ଅତିଥିଙ୍କୁ ଚର୍ଚ୍ଚା କରିପାରୁ ନ ଥିଲେ । ତେଣୁ ଅନେକ ଦିନ ପର୍ଯ୍ୟନ୍ତ ମୁଁ ସେମାନଙ୍କୁ ଦେଖିପାରି ନ ଥିଲି ।

୧୮୫୪ ସେପ୍‌ଟେମ୍ବରରେ ମୁଁ ମାଗଡ଼ାଲେନ୍‌ଠାରେ ଡିମାଇସିପ୍ ପାଇଁ ଚେଷ୍ଟା କରିବାକୁ ଅକ୍‌ସଫୋର୍ଡ଼ ଯାଏ ଚାଲିଗଲି । ମୁଁ ତାହା ପାଇଲି ନାହିଁ, କିନ୍ତୁ ପ୍ରବେଶିକାର ନିକଟବର୍ତ୍ତୀ ରୂପେ ଚିହ୍ନିତ ହେଲି ଏବଂ କଲେଜ ମତେ ମାଟ୍ରିକ୍ୟୁଲେଟ କରିଦେବାପାଇଁ ପ୍ରସ୍ତାବ କଲେ । କିନ୍ତୁ ଏ ପ୍ରସ୍ତାବ ଗ୍ରହଣ ନ କରିବା ପାଇଁ ବାପାଙ୍କୁ କେତେକ ଉପଦେଶ ଦେଲେ ଓ ସେ କଥା ସେଇଠି ରହିଲା । ମୁଁ ମର୍‌ଚେଣ୍ଟ ଟେଲର୍ସରେ ମୋ ପଢ଼ାକୁ ଫେରିଗଲି । ସେଠାରେ ମୁଁ ବର୍ତ୍ତମାନ ହେଲି ମନିଟର ଏବଂ ଟେଲକୋଟ ପିନ୍ଧିବାର ଗୌରବମୟ ଅଧିକାର ପାଇଲି । ଯଦିଓ ଏହି ପୋଷାକ ବର୍ତ୍ତମାନ ସାନ୍ଧ୍ୟ ପୋଷାକ ଭାବରେ ପିନ୍ଧାଯାଏ, କିନ୍ତୁ ୧୮୫୪ରେ ଦିନବେଳା ମଧ କମ୍‌ଲୋକ ଏହା ପିନ୍ଧୁ ନ ଥିଲେ ।

ଜେଜେଙ୍କ ଦାନରେ ପିଅରସନ୍‌ର ଅବସ୍ଥା ସ୍ୱଚ୍ଛଳ ଥିଲା । ବର୍ଷକୁ ସେ ପ୍ରାୟ ୭୦୦ ପାଉଣ୍ଡ ପାଉଥିଲା । ସୈନ୍ୟବାହିନୀରେ ଯୋଗ ଦେବାପାଇଁ ସେ ନିର୍ବାଚିତ ହୋଇ ସାଣ୍ଡହର୍ଷ୍ଟକୁ ପଠାଗଲା । ଉଇଲି ୧୮୫୫ରେ ସୈନ୍ୟବାହିନୀରେ ପ୍ରବେଶ କଲା ଏବଂ ଏଚ୍.ଏମ୍.ଏସ୍. ଆରୋଗାଣ୍ଟ ଜାହାଜରେ ମିଡ଼ସିପ୍‌ମ୍ୟାନ ଭାବରେ ସମୁଦ୍ରକୁ ଗଲା । ଏହି ଜାହାଜର କମାଣ୍ଡର ଉଇଲି ପ୍ରତି ଖୁବ୍ ସଦୟ ଥିଲେ । ଫ୍ଲାଇଙ୍ଗ ସ୍କ୍ୱାଡ଼ର ଅନ୍ତର୍ଭୁକ୍ତ ହୋଇ ଆରୋଗାଣ୍ଟ କ୍ରିମିଆ ଯୁଦ୍ଧରେ ଯୋଗ ଦେଇଥିଲା । ସ୍ୱର୍ଗତ ଗ୍ରୀଅରିଙ୍କ ବଡ଼ପୁଅ ହେନେରୀ ଗ୍ରୀଅରି ସେତିକିବେଳେ ଯୁଦ୍ଧକ୍ଷେତ୍ରରେ ଭୂଇଁତଳ ଛାଉଣୀରେ ଥିଲା । ଦ୍ୱିତୀୟ ପୁଅ ଆଲଫ୍ରେଡ଼୍‌କୁ ମଧ ଗଣ୍ଡଗୋଳିଆ ଅବସ୍ଥାରେ ଥିବା କମିସାରିଆଟ ବିଭାଗକୁ ସାହାଯ୍ୟ କରିବା ପାଇଁ ବାଲାକ୍ଲାଭାକୁ ପଠାଯାଇଥିଲା । ତେଣୁ ଆମେ ଯେତେବେଳେ ପୁଣି ପୁଟନି ଯିବା ଆରମ୍ଭ କଲୁ, ଆମେ ଓ ଗ୍ରୀଅରି ପରିବାର ଉଭୟେ ଯୁଦ୍ଧସ୍ଥଳର ସମ୍ବାଦରେ ଆଗ୍ରହୀ ଥିଲୁ । ଯୁଦ୍ଧର ପ୍ରତ୍ୟେକ ସ୍ତରକୁ ଆମେ ଉତ୍କଣ୍ଠାର ସହ ଅପେକ୍ଷା କରୁଥିଲୁ, ବିଶେଷକରି ଅତି ଜଡ଼ଶୀତ ସମୟରେ ଆମର ସୈନ୍ୟମାନେ

ସେତେବେଳେ ବରଫରେ ଜଡ଼ିଯାଇ ଭୋକରେ ମରୁଥାଆନ୍ତି । ଉଭୟ ପରିବାରର ଏହି ସାଧାରଣ ସ୍ୱାର୍ଥ ଫଳରେ ଆମେ ପ୍ଲୁଟ୍‌ନିକୁ ଅନେକ ସମୟରେ ଗଲୁ ଏବଂ ଏଲେନ ପ୍ରତି ମୋର ପ୍ରେମ ଧୀରେ କିନ୍ତୁ ଦୃଢ଼ ଭାବରେ ବଢ଼ିଲା । ଏକାଠି ଅନେକ ବାଟ ବୁଲାବୁଲି କରିବା ଫଳରେ ଜାଣିଲୁ ଯେ ଆମର ଆଗ୍ରହ ଓ ରୁଚି ପ୍ରାୟ ସମାନ । ସେ ମୋଠାରୁ ତିନିବର୍ଷଯାଏ ବଡ଼, କିନ୍ତୁ ସେଥିରେ କିଛି ବାଧା ନ ଥିଲା । ସେ ଯୁଗରେ ମଧ୍ୟ ସେ ଯେ, ଶିକ୍ଷାଦୀକ୍ଷା ପ୍ରତି ଆଗ୍ରହୀ ଥିଲା ସେଥିରେ ବାପା ସନ୍ତୁଷ୍ଟ ଥିଲେ । ବାପା ତାକୁ କେତେକ ବହି ଦେଲେ ଏବଂ ଯେଉଁ ଅସରନ୍ତି ବକ୍ତୃତା ଦେବାକୁ ସେ ଭଲପାଆନ୍ତି ସେଥିରୁ ଅନେକ ତାକୁ ଶୁଣାଇଲେ ।

ଏହି ସମୟରେ ବାପା ଓ ତାଙ୍କ ବନ୍ଧୁ ଚାର୍ଲସ୍ କିଙ୍ଗସଲି ଶ୍ରମିକମାନଙ୍କ ଅବସ୍ଥା ସମ୍ପର୍କରେ ଆଗ୍ରହୀ ଥିଲେ ଏବଂ ନିଜକୁ ନବ-ଲାଲ ଚରମପନ୍ଥୀ ବୋଲି କହୁଥିଲେ । କିଙ୍ଗସଲିଙ୍କ ଲିଖିତ 'ଆଲଟନ ଲକ୍' ଉପନ୍ୟାସର ଅନେକ ଚରିତ୍ରର ସେ ସମୟରେ ବାପାଙ୍କ ଗିର୍ଜାଞ୍ଚଳବାସୀ ଦରଜି ଓ ଚମାର କାମ କରୁଥିବା ଅନେକ ଚରିତ୍ର ସହ ସାମ୍ୟଥିବା ପରି ମନେହୁଏ ।

ବାପା ମୋ ସହ କେତେକ ଅବରୁଦ୍ଧ, ଦୁର୍ଗନ୍ଧପୂର୍ଣ୍ଣ ଘରକୁ ଯାଉଥିଲେ । ସେ ଲୋକେ ନାସ୍ତିକ ଓ ଚରମପନ୍ଥୀ ପରି ଜଣାଯାଉଥିଲେ । ବାପା ସେମାନଙ୍କ ମଧ୍ୟରୁ କେତେକଙ୍କ ମତ ପରିବର୍ତ୍ତନ କରିପାରିଥିଲେ ଏବଂ ମାର୍ସାଲ ଷ୍ଟ୍ରିଟ୍‌ରେ ଥିବା ଛୋଟ ଅପରିଷ୍କାର ଗୃହକୁ ସେମାନେ ଆସୁଥିଲେ ରବିବାସରୀୟ ସନ୍ଧ୍ୟାରେ ତାଙ୍କ ଧର୍ମବାଣୀ ସମ୍ପର୍କୀୟ ବକ୍ତୃତା ଶୁଣିବାକୁ । ମୁଁ ସର୍ବଦା ତାଙ୍କ ସଙ୍ଗରେ ଯାଉଥିଲି ଏବଂ ତାହା ଶୁଣିବାକୁ ଭଲପାଉଥିଲି । ତାଙ୍କର ଲିଖିତ ବାଣୀସବୁ ବିସ୍ତୃତ ଓ ଗଭୀର ଭାବମୟ ଏବଂ ମନରୁ ଦେଉଥିବା ବକ୍ତୃତାଗୁଡ଼ିକ ଅଦ୍ଭୁତ ବାଗ୍ମିତାପୂର୍ଣ୍ଣ ଓ ମନୋହର । ଶେଷକୁ ସେ 'ରୁକେରିଜ୍ ଅଫ୍ ଲଣ୍ଡନ' ନାମରେ ଏକ ବହି ଲେଖିଲେ— ରୁକେରିଜ ହେଉଛି ଅତି ଦରିଦ୍ର ନିବାସ ପାଇଁ ବ୍ୟବହୃତ ଏକ ଇତର ଶବ୍ଦ । ଏଇ ସ୍ଥାନମାନଙ୍କରେ କୌଣସି ପ୍ରକାର ସ୍ୱାସ୍ଥ୍ୟ ଓ ସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ନ ଦେଇ ମଣିଷମାନଙ୍କୁ ପଶୁପରି ଏକତ୍ର ରଖାଯାଏ । ବହିଟି ଆଦୃତ ହୋଇ ଦ୍ୱିତୀୟ ସଂସ୍କରଣ ହୋଇଥିଲା । ଏହି ସମୟରେ କେତେକ ତରୁଣ, ଜମିଦାର ଓ ଯାଜକ ମିଶି ଶ୍ରମିକ ଉନ୍ନୟନ ସମିତି ଗଠନ କଲେ । ସେମାନେ 'ଉନ୍ନତତର ଭବିଷ୍ୟତ' ନାମରେ ଅନେକ ପ୍ରବନ୍ଧ ଲେଖିଲେ । ସେଥିରେ ବାପା ମଧ୍ୟ ଲେଖି ବହିଟିକୁ ସଙ୍କଳନ କରିଥିଲେ । ସେ ଏହି ସମିତିର ସମ୍ପାଦକ ଥିଲେ ଏବଂ ସଭାପତି ଲର୍ଡ଼ ଇଙ୍ଗେସକ୍ରେଙ୍କ ସହ ଲଣ୍ଡନର ଅତି କଦର୍ଯ୍ୟ ବସ୍ତିସବୁ ବୁଲି ଦେଖିଲେ । ବେଳେ ବେଳେ ମୁଁ ବାପାଙ୍କ ସାଙ୍ଗରେ ଯାଇ ଜୀବନର ଏଇ ବୀଭତ୍ସ ରୂପ ଦେଖିଲି । ସମିତିର ଶ୍ରମରେ ଆଦର୍ଶ ବାସଗୃହ, ବିରାଟ କୋଠା, ଭୋଜିଭାତ ଓ ଖବରକାଗଜ ପ୍ରଚାର ବହୁତ ହେଲା । ତା'ପରେ ସେଇ ଯୁବକ ସାମନ୍ତଗଣ ଏଥିରୁ ଆସକ୍ତି ହରାଇ ଅନ୍ୟ କୌଣସି ନୂଆ ଖେଳନାର ସନ୍ଧାନ କଲେ । ଏହି ସବୁ ବଡ଼ଲୋକଙ୍କ ସହ ସମ୍ପୃକ୍ତ ହେଲେ ତାଙ୍କର କିଛି ମଙ୍ଗଳ ହେବ ବୋଲି ବାପା ଆଶା କରିଥିଲେ, କିନ୍ତୁ ଏହି ଆଗ୍ରହ ଉତ୍କଣ୍ଠା କମିଯିବା ପରେ ସେମାନେ ତାଙ୍କୁ ପୂରା ଭୁଲିଗଲେ ।

୧୮୫୫ ନଭେମ୍ବରରେ ବାପା ଓ ପ୍ରଧାନଶିକ୍ଷକଙ୍କ ପ୍ରେରଣାରେ ବିଲିଓଲି ବୃତ୍ତି ପାଇଁ ମୁଁ ପୁଣି ଅକ୍‌ସଫୋର୍ଡ଼ ଯାଇ ନିରାଶ ହେଲି । ସେ ସମୟର ଦ୍ୱିଧାଗ୍ରସ୍ତ ଜୀବନରେ ମୋର

ବିଦ୍ୟାଳୟ କାମରେ ସ୍ଥିରତା ରହୁ ନ ଥିଲା । ଘରେ ବାପାଙ୍କଠାରୁ ଓ ତାଙ୍କ ତତ୍ତ୍ୱାବଧାନରେ ବ୍ୟକ୍ତିଗତ ଭାବରେ ବହିପତ୍ର ପଢ଼ି ଯେଉଁ ଶିକ୍ଷା ଓ ଜ୍ଞାନ ପାଉଥିଲି, ତାହା ମୋତେ ଯେଉଁ ପ୍ରଶସ୍ତ ଓ ବାସ୍ତବ ଦୁନିଆକୁ ନେଇଥିଲା, ତାହା ବିଦ୍ୟାଳୟ ନିର୍ଘଣ୍ଟର ସଂକୀର୍ଣ୍ଣତା ମଧ୍ୟରେ ଅକଳ୍ପନୀୟ । ରାତିରେ ବାପାଙ୍କ ପାଖରେ ବିଜ୍ଞ ଓ ପ୍ରସିଦ୍ଧ ବ୍ୟକ୍ତିମାନେ ରୁଣ୍ଡ ହୁଅନ୍ତି । ସେମାନେ ପୁରାତନ ଓ ଆଧୁନିକ ଇତିହାସ, ରାଜନୀତି, ଧର୍ମ, କଳା, ରୀତିନୀତି, ସମାଜ— ସବୁକିଛି ବିଷୟରେ କରୁଥିବା ଆଲୋଚନା ମୁଁ ଆଗ୍ରହରେ ଶୁଣୁଥିଲି । ଦିନବେଳା ଗ୍ରୀକ୍ ଓ ଲାଟିନ୍‌ର ନୀରସତା ମଧ୍ୟରେ ମୁଁ ବାନ୍ଧି ହୋଇପଡ଼େ । ଏହିବର୍ଷ ଲମ୍ବା ଛୁଟି ସମୟରେ ବାପା ଏଲେନ୍ ଗ୍ରୀଅରିକୁ ବାସ୍‌ଲେକୁ ନିମନ୍ତ୍ରଣ କଲେ । ସେ ଓ ମୁଁ ପଲ୍ଲୀ ଓ ବନାଞ୍ଚଳରେ ଗାଡ଼ିରେ ବୁଲି ସବୁ କିଛି ସାମ୍ଭାବ୍ୟ ବିଷୟରେ ଅସରନ୍ତି କଥା ଗପ କରୁଥିଲୁ ଓ ଭବିଷ୍ୟତ ପାଇଁ ଆଶାର ସୌଧ ତୋଳୁଥିଲୁ । ସେଇ ଆନନ୍ଦର ଦିନଗୁଡ଼ିକରେ ଆମେ ପରସ୍ପର ପ୍ରତି ଆକର୍ଷିତ ହେଉଥିଲୁ । ବର୍ତ୍ତମାନ ଆଶାତୀତ ଭାବରେ ମୋ ଜୀବନର ଗତିପଥ ବଦଳିଗଲା । ପୂର୍ବପରି ବାସଲେରେ ମୁଁ ବଡ଼ଦିନ ଛୁଟି କଟାଉଥିବା ବେଳେ ୧୮୫୬ ଜାନୁୟାରୀ ୧୨ ତାରିଖ ଦିନ ସକାଳ ଡାକରେ ଲଣ୍ଡନରୁ ବାପାଙ୍କ ନିକଟରୁ ଖଣ୍ଡେ ପତ୍ର ପାଇଲି । ସେଥିରେ ଡା. ହେସିଙ୍କର ଖଣ୍ଡେ ପତ୍ର ସଂଯୁକ୍ତ ଥିଲା । ଏଥିରେ ଲେଖାଥିଲା ଯେ ଶ୍ରୀ ଜେ.ପି.ଉଇଲୋବି, ଇଷ୍ଟଇଣ୍ଡିଆ କମ୍ପାନୀର ଡିରେକ୍ଟର, ଭାରତୀୟ ସିଭିଲ୍ ସଂସ୍ଥା ପାଇଁ ଜଣେ ଲୋକ ମନୋନୀତ କରିବେ ଏବଂ ସେ ମରଚେଣ୍ଟ ଟେଲର୍ସର ଜଣେ ପୁରାତନ ଛାତ୍ର ହୋଇଥିବାରୁ ସେହି ବିଦ୍ୟାଳୟକୁ ଯାଇ ପ୍ରଧାନ ଶିକ୍ଷକଙ୍କୁ ଜଣେ ପିଲା ବାଛିଦେବାକୁ କହିଛନ୍ତି ଏବଂ ସହୃଦୟ ବୃଦ୍ଧ ଡାକ୍ତର (ପ୍ରଧାନ ଶିକ୍ଷକ) ମତେ ଜଣେ 'ଅନିଶ୍ଚିତ ମନୋବୃତ୍ତି'ର ଯୁବକ ବୋଲି ଜାଣିଥିବାରୁ (ଯେପରି ସେ ଲେଖିଥିଲେ) ଏବଂ ଲାଟିନ୍ ଓ ଗ୍ରୀକ୍ ପାଠରେ ମୁଁ ସନ୍ତୁଷ୍ଟ ନ ଥିବାରୁ ମତେ ମନୋନୀତ କରିଥିଲେ । ମୁଁ ସେତେବେଳେ ୩ୟ ମନିଟର୍ ଥିଲି ଏବଂ ପ୍ରଥମ ଦୁଇଜଣ ସେଣ୍ଟ ଜନ୍ ବୃତ୍ତି ପାଇଥିଲେ । ୧୮୫୬ ଜୁନ୍ ପର୍ଯ୍ୟନ୍ତ ବିଦ୍ୟାଳୟରେ ରହିଥିଲେ ମୁଁ ମଧ୍ୟ ସେ ବୃତ୍ତି ପାଇଥାଆନ୍ତି । କିନ୍ତୁ ଡକ୍ଟର ଠିକ୍ ବିଚାର କରିଥିଲେ ଯେ ଭାରତକୁ ଯିବାକୁ ମୁଁ ଭଲପାଇବି । ଚିଠିଟି ମୋ ପାଖକୁ ପଠାଇଦେଇ ତାହା ଗ୍ରହଣ କରିବା ବିଷୟରେ ବାପା କିଛି କହି ନ ଥିଲେ ବରଂ ଓଲଟା କଥା କହିଥିଲେ । ମୋ ପାଇଁ ସଫଳ ଆଇନଜ୍ଞର ଜୀବନ ସେ ଇଚ୍ଛା କରୁଥିଲେ, ଯେଉଁଥିରେ ଜେଜେଙ୍କ ନାଁ'ର ସୁଯୋଗ ନିଆଯାଇପାରିବ ବୋଲି ସେ ଭାବୁଥିଲେ । ସେ କହୁଥିଲେ ଯେ ତାଙ୍କ ପିଲାଙ୍କ ବିନା ତାଙ୍କ ଜୀବନ ନିଃସଙ୍ଗ ହୋଇଯିବ; କିନ୍ତୁ ଏତେ ସୁନ୍ଦର ସୁଯୋଗ ଛାଡ଼ିଦେବାକୁ ସେ ମୋତେ ଉପଦେଶ ଦେଇ ନ ଥିଲେ— ଅବଶ୍ୟ ଜଳବାୟୁ ପ୍ରତିକୂଳ ନ ହେଲେ । ଆମକୁ ଅର୍ଦ୍ଧଭୁକ୍ତ ରଖିବାରେ ବାପାଙ୍କ ପନ୍ଥା ଏବଂ ଅନ୍ୟ କିଛି କାରଣ ପାଇଁ ଆମକୁ ଝାଡ଼ା ପରିଷ୍କାର କରିବା ଔଷଧ ଦେବାରେ ମାଙ୍କ ଆଗ୍ରହ ଫଳରେ ଆମ ସମସ୍ତଙ୍କର, ବିଶେଷ କରି ମୋର ସ୍ୱାସ୍ଥ୍ୟ ଆଦୌ ଭଲ ନ ଥିଲା ଏବଂ ଏବଂ ବାପା ଥରେ ଦୁଇଥର ମୋ ପାଇଁ ଖୁବ୍ ଉତ୍କଣ୍ଠିତ ହୋଇ ପଡ଼ିଥିଲେ; କିନ୍ତୁ ଅଠରବର୍ଷ ବୟସରେ କେହି ନିଜ ସ୍ୱାସ୍ଥ୍ୟପାଇଁ ଚିନ୍ତା କରେ ନାହିଁ । ପରଦିନ ପ୍ରବେଶିକା ପରୀକ୍ଷା ଥିଲା । ମୁହୂର୍ତ୍ତେ ଦ୍ୱିଧା ନ କରି ମୁଁ ପରବର୍ତ୍ତୀ ଏକ୍‌ସପ୍ରେସ୍‌ରେ ଲଣ୍ଡନ ଆସିଲି ଏବଂ ପର ସୋମବାର ଇଣ୍ଡିଆ ହାଉସଠାରେ ଅନ୍ୟ ଛ'ଜଣଙ୍କ ସହ ଯେଉଁ

ପରୀକ୍ଷା ଦେଲି, ତା' ମୋ ପାଇଁ ଖୁବ୍ ସହଜ ଥିଲା । କିଛି ଲାଟିନ୍, ଗ୍ରୀକ୍ ଏବଂ ଗଣିତ ବୀଜଗଣିତ, ଜ୍ୟାମିତି ଓ ଇତିହାସ ପ୍ରଭୃତିର କେତେ ସହଜ ପ୍ରଶ୍ନରେ ପାସ୍ କରିବା କାହା ପକ୍ଷରେ କଷ୍ଟକର ହେଲାନି । ତା'ପରେ ଡିରେକ୍ଟରମାନଙ୍କ ଆଗରେ ଏକ ବିରାଟ ସୁସଜ୍ଜିତ କାଉନସିଲ୍ ରୁମରେ ଆମକୁ ଉପସ୍ଥାପିତ କରାଗଲା ଏବଂ ଚେୟାରମ୍ୟାନ କୋଲନେଲ୍ ସାଇକସ୍‌ଙ୍କ ବକ୍ତୃତା ପରେ ହାଲିବରୀ କଲେଜର ଛାତ୍ରଭାବେ ଆମକୁ ଗ୍ରହଣ କରାଗଲା । ଜୀବନର ଗତିପଥ ଏତେ ଶୀଘ୍ର ପରିବର୍ତ୍ତିତ ଓ କର୍ମପନ୍ଥା ଆଶାତୀତଭାବେ ଉନ୍ମୁକ୍ତ ହୋଇଯିବାରେ ଯେ କେହି ଆଶ୍ଚର୍ଯ୍ୟ ଚକିତ ହୋଇଯା'ନ୍ତା; କିନ୍ତୁ ସେତେବେଳେ ମୁଁ ହୋଇନଥିଲି । ତା'ର କାରଣ ବୋଧହୁଏ ଏପରି ରୋମାଞ୍ଚକର ଘଟଣା ଠିକ୍ ସମୟରେ ଆମକୁ ଜଣାଯାଏ ନାହିଁ, ସମୟ ଗଡ଼ିନଯିବାଯାଏ ସେ ବିଷୟ ଚିନ୍ତା କରିହୁଏ ନାହିଁ । ବନ୍ଧୁମାନଙ୍କର ସମସ୍ତ ଅଭିନନ୍ଦନକୁ ମୁଁ ଶାନ୍ତଭାବରେ ଗ୍ରହଣ କଲି । ମୋ ପାଇଁ ସବୁଠୁ ଅଧିକ ସନ୍ତୋଷର କଥା ଥିଲା ଯେ ମୁଁ ଏଲେନ୍‌କୁ ବିବାହ କରିପାରିବି, ଯାହାପାଇଁ କିଛିଦିନ ହେବ ମୁଁ ଗଭୀର ଆକର୍ଷଣ ଅନୁଭବ କରୁଥିଲି ।

ପରବର୍ତ୍ତୀ କେତେଦିନ ସଜବାଜରେ ଚାଲିଗଲା । ମୁଁ ପୁଟ୍‌ନି ଗଲି । ଏଲେନ୍ ଓ ମୁଁ ଚିଠି ଦିଆନିଆ ପାଇଁ ସମ୍ମତ ହେଲୁ । ଯଦିଓ ସେ ପର୍ଯ୍ୟନ୍ତ ପ୍ରେମ ସମ୍ପର୍କୀୟ କୌଣସି କଥାବାର୍ତ୍ତା ଆମ ମଧ୍ୟରେ ହୋଇ ନ ଥିଲା ଏବଂ ଆମ ପତ୍ରାଳାପ ସବୁ ନମ୍ର ସାହିତ୍ୟିକ ରୁଚିରେ ସୀମିତ ଥିଲା, ତଥାପି ମୁଁ ମନେକରେ କୌଣସି ଅବର୍ଣ୍ଣନୀୟ ଭାଷାରେ ଆମେ ପରସ୍ପରକୁ ଜାଣିସାରିଥିଲୁ ।

୧୮୫୬ ଜାନୁୟାରୀ ୨୧ରେ ମୁଁ ନୂଆ ଜୀବନ ଆରମ୍ଭ କଲି । ମରଚାଣ୍ଟ ଟେଲର୍ସର ସହପାଠୀ ଅରଥର୍ ଓ ଫିଲିପ୍ ମଧ ତାଙ୍କ ବାପାଙ୍କ ବନ୍ଧୁ ସାର୍ ଜେମସ୍ ହଗସ୍‌ଙ୍କ ଦ୍ୱାରା ମନୋନୀତ ହୋଇ ସେଠାକୁ ଯାଇଥିଲେ ଏବଂ ସେଠାରେ ଅନ୍ୟ କାହା ସହ ପରିଚୟ ନ ଥିବାରୁ କିଛିଦିନ ସେମାନେ ମୋର ପ୍ରଧାନ ସହଚର ହୋଇଥିଲେ । ହେଲିବରୀ କଲେଜଟି ଲଣ୍ଡନରୁ ୨୧ ମାଇଲ ଦୂର ହାଟଫୋର୍ଡ଼ ସାୟାରରେ ଅବସ୍ଥିତ । ହଳଦିଆ ଇଟାରେ ତିଆରି ମାମୁଲି ଧରଣର ମଳିନ ଚତୁଷ୍କୋଣାକାର କୋଠାଟିଏ । ଆଗରେ ଗୋଟିଏ ବଡ଼ ପୁସ୍ତକାଗାର ଏବଂ ତାକୁ ଘେରିରହିଛି ପ୍ରାର୍ଥନାଗୃହ, ଭୋଜନାଳୟ । ବାହାରପଟେ ଦେଖାଯାଏ ପାର୍କଟିଏ । ତା'ର ସମ୍ମୁଖଭାଗରେ ଜକ୍‌ନୀ ଗ୍ରୀସୀୟ ଶୈଳୀରେ ସ୍ତମ୍ଭସହ ପୋଟିକୋ ହୋଇ ସେଥିରୁ ଧଳାପଥରର ରାସ୍ତା ବାହାରିଯାଇଛି । ସମସ୍ତ କୁତ୍ସିତତା ସତ୍ତ୍ୱେ ଏହା ଥିଲା ଆରାମପ୍ରଦ । ଆମ କୋଠରିସବୁ ସେଇ ଚତୁଷ୍କୋଣର ତିନି ଅଂଶ ଅଧିକାର କରିଥିଲା । ପ୍ରତ୍ୟେକ ବ୍ୟକ୍ତିପାଇଁ ଛୋଟ ଉଷୁମ ଘରଟିଏ । ତା' ସହ ଲାଗିଥାଏ ଅନ୍ୟ ଏକ କ୍ଷୁଦ୍ର ପ୍ରକୋଷ୍ଠ ଶଯ୍ୟାପାଇଁ ଏବଂ ଅନ୍ୟ ଏକ ଘର ପୋଷାକ ପିନ୍ଧିବା ପାଇଁ ବ୍ୟବହୃତ ହେଉଥିଲା । ଆମ ଘରର ଆସବାବପତ୍ର ଆମେ ନିଜେ ସଂଗ୍ରହ କରୁଥିଲୁ ଏବଂ କେତେଜଣ ଏଥିରେ ଅନେକ ଖର୍ଚ୍ଚ କରିପକାଉଥିଲେ । ସେଠାରେ କ୍ରିକେଟ, ଫୁଟବଲ ପଡ଼ିଆ ଓ ରାକେଟ୍ କୋଟ୍ ଥିଲା । ମାଇଲିଏ ଦୂରରେ ହାଉସଠାରେ ଲି ନଦୀରେ ଆମର ନୌକାସବୁ ଥିଲା । ଘର ଭିତରର ଆମୋଦ ପାଇଁ ପଢ଼ାଘର ଓ କସରତ

ଘର ଥିଲା । ନିକଟରେ ହାଟଫୋର୍ଡ଼ ହିଥ୍ ଉପରେ ଧାଡ଼ି ଧାଡ଼ି କୁଟୀର ଥିବା ହେଲି ଗ୍ରାମ । ସେଠି ଥିଲା ଆମ ଭୃତ୍ୟମାନଙ୍କ ବସତି । କଲେଜଟି ଥିଲା ଗୋଟିଏ ତ୍ରିକୋଣଭୂମି ମଝିରେ, ଯାହାର ଗୋଟିଏ ବାହୁ କର୍ମଚଞ୍ଚଳ, ଆନନ୍ଦୋତ୍‌ଫୁଲ୍ଲ ଓ ମନୋରମ ହାଟ୍‌ଫୋର୍ଡ଼, ଅନ୍ୟଟି ଅପରିଷ୍କାର ଦୁର୍ଗନ୍ଧମୟ ଓ କୁଖ୍ୟାତ ଓୟାର ଏବଂ ତୃତୀୟଟି ଉନ୍ମୁକ୍ତ, ପରିଷ୍କାର ଓ ନିସ୍ତବ୍ଧ ହୋଡ଼େସଡ଼ନ୍ । ଏଇଠାରୁ ରେଲଷ୍ଟେସନ ମାଇଲିଏ ଦୂର ବୋକ୍‌ସବୋର୍ଣ୍ଣଠାରେ । ଚତୁର୍ଦ୍ଦିଗର ଅଞ୍ଚଳ ସବୁଜ ଓ ତରଙ୍ଗାୟିତ; ଗୋଟିଏ ପଟେ ହାଟଫିଲ୍‌ଡର ବୁଦାଳିଆ ଜଙ୍ଗଲ, ଅନ୍ୟ ପଟେ ଲିଓଷ୍ଟ ନଦୀତଟସ୍ଥ ମନୋରମ ତୃଣଭୂମି । ଅଧ୍ୟାପକମାନେ ଚତୁଷ୍କୋଣର କଡ଼ରେ ଥିବା ଘରମାନଙ୍କରେ ରହନ୍ତି । ଅଧକ୍ଷ ରେଭରେଣ୍ଡ ହେନରୀ ମେଲଭିଲ୍ ଥିଲେ ତତ୍‌କାଳୀନ ଲୋକପ୍ରିୟ ବାଗ୍ମୀ ଧର୍ମପ୍ରଚାରକ । ଲଣ୍ଡନରେ ତାଙ୍କୁ ଶୁଣିବାପାଇଁ ଖୁବ୍ ଜନଗହଳି ହେଉଥିଲା । ତାଙ୍କୁ ଶୁଣିବାକୁ ହେଲେ ମନଧ୍ୟାନ ଦେବାକୁ ପଡୁଥିଲା । ସେ କହୁଥିଲାବେଳେ ବିରାଟ ଶ୍ରୋତୃମଣ୍ଡଳୀ ନୀରବ ରହୁଥିଲେ ଏବଂ ଆହୁରି ଉଲ୍ଲେଖନୀୟ ଆଶ୍ଚର୍ଯ୍ୟ ହେଉଛି, ଯେତେବେଳେ ସେ ଅଟକି ଯାଉଥିଲେ, ଖଣ୍ଡିକାଶର ଏକ ବାତ୍ୟା ବୋହିଯାଉଥିଲା । ତା' ଅର୍ଥ ଶ୍ରୋତାମାନେ ଏପରି ରୁଦ୍ଧଶ୍ୱାସ ହୋଇ ଶୁଣୁଥିଲେ ଯେପରି ଗୋଟିଏ ଶବ୍ଦ ମଧ ଶୁଣିବାରୁ ବଞ୍ଚିତ ନ ହୁଅନ୍ତି । ସେ ଧୀର, ଶ୍ରୁତିମଧୁର ସ୍କଟୀୟ ଭଙ୍ଗୀରେ କହନ୍ତି ଯାହାକି ସେ ଇଚ୍ଛାକ୍ରମେ ବନ୍ଦ ବା ମନ୍ଥର କରିପାରୁଥିଲେ । ନିନ୍ଦାତ୍ମକ ବାକ୍ୟ ପ୍ରୟୋଗ କରୁଥିବାବେଳେ ସେ ତାଙ୍କ ଭାଷା ଉପରେ ଜୋର୍ ଦିଅନ୍ତି । ସେତେବେଳେ ତାଙ୍କ ସ୍ୱର ରୁକ୍ଷ ଓ କର୍କଶ, କିନ୍ତୁ ବିପରୀତ ଭାବ ପ୍ରକାଶ ବେଳେ ସ୍ୱର କୋମଳ, ସାଙ୍ଗୀତିକ; ସ୍କଟୀୟ ଉଚ୍ଚାରଣର କୌଣସି ସତ୍ତା ସେଥିରେ ନ ଥାଏ । ଜଣେ ପୋଖତ ବକ୍ତାପରି ତାଙ୍କ ସ୍ୱର କିପରି ଭାବରେ ସହାୟକ ମାଧ୍ୟମ ହୋଇପାରିବ, ତାହା ସେ ଜାଣିଥିଲେ ।

ସେ ଜଣେ ଦୀର୍ଘକାୟ ପତଳା ଲୋକ, ମୁହଁଟା ଅସ୍ୱାଭାବିକ ଭାବରେ ଗୋଲ, ନାକ ଛୋଟ ଓ ଚେପ୍‌ଟା; ଛୋଟ ଧଳାବାଳସବୁ ଗୋଲାକାର ମୁଣ୍ଡ ଉପରଟାଯାକ ଠିଆ ଠିଆ ହୋଇ ରହିଥାଏ । କିନ୍ତୁ ତାଙ୍କ ଦୃଷ୍ଟିଶକ୍ତି ଅନ୍ତର୍ଭେଦୀ ଏବଂ ରାଗିଗଲାବେଳେ ତାଙ୍କ ସ୍ୱର ଏପରି ପ୍ରତ୍ୟକ୍ଷ ବ୍ୟଙ୍ଗାତ୍ମକ ହୋଇପଡ଼େ ଯେ ହାଲିବରୀର ସବୁଠାରୁ ନିର୍ବୋଧ ଅଧମ ଲମ୍ପଟ ଅଳସୁଆକୁ ମଧ ତ୍ରସ୍ତ କରିଦେବ । ତାଙ୍କର ମୁହାଁମୁହିଁ ହେବା ସହଜ କଥା ନୁହେଁ । ରାଜନୀତିକ ଅର୍ଥଶାସ୍ତ୍ରର ଅଧ୍ୟାପକ ସାର୍ ଜେମସ୍ ଷ୍ଟିଫେନ ମଧ ଜଣେ ଉଲ୍ଲେଖଯୋଗ୍ୟ ବ୍ୟକ୍ତି । ସେହି ବିଶାଳ ବପୁଷ୍ମାନ୍, ମର୍ଯ୍ୟାଦାବନ୍ତ ପୁରୁଷ ସର୍ବଦା ନିଜକୁ ବଡ଼ ଓ ଆମ୍ଭମାନଙ୍କୁ ଅତ୍ୟନ୍ତ ଅଳସୁଆ, ଅପଦାର୍ଥ ଜ୍ଞାନ କରନ୍ତି । ଆମ ମଧ୍ୟରୁ ଅନେକ ଅବଶ୍ୟ ସେହିପରି । ସେ ତାଙ୍କ ବକ୍ତୃତା ଧୀର, ମାପଚୁପ ସ୍ୱରରେ, ଆଖି ବନ୍ଦ କରିଦିଅନ୍ତି— ଘୁଷୁରି ଆଗରେ ମୁକ୍ତା ଥୋଇଲା ପରି । ସଂସ୍କୃତ ଶିକ୍ଷକ ମୋନିର ଉଇଲିଅମ୍ ଅନ୍ଧ କଳା, ଉଗ୍ର ସ୍ୱଭାବର, କିନ୍ତୁ ଜଣେ ପ୍ରସିଦ୍ଧ ଜ୍ଞାନୀବ୍ୟକ୍ତି । କଲେଜର ଡିନ୍ ରେଭ୍.ଜେ. ବକ୍‌ଲେ ଜଣେ ଉଚ୍ଚ ସ୍ତରର ପଣ୍ଡିତ ଏବଂ ଦୁଷ୍ପ୍ରାପ୍ୟ ପୁସ୍ତକ ସଂଗ୍ରହରେ ପାଗଳ । ଉଚ୍ଚାଙ୍ଗ ସାହିତ୍ୟ ପଢ଼ାଗଲା ବେଳେ ସେ ଆମ ସହ ଖେଳନ୍ତି । କ୍ୟାମ୍ବ୍ରିଜର କୃତୀ ଛାତ୍ର ଓ ପରେ ଧର୍ମଯାଜକ ହୋଇଥିବା ରେଭ୍.ଜେ.ଡବ୍‌ଲ୍ୟୁ ହିବିସାଇଡ଼୍ ମଧ ଗଣିତ ପଢ଼ାଇଲାବେଳେ ସେଇଆ

କରନ୍ତି । ବମ୍ବେ ସୈନ୍ୟବାହିନୀର ଜଣେ ଅବସରପ୍ରାପ୍ତ ଅଫିସର ଇ.ବି.ଇଷ୍ଟଉଇଚ ହିନ୍ଦୁସ୍ଥାନୀ ଏବଂ ଅନ୍ୟ କେତେକ ଭାରତୀୟ ଭାଷା ପଢ଼ାଉଥିଲେ । ଜଣେ ବୃଦ୍ଧ ବାରିଷ୍ଟର ଜେ.ଏଫ୍.ଲିଥ୍ (କ୍ୟୁ.ସି.) ଆମକୁ ଆଇନଗତ କେତେକ ଜ୍ଞାନ ଦେବାପାଇଁ ବିଫଳ ପ୍ରୟାସ କରୁଥିଲେ ।

ହାଲିବରୀର ପାଠପଢ଼ା ଏକ ପ୍ରହସନ ହେଲେ ମଧ ତାହା ଥିଲା ଆମୋଦଦାୟକ ସ୍ଥାନ । ତୁମ ଇଚ୍ଛାମତେ ତୁମେ କମ୍ କିମ୍ବା ବେଶି ପଢ଼ିପାର । ପ୍ରକୃତରେ ପାଠ ପଢ଼ିବାର ସୁଯୋଗ ଅପେକ୍ଷା ପାଠ ନ ପଢ଼ିବାର ସୁଯୋଗ ସେଠାରେ ବେଶି ଥିଲା । ଅଧାପକମାନେ ବକ୍ତୃତା ଦିଅନ୍ତି ଏବଂ ସେମାନଙ୍କ ମଧରୁ ଜଣେ ଅଧେ ସେମାନଙ୍କ ଘରେ ଆମ ସହ ଆଲୋଚନା କରିବାର ସୁଯୋଗ ଦିଅନ୍ତି; କିନ୍ତୁ ଅଧିକାଂଶ ଭାଗ ଆମକୁ ଆମ କୋଠରିରେ ବସି ପଢ଼ିବା ଉପରେ ନିର୍ଭର କରିବାକୁ ପଡ଼େ । ଯେଉଁ ଅଳ୍ପକେତେକ 'ମାଟି କାମୁଡ଼ି ପଢ଼ନ୍ତି' ବା 'ଘୋଷାବଳଦ ହୁଅନ୍ତି' ବା 'ଝାଳନାଳ ହୁଅନ୍ତି' (ଏହିସବୁ ମଧୁର ବ୍ୟଞ୍ଜନାତ୍ମକ ପ୍ରୟୋଗ ଦ୍ୱାରା 'ପାଠପଢ଼ିବା' ବା 'କାମକରିବା' ଶବ୍ଦଗୁଡ଼ିକୁ ଏଡ଼େଇ ଦିଆହୁଏ) ସେମାନଙ୍କୁ ଅଧିକାଂଶ ବ୍ୟକ୍ତି ମେଳାପୀ; କିନ୍ତୁ ଅଯଥା କାମରେ ଆଗ୍ରହୀ ଓ ଅତି ଉଗ୍ରଧରଣର ଥଟ୍ଟାତାମସାର ଯୋଗ୍ୟ ବୋଲି ମନେକରନ୍ତି । ସେଠାରେ ଚାରିଭାଗରେ ବିଭକ୍ତ ହୋଇ ୮୦ ବା ୯୦ ପିଲା ଥିଲେ । ସମସ୍ତ ପାଠ୍ୟ ଦୁଇବର୍ଷ ଚାଲେ ଏବଂ ପ୍ରତ୍ୟେକଟି ବର୍ଷ ଦୁଇଭାଗରେ ବିଭକ୍ତ । ଜାନୁଯାରୀରୁ ଜୁନ୍ ଭାଗଟି ବଡ଼ ଓ ସେପ୍ଟେମ୍ବରରୁ ଡିସେମ୍ବରଟି ଛୋଟ ଭାଗ । ପ୍ରତିଯୋଗିତାମୂଳକ ପରୀକ୍ଷା ଦ୍ୱାରା ସିଭିଲ୍ ସଂସ୍ଥାକୁ ଲୋକ ନିଯୁକ୍ତି ହେବାରୁ ୧୮୫୭ ଡିସେମ୍ବରରେ କଲେଜଟି ବନ୍ଦ ହୋଇଯବା ସ୍ଥିର ହେଲା । ଫଳରେ ଏହାର ପିଲା ସଂଖ୍ୟା କମିଆସୁଥିଲା ଏବଂ ନୂଆ ପିଲା ନିଆହେଉ ନ ଥିଲା । ମୁଁ ଦ୍ୱିତୀୟ ଭାଗକୁ ଉତ୍ତୀର୍ଣ୍ଣ ହେବା ବେଳକୁ ଆଉ ପ୍ରଥମ ଭାଗ ରହିଲା ନାହିଁ । ଚତୁର୍ଥ ଭାଗ ଲୋକେ ପଢ଼ାସାରି ଭାରତକୁ ଚାଲିଗଲେ ଏବଂ ଆଉ ରହିଲେ ତିନୋଟି ଭାଗ ମାତ୍ର । ଏହିପରି ଚାଲିଲା । ଏହି ବ୍ୟକ୍ତିମାନଙ୍କ କିମ୍ବା 'ବାଳକମାନଙ୍କ' (କାରଣ ବକ୍ତୃତା ବେଳେ ଅତ୍ୟଧିକ ପାଟିତୁଣ୍ଡ ହେଲେ ମୋନିଅର ଉଇଲିୟମସ୍ ଘୃଣାରେ ଆମକୁ ସେହିପରି ଡାକନ୍ତି) ମଧରୁ ଅନେକ ଭାରତୀୟ ସିଭିଲ ବା ସାମରିକ ସଂସ୍ଥାର ସଭ୍ୟଙ୍କ ପୁଅ, ଭାରତରେ ଜନ୍ମହୋଇ ଶିକ୍ଷାପାଇଁ ଦେଶକୁ ଆସିଥାନ୍ତି । ଆଉ କେତେକ ଭାରତରେ ଥିବା ପରିବାର ସହ ସମ୍ପୃକ୍ତ । ତାହା ସତ୍ତ୍ୱେ ସେ ଦେଶ ସହ ଆମ ସମ୍ପର୍କର ସୂଚନା ଦେବାପାଇଁ ସେ ଅନୁଷ୍ଠାନ ବା ଆମ ବ୍ୟବହାରରେ କିଛି ହିଁ ବ୍ୟବସ୍ଥା ନ ଥିଲା । ଅଳ୍ପ କେତେକ ପ୍ରକୃତରେ ପରିଶ୍ରମ କରୁଥିବା ଲୋକଙ୍କ ଛଡ଼ା ଅନ୍ୟ କେହି ଭାରତ ବିଷୟରେ ଚିନ୍ତା ବା ଆଲୋଚନା କରୁ ନ ଥିଲେ ବା ଜାଣିବାର ଚେଷ୍ଟା ମଧ କରୁ ନ ଥିଲେ । ଇଂରେଜର ଏକ ବିଶିଷ୍ଟ ପ୍ରକୃତି ହେଉଛି, ନିଜ ବୃତ୍ତିସହ ସମ୍ପୃକ୍ତ ସମସ୍ତ ଜିନିଷକୁ ନିଜ ଦୃଷ୍ଟିପଥରୁ ଅଲଗା ରଖିବା । ଏଥିପାଇଁ ନୌବାହିନୀ ଅଫିସରମାନେ ଯେତେବେଳେ ଇଚ୍ଛା ସାଧାରଣ ପୋଷାକ ପିନ୍ଧନ୍ତି ଏବଂ ବୃତ୍ତିସହ ସମ୍ପୃକ୍ତ ସମସ୍ତ ଆଲୋଚନାକୁ 'କଥାକୁହା କାରଖାନା' କହି ବ୍ୟଙ୍ଗ କରନ୍ତି । ସେଇମାନେ ଭାରତ ସମ୍ପର୍କରେ ଆଲୋଚନାକୁ 'ମନ୍ଦ ଅଭ୍ୟାସ' ବୋଲି କହି, ଆମେ ସମସ୍ତେ ଯେ ଶୀଘ୍ର ସେଠାକୁ ଯାଉଛୁ ସେ ପ୍ରଶ୍ନ ଏଡ଼େଇ ଦିଅନ୍ତି । ପ୍ରାଚ୍ୟ ଭାଷାସବୁର ଶିକ୍ଷା ଏହି ଅନୁଷ୍ଠାନର ମୁଖ୍ୟ ଉଦ୍ଦେଶ୍ୟ ଏବଂ

ସେଇଥିପାଇଁ ହିଁ ଏହାର ସ୍ଥିତି । ସେ ସବୁ ଆମେ ଏପରି ଶିକ୍ଷା କରୁଥିଲୁ, ଯେପରିକି ସେ ଭାଷାଭାଷୀ ଦେଶ ପ୍ରତି ଆମର ବ୍ୟକ୍ତିଗତ ଆଗ୍ରହ ଆଦୌ ନାହିଁ । ଅଭ୍ୟାସ ଓ କଥାବାର୍ତ୍ତା ଦ୍ୱାରା ସେ ଭାଷାଗୁଡ଼ିକରେ ବ୍ୟାବହାରିକ ଦକ୍ଷତା ପାଇବା ପାଇଁ ଆମର ଚେଷ୍ଟା ଜମା ନ ଥିଲା । ଭାରତ କିପରି ଦେଶ ଓ ସେଠାରେ ଆମର କାମ ଓ ଭବିଷ୍ୟତ ଜୀବନ କିପରି ହେବ, ଏହା ଯଦି କେବେ କିଏ ଜାଣିବାକୁ ଇଚ୍ଛାକରେ ତ ସେ ବିଷୟରେ ସଠିକ ବିବରଣୀ ଦେବା କାହା ପକ୍ଷରେ ସମ୍ଭବ ନ ଥିଲା; ଯଦିଓ ଅଧ୍ୟାପକମାନଙ୍କ ମଧ୍ୟରୁ ତିନି ଜଣ ସେ ଦେଶରେ ଅନେକ ବର୍ଷ କଟାଇଥିଲେ । ଆମେ ଏତିକି ଜାଣିଥିଲୁ ଯେ, ସେ ଦେଶ 'ଭୟଙ୍କର ଗରମ', ସେଠି ନିଗ୍ରୋଗୁଡ଼ାକ ଅଛନ୍ତି ଏବଂ ସେଠାକୁ ଗଲେ ସେ ସବୁ ବିଷୟ ଚିନ୍ତା କରିବାପାଇଁ ସମୟ ମିଳିବ, ମାତ୍ର ଥରେ, ଆମର କଲେଜ ଜୀବନର ଶେଷ ଆଡ଼କୁ, ସାର୍ ଜେମସ୍ ଷ୍ଟିଫେନ୍‌ସ କାର୍ଯ୍ୟବ୍ୟସ୍ତ ରହି ବକ୍ତୃତା ପାଇଁ ପ୍ରସ୍ତୁତ ନ ଥିବାରୁ କିମ୍ବା କୌଣସି ଏକ ସାବୁନ ତିଆରି କଳାବାଲାର ସୌଭାଗ୍ୟ ସମ୍ପର୍କରେ (ଯାହାର ଦୁର୍ବିପାକକୁ ସେ ରାଜନୀତିକ ଅର୍ଥଶାସ୍ତ୍ର ବୋଲି କହନ୍ତି) ଦେଉଥିବା ବକ୍ତୃତା ସରିଯାଇଥିବାରୁ ସେ ପକେଟରୁ ଖଣ୍ଡେ ଚିଠି ଟାଣି ଆଣିଲେ । ତାହା ଉତ୍ତର-ପଶ୍ଚିମ ପ୍ରଦେଶର ସିଭିଲ୍ ସଂସ୍ଥାରେ ଥିବା ତାଙ୍କର ଜଣେ ବନ୍ଧୁଙ୍କଠାରୁ ସେହି ସମୟରେ ଆସି ପହଞ୍ଚିଥିଲା । ଘୁଷୁରି ଆଗରେ ମୁକ୍ତା ରୀତିରେ ସେ ଆଖି ଅଧା ମୁଦିଦେଇ ତାହା ଆମକୁ ପଢ଼ି ଶୁଣାଇଲେ । ଲେଖକ ତାଙ୍କ ପତ୍ରରେ ତାଙ୍କ ଦୈନନ୍ଦିନ ଜୀବନଧାରଣ ରୀତି ବର୍ଣ୍ଣନା କରିଥିଲେ ଯେଉଁଥିରେ ଆମେ ଅତିଶୀଘ୍ର ପ୍ରବେଶ କରିବାକୁ ଯାଉଥିଲୁ । ମୋତେ ଏହା ଖୁବ୍ ଭଲଲାଗିଲା । କିନ୍ତୁ ଦେଖିଲି, ମୋ ବନ୍ଧୁମାନେ 'ବୃଦ୍ଧ ଜିମ୍ମି'ଙ୍କର ନିଜ ବକ୍ତୃତା ଏଡ଼େଇ ଦେଇଯିବା ପାଇଁ ଏହା ଏକ ଛଳନା ବୋଲି ଏବଂ ବକ୍ତୃତା ଟିପା କାମ ଗୋଟାଏ କମାଇ ଦେବା ପାଇଁ ଏହା ଆବଶ୍ୟକ ଥିଲା ବୋଲି ମନେକଲେ ।

ହାଲିବରୀଠାରେ ଆମ ଚଳଣି ଏହିପରି ଥିଲା - ସକାଳ ପ୍ରାୟ ୭ଟାରେ ଜଣେ ବୃଦ୍ଧ ଶଯ୍ୟା ପ୍ରସ୍ତୁତକାରୀ ଆସି ନିଆଁ ଜଳାଇ ଚାଲିଯିବା ପରେ ଆସୁଥିଲା 'ସ୍କାଉଟ୍' ବା ସାହାଯ୍ୟକାରୀ, ଯେ କି ପାଣି କୁଣ୍ଡରେ ଥଣ୍ଡାପାଣି ଭରି କରୁଥିଲା, ସକାଳ ଭୋଜନ ପାଇଁ ଟେବୁଲ ସଜାଡୁଥିଲା, ବୁଟ୍ ସଫା କରୁଥିଲା ଏବଂ ଶୋଇଥିବା ଛାତ୍ରଙ୍କୁ ଉଠାଇବା ପାଇଁ ପାରୁପର୍ଯ୍ୟନ୍ତ ପାଟିଗୋଳ କରୁଥିଲା । ଆସ୍ତେ ଆସ୍ତେ ଆମେ ଉଠି, ପୋଷାକ, ଗାଉନ୍ ଓ ଟୋପି ପିନ୍ଧି ଆଠଟାବେଳେ ପ୍ରାର୍ଥନା ଗୃହକୁ ଯାଉଁ । ପ୍ରାର୍ଥନାକୁ ସକାଳବେଳା ଖୁବ୍ କମ୍ ଯାଆନ୍ତି । ଅଧ୍ୟାପକମାନେ ଓ ଅଳ୍ପ କେତେକ ଛାତ୍ର ମାତ୍ର ଠିକ୍ ସମୟରେ ଯାଆନ୍ତି । ଘଣ୍ଟି ବାଜିବା ମାତ୍ରେ ଅନିୟମିତ ଛାତ୍ରମାନେ ଠିକ୍ ପୋଷାକ ନ ପିନ୍ଧି, ଜୋତା ନ ମଡ଼ାଇ, ମୁଣ୍ଡ ନ କୁଣ୍ଡାଇ, ହୋହା ହୋଇ ପଶିଆସନ୍ତି । ସେମାନଙ୍କ ମଧ୍ୟରୁ ଅନେକ ଚପଲ ପିନ୍ଧି ଥାଆନ୍ତି, ଆଉ କେତେକ ଗୋଇଠି ପର୍ଯ୍ୟନ୍ତ ଲମ୍ବିଥିବା ଉପରକୋଟ ଗଳାଇଥାନ୍ତି । ସେଇଟା ସେ ସମୟର ରୁଚି ଥିଲା ଏବଂ ତାହାକୁ 'ନୋହାଙ୍କ ଜାହାଜ' କୁହାଯାଉଥିଲା । ତା' ତଳେ କେବଳ ରାତ୍ରିକାଳୀନ ସାର୍ଟଟି ହିଁ ରହୁଥିଲା । ସେମାନଙ୍କ ସମସ୍ତଙ୍କ ପରିଧାନ ବୋଲି ଥାଏ ଗୋଟାଏ ଛିଣ୍ଡା ଗାଉନ୍‌ର ଅଂଶବିଶେଷ ଓ ପୂର୍ବେ ଖାଦ୍ୟ ପରଷୁଣିର ଟୋପି ଥିବା ମେଞ୍ଚାଏ ଲୋଚାକୋଚା କନା । ଅନ୍ୟ କେତେକ ପଛୁଆ ଲୋକ

ଦ୍ୱିତୀୟ ଘଣ୍ଟି ଆରମ୍ଭ ହେବା ପର୍ଯ୍ୟନ୍ତ ଆସୁ ନ ଥାନ୍ତି । ତା' ପରେ ଦୁଆର ବନ୍ଦ ହୋଇ ପ୍ରବେଶ ମନା ହୋଇଯାଏ । ସପ୍ତାହରେ ତିନିଦିନ ପ୍ରାର୍ଥନା ଗୃହକୁ ଯିବା ବାଧ୍ୟତାମୂଳକ; ପ୍ରାର୍ଥନା ସମୟ ପୂରା ନ ଆସିଲେ ଦଣ୍ଡ ମିଳେ । ଦ୍ୱିତୀୟପାଠର ଆରମ୍ଭ ପରେ ଯେଉଁମାନେ ପ୍ରାର୍ଥନାଗୃହର ଦ୍ୱାର ପାଖରେ ପହଞ୍ଚନ୍ତି, ତାଙ୍କୁ ପ୍ରବେଶ ମିଳେ ନାହିଁ; କିନ୍ତୁ ଅଧାପ୍ରାର୍ଥନା ଉପସ୍ଥିତି ମିଳେ । ଅନେକ ସମୟରେ ପ୍ରଥମପାଠ ଚାଲିଥିବାବେଳେ ଏବଂ ନିସ୍ତବ୍ଧତା ବେଳେ, କେବଳ ପାଠକର ସ୍ୱର ଶୁଭୁଥିବା ବେଳେ ବାହାରୁ ଝରକାଟିଏ ଖୋଲିଯିବାର ଶବ୍ଦ ଶୁଭେ ଓ ଚିତ୍କାର ଶୁଭେ, ''ପୋପ୍, ପୋପ୍, ମୋତେ ଅଧା ପ୍ରାର୍ଥନା ଦେଇଦିଅନ୍ତୁ ।'' ଉତ୍ତରରେ ଦ୍ୱାରରକ୍ଷକ ପୋପ୍ ରୁକ୍ଷ ସ୍ୱରରେ କହନ୍ତି— ''ଖୁବ୍ ଦୁଃଖିତ ଶ୍ରୀ... ଦ୍ୱାରଆଡ଼କୁ ନ ଆସିଲେ ମୁଁ ତାହା କରିପାରିବି ନାହିଁ ।'' ଏହାପରେ ଖୁବ୍ ଅଭିଶାପ ବର୍ଷଣ ହୁଏ ଏବଂ ଝରକାକୁ ଖୁବ୍ ଜୋରରେ ବନ୍ଦ କରି ଦିଆହୁଏ । ପ୍ରାର୍ଥନା ପରେ ଅସଂଯତ ଲୋକମାନେ ଅଧ୍ୟକ୍ଷ ଓ ଅଧ୍ୟାପକମାନଙ୍କ ପ୍ରତି ଭୟ ହେତୁ ସେମାନଙ୍କ ଅବିନ୍ୟସ୍ତ ରୂପ ଘୋଡ଼ାଇବା ପାଇଁ ନିଜ ନିଜ କୋଠରି ଭିତରକୁ ପଶିଯାଆନ୍ତି । କୋଠରିରେ ଆମେ ଆମର ପ୍ରାତରାଶ ଦେଖୁ— ଚାହା କିମ୍ବା କଫି, ଅତି ସୁସ୍ୱାଦୁ ପାଉଁରୁଟି ଓ ଲହୁଣି, ଗରମ ରଖିବାପାଇଁ କୌଶଳର ସହ ଶଣ୍ଢୁଆଣିରେ ଧରି ନିଆଁ ଉମ୍‌ହେଇ ଉପରେ ରଖାଯାଇଥିବା ମାଂସଚପ୍ ବା ସୋଲ ମାଛ ତରକାରି କିମ୍ବା ସେହିପରି ଅନ୍ୟ କିଛି । ପ୍ରାତଃଭୋଜନର ସମାଗମଗୁଡ଼ାକ ଥିଲା ଅତି ପ୍ରିୟ ଏବଂ ଏଇଠାରେ ଛାତ୍ରମାନେ ସବୁପ୍ରକାର ବିଳାସ କରୁଥିଲେ, ସାଧାରଣତଃ ପାତ୍ରଭରା ବିଅର ବା କାରଲେଟ୍ ମଦ୍ୟରେ । ଯେଉଁମାନଙ୍କ କୋଠରି କଲେଜର ଅଙ୍ଗନକୁ ଦେଖାନଯାଏ, ସେମାନେ ଓହ୍ଲାଇ ଆସି ମୁହଁରେ ପାଇପ୍ ଧରି ବୁଲାବୁଲି କରୁଥିଲେ । ଏତିକିବେଳେ ହାଟଫୋର୍ଡ଼ରୁ ଅନେକ ଧନ୍ଦାର ଲୋକ ଆସି ସେଠାରେ ଭେଳାଭେଳା ହେଉଥିଲେ । ଦୁଇଜଣ ଦରଜି, ଜଣେ ବାରିକ ଓ ଆଉ କେତେକ ସେମାନଙ୍କ ନମୁନା ବହି ଓ ଥଳି ଧରି ଅଗଣାରେ ବୁଲୁଥିଲେ ଏବଂ ଅର୍ଡ଼ର ନେଉଥିଲାବେଳେ ବହୁଦିନର ଅଭ୍ୟାସବଶରୁ ବହୁପ୍ରକାର ତୁଚ୍ଛ ଓ ନୀଚ ଧରଣର ଥଟ୍ଟା ତାମସା କରୁଥିଲେ । ବେଳେ ବେଳେ ଅପମାନଜନକ ଭାବରେ ଥଟ୍ଟା କରୁଥିବା ବ୍ୟକ୍ତିକୁ ଚାତୁର୍ଯ୍ୟପୂର୍ଣ୍ଣ ପ୍ରତ୍ୟୁତ୍ତରରେ ସାବାଡ଼୍ କରିଦିଆହେଉଥିଲା ।

ଦଶଟାବେଳେ ଅଧ୍ୟାପନା ପାଇଁ ପ୍ରଥମ ଘଣ୍ଟି ବାଜୁଥିଲା । ବାରଟା, ଦିନେ ଦିନେ ଗୋଟାଏ ଯାଏ ବକ୍ତୃତା ଚାଲେ । ହାଟ୍‌ଫୋଡ଼୍‌ର ଦୁଇଜଣ ବହିବ୍ୟବସାୟୀ ଜଡ଼ପଟ ଘରେ ଦୋକାନ ଦେଇଥାନ୍ତି ଯେଉଁଠି ବିଭିନ୍ନ ବିଷୟକ ବହି ଓ ଅନ୍ୟାନ୍ୟ ଆବଶ୍ୟକୀୟ ପଦାର୍ଥ ବିକାଯାଏ । ଲେଖାସବୁ ଉତାରି ମଧ ସେମାନେ ଭଲ କାରବାର କରନ୍ତି । ଏ ସବୁ ନୋଟ ଗ୍ରୀକ୍, ସଂସ୍କୃତ, ପାର୍ଶୀ ଓ ଅନ୍ୟାନ୍ୟ ଭାଷାର ପଢ଼ାବହିର ଅନୁବାଦ ସରୁ କାଗଜରେ ଛୋଟ ଅକ୍ଷରରେ ଛପାଯାଇଥାଏ, ଯେପରିକି ଶ୍ରେଣୀରେ ପଢ଼ାବହିର ପୃଷ୍ଠା ମଧ୍ୟରେ ଗଳାଇ ଦିଆଯାଇପାରିବ । ଆଇନ, ରାଜନୀତିକ ଅର୍ଥଶାସ୍ତ୍ର ଓ ଗଣିତ ଅଧ୍ୟାପକଙ୍କ ବକ୍ତୃତାର ନୋଟ ଆମେ ବିସ୍ତୃତ ଭାବରେ ଟିପିନେଉ ଅନ୍ତତଃ ଅତି ସଂଖ୍ୟାନ୍ୟୂନ ମେଧାବୀ ଗୋଷ୍ଠୀ ସେପରି କରନ୍ତି; ଅଧିକାଂଶ କିନ୍ତୁ ଟିପୁଥିବାର ଛଳନା କରନ୍ତି ଏବଂ ପରୀକ୍ଷାର ଅଳ୍ପ କିଛିଦିନ ପୂର୍ବରୁ

ଫଂଖ୍ୟାନ୍ୟୂନ ମେଧାବୀ ଛାତ୍ରଙ୍କ ନୋଟଖାତା ମାଗିନିଅନ୍ତି, ଧାର କରନ୍ତି କିମ୍ବା ଚୋରି କରନ୍ତି (ପ୍ରଧାନତଃ ଶେଷୋକ୍ତ) । ଗଣିତ ଅଧାପନା ଥିଲା ନିତାନ୍ତ ଫାର୍ଶ ପରି । ମହାମାନ୍ୟ ଶ୍ରୀ ହେଭିସାଇଡ଼ଙ୍କୁ ଅମାନ୍ୟରେ କୁହାଯାଉଥିଲା 'ବୁଢ଼ା ହେଭି' । ସେ ପଟା ଉପରେ ବଡ଼ ଅଙ୍କନଟାଏ ଟାଣିଦେଇ ଆରମ୍ଭ କରୁଥିଲେ— ''ଭଦ୍ରବ୍ୟକ୍ତିଗଣ, ଆମେ ବର୍ତ୍ତମାନ ଏଇ ରେଖାଟି ଟାଣୁବୁ କ-ଖ-ଖ-ଖ-ଖ-ଖ' ତା'ପରେ ସେ ଦେଖିବେ ଜଣେ କେହି ଅନ୍ୟ ଉପରକୁ ବାଲିଘଡ଼ିଟାଏ ଫୋପାଡୁବି । ଶ୍ରୀ ଅମୁକ... ମୁଁ ତୁମ ନାଁ'ରେ 'L' ଲେଖିଦେଲି'— ଏବଂ ଡେସ୍କ ପାଖକୁ ଯାଇ ଖୁବ୍ ଗମ୍ଭୀର ଭାବରେ ଲେଖିବେ 'ଶ୍ରୀ ଅମୁକ— 'L' ତା'ପରେ ପୁଣି ଆରମ୍ଭ କରିବେ ଏହି ରେଖା କ-ଖ-ଖ-ଖ-ଖ । ଏମିତି ଲାଗିବ ଆଉ ଜଣେ କେହି ଗଣ୍ଡଗୋଳ କରିବା ପର୍ଯ୍ୟନ୍ତ— ଯେତେବେଳେ ସେ ପୁଣି ଯାଇ ତା'ନାଁରେ 'L' ଚିହ୍ନ ଦେବେ, ତା'ପରେ ପୁଣି ଚାଲିଲା । ସେସବୁ ଯେ କ'ଣ, ମୁଁ ଜାଣିପାରେନା; କିନ୍ତୁ ମୋର କେତେକ ସର୍ବୋତ୍କୃଷ୍ଟ ହସ୍ତାଙ୍କିତ ବ୍ୟଙ୍ଗଚିତ୍ର 'ବୃଦ୍ଧ ହେଭି' ଅଧାପନା ପ୍ରକୋଷ୍ଠରେ ଥିବାବେଳେ ପ୍ରସ୍ତୁତ ।

ବକ୍ତୃତା ସରିବା ମାତ୍ରେ ଆମେ ଆମ କୋଠରିକୁ ଚାଲିଆସି ଗାଉନ୍‌ଗୁଡ଼ିକ ଯତ୍ନରେ ଲୁଚାଇଦେଉ (ସେ ସ୍ଥାନରେ ଏପରି ନିୟମ ଥିଲା ଯେ, ତୁମ ଗାଉନ୍ ହଜିଗଲେ ତୁମେ ଅନ୍ୟର ନେଇଯାଇପାର) ଏବଂ ପ୍ରତ୍ୟେକ ବ୍ୟକ୍ତି ନିଜର ବିଶେଷ ଧରଣର ରୁଚି ଅନୁଯାୟୀ ପୋଷାକ ପିନ୍ଧୁଥିଲେ । କ୍ରିକେଟ ଖେଳାଳି, ନୌବାହକ ଓ ଫୁଟବଲ ଖେଳାଳିମାନେ ଉଜ୍ଜ୍ୱଳ ରଙ୍ଗିନ କନା ପିନ୍ଧି ଓ ଫାଷ୍ଟମେନ୍‌ମାନେ ଅତି ଗାଢ଼ ଲଣ୍ଡନ ପୋଷାକ ପିନ୍ଧି ବାହାରନ୍ତି । ତା'ପରେ ଦଳେ ଯାଇ 'ଟାପ୍' (ଫାନ୍ଦ)ଠାରେ ଜମନ୍ତି, ଯେଉଁଟା କି ଅକ୍‌ସଫୋର୍ଡ଼ କଲେଜର ଦୁଗ୍ଧ ଯୋଗାଣ ସ୍ଥଳ ସହ ସମାନ । ସେଠାରେ କଲେଜ ଖାଦ୍ୟ ଯୋଗାଣକାରୀଙ୍କ ଦୁଇ ଝିଅାରୀ ପାଉଁରୁଟି, ଛେନା ଓ ବିଅର ପରଷୁଥିଲେ । ଏଠି ମଧ ଅନ୍ୟ ସ୍ଥଳ ପରି ଅଶ୍ଳୀଳ ଗପ, ନୀଚ ଥଟ୍ଟାତାମସା ଓ ସମୟେ ସମୟେ ଅତି ଉଚ୍ଛୃଙ୍ଖଳିତ ହଟ୍ଟଗୋଳ ହେଉଥିଲା । ସେଠାରୁ ଖେଳାଳିମାନେ ପଡ଼ିଆକୁ, ନୌଚାଳକମାନେ ମାଇଲିଏ ଦୂରରେ ହାଉସ୍‌କୁ ନୌଚାଳନା ପାଇଁ ଓ ଫାଷ୍ଟମେନ୍‌ମାନେ ଗୋଟିକିଆ ଘୋଡ଼ାଟଣା ଗାଡ଼ିରେ ବିଲିଆଡ୍ ଖେଳିବାକୁ କିମ୍ବା ଉପରବେଳା ଖସିଯାଇ ଟ୍ରେନ୍‌ରେ ସହରକୁ ପଳାନ୍ତି ଏବଂ ସଂଯତ ଲୋକେ ଶରୀର ସୁସ୍ଥ ରଖିବା ପାଇଁ ରାସ୍ତାରେ ଚାଲନ୍ତି ।

କଲେଜ ସାଢ଼େ ପାଞ୍ଚ ପର୍ଯ୍ୟନ୍ତ ନିର୍ଜନ ହୋଇଯାଏ । ତା'ପରେ ଲୋକେ ପୁଣି ଫେରନ୍ତି । ଛ'ଟାବେଳେ ହଲ୍‌ଘରେ ଭୋଜନ, ଆଠଟାରେ ସାନ୍ଧ୍ୟ ପ୍ରାର୍ଥନା । ତା'ପରେ ସମସ୍ତେ 'ଟ୍ରାପ୍'କୁ ଯାଇ ପରଦିନ ପ୍ରାତରାଶର ବରାଦ ଦିଅନ୍ତି । ଝିଅ ଦୁଇଟି ବରାଦ ଲେଖି ନେଉଥିବାବେଳେ ପୂର୍ବପରି ଅକଥ୍ୟ ଗାଳିଗୁଲଜ, ଅଶ୍ଳୀଳ ଥଟ୍ଟା, ଗୀତ ଓ ଉଚ୍ଛୃଙ୍ଖଳତା ଚାଲେ । ନମ୍ର, ଶାନ୍ତ, କଠୋର ପରିଶ୍ରମୀ ଯୁବତୀ ଦୁହିଁଙ୍କ ପ୍ରତି ମୋର ଦୟା ହୁଏ । ଏସବୁ ପ୍ରତି ଧ୍ୟାନ ନ ଦେଇ ସେମାନେ ବରାଦ ଲେଖିନେଉଥିଲେ । ସେ ସବୁ ଭାଷାରୁ ଅର୍ଦ୍ଧେକର ଅର୍ଥ ସେମାନେ ବୁଝୁନଥିବେ ବୋଲି ମୋର ଆଶା ।

ଏହାପରେ ସଂଯତ ଲୋକେ କୋଠରିକୁ ଯାଇ ରାତି ଅନେକ ଡେରି ପର୍ଯ୍ୟନ୍ତ ପଢୁଥିଲେ । ଗୋଳମାଳିଆମାନେ ଜଣଜଣଙ୍କ କୋଠରିରେ ଦଶ, ବାର ଲେଖାଏଁ ରୁଣ୍ଡହୋଇ ଦୁଇ ତିନିଟା ପର୍ଯ୍ୟନ୍ତ ମଦପିଆ, ଧୂଆଁପିଆ ଓ ଗୀତ ଗାଇବାରେ ମଜିଯାଉଥିଲେ । ଯାକୁ କୁହାଯାଉଥିଲା 'ସରସତା' । ତା'ପରେ କଲେଜର ଜଣେ ଜଗୁଆଳ—ଯାହାର ନାମ ଦିଆଯାଉଥିଲା 'ବିକ୍' (ଥଣ୍ଡ)— ଆସି ନିଜ ନିଜ କୋଠରିକୁ ଯିବାପାଇଁ ତିନ୍‌ଙ୍କ ଅନୁରୋଧ ବାର୍ତ୍ତା ଜଣାଉଥିଲା । ଅବଶ୍ୟ ଏଗାରଟା ବେଳେ ଗୋଟାଏ ଘଣ୍ଟା ବାଜେ; କିନ୍ତୁ ତା'ପ୍ରତି ଯେ କେହି ଧ୍ୟାନ ଦିଅନ୍ତି, ମୋର ମନେପଡୁ ନାହିଁ ।

ବେଶି ରାତି ପର୍ଯ୍ୟନ୍ତ ପଢୁଥିବା ଲୋକେ ଦୁଇଟାବେଳ ଆଡ଼କୁ ଦୂରରୁ ବେସୁରା କଣ୍ଠର ଅସ୍ପଷ୍ଟ ଗୀତ ଶୁଣନ୍ତି— 'ସକାଳ ନ ହେଲେ ଘରକୁ ଆମେ ଫେରିବୁନି...' ଏବଂ ଆଉ କେତେକ ଅଶ୍ଳୀଳ ଗୀତର ପଦମାନ; ତା' ସହିତ ହାଟଫୋର୍ଡ଼ ହିଥ୍ ଆଡୁ ଫେରୁଥିବା ଘୋଡ଼ାଟାପୁର ଶବ୍ଦ । ଗୋଟାଏ ପରେ ଗୋଟାଏ ଘୋଡ଼ାଗାଡ଼ି ପଛ ଦୁଆର ପଟେ ଲାଗି ଅନ୍ଧେବନ୍ଧୁତେ ମାତାଲ ଓ କୋଳାହଳ କରୁଥିବା ଯୁବକମାନଙ୍କୁ ଖଲାସ କରେ । ବେଳେ ବେଳେ ଅତି ମାତାଲମାନଙ୍କୁ ଗାଡ଼ି ଚଟାଣରେ ନଡ଼ା ଉପରେ ଶୁଆଇ ଅଣାଯାଏ ଏବଂ ଟାଣିକରି ବାହାର କଲାବେଳେ ସେ ଭୀଷଣ ପ୍ରତିବାଦ କରୁଥାଏ । ଅଧଘଣ୍ଟାର ଚିତ୍କାର ଓ ସଂଗ୍ରାମ ପରେ ଉନ୍ମତ୍ତ ମାନଙ୍କୁ ସେମାନଙ୍କ କୋଠରିକୁ ନିଆଯାଏ ଓ କଲେଜ ଅଞ୍ଚଳ ନୀରବ ହୁଏ ।

ଇଷ୍ଟଇଣ୍ଡିଆ କମ୍ପାନୀର ମାନ୍ୟବର ଡିରେକ୍ଟରମାନେ କଲେଜର ଶୃଙ୍ଖଳିତ ପରିଚାଳନା ପାଇଁ କଡ଼ା ନିୟମ ରଖିଥିଲେ ମଧ୍ୟ ସେସବୁ କାର୍ଯ୍ୟକାରୀ କରିବାର ଚେଷ୍ଟା କେହି କରୁଥିବା ପରି ଜଣାଯାଉନଥିଲା । ତିନ୍‌ଙ୍କ ଡେସ୍କ ଉପରେ ଥିବା ଖାତାରେ ନିଜ ନାଁ'ଟା ଲେଖିଦେଲେ ତୁମେ 'ଗେଟସ୍' (ବାହାରକୁ ଯିବା ଅନୁମତି) ପାଇଗଲ, ଅର୍ଥାତ୍ ୨ଟା ପର୍ଯ୍ୟନ୍ତ ବାହାରେ ରହିପାରିବ । ଅନେକେ କଲେଜ ମାର୍ଶାଲଙ୍କ ଦୃଷ୍ଟି ଏଡ଼ାଇ ଦିନ ୨ଟା ଟ୍ରେନ୍‌ରେ ସହରକୁ ଖସିଯାଇ ରାତି ୧୧ଟା ଗାଡ଼ିରେ ମଧ୍ୟ ଆସିନଥାନ୍ତି । ଦୀର୍ଘକାୟ ବଳଶାଳି ମାର୍ଶାଲ ବି.ଜୋନସ୍‌ଙ୍କ କାମ ହେଉଚି ଶୃଙ୍ଖଳା ରକ୍ଷା କରିବା, ସବୁ ବେନିୟମ କାମ ଜଣାଇବା ଏବଂ ସହରକୁ କେହି ଯେପରି ନ ଯାନ୍ତି ସେଥିପାଇଁ ଷ୍ଟେସନରେ ଜଗିବା । କିନ୍ତୁ ସେ ଏକ ସମୟରେ ସବୁ ଜାଗାରେ ରହିପାରିବେ ନାହିଁ । ତାଙ୍କୁ ଠକିବା ପାଇଁ ସୁଚତୁର କୌଶଳ ପ୍ରୟୋଗ କରାଗଲା । କଲେଜ ନିକଟସ୍ଥ ଏକ ପାନଶାଳାରେ କେତେକ ଦ୍ରୁତଗାମୀ ଏକଘୋଡ଼ିଆ ଗାଡ଼ି ଭଡ଼ା ନିଆହୋଇ ରଖାହୋଇଥିଲା । ଚାଳକମାନେ ଛାତ୍ରମାନଙ୍କଠାରୁ ବକ୍‌ସିସ୍ ପାଇ କର୍ତ୍ତୃପକ୍ଷଙ୍କୁ ଠକିବାରେ ସାହାଯ୍ୟ କରୁଥିଲେ । ଅଧ୍ୟାପକମାନେ ମଧ୍ୟ ସେମାନଙ୍କ କାମରେ ଢିଲା ଦେଉଥିଲେ । ସେମାନେ କହୁଥିଲେ ଯେ, ଛାତ୍ରମାନେ ସିଭିଲ୍ ସଂସ୍ଥାରେ ଯୋଗ ଦେବାକୁ ଭାରତ ଯାଉଛନ୍ତି ଏବଂ କୌଣସି ପ୍ରକାରେ ଏ କଲେଜରୁ ଉତ୍ତୁରିଗଲେ ସେମାନଙ୍କ ଆଗରେ ଅଛି ଏକ ଚମତ୍କାର ଜୀବନ । କେବଳ ଟିକିଏ ଯୁବସୁଲଭ ଚପଳତା ଲାଗି ଏ ସୁଯୋଗକୁ ନଷ୍ଟ କରିବାକୁ ଦେବା ଅତି ନିଷ୍ଠୁରତା ହେବ । ଅଧ୍ୟକ୍ଷ ଥିଲେ ଖୁବ୍ କଡ଼ା ଏବଂ ତାଙ୍କୁ ଜଣାଇଦିଆଯାଉଥିବା ଘଟଣାରେ ଗୁରୁଦଣ୍ଡ ବିଧାନ କରୁଥିଲେ; କିନ୍ତୁ ତିନ୍ କିମ୍ବା ସେହିପରି କେହି ଉପଯୁକ୍ତ ବ୍ୟକ୍ତି ତାଙ୍କୁ ନ

ଜଣାଇଲେ ସେ ହସ୍ତକ୍ଷେପ କରୁ ନ ଥିଲେ । ଢିଲା ପ୍ରକୃତିର ଡିନ୍ କ୍ବଚିତ୍ ଏପରି କରନ୍ତି । ପ୍ରାର୍ଥନାରେ ଅନୁପସ୍ଥିତ ହେବା ବା ବାହାରେ ଅନେକ ସମୟ ରହିବାର ସାଧାରଣ ଦଣ୍ଡ ହେଲା ଲାଟିନ୍ ଓ ଗ୍ରୀକ୍‌ରେ ଗୁଡ଼ାଏ ଧାଡ଼ି ଲେଖିବା ଏବଂ ହାଟଫୋର୍ଡ଼ ହିଥ୍‌ର କୁଟୀରବାସୀ କେତେକ ଯୁବକ ଲାଟିନ୍‌ରେ ଶହେ ଧାଡ଼ି ଲେଖିବାକୁ ଶିଲିଂଟିଏ ଓ ଗ୍ରୀକ୍‌ପାଇଁ ଅଧକ୍ରାଉନ୍‌ଟିଏ ନେଉଥିଲେ; ତେଣୁ ଏହି ଧାଡ଼ି ଲେଖିବାର ଦଣ୍ଡ ପ୍ରକୃତରେ ସେଥିପାଇଁ ବ୍ୟୟିତ ଅର୍ଥ ଦଣ୍ଡରେ ପରିଣତ ହେଲା । ଅଧିକାଂଶ ଛାତ୍ରଙ୍କର ଯଥେଷ୍ଟ ପକେଟ ଖର୍ଚ୍ଚ ରହୁଥିବାରୁ ଏ ଦଣ୍ଡ ବାଧୁ ନ ଥିଲା ।

ପ୍ରଥମେ ମୋର ଲାଜକୁଳା ଭାବ ଓ ନିଜ ଦାରିଦ୍ର୍ୟ ପ୍ରତି କରୁଣ ସଚେତନତା ଥିଲା । ବାପା ଅଭାବ ଦୃଷ୍ଟିରୁ ହେଉ ବା ନୀତି ଦୃଷ୍ଟିରୁ ହେଉ, ଖାଦ୍ୟରେ ଯେପରି କରୁଥିଲେ ପକେଟ ଖର୍ଚ୍ଚ ଦେବାରେ ମଧ ସେହିପରି କଣ୍ଟାକଣ୍ଟି କରୁଥିବାରୁ ଧନୀ ଯୁବକମାନଙ୍କ ଗହଣରେ ମୋର ପୋଷାକ ଥିଲା ଜୀର୍ଣ୍ଣ । ଶେଷରେ ମୁଁ କେତେକ ଭଲ ପୋଷାକ କିଣିପକାଇ ତାଙ୍କ ପାଖକୁ ବିଲ୍ ପଠାଇଦେଲି । ଏହା ସେ ଅତି ଅନିଚ୍ଛାରେ ଦେଲେ ଏବଂ ମୋ ପାଖକୁ କଡ଼ା ଚିଠି ଲେଖିଲେ । କିନ୍ତୁ ବର୍ତ୍ତମାନ ମୁଁ ନିଜକୁ ମୁକ୍ତ ମନେକରୁଥିଲି ଓ ତାଙ୍କୁ ଆଉ ଏତେ ଭୟ କରୁନଥିଲି ।

ଧୀରେ ଧୀରେ ଲଜ୍ଜାଭାବ ଦୂରକରି ସହପାଠୀମାନଙ୍କ ସହ ବନ୍ଧୁତା କଲି; ସେଥି ମଧ୍ୟରୁ ପ୍ରଧାନ ହେଉଛି ମୋର ପ୍ରିୟ ଆଜୀବନ ବନ୍ଧୁ ଫ୍ରେଡ଼େରିକ୍ ଏଡ଼େନ୍ ଇଲିଅଟ । ତଳ ମହଲାରେ ଥିବା ତା' କୋଠରିର ଝରକା ନିକଟରେ ସବୁଠାରୁ ଅଧିକ ସୂର୍ଯ୍ୟାଲୋକ ପଡୁଥିଲା ଏବଂ ସେ ଅଗଣାର ସବୁଠାରୁ ଗହଳି ଅଞ୍ଚଳରେ ଥିଲା; କିନ୍ତୁ ମୁଁ ଉପରେ ଅନ୍ଧାରୁଆ ଜାଗାରେ ଥିଲି । ଦିନେ ସକାଳେ ମୁଁ ତା କୋଠରି ଦେଇ ଯାଉଥିବାବେଳେ ସେ ତା'ର ଝରକା ପାଖରେ ବସି ଜ୍ୟାକ୍ ହଣ୍ଟର୍ ସହ କଥାବାର୍ତ୍ତା କରୁଥିଲା । ଠିକ୍ ମୋରି ସାମନାରେ ତା'ର ପେନସିଲ୍‌ଟାଏ ଗଳିପଡ଼ିଲା (ପରେ ସେ ମୋତେ କହିଲା ଯେ, ସେ ଇଚ୍ଛା କରି ଏପରି କରିଥିଲା) ଏବଂ ସେଇଟା ଉଠାଇ ଦେବାପାଇଁ ମୋତେ କହିଲା । ଉଚ୍ଚା ଝରକାରେ ମୋ ହାତ ନ ପାଇବାରୁ ମୁଁ ବୁଲିଯାଇ ତା'କୋଠରି ଭିତରକୁ ଗଲି । କୋଠରିଟି ରୁଚିକର ଭାବରେ ଛବି, ଖୋପ ଓ ଖେଳନାରେ ସଜ୍ଜିତ ଥିଲା । ତା'ର ବ୍ୟବହାର ଖୁବ୍ ବନ୍ଧୁତ୍ୱପୂର୍ଣ୍ଣ ଓ ସହୃଦୟ ଥିଲା । ସେଇ ସନ୍ଧ୍ୟାରେ ମୁଁ ପୁଣି ତାକୁ ଫିଲିପ୍ ହଚିନସ୍‌ର କକ୍ଷରେ ଭେଟିଲି ଏବଂ ଚିତ୍ରାଙ୍କନ ସମ୍ବନ୍ଧରେ ଆଲୋଚନା ହେବାରୁ ସେ ତା' ପାଖରେ ଥିବା କେତେକ ଛବି ଦେଖିବାପାଇଁ ମୋତେ ତା' କୋଠରିକୁ ଡାକିଲା । ସେଇଠି କେତେ ଘଣ୍ଟା ପର୍ଯ୍ୟନ୍ତ ପାଣି ରଙ୍ଗରେ ଚିତ୍ରିତ ପଶ୍ଚିମ ଭାରତୀୟ କେତେକ ଦୃଶ୍ୟର ତବା ଭର୍ତ୍ତି କରି ରଖିଥିବା ଛବି ଦେଖାଇ ମୋତେ ମୁଗ୍ଧ କରିଦେଲା । ସେଇ ରାତିଠାରୁ ଆଜି ଚାଳିଶ ବର୍ଷ ପରେ ମଧ ଆମେ ଘନିଷ୍ଠ ବନ୍ଧୁ ହୋଇ ରହିଛୁ ।

ଇଲିଅଟ୍ ଅଳ୍ପ ଉଚ୍ଚ ଓ ପତଳା ହେଲେ ମଧ ସେ ତାରଭଳି ଟାଣୁଆ ଓ କାର୍ଯ୍ୟକ୍ଷମ ଲୋକ । ତା'ଦେହ ପୀତାଭ, ଚକ୍ଷୁ ଆଶ୍ଚର୍ଯ୍ୟ ଭାବମୟ, ଘନନୀଳ, ପ୍ରାୟ ବାଇଗଣୀ । ମୁଁ ଭେଟିଥିବା ସବୁ ଲୋକଙ୍କ ମଧ୍ୟରୁ ତା'ର ବ୍ୟବହାର ସବୁଠାରୁ ମଧୁର, ମୁଗ୍ଧକାରୀ । ସେ ପୁରାତନ, କୁଳୀନ ମିଣ୍ଟୋର ଇଲିଅଟ ପରିବାରର ପିଲା । ତା'ର ଥିଲା ଅସମ୍ଭବ ମହତ୍ତ୍ୱ,

ଅଚଞ୍ଚଳ ମନ— ସର୍ବଦା ଆଳାପ ଉନ୍ମୁଖ, ଉଚ୍ଚ ଓ ତୀକ୍ଷ୍ଣ ଉପସ୍ଥିତ ବୁଦ୍ଧି, ଅତି ଶାନ୍ତ ଆନନ୍ଦମୟ ଅଳସଭାବ, ନିୟମିତତା ଓ ଫଳାଫଳ ପ୍ରତି ନିର୍ଭୀକ ନିସ୍ପୃହତା । ରୁଚି ଅନୁଯାୟୀ ସେ କଲେଜ ନିୟମ ଭାଙ୍ଗୁଥିଲା ଏବଂ ଦଣ୍ଡ ମିଳିଲେ ବିନା ଦ୍ୱିଧାରେ ପ୍ରସନ୍ନ ଚିତ୍ତରେ ଗ୍ରହଣ କରୁଥିଲା । ଏଥିରେ ତା'ର ସଙ୍କୋଚ ନ ଥିଲା, ଲୁଚାଇବାର ବାକି ଦେବାର ପ୍ରଚେଷ୍ଟା ନ ଥିଲା । ବୃଦ୍ଧ ଅଧକ୍ଷକଙ୍କ ଦ୍ୱାରା ଆହୂତ ହେଲେ, ସେ ନମ୍ର, ସସ୍ମିତ ବଦନରେ, ଏଇ ପୃଥିବୀର ଜଣେ ଅନ୍ୟ ଜଣକୁ କହିବାପରି ସ୍ୱୀକାର କରୁଥିଲା ଯେ, ''ଦୁର୍ଭାଗ୍ୟବଶତଃ କରିଦେଇଛି' କିମ୍ବା 'ଦୁର୍ଭାଗ୍ୟବଶତଃ ଛାଡ଼ିଦେଇଛି' ଏବଂ 'ସେସବୁ ପୂରାପୂରି ଭୁଲ କାମ' । କିନ୍ତୁ ସେ କ୍ୱଚିତ୍ ଅସୁବିଧାରେ ପଡ଼େ; ସେପରି ଲୋକେ ପଡ଼ନ୍ତି ନାହିଁ । ସେମାନଙ୍କ ନିକଟରେ ଏପରି ଏକ ଭାବ, କୌଶଳ ଓ ଉପସ୍ଥିତ ବୁଦ୍ଧି ଥାଏ ଯାହା ସେମାନଙ୍କୁ ରକ୍ଷା କରେ । ଯଦିଓ ଆମ୍ଭମାନଙ୍କ ସମବୟସ୍କ, ତଥାପି ସେ ଅଧାଜୀବନ ବିତାଇ ସାରିଥିଲା ଏବଂ ବହୁଲୋକ ଜୀବନସାରା ଯାହା ଦେଖିଥାନ୍ତି, ତା'ଠାରୁ ବେଶି ଦେଖିଥିଲା । ତା' ବାପା ଥିଲେ ବର୍ଲିନ୍‌ରେ ରାଜଦୂତ ଏବଂ ଲର୍ଡ଼ ମିଣ୍ଟୋଙ୍କ ସମ୍ପର୍କୀୟ ହ୍ୟୁଗ୍ ଇଲିଅଟ୍‌ଙ୍କ ପୁଅ— ଆଡ଼ମିରାଲ ସାର୍ ଚାର୍ଲସ୍ ଇଲିଅଟ୍ । ମା'ଙ୍କ ଆତ୍ମ ସେ ଲର୍ଡ଼ ଆକ୍‌ଲାଣ୍ଡ ଓ ପ୍ରସିଦ୍ଧ ନୌବୀର ତନ୍ ଡୋନାଲଡ୍‌ଙ୍କ ସହ ସମ୍ପୃକ୍ତ । ଚୀନର ମାକାଓରେ ତା'ର ବାପା ବ୍ରିଟିଶ ନୌବାହିନୀର ସେନାପତି ଥିବାବେଳେ ସେଠାରେ ତା'ର ଜନ୍ମ । ମାମୁ ଲର୍ଡ଼ ଅକ୍‌ଲାଣ୍ଡ ଭାରତରେ ଗଭର୍ଣ୍ଣର ଜେନେରାଲ ଥିବାବେଳେ ସେ ସେଠାକୁ ଯାଇଥିଲା । ଏହାପରେ ତା' ବାପା ନୌବାହିନୀ ଛାଡ଼ି କୂଟନୀତିକ ସଂସ୍ଥାରେ ବିଭିନ୍ନ ଦୂତାବାସରେ ରହିଲେ । ଏହିପରି ଫ୍ରେଡ୍ ଇଲିଅଟ ଡ୍ରେସ୍‌ଡେନ, ନେପ୍‌ଲସ୍ ଓ ବ୍ରସେଲସ୍‌ରେ ରହିଲା । ତାକୁ ଯେତେବେଳେ ବୋଧହୁଏ ଦଶବର୍ଷ, ତା'ର ବାପା ବର୍ମୁଡାର ଶାସକ ହେଲେ ଏବଂ ବାପା ମା'ଙ୍କ ସହ ସେ ସେଠାକୁ ଗଲା । ସେଠାରେ ସେ ତା'ର ସମ୍ପର୍କୀୟ ବୃଦ୍ଧ ଲର୍ଡ଼ ଡନ୍ଧ ଡୋନାଲଡ୍‌ଙ୍କୁ ଭେଟିଲା । ସେ ତାକୁ ନିଜର ନୌଡଙ୍ଗାରେ ହାଲିଫାକ୍ସ ନେଇଗଲେ । ସେଠାରେ ସେ କିଛିଦିନ ପଢ଼ି ପରେ ଯୁକ୍ତରାଷ୍ଟ୍ର ଦେଇ ବରମୁଡ଼ା ଫେରିଆସିଲା । ତା'ପରେ ଇଂଲାଣ୍ଡ ଗଲା । ସେଠାରେ ସେ କେତେକାଳ କବି ଓ କୂଟନୀତିଜ୍ଞ ସାର୍ ହେନେରୀ ଟେଲର୍‌ଙ୍କ ପାଖରେ ରହି ପରେ ରଗ୍‌ବିକୁ ଗଲା । ପରେ ବାପାଙ୍କର ତ୍ରିନିଦାଦ୍‌ରେ ଶାସକରୂପେ ନିଯୁକ୍ତି ହେବାରୁ ପୁଅକୁ ରଗ୍‌ବିରୁ ନେଇ ତା'ପାଇଁ ଗୃହଶିକ୍ଷକ ନିଯୁକ୍ତ କଲେ । ସେ ଦ୍ୱୀପରେ ସେ ୧୯ବର୍ଷ ହେବା ପର୍ଯ୍ୟନ୍ତ ରହିଲା । ଏହି ପାରିବାରିକ ପ୍ରଭାବ ଫଳରେ ଭାରତୀୟ ସିଭିଲ୍ ସଂସ୍ଥାରେ ତା'ର ନିଯୁକ୍ତି ସୁନିର୍ଦ୍ଦିଷ୍ଟ ହୋଇଗଲା ।

ଏପରି ଏକ ଲୋକ ସହ ସମ୍ପର୍କ ମୋ ପାଇଁ କେଡ଼େ ଆନନ୍ଦର କଥା ତାହା ସହଜରେ ଅନୁମେୟ; କିନ୍ତୁ ମୋ'ଠାରେ କି ପସନ୍ଦଯୋଗ୍ୟ ଗୁଣ ସେ ଦେଖିଲା ତାହା ମୋ ନିକଟରେ ଏବେବି ରହସ୍ୟମୟ । ସେ ତ୍ରିନିଦାଦରେ କାସାବନ ନାମକ ଜଣେ ବୃଦ୍ଧ ଡ୍ରେଓଲ ଡ୍ରଇଁ ଶିକ୍ଷକଙ୍କଠାରୁ ଚିତ୍ରବିଦ୍ୟା ଶିକ୍ଷା କରିଥିଲା । ତ୍ରିନିଦାଦରେ ଛାତ୍ରମାନଙ୍କ ମେଳରେ ରହି କାସାବାନ ଯେଉଁସବୁ ପାଣିରଙ୍ଗର ଛବି (ଅଧିକାଂଶ ଅସମାପ୍ତ) ଆଙ୍କିଥିଲେ, ତାହା ମୋତେ ମୁଗ୍ଧ କରିଥିଲା । ଚିତ୍ରକଳା ପ୍ରତି ମୋର ପ୍ରବଳ ଆଗ୍ରହ ଥିଲେ ମଧ ସାଧନା ନ ଥିଲା ଏବଂ ଇଲିଅଟ୍‌ର ତତ୍ତ୍ୱାବଧାନରେ ମୁଁ ଅଙ୍କନ ଓ ରଙ୍ଗଦେବାରେ ଖୁବ୍ ଉନ୍ନତି କଲି । ଜଙ୍ଗଲ ବା ନଦୀ ତୀରରେ

ବସି ଚିତ୍ରାଙ୍କନ କରିବାରେ ଆମେ ଅନେକ ସୁନ୍ଦର ଅପରାହ୍ଣ କଟାଇଲୁ । ରେ ହାଉସ୍‌ରୁ ନୌକାଟିଏ ନେଇ ଆମୋଲି ନଦୀରେ ଯାଉ ରାଟିସ ଲକ, ତା'ପରେ ରଏଡନ, ଯେଉଁଠି ମୋ କଳ୍ପନା ମଧ୍ୟରେ ଜୀବିତ ଥିଲା ଟେନିସନ୍‌ଙ୍କ 'ମାଲିର କନ୍ୟା', ତାଙ୍କ ମୁମୂର୍ଷୁ ରାଜହଂସ କାକଳି କରୁଥିଲା, ଶ୍ରୀମତୀ ସାଲୋଟ୍ ତାଙ୍କ ଦୁର୍ଗରେ (ପାଖରେ ଥିବା ନେଦର ହଲ୍‌ର ଭଗ୍ନାବଶେଷ) ବାସ କରୁଥିଲେ ଏବଂ ଗହମ କ୍ଷେତ ଉପରେ ଛାୟାର ତରଙ୍ଗ ଭାସି ଯାଉଥିଲା । ସେଇ ସୁବର୍ଣ୍ଣ ଦିନଗୁଡ଼ିକରେ ଆମେ ଟେନିସନ୍‌କୁ ନେଇ ବଞ୍ଚିରହୁଥିଲୁ ।

ଗୋଷ୍ଠୀ ବିବାଦରେ ହେଲିବରୀ ବିଭକ୍ତ ହୋଇଗଲା । ଜେମସ୍ ହଣ୍ଟର ଓ ଉଇଲିଅମ ହିଥ୍‌ଉଏ ସହ ଇଲିଅଟ୍ ଓ ମୁଁ ଛୋଟ ଦଳଟିଏ ଗଢ଼ି ସନ୍ଧ୍ୟାରେ ପ୍ରାୟ ଏକତ୍ର ହେଉଥିଲୁ । ଆମେ ଥିଲୁ ଅନ୍ୟମାନଙ୍କ ଅପେକ୍ଷା ଶାନ୍ତ ଓ ଦୃଢ଼ଚେତା, ଅବଶ୍ୟ ଖୁବ୍ ଶାନ୍ତ ଗୋଷ୍ଠୀର ନ ଥିଲୁ । ଅତି ଶାନ୍ତ ଲୋକେ ଥିଲେ 'ସୁନାପିଲା' ଧରଣର, ଖୁବ୍ ପଢୁଥିଲେ, ସମୟାନୁବର୍ତ୍ତୀ ଥିଲେ, ଗୋଟିଏ ହେଲେ ବକ୍ତୃତା ବା ପ୍ରାର୍ଥନା ଛାଡୁ ନ ଥିଲେ, ଅଧ୍ୟାପକଙ୍କ ସ୍ତ୍ରୀମାନଙ୍କ ସହ ଚାହା ପିଉଥିଲେ, ସାଧାରଣତଃ ଶ୍ରେଣୀରେ ପ୍ରଥମ ହେଉଥିଲେ ଏବଂ ଅଧିକାଂଶ ପୁରସ୍କାର ପାଉଥିଲେ । ଅନ୍ୟ ପଟେ 'ସୁପର କ୍ଲବ' ଏବଂ ଅନ୍ୟାନ୍ୟ ପାଟିତୁଣ୍ଡ ବାଲା ଥିଲେ, ଯେଉଁ ଭଦ୍ରବ୍ୟକ୍ତିଗଣ କୌଣସି ନିର୍ଘଣ୍ଟ ମାନୁନଥିଲେ, ଜୁଆ, ମଦ, ଅଗମ୍ୟଗମନ ଓ ଯାହାକିଛି ନିଷେଧ ଥିଲା, ସବୁ କରୁଥିଲେ । ଏଇ ଦୁଇ ଗୋଷ୍ଠୀଙ୍କର ଆମେ ଥିଲୁ ମଧ୍ୟବର୍ତ୍ତୀ । ବକ୍ତୃତା ଓ ପ୍ରାର୍ଥନାରେ ଆମେ ଥିଲୁ ଭଦ୍ରଭାବେ ନିୟମିତ । ଗୁରୁତର ସଂଘର୍ଷ ବା ଜୁଆଖେଳରେ ଆମେ ନ ଥିଲୁ । ସୀମା ଭିତରେ ପାନ କରୁଥିଲୁ ଏବଂ ମୋଟାମୋଟି ଖୁବ୍ ଭଲ ବ୍ୟବହାର କରୁଥିଲୁ । କଲେଜ ସମୟ ଭିତରେ ଆମେ ବେଳେ ବେଳେ ବାହାରକୁ ଯାଉଥିଲୁ; କିନ୍ତୁ ତାହା ସାଧାରଣତଃ ସ୍କେଟିଂ ବେଳେ ଦୂରକୁ ଚାଲିଯାଉଥିବାରୁ କିମ୍ବା ରାସ୍ତାକଡ଼ ବା ନଦୀକୂଳ ଚଟିଘରେ ଖାଇବାପାଇଁ ରହିଯାଇଥିବା ଯୋଗୁଁ ।

ରବିବାର ଦିନ ଇଲିଅଟ୍ ଓ ମୁଁ ଷ୍ଟରଟ୍ କୂଳ ପାହାଡ଼ ତଳେ ସୁନ୍ଦର ବୃକ୍ଷଘେରା ରଏଡ଼ନ ଗାଁ'କୁ ଯାଉ । ରେକ୍ଟର ଶ୍ରୀ ପାଇନା ପିଲାଙ୍କୁ ସେଠାକୁ ନେଉଥିଲେ ଏବଂ ଇଲିଅଟ୍ ହେଲିବରୀ ଆସିବାର କିଛି ପୂର୍ବରୁ ସେଠାରେ କିଛିଦିନ ଥିଲା । ଆମେ ଥରେ ଆହୁଲା ମାରି ସେଠାକୁ ଗଲୁ । ନୌକା ବାନ୍ଧି ଅପରାହ୍ଣ ଗିର୍ଜାକୁ ଗଲୁ । ଅତିଥିପରାୟଣ ରେକ୍ଟର ପାଇନଙ୍କ ସହ ଭୋଜନ କଲୁ ଓ ରେ ହାଉସକୁ ଫେରିଆସିଲୁ । ସେଠାରେ ଆମ ସହ ଆସିଥିବା ରେକ୍ଟରଙ୍କ ଦୁଇଜଣ ଛାତ୍ରଙ୍କ ସହ ବିଦାୟକାଳୀନ ବିଅର ପିଇଲୁ ଏବଂ ତା'ପରେ କଲେଜକୁ ଫେରିଲୁ । ଏସବୁ ପରେ ଇଲିଅଟ୍‌ର କୋଠରିକୁ ଯାଇ, ତ୍ରିନିଦାଦରୁ ତା'ର ମା' ପଠାଇଥିବା ସୁସ୍ୱାଦୁ ଚକୋଲେଟ ଓ ଜାମ୍ ଇତ୍ୟାଦି ଖାଉ । ତା'ପରେ ଅଧରାତିରୁ ବେଶି ସମୟ ବସି ଚିତ୍ରକଳା ଓ ଅନ୍ୟାନ୍ୟ ବିଷୟ ଆଲୋଚନା କରୁ ।

ସେତେବେଳେ ପ୍ରକାଶ ପାଉଥିବା ରସ୍କିନଙ୍କ 'ମଡ଼ର୍ଣ୍ଣ ପେଣ୍ଟରସ୍' ଉପରେ ଆମର ବିଶେଷ କାମ ଚାଲୁଥିଲା । ତା'ର ପ୍ରତ୍ୟେକ ପୃଷ୍ଠାର ଚିତ୍ର ଉପରେ ଆମେ ଘଣ୍ଟାଘଣ୍ଟା ଆଲୋଚନା କରୁଥିଲୁ । ହେଲିବରୀ ରହଣିର ଶେଷ ଆଡ଼କୁ ଆମେ ପୂର୍ବଠାରୁ କଠିଣତର ପରିଶ୍ରମ କଲୁ ଏବଂ ନିଜ ନିଜ କୋଠରିରେ ବସି ସକାଳ ତିନିଟା ଚାରିଟା ଯାଏ ପଢ଼ିଲୁ । ଯଥେଷ୍ଟ ଖାଦ୍ୟ, ମୁକ୍ତ ପବନ ଓ ବ୍ୟାୟାମ ଦ୍ୱାରା ମୋ ସ୍ୱାସ୍ଥ୍ୟର ମଧ୍ୟ ଉନ୍ନତି ଘଟିଲା ।

୧୮୫୬ର ଲମ୍ବା ଛୁଟିରେ ମୁଁ ଓ ପିଅରସନ୍ ଏକାଠି ପ୍ୟାରିସ୍ ଯାଇ ସେଠାରେ ପନ୍ଦର ଦିନ ରହିଲୁ । ସେ ଯାତ୍ରା ମୋତେ ଖୁବ୍ ଆନନ୍ଦ ଦେଲା ଏବଂ ଦେଖିଲି ଯେ, ମରଚେଣ୍ଟ ଟେଲର୍ସରେ ଆମର ପ୍ରିୟ ବୃଦ୍ଧ ଡେଲିଲେଙ୍କ ସୁନ୍ଦର ପଢ଼ାଯୋଗୁଁ ମୁଁ ଫରାସୀ ଖୁବ୍ ସୁନ୍ଦର କହି ଓ ବୁଝିପାରୁଛି । ମୁଁ ସବୁଆଡ଼େ ଯାଇ ସବୁ ଦେଖିଲି; କିନ୍ତୁ ପିଅରସନ୍ ବିରକ୍ତ ହୋଇ ମୋ ସହ କୁଆଡ଼େ ଗଲା ନାହିଁ । ସେଠାରୁ ବାସ୍‌ଲେ ଫେରିଲୁ । ଏଲେନ୍ ଗ୍ରିଆରୀ ସେଠାକୁ ଆସି ଆମସହ ରହିଲା । ଆମେ ଜଙ୍ଗଲ ମଧ୍ୟକୁ ଗାଡ଼ିରେ ଲମ୍ବା ଭ୍ରମଣରେ ଯାଉ । ଆମ ସହ ଯାଆନ୍ତି ମୋର ସବା ସାନଭାଇ ହ୍ୟାରୀ ଓ ଏଲେନ୍‌ର ସାନଭଉଣୀ କ୍ୟାରୀ, ବାରବର୍ଷର ବେଶ୍ କଉତୁକିଆ ପିଲାଟିଏ । ସେମାନେ ଉତ୍ତମ ରୁଚିଜ୍ଞାନ ଦେଖାଇ ନିଜ ମଧ୍ୟରେ ଖେଳୁଥିଲେ ଓ ଆମର ପ୍ରତିବନ୍ଧକ ହେଉନଥିଲେ । ଆମେ ଯେ ପରସ୍ପରକୁ ଭଲପାଉଛୁ ତାହା ବର୍ତ୍ତମାନ ଜାଣିପାରିଲୁ । ପିଅରସନ୍ ଏଲେନ୍ ସହ ହସ-କୌତୁକ କରି ମୋ ମନରେ କ୍ରୋଧ ସୃଷ୍ଟି କରୁଥିଲା; କିନ୍ତୁ ତା'ଠାରୁ କିଛି ଉତ୍ସାହଜନକ ଇଙ୍ଗିତ ପାଇଲାନି । ସେ ୬୯ତମ ରେଜିମେଣ୍ଟରେ ଏନ୍‌ସାଇନ୍ ରୂପେ ନିଯୁକ୍ତି ପାଇ ଆମକୁ ଛାଡ଼ିଗଲା । ଆମେ ଆଶ୍ୱସ୍ତ ହେଲୁ । ସେ ସମୟର କ୍ରୟ ରୀତିରେ ତାକୁ ତା'ର ଏ ପଦବୀ ପାଇଁ ୪୦୦ ପାଉଣ୍ଡ ଦେବାକୁ ପଡ଼ିଲା । ଡୋରଚେଷ୍ଟରରେ ସେ ତା' ବାହିନୀରେ ଯୋଗ ଦେଲା । ହ୍ୟାରୀକୁ ଷ୍ଟ୍ରେଥାମରୁ ଆଣି ମାର୍ଲବୋରୋର ନୂଆ ବିଦ୍ୟାଳୟରେ ଭର୍ତ୍ତି କରାଗଲା । ବଲ୍‌ଟିକ୍ ନୌଯୁଦ୍ଧରେ 'ଆରୋଗାଣ୍ଟ' ଯୋଗ ଦେଇଥିଲା ଏବଂ ଉଇଲି ସେଥିରେ ଗୋଳାଗୁଳିର ସମ୍ମୁଖୀନ ହୋଇଥିଲା । ଫେରିଲାବେଳେ ସେ ଗୋଟିଏ ରୁଷୀୟ ଲୁହା ଟୋପି ଓ ଆଉ କେତେକ ବିଜୟ ନିଶାଣ ଆଣିଥିଲା ଏବଂ କିଛିକାଳ ପର୍ଯ୍ୟନ୍ତ ଏକ ସ୍ଥାନୀୟ ବୀର ରୂପେ ପରିଗଣିତ ହେଲା । ଯୁଦ୍ଧ ପରେ ତା'ର ଜାହାଜ ବ୍ରିଟିଶ୍ ରାଜଦୂତଙ୍କୁ ସେଣ୍ଟ୍ ପିଟରବର୍ଗକୁ ନେଇଯିବାର ଆଦେଶ ଥିଲା, କିନ୍ତୁ ଶେଷ ମୁହୂର୍ତ୍ତରେ ପରିବର୍ତ୍ତନ ହେଲା ଏବଂ ସେ ଜାହାଜକୁ ପଶ୍ଚିମ ଭାରତୀୟ ଦ୍ୱୀପପୁଞ୍ଜକୁ ପଠାଇଦିଆଗଲା ।



# ପଞ୍ଚମ ପରିଚ୍ଛେଦ

## ଭାରତ ପଥେ : ୧୮୫୮

୧୮୫୬ ସେପ୍‌ଟେମ୍ବର ୨୫ ତାରିଖ ଦିନ ଉଇଲି ଜାମାଇକାର ରୟାଲ୍‌ପୋର୍ଟ ଡାକ୍ତରଖାନାରେ ଗଣ୍ଡିବାତ ଜ୍ୱରରେ ମରିଗଲା । ବାପା ବାସ୍‌ଲେରେ କିଛି ଦିନ କଟାଇ ରାତିଗାଡ଼ିରେ ଲଣ୍ଡନ ଫେରୁଥିଲେ । ବସାରେ ପହଞ୍ଚି ଚାବି ଖୋଲି ସେ ଭିତରେ ପଶିଲେ । ହଲ୍‌ଘରେ ଗ୍ୟାସ୍‌ବତି ପାଖରେ ମହମବତିଟିଏ ଲଗାଇ ତାଙ୍କ କୋଠରିକୁ ଗଲେ । ସେଇଠି ଟେବୁଲ୍ ଉପରେ ବିଦେଶୀ ମୋହରମରା ତାଙ୍କ ନାମରେ ଚିଠିଟିଏ ଦେଖିଲେ । ପରେ ସେ କହିଥିଲେ ଯେ, କାହିଁକି କେଜାଣି ସେ ସେତେବେଳେ ହଠାତ୍ ଭୟତ୍ରସ୍ତ ହୋଇଉଠିଥିଲେ । ଯାତ୍ରାଜନିତ କ୍ଳାନ୍ତି କିମ୍ବା ସେଇ ବିରାଟ ଅନ୍ଧାରିଆ ନିର୍ଜନ ଘର କିମ୍ବା ରାତ୍ରିର ନିସ୍ତବ୍‌ଧତା କିମ୍ବା ଅନ୍ୟ କିଛି କାରଣଜନିତ ଅବସାଦ ଯୋଗୁଁ ଏଭଳି ଅଶୁଭ ଆଶଙ୍କା ହୋଇଥିବା ସମ୍ଭବ । କିଛି ସମୟ ପର୍ଯ୍ୟନ୍ତ ଚିଠିକୁ ଖୋଲିପାରିଲେ ନାହିଁ । ଖୋଲିଦେବା ପରେ ତାଙ୍କର ଅତି ପ୍ରିୟ ପୁତ୍ରର ମୃତ୍ୟୁ ସମ୍ବାଦ ତାଙ୍କୁ ଦାରୁଣ ଧକ୍‌କା ଦେଲା । ସବୁ ଦୁଃଖଠୁ ବଳି ଏ ଦୁଃଖ ତାଙ୍କୁ ଭାଙ୍ଗି ପକାଇଲା । ଆଉ ପୂର୍ବାବସ୍ଥା ଫେରିଲା ନାହିଁ । ଅଳ୍ପ କେତେବର୍ଷ ପରେ ସେ ଯେଉଁ ଭୀଷଣ ରୋଗରେ ଆକ୍ରାନ୍ତ ହେଲେ, ତା'ର କାରଣ ଏଇ ଧକ୍‌କା ବୋଲି ତାଙ୍କ ବନ୍ଧୁମାନେ କହିଲେ । ବିଚରା ଉଇଲି ! ଡେଙ୍ଗା ନରମା ହୋଇ ସୌମ୍ୟ ବାଳକଟିଏ । ଉଜ୍ଜ୍ୱଳ ବାଦାମି ଆଖି ଉତ୍ସାହରେ ଭରପୂର, ଚତୁର ଓ ଦୁଃସାହସୀ । 'ଭଗବାନ୍ ଯାହାକୁ ଭଲପାଆନ୍ତି ତାକୁ ଶୀଘ୍ର ନେଇଯା'ନ୍ତି ।

ଏହି ଘଟଣାର ଅଳ୍ପ କାଳ ପୂର୍ବରୁ ବାପା ଖୁବ୍ ନିରାଶ ହୋଇପଡ଼ିଥିଲେ । ଯେଉଁ ଗିର୍ଜାଞ୍ଚଳରେ ସେ ଅନେକ ଦିନ ରହି ଖୁବ୍ ଲୋକପ୍ରିୟ ହୋଇଥିଲେ ସେଇ ଗିର୍ଜାର ବିଶପ୍ ପଦ ଖାଲିହେବାରୁ ତାହା ପାଇବାର ସେ ଆଶା କରିଥିଲେ ଏବଂ ତାଙ୍କ ଦାବିକୁ ସେଠାର ପୁରୁଖା ଲୋକେ ସମର୍ଥନ କରୁଥିଲେ । କିନ୍ତୁ କାହିଁକି କେଜାଣି ତାଙ୍କୁ ଉପେକ୍ଷା କରାଯାଇ ଅନ୍ୟ ଅନାଗ୍ରହୀ ବ୍ୟକ୍ତିକୁ ସେ ପଦ ଯଚାଗଲା । କେହି ରାଜି ନ ହେବାରୁ ଜଣେ ଅନାମଧେୟ ବ୍ୟକ୍ତିକୁ ଦିଆଗଲା ପଛକେ ତାଙ୍କୁ ବଞ୍ଚିତ କରାଗଲା । ବାପାଙ୍କୁ ଏହା ଖୁବ୍ ବାଧିଲା । ତା'ପରେ ସେ ଅନୁଭବ କଲେ ଯେ, ବାସ୍‌ଲେର ରକ୍ଷଣାବେକ୍ଷଣ ଖର୍ଚ୍ଚ ତାଙ୍କ ଶକ୍ତି ବାହାରେ । ପଦୋନ୍ନତିଟା ପାଇଥିଲେ ସେ ଖର୍ଚ୍ଚ ତୁଲାଇ ପାରିବେ ବୋଲି ଭାବିଥିଲେ । ସେ ଆଶା ଉଭେଇଗଲା । ଗାଡ଼ିଟା ବନ୍ଦ କରି ବହୁଲୋକଙ୍କୁ ଛଟେଇ କରିଦେଇଥିଲେ ଏବଂ ଯେଉଁଦିନ ଉଇଲିର ମୃତ୍ୟୁସମ୍ବାଦ ଶୁଣିଲେ ସେଦିନ ସେ ଜାଗାଟା ଭଡ଼ାରେ ଦେବା ବିଷୟରେ ଓକିଲ ପରାମର୍ଶ କରିବା ପାଇଁ ସହରକୁ ଆସିଥିଲେ ।

ଉଇଲିୟମ୍ ବରୋଜ ମଧ୍ୟ ଜୁଆଖେଳ ବଦ୍‌ନାମୀ ପରଠାରୁ ଇଟାଲୀରେ ରହି ସେତିକିବେଳେ ସେଠାରୁ ଫେରିଲେ । ସେ ରୁକ୍ଷ, ଆତ୍ମାଭିମାନୀ, ଅକାଳ ବୃଦ୍ଧ ଓ ମାତ୍ରାଧିକ ଉପଚାର ହେତୁ ରୁଗ୍‌ଣ ହୋଇଯାଇଥିଲେ । ବାପାଙ୍କ ସହ ସମ୍ପୃକ୍ତ ରହି ସେ ତାଙ୍କ ଉପରେ କୁପ୍ରଭାବ ପକାଇଲେ ।

ଏହିସବୁ କାରଣରୁ ମୋ ସହ ଏଲେନ୍‌ର ସମ୍ପର୍କରେ ପ୍ରଥମ ସଂଘର୍ଷ ହେଲା । ବାପାଙ୍କ ହାବଭାବ କ୍ରମେ ଜଟିଳ ଓ ଦୁର୍ବୋଧ ହୋଇ ଉଠିଲା— ବେଳେ ବେଳେ ଖୁବ୍ ବିମର୍ଷ ତ ଅନ୍ୟବେଳେ ଅଟ୍ଟହାସରେ ମୁଖର । ହଠାତ୍ ସେ ଏକ ତଥ୍ୟ ଆରମ୍ଭ କରି ବସିଲେ ଯେ, ସ୍ୱୀକୃତି (ଏନ୍‌ଗେଜମେଣ୍ଟ) ପୂର୍ବରୁ କୌଣସି ସ୍ତ୍ରୀ ପୁରୁଷ ପତ୍ରାଳାପ ବା ଏକତ୍ର ବୁଲାବୁଲି କରିବା ଉଚିତ ନୁହେଁ । ମୁଁ ସେଥିରେ ପୂର୍ଣ୍ଣ ସମ୍ମତ ହୋଇ ସ୍ୱୀକୃତି କରାଇ ସାଙ୍ଗେ ସାଙ୍ଗେ ଏ ଅସୁବିଧା ଦୂର କରିବାର ପ୍ରସ୍ତାବ କଲି । କିନ୍ତୁ ଏହା ତାଙ୍କୁ ଆଦୌ ସୁହାଇଲା ନାହିଁ । ମନେହୁଏ ବରୋଜ ତାଙ୍କ ମୁଣ୍ଡରେ ଏଇ ଧାରଣା ପୂରାଇ ଦେଲେ ଯେ, ମୋର ଉଜ୍ଜ୍ୱଳ ଭବିଷ୍ୟତ ଥିବାରୁ ମୁଁ ଖୁବ୍ ଧନୀ ଏପରିକି ଗଭର୍ଣ୍ଣର ଜେନେରାଲଙ୍କ ଝିଅକୁ ବିବାହ କରିପାରେ । ବାପା ବଂଶ ତାଲିକା (Peerage)ରୁ ଆବିଷ୍କାର କଲେ ଯେ, ଲର୍ଡ୍ ଡେଲହାଉସୀଙ୍କର ଲେଡ଼ି ସୁସାନ୍ ରାମ୍‌ସେ ବୋଲି ଝିଅଟିଏ ଅଛି ଏବଂ ଅତି ପାଗଳଙ୍କ ଭଳି ସେ କଳ୍ପନା କରି ବସିଲେ ଯେ, କଲିକତାରେ ପହଞ୍ଚି ମୁଁ ସେ ଝିଅ ସହ ଯୋଗାଯୋଗ କଲା ମାତ୍ରେ ପ୍ରସ୍ତାବ ଗୃହୀତ ହୋଇଯିବ । ଅଦ୍ଭୁତ ଅଜବ କଥାସବୁ ସେ ଏ ସମ୍ପର୍କରେ ଗପିବାକୁ ଲାଗିଲେ । ଏଲେନ ଓ ମୁଁ ଏହା ଶୁଣି ଖୁବ୍ ହସିଥିଲୁ । ତା'ର ମା ଶ୍ରୀମତୀ ଗ୍ରୀଅରୀ ମଧ୍ୟ ଆମ ବିବାହ ସ୍ୱୀକୃତିକୁ ବିରୋଧ କଲେ । ଏହା ଅବଶ୍ୟ କୌଣସି ନୀତି ବା ବିଶେଷ ଚିନ୍ତାପ୍ରସୂତ ନୁହେଁ; କାରଣ ସେ ଥିଲେ ଜଣେ ଆତ୍ମଗର୍ବୀ, ସ୍ୱାର୍ଥସର୍ବସ୍ୱ, ଚପଳମନା ନାରୀ, କୌଣସି ବିଷୟରେ ସ୍ଥିର ସିଦ୍ଧାନ୍ତ ନେବା ଶକ୍ତିବିହୀନା । ଯୌବନ ସମୟରେ ସେ ସୁନ୍ଦରୀ ଥିଲେ ଏବଂ ବହୁ ପ୍ରଶଂସାକାରୀ ତାଙ୍କୁ ବେଢ଼ିଥିଲେ; କିନ୍ତୁ ସେ ବୁଝିପାରୁ ନ ଥିଲେ ଯେ ସେ ଆଉ ଯୁବତୀ ନୁହନ୍ତି । ତାଙ୍କ ଛଡ଼ା ଅନ୍ୟ କାହା ପ୍ରତି କେହି ଆକର୍ଷିତ ହେଲେ ନିଜ ବିଧିବଦ୍ଧ ଅଧିକାରରୁ ବଞ୍ଚିତା ହେବାପରି ସେ ମନେକରୁଥିଲେ । ମୋ ବାପା ଏବଂ ଶ୍ରୀ ବାଲ ତାଙ୍କୁ ବହୁ ବେଶୀ ପ୍ରଶଂସା କରୁଥିଲେ ଏବଂ ମୁଁ ତାହା କରୁ ନ ଥିବାରୁ ସେ ମୋତେ ଭଲ ପାଉ ନ ଥିଲେ । ବାପା ଓ ମୁଁ ପୁଟନିରେ ଅନେକ କାଳ କଟାଇଲୁ । ହେଲିବରୀରୁ ଦିନେ ଦୁଇଦିନ ଛୁଟି ମିଳିଲେ ମୁଁ ସେଠାରେ ଯାଇଁ ରହୁଥିଲି । ବଡ଼ପୁଅ ହେନେରୀ ଗ୍ରୀଅରି ଥିଲା ଜଣେ ମୋଟାବୁଦ୍ଧିଆ ହାମ୍‌ବଡ଼ା ଯୁବକ । କ୍ରିମିଆ ଯୁଦ୍ଧରେ ଯୋଗ ଦେଇଥିବାରୁ ତା'ର ଥିଲା ଭାରି ଗର୍ବ ଏବଂ ମୋଠାରୁ ମାତ୍ର ତିନିମାସ ବଡ଼ ହୋଇଥିଲେ ମଧ୍ୟ ମୋତେ ସ୍କୁଲ ପିଲାଟାଏ ବୋଲି ମନେ କରୁଥିଲା । କିନ୍ତୁ ଆଲଫ୍ରେଡ୍ ଗ୍ରୀଅରୀ ଓ ତା ବନ୍ଧୁ ରବଟ ହାମିଲ୍‌ଟନ୍ ଥିଲେ ମୋର ପରମବନ୍ଧୁ ଏବଂ ତାଙ୍କ ସହ ଏଲେନ ଏପରି ଏକ ବନ୍ଧୁ ଗୋଷ୍ଠୀଟିଏ ଥିଲେ ଯାହାଙ୍କ ସହ ମିଶିବା ପାଇଁ ମୋତେ ସର୍ବଦା ଭଲ ଲାଗୁଥିଲା ।

୧୮୫୭ରେ ବାପା ପୁଣି ଥରେ ଆମକୁ ପୃଥକ୍ କରିଦେବାପାଇଁ ଚେଷ୍ଟା କଲେ । କିନ୍ତୁ ଏଥର ମୁଁ ଶ୍ରୀମତୀ ଗ୍ରୀଅରୀକୁ ବିବାହ ସ୍ୱୀକୃତି ପାଇଁ ରାଜି କରାଇ ଦେଲି ଏବଂ ବାପା

ଅନିଚ୍ଛା ସତ୍ତ୍ୱେ ରାଜି ହେଲେ । ୧୮୫୭ଟି ଆନନ୍ଦରେ କଟିଗଲା । ଇଲିଅଟ ଓ ଅନ୍ୟ ଦୁଇ ବନ୍ଧୁଙ୍କ ସହ ହେଲିବରୀରେ ବେଶ୍ ସୁଖରେ ଥିଲି । ସେ ଜୀବନ ଓ କାମ ମତେ ଭଲ ଲାଗୁଥିଲା। ଏଲେନ ସହ ତାଙ୍କ ପ୍ଲାଟ୍ ହାଉସରେ କିମ୍ବା ତାକୁ ବସ୍‌ରେ ଆଣି ନ୍ୟୁ ଫରେଷ୍ଟରେ ଏକା ସାଙ୍ଗରେ ବୁଲାବୁଲି କରୁଥିଲି । ସେତେବେଳେ ଆମର ଗାଡ଼ି ନ ଥିଲା ଏବଂ ଆମର ଆର୍ଥିକ ଅସ୍ୱଚ୍ଛଳତା କରୁଣ ଭାବରେ ଫୁଟି ପଡୁଥିଲା, କିନ୍ତୁ ପ୍ରେମ ସବୁ ସୁଧାରିଦେଲା ।

ଗ୍ରୀଷ୍ମକାଳରେ ଭାରତରେ ବିଦ୍ରୋହ ଲାଗିଥିବା ଶୁଣିଲୁ । ଆମ ଅଧକ୍ଷଙ୍କ ଝିଅ ଦିଲ୍ଲୀରେ ନିହତ ହୋଇଥିବାରୁ ଏବଂ ଅନ୍ୟାନ୍ୟମାନଙ୍କ ସମ୍ପର୍କୀୟମାନେ ସେ ଦେଶରେ ଥିବାରୁ ଅନ୍ୟ ବାହାର ଘଟଣା ଅପେକ୍ଷା ଏହା ବେଶି ପ୍ରଭାବ ପକାଇଲା । ରାଜ୍ୟସାରା ସର୍ବତ୍ର ଅବମାନନା ଦିବସ ପାଳନ କରାଗଲା । ସେଦିନ ମେଲଭିଲ୍ (ଅଧକ୍ଷ) ଏପରି ଏକ ଧର୍ମବାଣୀ ପ୍ରଚାର କଲେ ଯାହାକି ଆମେ କ୍ୱଚିତ୍ ଶୁଣିଛୁ । ଦୁଃଖରେ ନଇଁପଡ଼ିଥିବା ଏହି ପକ୍ୱକେଶ ବୃଦ୍ଧ ତାଙ୍କର ରୁକ୍ଷ କିନ୍ତୁ ସୁନ୍ଦର ଉଦାତ୍ତ ସ୍ୱର ଓ ଧର୍ମ ଉପଦେଶର ଚମତ୍କାର ବାଗ୍ମିତାରେ ଭାବପ୍ରବଣ ଭାବରେ କହୁ କହୁ ମୁହଁକୁ ଘୋଡ଼ାଇ ପାଟିକରି କାନ୍ଦିଉଠିଲେ। ଏସବୁ ଏତେ ପ୍ରଭାବ ପକାଇଲା ଯାହାକି ସ୍ମୃତିରୁ ପାସୋରି ହେବ ନାହିଁ ।

ଅକ୍ଟୋବରରେ ଦିଲ୍ଲୀ ଅଧିକାର ଖବର ସାଧାରଣ ଆଲୋକସଜ୍ଜା ଦ୍ୱାରା ପାଳିତ ହେଲା । ଏହା ପରେ କଲେଜ ପ୍ରାଙ୍ଗଣରେ ନିଆଁ ଜଳାଇ ଅଧରାତି ଯାଏ ତା' ଚାରିପାଖରେ ଗୀତ ଗାଇ ମଦପିଇ କାଟିଲୁ । ବିଦ୍ରୋହରେ ବଙ୍ଗ ସିଭିଲ୍ ସଂସ୍ଥାର ଅନେକେ ପ୍ରାଣ ହରାଇଲେ ଏବଂ ସେମାନଙ୍କ ସ୍ଥାନ ପୂରଣ ପାଇଁ ପୂର୍ବରୁ ମାଡ୍ରାଜ ଓ ବମ୍ବେ ପାଇଁ ଉଦ୍ଦିଷ୍ଟ ଥିବା ବ୍ୟକ୍ତିଙ୍କୁ ବଙ୍ଗଳା ପଠାଗଲା । ମୁଁ ଥିଲି ବମ୍ବେ ପାଇଁ ଏବଂ ଇଲିଅଟ ଥିଲା ମାଡ୍ରାଜ ପାଇଁ । ଆମେ ଦୁହେଁ ବର୍ତ୍ତମାନ ବଙ୍ଗଳାକୁ ବଦଳି ହେଲୁ ।

ନୂଆ ପ୍ରତିଯୋଗିତାମୂଳକ ଭାବରେ ନିଯୁକ୍ତ ଭାରତୀୟ ସିଭିଲ୍ ସଂସ୍ଥାର ପ୍ରଥମ ଦଳଟି ୧୮୫୬ରୁ ଭାରତକୁ ଚାଲିଯାଇଥିଲେ ଏବଂ ଆମଠାରୁ ଦୁଇବର୍ଷ ଆଗୁଆ ହେଲେ, ତେଣୁ ଏ ଦୁଇ ପ୍ରକାର ବ୍ୟବସ୍ଥା ପାଖାପାଖି କାର୍ଯ୍ୟ କରୁଥିଲା । ଇଷ୍ଟଇଣ୍ଡିଆ କମ୍ପାନୀ ସ୍ଥିର କଲେ ଯେ, ମନୋନୟନ ଦ୍ୱାରା ନିଯୁକ୍ତି ହେଉଛି ସେମାନଙ୍କ ଦ୍ୱାରା ପ୍ରଚଳିତ ରୀତି । ତା'ର ଏକ ଗୌରବମୟ ଅବସାନ ହେଉ । ତେଣୁ ଶେଷଥର ପାଇଁ ସେମାନେ ପ୍ରତିଷ୍ଠିତ ବିଦ୍ୟାଳୟମାନଙ୍କରୁ ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କୁ ବାଛିବାରେ ଅସାଧାରଣ ଭାବରେ ଯତ୍ନଶୀଳ ଥିଲେ । ଫଳରେ ଏହି ଶେଷ ବର୍ଷରେ ପୁରସ୍କାର ଓ ପଦବୀ ପାଇଁ ପ୍ରତିଯୋଗିତା ଖୁବ୍ ତୀବ୍ର ହେଲା ଏବଂ ଏଥିପାଇଁ ଛ'ସାତ ଜଣ ପରସ୍ପର ପ୍ରବଳ ପ୍ରତିଯୋଗିତା କଲେ । ଇଲିଅଟ୍ ତା'ର ମୌଳିକ ଗୁଣରେ, ମଧୁର ନିର୍ଲିପ୍ତତାରେ କହିଲା ଯେ, ତାଲିକାର ଅଧାଅଧିରେ ତା' ନାଁ'ଟା ରହିଗଲେ ସେ ସନ୍ତୁଷ୍ଟ ହେବ । ମୁଁ କିନ୍ତୁ ମୋର ଉଚ୍ଚ ଆଶା, ବାପା ଓ ଡାଃ ହେସିଙ୍କର ବାରମ୍ବାର ପ୍ରବର୍ତ୍ତନା ଫଳରେ ଉଚ୍ଚସ୍ଥାନ ରଖିବା ପାଇଁ ମନ ବଳାଇଲି । ବିଷୟ ଥିଲା ସାତଟି— ଉଚ୍ଚାଙ୍ଗ ସାହିତ୍ୟ (କ୍ଲାସିକ), ଗଣିତ, ଆଇନ, ରାଜନୀତିକ ଅର୍ଥଶାସ୍ତ୍ର, ସଂସ୍କୃତ, ପାର୍ଶି ଓ ହିନ୍ଦୁସ୍ଥାନୀ । ଏଥିରେ ପ୍ରଥମ

ବ୍ୟକ୍ତିକୁ ସ୍ୱର୍ଣ୍ଣ ପଦକ ଓ ଦ୍ୱିତୀୟକୁ ପୁରସ୍କାର ମିଳିବ । ବର୍ଷର ଶେଷାର୍ଦ୍ଧରେ ମୁଁ କଠିନ ପରିଶ୍ରମ କଲି ଏବଂ ଫଳରେ ସେ ୩୨ ଜଣଙ୍କ ମଧ୍ୟରେ ଚତୁର୍ଥ ହୋଇ ପାର୍ଶିରେ ସ୍ୱର୍ଣ୍ଣପଦକ, ସଂସ୍କୃତ ଓ ଉଚ୍ଚାଙ୍ଗ ସାହିତ୍ୟରେ ପୁରସ୍କାର ଏବଂ ଅନ୍ୟ ସବୁ ବିଷୟରେ ୩ୟ ବା ଚତୁର୍ଥ ହେଲି; କିନ୍ତୁ ହାୟ ! ଗଣିତଟି ସ୍ୱେଥାମ୍ରୁ ମୋର ପ୍ରଧାନ ପ୍ରତିବନ୍ଧକ ହୋଇରହିଲା । ସମସ୍ତେ ଭାବୁଥିଲେ, ଗଣିତରେ ମୁଁ ଏତେ କମ୍ ରଖି ନ ଥିଲେ ସେ ବର୍ଷ ପ୍ରଥମ ହୋଇଥାନ୍ତି । ସି.ଆଇ. ବର୍ଣ୍ଣାଡ୍ ପ୍ରଥମ, ଫିଲିପ୍ ହଚିସନ୍ ଦ୍ୱିତୀୟ ହେଲେ । ଇଲିଅଟ ଦଶମ କିମ୍ବା ଦ୍ୱାଦଶ ହେଲା ।

ଡିସେମ୍ବର ସାତରେ ଗଣ୍ୟମାନ୍ୟ ସମାବେଶରେ ଡିରେକ୍ଟର ବୋର୍ଡ୍ ଚେୟାରମ୍ୟାନ୍ ପୁରସ୍କାର ଦେଲେ । ସେଦିନଟି ସେଇ ପୁରାତନ ସ୍କୁଲରେ ଆମର ଥିଲା ଶେଷଦିନ । ପୁରସ୍କାର ପରେ ଖୁବ୍ ଖିଆପିଆ ହେଲା । ମୋ ବାପା ଓ ଅନ୍ୟ ଅନେକଙ୍କ ଆତ୍ମୀୟ ସେଠାରେ ଉପସ୍ଥିତ ଥିଲେ । ତା'ପରେ ଲାଗିଲା ଦନ୍ଧାବନ୍ଧିର ତନାଘନା, ପୁରୁଣା ଦୃଶ୍ୟଗୁଡ଼ିକୁ ଆଉଥରେ ଚାହିଁନେବା, କରମର୍ଦ୍ଦନ, ଚାକରମାନଙ୍କୁ ବକ୍‌ସିସ୍ ଏବଂ ଶେଷ ବିଦାୟ । ସେତେବେଳଠାରୁ ଆଜି ପର୍ଯ୍ୟନ୍ତ ମୁଁ କେତେଥର ଥମ୍‌ସନ୍‌ଙ୍କର 'କ୍ୟାସଲ୍ ଅଫ୍ ଇଣ୍ଡୋଲେନ୍‌ସ'ରୁ ସେହି କେତୋଟି ଧାଡ଼ି ଉଦ୍ଧାର ନ କରିଛି !

ଆଳସ୍ୟର ସୁଉଚ୍ଚ ପ୍ରାସାଦେ ବିଳାସିତା ହେଲେହେଁ ଅଳିକ
କି ସୁନ୍ଦର କାଟିଲୁ ଜୀବନ ହେଉ ପଛେ ତା' ମାତ୍ର କ୍ଷଣିକ !

ହେଲିବରୀରେ ଶୃଙ୍ଖଳା ଓ ନୈତିକତାର ମାନ ଅତି ଲଜ୍ଜାଜନକ ଓ ନୀଚ ଥିଲେ ମଧ୍ୟ ଏଇ ଲୋକେ ଭାରତରେ ଅଧିକାଂଶ କ୍ଷେତ୍ରରେ ସଫଳ ହେଲେ ଏବଂ ଦୁଇବର୍ଷର ଏକତ୍ରାବସ୍ଥାନ ଫଳରେ ଆମ ମଧ୍ୟରେ ସୌହାର୍ଦ୍ଦ୍ୟ ପ୍ରତିଯୋଗିତାବାଲାଙ୍କ ପାଖରେ ନ ଥିଲା ।

ପରବର୍ତ୍ତୀ ଦୁଇମାସ ମୋ ପୋଷାକ ତିଆରି ଓ ବନ୍ଧୁବାନ୍ଧବଙ୍କଠାରୁ ବିଦାୟ ନେବାରେ କଟିଲା । ଇଷ୍ଟଇଣ୍ଡିଆ କମ୍ପାନୀ ସହ ଏକ ଚୁକ୍ତି ହେଲା, ଯାହାଦ୍ୱାରା ଆମେ 'ଚୁକ୍ତିବଦ୍ଧ ସିଭିଲ୍ ସଂସ୍ଥାର ସେବକ' ବୋଲି ଭାରତରେ ନାମିତ ହେଲୁ । ଏ ବିଷୟରେ ଗୋଟିଏ ଅସୁବିଧା ସୃଷ୍ଟି ହେଲା । କମ୍ପାନୀ ମାତ୍ର ଏକ ବ୍ୟବସାୟୀ ସଂସ୍ଥା ଥିବା ସମୟରୁ ଏହି ଦଲିଲ୍ (ଚୁକ୍ତିପତ୍ର)ର ଭାଷା ଥିଲା ଏହିପରି— 'ଏକ ପକ୍ଷରେ ଇଷ୍ଟଇଣ୍ଡିଆ କମ୍ପାନୀ ଏବଂ ଅନ୍ୟପକ୍ଷରେ ଜନ ବୀମ୍‌ସଙ୍କ ମଧ୍ୟରେ ସମ୍ପାଦିତ ଏହି ଚୁକ୍ତିପତ୍ର' । ଏଥିରେ ପୁଣି ଉଲ୍ଲେଖ ଥିଲା ଯେ, ଏହି କମ୍ପାନୀ ଏହି ଜେ.ବି.କୁ ବଙ୍ଗଳା ବିଭାଗର ସିଭିଲ୍ ସଂସ୍ଥାରେ ଗ୍ରହଣ କରୁଛି ଏବଂ ଏହି କାର୍ଯ୍ୟପାଇଁ ନିୟମ ଓ ବ୍ୟବସ୍ଥାନୁଯାୟୀ ଦରମା, ପଦୋନ୍ନତି, ଅବସର ଭତ୍ତା ଦେବାପାଇଁ ଚୁକ୍ତିବଦ୍ଧ ହେଉଛି ଏବଂ ଏହି ଜେ.ବି. ଗୁଡ଼ିଏ ଲମ୍ବା ସର୍ତ୍ତରେ ରାଜି ଅଛନ୍ତି ଯାହାର ଅଧିକାଂଶ ଭାଗ ଅଚଳ ଓ ଅବାସ୍ତବ । ଏହା ସହ ଥିଲା ଏକ ଜାମିନ ପତ୍ର ଯେଉଁଥିରେ ଦୁଇଜଣ ଜାମିନ୍‌ଦାରଙ୍କ ଦସ୍ତଖତ ରହିବ । ଜଣେ ଜାମିନଦାର ହେବେ ଚୁକ୍ତିକର୍ତ୍ତାଙ୍କ ବାପା ହଜାରେ ପାଉଣ୍ଡ ପାଇଁ ଏବଂ ଦ୍ୱିତୀୟଟି ଅନ୍ୟ କେହି ଜଣେ ଚାରିହଜାର ପାଉଣ୍ଡ ପାଇଁ । ଏସବୁ ଗତାନୁଗତିକ । କାରଣ ସେସବୁ ସର୍ତ୍ତ ତିଆରିବେଳର ଅବସ୍ଥା କେଉଁକାଳୁ ଯାଇଥିଲା ଏବଂ ସେସବୁର ପାଳନ ବର୍ତ୍ତମାନ ଅସମ୍ଭବ;

କିନ୍ତୁ ବାପା ଏସବୁ ଜାଣିନଥିଲେ ଏବଂ ହଠାତ୍ ଏପରି ଏକ କାମ କଲେ ଯାହା ଆମକୁ ଆଶ୍ଚର୍ଯ୍ୟ କଲା । ଭାରତରେ ଦୁଇବର୍ଷ ନ ରହିବା ଯାଏ ମୁଁ ଏଲେନକୁ ବିବାହ କରିବି ନାହିଁ, ଏଇ କଥା ନ ହେଲେ ସେ ଜାମିନପତ୍ରରେ ଦସ୍ତଖତ ଦେବେ ନାହିଁ ବୋଲି କହିଦେଲେ । ମୁଁ ଜାଣିଗଲି ଯେ ଭାରତକୁ ଯାଇ ମୁଁ ଏଲେନକୁ ଭୁଲିଯାଇ ଅନ୍ୟ ଭଲ ଜାଗାରେ ବାହା ହେବି ବୋଲି ସେ ଆଶା କରୁଛନ୍ତି । ତାଙ୍କ ମନ ମଧ୍ୟରେ ନିଶ୍ଚୟ ସେଇ ଝିଅଟି ଥିଲା ଯାହାକୁ ଆମେ କିଛି ଥଟ୍ଟା ଓ କିଛି ବିରକ୍ତିରେ ଲେଡି ସୁସାନ ରାମ୍‌ସେ ବୋଲି କହୁଥିଲୁ । ବହୁ ଟଣାଓଟରା ଆରମ୍ଭ ହେଲା । ଶ୍ରୀ ବାଲ୍ ଓ ଶ୍ରୀମତୀ ଗ୍ରୀଅରୀ ମୋତେ ଏ ସବୁର ପ୍ରତିରୋଧ କରିବାକୁ ଉପଦେଶ ଦେଲେ; କିନ୍ତୁ ଏଲେନ୍ ଓ ମୁଁ ଅନୁଭବ କଲୁ ଯେ ତାହା ଅନାବଶ୍ୟକ । ତେଣୁ ଶେଷରେ ଦୁଃଖ ଓ ଅନିଚ୍ଛା ସତ୍ତ୍ୱେ ତାଙ୍କ କଥା ମାନିଯାଇ କଥା ଦେଲି । ଦ୍ୱିତୀୟ ଜାମିନ୍ ହେଲେ ବୃଦ୍ଧ ଧର୍ମଯାଜକ । ୧୮୫୮ରେ ଚୁକ୍ତି ସ୍ୱାକ୍ଷରିତ ହେଲା ଏବଂ ସେହିଦିନଠାରୁ କମ୍ପାନୀ ଓ ରାଜାଙ୍କ ଅଧୀନରେ ମୋର ଲମ୍ବା ଚାକିରି ଜୀବନ ଆରମ୍ଭ ହେଲା ।

ପି.ଏଣ୍ଡ୍ ଓ କମ୍ପାନୀର ଦୁଇହଜାର ଟନର ନୂଆ ଷ୍ଟିମର୍‌ଟିରେ ମୋର ଯାତ୍ରା ସ୍ଥିର ହେଲା । ସେ ସମୟରେ ତାହା ବଡ଼ ଜାହାଜ ବୋଲି ମନେକରାଯାଉଥିଲା । ଅଧିକାଂଶ ସମୟ ମୁଁ ଓ ଏଲେନ୍ ପୁଟ୍‌ନିରେ କଟାଇ ଭବିଷ୍ୟତ ସମ୍ବନ୍ଧରେ ଆଲୋଚନା କଲୁ । ଶ୍ରୀମତୀ ଗ୍ରୀଅରୀ ରୋଗରେ ପଡ଼ି ଶଯ୍ୟାଶାୟୀ ହେବାରୁ ଆମେ ଏକତ୍ର ହେବାର ବହୁ ସୁଯୋଗ ପାଇଲୁ, ଯଦିଓ ସ୍ୱଭାବସୁଲଭ ସ୍ୱାର୍ଥପରତା ଫଳରେ ସେ ଏଲେନ୍‌କୁ ରୋଗୀଗୃହକୁ ଡକାଇ ପାରୁପର୍ଯ୍ୟନ୍ତ ପାଖରେ ରଖାଇ ନିଜ ଦେଖାଚାହାଁ କରାଇବାର ଚେଷ୍ଟା କଲେ । ଶ୍ରୀମତୀ ବାଲ ଅକୁଳୀନା ହେଲେ ମଧ୍ୟ ଉତ୍ତମ ସ୍ତ୍ରୀଲୋକ । ସେ ଉଭୟ ଶ୍ରୀମତୀ ଗ୍ରୀଅରୀ ଓ ଶ୍ରୀ ବାଲକ ଦ୍ୱାରା ଅବହେଳିତା ଓ ନିର୍ଯାତିତା ହେଉଥିଲେ । ସେ ଆମକୁ ସାହାଯ୍ୟ କରି ଏଲେନ୍ ସ୍ଥାନରେ ରୋଗୀ ଗୃହରେ ରହୁଥିଲେ ।

ଶେଷରେ ବିଦାୟ ସମୟ ଆସିଲା । ଫେବୃୟାରୀ ୬ ତାରିଖରେ ଆମେ ପୁଟ୍‌ନିରେ ବାପାଙ୍କ ପଢ଼ାଘରେ ଏକାଠି ହୋଇ ଜାନୁପାତପୂର୍ବକ ପରସ୍ପର ପ୍ରତି ବିଶ୍ୱସ୍ତ ରହିବା ଓ ଦୁଇବର୍ଷ ପରେ ମିଳନ କରାଇ ଦେବାପାଇଁ ଭଗବାନ୍‌ଙ୍କୁ ପ୍ରାର୍ଥନା କଲୁ । ପରଦିନ ସକାଳେ ମା'ଙ୍କୁ ବିଦାୟ ସମ୍ଭାଷଣ ଜଣାଇ ବାପାଙ୍କ ସାଙ୍ଗରେ ସାଉଦାମ୍ପଟନ ଗଲି ଏବଂ ଦୁଇଟାବେଳେ 'ପେରା'ରେ ଚଢ଼ିଲି । ସେ ସଙ୍ଗେ ସଙ୍ଗେ ଆଶ୍ରୟସ୍ଥଳରୁ ବାହାରିଲା । ବାପା ମୋତେ ଛାଡ଼ିଗଲା ବେଳେ ଚୁମ୍ବନ କଲେ ଏବଂ ହାତଧରି ହଲାଇଲେ । ଆମ ମନ ଭିତରେ ବହୁତ କିଛି କହିବାର ଥିଲା । ବିରାଟ ଜାହାଜଟା ଜେଟିରୁ ଧୀରେ ଧୀରେ ବୁଲିଗଲାବେଳେ ମୁଁ ତାଙ୍କ ଦୀର୍ଘ ଶରୀରକୁ ଗହଳି ଠେଲି ଆସୁଥିବାର ଦେଖିଲି; ଅତ୍ୟଧିକ ଭାବବିହ୍ୱଳ ହୋଇ ତାଙ୍କ ମୁହଁ ରକ୍ତଶୂନ୍ୟ ଦିଶୁଥିଲା । ସେ ଉଚ୍ଚ ଗଳାରେ ପାଟିକଲେ— ''ଭଗବାନ୍ ମଙ୍ଗଳ କରନ୍ତୁ ।'' ମୁଁ ପାଟିକରି ପ୍ରତ୍ୟୁତ୍ତର ଦେଲି— ''ଭଗବାନ୍ ଆପଣଙ୍କର ମଙ୍ଗଳ କରନ୍ତୁ ।'' ଅଳ୍ପ ସମୟରେ ସେ ଲୁଚିଗଲେ । ସେଇ ଥିଲା ମୋର ତାଙ୍କୁ ଶେଷ ଦେଖିବା । ତାଙ୍କର ସମସ୍ତ କଠୋରତା ଓ ସମୟେ ସମୟେ ଅନ୍ୟାୟ (ମୋ ମତରେ) ସତ୍ତ୍ୱେ ମୁଁ ତାଙ୍କୁ ଖୁବ୍ ଭଲ ପାଉଥିଲି । ବାସ୍ତବିକ ସେ ଥିଲେ ମୋର ସବୁଠାରୁ ଅଧିକ ଆପଣାର, ସମ୍ମାନିତ ଓ ବାଞ୍ଛିତ ବନ୍ଧୁ ଏବଂ ସହଚର । ସେ

ନିଜେ କହନ୍ତି ଯେ, ସେ କେବଳ ମୋ ଶରୀରର ପିତା ନୁହନ୍ତି, ମନର ମଧ୍ୟ । ତାଙ୍କର ବର୍ଷକାଳବ୍ୟାପୀ ଯତ୍ନ ଓ ସଂଯମ ଫଳରେ ହିଁ ମୁଁ ଓ ମୋର ଭାଇମାନେ ଶିକ୍ଷା ପାଇପାରିଲୁ ଏବଂ ଜୀବନଯୁଦ୍ଧରେ ଏପରି ଚମତ୍କାର ସ୍ଥାନ ପାଇଲୁ । ତାଙ୍କଠାରୁ ବିଚ୍ଛେଦର ଦୁଃଖ ଖୁବ୍ ଗଭୀର ହେଲା ।

କିନ୍ତୁ ସ୍ୱାଧୀନ ଭାବରେ ସଂସାରକୁ ପ୍ରବେଶ କରୁଥିବାର ଉଲ୍ଲାସ ମଧ୍ୟରେ ଅଧିକାଂଶ ଭାବନା ବୁଡ଼ିଗଲା । ସୋଲେଣ୍ଟ ମଧ୍ୟ ଦେଇ ଯାଉଥିବାବେଳେ ମୋର ବାଲ୍ୟ ପରିଚିତ ସ୍ଥାନଗୁଡ଼ିକୁ ଦେଖିଲି । ବିକନବନି, ଯେଉଁଠି ଆମେ ଗାଧୋଉଥିଲୁ-ଚିଉଟନ୍, ଯେଉଁଠି ଆଗନେସ୍ ମାରିଆଟ ପାଇଁ ଦୁଃଖ ପ୍ରକାଶ କରିଥିଲି, ହ୍ୟାଲିଫାକ୍ସ କ୍ୟାସଲ ଏବଂ ଶେଷରେ କ୍ରାଏଷ୍ଟ ଚର୍ଚ୍ଚ ମିନିଷ୍ଟରର ମିନାର । ତା'ପରେ ସମୁଦ୍ର ଖୁବ୍ ବିସ୍ତାରିତ ହୋଇଗଲା । ମୁଁ ତଳକୁ ଚାଲିଗଲି, ଆଉ କିଛି ଜାଣିପାରିଲି ନାହିଁ ।

ତା'ପରେ ପାଞ୍ଚଦିନ ଗୋଟାଏ ଦୁଃସ୍ୱପ୍ନ ପରି କଟିଗଲା । ବିସ୍କେ ଉପସାଗରରେ ଭୀଷଣ ବାତ୍ୟାରେ ପଡ଼ିଲୁ । ମୁଁ ବେମାର ପଡ଼ି ମରିଯିବି ବୋଲି ମନେହେଲା । କୋଠରି କାନ୍ଥରେ ଥିବା ଗୋଲାକାର ଫାଙ୍କ ମଧ୍ୟ ଦେଇ ଆସୁଥିବା ଆଲୋକକୁ ଚାହିଁଥାଏ, ଯାହାକି ଜାହାଜର ହଲିବା ସହ ଉଠୁଥାଏ ପଡୁଥାଏ । ବେଳେ ବେଳେ ଦେହ କମ୍ପିଉଠି ଝଲକାଏ ସବୁଜ ଆଲୋକ ଖେଳିଯାଇ ଜଣାଇ ଦେଉଥିଲା ଯେ, ବିରାଟ ତରଙ୍ଗଟାଏ ଉପର ଦେଇ ଚାଲିଗଲା । ଆମେ ବିପଦରେ ପଡ଼ିଛୁ ବୋଲି ମୋର ମନେହେଲା; କିନ୍ତୁ ମୁଁ ଏତେ ପୀଡ଼ିତ ଥିଲି ଯେ ଅନ୍ୟ କିଛି ଭାବି ପାରୁ ନ ଥିଲି । ଫିନିସ୍ତର ଅନ୍ତରୀପରେ ପହଞ୍ଚିବାବେଳେ ସମୁଦ୍ର ଶାନ୍ତି ହେଲା । ମୁଁ ରୋଗମୁକ୍ତ ହେଲି । କଷ୍ଟେମଷ୍ଟେ ପୋଷାକ ପିନ୍ଧି ଡେକ୍ ଉପରେ ଚଢ଼ିଲି । ପରଦିନ ଖୁବ୍ ଜୋରରେ ପବନ ବହୁଥିବାବେଳେ ଆମେ ଜିବ୍ରାଲଟର ପ୍ରଣାଳୀରେ ପ୍ରବେଶ କଲୁ । ସେ ସ୍ଥାନର ମୁକ୍ତ, ସ୍ୱଚ୍ଛ ପବନ, ବଡ଼ ବଡ଼ ପାହାଡ଼ କାଛିରେ ଖୋଳାଯାଇଥିବା ଖୋପମାନଙ୍କରୁ ବାହାରକୁ ମୁହଁ କରିଥିବା କମାଣ, ମଣିଷ, ଘର, ଉଦ୍ୟାନ, ବିପଣୀ ଯାହା କିଛି ଦେଖିଲି ସବୁ ଥିଲା ସୁନ୍ଦର ଓ ପ୍ରୀତିପଦ । ସେ ଏକ ନୂତନ ଜୀବନର ଆରମ୍ଭ ।

ଜିବ୍ରାଲ୍‌ଟରରେ ମାନିଲାକୁ ଯାଉଥିବା ଦଳେ ସ୍ପେନବାସୀ ଉଠିଲେ । ସେଥିରୁ ଦୁଇଜଣଙ୍କ ସ୍ଥାନ ଥିଲା ମୋ କୋଠରିରେ । ଏଭ ସମ୍ଭ୍ରାନ୍ତ ମେଳାପୀ ସ୍ପେନୀୟ ଭଦ୍ରବ୍ୟକ୍ତିମାନଙ୍କ ଗହଣରେ ମୁଁ ସୁସ୍ଥ ହୋଇଉଠିଲି । ସେମାନେ ମୋତେ ସ୍ପେନଭାଷା ପଢ଼ାଇଲେ । ବିଭିନ୍ନ ଭାଷାରେ ଆଗ୍ରହୀ ଥିବାରୁ ମୁଁ ଏହା ମନଦେଇ ଶିଖିଲି । ସିଂହଳରେ ସେମାନେ ଓହ୍ଲାଇଲାବେଳକୁ ମୁଁ ସେ ଭାଷାରେ ଯଥେଷ୍ଟ ଜ୍ଞାନ ପାଇଥିଲି ।

ମାଲଟାଠାରେ ଆମେ କାର୍ଣ୍ଣୀଭାଲ ଦେଖିଲୁ ଏବଂ କୌତୁକରେ ଯୋଗଦେଲୁ । ଆଲେକ୍‌ଜାଣ୍ଡ୍ରିଆରେ ଓହ୍ଲେଇ ଟ୍ରେନରେ କାଇରୋ ଗଲୁ । ସେଠାରେ ମାର୍ଶେଲିରୁ ଆସିଥିବା ଯାତ୍ରୀଙ୍କ ପାଇଁ ଆମେ କିଛି ସମୟ ଅପେକ୍ଷା କଲୁ । ଏଇଠାରେ ମୋର ପ୍ରିୟ ବନ୍ଧୁ ଇଲିଅଟକୁ ଭେଟିଲି ! ଦୁହେଁ ଖୁବ୍ ଖୁସି ହେଲୁ । ସେଠାରେ ସ୍ୱାଡ଼େନବାସୀ ଜଣେ ଚିତ୍ରକର ଲୁଣ୍ଡଗ୍ରେନ୍

ଥିଲେ । ଇଲିଅଟ୍ ଓ ମୁଁ ତାଙ୍କଠାରୁ ଚିତ୍ରକଳା ସମ୍ପର୍କରେ କେତେକ ମୂଲ୍ୟବାନ୍ ଉପଦେଶ ଲାଭ କଲୁ । ସେ ଯାଉଥିଲେ ଭାରତକୁ ରାଜା ଆଲବର୍ଟଙ୍କ ପାଇଁ ବିଦ୍ରୋହର କେତେକ ପ୍ରଧାନ ଦୃଶ୍ୟ ଆଙ୍କିବାକୁ । ଡେକ୍‌ଉପରେ ପଟ୍ଟୁପଟ୍ଟୁ ସେ ମୋ ମୁଣ୍ଡର ଏକ ଛବି ଆଙ୍କିଦେଲେ । ଏହା ଏବେ ବି ଅଛି । ସେତେବେଳେ ମୁଁ ଯେପରି ଥିଲି ତା ସହ ଏହା ଅନେକ ସମାନ । ଲୁଣ୍ଡଗ୍ରେନ୍ ଫରାସୀ, ସ୍ପେନୀୟ, ଜର୍ମାନ ଓ ଇଂରାଜୀ ପରିଷ୍କାର କହିପାରୁଥିଲେ । ତାଙ୍କ ଉଚ୍ଚାରଣ ଥିଲା ଅଦ୍ଭୁତ । 'ଜଲି'କୁ କହୁଥିଲେ 'ୟୋଲି' 'ଅଫୁଲ୍'କୁ 'ଅଓ୍ୱିଫଲ' ।

କାଇରୋରୁ ଆମେ ସକାଳୁ ଟ୍ରେନ୍‌ରେ ବାହାରିଲୁ । କିନ୍ତୁ ଘଣ୍ଟାଏ ଯାତ୍ରାକଲା ପରେ ରେଲରାସ୍ତା ହଠାତ୍ ମରୁଭୂମି ମଝିରେ ସରିଗଲା । ଆମ ମାଲପତ୍ର ସବୁ ଯେଉଁ ଓଟ ଉପରେ ଲଦା ହେଲା, ସେଗୁଡ଼ିକ ସଶରୀରରେ ଥିବା ଆବ୍ରାହାମ୍, ଇଶାକ ଓ ଜାକୋବଙ୍କ ଦ୍ୱାରା ଚାଳିତ ହେଉଥିଲେ ଏବଂ ଆମେ ଯାତ୍ରୀମାନେ ଛ'ଜଣ କରି ଖଚର ଟଣା ଦୁଇଚକିଆ ଛୋଟ ସବୁଜରଙ୍ଗର ଗାଡ଼ିରେ ଭର୍ତ୍ତିହେଲୁ । ସେ ସବୁର ଏକ ଲମ୍ୱା ଶୋଭାଯାତ୍ରା ଚାଲିଲା । ସେଗୁଡ଼ାକର ଧକଡ଼ଚକଡ଼ ବଡ଼ ଅସ୍ୱସ୍ତିକର ହେଲା । ସୂର୍ଯ୍ୟ ବୁଡ଼ିଲାବେଳକୁ ଆମେ ଆବର୍ଜନାପୂର୍ଣ୍ଣ ସୁଏଜରେ ପହଞ୍ଚିଲୁ ଏବଂ ଓଟ ଯାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ ଗୋଟାଏ ଖୋଲା ଚଟିଘରେ ଅତି କଦର୍ଯ୍ୟ ଓ ତରବରିଆ ଭାବରେ ଖିଆସାରି, 'ବେଙ୍ଗଲ'ରେ ଚଢ଼ିଲୁ । ଏହା ପୁରାତନ, ବହୁକାଳୁ ଜୀର୍ଣ୍ଣ, ପ୍ରଶସ୍ତ ଓ ପତ୍ରପରି ଗଭୀର ଏକ ଜାହାଜ । ଇଲିଅଟ୍ ଓ ମୁଁ ଗୋଟାଏ ବଖରାରେ ଓ ଲୁଣ୍ଡଗ୍ରେନ ପାଖ ବଖରାରେ ରହିଲୁ । ଏହି ଧୀରଗାମୀ ଜାହାଜରେ ଶୋଇ ଶୋଇ ଅଳସ ଭାବେ ସମୟ କଟିଲା । କିନ୍ତୁ ଆମେ ସ୍କେଚିଂ କରି, ଚିତ୍ରକଳା ଓ ଭ୍ରମଣ ବିଷୟରେ ଲୁଣ୍ଡଗ୍ରେନଙ୍କ ସହ ଆଲୋଚନା କରି, ସ୍ପେନୀୟ ଓ ଫରାସୀମାନଙ୍କ ସହ ସ୍ପେନୀୟ ଓ ଫରାସୀ କହି ଆନନ୍ଦରେ ରହିଥିଲୁ । ବାଟରେ ପଡ଼ିଲା ରୌଦ୍ରଦଗ୍ଧ ଏଡ଼େନ୍, ସବୁଜ ସିଂହଳ, ବିକ୍ଷିପ୍ତ ସହର ମାନ୍ଦ୍ରାଜ ଏବଂ ଶେଷରେ ପ୍ରାୟ ଛ'ସପ୍ତାହର ଜଳଯାତ୍ରା ପରେ ୧୬ ମାର୍ଚ୍ଚରେ କଲିକତାର ଗାର୍ଡ଼େନରିଚ୍‌ରେ ଓହ୍ଲେଇଲୁ । କଲିକତାର ପ୍ରଥମ ଦୃଶ୍ୟଟି ଆମ ମନକୁ ବେଶ୍ ପାଇଲା । ଧାଡ଼ିଧାଡ଼ି ଜାହାଜମାଳା, 'ପ୍ରାସାଦମାଳିନୀ ନଗରୀ'ର ଧାଡ଼ିଧାଡ଼ି ସୁଉଚ୍ଚ ଅଟ୍ଟାଳିକା ଏବଂ ସବୁଜ ଉଦ୍ୟାନଘେରା ସୁଦୃଶ୍ୟ ବସତି ସବୁ ସୁନ୍ଦର ଛବିଟିଏ ପରି ଥିଲା । ହେଲିବରୀର କେତେକ ପୁରାତନ ବନ୍ଧୁ ଆମକୁ ଭେଟିବାକୁ ଆସିଲେ ଏବଂ ଏହିପରି ଭାବରେ ଜୀବନ ଓ ପ୍ରାଣଶକ୍ତିରେ ଭରପୂର ହୋଇ, ଆଶା ଉଦ୍ଦୀପନାର ପ୍ରାଚୁର୍ଯ୍ୟ ମଧ୍ୟରେ ନୂତନ କର୍ମଜୀବନ ଆରମ୍ଭ କରିବା ଇଚ୍ଛାରେ ମୁଁ ୧୮୫୮ ମାର୍ଚ୍ଚ ୧୬ ତାରିଖରେ ଭାରତରେ ପଦାର୍ପଣ କଲି ।



## ଷଷ୍ଠ ପରିଚ୍ଛେଦ

### କଲିକତା : ୧୮୫୮-୫୯

ସେତେବେଳ ପର୍ଯ୍ୟନ୍ତ ବିଦ୍ରୋହ ଦବି ନ ଥାଏ । ଗଭର୍ଣ୍ଣର ଜେନେରାଲ ଲର୍ଡ଼ କ୍ୟାନିଂ ଆଲାହାବାଦରେ ରହୁଥାନ୍ତି ଏବଂ ତାଙ୍କ ଜାଗାରେ କାଉନ୍‌ସିଲର ପ୍ରେସିଡେଣ୍ଟ୍ ଜନ୍ ପିଟର ଗ୍ରାଣ୍ଟ କଲିକତାରେ ରହି ଶାସନ କରୁଥାନ୍ତି । ସିପାହିମାନଙ୍କ ଭୟରେ ସମସ୍ତେ ତ୍ରସ୍ତ ଥାଆନ୍ତି । ସମସ୍ତ ଭୌଗୋଳିକ ଯୁକ୍ତିକୁ ଅଗ୍ରାହ୍ୟ କରି ସେମାନେ ଯେ କୌଣସି ମୁହୂର୍ତ୍ତରେ କଲିକତା ଆକ୍ରମଣ କରିବେ ବୋଲି ଶଙ୍କିତ ଥାଆନ୍ତି ।

ଇଲିଅଟ୍ ଓ ମୁଁ ଓହ୍ଲାଇବା ପରେ ଡି. ଉଇଲସନ୍ ହୋଟେଲ (ବର୍ତ୍ତମାନର ନାମ ଗ୍ରେଟ୍ ଇଷ୍ଟର୍ଣ୍ଣ)କୁ ଗଲୁ । ଏହି ବିରାଟ, ଆବଦ୍ଧ, କୋଳାହଳପୂର୍ଣ୍ଣ କଦର୍ଯ୍ୟ ସ୍ଥାନରୁ ରୋଷେଇ ଓ ପଚା ଧୂଆଁପତ୍ରର ମିଶ୍ରିତ ଗନ୍ଧ ଆସୁଥିଲା । ତାହା ଆମେ ବେଶୀ ସମୟ ସମ୍ଭାଳି ପାରିଲୁ ନାହିଁ । ବୋଡ଼ିଂ ଘରେ କୋଠରି ନେବାପାଇଁ ଆମକୁ କୁହାଗଲା । ସୌଭାଗ୍ୟବଶତଃ କଲିକତାରେ ସେପରି ଘରମାନଙ୍କ ମଧ୍ୟରୁ ସବୁଠୁ ଭଲ ୩-ମିଡ଼ିଲଟନ ଷ୍ଟ୍ରିଟରେ କୁମାରୀ ରାଇଟ୍‌ଙ୍କ ଘରଟି ଆମେ ପାଇଲୁ । ଏହି ବିରାଟ ଆରାମଦାୟକ ଘରର ପ୍ରଥମ ମହଲାରେ ପ୍ରଶସ୍ତ, ମୁକ୍ତବାୟୁବାହୀ, ସୁନ୍ଦର ଆସବାବ ସଜ୍ଜିତ ଇଂଲାଣ୍ଡର ଗିର୍ଜା ଆକାରର ଗୋଟିଏ ବସିବାଘର ଓ ଦୁଇଟି ପ୍ରଶସ୍ତ ଶୋଇବାଘର ଥିଲା । ଏଥିପାଇଁ ଆମକୁ ଖାଇବାଖର୍ଚ୍ଚ ସହ ମାତ୍ର ୩୦୦ ଟଙ୍କା (୩୦ ପାଉଣ୍ଡ) ପଡ଼ିଲା । ତା'ଛଡ଼ା ଆମକୁ ଆମର ଚାକର ରଖିବାକୁ ପଡ଼ିଲା । ମୁଁ ଦେଖିଲି ମୋର ମାସିକ ଦରମା ହେଉଛି ୩୩୩ ଟଙ୍କା ୩ଅଣା ୩ ପାହି, ପ୍ରାୟ ୩୩ ପାଉଣ୍ଡ ୪ ସିଲିଂ ସହ ସମାନ ବା ବାର୍ଷିକ ୪୦୦ ପାଉଣ୍ଡ । ଏଥିରୁ ଘରଭଡ଼ାର ମୋ ଅଂଶ ଅଧିକ ୧୫୦ ଟଙ୍କା, ଜଣେ ବେହେରା, ଜଣେ ଖିଦମଦଗାର ବା ପିଅନ ଏବଂ ଜଣେ ମେହେନ୍ତର, ଏପରି ତିନିଜଣ ଚାକରଙ୍କ ପାଇଁ ୫୦ ଟଙ୍କା ମୋତେ ଦେବାକୁ ପଡୁଥିଲା । ମୋ ପାଇଁ ପୋଷାକ, ମଦ ଓ ବିଅର ମୋତେ କିଣିବାକୁ ପଡୁଥିଲା । କଲିକତା ଭଳି ବ୍ୟୟବହୁଳ ଜାଗାପାଇଁ ଏ ରୋଜଗାର ଯଦିଓ ବେଶୀ ନୁହେଁ ତଥାପି ମିତବ୍ୟୟରେ ଚଳିଥିଲେ ଯଥେଷ୍ଟ ହୋଇଥାନ୍ତା; କିନ୍ତୁ ଆମ ମଧ୍ୟରୁ କାହାର ମିତବ୍ୟୟିତା ସମ୍ପର୍କରେ ସାମାନ୍ୟତମ ଧାରଣା ନ ଥିଲା । ଅର୍ଥ କାରବାରରେ ଆମେ ଦୁହେଁ ନିତାନ୍ତ ଅନଭିଜ୍ଞ ଥିଲୁ— ମୋତେ କିଛି ଅର୍ଥ ମିଳୁ ନ ଥିବାରୁ ଏବଂ ଇଲିଅଟକୁ ଯେତେ ଇଚ୍ଛା ସେତେ ମିଳୁଥିବାରୁ ଏ ଅବସ୍ଥା ।

ସର୍ବସାଧାରଣ ଖାଇବା ଟେବୁଲରେ ଉତ୍ତମ ଲୋକମାନଙ୍କ ସହ ଆମର ପରିଚୟ ହେଲା । କଲିକତାର ବହୁ ବୋଡ଼ିଂଘର ଇଂଲାଣ୍ଡର ଘରୋଇ ହୋଟେଲ ପରି— ଅଧିକା ଥିଲା

ସର୍ବସାଧାରଣ ଟେବୁଲ । ସମାଜର ଉଚ୍ଚପଦର ବ୍ୟକ୍ତି ମଧ କଲିକତାରେ ପ୍ରାସାଦୋପମ ଘର, ଚାକରବାକରଙ୍କ ବାହିନୀ ପ୍ରଭୃତି ରଖିବାର ପ୍ରଭୂତ ଖର୍ଚ୍ଚ ଏଡ଼ାଇବାକୁ ଯାଇ ଅନେକ ସମୟରେ ଭଲ ବୋର୍ଡ଼ିଂଘରର ସୁଟ୍‌ଟିଏ ନିଅନ୍ତି । ସବୁ ବୟସର ଅବିବାହିତମାନେ ଗୃହହୀନମାନଙ୍କର ଏଇ ଆରାମ ଆଶ୍ରୟକୁ ପସନ୍ଦ କରୁଥିଲେ । ସେଠାରେ ଉତ୍ତମ ଯତ୍ନ ଓ ପରିଚର୍ଯ୍ୟା ମିଳୁଥିଲା । ସେଗୁଡ଼ିକ ସର୍ବଦା କୌଣସି ମଧ୍ୟବିତ୍ତ ଗୃହର ମାଲିକାଣୀ ବା ମେଟ୍ରନମାନଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ମୋର ଜଣା ସମସ୍ତେ ଥିଲେ ବିଧବା; ଜଣେ ଥିଲେ ଜାହାଜ ପରିଚାଳକଙ୍କ ବିଧବାପତ୍ନୀ, ଆଉ ଜଣେ ନୀଳଚାଷମାଲିକଙ୍କ ବିଧବାପତ୍ନୀ ଏବଂ ତୃତୀୟଟି ଜଣେ ପଣ୍ୟବାହୀ ଜାହାଜ କ୍ୟାପଟେନଙ୍କ ବିଧବାପତ୍ନୀ । ଏହି ସହୃଦୟା ମହିଳାଗଣ ଅବିବାହିତ ଯୁବକମାନଙ୍କ ପ୍ରତି ସଦୟ ଥିଲେ । ରୋଗ ବୈରାଗବେଳେ ସେମାନଙ୍କ ଯତ୍ନ ନେଉଥିଲେ, ସେମାନଙ୍କ ଚିରାପୋଷାକ ସିଲାଇ କରି ସଜାଡ଼ି ଦେଉଥିଲେ, ସେମାନଙ୍କ ପାଇଁ ଚାକର ଖୋଜିଦେଉଥିଲେ, ସେମାନଙ୍କ ପାଇଁ ଦେଶୀୟ ଭାଷାରେ ଦେଶୀୟ ଚାକରଙ୍କ ସହ କଥାବାର୍ତ୍ତା କରୁଥିଲେ ଏବଂ ମୋଟାମୋଟି ନିଜ ପ୍ରତିଷ୍ଠାନ ଭିତରେ ଘରୋଇ ପରିବେଶ ସୃଷ୍ଟି ପାଇଁ ପାରୁପର୍ଯ୍ୟନ୍ତ ଚେଷ୍ଟା କରୁଥିଲେ । କୁମାରୀ ରାଇଟ୍ ହେଉଛନ୍ତି ଜଣେ ପ୍ରଫୁଲ୍ଲମନା, ସ୍ଥୂଳାଙ୍ଗୀ ଅବିବାହିତା ବୃଦ୍ଧା, ଏକ ସମ୍ବାଦପତ୍ରର ମୃତ ସମ୍ପାଦକଙ୍କ କନ୍ୟା । ତାଙ୍କ ପିତା ତାଙ୍କପାଇଁ ଏଗଟି ଏବଂ କଲିକତାରେ ଆଉ କେତୋଟି ଘର ଛାଡ଼ିଯାଇଛନ୍ତି । ସେ ମଧ ବଙ୍ଗଳାର ସର୍ବଶ୍ରେଷ୍ଠ ସମ୍ବାଦପତ୍ର 'ଇଂଲିଶମ୍ୟାନ' ମାଲିକାନାର ଅନ୍ୟତମ ଅଂଶୀଦାର ।

ଆମର ପ୍ରଥମ କାମ ହେଲା ପରୀକ୍ଷକ ବୋର୍ଡ଼ର ସେକ୍ରେଟେରୀ କର୍ଣ୍ଣେଲ ଲୀଙ୍କୁ ଆମର ଆସିବା ବିଷୟ ଜଣାଇବା ତାଙ୍କଠୁ ଜାଣିଲୁ ଯେ, ଆମକୁ ଉତ୍ତର ପଶ୍ଚିମ ପ୍ରଦେଶରେ ଅବସ୍ଥାପିତ କରାଯାଇଛି ଏବଂ ଆମକୁ ହିନ୍ଦୀ ଓ ପାର୍ଶୀରେ ଏକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ପଡ଼ିବ ଏବଂ ସେଥିପାଇଁ ପ୍ରତ୍ୟେକଙ୍କ ଲାଗି ଜଣେ ଦେଶୀ ଶିକ୍ଷକ ବା ମୁନ୍‌ସୀ( ୧ ) ନିଯୁକ୍ତ ହେବେ । କଲେଜ ଅଫ୍ ଫୋର୍ଟ ଉଇଲିଅମ୍ ନାମକ ଏକ କାଳ୍ପନିକ ଅନୁଷ୍ଠାନରେ ପରୀକ୍ଷା ପରିଚାଳନା ପାଇଁ କର୍ଣ୍ଣେଲ ଲୀ ଓ ଦେଶୀୟ ଶିକ୍ଷକ ରହିବା କଥା । ପରୀକ୍ଷକ ବୋର୍ଡ଼ରେ ନାମକୁ ମାତ୍ର କେତେକ ଉଚ୍ଚ କର୍ମଚାରୀ ଥିଲେ; କିନ୍ତୁ ମୋ ଜାଣିବାରେ ସେମାନଙ୍କର କାମ କିଛି ନ ଥିଲା । ପ୍ରତ୍ୟେକ ଯୁବ ସିଭିଲିଆନଙ୍କ ପାଇଁ କଲେଜରୁ ଜଣେ ମୁନ୍‌ସୀ ଯୋଗାଇଦେବା କଥା ଏବଂ ସରକାର ସେ ମୁନ୍‌ସୀଙ୍କୁ ମାସକୁ ୩୦ ଟଙ୍କା କରି ଦେଉଥିଲେ । କିନ୍ତୁ ସିଭିଲିଆନଙ୍କ ତୁଳନାରେ ମୁନ୍‌ସୀଙ୍କ ସଂଖ୍ୟା ଖୁବ୍ କମ୍ ଥିବାରୁ ପ୍ରତ୍ୟେକ ମୁନ୍‌ସୀ ସର୍ବାଧିକ ତିନୋଟି ଛାତ୍ର ନେଉଥିଲେ ବୋଲି

(୧) ଯେଉଁ ହିନ୍ଦୁସ୍ଥାନୀ ଶବ୍ଦଗୁଡ଼ିକ ଇଂରାଜୀରେ ବହୁ ପ୍ରଚଳିତ ହୋଇଗଲାଣି ସେଗୁଡ଼ିକ ସେ ସମୟର ବ୍ୟବହାର ଅନୁଯାୟୀ ଉଚ୍ଚାରିତ ହେବ ; ରାଜ, ଜମିନ୍‌ଦାର, ରୟତ୍ ଜଙ୍ଗଲ, ପଙ୍ଖା, ଲୁଟ— ଏହିସବୁ ଶବ୍ଦ ବର୍ତ୍ତମାନ ଖୁବ୍ ଜଣାଶୁଣା ଏବଂ ବିଜ୍ଞାନ ଭିତ୍ତିରେ ଅକ୍ଷରାନୁକରଣ କରି ସେ ସବୁର ଉଚ୍ଚାରଣ କରିବା ଅଯଥା ପାଣ୍ଡିତ୍ୟ ପ୍ରଦର୍ଶନ ପରି ହେବ । ବହୁ ବ୍ୟବହୃତ ହୋଇନଥିବା ଶବ୍ଦଗୁଡ଼ିକର ସଠିକ ଉଚ୍ଚାରଣ ଦେବି ଏବଂ ଦରକାର ହେଲେ ଅର୍ଥର ବର୍ଣ୍ଣନା ଦେବି । ଉଚ୍ଚାରଣ ଚିହ୍ନ ଦେବା କ୍ୱଚିତ୍ ଦରକାର ହେବ । ସ୍ଥାନମାନଙ୍କ ନାମରେ ମଧ ଏହି ନିୟମ ପ୍ରଯୁଜ୍ୟ ।

ମୋର ମନେହୁଏ । ଯାହାହେଉ, ମାସରେ ସେ ସର୍ବାଧିକ ତିନୋଟି ଛାତ୍ର ନେଉଥିଲେ ବୋଲି
ମୋର ମନେହୁଏ । ଯାହାହେଉ, ମାସରେ ସେ ସର୍ବାଧିକ ୩ଟି ଛାତ୍ରପାଇଁ ଟଙ୍କା
ପାଇପାରୁଥିଲେ । ଏମାନଙ୍କ ମଧ୍ୟରୁ ୩ ବା ୪ଜଣ ଅନ୍ୟମାନଙ୍କଠାରୁ ଭଲ ଥିଲେ, ତେଣୁ ଖୁବ୍ ଲୋଡ଼ା ପଡୁଥିଲେ । ଯେ ଶୀଘ୍ର କିମ୍ବା ଉଚ୍ଚମାନରେ ଉତ୍ତୀର୍ଣ୍ଣ ହେବାକୁ ଚାହୁଁଥିଲା ସେ ଏହି ୩/୪ ଜଣଙ୍କ ମଧ୍ୟରୁ ଜଣକୁ ଲୋଡୁଥିଲା । ସେମାନଙ୍କ ନିର୍ଦ୍ଦିଷ୍ଟ ଛାତ୍ରସଂଖ୍ୟା ସର୍ବଦା ପୂରା ଥିବାରୁ ଆମକୁ ଆମ ନିଜ ପକେଟରୁ ତାଙ୍କୁ ଦେବାକୁ ପଡୁଥିଲା । ବ୍ରିଟିଶ ଶାସନରେ ସର୍ବତ୍ର ଏପରି ଗଣ୍ଡଗୋଳିଆ ବ୍ୟବସ୍ଥା ଅତି ସାଧାରଣ ।

ମୋର ପହଞ୍ଚିବାର ଅଳ୍ପ କେତେଦିନ ପରେ ଜଣେ ପୃଥୁଳ ବଙ୍ଗାଳୀ ବୃଦ୍ଧ ଭଦ୍ରଲୋକ ମୋତେ ଦେଖାକରି ତାଙ୍କ ନାମ ହରିପ୍ରସାଦ ଦତ୍ତ ବୋଲି କହିଲେ । ସେ କହିଲେ ଯେ, ସେ ହେଉଛନ୍ତି କଲେଜର ସର୍ବୋତ୍ତମ ମୁନ୍‌ସୀ ଏବଂ ମୁଁ ହେଲିବରୀରେ ପାର୍ଶିରେ ପଦକ ପାଇଥିବା ସେ ଶୁଣିଥିବାରୁ କେବଳ ସେ ହିଁ ମୋର ମୁନ୍‌ସୀ ହେବାର ଗୌରବ ପାଇବାରେ ହକ୍‌ଦାର । ତାଙ୍କର ପୂରାସଂଖ୍ୟକ ଛାତ୍ର ଥିବାରୁ ମୋ ପକେଟରୁ ତାଙ୍କୁ ଫିସ୍ ଦେବାକୁ ପଡ଼ିବ; କିନ୍ତୁ ସେ ମୋତେ ପ୍ରତିଶ୍ରୁତି ଦେଲେ ଯେ, ଖାଲିପଡ଼ିବା ମାତ୍ରେ ସେ ସ୍ଥାନଟି ସେ ମୋତେ ଦେବେ । କଲିକତାରେ ପୂର୍ବରୁ ଥିବା ଲୋକଙ୍କୁ ପଚାରିବାରୁ ସେମାନେ ମଧ୍ୟ ଏଥିରେ ସମ୍ମତ ହୋଇ ସେଇ ଉପଦେଶ ଦେଲେ । ମୁଁ ସେହିପରି କଲି । ହରିବାବୁ ମୋ ଆଗରେ ଏକ ପାର୍ଶି ବହି ରଖି ସେଥିରୁ ଦେଖି ଅନୁବାଦ କରିବାକୁ କହିଲେ । ମୁଁ ସମ୍ପୂର୍ଣ୍ଣ ନିର୍ଭୁଲ ଭାବରେ ତାହା କରିଦେଲି । ମୁଁ ମଧ୍ୟ ଗୋଟିଏ ଇଂରାଜୀ ପାଠକୁ ଖୁବ ଭାବରେ ପାର୍ଶିରେ ଅନୁବାଦ କରିଦେଲି । ଏହା ଦେଖି ସେ ପ୍ରତିଶ୍ରୁତି ଦେଲେ ଯେ, ମୁଁ ପରୀକ୍ଷା ଦେଲେ ନିଶ୍ଚୟ ପାସ୍ କରିବି । ପ୍ରତ୍ୟେକ ମାସର ପହିଲା ଦିନ ପରୀକ୍ଷା ହେଉଥିଲା । ମୁଁ ପରୀକ୍ଷା ଦେଲି ଏବଂ ଫେଲ୍ ହେଲି । ହରିବାବୁ ଖୁବ୍ ରାଗକଲେ । ସେ କହିଲେ ଯେ, ସେ ମୋର ଉତ୍ତରପତ୍ର ସବୁ ଦେଖିଛନ୍ତି ଏବଂ ସେଥିରେ ଗୋଟିଏ ସାମାନ୍ୟ ଭୁଲ ମାତ୍ର ରହିଚି । ତାକୁ ଭୁଲ ବୋଲି ଜମା କୁହାଯିବ ନାହିଁ । ଗୋଟିଏ ଶବ୍ଦକୁ ବର୍ତ୍ତମାନ ଅପ୍ରଚଳିତ ଏକ ଅର୍ଥରେ ପ୍ରୟୋଗ କରାଯାଇଛି । ତା'ପରେ ସେ ମୋତେ କହିଲେ ଯେ, ଲୀ'ଙ୍କର ଏହା ଏକ ପ୍ରିୟ କୌଶଳ । ମାସେ ହେଲା ଭାରତକୁ ଆସିଥିବା କୌଣସି ଲୋକକୁ ସେ ଯେତେ ଦକ୍ଷ ହେଲେ ମଧ୍ୟ ପାଶ୍ କରାଇ ଦିଅନ୍ତି ନାହିଁ । ସେ ମନେକରନ୍ତି ଯେ, ତାଙ୍କ କଲେଜର ମୁନ୍‌ସୀମାନଙ୍କଠାରେ ଯେ ଅଧିକ କାଳ ତାଲିମ ନ ପାଇଛି, ସେ ପାସ୍ କରିବା ଉପଯୁକ୍ତ ନୁହେଁ । କେତେ ମାସକାଳ ମୋତେ ଏହା ବିରକ୍ତ କଲା । ଇଲିଅଟ୍‌ର ମଧ୍ୟ ଜଣେ ମୁନ୍‌ସୀ ଥିଲେ; କିନ୍ତୁ ପାରଶୀ ପାଠରେ ସେ ପ୍ରାୟ ନୂତନ ଥିବାରୁ ଏବଂ ହେଲିବରୀରେ ମଧ୍ୟ ଏ ବିଷୟଟିରେ ଧ୍ୟାନ ଦେଇ ନ ଥିବାରୁ ବିଶେଷ କିଛି ଅଗ୍ରଗତି କରିପାରିଲା ନାହିଁ ।

ଆମେ ସାଧାରଣତଃ ସକାଳ ପାଞ୍ଚରୁ ଛ'ଟା ମଧ୍ୟରେ ଉଠୁଥିଲୁ ଏବଂ ରାତି ପୋଷାକ ପାଇଜାମା ଜ୍ୟାକେଟ ପିନ୍ଧି ବାରଣ୍ଡାରେ ବସି ଚାହା ପିଉଥିଲୁ । ତା'ପରେ ଘୋଡ଼ାଚଢ଼ା ପୋଷାକ ପିନ୍ଧି ସାତଟା ବେଳଯାଏ ପ୍ରଶସ୍ତ ସମତଳ ମଇଦାନ, ଯାହା ଚାରିପାଖରେ କଲିକତା ଗଢ଼ିଉଠିଛି, ସେଠାରେ କିମ୍ବା ବେଳେ ବେଳେ ଲମ୍ବା ରାସ୍ତାରେ ଗ୍ରାମାଞ୍ଚଳ ଆଡ଼େ ଘୋଡ଼ାରେ ବସି ବୁଲୁଥିଲୁ ।

ଇଲିଅଟ୍ ଥିଲା ପକ୍‌କା ଘୋଡ଼ାଚଢ଼ାଳି ଏବଂ ଯେକୌଣସି ଘୋଡ଼ାରେ ବସିପାରୁଥିଲା । ସେ ବଙ୍ଗ ଭୟଙ୍କର ଅମଣିଆ ଘୋଡ଼ା ପସନ୍ଦ କରୁଥିଲା । ଏପରି ବାହାଦୁରି କାହିଁକି ଦେଖାଇ ହେଉଚି ବୋଲି ମୁଁ ଦୋଷାରୋପ କଲେ ସେ ରାଗିଯାଏ । ସାତଟାବେଳେ ଫେରି ପୁଣି ପାଇଜାମା ପିନ୍ଧି ପକାଉ । ହେଲିବରୀର ଅନେକ ପୁରାତନ ବନ୍ଧୁ ଆମର ଛାୟାଶୀତଳ ବାରଣ୍ଡାରେ ଆସି ପହଞ୍ଚନ୍ତି, ଚା' ସିଗାରେଟ ପିଅନ୍ତି, ଖବରକାଗଜ ବା ଚିଠି ପଢ଼ନ୍ତି, କଥାବାର୍ତ୍ତା ବା ହସକୌତୁକ ହୁଅନ୍ତି । ନ'ଟା ବେଳେ 'ଛୋଟା ହାଜିରୀ' ଲାଗେ ଏବଂ ଆମେ ଗାଧୋଇ, ପରିଷ୍କାର ପୋଷାକ ପିନ୍ଧି ପ୍ରାତରାଶ ପାଇଁ ଆସୁ । ଏଥିରେ ଥାଏ ପ୍ରଚୁର ଭୋଜନ— ମାଛ, ମାଂସଚପ୍, କଟଲେଟ୍ କିମ୍ବା ମାଂସର ଅନ୍ୟ କିଛି ପ୍ରକାର ତରକାରି ଏବଂ ଭାତ, ପାଉଁରୁଟି, ଜାମ୍, କମଳା, କଦଳୀ, ଲିଚୁ, ସପୁରୀ, ପପିତା ପ୍ରଭୃତି ଋତୁ ଅନୁଯାୟୀ ଫଳ । ଆମ ମଧ୍ୟରୁ କେତେକ ଚା' ପିଅନ୍ତି; କିନ୍ତୁ ଅଧିକାଂଶ ବରଫଦିଆ କ୍ଲାରେଟ ମଦ ଓ ପାଣି ପିଅନ୍ତି । ତା'ପରେ କୋଠରିକୁ ଫେରି ବିଭିନ୍ନ ଭାଷା ୧୨ଟା ଯାଏ ପଢୁ । ମୁନ୍‌ସୀମାନେ ଆସି ଆମ ସହ ଦୈନିକ ଘଣ୍ଟାଏ ପଢ଼ନ୍ତି । ପ୍ରଥା ଅନୁଯାୟୀ ଆମେ ବାରଟା ବେଳ ଖରାତାତିରେ ବଗି କିମ୍ବା ପାଲିଙ୍କିରେ ବସି ବନ୍ଧୁ ସନ୍ଦର୍ଶନରେ ଯାଉ । ବର୍ତ୍ତମାନ କଲିକତାରେ ବଗି କ୍ୱଚିତ୍ ଦେଖାଯାଏ । ଏବେ ଲୋକେ ଡଗ୍‌କାର୍ଟ (ଏକଘୋଡ଼ିକିଆ ଗାଡ଼ି)କୁ ପସନ୍ଦ କଲେଣି; କିନ୍ତୁ ବଗିରେ ଛାତ ଥିବାବେଳେ ଏ ଗାଡ଼ିରେ ତାହା ନ ଥାଏ । ତେଣୁ ମଧ୍ୟାହ୍ନରେ ବାହାରକୁ ଯିବାଲାଗି ତାହା ସୁବିଧାଜନକ । ଏହା ଦୁଇଚକ ଓ ଛାତବିଶିଷ୍ଟ ହାଲୁକା ଗାଡ଼ିଟିଏ । ମୁଁ ଭଲ ଅବସ୍ଥାରେ ଥିବା ପୁରୁଣା ଗାଡ଼ିଟିଏ ଘୋଡ଼ା ଓ ଲଗାମ ସହ ୨୫୦ ଟଙ୍କାରେ କିଣିଲି । ଇଲିଅଟ୍ ମଧ ଗୋଟାଏ ଆଣିଲା । ଏହାଛଡ଼ା ଆମ ପ୍ରତ୍ୟେକଙ୍କର ସବାରୀ ଘୋଡ଼ା ମଧ ଥିଲା । ଆମେ ବାରଟାବେଳେ କଲିକତାର ରୁଚିସମ୍ପନ୍ନ ଅଞ୍ଚଳ ଚୌରଙ୍ଗୀରେ ଥିବା ପ୍ରଧାନ ମହିଳାମାନଙ୍କୁ ସାକ୍ଷାତ କଲୁ । ଅନେକ ସମୟରେ ଏମାନଙ୍କ ମଧ୍ୟରୁ କାହା କାହା ଘରେ ମଧ୍ୟାହ୍ନଭୋଜନ ପାଇଁ ରହିବାକୁ ଅନୁରୋଧ ଆସେ । ତା' ନ ହେଲେ ଆମେ ଖାଇବାପାଇଁ ୩ ମିଡିଲଟନ ଷ୍ଟ୍ରିଟ୍‌କୁ ଫେରୁ । ଏଠାର ଭୋଜନ ବ୍ୟବସ୍ଥା ମଧ ବିସ୍ତୃତ— ସୁପ୍, ଗରମ ମାଂସ, ତରକାରି ଓ ଭାତ, ଛେନା ଓ ମିଠା; ତାହା ସହ କ୍ଲାରେଟ ବା ବିଅର । ଏହାପରେ ଆମେ ସ୍ୱାଭାବିକ ଭାବରେ ଅଳସ ଓ ତନ୍ଦ୍ରାତୁର ହୋଇ ପଙ୍ଖାତଳେ ଘୁମାଉ— ମଧ୍ୟାହ୍ନ ଭୋଜନ ପରର ନିଦ୍ରା । ପାଞ୍ଚଟାବେଳେ ଉଠି ପୋଷାକ ପିନ୍ଧିପକାଉ; କାରଣ ଅପରାହ୍ନର ଗରମରେ ପୋଷାକ ଖୋଲିଦେଇଥାଉ । ତା'ପରେ ଘୋଡ଼ା ଅଣାଇ ଘୋଡ଼ାଦୌଡ଼ ରାସ୍ତାକୁ ଯାଉ । ଏହା ନଦୀ କୂଳେ କୂଳେ ଯାଇଥିବା ରାସ୍ତା । ଏହାର ଗୋଟିଏ ପଟେ ଏଡ଼େନ ଗାର୍ଡ଼େନ ଆଜିକାଲି ପରି ଏତେ ସୁରକ୍ଷିତ ନ ଥିଲା । ସେଇଠି ବ୍ୟାଣ୍ଡ୍ ବାଜୁଥାଏ । ସେଇଠି ସହରର ସବୁ ସ୍ତରର ଏବଂ ରୁଚିର ଲୋକ ଗାଡ଼ିରେ କିମ୍ବା ଘୋଡ଼ାରେ ଆସି ଜମନ୍ତି । ଏଡ଼େନ ଗାର୍ଡ଼େନ ଚତୁର୍ଦ୍ଦିଗରେ ଘୋଡ଼ାଦୌଡ଼ ପଥ ଥିଲା । ତାହାର ଭଗ୍ନାବଶେଷ ବର୍ତ୍ତମାନ ମଧ ଅଛି; କିନ୍ତୁ ୧୮୫୮ରେ ଏହା ଏବଠାରୁ ଲମ୍ବାଚଉଡ଼ା ଓ ଗହଳିଚହଳି ଥିଲା । ଘୋଡ଼ାରେ ଥରେ ଦୁଇଥର ବୁଲି ଆସି ବନ୍ଧୁ ଓ ପରିଚିତମାନଙ୍କୁ ଭେଟିବା ପରେ ବାଦ୍ୟକାରମାନଙ୍କ ପାଖରେ ଓହ୍ଲାଇପଡୁ ଏବଂ ଧାଡ଼ିଧାଡ଼ି ହୋଇ ଠିଆ ହୋଇଥିବା ଗାଡ଼ିରେ ଥିବା ମହିଳାମାନଙ୍କ ମଧ

ଆଳାପ କରୁ ଏବଂ ଉଦ୍ୟାନରେ ଥିବା ଜଳଖିଆ ଦୋକାନରୁ ବରଫ ପ୍ରଭୃତି ଆଣି ସେମାନଙ୍କୁ ଦେଉ । ଘରକୁ ସାଢ଼େ ସାତଟାରେ ଫେରି ରାତ୍ରିଭୋଜନ ସାରି ୯ଟା ବେଳେ ଶୋଇପଡୁ; ଅବଶ୍ୟ ଭୋଜି ବା ବଲ୍ ନୃତ୍ୟ ପାଇଁ ନିମନ୍ତ୍ରଣ ନ ଥିଲେ; କିନ୍ତୁ ସେପରି ନିମନ୍ତ୍ରଣ ଅନେକ ସମୟରେ ମିଳେ ।

ଏ ଧରଣର ଚଳିବା ବହୁ ଖର୍ଚ୍ଚସାପେକ୍ଷ । ସେତେବେଳେ ଜାଣି ହେଉ ନ ଥିଲେ ମଧ ଆମ ଦୁହିଁଙ୍କର ଅନେକ ଧାର ହୋଇଯାଉଥିଲା । ଆମ ସମୟରେ ଓ ଆମ ପୂର୍ବରୁ ହେଲିବରୀରୁ ଆସିଥିବା ବହୁଲୋକଙ୍କର ଏଇ ଅବସ୍ଥା ଥିଲା । ଏସବୁ ହେଉଛି ସେ ସମୟରେ ପ୍ରଚଳିତ ଅଜବ ଚଳଣିର ଦୋଷ । ଯୁବକ ସିଭିଲିଆନମାନଙ୍କୁ 'ବିଭିନ୍ନ ଭାଷା ଶିଖିବା' ନାଁ'ରେ କଲିକତାରେ ରଖାହେଉଥିଲା । ଏହା ଯେ କେବଳ ଅଦରକାରୀ ଥିଲା ତାହା ନୁହେଁ, ଏହା ସେମାନଙ୍କର ସମୟ ଅଯଥା ନଷ୍ଟକରି ସେମାନଙ୍କୁ କରଜରେ ବୁଡ଼ାଉଥିଲା । ବର୍ତ୍ତମାନ ଯେପରି ଉଚ୍ଚ କର୍ମଚାରୀ ଓ ଧନୀବ୍ୟକ୍ତିମାନେ ପ୍ରତିବର୍ଷ ମାର୍ଚ୍ଚଠାରୁ ନଭେମ୍ବର ପର୍ଯ୍ୟନ୍ତ କଲିକତା ଛାଡ଼ି ଶୈଳନିବାସକୁ ଚାଲିଯାଉଛନ୍ତି, ସେତେବେଳେ ସେପରି ନ ଥିଲା । ସିମ୍ଳା, ଦାର୍ଜିଲିଂ, ମଶୁରୀ ଓ ଉତ୍କାମଣ୍ଡ ଏବେ ମାତ୍ର ଆବିଷ୍କୃତ ହୋଇଛି ଓ ଅଳ୍ପ ଘର ସେଠାରେ ତିଆରି ହୋଇଚି । ରେଳରାସ୍ତା ଥିଲା ବହୁତ କମ୍ । ତେଣୁ ସେଠାରେ ପହଞ୍ଚିବା ମଧ ସହଜ ନ ଥିଲା । ପି.ଆଣ୍ଡ୍ ଓ ଷ୍ଟିମର ମଧ ଏତେଥର ଯିବାଆସିବା କରୁ ନ ଥିବାରୁ ଇଂଲାଣ୍ଡକୁ ଯିବା ଏତେ ସହଜ ନ ଥିଲା । ତେଣୁ ସମାଜର ଉଚ୍ଚସ୍ତରର ଲୋକେ ବର୍ଷସାରା କଲିକତାରେ ରହୁଥିଲେ ଏବଂ ଧନୀମାନେ ଚୌରଙ୍ଗୀର ପ୍ରାସାଦୋପମ ଘରେ ଅତିଥି ଚର୍ଚ୍ଚାରେ ଖୁବ୍ ଖର୍ଚ୍ଚ କରୁଥିଲେ । ସେହି ଘରମାନଙ୍କରୁ ଅଧିକାଂଶ ଏବେ ବୋର୍ଡ଼ିଂ ଓ ଅଫିସ୍ ହୋଇଛି । ଅଧିକାଂଶ ହେଲିବରୀବାଲା ଥିଲେ ଉଚ୍ଚକର୍ମଚାରୀଙ୍କ ସମ୍ପର୍କୀୟ । ତା' ନ ହୋଇଥିଲେ ମଧ ଚୁକ୍ତିବଦ୍ଧ ସିଭିଲ ସଂସ୍ଥାର ସଭ୍ୟ ଭାବରେ ଉଚ୍ଚ ସମାଜରେ ପ୍ରବେଶର ପୂର୍ଣ୍ଣ ଅଧିକାରୀ । ସେତେବେଳେ ଭାରତରେ ସିଭିଲ ସଂସ୍ଥା ଥିଲା ଏକ ଆଭିଜାତ୍ୟ ସମ୍ପ୍ରଦାୟ ଏବଂ ଆମେ ଥିଲୁ ସମ୍ଭ୍ରାନ୍ତ ଯୁବଗୋଷ୍ଠୀ । ଆମେ ସପ୍ତାହରେ ତିନି ଚାରିଥର ଭୋଜିପାଇଁ ନିମନ୍ତ୍ରିତ ହେଉଥିଲୁ; ତା'ଛଡ଼ା ଥିଲା ଅନେକ ଦିବା ଓ ଉଦ୍ୟାନଭୋଜି । ମା'ମାନେ ତାଙ୍କ ଝିଅମାନଙ୍କ ପାଇଁ ଆମ ଉପରେ ଝୋପ ପକାଉଥିଲେ । କାରଣ, ସେତେବେଳେ କୁହାଯାଉଥିଲା ଯେ, ଆମେ 'ବଞ୍ଚିଲେ କି ମଲେ ବର୍ଷକୁ ତିନିଶହ' । ଏହାର ଅର୍ଥ— ଜଣେ ସିଭିଲିଆନ୍ ଚାକିରି ଆରମ୍ଭରେ ବାର୍ଷିକ ୩୦୦ ପାଉଣ୍ଡ (ପ୍ରକୃତରେ ଆହୁରି ବେଶୀ) ଏବଂ ତା'ର ବିଧବା ସ୍ତ୍ରୀର ପେନ୍‌ସନ ବାର୍ଷିକ ୩୦୦ ପାଉଣ୍ଡ । ତେଣୁ ସେ ମରନ୍ତୁ ବା ବଞ୍ଚନ୍ତୁ ତାଙ୍କ ସ୍ତ୍ରୀ ୩୦୦ ପାଉଣ୍ଡ ପାଇବ । ଆମର ଆଉ ମଧ ଅନେକ ପ୍ରକାର ଆମୋଦପ୍ରମୋଦ ଥିଲା । ଲୋକେ ଏକାଠି ହୋଇ ଖେଳୁଥିଲେ, ଅଧିକାଂଶତଃ ବାଜିମରା ଖେଳ ବେଙ୍ଗଲ ଏଣ୍ଡ୍ ଯୁନାଇଟେଡ୍ ସର୍ଭିସ କ୍ଲବ୍‌ଠାରେ ଭୋଜି, ବିଲିୟାଡ୍, କ୍ରିକେଟ, ଘୋଡ଼ାଦୌଡ଼ ପ୍ରତିଯୋଗିତା, କାନ୍ଥ ଉପର ଘୋଡ଼ାଦଉଡ଼ ଏବଂ ଆଉ ଅନେକ ନିମ୍ନସ୍ତରର ମନୋରଞ୍ଜନ ଚାଲୁଥିଲା । ସେମାନେ ଯେ ପଢ଼ାପଢ଼ି ବିଶେଷ କରୁ ନ ଥିଲେ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । କଲନେଲ ଲୀ ସେମାନଙ୍କୁ ଗୋଟାକ ପରେ ଗୋଟାଏ ପରୀକ୍ଷାରେ

ଫେଲ କରାଇ, କଲିକତା ଭଳି ଅସ୍ୱାସ୍ଥ୍ୟକର ସ୍ଥାନରେ ରହିବାକୁ ବାଧ କରାଇ, ଅବସ୍ଥାକୁ ଆହୁରି ଜଟିଳ କରୁଥିଲେ । ଜଣେ ମୋରିପରି ସାମାନ୍ୟ ଭୁଲ ଲାଗି ଦୁଇ ତିନିଥର ଫେଲ ହେଲେ ପାଠପଢ଼ା ଛାଡ଼ି ଅନ୍ୟ ଆକର୍ଷଣ ଆଡ଼କୁ ଢଳିବା ସ୍ୱାଭାବିକ । ଏପରି ହେଲା ଯେ, କରଜରେ ଗୋଟାପଣେ ନ ବୁଡ଼ିବା ପର୍ଯ୍ୟନ୍ତ କେହି କଲିକତା ଛାଡ଼ିଲେ ନାହିଁ । ଶୁଣାଯାଏ ଜଣକର କରଜ ଲକ୍ଷେଟଙ୍କାଠାରୁ ଅଧିକ ହେବା ପରେ ଯାଇଁ ସେ ଏ ସଙ୍କଟରୁ ମୁକୁଳିଲା । ଏଇ ସମୟ ମଧରେ ସେମାନେ ପ୍ରକୃତରେ କିଛି ଭାଷା ଶିଖୁନଥିଲେ । ଏସବୁ ଭାଷା ଯେତେ ଶିଖିବା କଥା ସେ ସବୁ ସେମାନେ ହେଲିବରୀରେ ବହିରୁ ଶିଖୁଥିଲେ ଏବଂ ଭାରତରେ ପହଞ୍ଚିବା ମାତ୍ରେ କୌଣସି ଦୂର ଜାଗାକୁ ପଠାହୋଇ ଦେଶୀୟଙ୍କ ସହ ରହି ସେ ସବୁ ଭାଷା କହିବା ଶିଖିପାରୁଥାନ୍ତେ । ବର୍ତ୍ତମାନ ସେମାନେ ସେହିପରି କରୁଛନ୍ତି ଏବଂ ଆମ ସମୟରେ ସେପରି ହୋଇଥିଲେ ଅନେକ ଲୋକ ଜୀବନବ୍ୟାପୀ କରଜ ଓ ଜଞ୍ଜାଳରୁ ରକ୍ଷାପାଇଥାନ୍ତେ ।

୧୮୭୫ରେ ମୁଁ ଏହି ଲେଖାଟି ପ୍ରଥମେ ଲେଖିଲାବେଳେ ୧୮୫୮ର କଲିକତାର ଅବସ୍ଥା ବିଷୟରେ ଏକ ବିସ୍ତୃତ ବର୍ଣ୍ଣନା ଏଠାରେ ସଂଯୋଜିତ କରିଥିଲି; କିନ୍ତୁ ୧୮୯୬ରେ ଏହାକୁ ଆଉଥରେ ପଢ଼ିଲାବେଳେ ମୋର ମନେହେଲା ଯେ, ଏହି ସମୟ ମଧରେ ସହରଟିର ବିଶେଷ କିଛି ବଦଳି ନାହିଁ । ଆକାରରେ ବଢ଼ିଛି, ପୁରୁଣା ଜାଗାରେ ନୂଆ ଘର ତିଆରି ହୋଇଛି, ଜନଗହଳି, ପରିଷ୍କାର ପରିଚ୍ଛନ୍ନତା ହୁଏତ ଅଧିକତର ହୋଇଚି; କିନ୍ତୁ ସାଧାରଣ ଚରିତ୍ରରେ ବିଶେଷ ପରିବର୍ତ୍ତନ ହୋଇ ନାହିଁ । ଆଜି ମଧ ଏହା ସେହିପରି ତନ୍ଦ୍ରାତୁର ଜାକଜମକପୂର୍ଣ୍ଣ ପ୍ରାସାଦମୟୀ ନଗରୀ, ଚଉଡ଼ା ପାର୍କ ଭଳି ମଇଦାନ, ଚଉଡ଼ା ରାସ୍ତା, ବିରାଟ ଧଳା ଧଳା ଘର, ଅସୁସ୍ଥ ପରିବେଶ ସେହିପରି ଅଛି । ଡିସେମ୍ବରଠାରୁ ମାର୍ଚ୍ଚ ତିନିମାସ ଏହା ପ୍ରଫୁଲ୍ଲ ଓ କର୍ମମୁଖର ଏବଂ ବର୍ଷର ବାକିଅଂଶ ଅଳସ, ତନ୍ଦ୍ରାଚ୍ଛନ୍ନ ଓ ଅସାର । ମେସର୍ସ କୁକ୍ ଏଣ୍ଡ କୋ ଏବଂ ଜଳଯାତ୍ରାର ଉନ୍ନତତର ସୁବିଧାକୁ ଧନ୍ୟବାଦ, ଯାହା ଫଳରେ ଭାରତ ବର୍ତ୍ତମାନ ଏତେ ପରିଚିତ ଯେ, କଲିକତା ସମ୍ପର୍କରେ ଅଧିକ ବର୍ଣ୍ଣନା ଅନାବଶ୍ୟକ । ତେଣୁ ମୁଁ ୧୮୭୫ ମସିହାରେ ଯାହା ଲେଖିଥିଲି ତାହା ବାଦ୍ ଦେଉଛି ।

ଇଲିଅଟ୍ ଓ ମୁଁ ଏହି ସୁନ୍ଦର ଜାଗାରେ ପ୍ରାୟ ତିନିମାସ ଅଳସରେ କଟାଇଲୁ । ତା'ପରେ କୁମାରୀ ରାଇଟ୍ ସେ ଘରଟିକୁ ହସ୍ତାନ୍ତର କରିଦେବାରୁ ଆମକୁ ବାହାରି ଆସିବାକୁ ହେଲା । ଟ୍ୟାଙ୍କ ସ୍କୋୟାରର ଏକ ଅନ୍ଧାରିଆ ଗହଳିରେ ଆମେ ଅନ୍ୟ ଏକ ହଷ୍ଟେଲରେ କିଛିଦିନ ରହି ଅସୁସ୍ଥ ହୋଇପଡ଼ିଲୁ । ବର୍ତ୍ତମାନ କଲିକତାର ପରିଚ୍ଛନ୍ନତା ଯଥେଷ୍ଟ ବୃଦ୍ଧି ପାଇଥିଲେ ମଧ ସେ ସବୁ ସ୍ଥାନ ସେହିପରି ଅଛି । ଆମ ଚାରିପଟେ ବଡ଼ ବଡ଼ ଘର ଥିବାରୁ ପବନ ଅବରୁଦ୍ଧ ଥାଏ । ଆମେ ଗରମରେ ଗଡୁଥିବାବେଳେ ପାଖ ଘରର ଛାତରୁ ହାଡ଼ଗିଳା ପକ୍ଷୀଟିଏ ଆମ ଆଡ଼କୁ ଚାହୁଁଥିଲା । ହାଡ଼ଗିଳା ପକ୍ଷୀ (Adjutant) ହେଉଛି ଏକ ବିରାଟ ବଗ । ଏହାର ଥଣ୍ଟ ପ୍ରାୟ ୩ଫୁଟ ଲମ୍ବ, ମୁଣ୍ଡ ଲୋମହୀନ, ଆଖି ପାଉଁଶିଆ ଓ ହିଂସ୍ର ଏବଂ ଆଗପଟେ ମେଞ୍ଚାଏ ଲୋଚାକୋଚା ମାଂସ ଓହଳିପଡ଼ିଥାଏ; ମୋଟ ଉପରେ ଅତି କୁତ୍ସିତ ପକ୍ଷୀ । ସେମାନେ କଲିକତା ଓ ସମୁଦ୍ର ମଧରେ ଥିବା ସୁନ୍ଦରବନ ବୋଲି କଥିତ ଜଙ୍ଗଲରେ ବସା ବାନ୍ଧନ୍ତି ଏବଂ ସେ

ସମୟରେ ବିଶେଷକରି ବର୍ଷାକାଳରେ ବହୁ ସଂଖ୍ୟାରେ କଲିକତାକୁ ଆସୁଥିଲେ । କୁଆ, ବିଲୁଆ ଓ ସେମାନେ ଥିଲେ ସେ ସମୟରେ ସେ ସହରର ଅନୁମତିପ୍ରାପ୍ତ ମେହେନ୍ତର । ବର୍ତ୍ତମାନ କଲିକତାରେ ସେସବୁ ଖୁବ୍ କମ୍ ଦେଖାଯାନ୍ତି । ସହରଟିର ଅଧିକତର ପରିଚ୍ଛନ୍ନତାର ଏହା ପ୍ରମାଣ । ଆମେ ବେମାର ଥିବା ବେଳେ ୩ମିଡ଼ିଲଟନ ଷ୍ଟ୍ରିଟର ପରିଚିତ ଶ୍ରୀମତୀ ହୋ ଆମର ଦେଖାଚାହାଁ କଲେ । ସେ ହେଉଛନ୍ତି କଲିକତା ଚରିତ୍ରର ଏକ ବୈଶିଷ୍ଟ୍ୟ, ତେଣୁ ଉଲ୍ଲେଖଯୋଗ୍ୟ । ସେ ଜଣେ ବର୍ଣ୍ଣସଙ୍କର, ନିଜକୁ ୟୁରେସୀୟ କହିବାକୁ ଭଲପାଆନ୍ତି । ସେ ବୃଦ୍ଧା ବିକୃତମୁଖୀ ହେଲେ ମଧ, ବୋଧହୁଏ ଯୌବନରେ ସୁଦର୍ଶନା ଥିଲେ ଏବଂ ସେବେ ବି ତାଙ୍କର ଦୀର୍ଘ ସୁନ୍ଦର ସୁଗଠିତ ଅବୟବ ଥିଲା । ନିଜକୁ କ୍ୟାପ୍‌ଟେନ ଏନେରିଓ ବୋଲି ଅଭ୍ୟାସବଶତଃ କହୁଥିବା ଜଣେ ଭଦ୍ରବ୍ୟକ୍ତିଙ୍କର ସେ ସ୍ତ୍ରୀ ଥିଲେ । ସେ କ୍ୟାପ୍‌ଟେନ ଥିଲେ ସେ ସମୟରେ କଲିକତା, ସିଙ୍ଗାପୁର, ହଂକଂ ଯାଉଥିବା ଏକ ପଣ୍ୟବାହୀ ଜାହାଜର ଅଧିନାୟକ । ବର୍ତ୍ତମାନ ବ୍ରିଟିଶ କମ୍ପାନୀର ଷ୍ଟିମରମାନେ ସେ ସବୁ ଜାହାଜର ସ୍ଥାନ ଅଧିକାର କରିଛନ୍ତି । ଆମେ ଜାଣିଲାବେଳେ ସେ କଲିକତା ବନ୍ଦରର ମାଷ୍ଟର ଆଟେଣ୍ଡାଣ୍ଟ୍ ଥିଲେ । ଚେହେରା ଓ ବ୍ୟବହାର ସୁନ୍ଦର ଥିଲେ ମଧ ଅତି ଅଶିକ୍ଷିତ ଓ ଭାଷାରେ ଅମାର୍ଜିତ । କଲିକତାର ଏହି ବର୍ଣ୍ଣସଙ୍କରମାନେ ଅଧିକାଂଶତଃ ଅଳସୁଆ, ନୀତିହୀନ, ଅପଦାର୍ଥ ଗୋଷ୍ଠୀ; କିନ୍ତୁ ଏ ନିୟମରେ ବ୍ୟତିକ୍ରମ ଅଛି । ବେଳେ ବେଳେ ବର୍ଣ୍ଣସଙ୍କରଙ୍କ ମଧରେ ଜଣେ ଜଣେ ସାଧୁ ଓ ପରିଶ୍ରମୀ ମଧ ଦେଖାଯାଉଥିଲେ । ସେମାନଙ୍କ ମଧରେ କେତେକ ଧନୀ ଓ ସମାଜରେ ସମ୍ମାନିତ ଆସନ ପାଇଥିଲେ । ଶ୍ରୀମତୀ ହୋ ହେଉଛନ୍ତି ସେହିପରି ଉତ୍ତମ ବ୍ୟକ୍ତିମାନଙ୍କର ଏକ ନମୁନା । ସେ ଖୁବ୍ ଦାନଶୀଳା ଏବଂ ତାଙ୍କର କେତେକ ମହତ୍ କାମ ପାଇଁ ଧନୀ ୟୁରୋପୀୟମାନଙ୍କ ଠାରୁ ଚାନ୍ଦା ସଂଗ୍ରହରେ ଅକ୍ଳାନ୍ତ ଉଦ୍ୟମୀ । ସେ ସମୟରେ କଲିକତାର ବହୁ ଲୋକହିତକାରୀ ଅନୁଷ୍ଠାନର ସେ ଥିଲେ ପ୍ରେରଣାର ଉତ୍ସ । ଦିନଯାକ ଘଣ୍ଟା ଘଣ୍ଟା ଧରି ସେ ଭଡ଼ାରେ ଅଣାହୋଇଥିବା ଦୁଇଘୋଡ଼ିଆ ଜରାଜୀର୍ଣ୍ଣ ଗାଡ଼ିଟିରେ ବୁଲି ଗରିବଙ୍କ ପାଇଁ ସାହାଯ୍ୟ ମାଗନ୍ତି, ସେମାନଙ୍କ ନିକଟକୁ ସାହାଯ୍ୟ ନେଇଯା'ନ୍ତି, ସେମାନଙ୍କ ପାଇଁ ଚିଠିପତ୍ର ଲେଖିଦିଅନ୍ତି । ତାଙ୍କ ନିକଟରେ ଗୁଡ଼ିଏ ଆଶ୍ରିତା ବୃଦ୍ଧା ଓ ଯୁବତୀ ଥିଲେ, ଅଧିକାଂଶ ପର୍ତ୍ତୁଗୀଜ ଶ୍ରେଣୀୟ । ସେଗୁଡ଼ାକ ଅତି ଆଳସ୍ୟପରାୟଣ, ନଷ୍ଟଚରିତ୍ର, ଦାୟିତ୍ୱହୀନ ବର୍ଣ୍ଣସଙ୍କର । ଏହି ଉଚ୍ଚଜନ୍ମା ଭିକାରିଗଣ— ଡା ସୁଜା, ଡ ଆଲମଡ଼ା, ଡା ସିଲଭା, ଡି ରୋଜାରିଓ, ଡା କ୍ରୁଜ ଇତ୍ୟାଦି ବଡ଼ ବଡ଼ ନାମ ଧାରଣ କରି ତାଙ୍କୁ ନିର୍ଦ୍ଦୟ ଭାବରେ ଶୋଷୁଥିଲେ ଏବଂ ଏଇମାନଙ୍କ ପାଇଁ ସେ ଦାସୀ ଭଳି ଖଟୁଥିଲେ । ଏହି ବୃଦ୍ଧା ଥିଲେ ରସଗ୍ରାହୀ, ଭାବପ୍ରବଣା । ପ୍ରିୟ ଶ୍ରୀ ଇଲିଅଟ୍, ପ୍ରିୟ ଶ୍ରୀ ବୀମ୍‌ସ ଥିଲେ ତାଙ୍କ ଦୃଷ୍ଟିରେ ଆଦର୍ଶ ଯୁବକ ଏବଂ ସାମାଜିକ ସ୍ଥିତି ଓ ସମ୍ବଳ ନ ଥିବା ବହୁ କ୍ଷୀଣାଙ୍ଗୀ କପିବର୍ଣ୍ଣା ପର୍ତ୍ତୁଗୀଜ ନାମଧାରିଣୀ ଯୁବତୀଙ୍କୁ ସେ ବରାବର ପରିଚୟ କରାଇ ଦେଉଥାନ୍ତି । ମୋର ବିବାହ ସ୍ଥିର ହୋଇଛି ଜାଣି ସେ ଖୁବ୍ ଦୁଃଖ କଲେ । ମତେ ଜାଲରେ ପକାଇବା ଆଶା ତଥାପି ସେ ଛାଡ଼ିନଥିଲେ ମଧ ପ୍ରିୟ ଶ୍ରୀ ଇଲିଅଟଙ୍କୁ ଧରିବା ପାଇଁ ଅଧିକାଂଶ ଶକ୍ତି ବ୍ୟୟ କଲେ, ଯାହାର ଆଖିକୁ ସେ କବିତ୍ୱପୂର୍ଣ୍ଣ ଭାବରେ 'ଆଲଫ୍ରେଡ଼ଙ୍କ ଚକ୍ଷୁ' ସହ ତୁଳନା କରୁଥିଲେ ।

ଉତ୍ତରଭାରତରୁ ବହୁ ଶରଣାର୍ଥୀ କଲିକତାରେ ଭର୍ତ୍ତି ହୋଇଥିଲେ । ବିଦ୍ରୋହ କେନ୍ଦ୍ରମାନଙ୍କରୁ ସମସ୍ତ ସମ୍ପତ୍ତି ହରାଇ ଜୀବ ନେଇ ପଳାଇ ଆସିଥିବା ଇଂରେଜ ଅଫିସର ଓ ସେମାନଙ୍କ ସ୍ତ୍ରୀମାନେ ଏଥିରେ ଥିଲେ । ସେମାନଙ୍କ ମଧ୍ୟରୁ କେତେକ ସହାନୁଭୂତି ପାଇବାର ଯୋଗ୍ୟ । ଏମାନେ ହେଉଛନ୍ତି ଆଉଧ (ଅଯୋଧ୍ୟା) ଅଞ୍ଚଳରୁ ପଳାଇ ଆସିଥିବା କେବଳ ମହିଳା ଓ ଶିଶୁ । ସେମାନଙ୍କ ସ୍ୱାମୀମାନଙ୍କୁ ହତ୍ୟା କରାଯାଇଥିଲା । ଅନ୍ୟ କେତେକଙ୍କ ସ୍ୱାମୀମାନଙ୍କୁ କାମ କରିବା ପାଇଁ ଅଟକାଯାଇଥିଲା । ଏହି ବିଚରାଗୁଡ଼ିକୁ ଆଲାହାବାଦ ଦୁର୍ଗରେ କିଛିଦିନ ରଖାଇ ଷ୍ଟିମରରେ କଲିକତା ପଠାଗଲା । ଅନେକେ ଅଧାପିନ୍ଧା ଅବସ୍ଥାରେ ଜୀବନ ନେଇ ପଳାଇଆସି ନିଃସ୍ୱ ହୋଇ କଲିକତାରେ ପହଞ୍ଚିଲେ । ଦୟାବତୀ ଲେଡ଼ି କ୍ୟାନିଂ ସେମାନଙ୍କୁ ଏକ ଘର ଦେଇ ତାଙ୍କୁ ଏଥିରେ ସାହାଯ୍ୟ କରିବା ପାଇଁ ଶ୍ରୀମତୀ ହୋ'ଙ୍କୁ ଡାକିଲେ । ସେ କଲିକତାର ସମସ୍ତ ଇଂରେଜ ମହିଳାଙ୍କ ପାଖକୁ ଯାଇ କେବଳ ଅର୍ଥ ନୁହେଁ, ପୋଷାକ ଓ ସମସ୍ତ ପ୍ରକାର ଜନାପଟା ସଂଗ୍ରହ କଲେ । ଦିନପରେ ଦିନ ସେଇ ପୁରୁଣା ଗାଡ଼ିଟିରେ ପୋଷାକପତ୍ର ଗଦାକରି ସେ ସହରର ସବୁ ସ୍ଥାନରେ ଦେଖାଦେଲେ । ସେସବୁ ବସ୍ତୁକୁ ସେ ଗରିବ ଆଶ୍ରୟପ୍ରାର୍ଥୀଙ୍କୁ ବାଣ୍ଟୁଥିଲେ । ତା'ପରେ ସେମାନଙ୍କୁ ଦୋକାନକୁ ନେଇ ଗାଉନ ଓ ଟୋପି କିଣିଦେଇ ଖୁସି କରାଉଥିଲେ ।

ଆହତ ଅଫିସରମାନଙ୍କ ପାଇଁ ନଂ ୧ ରସେଲ ଷ୍ଟ୍ରିଟରେ ଏକ ଅସ୍ଥାୟୀ ଡାକ୍ତରଖାନା ହୋଇଥିଲା । ଆମେ ଶ୍ରୀମତୀ ହୋ'ଙ୍କ ସହ ଯାଇ ସେହି ଦୁଃସ୍ଥଗୁଡ଼ିକୁ ଉତ୍ସାହିତ କରୁଥିଲୁ । ସେମାନଙ୍କ ମଧ୍ୟରୁ ଅନେକ ଗୁରୁତର ଆହତ ହୋଇଥିଲେ । ରାଇଫଲବାହିନୀର ଜଣଙ୍କର ବାମହାତ ଓ ଡାହାଣ ହାତର ଚାରୋଟି ଆଙ୍ଗୁଠି କଟିଥିଲା ଓ କପାଳର ଏ ମୁଣ୍ଡ ସେମୁଣ୍ଡ ମଧ୍ୟ କଟିଥିଲା । ଅନେକ ଲୋକଙ୍କ ପରି ସେ ମଧ୍ୟ ତା'ର ଦେଶୀୟ ଚାକରଟି ଲାଗି ବଞ୍ଚିଗଲା । କ୍ରମେ କ୍ରମେ ସବୁ ମହିଳା ଓ ଅଫିସରମାନଙ୍କୁ ଜାହାଜରେ ଇଂଲଣ୍ଡ ପଠାଇ ଦିଆଗଲା ଏବଂ ଶ୍ରୀମତୀ ହୋ ତାଙ୍କ ଦାନଶୀଳତା ପାଇଁ ଅନ୍ୟ କାମର ଅନୁସନ୍ଧାନ କଲେ ।

ଏହି ସମୟରେ କ୍ୟାପ୍‌ଟେନ୍ ହୋ ମୋତେ ଫ୍ରିମ୍ୟାନସନ ସଂସ୍ଥାର ସଭ୍ୟ ହେବାପାଇଁ ପ୍ରବର୍ତ୍ତାଇଲେ ଏବଂ ମୁଁ ଷ୍ଟାର୍ ଅଫ୍ ଦି ଇଷ୍ଟ ନଂ ୮ ଲଜ୍‌ରେ ବିଧିବଦ୍ଧ ଭାବରେ ଦୀକ୍ଷିତ ହେଲି । ସେ ଥିଲେ ସେ ସ୍ଥାନର ମାଲିକ । ସେ ଓ ମୁଁ ସ୍ୱେଚ୍ଛାସେବକ ହେଲୁ । ସ୍ୱେଚ୍ଛାସେବକ ଆନ୍ଦୋଳନ କଲିକତା ଓ ଭାରତର ସବୁ ବଡ଼ ସହରରେ ପୂରା ଦମ୍‌ରେ ଚାଲୁଥିଲା । ଅବଶ୍ୟ ଏହା କଡ଼ାକଡ଼ି କେବଳ ୟୁରୋପୀୟଙ୍କ ମଧ୍ୟରେ ସୀମିତ ଥିଲା । କଲିକତାରେ ଆମର କମାଣ, ଅଶ୍ୱ ଓ ପଦାତିକଙ୍କର ଏକ ସୁନ୍ଦର ବାହିନୀ ଥିଲେ । ଇଲିଅଟ୍ ଓ ମୁଁ ଥିଲୁ କମାଣ ବାହିନୀରେ ଏବଂ ବରାବର ଚେଷ୍ଟାକରି ସୁନ୍ଦର କମାଣ ଚଳାଇବା ଶିଖିଥିଲୁ । ଆମ ପରିଚ୍ଛଦ ଥିଲା ଧଳା ଲୁହାଟୋପି, ତା' ଉପରେ ଘନ ନୀଳ 'ପଗଡ଼ି', ନୀଳ ପରିଚ୍ଛଦ ଉପରେ ଲାଲ ବହିରାବରଣ, ଧଳା ପାଇଜାମା ଏବଂ ଆଣ୍ଠୁ ପର୍ଯ୍ୟନ୍ତ ବୃହଦାକାର ଜୋତା । ଇଲିଅଟ୍ ଓ ମୁଁ ଥିଲୁ ଚାଳକ ଓ ଚାରୋଟି ଅମଣିଆ ଘୋଡ଼ାଙ୍କ ମଧ୍ୟରୁ ଦୁଇଟିରେ ଚଢ଼ୁଥିଲୁ । ସେମାନେ ଆମର ଛ'ପାଉଣ୍ଡିଆ ହାଲୁକା କମାଣ ବହନ କରୁଥିଲେ । ଘୋଡ଼ସବାର ବାହିନୀର ପ୍ରତ୍ୟେକ ସୌଖୀନ ସୈନ୍ୟ

ନିଜ ଘୋଡ଼ା ଚଢୁଥିଲେ । ଏହି ସୁନ୍ଦର କ୍ଷୁଦ୍ର ବାହିନୀର ଅଧିନାୟକ ଥିଲେ କର୍ନେଲ ମଣ୍ଟାଗୁ ଟର୍ଣ୍ଣବୁଲ୍ । ସେ ସହୃଦୟ ବୃଦ୍ଧଙ୍କୁ 'ମଣ୍ଟି' କୁହାଯାଉଥିଲା । ସେ ଥିଲେ ପ୍ରସିଦ୍ଧ ଘୋଡ଼ା ଦୌଡ଼ାଳି । କଲିକତା ଘୋଡ଼ାଦୌଡ଼ କ୍ରୀଡ଼ାରେ ସେ ଥିଲେ ଉଜ୍ଜ୍ୱଳ ଆଲୋକ ପରି ଏବଂ ମେଳାପି ଓ ଦୟାଳୁ ଥିବାରୁ ସମସ୍ତଙ୍କ ପ୍ରିୟ । ତାଙ୍କ ଝିଅ ମଧ୍ୟ ଭଲ ଘୋଡ଼ାଚଢ଼ାଳି ଓ ଚିତ୍ରକର ଥିଲେ । ସେ କୁକୁର ଓ ଘୋଡ଼ାମାନଙ୍କର ବଡ଼ ବଡ଼ ଛବି ଆଙ୍କୁଥିଲେ । ତାଙ୍କ ଘର 'ହରମିଟେଜ'ର ଅଗଣା ଥିଲା ସବୁ ପ୍ରକାର ବୃଦ୍ଧ ଓ ଅକର୍ମଣ୍ୟ ପଶୁମାନଙ୍କ ବାସସ୍ଥଳ ।

କଲିକତାର ଉଚ୍ଚତର ସମାଜ ସହ ଆମର ପରିଚୟ ଥିବାରୁ ଗ୍ରୀଷ୍ମକାଳଟା ଆନନ୍ଦରେ କଟିଗଲା । ସେ ସମୟରେ ଗ୍ରୀଷ୍ମକାଳରେ କେହି କଲିକତା ଛାଡ଼ି ପଳାଉ ନ ଥିଲେ । ସରକାରୀ ଲୋକେ ଓ ସମାଜର ମୁଖ୍ୟମାନେ ବର୍ଷସାରା କଲିକତାରେ ରହୁଥିଲେ । ଫଳତଃ ସେଠାରେ ଜୀବନ ଥିଲା ସୁନ୍ଦର । ମୁଁ ମଝିରେ ମଝିରେ ବାପା ଓ ଏଲେନ୍ ସହ ପତ୍ରାଳାପ କରୁଥିଲି । ମୋ ନୂତନ ଅବସ୍ଥିତିର ଆକର୍ଷଣ ଯୋଗୁଁ ମୁଁ ସେ ଦୁହିଁଙ୍କ ପ୍ରତି ଅବହେଳା କରୁଥିଲି ବୋଲି ଆଶଙ୍କା ହେଉଥିଲା । ବାପା ଓ ଏଲେନ୍ ଦୁହେଁ ମୋତେ ବାରମ୍ବାର କହୁଥିଲେ କଲିକତା ଛାଡ଼ି ଉତ୍ତରଭାରତ ଯାଇ ମୋର ପ୍ରକୃତ କାମ ଆରମ୍ଭ କରିବା ପାଇଁ । ଉଭୟେ ବୋଧେ ଭାବୁଥିଲେ, ମୁଁ ଜାଣିଶୁଣି ଅଳସରେ ମୋ ସମୟ କଟାଇ ଦେଉଛି । ଲୀ ମୋତେ ପାସ୍ କରାଇ ନ ଦେବା ପର୍ଯ୍ୟନ୍ତ ମୋର ଯେ ଯିବାର କ୍ଷମତା ନାହିଁ ତାହା ମୁଁ ସେମାନଙ୍କୁ ବୁଝାଇପାରିଲି ନାହିଁ ।

ଆମର ହେଲିବରୀର ଅଧିକାଂଶ ସହାଧ୍ୟାୟୀ ଏବଂ ପ୍ରତିଯୋଗିତାବାଲାଏ (ନୂଆ ପ୍ରତିଯୋଗିତା ପଦ୍ଧତିରେ ନିଯୁକ୍ତ ଲୋକଙ୍କୁ ସେପରି କୁହାଯାଉଥିଲା) ସେମାନଙ୍କ ପଢ଼ା ଶେଷ କରି ସେପ୍ଟେମ୍ବର ସୁଦ୍ଧା ମଫସିଲରେ (୧) ସେମାନଙ୍କ ସ୍ଥାନକୁ ଚାଲିଗଲେ । ଆମେ ଅଳ୍ପ କେତେକ ରହିଲୁ । ଇଲିଅଟ୍ ଓ ମୁଁ ପୂର୍ବତନ ୩ ମିଡ଼ିଲଟନ ଷ୍ଟ୍ରିଟ୍‌ରେ ଥିବା ଘରକୁ ଫେରିଲୁ । ସେଠାକୁ ହୋ ପରିବାର ଓ ଅନ୍ୟାନ୍ୟ ମଧ୍ୟ ଫେରିଥିଲେ । ଅବଶେଷରେ ପାର୍ଶିରେ ଉଚ୍ଚମାନ ରଖି ମୁଁ ପାସ୍‌କରି ସ୍ୱର୍ଣ୍ଣପଦକ ପାଇଲି । ସେଇ ସୁନ୍ଦର ଭାଷାରେ ତାହା ଥିଲା ମୋର ଦ୍ୱିତୀୟ ପଦକ । ତା'ପରେ ମୋତେ ହିନ୍ଦୀ ପରୀକ୍ଷା ଦେବାକୁ ପଢ଼ିବାରୁ କଲିକତାରେ ଆଉ କେତେ ମାସ ରହିବାକୁ ବାଧ୍ୟ ହେଲି । ଅକ୍ଟୋବର ହେଲା । ଏଲେନ୍‌ର ବଡ଼ଭାଇ ହେନ୍‌ରୀ ଗ୍ରାଅରି ଗୋଟିଏ ଛୋଟ ଜମାଣ ବାହିନୀର ଅଧିନାୟକ ରୂପେ ଭାରତ ଆସିଲେ ଏବଂ ଗୋରଖପୁର ଗଲେ । ସେଠାରେ ସେ ପର୍ଯ୍ୟନ୍ତ ବଳକା ବିଦ୍ରୋହୀ ସିପାହିମାନଙ୍କ ସହ ଯୁଦ୍ଧ ଚାଲିଥିଲା । ଆମେ ତାଙ୍କୁ ଦେଖି ଖୁସି ହେଲୁ ଏବଂ ସେ ଆମ ସଙ୍ଗେ ରହି ଖୁସି ଥିବାପରି ଲାଗିଲା ।

ତା'ପରେ ଆମର ସମ୍ପୂର୍ଣ୍ଣ ଏକ ନୂତନ ଅନୁଭୂତି ହେଲା । ଚୀନା କୂଟନୀତିଜ୍ଞ ବାହିନୀର ଜଣେ ଚତୁର ଖର୍ବକାୟ ବ୍ୟକ୍ତି ଚାଲୋନେର୍ ଆଲବାଷ୍ଟରଙ୍କ ସହ ଆମର ପରିଚୟ ହେଲା ।

---

(୧) ମଫସିଲ— ଯଥାର୍ଥରେ 'ମଫସାଲ', ହେଉଛି ଏକ ଆରବୀ ଶବ୍ଦ, ଯାହାର ଅର୍ଥ ବିଚ୍ଛିନ୍ନ, ଅଲଗା ଅଲଗା । ଆଙ୍ଗ୍ଲୋଭାରତୀୟ ଇତର ଲୋକଙ୍କ ଭାଷାରେ ଏହା ଭାରତର ଗ୍ରାମାଞ୍ଚଳ, ସାଧାରଣତଃ ଦେଶର ଅଭ୍ୟନ୍ତରକୁ ବୁଝାଏ, ଯାହାକି କଲିକତା, ବମ୍ବେ ଓ ଅନ୍ୟ ରାଜଧାନୀଠାରୁ ଭିନ୍ନ । ଏହା ହେଉଛି ସହରଠାରୁ ଭିନ୍ନ 'ଗ୍ରାମ' ।

ସେ ଅର୍ଦ୍ଧସଜ୍ଜିତ ଏକ ବିରାଟ ଘରେ ରହୁଥିଲେ । ସେ ସମୟରେ କଲିକତାର ଆଖପାଖରେ ଜଙ୍ଗଲ ମାଡ଼ିଯାଇଥିବା ଖୋଲା ଜାଗାମାନଙ୍କରେ ଥିବା ଅର୍ଦ୍ଧଭଗ୍ନ ବିଶାଳ ପ୍ରାସାଦମାନଙ୍କରୁ ତାହା ଗୋଟିଏ । ତାହା ଥିଲା ଟୋଲିଗଞ୍ଜରେ ଏବଂ ତା'ରି ଭିତରେ ଥିଲା ଚୀନା ମନ୍ଦାରିନ୍ ୟେହ୍ ଯାହାଙ୍କୁ ଅଳ୍ପଦିନ ହେଲା କ୍ୟାଣ୍ଟନରୁ ବନ୍ଦୀ କରାହୋଇ ଆଲବାଷ୍ଟରଙ୍କ ଦାୟିତ୍ୱରେ କଲିକତାକୁ ପଠାହୋଇଥିଲା । ତେଙ୍ଗା, ମୋଟା, ଭୀଷଣାକାର, ଅଳ୍ପ ନିଶ ଦାଢ଼ି, ଅଳ୍ପ ନୀଳ ଛିଟ ରେଶମ ବସ୍ତ୍ରରେ ଆବୃତ ୟେହ୍ ସହ ଆମେ ସାକ୍ଷାତ୍ କଲୁ । ସେ ବିଶେଷ କିଛି ଆକର୍ଷଣୀୟ ନ ଥିଲା । ଆମ ପ୍ରଶ୍ନର ଉତ୍ତରରେ ସେ ରୁକ୍ଷ ସ୍ୱରରେ କେତେ ପଦ କହିଲା । ଆଲବାଷ୍ଟର ତାହା ଆମକୁ ବୁଝାଇଦେଲେ । କଲିକତାର ଦୃଶ୍ୟ ଦେଖିବାକୁ, ଏପରିକି ନିଜ ବାସସ୍ଥାନ ବାହାରକୁ ଆସିବାକୁ ମଧ ମନାକରି ସେ କହିଲା ଯେ, ବର୍ବରମାନଙ୍କ ରାଜ୍ୟରେ ତା'ପାଇଁ କୌଣସି ଦର୍ଶନୀୟ ପଦାର୍ଥ ରହିନପାରେ । କିନ୍ତୁ ତା'ର ସାହାଯ୍ୟକାରୀ ଲାମ୍ ଥିଲା ଜଣେ ମଉଜିଆ ଯୁବକ । ସେ ଆମକୁ ଚୀନା ଢଙ୍ଗର ଏକ ଭୋଜି ଦେଲା, ହସ କୌତୁକ କଲା, ଖାଣ୍ଟି ବ୍ରାଣ୍ଡି ପାଣିଭଳି ପିଇଲା ଏବଂ ଅନେକ ଭାବରେ ଆମକୁ ଆମୋଦ ଦେଲା ।

ଆଲବାଷ୍ଟରଙ୍କ ସହ ଥରେ ଆମେ ଲର୍ଡ଼ କ୍ୟାନିଂକ ସାମରିକ ସେକ୍ରେଟାରୀ ଜେନେରାଲ ସାର୍ ରିଚାର୍ଡ଼ଙ୍କ ପତ୍ନୀ ଲେଡ଼ି ବାର୍ଚ୍ଚଙ୍କୁ ସାକ୍ଷାତ କରିବାକୁ ଯାଇଥିଲୁ । ସେ ଜେନେରାଲ ସେତେବେଳେ ମଧ ଆଲାହାବାଦରେ ଗଭର୍ଣ୍ଣର ଜେନେରାଲଙ୍କ ସହ ଥିଲେ । ଲେଡ଼ି ବାର୍ଚ୍ଚ ଜଣେ ବୟସ୍କା ନାରୀ ଓ ପୃଥିବୀର ଅନେକ ଜାତିର ମିଶ୍ରଣରେ ବର୍ଣ୍ଣସଙ୍କର । ତାଙ୍କର ଥିଲେ ଦୁଇ ସୁନ୍ଦରୀ କନ୍ୟା । ବଡ଼ ଏମିଲ ଥିଲା ରୁଗ୍‌ଣା, କିନ୍ତୁ ଲୁସିଆ ନାମ୍ନୀ ଅନ୍ୟଟି ଖୁବ୍ କର୍ମଚଞ୍ଚଳା, ତେଜସ୍ୱିନୀ, ଚତୁରୀ— 'ଲୁଲୁ' ନାମରେ ନାମିତ । ସେ ମୋର ଘନିଷ୍ଠ ବନ୍ଧୁ ହୋଇଗଲା । ଆମେ ଏକାଠି ଘୋଡ଼ାରେ ବୁଲିଯାଇ ନାନା ବିଷୟରେ କଥାବାର୍ତ୍ତା କରୁଥିଲୁ । ଦୁଇଟିଯାକ ଝିଅ ଲଣ୍ଡନ ଓ ପ୍ୟାରୀରେ ଉତ୍ତମ ଶିକ୍ଷା ପାଇଥିଲେ ଏବଂ ଫରାସୀ, ଇଟାଲି ଓ ଜର୍ମାନ ଭାଷା କହିପାରୁଥିଲେ, ଗୀତ ଗାଇପାରୁଥିଲେ ଏବଂ ଭଲ ବଜାଇପାରୁଥିଲେ । ଆମେ ଉଦ୍ଭିଦ ଉଦ୍ୟାନ ଓ ଅନ୍ୟାନ୍ୟ ସ୍ଥାନକୁ ବୁଲିଯାଇ ଫେରୁ ଏବଂ ତାଙ୍କ ଘରେ ସୁନ୍ଦର ନୈଶ ଭୋଜି ହୁଏ । ଲୁଲୁ ଓ ମୁଁ ସାଙ୍ଗହୋଇ ଜର୍ମାନ ପଢ଼ିଲୁ ଏବଂ 'ଗେଇଷ୍ଟ' (ରୋମାଞ୍ଚକାରୀ) ଭଙ୍ଗୀରେ କଥାବାର୍ତ୍ତା କରୁଥିଲୁ । ଆମେ ଚିତ୍ରାଙ୍କନ କରୁଥିଲୁ ଏବଂ ରସ୍କିନ୍ ଓ ଚିତ୍ରକଳା ସମ୍ପର୍କରେ ଆଲୋଚନା କରୁଥିଲୁ । ଲୋକେ ପରେ କହିଲେ ଯେ, ସେଗୁଡ଼ାକ ଥିଲା ପ୍ରେମର ଛଳନା; କିନ୍ତୁ ମୁଁ ସେପରି ମନେକରି ନ ଥିଲି । ମୁଁ ତାକୁ କହିଥିଲି ଯେ, ଏଲେନ୍ ଗ୍ରାଅରି ସହ ମୋର ବିବାହ ସ୍ଥିର ହୋଇଛି । ସେ ମଧ ମୋତେ କହିଥିଲା ଯେ ହାଇଦରାବାଦରେ ଥିବା କ୍ୟାପ୍‌ଟେନ ବେକର ସହ ତା'ର ବିବାହ ନିର୍ଦ୍ଦିଷ୍ଟ ହୋଇଛି । ତା' ସତ୍ତ୍ୱେ ଆମେ ଯେ ଉତ୍ତମ ବନ୍ଧୁ ହୋଇପାରିବୁ ସେ ବିଷୟରେ ଆମେ ଦୁହେଁ ଏକମତ ଥିଲୁ । ସେ ଥିଲା ଖୁବ୍ ଧାର୍ମିକା ଏବଂ ସେ ସମୟରେ ମୋର ଧର୍ମଭାବ ଖୁବ୍ ଉତ୍ସାହ ଉତ୍କଣ୍ଠାର ସ୍ତର ଦେଇ ଗତି କରୁଥିଲା । ତେଣୁ ଆମେ ଧର୍ମସମ୍ପର୍କୀୟ ଅନେକ କଥାବାର୍ତ୍ତା କରୁଥିଲୁ ଏବଂ ସେଥିରେ ପ୍ରେମର କଥା କିଛି ନ ଥିଲା; ଅନ୍ତତଃ ମୋ'ଆଡୁ କହିବାକୁ ଗଲେ ପ୍ରେମ କରିବାର କୌଣସି ଚିନ୍ତା ସେତେବେଳେ ମନରେ ପ୍ରବେଶ କରିନଥିଲା ।

ଥୋମାସ୍ ନାମରେ ଜଣେ ଅଫିମ ଓ ନୀଳ ବ୍ୟବସାୟୀ ବାର୍ଚ୍ଚ ପରିବାର ସହ କୌଣସି ପ୍ରକାରେ ସମ୍ପର୍କୀୟ । ସେ ସେହି ଘରେ ସର୍ବଦା ପଡ଼ିରହିଥିଲା । ସେ ଥିଲା ଜଣେ ମୋଟା ଚର୍ବିଳ ବ୍ୟକ୍ତି, ଅତି ବେଶି ପୋଷାକରେ ଆବୃତ ଧନଗର୍ବୀ ଲୋକ । ତା'ର ସ୍ୱର ଖୁବ୍ ଉଚ୍ଚ ଓ ଗ୍ରାମ୍ୟ; କିନ୍ତୁ ବ୍ୟବହାର ସୁନ୍ଦର ଏବଂ ସାର୍ ରିଚାର୍ଡ଼ଙ୍କ ଅନୁପସ୍ଥିତିରେ ବିଚରା ଲେଡ଼ି ବାର୍ଚ୍ଚଙ୍କୁ ଘର କାମଧନ୍ଦାରେ ସାହାଯ୍ୟ କରିବାକୁ ସର୍ବଦା ପ୍ରସ୍ତୁତ । ଲୁଲୁ ଓ ମୋ ଭିତରେ ଏକାନ୍ତ ଆଲୋଚନାବେଳେ ଆମ ପାଖରେ ସର୍ବଦା ପହଞ୍ଚିଯିବାର ଅଭ୍ୟାସ ତା'ର ଥିଲା । ଯେତେବେଳେ ଲୁଲୁ କୌଣସି ବିଷୟରେ ଖୁବ୍ ଆଗ୍ରହୀ ହୋଇ ତା'ର ସେଇ ଗଭୀର, ଉଜ୍ଜ୍ୱଳ କିନ୍ତୁ କମନୀୟ ଦୃଷ୍ଟିରେ ମୋତେ ଚାହିଁରହେ, (ଯାହାକି ମିଶ୍ରିତ ଜାତୀୟ ସ୍ତ୍ରୀଲୋକେ ଅତି ସହଜରେ କରିପାରନ୍ତି) ସେଇ ବାଦାମୀ ରଙ୍ଗର ପୃଥୁଳ ଥୋମାସ ହଠାତ୍ ଉଠିପଡ଼ି, ଆକାଶକୁ ଫାଙ୍କା ଭାବରେ ଚାହିଁ 'ହାରିଶ' ଶବ୍ଦ ଉଚ୍ଚାରଣ କରି ପକେଇବ । ଲୁଲୁ ବାଘୁଣୀ ପରି ମୁହୂର୍ତ୍ତେ ଚାହିଁରହି ଓଠ କାମୁଡ଼ି ଏବଂ ଗଭୀର ଘୃଣାରେ ଫିସ୍‌ଫିସ୍ କରି କିଛି କହିବ । ଦିନେ ମୁଁ ତାକୁ ପଚାରିଲି ଏଇ 'ହାରିଶ' ଶବ୍ଦର ଅର୍ଥ କ'ଣ ଏବଂ ସେ କହିଲା ଯେ, ଥୋମାସ ତାକୁ ତା'ର ଅନୁପସ୍ଥିତ ପ୍ରେମିକ ବିଷୟରେ ମନେପକାଇ ଦେଉଛି । ମୋ ପରି ନିଃସନ୍ଦେହୀ ଲୋକ ପକ୍ଷରେ ମଧ ଏ ଉତ୍ତର ଆଦୌ ସନ୍ତୋଷଜନକ ନ ଥିଲା । ବହୁପରେ ମୁଁ ଜାଣିପାରିଲି ଯେ, ଲୁଲୁର ବହୁ ବ୍ୟକ୍ତିଙ୍କ ସହ ବିବାହ ସ୍ଥିର ହୋଇଥିଲା; କିନ୍ତୁ ସମସ୍ତଙ୍କୁ ସେ ଗୋଟାଏ ପରେ ଗୋଟାଏ ଛାଡ଼ିଛି । ଥୋମାସ ନିଜେ ମଧ 'ହାରିଶ' ବୋଲି ଜଣକ ଲାଗି ପ୍ରତ୍ୟାଖ୍ୟାତ ହୋଇଛି । ହାରିଶ ମଧ ସମୟକ୍ରମେ ନାପସନ୍ଦ ହୋଇଗଲା । ଥୋମାସ ସେତେବେଳେ ଭାବୁଥିଲା କିମ୍ବା ଭାବିବାକୁ ଚେଷ୍ଟା କରୁଥିଲା ଯେ. ସେ କ୍ୟାପ୍‌ଟେନ୍ ବେକରଙ୍କୁ ମୋ ଲାଗି 'ହାରିଶ୍' କରିଦେବ ।

ନଭେମ୍ବର ପ୍ରଥମ ସପ୍ତାହରେ ଲର୍ଡ଼ କ୍ୟାନିଂ ତାଙ୍କର ସମସ୍ତ ସେକ୍ରେଟାରୀ ଓ ଅନ୍ୟ କର୍ମଚାରୀଙ୍କ ସହ କଲିକତା ଫେରିଲେ ଏବଂ ସେଇ ମାସ ୯ ତାରିଖରେ ଏକ ସ୍ମରଣୀୟ ଉତ୍ସବରେ ରାଣୀ ଭିକ୍ଟୋରିଆ ଭାରତର ଶାସନଭାର ଗ୍ରହଣ କଲେ ଏବଂ ମାନ୍ୟବର ଇଷ୍ଟଇଣ୍ଡିଆ କମ୍ପାନୀ ଲୋପ ପାଇଲା । ଇଲିଅଟ୍ ଓ ମୁଁ ସେହି ଉତ୍ସବରେ ସ୍ୱେଚ୍ଛାସେବୀ କମାଣ ବାହିନୀ ଲୋକ ଭାବରେ ଯୋଗ ଦେଇଥିଲୁ ଏବଂ ଘୋଷଣାପତ୍ର ପଢ଼ାହେଉଥିବାବେଳେ ଆମେ ଆମ ଘୋଡ଼ାରେ ବସି ବନ୍ଧୁକକୁ ପଛରେ ରଖି ଗଭର୍ଣ୍ଣମେଣ୍ଟ ହାଉସ ହତାରେ ରହିଥିଲୁ । ସେ ଦୃଶ୍ୟ ଖୁବ୍ ଚମତ୍କାର ହୋଇଥିଲା ଏବଂ ତା' ପରବର୍ତ୍ତୀ ଦୁଇରାତି ଧରି ଯେଉଁ ଆଲୋକସଜ୍ଜା ଓ ବାଣ କାମ ହୋଇଥିଲା, ତାହା ମଧ ଥିଲା ସେହିପରି ଚମତ୍କାର; ଅବଶ୍ୟ ହଠାତ୍ ନିଆଁ ଲାଗିଯିବା ଫଳରେ ହଜାର ହଜାର ହାବେଳି ଯେତେବେଳେ ଲାଗିବା କଥା ତା' ପୂର୍ବରୁ ଫୁଟିଯିବାରୁ ଅନେକ ବାଣକାମ ନଷ୍ଟ ହୋଇଗଲା । ନ'ରାତି ନ'ଦିନ ଧରି ଅବିରତ ଉଦ୍ଦୀପନା, କୋଳାହଳ, ବଲ୍‌ନାଚ, ଭୋଜି, ଦରବାର ଓ ଆଲୋଚନା ଲାଗିରହିଲା । ପ୍ରତ୍ୟେକେ ଅଳ୍ପେ ବହୁତେ ଆନନ୍ଦପାଗଳ ହୋଇ କେହି କିଛି କାମ କଲେ ନାହିଁ । ମୁଁ ମନେକରେ କମ୍ପାନୀ ଉପରେ ରାଣୀ ସରକାରଙ୍କ ହସ୍ତକ୍ଷେପ ଯୋଗୁଁ ଯେତେ ନୁହେଁ, ବିଦ୍ରୋହ ଶେଷ ହୋଇଥିବାରୁ ଏ ଆନନ୍ଦ ଉଲ୍ଲାସ ଦେଖାଦେଇଥିଲା । ବାସ୍ତବିକ ଅନେକ ବୃଦ୍ଧ ଖୋଲାଖୋଲି ମତ ଦେଲେ ଯେ, ଆମେ ପୂର୍ବର

ଇନ୍ କମ୍ପାନୀ ଭଳି ଜଣେ ଭଲ ମାଲିକ ହରାଇଲୁ ଏବଂ ରାଣୀମଣିମାଙ୍କ ମନ୍ତ୍ରୀମାନେ ଏତେ ଭଲ ମାଲିକ ନୁହନ୍ତି । ପୂର୍ବର ସେ ସହୃଦୟ କମ୍ପାନୀ ନିଶ୍ଚିତ ଭାବରେ ବିଚାରଶୀଳ ମାଲିକ ଥିଲା ଏବଂ ଭାରତରେ ତା'ର ଶାସନଗତ ଗୁଣାଗୁଣ ସମ୍ପର୍କରେ ଯାହାକିଛି କୁହାଯାଉନା କାହିଁକି, ନିଜ କର୍ମଚାରୀମାନଙ୍କର ଉତ୍ତମ ଯତ୍ନ ନେଉଥିଲା ।

ବୃଦ୍ଧ ସାର୍ ରିଚାର୍ଡ଼ ବାର୍ଚ୍ଚ ଭାଇସ୍‌ରାୟ (ପ୍ରଥମ ଥର ପାଇଁ ଗଭର୍ଣ୍ଣର ଜେନେରାଲଙ୍କର ଏପରି ନାମକରଣ ହେଲା)ଙ୍କ ସହ କଲିକତାକୁ ଫେରିବାରୁ ମୁଁ ତାଙ୍କର ପ୍ରିୟ ହୋଇଗଲି । ସେ ଥିଲେ ଦୀର୍ଘକାୟ, ସୁନ୍ଦର କେଶରାଶିଯୁକ୍ତ, ଖୁବ୍ ସବଳ; କିନ୍ତୁ କୌଣସି ଏକ ପୁରାତନ କ୍ଷତ ଯୋଗୁଁ ଘୋଡ଼ା ଚଢ଼ାରେ ଅକ୍ଷମ । ଦିନେ ତାଙ୍କ ସ୍ତ୍ରୀ ଓ କନ୍ୟାମାନେ ବୁଲିଯାଇଥିବାବେଳେ ସନ୍ଧ୍ୟାବେଳେ ମୁଁ ଯାଇ ତାଙ୍କ ପାଖରେ ବସିଲି ଏବଂ ତାଙ୍କସହ ଆଲୋଚନାରୁ ଉତ୍ତରଭାରତ ସମ୍ପର୍କରେ ଅନେକ କିଛି ଜାଣିଲି ।

ନଭେମ୍ବରରେ ଇଲିଅଟ୍ କଲିକତା ଛାଡ଼ି ଉତ୍ତରଭାରତ ଚାଲିଗଲା ଏବଂ ମୁଁ ମଧ୍ୟ ଯିବାକୁ ଆଗ୍ରହୀ ହୋଇଉଠିଲି । ଡିସେମ୍ବର ଓ ଜାନୁୟାରୀରେ ମୁଁ ହିନ୍ଦୀରେ ଏକ ଉଚ୍ଚ ଡିଗ୍ରୀ ସାଙ୍ଗକୁ ୮୦୦ ଟଙ୍କା (୮୦ପାଉଣ୍ଡ) ପୁରସ୍କାର ପାଇଲି । ବାପା ଏହି ପଦକ ଓ ପୁରସ୍କାର ସମ୍ପର୍କରେ ସଚେତନ ଥିବାରୁ ଏବଂ ମୁଁ ଜଣେ ଜେନେରାଲ ଓ.କେ.ସି.ବି.ଙ୍କ କନ୍ୟାପାଇଁ ଏଲେନକୁ ଫିଙ୍ଗିଦେବି ବୋଲି ଆଶାବାନ୍ ଥିବାରୁ କଲିକତାରୁ ଶୀଘ୍ର ଚାଲିଯିବା ପାଇଁ ମୋ ଉପରେ ବରାବର ଚାପ ଦେଉଥିଲେ ଏବଂ ଏଲେନ୍ ମଧ୍ୟ ସେଇୟା କରୁଥିଲା । ଇଲିଅଟ୍ ତା'ର ନୂଆ ଜିଲ୍ଲାରୁ ଯେଉଁ ଚିଠି ଲେଖିଲା, ସେଥିରେ ମଫସଲ ଜୀବନର ମନୋରମ ଚିତ୍ର ଥିଲା । ଶେଷରେ ମୁଁ ଆଉ କଲିକତାରେ ନ ରହିବା ପାଇଁ ସ୍ଥିର କଲି । ହୁଏତ ରହି ଅଧିକ କିଛି ଡିଗ୍ରୀପାଇଁ ଲାଗିଥାନ୍ତି; କିନ୍ତୁ ଅନିର୍ଦ୍ଦିଷ୍ଟକାଳ ରହି ମୁଁ କ୍ଳାନ୍ତ ହୋଇ ପଡ଼ୁଥିଲି ଏବଂ ତା'ର ଶେଷ ପାଇଁ ମନସ୍ଥ କଲି । ତେଣୁ ଅଧିକ କିଛି ମାନର ଶିକ୍ଷାପାଇଁ ନ ଲାଗି ମୁଁ ମୋ ଜିଲ୍ଲାରେ ଯୋଗ ଦେବାକୁ ଇଚ୍ଛା କରୁଛି ବୋଲି ଜଣାଇଦେଲି । ଅଳ୍ପଦିନ ପରେ ବନାରସ ଯାଇ ସେଠାରେ ଯୋଗଦେବାପାଇଁ ଆଦେଶ ଆସିଲା; କିନ୍ତୁ ମୁଁ ଯାତ୍ରାରମ୍ଭ ନ କରୁଣୁ ପୂର୍ବ ଆଦେଶ ରହିତ କରି ଆଉ ଗୋଟିଏ ଆଦେଶ ଅମିୟା । ସେଥିରେ ମୋତେ ସାଙ୍ଗେ ସାଙ୍ଗେ ଲାହୋର ଯାଇ ସେଠାରେ ପଞ୍ଜାବର ଚିଫ୍ କମିଶନରଙ୍କ ପାଖରେ ହାଜର ହେବା ପାଇଁ ଆଦେଶ ଦିଆଯାଇଥିଲା ।

ବିଦାୟର ଦିନ ପାଖେଇ ଆସିବାରୁ ଶ୍ରୀମତୀ ହୋ, ଯେ କି ଇଲିଅଟ୍ ଯିବାବେଳେ କାନ୍ଦିଥିଲେ, ମୋ ପାଇଁ ମଧ୍ୟ କାନ୍ଦିଲେ । 'ପ୍ରିୟ ଶ୍ରୀ ଇଲିଅଟ୍'ଙ୍କୁ ତାଙ୍କର ଗୋଟିଏ କନ୍ୟା ସୋଫି ସହ ଏବଂ 'ପ୍ରିୟ ଶ୍ରୀ ବୀମ୍‌ସ'ଙ୍କୁ ଆଉ ଏକ କନ୍ୟା ନେଲି ସହ ବିବାହ ଦେବାକୁ ମନେ ମନେ ଯୋଜନା କରିଥିଲେ, କିନ୍ତୁ ଏଇ ଦୁଇ ଯୁବତୀ ଇଂଲାଣ୍ଡରୁ ତାଙ୍କ ବିଦ୍ୟାଳୟରୁ ଫେରି କଲିକତାରେ ପହଞ୍ଚିବା ପୂର୍ବରୁ ଇଲିଅଟ୍ ଓ ମୁଁ କଲିକତା ଛାଡ଼ିଦେବାର ସିଦ୍ଧାନ୍ତ କରିବାରୁ ଏହି ଯୋଜନା ଭାଙ୍ଗିଗଲା । ଆମ ଉଭୟଙ୍କ ପାଇଁ ତାଙ୍କର ଦୟା ବାସ୍ତବରେ କମ୍ ନ ଥିଲା । ମୋର ପୋଷାକପେଡ଼ି ପାଇଁ ସେ ତାଙ୍କ ବାରଣ୍ଡାରେ ଗୋଟିଏ ଛୋଟ ଦରଜି ବାହିନୀ ନିଯୁକ୍ତ କରିଥିଲେ ।

ଆମେ ପ୍ରତ୍ୟେକଦିନ ପରିଷ୍କାର ପୋଷାକ ପିନ୍ଧୁଥିବାରୁ ପରିଷ୍କାର ଧଳା ପାଇଜାମା ଏବଂ କୋଟ୍ କିମ୍ବା ଜ୍ୟାକେଟ, କୁର୍ତ୍ତା, ଅନ୍ତର୍ବାସ, ଗଞ୍ଜି ଓ ମୋଜା ପ୍ରଭୃତି ପୋଷାକ ସେ ସମୟରେ ବହୁ ପରିମାଣରେ ରହୁଥିଲା । ମୋ ଯାତ୍ରାବେଳେ ମଧ୍ୟ ଶ୍ରୀମତୀ ହୋ ବହୁ ଜିନିଷପତ୍ର ମୋ ସାଙ୍ଗରେ ଦେଲେ । ଆଜିକାଲି ପରି ସେତେବେଳେ ମଧ୍ୟ କଲିକତିଆଙ୍କର ଧାରଣା ଥିଲା ଯେ କଲିକତା ଛଡ଼ା ସମଗ୍ର ଭାରତ ହେଉଛି କୋଳାହଳମୟ ଏକ ବିରାଟ ଜଙ୍ଗଲ ଜାଗା ଯେଉଁଠି ୟୁରୋପୀୟମାନଙ୍କର ଆବଶ୍ୟକ କୌଣସି ଜିନିଷ ମିଳିବ ନାହିଁ । ତାଙ୍କ ଉପଦେଶ ଅନୁଯାୟୀ ମୁଁ ଏତେ ପରିମାଣ ରସଦପତ୍ର ନେଇଥିଲି ଯେ, ପଞ୍ଜାବରେ କେତେ ମାସ ପର୍ଯ୍ୟନ୍ତ ମୋତେ ଆଉ ସେସବୁ ସଂଗ୍ରହ କରିବାକୁ ପଡ଼ି ନାହିଁ । ବୋତଲରେ ଥିବା ବିଅର, ବ୍ରାଣ୍ଡି, ସେରି, ଟିଣରେ ଥିବା ମାଂସ, ଜାମ୍, ମାରମାଲେଡ୍, ବିସ୍‌କୁଟ, ସସ୍, ଚାହା, ଚିନି ଏବଂ ଅନ୍ୟ ଅନେକ ପ୍ରକାର ଜିନିଷ ଅଣାଯାଇ ବନ୍ଧାବନ୍ଧି ହେଲା । ରାଣୀଗଞ୍ଜଠାରୁ ଲାହୋର ପର୍ଯ୍ୟନ୍ତ ମୁଁ ଏକ ଡାକଗାଡ଼ି ନିଯୁକ୍ତ କଲି; ପିସ୍ତଲଟିଏ ଓ କିଛି ଗୁଳି କିଣିଲି ଏବଂ ସାର୍ ରିଚାର୍ଡ୍ ବାର୍ଢଙ୍କ ଉପଦେଶ ଅନୁଯାୟୀ ଉତ୍ତରଭାରତୀୟ ଚାକରଟିଏ ନିଯୁକ୍ତ କରି ଯାତ୍ରାପାଇଁ ପ୍ରସ୍ତୁତ ହେଲି ।

କଲିକତାର ଶେଷ ସନ୍ଧ୍ୟାଟି ବାର୍ଢଙ୍କ ଘରେ କଟାଇଲି । ଭୋଜନ ପରେ ସେ ବୃଦ୍ଧ ଦୟାକରି ଉତ୍ତରଭାରତର କେତେକ ଉଚ୍ଚ କର୍ମଚାରୀଙ୍କ ନିକଟକୁ ପରିଚୟ ପତ୍ର ଲେଖିଦେଲେ । ସେଗୁଡ଼ିକରୁ କେତେକ ମୋର ପରେ ବହୁ କାମରେ ଲାଗିଲା । ବିଦାୟ ମୁହୂର୍ତ୍ତରେ ଲୁଲୁ ଖୁବ୍ ଚଞ୍ଚଳ ହୋଇଉଠିଲା । ଥୋମାସ ସେତେବେଳେ ମଧ୍ୟ ସେଠାରେ ଥାଇ ତାକୁ ଜଗିଥାଏ । ଶେଷରେ ଜେନେରାଲ ଓ ମହିଳାମାନଙ୍କଠାରୁ ବିଦାୟ ନେଲି । ସେହି ସମୟରେ ଲୁଲୁ ମୋତେ ଫୁସ୍‌ଫୁସ୍ କରି କହିଲା, ''ବାରଣ୍ଡାରେ ମୁଁ ତୁମକୁ ଭେଟିବି'' ଏବଂ ଘରୁ ପଳେଇଲା । ଥୋମାସ ଆଗରୁ ପଳେଇଥିଲା । ଗାଡ଼ିରଖା ଜାଗାରେ ଲୁଲୁ ଅପେକ୍ଷା କରିଥିଲା; କହିଲା, ''ସମସ୍ତଙ୍କ ଥାଗରେ ମୁଁ ତୁମକୁ ବିଦାୟ ଦେଇପାରିଲି ନାହିଁ ।'' ନିଜ ହାତରେ ମୋ ଦୁଇ ହାତକୁ ନେଇ ଚିପି ଧରିଲା ଏବଂ କାହିଁଉଠି କହିଲା, ''ଏଇଆ ହେଲା, ପ୍ରକୃତରେ ଆମେ ଅଲଗା ହୋଇଯିବା ?'' ମୁଁ ଖୁବ୍ ବିଚଳିତ ହୋଇପଡ଼ିଲି ଏବଂ କ'ଣ କରିବି ବା କହିବି କିଛି ଜାଣିପାରିଲି ନାହିଁ । ଏହି ସମୟରେ ହଠାତ୍ ସ୍ତମ୍ଭର ଛାଇତଳୁ ଥମାସ ବାହାରି ଆସି 'ହାରିଣ୍' କହିଦେଇ ପୁଣି ଅନ୍ଧାର ଭିତରେ ଲୁଚିଗଲା । ଲୁଲୁ ସେ ଆଡ଼କୁ ରାଗରେ ଚାହିଁଲା । ପୁଣି ଥରେ ମୋ ହାତକୁ ଚିପିଧରି ସେ ଧାଇଁ ପଳେଇଲା । ଆଉ ମୁଁ ତାକୁ ଦେଖି ନାହିଁ । ଅନେକଦିନ ପରେ ତାକୁ ଭଲରୂପେ ଜାଣିଥିବା ଜଣେ ଲୋକ ମୋତେ ଓ ମୋ ସ୍ତ୍ରୀକୁ କହିଲେ ଯେ, ଛଳ ପ୍ରେମାଭିନୟରେ ସେ ଥିଲା ନିପୁଣା ଏବଂ କଲିକତାରେ ସମସ୍ତେ ଜାଣିଥିଲେ ଯେ ହାଇଦ୍ରାବାଦ ସୈନ୍ୟଦଳର ସେ କ୍ୟାପ୍‌ଟେନ ଅପେକ୍ଷା ମୋଭଳି ଜଣେ ଉଦୀୟମାନ ସିଭିଲିଆନକୁ ଧରିବାକୁ ସେ ଖୁବ୍ ଚେଷ୍ଟା କରିଥିଲା । ସେ କହିଲେ ଯେ ଲୁଲୁର ଏ ଯୋଜନା ସମ୍ପର୍କରେ ମୋର ଅଜ୍ଞତା ଲୋକେ ଖୁବ୍ ଉପଭୋଗ କରୁଥିଲେ । ବିଚରା ଲୁଲୁ ! ସେ ସୁନ୍ଦରୀ, ଚତୁରୀ ଓ ଖୁବ୍ ମେଳାପୀ । ସେ ଯେ ଛଳନାମୟୀ ହୋଇପାରେ ଏହା ମୁଁ ଭାବି ପାରୁ ନାହିଁ । ତା'ପ୍ରତି ମୋର ପ୍ରେମ ନ ଥିଲା, ବନ୍ଧୁ ଭାବରେ ତାକୁ ଭଲ ପାଉଥିଲି । ତା ବିଷୟରେ ଏଲେନ୍‌କୁ ମୁଁ ଖୋଲାଖୋଲି

ଲେଖୁଥିଲି ଏବଂ ଏଲେନ୍ ବିଷୟରେ ତାକୁ ମଧ କହୁଥିଲି । ମନେହୁଏ, ସେ ସମୟରେ ମୁଁ ଅତି ଅପକ୍ୱ, ଆତ୍ମାଭିମାନୀ, ଅହମିକା ସର୍ବସ୍ୱ ଥିଲି । ପରେ ଶୁଣିଲି ସେ କ୍ୟାପ୍‌ଟେନ୍ ବେକରଙ୍କୁ ବିବାହ କରି ଦୁଇଟି ସନ୍ତାନର ଜନନୀ ହୋଇ ଅଳ୍ପକାଳର ବିବାହିତ ଜୀବନ ପରେ ମରିଗଲା ।

ପରଦିନ ସକାଳେ ମୁଁ ଟ୍ରେନ୍‌ରେ କଲିକତାରୁ ବାରାଣସୀ ଗଲି । କଲିକତାର ଆନନ୍ଦପୂର୍ଣ୍ଣ ଅଳସ ଏଗାର ମାସ ମଧରେ ଭଲ କି ମନ୍ଦ କିଛି କାମ ହେଲା ନାହିଁ । ଯାହାକିଛି ହେଲା ପରେ ଜଣାଗଲା ଯେ, ମୁଁ ବ୍ୟାଙ୍କ୍‌ରୁ ୫୦୦୦ ଟଙ୍କା ଅଧିକ ନେଇ ଆସିଛି । ତାହାହିଁ ମୋର ଋଣର ମଞ୍ଜିସ୍ୱରୂପ ହୋଇ କର୍ମଜୀବନସାରା ମୋତେ ହଇରାଣ କଲା । ଯେଉଁ ଭାଷାଶିକ୍ଷାର ଆଳରେ କଲିକତାରେ ରହିଥିଲୁ ଖୋଲାଖୋଲି ମୁଁ କହିଦେଇପାରେ ଯେ, ପ୍ରଥମରୁ ଆମେ ସେସବୁ ବିଷୟରେ ଯାହା ଜାଣିଥିଲୁ ଏ ଏଗାରମାସ ଭିତରେ ତା'ଠାରୁ ଅଧିକ କିଛି ଶିଖିପାରିଲୁ ନାହିଁ ।



# ସପ୍ତମ ପରିଚ୍ଛେଦ

## ପଞ୍ଜାବ-ଗୁଜୁରାଟ : ୧୮୫୯

ହାଉଡ଼ାରୁ ଟ୍ରେନ୍ ଛାଡ଼ିଲା ସକାଳ ୯ଟାରେ ଏବଂ ମନ୍ଥର ଗତିରେ ଘଣ୍ଟାକୁ ୧୪ ମାଇଲ୍ ବେଗରେ ଯାଇ ୧୨୦ ମାଇଲ୍ ଦୂର ରାଣୀଗଞ୍ଜରେ ପହଞ୍ଚିଲା ସନ୍ଧ୍ୟା ଛ'ଟାରେ । ବର୍ତ୍ତମାନ (୧୮୯୬) ଏହି କାମ ଏହାର ଅଧା ସମୟରେ ହେଉଛି ଏବଂ ଇଂଲାଣ୍ଡର ସାଧାରଣ ଦ୍ରୁତଗାମୀ ଟ୍ରେନ୍ ଏହି ବାଟ ଦୁଇଘଣ୍ଟାରେ ଯିବ । ମୋତେ ଲାଗିଲା ରାଣୀଗଞ୍ଜ ଗୋଟାଏ ଇତସ୍ତତଃ ବିକ୍ଷିପ୍ତ ସ୍ଥାନ, ଗୁଡ଼ାଏ ଜଙ୍କ୍‌ଖିଆ ରେଲ ଆଉ ଧୂସରିତ ଟ୍ରକ୍‌ର ସମାବେଶ । ଟ୍ରେନ୍ ଏଇଠି ଛାଡ଼ିଦେଲା । ଦୁଃସ୍ୱପ୍ନ ଦେଖିଲା ପରି ଗୋଟାଏ ଅର୍ଦ୍ଧନିର୍ମିତ ଓ ଅର୍ଦ୍ଧସଜ୍ଜିତ, ବିଦ୍ରୂପରେ ହୋଟେଲ ବୋଲି କୁହାଯାଉଥିବା ଏକ ଘରେ, ରୁକ୍ଷ ଓ ସ୍ୱାଦହୀନ ଏଣୁ ତେଣୁ କିଛି ଖାଇସାରିବା ପରେ ଦେଖିଲି ମୋ ଡାକଗାଡ଼ି ମୋତେ ଅପେକ୍ଷା କରିଛି । ଏଇ ଆୟତାକାର ଚାରିଚକିଆ ଗାଡ଼ି ମୁଁ ପ୍ରଥମେ ଦେଖି— ଚକ ଉପରେ ବାକ୍‌ସଟିଏ ଥୁଆହେଲାପରି । ଦୁଇପଟେ ଚଢ଼ିବା ପାଇଁ ଦ୍ୱାର ଓ ଚାରିପଟେ ଝରକା ଓ କାନଭାସ୍‌ର ଆବରଣ ଏବଂ ପଛପଟେ ସଇସ ପାଇଁ ପଟାର ଆସ୍ଥାନ । ଥରେ ଏଥିରେ ସବୁଜ ରଙ୍ଗ ଦିଆଯାଇଥିଲା; କିନ୍ତୁ ବହୁଦିନ ତଳେ । ମୁଁ ଦେଖିଲାବେଳକୁ ତାହା ଧୂଳି, ଜଙ୍କ୍ ଓ ବହୁ ପ୍ରକାର ଅଳିଆରେ ପୂର୍ଣ୍ଣ ଥିଲା ଏବଂ ଯେ କୌଣସି ମୁହୂର୍ତ୍ତରେ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗିପଡ଼ିଲା ପରି ଦିଶୁଥିଲା । ଦୁଇପଟେ ଦୁଇଟି ବସିବା ଜାଗା ଏବଂ ମଝିରେ ଖାଲି ସ୍ଥାନ । ସେଇ ସ୍ଥାନରେ ଯାତ୍ରୀମାନଙ୍କ ଗୋଡ଼ ରହେ । ତା'ଉପରେ ପଡ଼ିଥିଲା କାଢ଼ିହୋଇ ପାରୁଥିବା ଖଣ୍ଡେ ପଟା । ସେଇ କୂଅଭଳି ଜାଗାରେ ମୋର ରସଦ ଇତ୍ୟାଦି ରହିଲା । ଗାଡ଼ି ଛାତର ଚାରିକଣରେ ବନ୍ଧାହୋଇ ସୂତାର ଜାଲ ଝୁଲୁଥିଲା ଏବଂ ସେଥିରେ ଥିଲା କମଳା, ସୋଡ଼ାପାଣି ଓ ଘୋଡ଼େଇହେବା ଚଦର । ଚାଳକର ବସିବା ସ୍ଥାନ ତଳେ ଥିବା ଥାକରେ ଥିଲା ବହି, ପାଣି ସୋରେଇ, ପିଇବା ଗିନା, ଟଙ୍କାପଇସା ଓ ଅନ୍ୟାନ୍ୟ ପଦାର୍ଥ । ସେଇ କୂଅରେ ଜିନିଷପତ୍ର ରଖି ପୂରଣ କଲାପରେ ତା'ସହ ବସିବା ସ୍ଥାନକୁ ମିଶାଇ ଯେଉଁ ସମତଳ ସ୍ଥାନ ହେବ ତା' ଉପରେ ପଟି ବିଛା ହୋଇଥିଲା । ତା'ଉପରେ ମୋ ଚାକର ରେଜାଇ ଓ ଥାକେ ତକିଆ ଥୋଇଦେଲା । ଛାତ ଉପରେ ମୋ ବାକ୍‌ସଗୁଡ଼ାକର ସନ୍ଧିରେ ଚାକରଟା ବସି ଡୁଳାଉଥିଲା । ମୁଁ ଭିତରକୁ ଯାଇ ଆରାମରେ ସିଧା ହୋଇ ଶୋଇଗଲି । ଚାକର ତା' ଖୋଲା ଆକାଶତଳ ଶଯ୍ୟାରେ ଓ ଗାଡ଼ିବାଲା ତା' ଜାଗାରେ ବସିଲେ ଏବଂ ତିନିଚାରିଟା ମଇଳା କୋତରା ସଇସଙ୍କ ମିଳିତ ପ୍ରଚେଷ୍ଟାରେ ଗୋଟାଏ ଅପରିଷ୍କାର ଅମଣିଆ ଟଟୁଘୋଡ଼ାକୁ ଅଣାଯାଇ ଦଣ୍ଡା ମଝିରେ ମଣେଇ ଦିଆଗଲା । ତା'ପରେ ସେମାନେ ସମସ୍ତେ ଚିତ୍କାର ଓ କୋଳାହଳ କରିବାକୁ ଲାଗିଲେ ଏବଂ ଜଣେ ଘୋଡ଼ାର ପେଟକୁ ଘୁଷି ମାରିବା ଫଳରେ ସେ ନାକରେ ଏକ

ଧ୍ୱନି କରି ଓ ନାତ ମାରି ତା'ର ସେ ଜୀର୍ଣ୍ଣ ଲଗାମକୁ ପ୍ରାୟ ଛିଡ଼ାଇ ଦେବାପରି ଏକ ଝିଙ୍କାଦେଲା ଏବଂ ଖୁବ୍ ବେଗରେ ଧାଇଁବାକୁ ଲାଗିଲା । ଗାଡ଼ିଟା ଭୀଷଣ ଭାବରେ ଏପଟ ସେପଟ ଦୋହଲି ଭୂମିସ୍ତରରୁ କିଛି ଉଚ୍ଚରେ ଥିବା ରାସ୍ତାର ଜଡ଼ଧାକେ ଆସିଯାଉଥିବାରୁ ଗଡ଼ିପଡ଼ିବାର ଆଶଙ୍କା ହେଉଥିଲା । ଯାହା ହେଉ ଘୋଡ଼ାଟା ଶୀଘ୍ର ଲମ୍ବା କଦମ୍ ପକେଇଲା ଏବଂ ଯାତ୍ରାର ପ୍ରଥମ ସ୍ତରରୁ ଶେଷ ପର୍ଯ୍ୟନ୍ତ ସେହିପରି ଚାଲିଲା । ସେଠାରେ ଆଉ ଏକ ଘୋଡ଼ା ଯୋଚା ହେଲା ଏବଂ ଘଟଣା ପୂର୍ବ କ୍ରମରେ ଚାଲିଲା । ବେଳେ ବେଳେ କୌଣସି ଘୋଡ଼ା ଅତି ଅବାଧ ହେଲେ ଏବଂ ପେଟକୁ ମାରିବା ସତ୍ତ୍ୱେ ନ ଚାଲିଲେ ସେମାନେ ତା' ଉପର ଓଠ ଚାରିପଟେ ଚମତ୍କାର ଦଉଡ଼ି ବାନ୍ଧି ଦିଅନ୍ତି ଏବଂ ସେ ଆପେ ନ ଚାଲିବା ପର୍ଯ୍ୟନ୍ତ ଟାଣି ଧରନ୍ତି । ବେଳେ ବେଳେ ଏଥିରେ ମଧ ଫଳ ନ ହେଲେ ସେମାନେ ସେ ଘୋଡ଼ାକୁ ବଦଳାଇ ଦେଉଥା'ନ୍ତି । ପ୍ରତ୍ୟେକ ଦଶମାଇଲରେ ଘୋଡ଼ା ବଦଳି ହେଉଥାଏ ଏବଂ ପ୍ରତ୍ୟେକ ସ୍ତରରେ ଘଣ୍ଟାଟିଏ ଯାଉଥାଏ ।

ଏହିପରି ପୂରା ରାତିଟା ଖୁବ୍ ନିଦରେ ଶୋଇ ଯାତ୍ରା କଲି ଓ ଏମିତି ବହୁଦିନ ଓ ବହୁରାତି ପଢ଼ି, ଘୁମେଇ, ଦୃଶ୍ୟ ଦେଖି ଦେଖି ଏବଂ ବିଭିନ୍ନ ସମୟରେ ତିଆରି ହେଉଥିବା ବଙ୍ଗଳାମାନଙ୍କରେ ପ୍ରାତରାଶ ବା ଭୋଜନ ପାଇଁ ରହି ରହି ଚାଲିଲି । ସେତେବେଳେ ଗ୍ରାଣ୍ଡଟ୍ରଙ୍କ ରୋଡ଼ ଖୁବ୍ ଚମତ୍କାର, ଚଉଡ଼ା, ସମତଳ ଓ ଭଲ ପକ୍କାକରା ଥିଲା । ରାସ୍ତା ମଝିରେ ପ୍ରତ୍ୟେକ ମାଇଲରେ ବଙ୍ଗଳାମାନ ଥିଲା ଯେଉଁଠି ଯାତ୍ରୀମାନେ ଇଚ୍ଛାକଲେ ଭୋଜନ ଓ ଶୟନ କରିପାରୁଥିଲେ । ବିରାଟ ପାର୍ଶ୍ୱନାଥ ଶୃଙ୍ଗର ଠିକ୍ ତଳେ ସାନ୍ତାଳ ପାହାଡ଼ର ଟୋପିଚାଦିଠାରେ ପୂର୍ବ ପରିଚିତ ସ୍ୱୀଡ଼େନବାସୀ ଚିତ୍ରକର ଲୁଣ୍ଡଗ୍ରେନ୍‌ଙ୍କୁ ଭେଟିଲି । ସେ ଉତ୍ତରାଞ୍ଚଳରୁ ବିରାଟ ବିରାଟ ବହୁ ଚିତ୍ରବାକ୍‌ସ ଭର୍ତ୍ତିକରି ଫେରୁଥିଲେ । ବନାରସରେ ଦୁଇଦିନ ଅଟକି ସେହି ସୁନ୍ଦର ପବିତ୍ର ସହର ଦେଖିଲି, ଆଲାହାବାଦ ଦେଖିଲି । ସେତେବେଳେ ତାହା ଅର୍ଦ୍ଧନିର୍ମିତ ଓ ବିପର୍ଯ୍ୟସ୍ତ ଅବସ୍ଥାରେ ଥିଲା । କ୍ୟାନିଂଟନଠାରେ ଥିବା ନୂଆ ଷ୍ଟେସନର ଭିତ୍ତି ଅଳ୍ପଦିନ ହେବ ଲର୍ଡ଼ କ୍ୟାନିଂ ପକାଇଥିଲେ । ଉତ୍ତର ପଶ୍ଚିମ ପ୍ରଦେଶ ସରକାର ସେତେବେଳକୁ ଆଗ୍ରାରୁ ଆଲାହାବାଦକୁ ଅଣାଯିବା ଅବସ୍ଥାରେ ଥାଏ । ସବୁ ଗୋଳମାଳିଆ ଅବସ୍ଥା । ଅଫିସ୍‌ର ଅନେକ ଅଂଶ ଓ କାଗଜପତ୍ର ଆସିଯାଇଥାଏ ଏବଂ ବାକି ଅଂଶ ଆସୁଥାଏ ।

ଏଇଠୁ ଆଉ ଅଳ୍ପ କିଛି ବାଟ ଟ୍ରେନ୍‌ରେ କାନପୁର ପର୍ଯ୍ୟନ୍ତ ଯାଇ ସେଠାରେ ଓହ୍ଲାଇଲି । ଅସ୍ତ ସୂର୍ଯ୍ୟର ଆଲୋକ ଅନେକ ସମୟଯାଏ ରହିଲା ଏବଂ ତା'ରି ଭିତରେ ମୁଁ ସେହି ଭୟଙ୍କର ନିର୍ଜନ ଜାଗାଟାକୁ ଦେଖିନେଲି । ସେତେବେଳେ ସେ ଜାଗା ଥିଲା ବାଲୁକାପୂର୍ଣ୍ଣ ପତିତ ଜମି । ସେହି ଭୟଙ୍କର କୂପକୁ କେତେକ ପଟାରେ ଲେଖି ଚିହ୍ନଟ କରାଯାଇଥିଲା । ଛାତହୀନ ଘରଗୁଡ଼ାକର କାନ୍ଥସବୁ ଧୂଳିରେ ଛାଇ ହୋଇଯାଇ ଭାଙ୍ଗି ପଡୁଥିଲା; ଚାରିଆଡ଼େ ଦେଖାଯାଉଥିଲା ଧ୍ୱଂସାବଶେଷ, ଧୂଳି, ମାଛି, ଦୁର୍ଗନ୍ଧ ଏବଂ ସାଧାରଣ ଦୁଃଖ ଦୁର୍ବିପାକ । ଗୋଟିଏ ମେସ୍‌ର ଧ୍ୱଂସାବଶେଷରୁ ନିମ୍ନସ୍ତରର ହୋଟେଲଟିଏ କୌଣସି ପ୍ରକାରେ ନିର୍ମିତ ହୋଇଥିଲା । ସେଠି ଅତି କଦର୍ଯ୍ୟ ଖାଦ୍ୟ ମିଳିଲା । ତା'ପରେ ମୁଁ ଡାକଗାଡ଼ି ଭିତରକୁ ଯାଇ ଶୋଇପଡ଼ିଲି ଏବଂ ସେ ଭୟଙ୍କର ସ୍ଥାନରୁ ଚାଲିଆସି ଆଶ୍ୱସ୍ତ ହେଲି । ତାଜ୍ ଓ ସିକନ୍ଦ୍ରାଠାରେ ଆକବରଙ୍କ ସମାଧି ଦେଖି

ଆଗ୍ରାରେ ମନୋରମ ଦିନଟିଏ କଟାଇଲି ଏବଂ ତା'ପରେ ଗଲି ବୁଲନ୍ଦସର । ଏହି ବୃକ୍ଷଶୋଭିତ ସ୍ଥଳରେ ଭଲିଅଟ ସହକାରୀ ମାଜିଷ୍ଟ୍ରେଟ୍ ରୂପେ ନିଯୁକ୍ତି ପାଇଥିଲା । ସେ ସେଠାରୁ କେତେ ମାଇଲ ଦୂର ଡେରାରେ ଥିଲା ଏବଂ ମୋତେ ସେଠାକୁ ପାଲିଙ୍କିରେ ଯିବାକୁ ପଡ଼ିଲା । ତାକୁ କଲେକ୍‌ଟର ଚାର୍ଲସ୍ କ୍ୟୁରୀଙ୍କ ସହ ତମ୍ବୁରେ ଦେଖିଲି । ତାଙ୍କସହ ପାଞ୍ଚଦିନ କାଳ ଜିଲ୍ଲାଯାକ ଘୋଡ଼ାରେ ବୁଲି କାମ ବିଷୟରେ ଅନେକ କିଛି ଶିକ୍ଷାକରି ଆନନ୍ଦରେ କାଟିଲି ଏବଂ ଯାତ୍ରାରମ୍ଭ କରି ଦିଲ୍ଲୀ ଓ ଆମ୍ବାଲା ଦେଇ ଲାହୋରକୁ ଗଲି । ସେଠାରେ ମୁଁ କାମରେ ଯୋଗଦେଇ ଲାଟ ସାର୍ ରବର୍ଟ ମଣ୍ଟଗୋମେରୀଙ୍କ ସହ ସାକ୍ଷାତ ପାଇଁ ଗଲି । ସେଠାରେ ମୁଁ ପ୍ରଥମେ ଶ୍ରୀ ରିଚାର୍ଡ଼ ଟେମ୍ପଲ୍‌ଙ୍କୁ ଦେଖିଲି । ସାର୍ ଜନ୍ ଲରେନ୍‌ସ ସେତେବେଳେ ଇଂଲଣ୍ଡ ଚାଲିଯାଇଥିଲେ । ମୁଁ ଗୁଜୁରାଟ ଜିଲ୍ଲାର ସହକାରୀ କମିଶନର ରୂପେ ନିଯୁକ୍ତ ହୋଇ ସାଙ୍ଗେ ସାଙ୍ଗେ ସେଠାକୁ ଯିବାକୁ ଆଦେଶ ପାଇଲି ।

ବର୍ତ୍ତମାନ ସମସ୍ୟା ହେଲା ଗୁଜୁରାଟ କେଉଁଠି ଏବଂ ସେଠାକୁ ଯିବି କିପରି ? ବହୁ ଅନୁସନ୍ଧାନ ପରେ ଜାଣିଲି ଯେ, ପେଶାବାର ରାସ୍ତାରେ ପ୍ରାୟ ୭୦ ମାଇଲ ଗଲେ ଏହା ପଡ଼ିବ । ବାଟଯାକ ଖାଲି ବାଲି ଓ କାଦୁଅ ଭର୍ତ୍ତି ହୋଇଥିବାରୁ ଡାକଗାଡ଼ି ସେବାଟେ ଯାଇପାରିବ ନାହିଁ । ତେଣୁ ଜଣେ ଖାନସାମା ନିଯୁକ୍ତ କରି ମୋ ଜିନିଷପତ୍ର ସବୁ ପରେ ନେଇଯିବା ପାଇଁ ତା'ଜିମା ଦେଇ ମୁଁ ଦିନେ ସନ୍ଧ୍ୟା ୬ଟା ବେଳେ ଡାକଘରକୁ ଯାଇ ଚିଠିପତ୍ର ଯାଉଥିବା ଗାଡ଼ିରେ ମୋପାଇଁ ଗୋଟିଏ ସିଟ୍‌ର ବନ୍ଦୋବସ୍ତ କଲି । ଏହା ଥିଲା ଦୁଇଚକିଆ ନାଲି ରଙ୍ଗକରା ଛୋଟିଆ ବାକ୍‌ସପରି । ଏହି ବାକ୍‌ସଟିର ଉପରିଭାଗ ଗୋଟିଏ ଲୁହା ରଡ଼ ଦ୍ୱାରା ଦୁଇଟି ସିଟ୍‌ରେ ବିଭକ୍ତ— ଆଗ ଓ ପଛ, ଏପରି ଭାବରେ ହୋଇଛି ଯେ, ଗାଡ଼ିର ପ୍ରତ୍ୟେକ ଧକ୍‌କାରେ ଯାତ୍ରୀର ପିଠିପଟ ଜୋର୍‌ରେ ପିଚିହୋଇ ପ୍ରବଳ ଯନ୍ତ୍ରଣା ଦିଏ । ଗୋଟିଏ ଛୋଟ ଟଟୁଘୋଡ଼ା ଦୁଇ ଦଣ୍ଡା ମଝିରେ ଏବଂ ଆଉ ଗୋଟିଏ ଘୋଡ଼ା ପାଖ ଦଣ୍ଡାର ବାହାରପଟେ ଯୋଚା ହୋଇଥିଲେ, ଠିକ୍ ରୁଷୀୟ ଡ୍ରୋସ୍କି ଭଳି । ଦଶପାଉଣ୍ଡ ଓଜନର ଛୋଟ ଯାତ୍ରୀ ଥଳିଟି ସାଙ୍ଗରେ ନେବାପାଇଁ ମୁଁ ଅନୁମତି ପାଇଲି । ଗାଡ଼ିଚାଳକ ପିନ୍ଧିଥିଲା ଏକ ପୋସ୍ତିନ ବା ଭିତରପଟେ ତୁଳାଥିବା ମେଣ୍ଢା ଚମଡ଼ାର ଜ୍ୟାକେଟ ଏବଂ ବାଟୋଇମାନଙ୍କୁ ସତର୍କ କରି ଦେବାପାଇଁ ସେ ବରାବର ଗୋଟାଏ ବିଗୁଲ ବଜାଉଥିଲା । ନିମ୍‌ଶିର ପୁଅ ଜୁହୁ ଭଳି ସେ କିଛି ନ ମାନି ଜୋର୍‌ରେ ଗାଡ଼ି ଚଳାଉଥିଲା ଯେପରିକି ଆଗରେ ଥିବା ଯେକୌଣସି ବ୍ୟକ୍ତି ବା ପଦାର୍ଥ ଉପରେ ଚଢ଼ାଇଦେବ । ଅଧା ତିଆରି ସେ ବନ୍ଧୁର ରାସ୍ତାରେ ଧକଡ଼ଚକଡ଼ ହୋଇ ରାତିସାରା ଆମେ ଚାଲିଲୁ । ରାତିଟା ଥିଲା ଖୁବ୍ ଥଣ୍ଡା ଏବଂ ମୁଁ କଲିକତାର ଉଷ୍ଣତାକୁ ସୁହାଇଲା ପରି ପୋଷାକ ପିନ୍ଧିଥିବାରୁ ଥଣ୍ଡାରେ ଜଡ଼ିଗଲି । ଭୋର ପ୍ରାୟ ୩ଟାବେଳେ ଆମେ ଚେନାବ୍‌ର ବାଲୁକାଶଯ୍ୟା ପାରିହେଲୁ ଏବଂ ତୀବ୍ର ଥଣ୍ଡା ଓ ଯନ୍ତ୍ରଣାଦାୟକ ଉଠାପକାରେ ଆଉ ସାତ ମାଇଲ ଯିବାପରେ କୁହୁଡ଼ି ଭିତରେ ପ୍ରଶସ୍ତ ସମତଳ ଭୂମି ଉପରେ ଥିବା ଗୋଟିକିଆ ଛୋଟ ଡାକଘର ପାଖରେ ହଠାତ୍ ଗାଡ଼ି ଅଟକିଗଲା । ପୋଲିସବାଲାଟିଏ ଅଧାନିଦରେ ଲଣ୍ଠନଟିଏ ଧରି ଆସି ଡାକ ଥଳିସବୁ ନେଇଗଲା ଏବଂ ଗାଡ଼ିବାଲା ମୋ ଥଳିଟାକୁ ଫିଙ୍ଗିଦେଇ ମୋତେ ଦଣ୍ଡବତ ହୋଇ ବକ୍‌ସିସ୍ ମାଗିଲା । ମୁଁ

ଆଶ୍ଚର୍ଯ୍ୟ ହେବାରୁ ସେ ବୁଝାଇ ଦେଲା— ଏଇ ହେଉଛି ଗୁଜୁରାଟ । ମୁଁ ତା'ର ପାଉଣା ଦେଇ ଗାଡ଼ିରୁ ଓହ୍ଲାଇ ବୋକାଙ୍କ ପରି ଚାହୁଁଥିବା ବେଳେ ଚାଳକ ତା' ତୂରୀରେ ଭୀଷଣ ଶବ୍ଦକରି ଘୋଡ଼ାକୁ ଚାବୁକ୍ ମାରିଲା ଏବଂ ଅନ୍ଧାର ଭିତରେ ଲୀନ ହୋଇଗଲା । ମୁଁ ୧୮୫୭ ମାର୍ଚ୍ଚ ୭ ତାରିଖ ଭୋର ୪ଟା ବେଳେ ଗୁଜୁରାଟର ରାସ୍ତା କଡ଼ରେ ଆଶ୍ଚର୍ଯ୍ୟ ଚକିତ, ପ୍ରତି ଅଙ୍ଗରେ ଯନ୍ତ୍ରଣା ଜର୍ଜରିତ ହୋଇ ଓ ଥଣ୍ଡାରେ ଅଧା ବରଫ ପାଲଟି ଠିଆହୋଇଥିଲି । କଲିକତାରୁ ମୋତେ ଲାଗିଲା ୨୪ଦିନ, ଯେଉଁଥିରୁ ୧୬ଦିନ ପ୍ରକୃତ ଯାତ୍ରାରେ ହିଁ କଟିଲା । ଆଜିକାଲି ଲାଗୁଛି ମାତ୍ର ୩ ଦିନ । ରାସ୍ତାବାଟେ ଏହି ଦୂରତ୍ୱ ପ୍ରାୟ ୧୨୫୦ ମାଇଲ ବା କିଛି ବେଶି ।

ବର୍ତ୍ତମାନ ପ୍ରଥମ ଆବଶ୍ୟକତା ହେଲା ଆଶ୍ରୟ ପାଇଁ ଛାତଟିଏ ଏବଂ ଭାରତର ସହରମାନଙ୍କରେ ଆଗନ୍ତୁକମାନଙ୍କ ପାଇଁ ଡାକବଙ୍ଗଳା ହିଁ ଗୃହ ହୋଇଥିବାରୁ ମୁଁ ସେ ନିଦୁଆ ପୋଲିସ୍‌ବାଲା ପାଖକୁ ଯାଇ ତାହା କେଉଁଠି ଅଛି ବୋଲି ପଚାରିଲି । ସେ ଅନ୍ଧାରଆଡ଼କୁ ଦେଖେଇଦେଇ ପଞ୍ଜାବୀରେ କ'ଣ କହିଲା ମୁଁ ବୁଝିପାରିଲି ନାହିଁ । ତା'ପରେ ସେ ନିଜ ଆସ୍ଥାନକୁ ଚାଲିଗଲା । ମୁଁ ଦେଖିଲି ଏମିତି ଚଳିବ ନାହିଁ । ମୋର ମନେହେଲା, ମୁଁ ଏ ଜିଲ୍ଲାର ଜଣେ ଅଫିସର ଏବଂ କେତେକ ସେବା ଯତ୍ନ ପାଇବାର ହକ୍‌ଦାର । ଏ ଅବସ୍ଥା ମୋ ପାଇଁ ନୂଆ; କିନ୍ତୁ ବୁଲନ୍ଦସରରେ ଇଲିଅଟ୍ ଯେଉଁ ସମ୍ମାନ ପାଉଛି ତାହା ଦେଖିଥିଲି ଏବଂ ମୋର ମଧ ତାହା ପ୍ରାପ୍ୟ ବୋଲି ଜାଣିଥିଲି । ତେଣୁ ମୁଁ ଯେ ସହକାରୀ ସାହେବ ଏକଥା ହିନ୍ଦୁସ୍ଥାନୀରେ ଜଣାଇଦେଲି ଏବଂ ଚଢ଼ାଗଳାରେ ଆଦେଶ ଦେଲି ଯେ, କେହି ଜଣେ ମୋତେ ବାଟ ଦେଖାଇ ଦେବାପାଇଁ ଆସୁ । ଏହା ସାଙ୍ଗେ ସାଙ୍ଗେ ବାଞ୍ଛିତ ଫଳ ଦେଲା । ନିଦ ମଳମଳ ପୋଲିସ୍ ବାଲାଟା ହଠାତ୍ ପୂର୍ଣ୍ଣ ଜାଗ୍ରତ ହୋଇଉଠିଲା ଏବଂ ଭିତରକୁ ଧାଇଁଯାଇ ତା'ର ମୁଖିଆ ଜମାଦାର ବା ସର୍ଜେଣ୍ଟକୁ ଉଠାଇଦେଲା । ସେ ତା' ଖଣ୍ଡାଟିକୁ ବାନ୍ଧୁବାନ୍ଧୁ ବାହାରିଆସି ଅନେକ ପ୍ରଣାମ ଓ ସମ୍ଭ୍ରମ ବାକ୍ୟ ପ୍ରୟୋଗ କରି ମୋତେ ବାଟ ଦେଖାଇ ଦେବାପାଇଁ ଆଉ ଏକ ପୋଲିସ୍‌ବାଲା ଦେଲା । ରାତି ଏତେ ଅନ୍ଧାରିଆ ଓ କୁହୁଡ଼ିପୂର୍ଣ୍ଣ ଥିଲା ଯେ, କିଛି ଦେଖାଯାଉ ନ ଥିଲା । କିନ୍ତୁ ଆମେ କୌଣସି ଗଛ ବା ନିକଟରେ କୌଣସି ବାସଗୃହର ଚିହ୍ନବର୍ଣ୍ଣ ନ ଥିବା ପ୍ରଶସ୍ତ ସମତଳ ଭୂମିର ସୀମାରେ ଠିଆ ହୋଇଥିଲୁ । ମୋ ପୋଲିସ୍‌ବାଲାଟି ମୋ ଥଳିଟିକୁ ମୁଣ୍ଡରେ ଧରି ସେହି ସମତଳ ଭୂମି ଦେଇ ଚାଲିଲା ଏବଂ ମୋତେ ଅନୁରୋଧ କଲା ଯେପରି ମାନ୍ୟବର ମୁଁ ତା' ଭୃତ୍ୟର ଅନୁସରଣ କରିବାର ଅନୁଗ୍ରହ କରେ । ସେ ବୁଝାଇଦେଲା ଯେ, ଆମେ ସୈନ୍ୟମାନଙ୍କ ଶିବିର ପଡୁଥିବା ସ୍ଥାନରେ ଅଛୁ, ସେଥିପାଇଁ ଏହା ଏତେ ଫାଙ୍କା । ଏହି ସମତଳ ଭୂମି ପାର ହେବା ପରେ ଆମେ ଜାଲପରି ଏଣେତେଣେ ପଡ଼ିଥିବା ଘାସରୋପିତ ଓ ଦୁଇକଡ଼େ ଛୋଟ ଛୋଟ ଗଛମାନ ଥିବା ରାସ୍ତାରେ ପହଞ୍ଚିଲୁ । କେତେଗୁଡ଼ାଏ ଅନ୍ଧାରିଆ ଉଚ୍ଚା ଉଚ୍ଚା ଘର ପାରିହେବା ପରେ ମୋ ପଥପ୍ରଦର୍ଶକ ଘୋଷଣା କଲା ଯେ ସେ ବାଟ ଭୁଲିଯାଇଛି । ମୁଁ ମୋ ଛତାରେ ତାକୁ ଶାରୀରିକ ଶାସ୍ତି ଦେବାକୁ ବାହାରିପଡ଼ିଥିଲି । ସେପରି କରିବା ଉଚିତ ବା ବୁଦ୍ଧିମାନ୍‌ର କାମ ହୋଇ ନ ଥାନ୍ତା । କିନ୍ତୁ ମୁଁ ଥିଲି ଯୁବକ ଓ ବଦ୍‌ରାଗୀ ଏବଂ ରାତିସାରା ଭୋଗିଥିବା ସମସ୍ତ ଦୁଃଖକଷ୍ଟ ପରେ ଶେଷରେ ଏହି ଅସମୟରେ କଷ୍ଟ ମୋତେ ଖୁବ୍ ଉତ୍ତ୍ୟକ୍ତ କରୁଥିଲା । ବିଶ୍ରାମ ଓ

ଆଶ୍ରୟସ୍ଥଳର କେତେ ଗଜ ଦୂରରେ ଥାଇ ମଧ ତାହା ପାଇଲୁନି । ହଠାତ୍ ନିକଟରୁ, ପ୍ରାୟ ମୋ ଗୋଡ଼ତଳୁ ଗୋଟାଏ ଭୀତିପ୍ରଦ ଶବ୍ଦ ଶୁଣାଗଲା, "କ୍ୟା ହୁଆ ?" ମୁଁ ଡେଇଁପଡ଼ି ତଳକୁ ଚାହିଁ, ଗୋଟାଏ ଗଛତଳେ ଗଦାଏ ଛିଣ୍ଡାଲୁଗା ଦେଖିଲି । ପଥପ୍ରଦର୍ଶକ ବୁଝାଇଦେଲା ଯେ, ସେ ଛିଣ୍ଡାକନାର ଗଦାଟି ହେଉଛି ଜଣେ ଅତ୍ୟନ୍ତ ପବିତ୍ର ସାଧୁ ଯେ କି ସେ ଗଛ ତଳେ ରହନ୍ତି । ସେହି ସାଧୁଙ୍କୁ ବାଟ ପଚାରିଲା । ଅଳ୍ପ କେତୋଟି ଶବ୍ଦରେ କହିଦେଇ ସେ ପୁଣି ଛିଣ୍ଡାକନାର ଗଦା ମଧ୍ୟକୁ ପଶିଗଲେ । ଅଳ୍ପ କେତେ ବାଟ ଗଲାପରେ ହଠାତ୍ ଆମେ ଗୋଟାଏ କି ଦୁଇଟା ଦୁଆର ଥିବା ପାଚିରି ପାଖରେ ପହଞ୍ଚିଲୁ । ଏଇଠି କବାଟ ବାଡ଼େଇ କିଛି ସମୟ ପାଟିକରି ଡାକିଲୁ । ଶେଷରେ ତେଲଚିକିଟା ଅଧାପିନ୍ଧା ଗୋଟାଏ ମୁସଲମାନ ଧୂଆଁରେ କଳାପଡ଼ିଥିବା ଦେଶୀ ବତିଟିଏ ଧରି କବାଟ ଫିଟାଇଲା । ଭିତରେ ମୁଁ ଦେଖିଲି ଗୋଟାଏ କୋଠରି ଏବଂ ତା' ଭିତରେ ଗୋଟାଏ ଶେଯ । ଅସମ୍ଭାଳ ଭାବରେ ସେହିପରି ପୋଷାକପତ୍ର ପିନ୍ଧି ତା'ଉପରେ ପଡ଼ିଗଲି ଏବଂ ସାଙ୍ଗେ ସାଙ୍ଗେ ଶୋଇପଡ଼ିଲି ।

ଉଠିଲା ବେଳକୁ ଉଜ୍ଜ୍ୱଳ ଦିବାଲୋକ ହୋଇଯାଇଥିଲା । ଅଳ୍ପ କେତେ ଘଣ୍ଟା ପୂର୍ବରୁ ଯେଉଁଠି ମୁଁ ନିଜକୁ ଫିଙ୍ଗିଥିଲି ସେଇଠି ପଡ଼ିରହିଥିଲି । କ୍ରମେ କ୍ରମେ ମୁଁ ଜାଣିପାରିଲି ଯେ, ମୁଁ ତେଲଚିକିଟା ଓ ଧୂଳିଧୂସର ହୋଇଛି, ମୋ ଅଙ୍ଗପ୍ରତ୍ୟଙ୍ଗ ବିନ୍ଧୁଛି, ପାଟି ଶୁଖିଯାଉଛି ଓ ମୁଣ୍ଡ ବୁଲାଉଚି । ଚିତ୍କାର କରି 'କୁଇ ହାଏ'' (Qui hy) (୧) ବୋଲି ଡାକିବାକୁ ଲାଗିଲି ସେ ତେଲଚିକିଟା ମୁସଲମାନଟା ଆସିବା ପର୍ଯ୍ୟନ୍ତ । ମୁଁ ତାକୁ କପେ ଚାହା ଆଣିବାକୁ କହିଲି । ଚାହା ଆଣି ସେ ତା'ଠାରୁ ଆହୁରି ଚିକିଟା ମସିଆ ଜଣକୁ କେତେ ମାଠିଆ ଥଣ୍ଡା ପାଣି ଗାଧୁଆ ଘରକୁ ଆଣିବାକୁ କହିଲା । ମୁଁ ଲୁଗାପଟା ଖୋଲି ଅଙ୍ଗପ୍ରତ୍ୟଙ୍ଗରୁ ସମସ୍ତ ପୀଡ଼ା ଯିବା ପର୍ଯ୍ୟନ୍ତ ଘଷିମାଜି ହୋଇ ପାଣି ଢାଳି ହୋଇ ଗାଧୋଇଲି । ତା'ପରେ ପରିଷ୍କାର ପୋଷାକ ପିନ୍ଧି ନିଜକୁ ଏକ ନୂଆ ମଣିଷ ରୂପେ ଅନୁଭବ କଲି । ନୂଆ ଘର ଖୋଜି ମୋର ନୂଆ କାମ ଆରମ୍ଭ କରିବାର ଉତ୍କଣ୍ଠା ଭିତରେ ଶାରୀରିକ ପୀଡ଼ା ଉଭେଇଗଲା । ବାହାରକୁ ଚାହିଁ ଦେଖିଲି ମୁଁ ଲାଲ ଇଟାରେ ତିଆରି ଏକ ଭଙ୍ଗା ଘରେ ଅଛି; ଭାରତର ଅଧିକାଂଶ ଘର ଯେପରି ପଲସ୍ତରା ହୋଇଥାଏ ସେପରି ହୋଇ ନାହିଁ । ପଞ୍ଜାବରେ ବ୍ରିଟିଶ ଶାସନ ସେତେବେଳେ ମଧ ଏତେ କମ୍ ଦିନର ଥିଲା ଯେ ପଲସ୍ତରା ପରି ଏକ ସୁରୁଚି ବା ବିଳାସ ପାଇଁ ସମୟ ମିଳିନଥିଲା । ଜରୁରି ପରିସ୍ଥିତି ପାଇଁ ଘରସବୁ ତରବରିଆରେ ତିଆରି ହୋଇଥିଲା ଏବଂ ସେସବୁ ଯଦି ସେହିପରି ତରବରିଆରେ ଭାଙ୍ଗିପଡ଼େ ତ ଚିନ୍ତା ନ ଥିଲା । ସେସବୁକୁ କେବଳ ଅସ୍ଥାୟୀ ବୋଲି କୁହାଯାଉଥିଲା । ମୋ ସାମନାରେ ଥିବା ଧୂଳିଆ କଚା ରାସ୍ତା ଦୁଇପଟେ ଥିବା ଛୋଟ ଛୋଟ ଶିଶୁଗଛମାନଙ୍କରେ ❊

(୧) ବଙ୍ଗଳାରେ ଘରେ ଘଣ୍ଟି ନ ଥିବାରୁ ଆମେ ଚାକରମାନଙ୍କୁ ଏହିପରି ଡାକୁ । ଏହା ହିନ୍ଦୁସ୍ଥାନୀ 'କୋଇ ହୈ'ର ଅପଭ୍ରଂଶ । ଅର୍ଥ— କିଏ ଅଛି ?

❊ ପଞ୍ଜାବରେ ଶିଶୁକୁ 'ଶିଶମ୍' କୁହାଯାଏ । ଡାଳବରଗିଆ ଶିଶୁ ହେଉଛି ସୁନ୍ଦର ଉଜ୍ଜ୍ୱଳ ପତ୍ରବିଶିଷ୍ଟ ବିରାଟକାୟ ଜଙ୍ଗଲିଗଛ । ଏହାର କାଠ ବାଇଗଣି ରଙ୍ଗର, ଖୁବ୍ ଟାଣ ଓ ଆସବାବ ତିଆରିରେ ଲାଗେ । ପଞ୍ଜାବରେ ବ୍ରିଟିଶ ଶାସନର ଆଦ୍ୟାବସ୍ଥାରେ ରାସ୍ତାକଡ଼ରେ ଏହି ଗଛ ବହୁ ପରିମାଣରେ ରୋପିତ ହୋଇଥିଲା । ଆମେ ଅଧିକାର କଲାବେଳେ ସେ ସ୍ଥାନ ବୃକ୍ଷହୀନ ଥିଲା ।

ପତ୍ରସବୁ ଢଳିଁ ଆସୁଥିଲା । ଦୂରରେ ଏଠି ସେଠି ଦିଶୁଥିଲା ଅଳ୍ପ ଅଳ୍ପ ଗଛରେ ଅଧା ଲୁଚି ରହିଥିବା ବାଦାମୀ ରଙ୍ଗ ଇଟାରେ ତିଆରି ଘରର ଉପର ଅଂଶ, ପ୍ରଶସ୍ତ ପ୍ରାନ୍ତର ଏବଂ ତା' ଉପରକୁ କାଶ୍ମୀର ନିକଟ ହିମାଳୟର ଗୌରବମୟ ତୁଷାରମଣ୍ଡିତ ଶୃଙ୍ଗ । ସେଠାର ପବନ ପ୍ରଖର, ଖୋଲା, ବେଶ୍ ହାଲୁକା ଓ ପ୍ରାଣଦାୟକ— ମାନସିକ ଓ ଶାରୀରିକ ଶ୍ରମ ପାଇଁ ଉତ୍ତମ ପରିବେଶ ।

ବଙ୍ଗଳାର ଅନ୍ୟ ପାଖରେ ସୁରକ୍ଷିତ ଘିକୁଆଁରି ବାଡ଼ ଏବଂ ତା' ସେପଟେ ପୁଷ୍ପଶୋଭିତ ଉଜ୍ଜ୍ୱଳ ଉଦ୍ୟାନ ଏବଂ ସେଇ ଉଦ୍ୟାନ ମଝିରେ ଠିଆ ହୋଇଥିଲା ଅପୂର୍ବ ଧରଣର ଘର, ନିର୍ମାଣ ଶୈଳୀରେ ଅଧା ଦେଶୀ ଅଧା ୟୁରୋପୀୟ । ମୁଁ ଶୁଣିଲି ତାହା ହେଉଛି 'ବାରଦାରୀ' ବା 'ବାରଟି ଦ୍ୱାର ଥିବା ଘର'; ପୂର୍ବେ ଦେଶୀୟ ରାଜପ୍ରାସାଦ ଥିଲା, ବର୍ତ୍ତମାନ ଡେପୁଟି କମିଶନରଙ୍କ ନିବାସ । ସେତେବେଳକୁ ୯ଟା ବାଜିଯାଇଥିବାରୁ ଯାହାଙ୍କ ତଳେ ମୁଁ କାମ କରିବି ତାଙ୍କ ଅଫିସ୍‌ରେ ମୋର ଆଗମନ ଜଣାଇଦେବା ଉଚିତ ବୋଲି ଭାବିଲି । ଘାସ ପଡ଼ିଆଟିଏ ପାରି ହୋଇ ମୁଁ ଗୋଟିଏ ବିରାଟ ଅଧାତିଆରି ସାରସେନିକ୍ ଶୈଳୀର ଫାଟକ ଭିତର ଦେଇ ଗଲି । ତା'ର ଉଚ୍ଚ ଉଚ୍ଚ ଦୁଇଟି ଗମ୍ବୁଜ ଥିଲା । ତଳ ମହଲାରେ ଥିଲେ ଆଫଗାନବାହିନୀର ଦେଶୀୟ ଜଗୁଆଳ । ଏଇଠାରୁ ବୃକ୍ଷ ଛାୟାତଳେ ପ୍ରଶସ୍ତ ପଥ ପଡ଼ିଥାଏ ଘରଯାଏ । ବନ୍ଧୁକଧାରୀ ରକ୍ଷୀଟିଏ ଆଗରେ ଏପଟ ସେପଟ ହେଉଥିଲା ଏବଂ ଚାରିପାଞ୍ଚ ଜଣ ଚପରାସୀ ଖଣ୍ଡା ଓ ଢାଲଧରି ପାହାଚରେ ବସିଥିଲେ ବା ଠିଆହୋଇଥିଲେ । ମୁଁ ସେମାନଙ୍କ ମଧ୍ୟରୁ ଜଣକୁ ମୋର ପତ୍ର ଦେଲି ଏବଂ ଚୂନଧଉଳା କାନ୍ଥ ଥିବା ଓ କାନ୍ଥର ଉଚ୍ଚରେ ଛାତ ନିକଟରେ ଛୋଟ ଛୋଟ ଝରକା ଦ୍ୱାରା ଆଲୋକିତ ବିରାଟ ଖାଲି ଘର ଭିତରକୁ ପ୍ରବେଶର ଅନୁମତି ପାଇଲି । ଚଟାଣଟା ଯାକ ଥିଲା ଖାଲି, କେବଳ ଗୋଟିଏ କଣରେ ମଳିଆ ଗାଲିଚା ଉପରେ ପଡ଼ିଥିବା ଛୋଟ ଟେବୁଲ ଉପରେ ଉଚ୍ଚା କାଗଜ ଗଦା । ସେହି ସମୟରେ ଘରର ଅନ୍ୟ ପଟେ ଥିବା ଏକ ମୋଟା ପରଦା ଆଢ଼େଇଗଲା ଏବଂ ଡେପୁଟି କମିଶନର ଭିତରକୁ ଆସିଲେ । ଗାଇଡ୍‌ସ ଫଷ୍ଟାର ମେଜର ରବର୍ଟ ରାୟ ଆଡ଼ାମସ୍ ହେଉଛନ୍ତି ବେସାମରିକ ନିଯୁକ୍ତି ପାଇଥିବା ବହୁ ସାମରିକ ଅଫିସରମାନଙ୍କ ମଧ୍ୟରୁ ଅନ୍ୟତମ । ସେ ପ୍ରାୟ ମୋରି ଉଚ୍ଚତାର, ୫ଫୁଟ ୯ଇଞ୍ଚ, ବପୁବନ୍ତ ସବଳ ଦେହ; କିନ୍ତୁ ଅଙ୍ଗଭଙ୍ଗୀରେ ଖୁବ୍ ହାଲୁକା ଓ କାର୍ଯ୍ୟକ୍ଷମ । ସେ ପ୍ରାୟ ୩୦ ବର୍ଷର ସୁନ୍ଦର ଚେହେରାର ଲୋକ, ଉଜ୍ଜ୍ୱଳ ଚକ୍ଷୁରେ ନିର୍ଦ୍ଦେଶର ଚାହାଣି, ମୋଟା ଲମ୍ବା ନିଶ ଓ ଦାଢ଼ିଯୁକ୍ତ । ହାର୍ଦ୍ଦିକତାର ସହ କରମର୍ଦ୍ଦନ କରି ପଚାରିଲେ, "ଆପଣ କେଉଁଠୁ ଆସିଲେ ଏବଂ କି କି କ୍ଷମତା ପାଇଛନ୍ତି ?" ସେ 'କ୍ଷମତା' ବୋଲି କାହାକୁ କହୁଛନ୍ତି ମୁଁ ବୁଝିପାରିଲି ନାହିଁ । ତେଣୁ ଖାଲି କହିଲି ଯେ, ମୁଁ କଲିକତାରୁ ଆସିଲି ଏବଂ ଏହା ମୋର ପ୍ରଥମ ଜିଲ୍ଲା । ସେ ନିରାଶ ହେବାପରି ଜଣାପଡ଼ିଲେ ଏବଂ କ୍ରୋଧର ଭାବ ତାଙ୍କ ମୁହଁରେ ଦେଖାଗଲା । କିନ୍ତୁ ତାହା ଶୀଘ୍ର ଅପସରି ଗଲା ପରେ ସେ କହିଲେ, "ଖୁବ୍ ଲଜ୍ଜାର କଥା— କିନ୍ତୁ ଆପଣଙ୍କର ଅବଶ୍ୟ କିଛି ଦୋଷ ନାହିଁ । ଆପଣଙ୍କର ସକାଳ ଖାଇବା କିଛି ହେଇଚି ?" ମୁଁ ଉତ୍ତର ଦେଲି 'ନା' । ତା'ପରେ ସେ କହିଲେ, "ଆସନ୍ତୁ କିଛି ଖାଇବେ । ଆମେ ବର୍ତ୍ତମାନ ବସୁଥିଲୁ ।" ତା'ପରେ ସେ

ମୋତେ ପାଖଘରକୁ ନେଇଗଲେ । ଛୋଟ କିନ୍ତୁ ଚାରିକୋଣିଆ ଉଚ୍ଚ କୋଠରିଟିଏ, ଉପରେ ଥିବା ଝରକା ଦ୍ୱାରା ଆଲୋକିତ ଏବଂ ତଳେ ପ୍ରତ୍ୟେକ ପାଖରେ ତିନୋଟିକରି ସାରାସେନିକ୍ ଶୈଳୀର ମୁକ୍ତ ଖିଲାଣଯୁକ୍ତ ସୁନ୍ଦର ଦ୍ୱାର, ସମୁଦାୟ ୧୨ଟି, ଯେଉଁଥିରୁ କି ଭାରତରେ ସାଧାରଣତଃ ଏଇ ଶ୍ରେଣୀୟ ଘରଗୁଡ଼ିକୁ କୁହାଯାଉଥିଲା ବାରଦାରୀ । ଏହିସବୁ ଖିଲାଣର ଉପରେ ଓ ମଝିରେ ଯେଉଁ ଅଳ୍ପ କାନ୍ଥ ଥିଲା ତାହା ଫୁଲ ଓ ଦେଶୀୟ ଶୈଳୀରେ ନାଚୁଥିବା ବାଳିକାମାନଙ୍କ ଛବିରେ ପୂର୍ଣ୍ଣ ଥିଲା । ତାହାରି ଭିତର ଦେଇ ଆମେ ଗଲୁ ଏକ ଇଂରାଜୀ ବୈଠକଖାନାକୁ । ସେଠାରେ ଥିଲା ଅନେକ ଫରାସୀ ଝରକା, ବହଳ ଭାବରେ ଛାଆଣି ହୋଇଥିବା କାନ୍ଥ ଆଡ଼କୁ ମୁହଁକରି । ଏଇଠାରେ ମୋତେ ଶ୍ରୀମତୀ ଆଡ଼ାମ୍ସଙ୍କ ସହ ପରିଚିତ କରାଇ ଦିଆହେଲା । ତାଙ୍କଭଳି ସୁନ୍ଦରୀ ମୁଁ ଆଉ ଦେଖି ନାହିଁ । ସେ ଯେପରି ସୁନ୍ଦରୀ ସେହିପରି ମିଷ୍ଟଭାଷୀ ଓ ଦୟାବତୀ । ସେ ଥିଲେ କୁମାରୀ ବେଲ୍ୟୁ ଏବଂ ଅଧିକାଂଶ ଆଇରିଶ ମହିଳାଙ୍କ ପରି ତାଙ୍କ ବ୍ୟବହାରରେ ଥିଲା ମାଧୁର୍ଯ୍ୟ ଏବଂ ମୁହଁରେ ଅବର୍ଣ୍ଣନୀୟ ସୌନ୍ଦର୍ଯ୍ୟର ଆକର୍ଷଣ । ବାରଟି ଦ୍ୱାର ଥିବା ସେହି ଘରେ ବସି ଆମେ ପ୍ରଚୁର ଓ ସୁନ୍ଦର ପ୍ରାତଃଭୋଜନ କଲୁ ଏବଂ ଗତରାତିର ମୋର ଦୁଃସାହସିକ ଅଭିଜ୍ଞତା ପାଇଁ କିଛି ହସ ସହ ସହାନୁଭୂତି ପ୍ରକାଶ ପାଇଲାପରେ ମୁଁ ମୋ ସତ୍କାରକାରୀଙ୍କୁ ପଚାରିଲି ମୋର ସେଠାକୁ ଆସିବା ଲଜ୍ଜାଜନକ ବୋଲି ସେ କାହିଁକି କହିଲେ । ସେ ବର୍ଣ୍ଣନା କଲେ ଯେ ଏହା ପୂର୍ବରୁ ସେ ନିଜେ ସହକାରୀ ଥିଲେ ଏବଂ ଜିଲ୍ଲାର ଦାୟିତ୍ୱ ନେବା ଏଇଟା ହିଁ ତାଙ୍କର ପ୍ରଥମ ହୋଇଥିବାରୁ ସେ ତାଙ୍କୁ ସାହାଯ୍ୟ କରିବାକୁ ଜଣେ ଅଭିଜ୍ଞ ସହକାରୀ ପଠାଇବା ପାଇଁ ବିଶେଷ ରୂପେ କହିପଠାଇଥିଲେ । କିନ୍ତୁ ହାୟ ! ସରକାର କଲେଜରୁ ସିଧାସଳଖ ଜଣେ ତରୁଣଙ୍କୁ ପଠାଇଛନ୍ତି ! ଅନ୍ତତଃ ଆଂଶିକ ଭାବରେ ସରକାରଙ୍କ ନିର୍ଦ୍ଦୋଷତା ଦେଖାଇବା ପାଇଁ ମୁଁ ପୂର୍ବରୁ ଯାହା ଉଲ୍ଲେଖ କରିବାକୁ ଭୁଲିଯାଇଛି ତାହା କହିଲି । ତାହା ହେଉଛି— ସେମାନଙ୍କ ଉଦ୍ଦେଶ୍ୟ ଥିଲା ମୋତେ ଦିଲ୍ଲୀରେ ରଖାଇବା ଏବଂ ସେଠାର କମିଶନରଙ୍କ ପାଖକୁ ବାଟରୁ ମୋତେ ସେଇଠାରେ ଅଟକାଇ ଦେବାପାଇଁ ନିର୍ଦ୍ଦେଶ ଯାଉଥିଲା । କିନ୍ତୁ ଯେଉଁ ଡାକବଙ୍ଗଳାକୁ ମୋ ପାଇଁ ଚିଠି ପଠାଇଥିଲେ ସେ ବଙ୍ଗଳାରେ ମୁଁ ନ ଅଟକିବାରୁ ସେ ତାହା କାର୍ଯ୍ୟକାରୀ କରିପାରିଲେ ନାହିଁ । ମୁଁ ଲାହୋରରେ ପହଞ୍ଚିବା ପରେ ସରକାରଙ୍କ ସଚିବ ମୋତେ ସେଠାରେ ଦେଖି ଖୁବ୍ ଆଶ୍ଚର୍ଯ୍ୟ ହେଲେ ଏବଂ ମୋତେ ଫେରେଇ ଦେବାପାଇଁ ଦୋଦୋପାଞ୍ଚ ହେଉଥିଲେ ଏବଂ ଗୁଜୁରାଟରେ ସ୍ଥାନ ଖାଲି ଥିବାର ଦେଖି ସେଠାକୁ ପଠାଇଦେଲେ । ମୋର ଅସମୟର ଉପସ୍ଥିତି ଯୋଗୁଁ ଆଡାମସ୍‌ଙ୍କୁ ମୁଁ କ୍ଷମା ମାଗିଲି ଏବଂ ତାଙ୍କ କାମରେ ଆସିବା ଭଳି ଶୀଘ୍ର ମୋ କାମସବୁ ଶିଖିପାରିବି ବୋଲି ଆଶା ପ୍ରକାଶ କଲି । 'କ୍ଷମତା' ହେଲା ଏକ ବୈଷୟିକ ଶବ୍ଦ ଯାହାର ଅର୍ଥ ପରେ କୁହାଯିବ । ତା'ପରେ ସେ ମୋତେ ତାଙ୍କ ଘରେ ରହିବା ପାଇଁ କହିଲେ ଏବଂ ଡାକବଙ୍ଗଳାରୁ ମୋ ଜିନିଷପତ୍ର ନେଇ ଆସିବାପାଇଁ ଜଣେ ଲୋକ ପଠାଇଲେ । ସକାଳଖିଆ ସରିବା ପରେ କେହି ଜଣେ ଯେ କ୍ଳାନ୍ତ ଥାଇପାରେ ଏପରି ଏକ ପଞ୍ଜାବୀ ବାସ୍ତବ ରୀତିକୁ ଦେଖାଡିର କରି କିମ୍ବା କାମ ଛଡ଼ା ଅନ୍ୟ କିଛି କରିବା ପାଇଁ ଇଚ୍ଛା କରି କହିଲେ— "ବର୍ତ୍ତମାନ ଚାଲ କଚେରିକୁ ଯିବା ।" ଏହାପରେ ପିସ୍ତଲ ଥିବା କଟିବନ୍ଧ ଅଣାହେଲା । ତାହା ଭିଡ଼ି ସେ ମୋତେ ମଧ ଗୁଳି ଭର୍ତ୍ତିକରି ସେହିପରି କରିବାକୁ

କହିଲେ । କେବଳ ନିଜ ଘରଛଡ଼ା ଅନ୍ୟ ସର୍ବତ୍ର ଏପରି କରିବାକୁ ସେ ମତେ ଉପଦେଶ ଦେଲେ । ଏପରି ସତର୍କବାଣୀ ଅଯଥାର୍ଥ ନୁହେଁ; କାରଣ ସେତେବେଳେ କୌଣସି ଧର୍ମାନ୍ଧ ମୁସଲମାନ ୟୁରୋପୀୟ ଅଫିସରମାନଙ୍କୁ ଲାଞ୍ଛିଦେବା କିଛି ଅସାଧାରଣ ନ ଥିଲା । ବିଚରା ଆଡାମସ୍ ନିଜେ କେତେ ବର୍ଷପରେ ସେହିପରି ମୃତ୍ୟୁବରଣ କରିଥିଲେ । ଯଥାଯଥ ଭାବରେ ସଜ୍ଜିତ ହୋଇ ଆମେ ପାଖରେ ଥିବା କଚେରିକୁ ଚାଲି ଚାଲି ଗଲୁ । ପଛରେ ଚାଲିଲେ ଦଳେ ଚପରାସୀ ଓ ପୋଲିସବାଲା । ଗୋଟିଏ ସମତଳ ପ୍ରାନ୍ତର ମଝିରେ ଏହା ବିରାଟ, ଲମ୍ବ, ଅତି ଭୟଙ୍କର ଦିଶୁଥିବା ଏକ ଘର । ଏଠି ସେଠି ଥିବା ଛୋଟ ଗଛମାନଙ୍କ ଅଳ୍ପ ଛାଇ ତଳେ କୋର୍ଟ ଖୋଲିବାକୁ ଅପେକ୍ଷା କରିଥିଲେ ବିଚାର ପ୍ରାର୍ଥୀମାନେ ।

ଆଡାମସ୍ ମୋତେ ପ୍ରଥମେ ତାଙ୍କ ନିଜ କୋର୍ଟକୁ ନେଇଗଲେ । ବିରାଟ ଘରଟି ନିକୃଷ୍ଟ ଧରଣର ଆସବାବରେ ସଜ୍ଜିତ । ସେଠାରେ ପୂରିରହିଥିବା ଦେଶୀ କିରାଣିମାନେ ଚଟାଣରେ ଗାଲିଚା ଉପରେ ବସିଥିଲେ । ଆମେ ପ୍ରବେଶ କଲା ମାତ୍ରେ ସମସ୍ତେ ଉଠିପଡ଼ି ପ୍ରାୟ ତଳେ ଲାଗିଯିବା ଭଳି ନଇଁ ଦଣ୍ଡବତ କଲେ । ଏଇଠି ମୁଁ ଶପଥପତ୍ର ପାଠକଲି ଯାହାକି ସେ ସମୟ ପର୍ଯ୍ୟନ୍ତ ପରମ୍ପରା ରହିଆସିଥିଲା । ସେଇଦିନ ପୂର୍ବାହ୍ନରେ କାମର ଦାୟିତ୍ୱ ନେଲି ବୋଲି ପ୍ରମାଣପତ୍ରରେ ଦସ୍ତଖତ କଲି । ତା'ପରେ ସେ ମୋତେ ତାଙ୍କ କୋର୍ଟଭଳି କିନ୍ତୁ ତା'ଠାରୁ ସାନ ଆଉ ଏକ ଘରକୁ ନେଲେ ଏବଂ ସେଠାରେ ମଧ ସେପରି ଭୟ ଭକ୍ତିରେ ନଇଁକରି ଥିବା କେତେକ କିରାଣିଙ୍କୁ ଦେଖାଇ ଚଡ଼ାଗଳାରେ ରହି ରହି କହିଲେ— ''ଇଏ ଆପଣଙ୍କ କୋର୍ଟ ଏବଂ ଏମାନେ ଆପଣଙ୍କ ଅମଲା, ବର୍ତ୍ତମାନ କାମକୁ ଯାଆନ୍ତୁ ।'' ମୁଁ କିଛି ପଚାରିବା ପାଇଁ ପାଟି ଖୋଲିବା ପୂର୍ବରୁ ସେ ବୁଲିପଡ଼ି ଘରୁ ଚାଲିଯାଇଥିଲେ । ଏହା ଯେପରି ପ୍ରତିଶୋଧ ନେବାପାଇଁ କାହାକୁ କାମ ଭିତରକୁ ଫିଙ୍ଗିଦେବା । ପିଲାଟିଏ ପରି ମୁଁ ଏସବୁ କାମରେ ଅନଭିଜ୍ଞ; ଶହ ଶହ ପ୍ରଶ୍ନ ପଚାରିବାର ଥିଲା; କିନ୍ତୁ ଉତ୍ତର ଦେବାକୁ କେହି ନ ଥିଲେ । ଇଲିଅଟ୍ ଓ ଅନ୍ୟାନ୍ୟଙ୍କଠାରୁ ଶୁଣିଥିଲି ଯେ, କେହି ପ୍ରଥମ କରି ଜିଲାରେ ଯୋଗଦେବାର କିଛିଦିନ ପର୍ଯ୍ୟନ୍ତ ତା'ଠାରୁ ପୁରୁଣା ଜଣେ ମାଜିଷ୍ଟ୍ରେଟଙ୍କ ପାଖରେ ବେଞ୍ଚରେ ବସିରହି କାମ କିପରି ଚାଲିଛି ତାହା ଆସ୍ତେ ଆସ୍ତେ ଶିଖିନେବାର ପରମ୍ପରା ରହିଛି ଏବଂ ମୋ କ୍ଷେତ୍ରରେ ମଧ ମୁଁ ସେଇଆ ଆଶା କରୁଥିଲି । କିନ୍ତୁ ଆମେ ଆସିବାବେଳେ ଆଡ଼ାମ୍‌ସ ମୋତେ କହିଥିଲେ— କାମର ଚାପା ଏତେ ବେଶୀ ଯେ ତାଙ୍କ ପକ୍ଷରେ ତୁଲାଇବା କଷ୍ଟକର ହେଉଛି । ତେଣୁ ମୁଁ ଅନୁମାନ କଲି ନୂଆମାନଙ୍କୁ ଶିଖାଇବାକୁ ତାଙ୍କର ସମୟ ନାହିଁ । ମୋର ଯାହା କିଛି ଜ୍ଞାନ ଥିଲା ତାହା ପାର୍ଶି ଓ ହିନ୍ଦୁସ୍ଥାନୀ ଭାଷାରେ । ଶେଷଟିକୁ ମୁଁ ସ୍ୱଷ୍ଟଭାବରେ ଏବଂ ଚଳନୀୟ ଶୁଦ୍ଧତାରେ କହିବା ଶିଖିଯାଇଥିଲି । ଅବଶ୍ୟ ଆଇନ୍ ଓ କର୍ମପଦ୍ଧତି ସମ୍ପର୍କରେ ମୁଁ କିଛି ଜାଣିନଥିଲି ।

ଯାହାହେଉ, ସମୟ ନ ଥିଲା । ମୁଁ ମୁହୂର୍ତ୍ତେ ଦ୍ୱିଧାଗ୍ରସ୍ତ ହୋଇପଡ଼ିବାରୁ ଲୋକେ ମୋତେ ପ୍ରଶ୍ନବାଚୀ ଦୃଷ୍ଟିରେ ନିରୀକ୍ଷଣ କରିବାକୁ ଲାଗିଲେ । ତେଣୁ ମୁଁ ଏକ ସାଦାସିଧା କିନ୍ତୁ ଅପରିଷ୍କୃତ ଟେବୁଲ ନିକଟରେ ସ୍ଥାନ ଗ୍ରହଣ କଲି । ଆହୁରି ସାଦାସିଧା ଓ ଆହୁରି ଅପରିଷ୍କାର ଏକ ବାଡ଼ଦ୍ୱାରା ସେ ଟେବୁଲଟି ଘରର ଅନ୍ୟ ଅଂଶଠାରୁ ବିଚ୍ଛିନ୍ନ ହୋଇଛି । ଅମଲାମାନେ

ବସିଲେ, କେହି ମୋ ଟେବୁଲ ନିକଟରେ ଏକ ମଞ୍ଚ ଉପରେ, ଅନ୍ୟମାନେ ଚଟଣାରେ ପଡ଼ିଥିବା ଗାଲିଚାରେ । ସେମାନଙ୍କର ମୁଖ୍ୟ ଥିଲା ମୁସ୍ତାକ ଅଲ୍ଲି ନାମକ ଜଣେ ଖର୍ବକାୟ ମୁସଲମାନ ଯୁବକ; ପରେ ଜାଣିଲି ସେ ଥିଲା ମୋର ସିରସ୍ତାଦାର । ସେ ଉଠିପଡ଼ି ପାର୍ଶ୍ୱ ଲେଖାରେ ଭର୍ତ୍ତି ଗଦାଏ କାଗଜ ଆଡ଼କୁ ଆଙ୍ଗୁଠି ଦେଖାଇ ସୁନ୍ଦର ଦିଲ୍ଲୀ ହିନ୍ଦୁସ୍ଥାନୀରେ ବହୁ ସମ୍ଭ୍ରମସୂଚକ ପଦାବଳୀ ପ୍ରୟୋଗ କରି କହିଲା— " ହଜୁରଙ୍କ ଫାଇଲରେ ଏଇସବୁ କେଶ୍ ବିଚାର ପାଇଁ ଅଛି - ଆପଣଙ୍କ ଆଦେଶ କ'ଣ ?" ମୁଁ ଯେପରିକି ମୋ ଭିତରୁ କହିପକାଇଲି— "ପ୍ରଥମ କେଶ୍‌ଟିକୁ ଅଣାଅ—" ଯଦିଓ ଚନ୍ଦ୍ରରେ ଥିବା ମଣିଷଙ୍କ ପରି ଏ ବିଷୟରେ ମୋର କର୍ତ୍ତବ୍ୟ ସମ୍ପର୍କରେ ମଧ ମୁଁ ପ୍ରାୟ ଅଜ୍ଞ ଥିଲି । ମୁସ୍ତାକ ଅଲ୍ଲି ହସିଲା ଏବଂ ତା' ଲୋକମାନଙ୍କୁ ବୁଲି ଚାହିଁଲା, ଯେପରିକି କିଏ କହିବ, 'ପ୍ରଥମରୁ ହିଁ ଠିକ୍ ଚିହ୍ନିଚ ।' ତା'ପରେ ସେ ଛ'ଫୁଟ ଉଚ୍ଚା, ଖଣ୍ଡା ଓ ତଲବାର ସଜ୍ଜିତ ଏବଂ ଟୋପିରଖା ବାକ୍ସ ପରି ଉଚ୍ଚ ପଗଡ଼ି ପିନ୍ଧା ଜଣେ ଶିଖକୁ କେତେକ ନାମ କହିଲା । ସେ ବାରଣ୍ଡାକୁ ଯାଇ କେତେ ମିନିଟ୍ ଚିତ୍କାର କରି ଡାକିଲା । ତା'ପରେ ଆସିଲା ବାଦୀ— ଅପରିଷ୍କାର, ତେଲଚିକିଟା ମଇଳା ଦୋକାନୀଟିଏ । ଶିଖଟି ତାକୁ ଶପଥପାଠ କରାଇଲା । ଶପଥ ଲେଖା ହୋଇଥିବା କାଠଫଳକଟିଏ ହାତରେ ଦୃଢ଼ଭାବରେ ଧରି ସେ ତା'ର ସମସ୍ତ ବକ୍ତବ୍ୟ କହିଗଲା । ମୋତେ ଗୋଟିଏ ଛାପାଫର୍ମ ଦିଆହୋଇଥାଏ ଏବଂ ସେହି କୋଚଟ ଲୋକଟି ଯାହା କହିଲା ସେ ଫର୍ମର ଗୋଟିଏ ସ୍ତମ୍ଭରେ ଲେଖିବାକୁ କୁହାଯାଇଥାଏ । ଅନ୍ୟ ସ୍ତମ୍ଭଗୁଡ଼ିକ ପ୍ରତିବାଦୀ ଓ ସାକ୍ଷୀମାନଙ୍କ ପାଇଁ ଉଦ୍ଦିଷ୍ଟ । ତା'ପରେ ପ୍ରତିବାଦୀକୁ ଶପଥପାଠ କରାଇ ତା'ର ବକ୍ତବ୍ୟ ନିଆଗଲା । ସେ ଗୋଟାଏ ବଡ଼ କ୍ଷମତାଶାଳୀ ଜମିଦାର ଅର୍ଥାତ୍ ଚାଷୀ । ତା'ର ଥିଲା ଲମ୍ବା କଳା ଦାଢ଼ି । ଉଭୟ ଲୋକ ପଞ୍ଜାବୀ କହୁଥିଲେ ଯେଉଁଥିରୁ ମୁଁ କିଛି ବୁଝିପାରୁ ନ ଥିଲି; କିନ୍ତୁ ସିରସ୍ତାଦାର ସେମାନଙ୍କ ବକ୍ତବ୍ୟ ଇଂରାଜୀରେ ଅନୁବାଦ କରିଦେବାରୁ ମୁଁ ଭଲଭାବରେ ବୁଝିଯାଉଥିଲି । ଚାରିଟା ସୁଦ୍ଧା ମୁଁ ସବୁ କେଶ୍ ସାରିଦେଇ ଆଡାମସ୍‌ଙ୍କ ଘରକୁ ଗଲି । ସେଠାରେ ତାଙ୍କ ସ୍ତ୍ରୀଙ୍କ ନିକଟରେ ଆନନ୍ଦରେ ସନ୍ଧ୍ୟାଟି କଟାଇ, ସେ ସ୍ଥାନ, ସେ ସ୍ଥାନର ଲୋକ ଓ କାମ ସମ୍ପର୍କରେ ବହୁ ତଥ୍ୟ ସଂଗ୍ରହ କଲି । କ୍ଳାନ୍ତ ହୋଇ ଶୋଇବାକୁ ଗଲି; କିନ୍ତୁ ସେ ଦିନର ଅଭିଜ୍ଞତାରେ ମୋର ଖୁବ୍ ଆଗ୍ରହ ଜନ୍ମିଥିଲା ଏବଂ ସନ୍ତୋଷ ମଧ ଆସିଥିଲା ।

ରାତିରେ ଗାଢ଼ ନିଦରେ ଶୋଇ, ସତେଜ ହୋଇ ପରଦିନ ଖୁବ୍ ଭୋରରୁ ଉଠିଲି ଏବଂ ସ୍ଥାନଟିର ଦୃଶ୍ୟ ଦେଖିବାକୁ ଗଲି । କଚେରିର ଅପରପଟରେ କାରାଗାର । ସର୍ବତ୍ର ହାଲୁକା ବାଦାମୀ ରଙ୍ଗର ଇଟାରେ ତିଆରି ବିରାଟ କଦାକାର ଘର ଏବଂ ଏହା ନିକଟରେ ଛୋଟ ଏକମହଲା କୋଠାଟିଏ । ଚାରିଟି କୋଠରି ଥିବା ଏଇ ଘରଟିର ଚାରିପଟେ ଡେଙ୍ଗା ପପଲାର ଗଛର ଉଦ୍ୟାନ । ଏହାର ଭଡ଼ା ଥିଲା ମାସକୁ ୪୦ଟଙ୍କା । ଏହି ବଙ୍ଗଳାଟି ସର୍ବଦା ସହକାରୀ ଅଫିସରଙ୍କ ଦ୍ୱାରା ଅଧିକୃତ ହୋଇ ଆସିଥିବାରୁ ତାହା ମୁଁ ନେଲି ।.ଆଉ ଗୋଟିଏ ଖୁବ୍ ବଡ଼ ଘର ଛଡ଼ା ପ୍ରକୃତରେ ଅନ୍ୟ କୌଣସି ନେବାଭଳି ଘର ନ ଥିଲା । ଏଇ ବଡ଼ ଘରଟି ମଧ ପରେ, ପ୍ରଥମ ରାତିରେ ମୁଁ ଯେଉଁ ଘରେ ଥିଲି ତା' ବଦଳରେ ଡାକବଙ୍ଗଳା ହେଲା ।

ନିକଟରେ ଥିବା ଝେଲମ୍ ସହରରୁ ଜଣେ ଅଫିସର ଚାଲିଯାଉଥିଲେ ଏବଂ ପ୍ରଥା ଅନୁଯାୟୀ ତାଙ୍କର ଆସବାବପତ୍ର ବିକ୍ରୟ ପାଇଁ ବିଜ୍ଞାପନ ଦେଲେ । ସେଥିରୁ ମୁଁ ମୋର ଦରକାରୀ ଜିନିଷ କିଣିଲି । ଭାରି ଜିନିଷସବୁ ଚାକର ଆଣିବା ପରେ, ଅତିଥିସ୍ନେହୀ ଆଡ଼ାମ୍‌ସଙ୍କ ଘରେ ଚାରିଦିନ ରହି, ପରେ ନିଜ ଘର ସଜାଡ଼ିଲି । ମୁଁ ମଧ୍ୟ ଅଧା ଆରବୀ ସେଇ ଜିଲ୍ଲାର ସୁନ୍ଦର ଧଳା ମାଈଘୋଡ଼ାଟିଏ କିଣିଲି । ପୂର୍ବରୁ ତା' ଉପରେ କେହି ଚଢ଼ି ନ ଥିଲେ। ୧୨୦ ଟଙ୍କାରେ କିଣି ମତେ ତାକୁ ମଣେଇବାକୁ ପଡ଼ିଲା ।

ଗୁଜୁରାଟ ହେଉଚି ପଞ୍ଜାବର ଗୋଟିଏ ଅତି ଛୋଟ ଜିଲ୍ଲା । କ୍ଷେତ୍ରଫଳ ପ୍ରାୟ ୧୨୦୦ ବର୍ଗମାଇଲ । ଝେଲମ ଓ ଚେନାବ ନଦୀ ଏବଂ କାଶ୍ମୀର ସୀମା ଓ ପଶ୍ଚିମ ପଞ୍ଜାବର ମରୁଭୂମି ମଧ୍ୟରେ ଏହା ଅବସ୍ଥିତ । ସହରଟି ଗୋଟିଏ ଉଚ୍ଚା ଜାଗା ଉପରେ ଅବସ୍ଥିତ । ଶୀର୍ଷସ୍ଥଳରେ ପୁରାତନ ଦୁର୍ଗଟିଏ । ତା'ଉପରୁ ଚମତ୍କାର ଦୃଶ୍ୟ ଦେଖାଯାଏ । ୟୁରୋପୀୟ ଅଞ୍ଚଳରେ ମାତ୍ର ପାଞ୍ଚୋଟି ଘର ଏବଂ ଅଳ୍ପ କେତୋଟି ସରକାରୀ କୋଠା । ସେହି ଅନୁସାରେ ସମାଜ ମଧ୍ୟ କ୍ଷୁଦ୍ର— ଡେପୁଟି କମିଶନର ମେଜର ଆଡାମ୍‌ସ, ତାଙ୍କର ସ୍ତ୍ରୀ ଓ ପିଲାଟିଏ, ମେଜର ଟେରେନ୍‌ସ ଓ ବ୍ରିଏନ୍ ନାମକ ଜଣେ ଖୁସିବାସିଆ ମନର, ଖର୍ବ, ପୃଥୁଳ, ଗୋଲାକାର, ଟାଣ କର୍କଜୋତା ପିନ୍ଧୁଥିବା ଆଇରିସ୍ ଲୋକ ଯାହାଙ୍କ ଘର 'ସିଆର୍କ' ବୋଲି ସେ କହନ୍ତି ଏବଂ ତାଙ୍କ ସ୍ତ୍ରୀ ଯେ କି ଜଣେ ଅଳ୍ପବୟସ୍କା ରୁଗ୍ଣା ବର୍ଣ୍ଣସଙ୍କର ଏବଂ ମୁଁ ଅଧମ ନିଜେ । ସେଠାରେ ଥିଲେ ଦୁଇଟି ବର୍ଣ୍ଣସଙ୍କର କିରାଣି ଏବଂ ସେମାନଙ୍କ ପରିବାର । ଡାକ୍ତର ଥିଲେ ଜଣେ ବଙ୍ଗାଳୀ ଯେ କି ଭଲ ଇଂରାଜୀ କହୁଥିଲେ ।

ମୋର ଦେଖାଚାହାଁ କରିବାକୁ ଥିଲେ ଚାରିଜଣ ଚପରାସୀ ଓ ଜଣେ ସୱାର । ଚପରାସୀମାନଙ୍କୁ ସେପରି କୁହାଯିବା କାରଣ ସେମାନେ ବଡ଼ ପିତଳ ବ୍ୟାଜ (ହିନ୍ଦୁସ୍ଥାନୀରେ 'ଚପରାସ') ପିନ୍ଧିଥାନ୍ତି । ସେମାନେ ଯୁଦ୍ଧଖୋର ପରି ଦେଖାଯାଉଥିବା ଶିଖ । ସେମାନଙ୍କ ଲମ୍ବା ଦାଢ଼ି ଓ ବଡ଼ ବଡ଼ ପଗଡ଼ି ଥାଏ ଏବଂ ଢାଲ ଓ ଖଣ୍ଡା ଧରିଥାନ୍ତି । ସେମାନଙ୍କ କାମ ଥିଲା ଦିନସାରା ଦୁଇ ଦୁଇ ଜଣ କରି ପାଳିକରି ପହରାଦେବା । ସୱାର ବା ଅଶ୍ୱାରୋହୀ ସୈନ୍ୟଟି ଥିଲା ବଡ଼ ବଡ଼ ଜୋତା ପିନ୍ଧିଥିବା, ବର୍ବର ଭଳି ଦେଖାଯାଉଥିବା ଜଣେ ବଦମାସ୍ ଆଫଗାନ୍ । ଗୁଜୁରାଟରେ ଯେଉଁ ସୈନ୍ୟବାହିନୀ ଅବସ୍ଥାପିତ ହୋଇଥିଲେ ସେଇଥିରୁ ସେ ଆସିଥିଲା । ତା'କାମ ଥିଲା ମୁଁ ଘୋଡ଼ାରେ ଚଢ଼ି ଗଲାବେଳେ ମୋ ସାଙ୍ଗରେ ଯିବା ଏବଂ ଅତିଶୀଘ୍ର କୌଣସି ଖବର ନେଇଯିବାର ଥିଲେ— ଚପରାସୀ ଯାଇ ନ ପାରିବା ସ୍ଥାନକୁ ଯିବା ।

ତା'ପରେ ମୁଁ ପଞ୍ଜାବୀ ଶିକ୍ଷା ଆରମ୍ଭ କଲି । ସେଥିପାଇଁ ମୁଁ ଜଣେ ଶିଖ ପୁରୋହିତକୁ ନିଯୁକ୍ତ କଲି । ସେ ଥିଲେ ଭାଇ ମିହର ସିଂ (ଭାଇ ପଦବୀ ସବୁ ଶିଖ ପୁରୋହିତ ଗ୍ରହଣ କରୁଥିଲେ) । ସେ ସମୟର ଅଧିକାଂଶ ପଞ୍ଜାବୀଙ୍କ ପରି ସେହି ଉତ୍ତମ ଭାଇ ଜଣକ ମଧ୍ୟ ଥିଲେ ଦୟାଳୁ ଓ ସରଳ ହୃଦୟର ବୃଦ୍ଧ ଶିଶୁଟିଏ । ପଢ଼ାଇବାର ଅତି ମୌଳିକ ଧାରଣା ମଧ୍ୟ ତାଙ୍କର ନ ଥିଲା; କିନ୍ତୁ ସେ ଦିନେ ଦିନେ ସନ୍ଧ୍ୟାବେଳେ ଆସି ମୋ ପାଖରେ ବସୁଥିଲେ ।

ପଞ୍ଜାବୀ ବହିସବୁ ପଢ଼ି ଶୁଣାଇ ହିନ୍ଦୁସ୍ଥାନୀରେ ତା'ର ଅନୁବାଦ କରୁଥିଲେ ଏବଂ କଷ୍ଟ ଶବ୍ଦଗୁଡ଼ିକୁ ପ୍ରାଞ୍ଜଳ ଭାବରେ ବୁଝାଉଥିଲେ । ସେ ମଧ୍ୟ ମୋ ପାଇଁ 'ପଞ୍ଜାବର ଉଜ୍ଜ୍ୱଳ ଇତିହାସ' ନାମକ କବିତା ରଚନା କରିଥିଲେ ଏବଂ ଲେଖୁଥିଲାବେଳେ କେତେଥର ଆଣି ମୋ ପାଖରେ ଆବୃତ୍ତି କରିଥିଲେ । ତାହା ତାଙ୍କୁ ଓ ଚପରାସୀମାନଙ୍କୁ ଖୁବ୍ ସନ୍ତୋଷ ଦେଉଥିଲା । ଚପରାସୀମାନେ ତାହା ଶୁଣିବା ପାଇଁ ଖୋଲା ଦୁଆର ପାଖରେ ରୁଣ୍ଡ ହେଉଥିଲେ । ସେ ଭାଇଙ୍କ ମୁଣ୍ଡରେ ଥିଲା ଖୁବ୍ ବଡ଼ ତିନିରଙ୍ଗିଆ ପଗଡ଼ି; ମୁଣ୍ଡ ପାଖକୁ ନାଲି, ତା' ଉପରେ ସବୁଜ ଓ ବାହାରପଟକୁ ଧଳା । ପିନ୍ଧିଥିଲେ ସୁନାର ବଡ଼ ବଡ଼ ବଳୟ, ପିତଳବନ୍ଧା ଚଷମା, ଧଳା ଖାପି କୋଟ୍ ଓ ଖୁବ୍ ଖାପି ଧଳା ପାଇଜାମା । ଖୁବ୍ ପତଳା କନାର ଚାଦର କାନ୍ଧରୁ ଓହଳି ରହିଥିଲା ଏବଂ ସେହିପରି ବସ୍ତ୍ର ଅଣ୍ଟାରେ କେତେଥର ଗୁଡ଼ାହୋଇ ବନ୍ଧାଯାଇଥିଲା । ତାଙ୍କର ଦାଢ଼ି ଛାତି ଉପରକୁ ପଡ଼ିଥିଲା । ପ୍ରକୃତରେ ତାହା ଥିଲା ଧଳା; କିନ୍ତୁ ସେ ମାସକୁ ପ୍ରାୟ ଥରେ ଲେଖାଏଁ ନୀଳ ଓ ହେନା ରଙ୍ଗରେ ତାକୁ ରଙ୍ଗ କରୁଥିଲେ । ସେପରି କରିବାର ପ୍ରଥମ କେତେଦିନ ସେସବୁ ଗାଢ଼ ଚିକ୍‌କଣ କଳା ରହୁଥିଲା । ଧୀରେ ଧୀରେ ତାହା ମଳିନ ପଡ଼ିଆସୁଥିଲା ଏବଂ ମୂଳ ଅଂଶ ଧଳା ଦେଖାଯାଉଥିଲା । ଏହି ଧଳା ପଡ଼ିଆସୁଥିବା ବେଳେ ରଙ୍ଗ କରିବା ସମୟ ହେବାରୁ ହଠାତ୍ ପୁଣି ଗାଢ଼ ଚିକ୍‌କଣ କଳା ହୋଇଯାଉଥିଲା । ଏହି ସହୃଦୟ ବୃଦ୍ଧଙ୍କ ସହ ବାରମ୍ବାର କଥାବାର୍ତ୍ତା କରି ଓ ତାଙ୍କଠାରୁ ଶିଖିଥିବା ଶବ୍ଦସବୁ ବ୍ୟବହାର କରି ମୁଁ ସ୍ୱଚ୍ଛ ପଞ୍ଜାବୀ ଉଚ୍ଚାରଣ ଶିଖିଗଲି । ଏହା କେବଳ ଗାଁର କୃଷକ ଓ ସହରର ନିମ୍ନଶ୍ରେଣୀୟ ଲୋକଙ୍କ ସହ କଥାବାର୍ତ୍ତା ବେଳେ ଆବଶ୍ୟକ । ଅନ୍ୟ ସମସ୍ତ ଶିକ୍ଷିତ ଓ ଉଚ୍ଚଶ୍ରେଣୀୟ ଲୋକ ହିନ୍ଦୁସ୍ଥାନୀ କହୁଥିଲେ । କ୍ରମେ କ୍ରମେ ଜିଲ୍ଲାର ସମସ୍ତ ସର୍ଦ୍ଦାର ବା ମୁଖିଆ ଓ ଦେଶୀ ସମ୍ଭ୍ରାନ୍ତ ଭଦ୍ରବ୍ୟକ୍ତିଗଣ, ମୁଁ ତାଙ୍କ ସାହଚର୍ଯ୍ୟ ଭଲପାଉଚି ଜାଣି ମୋତେ ଦେଖା କରିବାକୁ ଆସିଲେ । ଦିନେ ଦିନେ ସନ୍ଧ୍ୟାବେଳେ ଆସି ଘଣ୍ଟା ଘଣ୍ଟା କଥାବାର୍ତ୍ତା କରୁଥିଲେ । ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଥିବା ତରବାରି ଧାରଣ କରି ସେମାନେ ସେମାନଙ୍କ ପ୍ରିୟ ମହାରାଜା ରଣଜିତ୍ ସିଂଙ୍କ ଅଧୀନରେ ଥିବାବେଳେ ଯୁଦ୍ଧ ଓ ଅଚାନକ ଆକ୍ରମଣର ଦୁଃସାହସିକ ବୀରତ୍ୱର କାହାଣୀମାନ କହୁଥିଲେ । ବ୍ରାଣ୍ଡିପ୍ରତି ସେମାନଙ୍କର ଅତ୍ୟଧିକ ଆସକ୍ତି ବ୍ୟତୀତ ବଡ଼ ବଡ଼ ଦାଢ଼ିଥିବା ଏହି ବୃଦ୍ଧ କେଶରୀମାନଙ୍କ ସାହଚର୍ଯ୍ୟ ଖୁବ୍ ଭଲ ଏବଂ ସେମାନଙ୍କଠାରୁ ସେଠାର ଲୋକ, ସେମାନଙ୍କ ହାବଭାବ ସମ୍ପର୍କରେ ଅନେକ କଥା ଜାଣିଗଲି । ସେମାନେ ସୁନ୍ଦର, ସୁପୁରୁଷ ଜାତି । ଅନ୍ତତଃ ସେତେବେଳେ ସେମାନେ ୟୁରୋପୀୟ ଅଧିକାରୀମାନଙ୍କ ପ୍ରତି ଅତ୍ୟନ୍ତ ବନ୍ଧୁଭାବାପନ୍ନ ଥିଲେ । ଅଧିକାଂଶ ଲୋକ ସେପର୍ଯ୍ୟନ୍ତ ମଧ୍ୟ ଦେଶୀୟ ଶାସନର କଷଣ ଓ ଅତ୍ୟାଚାର ମନେ ରଖିଥିଲେ ଏବଂ ଆମ ଶାସନର ନ୍ୟାୟ ଓ ନିରାପତ୍ତା ସହ ତୁଳନା କରୁଥିଲେ ।

ମୋ କାମ ଥିଲା ଚୋରି, ମାଡ଼ପିଟ ବା ସେହି ଧରଣର ଛୋଟ କେସ୍ ବା ଛୋଟ ସିଭିଲ୍ କେସ୍‌ର ବିଚାର, ଯେଉଁ କେସ୍ କି ଗାଁ ମହାଜନ ଛୋଟଧରଣର କରଜ ପାଇଁ ରୟତଙ୍କ ଉପରେ କରିଥାଏ । ସେ ସମୟରେ ପଞ୍ଜାବରେ କୌଣସି ଆଇନ ନ ଥିଲା । ଆମ ବିଚାରବୁଦ୍ଧି ଅନୁଯାୟୀ ଯାହା ଉଚିତ ଓ ନ୍ୟାୟସଙ୍ଗତ ଜଣାଯିବ, ସେହି ଅନୁଯାୟୀ ବିଚାର କରିବାକୁ ଆମକୁ

ନିର୍ଦ୍ଦେଶ ଥିଲା । ମଝିରେ ମଝିରେ ବିଚାରବିଭାଗୀୟ କମିଶନର ନାମରେ ଜଣେ ଉଚ୍ଚ କର୍ମକର୍ତ୍ତା ସନ୍ଦେହଜନକ ଓ କଷ୍ଟସାଧ୍ୟ ଘଟଣାଗୁଡ଼ିକରେ କିପରି ପନ୍ଥା ଅନୁସୃତ ହେବ ତା'ର ମୁଦ୍ରିତ ନିର୍ଦ୍ଦେଶାବଳି ପଠାଉଥିଲେ ଏବଂ ସେହଭଳି ଅନ୍ୟ ଏକ ଉଚ୍ଚକର୍ତ୍ତା ଅର୍ଥବିଭାଗୀୟ କମିଶନର ରାଜସ୍ୱ ଓ ଖଜଣା ଆଦାୟ ସମ୍ପର୍କୀୟ ପତ୍ର ପଠାଉଥିଲେ; କିନ୍ତୁ ମୋଟ ଉପରେ ଆମର ପନ୍ଥା ଥିଲା ସରଳ ଓ ତ୍ୱରିତ । ଏଥିରେ ତ୍ରୁଟି ଏଇଆ ଥିଲା ଯେ, ସବୁ କେସ୍‌ଗୁଡ଼ିକ ଉପରକୁ ଅପିଲ କରାଯାଇ ପାରୁଥିଲା ଏବଂ ଲୋକେ ଏହି ଅପିଲ ସୁଯୋଗ ବହୁପରିମାଣରେ ନେଉଥିବାରୁ ଉଚ୍ଚନ୍ୟାୟାଳୟଗୁଡ଼ିକ ଅନେକ ସମୟରେ ତୁଚ୍ଛ ଓ ଅନର୍ଥକ ଅପିଲରେ ଭର୍ତ୍ତି ହୋଇଯାଉଥିଲା । ସେଥିରୁ ୮୦ରୁ ୯୦ଭାଗ ଅପିଲ ହୋଇଥିବା ନ୍ୟାୟାଳୟରେ ଖାରଜ ହୋଇ ଯାଉଥିବାରୁ ସେଗୁଡ଼ିକ ଯେ ପ୍ରକୃତରେ ତୁଚ୍ଛ ଓ ବେକାର ତାହା ଜଣାପଡ଼ିଯାଉଥିଲା । ଆଂଶିକ ଭାବରେ ବାରମ୍ବାର ଅପିଲ ହେଉଥିବାରୁ ଏବଂ ଆଂଶିକ ଭାବରେ ଏହି ସରଳ ଲୋକଙ୍କୁ ଶାରୀରିକ ଦଣ୍ଡଦେବା ଉପଯୁକ୍ତ ହେଉଥିବାରୁ ବହୁ ସମୟରେ ବେତ୍ରାଘାତ କରାଯାଉଥିଲା । ଅନେକ ଅପରାଧରେ ପ୍ରହାର ଦଣ୍ଡ ଦିଆଯାଉଥିଲା ଏବଂ ଲୋକେ ନିଜେ ବିରକ୍ତିକର କାରାଦଣ୍ଡ କିମ୍ବା ଅର୍ଥଦଣ୍ଡ ଦେଇ ବହୁଦିନ ଧରି ଧାରୁଆ ହୋଇ ରହିବାଠାରୁ ଏହି ସାଙ୍ଗେ ସାଙ୍ଗେ ମିଳୁଥିବା ବିଚାର ପଦ୍ଧତିକୁ ପସନ୍ଦ କରୁଥିଲେ ।

ପ୍ରଥମେ ମୋର କ୍ଷମତା ଥିଲା ସୀମିତ । ଆଇନ ଓ ଭାଷାମାନଙ୍କରେ ତଥାକଥିତ ବିଭାଗୀୟ ପରୀକ୍ଷାମାନଙ୍କରେ ପାସ୍ ନ କଲାଯାଏ ଜଣେ ଅଫିସରଙ୍କୁ ସରକାର କେବଳ 'ତୃତୀୟ ଶ୍ରେଣୀ କ୍ଷମତା' ଦେଉଥିଲେ, ଅର୍ଥାତ୍ ସେ ସାଧାରଣତଃ ଖୁବ୍ ଲଘୁଦଣ୍ଡ ଓ କେତେକ କ୍ଷେତ୍ରରେ ମାତ୍ର ମାସେ ପର୍ଯ୍ୟନ୍ତ କାରାଦଣ୍ଡ ଦେଇପାରୁଥିଲେ । ଫଳତଃ ଖୁବ୍ ଛୋଟ କେସ୍‌ମାନ ବିଚାର ପାଇଁ ତାଙ୍କୁ ଦିଆଯାଉଥିଲା । ଯାହାହେଉ ଆଡାମସ୍ ମୋର ଏହି କ୍ଷମତା ଅଭାବ ବହୁଭାବରେ ପୂରଣ କରି ବହୁସଂଖ୍ୟକ ଛୋଟ କେସ୍ ବିଚାର ପାଇଁ ମୋତେ ଦେଲେ । ତେଣୁ ମୋର ପୂରା ସମୟ ସେଥିରେ ଲାଗିଲା । ପ୍ରତ୍ୟେକ ଦିନ ସାଧାରଣତଃ ୧୦ଟାରୁ ୬ଟା ମୁଁ ଅଫିସରେ ରହୁଥିଲି ।

ଏପ୍ରିଲ ଶେଷରେ ଆଡାମସ୍ ଅନ୍ୟ ଏକ ଜିଲ୍ଲାକୁ ବଦଳି ହେଲେ । ଇଏ ଏକ ପଦ୍ଧତି ଏବଂ ସେ ସମୟରେ ପଞ୍ଜାବରେ ଅଫିସରମାନଙ୍କୁ ଗୋଟାଏ ଜିଲ୍ଲାରୁ ଆଉ ଗୋଟାଏ ଜିଲ୍ଲାକୁ ଘୁରାଇବା ନିଶ୍ଚୟ ଅତି ବିରକ୍ତିକର ଓ ଅନ୍ୟାୟ ପଦ୍ଧତି ଥିଲା । ପଞ୍ଜାବର ପ୍ରଥମ ଶାସକ ଜନ୍ ଲରେନସ୍ ଏହା ପ୍ରଥମେ ଆରମ୍ଭ କରିଥିଲେ । ଏହି ମହତ୍ ବ୍ୟକ୍ତି ଯେଉଁ ସ୍ମରଣୀୟ କାର୍ଯ୍ୟସବୁ କରିଥିଲେ ତା' ଫଳରେ ସେ ଅଞ୍ଚଳରେ ଜଣେ ପ୍ରସିଦ୍ଧ ବୀର ରୂପେ ଗଣ୍ୟ ହେଉଥିଲେ ଏବଂ ତାଙ୍କ ବିରୋଧରେ ପଦଟିଏ କହିବା ପ୍ରାୟ ମହତ୍‌ନିନ୍ଦା ପରି ହେବ । କିନ୍ତୁ ଏହା ନିଶ୍ଚୟ ସତ୍ୟ ଯେ ତାଙ୍କ ତଳେ କାମ କରୁଥିବା ଲୋକଙ୍କର ତାଙ୍କ ପ୍ରତି ଅତ୍ୟନ୍ତ ବିରାଗ ଥିଲା । ଏହା ଅଯଥାର୍ଥ ନୁହେଁ । ସେ ଥିଲେ ଜଣେ ରୁକ୍ଷ, କର୍କଶ ବ୍ୟକ୍ତି; ଚେହେରାରେ ଭଦ୍ରଲୋକ ଅପେକ୍ଷା ଜଣେ 'ଖଣିଖୋଳା ମୂଲିଆ' ପରି । ଜଣେ ଜିଲ୍ଲା ଅଫିସରଙ୍କ ସମ୍ପର୍କରେ ତାଙ୍କର ଧାରଣା ଯେ, ସେ ବୁଟ୍ ଓ ପାଇଜାମା ପିନ୍ଧା ଜଣେ କଠୋର କର୍ମକ୍ଷମ ଲୋକ ହୋଇଥିବ, ସର୍ବଦା ପ୍ରାୟ ଘୋଡ଼ା

ଉପରେ ବସିଥିବ, ଦିନତମାମ ଏପରିକି ରାତିତମାମ କାମ କରୁଥିବ, ଯେଉଁଠି ପାରେ ସେଠି ଖିଆପିଆ କରିପାରୁଥିବ, ତା'ର ପାରିବାରିକ ବନ୍ଧନ କିଛି ନ ଥିବ, ତା' କାମର ପ୍ରତିବନ୍ଧକ ହେବାଭଳି ସ୍ତ୍ରୀ ବା ପିଲାପିଲି ନ ଥିବେ; ତା'ର ସମଗ୍ର ସଂସାର ବୋଲି ଥିବ ଖଣ୍ଡେ ଶିବିରଖଟିଆ, ଶେଯ, ଖଣ୍ଡେ ସାଦାଟେବୁଲ, ଚୌକି କିମ୍ବା ସେହିପରି କିଛି ଏବଂ ଖଣ୍ଡେ ଛୋଟ ଲୁଗାବାକ୍‌ସ ଯାହାସବୁକି ଓଟପିଠିରେ ଓହଳେଇ ନେଇହେବ । ଏପରି ଲୋକ ଆଦେଶ ପାଇବାର ମୁହୂର୍ତ୍ତକ ମଧ୍ୟରେ ଯେକୌଣସି ଜାଗାକୁ ଯିବା ପାଇଁ ପ୍ରସ୍ତୁତ ଥିବ । ଗ୍ରାମ୍ୟ ସରଳ ପଞ୍ଜାବୀମାନେ ଏକନାୟକତ୍ୱକୁ ଏକମାତ୍ର ଶାସନପଦ୍ଧତି ବୋଲି ବୁଝନ୍ତି । ତେଣୁ ଜଣେ ଆଦର୍ଶ ମ୍ୟାଜିଷ୍ଟ୍ରେଟ୍ ହେଉଚି ସେଇ, ଯେ ସର୍ବଦା ତା' ଲୋକଙ୍କ ସହ ସାକ୍ଷାତ କରୁଥିବ, ଗାଁ ଫାଟକ ପାଖରେ ଘୋଡ଼ାପିଠିରେ ବସି ହେଉ କିମ୍ବା ଗାଁ ପାଚିରି ବାହାରେ ଗଛତଳେ ହେଉ କେସ୍ ସବୁ ବିଚାର କରୁଥିବ । ଖଣ୍ଡେ ଦେଶୀ ଚପାଟି କିମ୍ବା ଭୂମିରେ ଖୋଳା ଗାତରେ ସିଝା ହୋଇଥିବା କୁକୁଡ଼ା ଚୋବାଉ ଚୋବାଉ ନିଜ ବିଚାର ସିଦ୍ଧାନ୍ତ ସବୁ ଲେଖିପାରୁଥିବ ଏବଂ ତା'ପରେ ଘୋଡ଼ା ପିଠିରେ ଉଠି ପରବର୍ତ୍ତୀ ଗାଁରେ ସେଇ ପନ୍ଥାର ପୁନରାବୃତ୍ତି କରୁଥିବ । ଉତାପ, ଖରା, ବର୍ଷା ଓ ପାଗର ସମସ୍ତ ପରିବର୍ତ୍ତନ ପ୍ରତି ସେ ନିସ୍ପୃହ ଥିବ । ଅବଶ୍ୟ ସେ ତାଙ୍କର ସମସ୍ତ ଅଧସ୍ତନମାନଙ୍କୁ ଏପରି ବଣ୍ୟ ଅବିଶ୍ରାନ୍ତ ଜୀବନଯାପନ ପାଇଁ ପ୍ରବର୍ତ୍ତାଇ ପାରିଲେ ନାହିଁ । ବିଶେଷକରି ଯେଉଁ ସିଭିଲିଆନମାନେ ପୁରୁଣା ଓ ଅଧିକ ବ୍ୟବସ୍ଥିତ ପ୍ରଦେଶର ଅଧିକତର ସଭ୍ୟ ଅବସ୍ଥାରେ ଅଭ୍ୟସ୍ତ, ସେମାନେ ଏପରି ଗୃହହୀନ, ଆଶ୍ରୟହୀନ ଶାସକୀୟ ଯନ୍ତ୍ର ହେବାର ପ୍ରବଳ ବିରୋଧ କଲେ । ପରିଷ୍କାର ସାର୍ଟ, ସୁନ୍ଦର ଘର ଓ ବ୍ୟବସ୍ଥିୟ ଜୀବନ ପ୍ରତି ଥିବା 'ଦୁର୍ବଳ, ନାରୀସୁଲଭ' ମୋହରୁ ସେମାନଙ୍କୁ ଦୂରେଇ ନେବା ପାଇଁ ବୋଧହୁଏ ସେ ସେମାନଙ୍କୁ ବରାବର ଗତିଶୀଳ କରି ରଖିବା ପଦ୍ଧତି ଗ୍ରହଣ କଲେ । ଯେଉଁ 'ଆରାମ' ଶବ୍ଦଟାକୁ ସେ ଖୁବ୍ ଭୟ କରୁଥିଲେ, ସେପରି ହେବାରୁ ଅବଶ୍ୟ ସେ ସଫଳ ଭାବରେ ସେମାନଙ୍କୁ ନିବୃତ୍ତ କରାଇ ପାରିଲେ; କିନ୍ତୁ ଅନେକଙ୍କ ମତରେ ସେ ତା' ସଙ୍ଗେ ସଙ୍ଗେ ସେମାନଙ୍କ ଜିଲ୍ଲା ବିଷୟକ ଆଞ୍ଚଳିକ ଜ୍ଞାନଲାଭରୁ ଓ ଲୋକଙ୍କୁ ପ୍ରଭାବିତ କରିବାରୁ ମଧ୍ୟ ସଫଳ ଭାବରେ ପ୍ରତିରୋଧ କରିଦେଲେ । ଏହି ଜ୍ଞାନ ଓ ପ୍ରଭାବ ପୁରାତନ ପ୍ରଦେଶମାନଙ୍କରେ ଭଲ ଶାସନ ପାଇଁ ଅତି ମୂଲ୍ୟବାନ୍ ପ୍ରମାଣିତ ହୋଇଥିଲା ଏବଂ ସେ ନିଜେ ମଧ୍ୟ ସେଥିପାଇଁ ପଦୋନ୍ନତି ଓ ସଫଳତା ଲାଭ କରିଥିଲେ । ମୁଁ ପଞ୍ଜାବ ଆସିବା ପୂର୍ବରୁ ସେ ଚାଲିଯାଇଥିଲେ, କିନ୍ତୁ ତାଙ୍କ ପଦ୍ଧତି ତଥାପି ପ୍ରଚଳିତ ଥିଲା; ଯଦିଓ ତାଙ୍କର ଉତ୍ତରାଧିକାରୀ ସାର୍ ରବର୍ଟ ମଣ୍ଟଗୋମେରୀ ଥିଲେ ଅଧିକତର ନରମ, ରୁଚିସମ୍ପନ୍ନ ଓ ସୁସଭ୍ୟ ବ୍ୟକ୍ତି ଏବଂ ଏପରି କଠୋର ପଦ୍ଧତିକୁ କ୍ରମେ କ୍ରମେ ସୁଧାରି ନେଇଥିଲେ; ତଥାପି ଅନେକ ରହିଥିଲା । ମୋର ଜଣେ ହେଲିବରୀ ସହପାଠୀ ଏମ୍‌ସଲି ବେଖାତିର ଭାବରେ ଗୋଟିଏ ପିଆନୋ ବାଦ୍ୟ ପଞ୍ଜାବକୁ ନେଇଆସିଥିଲେ । ଏପରି ଏକ ରୁଚିଜ୍ଞାନ ଥିଲା ଅକ୍ଷମଣୀୟ ଏବଂ ବିଚରା ଏମସଲି ଦୁଇବର୍ଷ ମଧ୍ୟରେ ପଞ୍ଜାବର ଗୋଟିଏ ସୀମାରୁ ଅନ୍ୟ ସୀମା ପର୍ଯ୍ୟନ୍ତ ପାଞ୍ଚଥର ବୁଲିଲେ । ଜଣେ ପଞ୍ଜାବ ଅଫିସର ପିଆନୋ ରଖିବା ଭଳି ଅଧଃପତିତ ଅବସ୍ଥାକୁ ଆସିଲାଣି ବୋଲି ଜନ୍ ଲରେନ୍‌ସ ଯେତେବେଳେ ପ୍ରଥମେ ଶୁଣିଲେ ସେ କହିବାର ଶୁଣାଗଲା । ''ମୁଁ ତା' ପିଆନୋକୁ

ଧ୍ୱଂସ କରିଦେବି'' । ମୁଁ କଲିକତାରୁ ଭୋଜି ସରଞ୍ଜାମଟିଏ ଆଣିଥିଲି । ସମସ୍ତେ ମୋତେ ଉପଦେଶ ଦେଲେ ଏ ବିଷୟ ଯେପରି ଜଣା ନ ପଡ଼େ, ତା' ହେଲେ ସେଇଟି ଧ୍ୱଂସ ପାଇବା ପର୍ଯ୍ୟନ୍ତ ମୁଁ ଗୋଟିଏ ସ୍ଥାନରୁ ଆଉ ଗୋଟିଏ ସ୍ଥାନକୁ ଧକ୍କା ଖାଉଥିବି । ଗୁଜୁରାଟରେ ତିନିମାସ ରହିବା ପରେ ଆଡାମସ୍‌କୁ ପଠାଇ ଦିଆହେଲା ଏବଂ ତାଙ୍କ ଜାଗାରେ ଆସିଲେ ବ୍ରାଡ଼ଫୋର୍ଡ୍ ହାର୍ଡ଼ିଞ୍ଜ । ହାର୍ଡ଼ିଞ୍ଜ ଥିଲେ ମୋରି ସେବା ସଂସ୍ଥାର ଲୋକ ଏବଂ ମୋଠାରୁ ଅଳ୍ପ କେତେବର୍ଷ ମାତ୍ର ପୂର୍ବର ।ପ୍ରଥମରୁ ହିଁ ଆମେ ପରସ୍ପରକୁ ଗ୍ରହଣ କରିନେଲୁ ଏବଂ ଘନିଷ୍ଠ ବନ୍ଧୁ ହୋଇଗଲୁ । ଅଳ୍ପଦିନ ପରେ ତାଙ୍କ ଘରେ ରାତ୍ରି ଭୋଜନ କରିବା ମୋର ଦୈନିକ ଅଭ୍ୟାସରେ ପରିଣତ ହୋଇଗଲା । ଆମେ ବଡ଼ ସନ୍ତରଣ ପୁଷ୍କରିଣୀଟିଏ ନିର୍ମାଣ କଲୁ ଏବଂ ପ୍ରତି ସନ୍ଧ୍ୟାରେ କଚେରି ପରେ ଓବ୍ରିଏନ୍ ଓ ଆମେ ଗାଧୋଉ, ପାଣିକୁ ଡେଉଁ, ପାଣିକୁଣ୍ଡରେ ଯୁଦ୍ଧ ଓ ଅନ୍ୟାନ୍ୟ କୌତୁକ କରୁ । ତା'ପରେ ହାର୍ଡ଼ିଞ୍ଜଙ୍କ ଘର ବାରଦାରୀକୁ ଆସି ଖାଉ । ତାଙ୍କର ଗୋଟିଏ ପୁରୁଣା ଟିଣ ପିଆନୋ ଥିଲା । ଜନ୍ ଲରେନସ୍ ଗଲେଣି ବୋଲି ଶୁଣିବାମାତ୍ରେ ସେ ଏହା କିଣିଥିଲେ ବୋଲି କହିଲେ— ତା' ପୂର୍ବରୁ ସେ ସାହସ କରି ନ ଥିଲେ । ଆମ କାର୍ଯ୍ୟ ସମ୍ପର୍କୀୟ କଥାବାର୍ତ୍ତା ମଝିରେ ସେ ଏହା ବଜାଇ ଗୀତ ଗାଇ ଆମକୁ ଶୁଣାନ୍ତି ।

ତାଙ୍କର ଥିଲା ଛ'ଟା ଘୋଡ଼ା ଓ ମୋର ଦୁଇଟା (ଘୋଡ଼ା ଖୁବ୍ ଶସ୍ତା ଥିଲେ) ତେଣୁ ସକାଳ ପାଞ୍ଚଟା ବେଳକୁ ଆମେ ଲଗାମ ବାନ୍ଧି ଦୁଇ ତିନି ଘଣ୍ଟା ପର୍ଯ୍ୟନ୍ତ ଘୋଡ଼ା ପିଠିରେ ବସି କାମ କରୁ କିମ୍ବା ଏହି ପ୍ରାଚୀନ ନଗରର ଅଣଓସାରିଆ ରାସ୍ତାରେ ଚାଲୁଥାଉ; ଆମ ପଛରେ ଘୋଡ଼ାକୁ ଅଣାହେଉଥାଏ । ଦଳେ ପୋଲିସ୍ ଅଫିସର୍, ଓଭରସିଅର୍ ଓ ଅନ୍ୟମାନେ ଆମ ସାଙ୍ଗରେ ଥାଆନ୍ତି । ପରିଚ୍ଛନ୍ନତା ସମ୍ପର୍କୀୟ ଉନ୍ନତି, ରାସ୍ତା ଓ ନର୍ଦ୍ଦମା ମରାମତି, ନୂଆରାସ୍ତା ନିର୍ମାଣ ସମ୍ପର୍କରେ ବରାଦ ଦେଉଥାଉ; ବିବାଦ ମୀମାଂସା ବା ସେହିପରି କାମସବୁ କରୁଥାଉ । ଅନେକ ସନ୍ଧ୍ୟାରେ ଘୋଡ଼ାଚଢ଼ି ସାତମାଇଲ ଦୂର ଚେନାବକୁ ଚାଲିଯାଉ, ନଦୀରେ ପହଁରୁ ଓ ତା'ପରେ ସରାଇ ଘର ଛାତକୁ ଆସୁ । ସେଠାକୁ ଆମ ଚାକରମାନେ ଆମ ଖାଇବା ଆଣିଥାନ୍ତି । ଖାଇସାରି ଆମେ କନାର ଢିଲା ପାଇଜାମା ଓ କୋଟ ପିନ୍ଧି ବସୁ ଏବଂ ତଳ ଅଗଣା ଦେଇ ଗାଡ଼ି, ଖଚର ଓ ଓଟ ନେଇ ଚାଲିଥିବା ବିଚିତ୍ର ପୋଷାକ ପିନ୍ଧା ଲୋକ ଗହଳି ଦେଖୁ । ସେଇ ଛାତରେ ଖଟିଆ ଉପରେ ମୁକ୍ତାକାଶତଳେ ଶୋଇ ପରଦିନ ପ୍ରଭାତରେ ଗୁଜୁରାଟ ଫେରୁ । ୧୦ଟାରୁ ୪ଟା ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ନିୟମବଦ୍ଧତା ମଧ୍ୟରେ ଦିନର କଠିନ କାମ ଚାଲେ । ଏଇ ଧରଣର ଆନନ୍ଦମୁଖର କର୍ମମୟ ଜୀବନର ଅବସ୍ଥିତି କେବଳ ଗୋଟିଏ ଦୁଇଟି ଘଟଣା ଛାଡ଼ିଦେଲେ ଗ୍ରୀଷ୍ମକାଳ ତମାମ ଚାଲିଲା ।

ବେଳେ ବେଳେ ଆମେ ପାଖ ସହର ଝେଲମ, ସିଆଲକୋଟ କିମ୍ବା ଗୁଜୁରାନ୍‌ୱାଲାକୁ ଘୋଡ଼ାରେ ଯାଇ ସେଠାରେ ଲୋକଙ୍କ ସହ ରବିବାରଟା କଟାଉ କିମ୍ବା ସେମାନଙ୍କ ମଧ୍ୟରୁ କେହି କେହି ଆମକୁ ଦେଖିବାକୁ ଆସନ୍ତି । ଆମେ ଆମ ମଧ୍ୟରେ ଘୋଡ଼ାଗୁଡ଼ିକ ଧାର ଦେଉ । କୌଣସି ଘୋଡ଼ା ଯେ ଦଶମାଇଲ୍‌ରୁ ବେଶି ଯିବ ନାହିଁ ଏହା ନିଧାର୍ଯ୍ୟ ସତ୍ୟ; ତେଣୁ ପ୍ରତ୍ୟେକ ଦଶ ମାଇଲ୍‌ରେ ନୂଆ ଘୋଡ଼ାଟିଏ ପାଇବା ଦରକାର । ତୁମେ ଯଦି ୫୦ ମାଇଲ ଯାଉଛ,

ତେବେ ତୁମର ୫ଟି ଘୋଡ଼ା ଦରକାର ଏବଂ ବନ୍ଧୁମାନଙ୍କଠାରୁ ଧାର ନେଇ ତୁମର ଏଇ ସଂଖ୍ୟା ବଢ଼ାଇବାକୁ ପଡ଼ିବ । ଆମେ ଦେଶୀ ଘୋଡ଼ା ବ୍ୟବହାର କରୁଥିଲୁ । ସରକାର ବିଭିନ୍ନ ସ୍ଥାନରେ ଚମତ୍କାର ଆରବୀ ଘୋଡ଼ାଗୁଡ଼ିଏ ରଖିଥିଲେ । ସେଗୁଡ଼ିକଠାରୁ ଦେଶୀ ଘୋଡ଼ୀଙ୍କର ଯେଉଁ ପିଲା ହେଲେ ସେଗୁଡ଼ିକ ଭଲ କାମ ଦେଲେ । ଆମେ ମଧ୍ୟ କାବୁଲି ଘୋଡ଼ା ଚଢ଼ୁଥିଲୁ; କିନ୍ତୁ ସେଗୁଡ଼ିକ ଥିଲେ ଖୁବ୍ ଓଜନିଆ ଓ ଝୁଣ୍ଟୁଥିଲେ । କେତେକ ଧନୀଲୋକ ଆରବୀ କିମ୍ବା ଓ୍ୱାଲରସ ଘୋଡ଼ା ରଖୁଥିଲେ ।

କଲିକତାରେ ଥିଲାବେଳେ ମୁଁ ନିୟମିତ ଲଜ୍‌କୁ ଯାଉଥିଲି ଏବଂ ପଞ୍ଜାବରେ ଜଣାପଡ଼ିଲା ଯେ, ମୁଁ ଜଣେ ଶାସନ ସଂସ୍ଥାର ସଭ୍ୟ, ତେଣୁ ଲାହୋରରେ ହେଉଥିବା ବିରାଟ ମାସନୀୟ ଉତ୍ସବରେ ଯୋଗଦେବା ପାଇଁ ମୁଁ ନିମନ୍ତ୍ରଣ ପାଇଲି ଏବଂ ଆଶ୍ଚର୍ଯ୍ୟର କଥା ଯିବାପାଇଁ ଛୁଟି ପାଇଲି ! ସେ ସମୟର କଠୋର କର୍ମବହୁଳ ଦିନଗୁଡ଼ିକରେ ଦିନକ ପାଇଁ ମଧ୍ୟ ଛୁଟି ପାଇବା ସହଜ ନ ଥିଲା । ବାଟରେ ମୋର ଗୋଟାଏ ଘୋଡ଼ା ଜଖମ ହୋଇଯିବାରୁ ଦୋଳିରେ ବସି ଯାତ୍ରା ଶେଷକଲି; ଫଳରେ ଦିନସାରା ଜୁନ୍‌ମାସର ପୂରାଦିନର ଖରାଟା ମୁଁ ବାହାରେ ରହି କଟାଇଦେଲି । ବାହକମାନଙ୍କ ଦ୍ୱାରା ବାଟରେ ପଡୁଥିବା ପ୍ରତ୍ୟେକ କୂଅରୁ ମାଠିଆ ମାଠିଆ ପାଣି ଦୋଳିରେ ଆଣି ମୋ ମୁଣ୍ଡ ଓ ବେକରେ ଢାଳିଲି ଏବଂ ଏହିପରି ରୌଦ୍ରାଘାତକୁ ସମ୍ଭାଳିଗଲି; କିନ୍ତୁ ସୂର୍ଯ୍ୟାସ୍ତର ସାମାନ୍ୟ ପୂର୍ବରୁ ରାବୀ ନଦୀ ତୀରରେ ଲାହୋରର ବିପରୀତ ପାର୍ଶ୍ୱରେ ଥିବା ସାହାଦ୍ରାରେ ସମ୍ରାଟ୍ ଜାହାଙ୍ଗୀରଙ୍କ ପ୍ରାଚୀନ ଗମ୍ବୁଜ ନିକଟରେ ପହଞ୍ଚିଲା ବେଳକୁ ମୋର ଅଚୈତନ୍ୟ ଅବସ୍ଥା । ସେହି ଗମ୍ବୁଜର ଏକ ଗମ୍ଭୀରି କୋଠରିରେ ରହୁଥିବା ଜଣେ ସରକାରୀ ଯନ୍ତ୍ରୀ ନୋଏଲସ୍ ମୋତେ ଏକ ଅଣଓସାରିଆ ପାହାଚ ଦେଇ ଉଠାଇନେଇ ପୋଷାକ ଉତାରିବାରେ ସାହାଯ୍ୟ କଲେ ଏବଂ ଦୁଇଜଣ ପାଣିବୁହାଳିଙ୍କୁ ଡକାଇ ସେମାନଙ୍କ ପାଣିପାତ୍ରର ପାଣି ମୋ ଉପରେ ଢଳାଇଲେ । ତା'ପରେ ମୁଁ କିଛି ଖାଇ ଗ୍ଲାସେ ବ୍ରାଣ୍ଡି ଓ ପାଣି ପିଇବାପରେ ଶୋଇପଡ଼ିଲି ଏବଂ ଆରଦିନ ସକାଳେ ଉଠିଲି; କିନ୍ତୁ ଖୁବ୍ ଥଣ୍ଡା ଧରିନେଇଥିଲା । ମାସନିକ ସଂସ୍ଥାର ଜଣେ ବଡ଼ କର୍ତ୍ତା ଆକାଉଣ୍ଟାଣ୍ଟ୍ ଜେନେରାଲ ସାଣ୍ଡେମାନ ଅତ୍ୟନ୍ତ ଆତିଥେୟତାର ସହ ଆମକୁ ଅଭ୍ୟର୍ଥନା କଲେ ଏବଂ ସେଠାରେ ବିରାଟ ଧରଣର ଅନୁଷ୍ଠାନ ହେଲା । ମୁଁ ୭୯ତମ ହାଇଲାଣ୍ଡରମାନଙ୍କ ସହ ରହିଲି । ଖୁବ୍ ସୁନ୍ଦର ଲୋକ ସେମାନେ । ଲାହୋରରେ ଦୁଇଦିନ ଆନନ୍ଦରେ କଟାଇବା ପରେ ନୋଏଲସ୍ ଓ ମୁଁ ଘୋଡ଼ାରେ ଗୁଜୁରାଟ ଫେରିଲୁ । ସାଙ୍ଗରେ ଥିଲେ ସେଇ ରେଜିମେଣ୍ଟର କେତେକ ଅଫିସର ଯେଉଁମାନେ କି କାଶ୍ମୀର ବୁଲିବାକୁ ଯାଉଥିଲେ । ବାଟଯାକ ଆମେ ଘୋଡ଼ା ବଦଳ କରି ଆସିଲୁ । ଆନନ୍ଦଦାୟକ ସହଯାତ୍ରୀଙ୍କ ଗହଣରେ ଦୁଇଦିନରେ ଫେରନ୍ତା ଯାତ୍ରାପଥରେ ଥିବା ବଙ୍ଗଳାମାନଙ୍କରେ ଶୋଉଥିଲୁ । ଗୁଜୁରାଟକୁ ଫେରି ମୁଁ ଖୁବ୍ ଜ୍ୱରାକ୍ରାନ୍ତ ହୋଇପଡ଼ିଲି ମାସେ ପର୍ଯ୍ୟନ୍ତ ।

ଜୁଲାଇରେ ଶ୍ରୀଯୁକ୍ତ ବାଲ୍ ଗୋଟିଏ ଚିଠି ଲେଖି ମୋତେ ମନେ ପକାଇଦେଲେ ଯେ, ଏଲେନ୍‌କୁ ଦୁଇବର୍ଷ ପରେ ବିବାହ କରିବା ପାଇଁ ବାପାଙ୍କ ସହ ଯେଉଁ ଚୁକ୍ତି କରିଥିଲି ସେ ସମୟ ପୂରି ଆସିଲାଣି ଏବଂ ସବୁ ବ୍ୟବସ୍ଥା ସରିବାକୁ କିଛି ସମୟ ଲାଗିବ; ଏଣୁ ମୁଁ ଯେମିତି ଏ

ବିଷୟରେ ଚିନ୍ତାକରେ । ୧୮୫୯ର ବସନ୍ତ ସମୟରେ ଏଲେନ୍‌କୁ ଭୀଷଣ ମିଳିମିଳା ହୋଇଥିଲା ଏବଂ ସେ ଖବର ମୋତେ ଜଣାଇ ଦିଆଯାଇଥିଲା; କିନ୍ତୁ ଏତେ ଗୁରୁତର ହୋଇଥିଲା ବୋଲି ମୋର ଧାରଣା ନ ଥିଲା । ଉତ୍ତର ଭାରତକୁ ଯାଇ ସେଠାରେ ମୋର ନୂଆ ଜିଲ୍ଲାରେ ଅବସ୍ଥାପିତ ହେବାର ଉତ୍କଣ୍ଠା ଭିତରେ ମୁଁ ତାକୁ ମୋ ଚିଠିରେ ଯେତେ ସହାନୁଭୂତି ଦେଖାଇବା କଥା ତାହା କରି ନ ଥିଲି । ପରେ ସେ ମୋତେ କହିଲା ଯେ, ସେତେବେଳେ ମୋ ଚିଠିଗୁଡ଼ାକ ଥିଲା ଛୋଟ ଓ ସରାଗହୀନ । ସେ ଭାବିବାକୁ ଆରମ୍ଭ କରିଥିଲା ଯେ, ମୁଁ ଆମ ବିବାହ ସମ୍ପର୍କରେ କ୍ରମେ ଆଗ୍ରହ ହରାଉଛି । ସାଙ୍ଗେ ସାଙ୍ଗେ ମୁଁ ଏଲେନ୍ ପାଖକୁ ଖୁବ୍ ଲମ୍ବା ଚିଠିଟାଏ ଦେଲି— ପ୍ରାୟ ତଜନେ କାଗଜର କିମ୍ବା ବେଶୀ । ସେଥିରେ ସେ ଜାହାଜରେ କିପରି ଆସିବ, କେଉଁଠି ମୁଁ କିପରି ଭେଟିବି, ସେ ସମ୍ପର୍କରେ କ'ଣ ବନ୍ଦୋବସ୍ତ କରିଛି, ସେ ସବୁର ପୂର୍ଣ୍ଣ ବିବରଣୀ ଥିଲା । ବସ୍ତୁତଃ ଏହା ଥିଲା ଏକ ପ୍ରେମିକର ପତ୍ର ଏବଂ ପ୍ରେମିକର ପତ୍ର ସାଧାରଣରେ ଦ୍ରଷ୍ଟବ୍ୟ ନୁହେଁ; ତେଣୁ ସେ ଚିଠି ଏପର୍ଯ୍ୟନ୍ତ ମୋ ସ୍ତ୍ରୀ ନିକଟରେ ଥିଲେ ମଧ୍ୟ ସେ ବିଷୟରେ ଅଧିକ କିଛି କହିବି ନାହିଁ । ଏହା ପଠାହୋଇ ନ ପାରିବାର ଏକ ଆଶଙ୍କା ମଧ୍ୟ ସୃଷ୍ଟି ହୋଇଥିଲା । ତାହା ଏହିପରି । ଏଲେନ୍‌କୁ ଭାରତକୁ କଢ଼ାଇ ଆଣିବା ପାଇଁ ମୁଁ ଜଣେ ବିବାହିତା ମହିଳା ଖୋଜୁଥିଲି ଏବଂ ମୋ ଆଖିରେ ପଡ଼ିଲେ ସିଆଲକୋଟର ସେନାଧିନାୟକ ବ୍ରିଗେଡ଼ିଅର ଜେନେରାଲ୍ ମାକ୍‌କସଲାଣ୍ଡଙ୍କ ସ୍ତ୍ରୀ । ସେତିକିବେଳେ ସେ ଆସୁଥିଲେ । ଏହି ସମ୍ପର୍କରେ କଥାବାର୍ତ୍ତା କରିବା ପାଇଁ ସେଇ ସହୃଦୟ ବୃଦ୍ଧ ବ୍ରିଗେଡ଼ିଅର ମୋତେ ସିଆଲକୋଟକୁ ଡକାଇଥିଲେ । ସେ ସମୟରେ ଭାରତରୁ ଇଂଲାଣ୍ଡକୁ ଚିଠିଟିଏ ଯିବାକୁ ଛ' ସପ୍ତାହ ଲାଗୁଥିଲା ଏବଂ ପନ୍ଦର ଦିନରେ ଥରେ ଡାକ ଯାଉଥିଲା । ତେଣୁ କିଛି ବନ୍ଦୋବସ୍ତ କରିବାକୁ ହେଲେ ବହୁଦିନ ଆଗରୁ କରିବାକୁ ପଡୁଥିଲା । ମୁଁ ଘୋଡ଼ା ଚଢ଼ିବା ପାଇଁ ସକ୍ଷମ ହେବା ମାତ୍ରେ ଅର୍ଥାତ୍ ଜୁଲାଇ ୧୮ରେ ମୋ ଘୋଡ଼ାମାନଙ୍କୁ ପଠାଇଦେଇ ବ୍ରିଗେଡ଼ିଅରଙ୍କୁ ଲେଖି ଜଣାଇଦେଲି ଯେ ମୁଁ ତାଙ୍କ ପାଖରେ ସେଇ ସନ୍ଧ୍ୟାରେ ଭୋଜନବେଳକୁ ପହଞ୍ଚିବି । ମୁଁ ମୋ ମୂଲ୍ୟବାନ୍ ଚିଠିଟି ପକେଟରେ ରଖିଲି, ଡାକଘର ଦେଇ ଗଲାବେଳେ ଡାକଘରେ ପକାଇବି ବୋଲି । କିନ୍ତୁ ଦେଖିଲି ଯେ ଅପଦାର୍ଥ ଡାକମାଷ୍ଟର ପାଖରେ ଡାକମୋହର ନାହିଁ; ତେଣୁ ସିଆଲକୋଟରେ ଚିଠି ପକାଇବା ଇଚ୍ଛାକରି ଚାଲିଲି । ଏହା ଗୋଟିଏ ଚମଡ଼ା ମୁଣିରେ ସୁରକ୍ଷିତ ହୋଇ ରଖାହୋଇଥିଲା ଏବଂ ମୁଣିଟି ଗୋଟିଏ ପଟିଦ୍ୱାରା କାନ୍ଧରୁ ଓହଳା ହୋଇଥିଲା । ସିଆଲକୋଟଠାରୁ ଦଶମାଇଲ ଦୂରରେ ପହଞ୍ଚିଲାବେଳକୁ ମୋତେ ଅତିକ୍ରମ କରି ଯାଉଥିବା ଜଣେ ପୋଲିସ୍‌ବାଲା ମୋତେ କହିଲା ଯେ, ଚେନାବ ନଦୀରେ ବଢ଼ି ଆସି ଗାଁଗଣ୍ଡାକୁ ମାଡ଼ିଯାଇଛି । ସେ ପୁଣି କହିଲା ଯେ, ଯାହାହେଉ ମୁଁ ବାଟ ପାଇପାରିବି,. କାରଣ ଧାଡ଼ି ଧାଡ଼ି ଗଛ ମଧ୍ୟଦେଇ ଉଚ୍ଚା ରାସ୍ତା ପଡ଼ିଛି । ଗୋଟିଏ ଛୋଟ ଧାର, ବୋଧହୁଏ ସେ ବଡ଼ ନଦୀର ଏକ ଶାଖା ଯେ ସେ ରାସ୍ତା ଭେଦକରି ଯାଇଛି ସେକଥା ସେ ଜଣାଇ ଦେବାକୁ ଭୁଲିଗଲା । ସୂର୍ଯ୍ୟ ବୁଡ଼ିଯାଉଥିଲେ; କିନ୍ତୁ ରାସ୍ତା ବେଶ୍ ସମତଳ ଦିଶୁଥିଲା ଏବଂ ମୋ ଘୋଡ଼ାଟି ଅଳ୍ପ କେତେ ଇଞ୍ଚ ଗଭୀର ପାଣି ଭିତର ଦେଇ ଚାଲିଥିଲା । ହଠାତ୍ ଅସତର୍କ ଭାବରେ ସେ ଗଭୀର ପାଣି ଭିତରକୁ ଚାଲିଗଲା । ପାଣି ପ୍ରାୟ ତା'ମୁଣ୍ଡ ଉପରେ । ମୁଁ ଖସିପଡ଼ିଲି ଏବଂ ଗୋଟିଏ ହାତରେ ତା' ବେକର କେଶରକୁ ଧରି ଅନ୍ୟ ହାତରେ ପାଣି କଟେଇ ଆଗେଇଲି ।

ଆମେ କିଛି ବାଟ ଭାସି ଚାଲିଗଲୁ; କିନ୍ତୁ ଶେଷରେ ଅପର କୂଳରେ ଲାଗିଲୁ ଏବଂ ବହୁ କଷ୍ଟରେ ଉପରକୁ ଉଠିଲୁ । ମୋର ପାଟି ଶୁଣି କେତେକ ଗ୍ରାମବାସୀ ଦଉଡ଼ି ଆସିଲେ ଏବଂ ସିଆଲକୋଟକୁ ବାଟ ଦେଖାଇଦେଲେ । ପୂରାପୂରି ଓଦା ହୋଇ ରାତି ୧୧ଟା ବେଳେ ସେଠାରେ ପହଞ୍ଚିଲି । ପୋଷାକ ଖୋଲିଲାବେଳକୁ ଦେଖିଲି ମୋ ଚିଠିଟି ମଧ୍ୟ ପୂରା ଓଦା ହୋଇଯାଇଛି । ସେଗୁଡ଼ିକୁ ଶୁଖାଇବା ପାଇଁ ଗୋଟି ଗୋଟି କରି ଚୁଲି ନିକଟରେ ଥାକରେ କିଛି ସମୟ ରଖିବାକୁ ପଡ଼ିଲା । ପରଦିନ ସକାଳେ ସେସବୁ ଶୁଖିଲା ଏବଂ କିପରି ସେସବୁର ସେପରି ଅବସ୍ଥା ହେଲା ସେ ସମ୍ପର୍କରେ ଆଉ ଅଳ୍ପ କିଛି ଡାକରେ ପକାଇଦେଲି ।

ଅଗଷ୍ଟରେ ହାର୍ଡିଞ୍ଜ ରୋଗାକ୍ରାନ୍ତ ହୋଇ ମାସେ ଖଣ୍ଡେ ଛୁଟିରେ ଚାଲିଗଲେ । ମୋତେ ତାଙ୍କ କାମ କରିବାକୁ ଦିଆଗଲା । ମୋଭଳି ଜଣେ ନୂଆ ଲୋକପାଇଁ ଏହା ଅତି ଆଶ୍ଚର୍ଯ୍ୟ ଧରଣର ପଦୋନ୍ନତି; କିନ୍ତୁ ବନ୍ଧୁ ହାର୍ଡିଞ୍ଜ ତାଙ୍କ ସହୃଦୟତା ଯୋଗୁଁ ମୋ କାମକୁ ପ୍ରଶଂସା କଲେ ଏବଂ କହିଲେ ଯେ, ମୁଁ ଏକ ଜିଲ୍ଲାର ଦାୟିତ୍ୱ ନେବାକୁ ସମ୍ପୂର୍ଣ୍ଣ ଯୋଗ୍ୟ । ମାସକର ମୋର ସେଇ ସ୍ୱଳ୍ପ ପଦାଧିକାର ସମୟରେ ନିମ୍ନୋକ୍ତ ଘଟଣାଟି ଘଟିଲା । ସୀମାନ୍ତର ବଣ୍ୟ ଆଫଗାନ ଉପଜାତିମାନେ ସବୁବେଳେ ଛୋଟ ଧରଣର ଆକ୍ରମଣ କରୁଥିବାରୁ ସରକାର ଅତିଶୀଘ୍ର ସପ୍ତମ ଗ୍ରାଗୁନଗାର୍ଡ଼ସକୁ ପେଶାବାର ପଠାଇଲେ । ପଞ୍ଜାବର ବଡ଼ ବଡ଼ ନଦୀଗୁଡ଼ିକୁ ଡଙ୍ଗା ତିଆରି ପୋଲ ସାହାଯ୍ୟରେ ସାଧାରଣତଃ ଅତିକ୍ରମ କରାହେଉଥିଲା । ବର୍ଷାଦିନେ ସେଗୁଡ଼ିକୁ କାଢ଼ିନିଆ ହେଉଥିଲା । ସ୍ରୋତର ବେଗ ଯୋଗୁଁ ଓ ବଢ଼ିର ସମ୍ଭାବନା ଯୋଗୁଁ ସେତେବେଳେ କେବଳ ନୌକାରେ ପାରଉତାର କାମ ହେଉଥିଲା । ବର୍ଷାଦିନ ଅନ୍ତଦିନ ହେଲା ଯାଇଥିଲା ଏବଂ ଚେନାବ ଉପରେ ନୌକାର ପୋଲ ଯେପରି ଅତିଶୀଘ୍ର ହୁଏ ତାହା ଦେଖିବାପାଇଁ ମୋତେ ନିର୍ଦ୍ଦେଶ ଦିଆଯାଇଥିଲା, ଯେପରିକି ସୈନ୍ୟବାହିନୀ ଯିବାରେ ଡେରି ନ ହୁଏ । ନୌକାସବୁ ଭଡ଼ାରେ ଆଣି ତା'କୁ ଲଗେଇବା ପାଇଁ ସାଧାରଣତଃ କିଛି ସମୟ ଗଲା । ପଞ୍ଚସ୍ତରିଟି ନୌକା ସଂଗ୍ରହ କରି, ନଙ୍ଗର ଭିଡ଼ାଇ, ଯଥାସ୍ଥାନରେ ଖଞ୍ଜି ସେସବୁ ଉପରେ ପଟା ରାସ୍ତା ବାନ୍ଧିବା ପାଇଁ ମୋ ହାତରେ ମାତ୍ର ତିନିଦିନ ସମୟ ଥିଲା । ଦାରୋଗା ବା ଦାୟିତ୍ୱରେ ଥିବା ଅଫିସର ବାଷଠିଟି ଡଙ୍ଗା ସଂଗ୍ରହ କରିଥିଲେ ଏବଂ ପଟାସବୁ ମଧ୍ୟ ପ୍ରସ୍ତୁତ କରି ରଖିଥିଲେ; କିନ୍ତୁ ଜଣେଇ ଦେଲେ ଯେ, ଏତେ କମ୍ ସମୟ ମଧ୍ୟରେ ଆଉ ଅଧିକ ପାଇଲେ ନାହିଁ । ମୁଁ ଗୋଟିଏ ଛୋଟିଆ ଆହୁଲା ଡଙ୍ଗାରେ ଛ'ଜଣ ପୋଲିସ୍ ନେଇ ଦିନଯାକ ନଦୀ ମଧ୍ୟରେ ବୁଲିଲି । ଗୋଟିଏ ଡଙ୍ଗା ପାଇଲା ମାତ୍ରେ ଆମେ ତାକୁ ଧରିଆଣି ଜଣେ ପୋଲିସ୍ ଦାୟିତ୍ୱରେ ପୋଲ ପାଖକୁ ପଠାଇ ଦେଉଥିଲୁ । ସେଦିନ ରାତି ୧୦ଟା ସୁଦ୍ଧା ମୁଁ କେତେଗୁଡ଼ିଏ ନୌକା ସଂଗ୍ରହ କଲି ଏବଂ ଟିକିଏ ଶୋଇ ପଡ଼ିବା ପାଇଁ ଘୋଡ଼ାରେ ଚଢ଼ି ଘରକୁ ଫେରିଲି । ପରଦିନ ସକାଳୁ ମୁଁ ପୁଣି ସ୍ଥାନ ଉପରକୁ ଯାଇ ନଦୀ ଭିତରକୁ ଗଲି । ପାଞ୍ଚଟା ସୁଦ୍ଧା ମୁଁ ୭୪ଟି ନୌକା ସଂଗ୍ରହ କରିସାରିଥିଲି । ଆଉ ଗୋଟିଏ ମାତ୍ର ଦରକାର ପଡୁଥିଲା । ପୋଲର ଅଳ୍ପ କେତେ ଗଜ ଦୂରରେ ଓ୍ୱାଜିରାବାଦଠାରେ ଶସ୍ୟ ବୋଝେଇ ବଡ଼ ନୌକାଟିଏ ବନ୍ଧା ହୋଇଥିଲା । ଏହାକୁ ନ ନେବା ପାଇଁ ଏହାର ମାଲିକମାନେ ମୋତେ କାନ୍ଦି କାନ୍ଦି ଅନୁରୋଧ କରୁଥିଲେ । ତା' ଦ୍ୱାରା ତାଙ୍କର ଗୁରୁତର କ୍ଷତି

ହେବ ବୋଲି ସେମାନେ କହୁଥିଲେ । ମୁଁ ଦ୍ୱିଧାଗ୍ରସ୍ତ ହେଉଥିବାବେଳେ ଘୋଡ଼ା ଟାପୁର ଶବ୍ଦ ଶୁଣାଗଲା ଏବଂ ଲାହୋର୍‌ର କମିଶନର ଶ୍ରୀ ରିଚାର୍ଡ଼ ଟେମ୍ପଲ୍ ଧସେଇ ପଶି ଆସିଲେ । ତାଙ୍କ ପଛରେ ଛ'ଜଣ ଖଣ୍ଡେ ଘୋଡ଼ସବାର ଅର୍ଦ୍ଦଳି ଥିଲେ । ସେ ଗୋଟିଏ ଲୁହା ଟୋପି ଓ ଚକମକିଆ ଲାଲ ଓ ସୁନାରଙ୍ଗର ପଗଡ଼ି ପିନ୍ଧିଥିଲେ । ତାଙ୍କର ଲମ୍ବ ଓ ଭୟଙ୍କର ନିଶ ମୁନିଆଁ ହୋଇ ବାହାରିଥିଲା ସମ୍ରାଟ୍ ୩ୟ ନେପୋଲିଅନଙ୍କୁ ଅନୁକରଣ କରି, ଯାହାଙ୍କ ଚେହେରା ସହ ତାଙ୍କର ସାମ୍ୟ ଅଛି ବୋଲି ଭାବି ସେ ଆତ୍ମପ୍ରସାଦ ଅନୁଭବ କରନ୍ତି । ପ୍ରକୃତରେ ସେ ସମ୍ରାଟ୍‌ଙ୍କୁ ବ୍ୟଙ୍ଗକରି 'ପଞ୍ଚ୍' ଯେଉଁ ଚିତ୍ର କାଢ଼ିଥିଲେ ସେହିପରି କଦାକାର ସେ ଦେଖାଯାଉଥିଲେ । ମୁଁ କଅଣ କରିଛି, ତାହା ସେ ପରୀକ୍ଷା କଲେ, ଠିକ୍‌ଥିବା ସ୍ୱୀକାର କଲେ ଏବଂ ମୋତେ ବିସ୍ମିତ କରି କହିଲେ ଯେ ମୁଁ ବର୍ତ୍ତମାନ ମୋ ଜାଗାକୁ ଫେରିଯାଏ, ସେ ବାକିତକ କାମ କରିଦେବେ । ମୁଁ ଯିବାପରେ ସେ ସେହି ଶସ୍ୟ ବୋଝେଇ ନୌକାଟିକୁ ଧରି ଯଥାସ୍ଥାନରେ ଭର୍ତ୍ତି କରିଦେଇ ପୋଲଟି ପ୍ରସ୍ତୁତ କରିଦେଲେ । ଦେଖାଗଲା ଯେ କୋଲନେଲଙ୍କ ପଛରେ ସୈନ୍ୟବାହିନୀ ନଦୀତୀରରେ ପହଞ୍ଚିବାବେଳେ ସେ ଏକ ଛବିଳ ଭଙ୍ଗୀରେ ଠିଆହୋଇ ସେ କାମର ଶେଷ ପର୍ଯ୍ୟାୟ ବୁଝୁଚନ୍ତି । ସେଇ ରାତିରେ ତାଙ୍କୁ ବାହିନୀର ଭୋଜନାଳୟକୁ ନିମନ୍ତ୍ରଣ କରାଗଲା, ଯେଉଁଠି ସେମାନେ ସୁରାପାନରେ ତାଙ୍କ ସ୍ୱାସ୍ଥ୍ୟ କାମନା କଲେ ଏବଂ ଏପରି ବିରାଟ ଦୁଃସାଧ ନଦୀରେ ପୋଲ କରିଦେଇ ସେ ଯେ ଗୁରୁତ୍ୱପୂର୍ଣ୍ଣ ସେବା କରିଛନ୍ତି ତାହା କୋଲନେଲ୍ ଉପରବାଲାଙ୍କୁ ଜଣାଇଦେଲେ । ସେ ବଡ଼ଲାଟଙ୍କ ଧନ୍ୟବାଦ ଲାଭକଲେ । ମୋ ନାମର ଉଲ୍ଲେଖ ମଧ କରାଗଲା ନାହିଁ । ଏହିପରି ସେ ଏତେ ଉଚ୍ଚରେ ଥାଇ ଓ ନିଜ ଉନ୍ନତିର ପଥ ସୁନିଶ୍ଚିତ ଥାଇ ମଧ ସେ ପର୍ଯ୍ୟନ୍ତ କୌଣସି ସୁନାମ ପାଇ ନଥିବା ଜଣେ ତରୁଣ ଅଫିସର, ଯାହାପାଇଁ ପ୍ରଶଂସା ଖୁବ୍ ମୂଲ୍ୟବାନ୍ ତା'ର ବାହାଦୁରିଟିକ ଛଡ଼ାଇନେବା ପାଇଁ କୁଣ୍ଠିତ ହେଲେ ନାହିଁ ।

ଏହା ପରେ ପରେ ହାର୍ଡ଼ିଞ୍ଜ ଫେରିଆସିଲେ । ଅକ୍ଟୋବରରେ ଏଲେନ ଗ୍ରୀଅରୀଠାରୁ ଚିଠି ପାଇଲି ଯେ, ସଙ୍ଗେ ସଙ୍ଗେ ସେ ଚାଲିଆସିବାକୁ ବସିଲାଣି । ବାପା ମୋ ଉପରେ ଯେଉଁ ଦୁଇବର୍ଷିଆ ସର୍ତ୍ତ ଆରୋପ କରିଥିଲେ ତାହାକୁ ମୁଁ କଡ଼ାକଡ଼ି ଆକ୍ଷରିକ ଭାବରେ ପାଳନ କରିନେଇଥିଲି । ୧୮୫୭ ଡିସେମ୍ବର ୭ରେ ମୁଁ ହେଲିବରୀ ଛାଡ଼ିଥିଲି ଏବଂ ମୁଁ ଏପରି ବ୍ୟବସ୍ଥା କଲି ଯେପରି ୧୮୫୯ ଡିସେମ୍ବର ୭ କିମ୍ବା ତା' ପାଖାପାଖି ବିବାହ ପାଇଁ ଏଲେନ ଭାରତରେ ପହଞ୍ଚିବ । ଶ୍ରୀମତୀ ମ୍ୟାକ୍‌ଡ଼ସ୍‌ଲାଣ୍ଡ ତାଙ୍କ ନିର୍ଘଣ୍ଟ ବଦଳାଇଦେବାରୁ ବିବାହରେ ବୟସ୍କା ସହଚରୀ ହେବାପାଇଁ ଅନ୍ୟ ଏକ ମହିଳା କୋଲନେଲ ବେଚରଙ୍କ ପତ୍ନୀ ଶ୍ରୀମତୀ ବେଚର ମିଳିଲେ । ହାର୍ଡ଼ିଞ୍ଜ ମନେକରନ୍ତି ଯେ ସେ ସ୍ତ୍ରୀଲୋକମାନଙ୍କ ଦ୍ୱାରା ଆଦୃତ ଓ ସେମାନଙ୍କ ମନକଥା ଜାଣନ୍ତି । ସେ ଦାୟିତ୍ୱ ନେଲେ ଯେ, ମୋର ଅବିବାହିତମାନଙ୍କ ପାଇଁ ଉଦ୍ଦିଷ୍ଟ ନିରାଡ଼ମ୍ବର ବଙ୍ଗଳାଟିକୁ ଯଥାଯୋଗ୍ୟ ଭାବରେ ସଜାଇଦେବେ । ମୁଁ କଲିକତାରେ ଏକ ବଗିଗାଡ଼ି କିଣିଥିଲି ଏବଂ ଜଣେ ମହିଳାକୁ ବୋହିଲା ଭଳି ମୋ ଧଳା ଘୋଡ଼ାଟିକୁ ତାଲିମ ଦେଲି । ହାର୍ଡ଼ିଞ୍ଜ ପରଦା, ଦର୍ପଣ, ସୋଫା ଓ ଅନ୍ୟାନ୍ୟ ଗୃହସଜ୍ଜା ଉପକରଣ [illegible] ।

ଧନା ସରୁ କନା ବିଛାହୋଇ ଲାଲକନା ସବୁ ଝୁଲୁଥିବା ଡ୍ରେସିଂ ଟେବୁଲଟିଏ କରି ସେ ବିଶେଷ ବାହାଦୁରି ନେଲେ । ଏହା ଏକ ବଡ଼ିଆ କାମ ବୋଲି ସମସ୍ତେ ସ୍ୱୀକାର କଲୁ । ଏଲେନ୍‌କୁ ଭେଟିବାପାଇଁ ଦିଲ୍ଲୀ ଯିବାକୁ ମୁଁ ଛୁଟି ମାଗିଲି । ସେତେବେଳେ ଦିଲ୍ଲୀ ପ୍ରଭୃତି ଅଳ୍ପ କେତେକ ଜାଗାରେ ମାତ୍ର ଧର୍ମଯାଜକ ମିଳୁଥିଲେ । ମୁଁ ସେଠାରେ ପହଞ୍ଚିଲାବେଳକୁ ଧର୍ମଯାଜକ ସେଠାରୁ ୧୫୦ ମାଇଲ ଦୂର ଏକ ସ୍ଥାନକୁ ଯାଇଥିଲେ । ସାଙ୍ଗେ ସାଙ୍ଗେ ମୋର ଇଲିଅଟ୍ କଥା ମନେପଡ଼ିଲା । ସେଠାରୁ ୩୦ମାଇଲ ଆଗକୁ ବୁଲନ୍ଦସରକୁ ଗଲି । ସେଠାରେ ସେ ମୋତେ ସ୍ୱାଗତ କରି ଢ଼ଲେକ ନାମଧାରୀ ଜଏଣ୍ଟ ମାଜିଷ୍ଟ୍ରେଟଙ୍କ ସହ ପରିଚୟ କରାଇଦେଲେ । ଶ୍ରୀମତୀ କଲେକ ଏ ସମ୍ପର୍କରେ ସ୍ତ୍ରୀଲୋକ, ସୁଲଭ ଆଗ୍ରହୀ ହୋଇ ତାଙ୍କରି ଘରେ ବାହାଘର ହେବାପାଇଁ ଜୋର ଦେଲେ । ପରଦିନ ଇଲିଅଟ ଓ ମୁଁ ବଙ୍ଗଳା କମାଣବାହିନୀର ସଦରଦପ୍ତର ମିରଟକୁ ଯାଇ ସେଠାରେ ଅତିଥି ହେଲୁ । ସେହି ବାହିନୀରେ ଇଲିଅଟ୍‌ର ଜଣେ ସମ୍ପର୍କୀୟ ଭାଇ ଥିଲେ । ଆମେ ଜଣେ ପାଦ୍ରୀ, କନ୍ୟାର ଦୁଇ ସହଚରୀ ଏବଂ ମେସ୍ ଚାଳକଙ୍କ ଦୟାରୁ ସୁନ୍ଦର ବାହାଘର କେକ୍‌ଟିଏ ଯୋଗାଡ଼ କଲୁ । ମିରଟ୍‌ର ଜଣେ ଦରଜିଠାରୁ ପୂରା ପୋଷାକଟିଏ କରାଇଲି ଏବଂ କନ୍ୟାର ସହଚରୀମାନଙ୍କ ପାଇଁ କିଛି ଉପହାର କିଣିଲି । କମାଣବାହିନୀର ଅଧସ୍ତନ କର୍ମଚାରୀମାନେ ଏହି ଆୟୋଜନରେ ଖୁବ୍ ଆଗ୍ରହ ଦେଖାଇ ମୁଁ କମଳା ଫୁଲର ଦୁଇଟା 'ଗୋଳ୍' (ତାକୁ ସେମାନେ ସେପରି କହନ୍ତି) କିଣେ ବୋଲି ଜୋର୍ ଦେଲେ ଏବଂ କହିଲେ ଯେ, ତାହା ବିନା କୌଣସି ବିବାହ କାମ ହୋଇପାରେନା । କମାଣବାହିନୀ ମେସ୍‌ରେ ଆନନ୍ଦରେ ସମୟ କଟାଇବା ପରେ ଆମେ ବୁଲନ୍ଦସର ଫେରିଲୁ ।



# ଅଷ୍ଟମ ପରିଚ୍ଛେଦ

## ବିବାହ : ୧୮୬୦

କଲିକତାରୁ ଏଲେନ ଲେଖିଥିବା ଏକ ଚିଠି ମୁଁ ଦିଲ୍ଲୀରେ ପାଇଲି । ସହୃଦୟା ଶ୍ରୀମତୀ ହୋ ତା'ର ଦାୟିତ୍ୱ ନେଇଥିଲେ । ତା'ଭାଇ ହେନେରୀ ଗ୍ରୀଅରୀ ଛୁଟି ନେଇ କଲିକତାରେ ତା'ସହ ଯୋଗ ଦେଲେ । ଭାଇ ଓ ୫୧ତମ ବାହିନୀର କ୍ୟାପ୍‌ଟେନ୍ କିଓ୍ୱାର୍ଥଙ୍କ ସହ ଏଲେନ୍ ଦିଲ୍ଲୀକୁ ଆସିବାପାଇଁ ପ୍ରସ୍ତୁତ ହୋଇଯାଇଥିଲା । ସୁନ୍ଦରୀ, ପ୍ରଫୁଲ୍ଲମନା, କମ୍‌ବୟସ୍କା ଆଇରିଶ ମହିଳା ଶ୍ରୀମତୀ କିଓ୍ୱାର୍ଥ ଏଲେନ୍‌କୁ କଢ଼େଇ ଆଣିବାର ଠିକ୍ ହେଲା । ସେମାନେ ଡିସେମ୍ବର ୨ ବା ୩ରେ ଦିଲ୍ଲୀରେ ପହଞ୍ଚିଯାଇ ପାରନ୍ତି । ମୋର ଯୋଜନା ବର୍ତ୍ତମାନ ବଦଳିଯାଇଥିବାରୁ ଘୋଡ଼ସବାର ପୋଲିସ୍‌ମାନଙ୍କୁ ଖୁର୍ଜାଠାରେ ରଖାଇ ଦିଆଗଲା । ଏଇଠାରୁ ଗ୍ରାଣ୍ଡ ଟ୍ରଙ୍କ୍ ରୋଡ଼ରୁ ବୁଲନ୍ଦ୍‌ସରକୁ ଶାଖାରାସ୍ତା ଯାଇଛି । ସେଇଠାକୁ ଆସିବାକୁ ସେମାନଙ୍କ ପାଖକୁ ମୋର ଏକ ଚିଠି ପୋଲିସଙ୍କ ପାଖରେ ଥିଲା । ଏହା ନଭେମ୍ବର ୨୪ ବା ୨୫ର କଥା । ତେଣୁ ଆମକୁ ଆଉ ସପ୍ତାହେ ଅପେକ୍ଷା କରିବାକୁ ପଡ଼ିବ । ଏଇଠି ବାଧା ସୃଷ୍ଟି ହେଲା । ଲର୍ଡ଼ କ୍ୟାନିଂ ତାଙ୍କର ସମସ୍ତ କର୍ମଚାରୀ ଓ ବହୁ ସଂଖ୍ୟକ ସୈନ୍ୟ (କେତେ ରେଜିମେଣ୍ଟ ମୋର ମନେ ନାହିଁ) ଧରି ଭାରତ ମଧ ଦେଇ ଦରବାର କରି ସବୁ ଶ୍ରେଣୀର ଲୋକଙ୍କଠାରୁ ଆନୁଗତ୍ୟର ପ୍ରତିଶ୍ରୁତି ଆଦାୟ କରି ଏବଂ ଭଲ କାମ କରିଥିବା ଲୋକମାନଙ୍କୁ ପୁରସ୍କୃତ କରି ଏକ ଅର୍ଦ୍ଧରାଜକୀୟ ଭ୍ରମଣ କରୁଥିଲେ ଏବଂ ବିଦ୍ରୋହର ଶେଷ ଅଗ୍ନିକଣା ଯେ ଲିଭିଗଲାଣି ସେ ବିଷୟରେ ନିଜକୁ ସାନ୍ତ୍ୱନା ପ୍ରଦାନ କରୁଥିଲେ । ସମସ୍ତ ଜିଲ୍ଲା ଅଫିସର ଏହି ବିରାଟ ବାହିନୀ ପାଇଁ ଖାଇବା ରସଦ ଯୋଗାଣ, ସେମାନଙ୍କ ପାଇଁ ଶିବିର ସ୍ଥାପନ ଓ ପରିବର୍ଦ୍ଧନ ଏବଂ ସବୁ ବିଷୟ ଯେ ଠିକ୍ ଠିକ୍ ଚାଲିଛି ତାହା ଦେଖିବାରେ ଲାଗିପଡ଼ିଲେ । ଦେଶୀ ଲୋକଙ୍କୁ ନିରସ୍ତ୍ର କରିବା କାମ ମଧ ଜୋର୍‌ସୋର୍‌ରେ ଲାଗିଲା । ସେହି ଜାଗାରେ କିଛି କରିବା ପାଇଁ ଇଲିଅଟଙ୍କୁ ସପ୍ତାହେ ମଧ ଛାଡ଼ ମିଳିଲା ନାହିଁ ଏବଂ ତାକୁ ଶିବିରକୁ ଯିବାକୁ ପଡ଼ିଲା । ମୁଁ ତା'ର ଅତିଥି ଥିବାରୁ ଓ ତା'ର ଆସବାବପତ୍ର ଖୁବ୍ କମ୍ ଥିବାରୁ ମୁଁ ମଧ ବାଧହୋଇ ତା' ସଙ୍ଗେ ଗଲି । ଅବଶ୍ୟ ଏଲେନ୍ ଓ ତା'ଦଳ ପହଞ୍ଚିଗଲେ ମୋତେ ଡାକିଦେବା ପାଇଁ ଗୋଟାଏ ଘୋଡ଼ସବାର ପୋଲିସ୍ ପଠାଇବାକୁ କଲେକ୍ଟ ପ୍ରତିଶ୍ରୁତି ଦେଲେ । ତେଣୁ ଆମେ ବୁଲନ୍ଦ୍‌ସହରରୁ କୋଡ଼ିଏ ମାଇଲ ଦୂର ନବୀନଗରଠାରେ ଶିବିର ପକେଇଲୁ । ସେଠି ଥିଲା ଇଲିଅଟ୍‌ର ପ୍ରଧାନ କାମ । ଅସ୍ତ୍ରଶସ୍ତ୍ର ସବୁ କାଢ଼ି ନିଆଯିବ ଜାଣି ଲୋକେ ସେସବୁକୁ ସେମାନଙ୍କ ଘର ଚଟାଣ ତଳେ ଲୁଚେଇଲେ; କିନ୍ତୁ ଏସବୁ ମିଥ୍ୟା ବୋଲି ଜଣାଯିବାରୁ ବଳପ୍ରୟୋଗ କରାଗଲା ଏବଂ ଅନେକ ବଡ଼ବଡ଼ିଆ ବୃଦ୍ଧ ରାଜପୁତ୍ରଙ୍କୁ, ସେମାନେ ତାଙ୍କ ପୁରୁଣା ଖଣ୍ଡା ଓ ନିଆଁଧରା ବନ୍ଧୁକ ଦେଇ ନ ଦେବା ପର୍ଯ୍ୟନ୍ତ

ଉଲଗ୍ନ କରାଇ ସର୍ବସାଧାରଣରେ ପ୍ରହାର କରାଗଲା । ଏ ଧରଣର ବ୍ୟବସ୍ଥା ଥିଲା ଏକ ନିର୍ବୋଧ ଭ୍ରାନ୍ତ ରାଜନୀତି ଏବଂ ତାହା ଅତି ପାଶବିକ ରୀତିରେ କାର୍ଯ୍ୟକାରୀ ହେଉଥିଲା । ଏହି କାମରେ ନିଯୁକ୍ତ ଅନ୍ୟାନ୍ୟ ଅଫିସରମାନଙ୍କ ପରି ଇଲିଅଟ୍‌କୁ ଏ କାମ ବିରକ୍ତିକର ଲାଗୁଥିଲା । ଏ ଧରଣର ଜୀବନ କିଛିଦିନ ବିତିବା ପରେ ଦିନେ ରାତି ପ୍ରାୟ ୯ଟାବେଳେ ଖାଇସାରି ଆମେ ତମ୍ବୁରେ ବସିଛୁ ଜଣେ ସୱାର ଏଲେନ୍‌ଠାରୁ ଖଣ୍ଡେ ଚିଠି ନେଇ ପହଞ୍ଚିଲା— ପେନ୍‌ସିଲ୍‌ରେ ଲେଖା ଛୋଟ କାଗଜ ଖଣ୍ଡେ । ସେଥିରେ ଥିଲା, ସେ ଆସି ପହଞ୍ଚିଛି ଏବଂ ମୋତେ ଚାଲିଆସିବାକୁ କହିଛି । ଚିଠିର ଲେଖାରୁ ଜଣାଯାଉଥିଲା... ଯେପରିକି ମୁଁ ରାସ୍ତା ଆରପଟେ ରହୁଚି ବୋଲି ସେ ଭାବିଥିଲା ଏବଂ ପରେ ଜାଣିଲି ସେଇଆ ହିଁ ସେ ପ୍ରକୃତରେ ଭାବିଥିଲା । ଭାରତ ବିଷୟରେ ତା'ର ଅଜ୍ଞତା ହେତୁ ସେ ଭାବିପାରିଲା ନାହିଁ ଯେ ଯେତେବେଳେ ଶ୍ରୀମତୀ କଲେଜ କହିଲେ ମୁଁ ବେଶୀ ଦୂରରେ ନାହିଁ ବୋଲି, ତାଙ୍କ କହିବା ଅର୍ଥ ମୁଁ ଏଇ ୨୦ମାଇଲ ମାତ୍ର ଦୂରରେ ଅଛି । ଦଳଟି ସନ୍ଧ୍ୟା ଛ'ଟାବେଳେ ପହଞ୍ଚିଥିବେ । ଏଲେନ୍ ଓ ଶ୍ରୀମତୀ କିୱାର୍ଥଙ୍କୁ ଶୟନାଗାର ଦେଖାଇ ଦିଆଗଲା, ହ୍ୟାରି ଓ କିୱାର୍ଥଙ୍କୁ ତମ୍ବୁ ଦିଆଗଲା । ମୁଁ କେଉଁଠି ଅଛି ବୋଲି ସେମାନେ ପଚାରିବାରୁ ଏଲେନ୍‌କୁ କୁହାଗଲା ଯେ ମୋ ପାଖକୁ ଖଣ୍ଡେ ପତ୍ର ଲେଖିଦେଲେ ତାହା ସଙ୍ଗେ ସଙ୍ଗେ ପଠାଇ ଦିଆଯିବ । ଭୋଜନ ସମୟରେ ମୁଁ ନ ଆସିବାରୁ ସେମାନେ ଖୁବ୍ ଆଶ୍ଚର୍ଯ୍ୟ ହେଲେ; ସେତେବେଳେ ଯାଇ ସେମାନେ ବୁଝିଲେ ମୁଁ କେତେ ଦୂରରେ ଥିଲି । ତା'ପରେ ଚାଲିଲା ଆଲୋଚନା; କେତେକ କହିଲେ ମୁଁ ସେ ରାତିରେ ଆସିପାରିବି ନାହିଁ; କିନ୍ତୁ ଅନ୍ୟମାନେ କହିଲେ ଯେ, ମୋର ଉଦ୍ୟମ ଥିଲେ ମୁଁ ନିଶ୍ଚୟ ଆସିପାରିବି । ସୱାରଟି ପ୍ରେମାସକ୍ତ ନ ଥିବାରୁ ତରତର ହୋଇ ନ ଆସି ସେଇ ଦୂରତ୍ୱକୁ ତିନିଘଣ୍ଟା ନେଇଥିଲା । ସେ ଚିଠିଟିକୁ ପାଇବାମାତ୍ରେ ମୁଁ ଇଲିଅଟ୍‌ର ସବୁଠାରୁ ଦ୍ରୁତଗାମୀ ଘୋଡ଼ାଟିକୁ ନେଲି । ସୌଭାଗ୍ୟବଶତଃ ସେ ସେଦିନ ତା' ଉପରେ ବେଶୀବାଟ ଚଢ଼ିନଥିଲା । ଉଜ୍ଜ୍ୱଳ ଚନ୍ଦ୍ରପକ୍ଷ ରାତ୍ରିରେ ମୁଁ ଯାତ୍ରା ଆରମ୍ଭ କରିଦେଲି ଅବିଶ୍ରାନ୍ତ ବେଗରେ । ମୁଁ ପହଞ୍ଚିବା ପୂର୍ବରୁ ସେମାନେ ଶୋଇଯାଇଥିବେ ବୋଲି ଯେଉଁ ଆଶଙ୍କା କରୁଥିଲି ତାହାହିଁ ହେଲା । ଘୋଡ଼ାରେ କଦମ ଛୁଟାଇ ଘର ପାଖରେ ପହଞ୍ଚିଲାବେଳକୁ ସବୁ ନିସ୍ତବ୍ଧ ଓ ଅନ୍ଧାର । ସେତେବେଳକୁ ଠିକ୍ ୧୧ଟା ହୋଇଥିଲା । ମୁଁ ଦେଢ଼ଘଣ୍ଟାରେ ୨୦ମାଇଲ ଆସିଥିଲି । ପାଟିକରି ସଇସକୁ ଡାକିଲି ଏବଂ ଆସିଗଲିଣି ବୋଲି ସେମାନଙ୍କୁ ଜଣାଇ ଦେବାପାଇଁ ଯଥାସାଧ ଶବ୍ଦ କଲି । ଏହା ଶୁଣି ପାଇଜାମା ଓ ଶୋଇବା ପୋଷାକରେ କଲେଜ୍ ବାହାରି ଆସି ମୋତେ ଚୁପ୍ ହେବାପାଇଁ ଅନୁରୋଧ କଲେ । ସେ କହିଲେ ଯେ ମୁଁ ଆସିବି ବୋଲି ସେମାନେ ଆଶାକରି ନ ଥିଲେ (ଏହା ସତ୍ୟ ନୁହେଁ) ଏବଂ ଅତି କ୍ଳାନ୍ତ ଥିବାରୁ ଶୋଇପଡ଼ିଲେ । ତା'ପରେ ସେ ମୋତେ ଅଲଗା ଘରକୁ ଡାକିନେଇ ମୁଁ ପୋଷାକ ଉତାରିବା ପର୍ଯ୍ୟନ୍ତ ମୋ ପାଖରେ ବସିରହିଲେ, ଯେପରିକି ସେହି ରାତିରେ ମୁଁ ଆଉ ସାକ୍ଷାତ୍ କରିବା ପାଇଁ ଚେଷ୍ଟା କରିବି ନାହିଁ ବୋଲି ସେ ନିଶ୍ଚିତ ହେବାକୁ ଚାହାନ୍ତି । ଯାହହେଉ ସେ ପିଠି ବୁଲାଇବା ସଙ୍ଗେ ସଙ୍ଗେ ମୁଁ ତରତର ହୋଇ ପୋଷାକ ପିନ୍ଧିପକାଇ ବାହାରିଗଲି ଏବଂ ଏଲେନ୍ ଯେଉଁ ଘରେ ଥିଲା ବୋଲି ଜାଣିଥିଲି ଖୋଜି ଖୋଜି ସେଇ ଘରକଡ଼କୁ ଚାଲିଗଲି । ସେଠାରେ ଝରକାର ପଟାକୁ ବାଡ଼େଇ ତା' ନାଁ ଧରି ଡାକିଲି । କିଛି ଉତ୍ତର ନ ଆସିବାରୁ ମୁଁ ଧରିନେଲି ଯେ ସେ ଶେଯରେ

ଶୋଇଗଲାଣି । ବାସ୍ତବରେ ସେ ଏବଂ ଶ୍ରୀମତୀ କିଓ୍ବାର୍ଥ ପୂରା ବିଶ୍ୱାସ କରିଥିଲେ ଯେ, ମୁଁ ସେଇ ରାତିରେ ଆସିବି । ଶ୍ରୀମତୀ କଲେଜ ବାଧ୍ୟ କରିବାରୁ ସେମାନେ ବିରକ୍ତ ହୋଇ ଶୋଇବାକୁ ଗଲେ ମଧ୍ୟ ଅଧରାତି ପର୍ଯ୍ୟନ୍ତ ମୋତେ ଅପେକ୍ଷାକରି ବସିଥିଲେ ଏବଂ ଶେଷରେ ମୋ ପ୍ରେମିକପଣିଆ ବିଷୟରେ ଖୁବ୍ ନୀଚ ଧାରଣା ପୋଷଣ କରି ଶୋଇଲେ । ମୁଁ ଝରକାପଟା ବାଡ଼େଇ ଡାକିବାରେ ସେମାନେ କାହିଁକି ନ ଶୁଣିଲେ କିମ୍ବା କଲେଜ ଯେ କାହିଁକି ସେମାନଙ୍କୁ ଉଠାଇବା ପାଇଁ ମୋତେ ଅନୁମତି ଦେଲେ ନାହିଁ ମୁଁ ଜାଣେନା । ଯାହାହେଉ ଚନ୍ଦ୍ରାଲୋକିତ ରାତିରେ ଘୋଡ଼ା ଝପଟାଇ ଯିବାର ରୋମାଞ୍ଚ, ବୁଟ୍, ଖାକିପ୍ୟାଣ୍ଟ ଅଣ୍ଟାରେ ଗୁଡ଼ାଇଥିବା ନୀଳ ଓ ସୁନାରଙ୍ଗର ଚାଦରର ସୁନ୍ଦର ପୋଷାକ, ଘନ ଘନ ନିଃଶ୍ୱାସ ନେଉଥିବା ଘୋଡ଼ା, ଉଷ୍ମ ଆଲିଙ୍ଗନ ଏ ସବୁ ବ୍ୟର୍ଥ ହୋଇଗଲା ପରି ବୋଧ ହେଲା । ପ୍ରକୃତ ସାକ୍ଷାତ ହେଲା ପରଦିନ ସକାଳେ ଖୁବ୍ ମାମୁଲି ଓ ଗଦ୍ୟ ଭଙ୍ଗୀରେ । ମୁଁ ପ୍ରଥମେ ହେନେରୀ ଗ୍ରୀଅରିକୁ ଭେଟିଲି । ସେ ମୋ ଚଷମାକୁ ପସନ୍ଦ କଲା ନାହିଁ । ଇଂଲାଣ୍ଡରେ ମୁଁ ତାହା ପିନ୍ଧୁ ନ ଥିଲି । ସେ ଭାବିଲା ତା' ଭଉଣୀ ମନରେ ତାହା ଖରାପ ଧାରଣା ସୃଷ୍ଟି କରିବ । ତେଣୁ ତାକୁ ସେ କାଢ଼ିନେଲା । ଫଳରେ ମୁଁ ଯେତେବେଳେ ଏଲେନ୍ ଥିବା ଘରକୁ ଗଲି ତାକୁ ସ୍ପଷ୍ଟ ଦେଖିପାରିଲି ନାହିଁ, ଚେହେରାଟା ମୋତେ ଅଲଗା ଜଣାପଡ଼ିଲା । ମୁଁ ତାକୁ ଶ୍ରୀମତୀ କିଓ୍ବାର୍ଥ ବୋଲି ଭାବି କେବଳ ନଇଁପଡ଼ିଲି ଏବଂ ନମ୍ର ଭାବରେ କହିଲି— 'ସୁପ୍ରଭାତ' ! ତା'ପରେ ଅତି ପରିଚିତ କଣ୍ଠର ଚିତ୍କାର ଶୁଣିଲି, ''ହେ ଜନ୍, ସେତିକି କ'ଣ ଯଥେଷ୍ଟ ?'' ମୁଁ ମୋ ଭୁଲ ବୁଝିପାରି ତା' ନିକଟକୁ ଧାଇଁଯାଇ ଯଥାଯୋଗ୍ୟ ଅଭ୍ୟର୍ଥନା ଜଣାଇଲି; କିନ୍ତୁ ନିସ୍ପୃହ ଭାବ କିଛିସମୟ ରହିଲା । ପ୍ରାତରାଶ ପରେ ଆମେ ବହୁ ସମୟ ଧରି ଗପ କଲାବେଳେ କେତେ ଦୂରରେ ମୁଁ ଥିଲି ତାହା ତାକୁ କହିଲି— ଚିଠି ପାଇ ଘୋଡ଼ାରେ କିପରି ଆସିଚି, ନିର୍ବୋଧ ବୃଦ୍ଧ କଲେଜ କିପରି ଆମ ସାକ୍ଷାତ୍‌କୁ ଅଟକାଇ ଦେଲେ ତାହା କହିଲି । ସେତେବେଳେ ଯାଇଁ ମେଘ କଟିଲା । ନିର୍ବୋଧ ଲୋକେ କେତେ ଗଣ୍ଡଗୋଳ କରି ଦେଇପାରନ୍ତି ଏ ଘଟଣା ତା'ର ଏକ ସୂଚକ ।

ସେ ଦଳର ଅନେକ ଲୋକ ସେ ଘରେ ରହୁଥିଲେ ଏବଂ କେତେ ଦିନ ପର୍ଯ୍ୟନ୍ତ ଆମେ ମଉଜ କଲୁ । ଶେଷରେ ସେଠାରେ ଗିର୍ଜା ନ ଥିବାରୁ କଲେଜଙ୍କ ବୈଠକଖାନାରେ ୧୮୫୯ ଡିସେମ୍ବର ଦଶ ତାରିଖରେ ଆମର ବିବାହ ହେଲା । ହେନେରୀ ତା' ଭଉଣୀପାଇଁ କର୍ତ୍ତା ହେଲା ଏବଂ ମୋ ପକ୍ଷରୁ ଇଲିଅଟ୍ ହେଲା ପ୍ରଧାନ ପୁରୁଷ । ବିବାହର ପ୍ରାତଭୋଜନଟା ଚୌକସ୍ ହେଲା । ତା'ପରେ ଜଣେ ଦେଶୀୟ ରାଜାଙ୍କ ଗାଡ଼ିରେ ଚାଉଳ ଓ ପୁରୁଣା ଜୋତାର ବର୍ଷା ମଧ୍ୟ ଦେଇ ମାଇଲିଏ ଦୂର ଡାକବଙ୍ଗଳାକୁ ଆମେ ବିଦାୟ ହୋଇଗଲୁ । ସେଠାରେ ନିୟମିତ ଡାକଗାଡ଼ି ଆମକୁ ଅପେକ୍ଷା କରିଥିଲା । ସେଠାରେ ଆମେ ଉତ୍ସବ ପୋଷାକ ଖୋଲି ସାଧାରଣ ପୋଷାକ ପିନ୍ଧିଲୁ । ମୋ ସ୍ତ୍ରୀ ବହୁ ମଙ୍ଗାମଙ୍ଗିରେ କ୍ରିନୋଲିନ୍ (ବିରାଟ ବେଲୁନ ଭଳି ଇସ୍ପାତର ପଞ୍ଜର ଥିବା ଅନ୍ତର୍ବାସ) ପିନ୍ଧିବାକୁ ରାଜି ହେଲେ, ଯାହାଫଳରେ ଗାଡ଼ିରେ ମୋ ପାଇଁ ଖୁବ୍ କମ୍ ଜାଗା ରହିଲା । ଆମେ ଅମ୍ବାଲା ଯାଇ ସେଠାରେ ଦୁଇଦିନର ସଂକ୍ଷିପ୍ତ ମଧୁଚନ୍ଦ୍ରିକା ଯାପନ କଲୁ ଏବଂ ତା'ପରେ ପୁଣି ଗୁଜୁରାଟ ଯାତ୍ରା କଲୁ । ଓ୍ବାଜିରାବାଦ୍‌ରେ ଯେଉଁଠି ରାସ୍ତା

ଚେନାବ ନଦୀ ପାର ହୋଇଛି ସେଠାରେ ପହଞ୍ଚିଲାବେଳକୁ ମୋର ନୂଆ , ସୁନ୍ଦର ବଗଟି ଆମକୁ ଅପେକ୍ଷା କରିଥିଲା । ସେଠାରୁ ଗୁଜୁରାଟ ପର୍ଯ୍ୟନ୍ତ ମହାସମାରୋହରେ ଯାତ୍ରା କଲୁ । ଗୁଜୁରାଟର ସବୁ ଦେଶୀୟ ମୁଖ୍ୟ ଆମକୁ ସାକ୍ଷାତ କରିବାପାଇଁ ଘୋଡ଼ାଚଢ଼ି ଆସିଥିଲେ ଏବଂ ଆମକୁ ଘର ଭିତରକୁ ବାଟ କଢ଼ାଇ ନେଲେ । ମୋ ସ୍ତ୍ରୀ ଏପରି ଅଭ୍ୟର୍ଥନାରେ ଆନନ୍ଦିତ ହେଲେ । ଆଲୋକ, ରଙ୍ଗ, ଅପୂର୍ବ ସୁନ୍ଦର ଛବି, ଏସବୁ ଥିଲା ତାଙ୍କ ପାଇଁ ନୂଆ ଏବଂ ଏ ଆଶାତୀତ ଅଭ୍ୟର୍ଥନା ତାଙ୍କୁ ଖୁବ୍ ମୁଗ୍ଧ କଲା । ସେ ନିଜକୁ ଜଣେ ଗୃହହୀନ ଯାଯାବର ବୋଲି ଆଉ ମନେକଲେ ନାହିଁ । ଲୋକେ ତାଙ୍କୁ ସାମାନ୍ୟ ଜଣେ ପର୍ଯ୍ୟଟକଠାରୁ ଅଧିକ କିଛି ମନେ କରୁଛନ୍ତି ଜାଣି, ପୁଣିଥରେ ଘରକୁ ଫେରିଛନ୍ତି ବୋଲି ମନେକଲେ ଏବଂ ଦୁଇବର୍ଷ ହେଲା ଇଂଲାଣ୍ଡ ଛାଡ଼ି ଆସିଥିବା ଯେଉଁ ଲୋକକୁ ସେ ସାମାନ୍ୟ ବାଳକ ମାତ୍ର ବୋଲି ମନେ କରିଥିଲେ, ତାଙ୍କୁ ସବୁସ୍ତରର ଲୋକଙ୍କ ଦ୍ୱାରା ସମ୍ମାନିତ ଜଣେ ଗୁରୁତ୍ୱପୂର୍ଣ୍ଣ, ପ୍ରଭାବଶାଳୀ ବ୍ୟକ୍ତିରୂପେ ଦେଖି ସେ ଆଶ୍ଚର୍ଯ୍ୟ ମିଶ୍ରିତ ଗର୍ବ ଅନୁଭବ କଲେ । ଶେଷରେ ଆମେ ପପୁଲାର ଓ ଗୋଲାପଗୁଳ୍ମ ଶୋଭିତ ଆମର ସେଇ ଛୋଟ ଆନନ୍ଦ ଉତ୍ଫୁଲ୍ଲ ଗୃହଟିରେ ଯାଇଁ ପହଞ୍ଚିଲୁ । ବନ୍ଧୁମାନଙ୍କୁ ବିଦାୟ ଦେବାପରେ ପାରିବାରିକ ଅନୁଭୂତି ଲାଭ କଲୁ । ଭୋଜନପରେ ଯେତେବେଳେ ପରଦାସବୁ ପଡ଼ିଲା ଏବଂ ଆମେ ଏକାଠି କାଠଖଣ୍ଡରେ ଲାଗିଥିବା ଉଜ୍ଜ୍ୱଳ ନିଆଁ ଆଗରେ ବସିଲୁ, ଆମେ ଏକାଠି ନୂଆ ଜୀବନଟିଏ ଆରମ୍ଭ କରିଥିବାରୁ ଖୁବ୍ ଆନନ୍ଦିତ ହେଲୁ । ଏଇ ନୂତନ ଜୀବନଧାରା ଓ ନୂତନ ଲୋକଙ୍କୁ ମୋର ପ୍ରିୟ ପତ୍ନୀ କେତେ ଆନନ୍ଦରେ ଗ୍ରହଣ କରିନେଇଛନ୍ତି, ତା'ଦେଖି, ମୋର ସାଧାରଣ ଛୋଟିଆ ଘର ଓ ତାଙ୍କ ଚତୁର୍ଦ୍ଦିଗର ପଦାର୍ଥକୁ ସେ କିପରି ପ୍ରଶଂସା କରୁଛନ୍ତି ଓ ନିଜର ପରିବେଶରେ ସେ କେତେ ଗଭୀର ଭାବରେ ସନ୍ତୁଷ୍ଟ ଅଛନ୍ତି ଜାଣି ମୁଁ ଖୁବ୍ ଆନନ୍ଦିତ ହେଲି । ମୋ ବିବାହିତ ଜୀବନର ଚରମ ଆନନ୍ଦ ସମ୍ପର୍କରେ ଓ ମୋ ପ୍ରିୟ ପତ୍ନୀଙ୍କ ସୁଗୁଣାବଳି ବିଷୟରେ ଅନେକ ଲେଖିପାରନ୍ତି; କିନ୍ତୁ ଏସବୁ ଏତେ ପବିତ୍ର ଯେ ଲେଖିବାର ବିଷୟ ନୁହେଁ । ଟେନିସନ୍‌ଙ୍କ ଭାଷାରେ—

''......... ସହଜରେ କ୍ଷମା ନାହିଁ ତା'ର
ଦାମ୍ପତ୍ୟ ଜୀବନର ନିଭୃତ ନିଳୟର, ରୁଦ୍ଧ ଗବାକ୍ଷକୁ
ଖୋଲିଦେଇ କରିଦିଏ ଯିଏ ଆଲୋକ ସଂଚାର ।''

ଆମେ ଫେରିବାର କିଛିଦିନ ପର୍ଯ୍ୟନ୍ତ ଜିଲ୍ଲାର ସମସ୍ତ ଦେଶୀ ମୁଖିଆମାନେ ଆମକୁ ଦେଖିବାକୁ ଆସିଲେ । ଆମ ଚପରାସୀମାନେ ବୈଠକଖାନା ମଝିରେ ଦୁଇଟି ଚୌକି ପକାଇ ଦେଉଥିଲେ ଏବଂ ସେଥିରେ ବସିବାକୁ ଆମକୁ ଅନୁରୋଧ କରାହେଉଥିଲା । ଦର୍ଶକମାନେ ଲମ୍ଫାଧାଡ଼ିରେ ଆସି ଗୋଟିଏ ଦ୍ୱାରରେ ପ୍ରବେଶ କରି ଅନ୍ୟ ଦ୍ୱାରବାଟେ ବାହାରି ଯାଉଥିଲେ । ପ୍ରତ୍ୟେକ ବ୍ୟକ୍ତି ଆସିବା ମାତ୍ରେ ଅଭିନନ୍ଦନ ଓ ଶୁଭେଚ୍ଛାର ବାକ୍ୟ ଉଚ୍ଚାରଣ କରୁଥିଲେ ଏବଂ କିଛି ଟଙ୍କା ଆମ ଗୋଡ଼ ତଳେ ଥୋଉଥିଲେ । ଦେଶୀୟ ରୀତି ଅନୁସାରେ ସେହି ଅର୍ଥ ପରିମାଣ ବେଯୋଡ଼ ସଂଖ୍ୟକ; କାହାର ଟଙ୍କାଏ, କାହାର ଏଗାର, କାହାର ବା ଏକୋଇଶ ଟଙ୍କା । ଏହି ଟଙ୍କା ଫେରାଇନେବା ପାଇଁ ସେମାନେ ମନାକଲେ । ପଞ୍ଜାବରେ ଦେଶୀ ଲୋକଙ୍କ ରୀତି

ଥିଲା, ବୋଧହୁଏ ଏବେ ବି ଥିବ ଯେ ବଡ଼ବଡ଼ିଆଙ୍କ ସହ ସାକ୍ଷାତ୍ କରିଗଲେ କିଛି ଭେଟିଦେବା । ଗରିବ ଶ୍ରେଣୀୟ ଲୋକେ ହାତ ପାପୁଲିରେ ଗୋଟିଏ ଟଙ୍କା ଧରିଥାଆନ୍ତି ଏବଂ ଧନୀମାନେ ଦୁଇ କିମ୍ବା ତିନୋଟି ସୁନାମୋହର ରୁମାଲରେ ବାନ୍ଧିଥାଆନ୍ତି । ସୈନ୍ୟମାନେ ସେମାନଙ୍କ ତରବାରିର ମୁଠା ଆଣି ଦିଅନ୍ତି । ଆମେ କେବଳ ସେହି ଟଙ୍କା ବା ତରବାରି ମୁଠାକୁ ଛୁଇଁ ମୁଣ୍ଡରେ ମାରି ଅଭିବାଦନ ଜଣାଉ । ଏଇସବୁ ଅର୍ଥ ଛୁଇଁ ଦେଇ ସେହିପରି ଫେରାଇ ଦେବାକୁ ଭାବିଥିଲୁ; କିନ୍ତୁ ଯେତେବେଳେ ଜାଣିଲୁ ଯେ ସେପରି କଲେ ସେମାନେ ଅପମାନିତ ହେବେ, ବଡ଼ ଅଡୁଆରେ ପଡ଼ିଗଲୁ ଏବଂ ଗୁଜୁରାଟ ଜିଲ୍ଲା ଯେଉଁ ରାଓଳପିଣ୍ଡି ଡିଭିଜନର ଅନ୍ତର୍ଭୁକ୍ତ ଥିଲା ତାହାର କମିଶନର ସାର୍ ଚାର୍ଲସ ସଣ୍ଡରସ୍‌ଙ୍କ ପରାମର୍ଶ ନେଲୁ । ସେ ସେହି ସମୟରେ ଗୁଜୁରାଟରେ ଶିବିର ସ୍ଥାପନ କରିଥିଲେ । 'ନେଉଦ୍ରା' ବା ବିବାହ ଉପହାର ଫେରାଇଦେବା ଯେ ଏକ ଅପମାନ ସେ ବିଷୟରେ ଅବହିତ ଥିଲେ ମଧ୍ୟ ଅନ୍ୟପକ୍ଷରେ ମୁଁ ଦେଶୀୟମାନଙ୍କଠାରୁ ଅର୍ଥ ଗ୍ରହଣ କରିବା ପ୍ରଶ୍ନ ଉଠୁ ନ ଥିଲା । ତେଣୁ ସେ ପରାମର୍ଶ ଦେଲେ ଯେ ମୁଁ ସେଇ ଟଙ୍କାରେ ସେ ସମସ୍ତଙ୍କୁ ଗୋଟାଏ ବଡ଼ ଭୋଜି ଦେଇ ଦିଏଁ । ସେହି ଅନୁସାରେ ମୁଁ କାମକଲି । ହିନ୍ଦୁ ଓ ଶିଖ ଗୋଷ୍ଠୀରେ ଅନ୍ୟ ଗୋଷ୍ଠୀର ଲୋକଙ୍କ ସହ ଖାଇବା ମନା ଥିବାରୁ ମୁଁ ଜଣେ ହିନ୍ଦୁ ଦ୍ୱାରା କଡ଼ା ସବୁରେ ଭୋଜନ ପ୍ରସ୍ତୁତ କରାଇ ସେଥିରୁ ଗୋଟିଏ ଲେଖାଏଁ ସବୁ ନେଉଦ୍ରାଦାତାଙ୍କ ପାଖକୁ ପଠାଇଲି । ପ୍ରତ୍ୟେକ କଡ଼ାରେ ଗଦାଏ ଲେଖାଏଁ ମଇଦା, ଚାଉଳ, ଘିଅ, ଚିନି ଓ ମସଲା ଥିଲା । ପ୍ରତ୍ୟେକ କଡ଼ା ସହ ଗୋଟିଏ ଲେଖାଏଁ ଛେଳି ବା ମେଣ୍ଢା ପଠାହୋଇଥିଲା । ମୋର ଅଧିକାଂଶ ଶ୍ଳେଚ୍ଛ ଥିଲେ ମୁସଲମାନ । ସେମାନଙ୍କ ପାଇଁ ମୁଁ ଏକ ବିରାଟ ତମ୍ବୁତଳେ ଗାଲିଚା ବିଛାଇ ଭୋଜିକୁ ନିମନ୍ତ୍ରଣ କଲି । ବଡ଼ ବଡ଼ ହଣ୍ଡାମାନଙ୍କରେ ଗୋଟାସୁଦ୍ଧା ମେଣ୍ଢାସହ ଚାଉଳ, ଜାଫ୍ରାନ, ପେସ୍ତା ଓ ମଇଦା ରନ୍ଧା ହେଲା । ଗଦା ଗଦା ଦେଶୀ ମିଠେଇ, କୁକୁଡ଼ା ତରକାରି, ପରିବା ତରକାରି ଓ ଅନ୍ୟାନ୍ୟ ଦେଶୀ ସୁସ୍ୱାଦୁ ଖାଦ୍ୟ ମଧ୍ୟ ପ୍ରସ୍ତୁତ ହେଲା ଏବଂ ମୋର ଦେଶୀ ବନ୍ଧୁମାନେ ବହୁ ସଂଖ୍ୟାରେ ତଳେ ବସିପଡ଼ି ମନଇଚ୍ଛା ଖାଇଗଲେ । ୟୁରୋପୀୟମାନଙ୍କୁ ମୁଁ ଏକ ଲଞ୍ଚ୍ ଦେଲି । ଦେଶୀମାନେ ଆଉ ଯେତେବେଳେ ଖାଇ ନ ପାରିଲେ ସେତେବେଳେ ଆମକୁ ଦେଖିବାପାଇଁ ଖବର ପଠାଇଲେ । ଆମେ ବାହାରି ଆସିଲୁ ଏବଂ ତମ୍ବୁ ପାଖେ ପହଞ୍ଚିବା ମାତ୍ରେ ଜନତା ମେଘ ଗର୍ଜନ ସ୍ୱରରେ ଆମକୁ ଅଭିବାଦନ କଲେ । ଆମେ ଭୟଭୀତ ହୋଇପଡ଼ିଲୁ; କିନ୍ତୁ ପଚାରି ବୁଝିଲି ଯେ ଏହା ପ୍ରଶଂସାର ଧ୍ୱନି । ଏହାଦ୍ୱାରା ସେମାନେ ଜଣାଇ ଦେଉଛନ୍ତି ଯେ ସେମାନେ ଏ ଭୋଜି ପୂର୍ଣ୍ଣଭାବେ ଉପଭୋଗ କରିଛନ୍ତି । ପରେ ପରେ ହିନ୍ଦୁସ୍ଥାନୀରେ ବକ୍ତୃତା ହେଲା ଏବଂ ତା'ପରେ ଖୁବ୍ ଆନନ୍ଦିତ ହୋଇ ସେମାନେ ଗଲେ । ଏ ସମସ୍ତରେ ଖର୍ଚ୍ଚ ହେଲା ୪୦୦ ଟଙ୍କା, ମିଳିଥିବା ଭେଟିର ପରିମାଣ ସହ ସମାନ ।

୧୮୬୦ର ପ୍ରଥମାର୍ଦ୍ଧରେ ଲର୍ଡ୍ ଓ ଲେଡ଼ି କ୍ୟାନିଂ ଆସି ପହଞ୍ଚିଲେ । କଲିକତାରୁ ଲାହୋର ପର୍ଯ୍ୟନ୍ତ ସବୁ ପ୍ରଦେଶର ନୂତନ ଭାଇସ୍‌ରାୟ ଏକ ଅର୍ଦ୍ଧରାଜକୀୟ ଭ୍ରମଣ କରୁଥାଆନ୍ତି । ତାଙ୍କ ଶିବିର ଥାଏ ବହୁ ଏକର ବ୍ୟାପୀ ତମ୍ବୁର ନଗର । ସେ ତମ୍ବୁ ଇଂଲାଣ୍ଡରେ ବ୍ୟବହୃତ ହେଉଥିବା ପତଳା କନାରେ ନୁହେଁ, ମୋଟା କ୍ୟାନଭାସରେ ତିଆରି । ସେଥିରେ ଏକ୍ଳା ନିଆଁ

ଜାଗା, କବାଟ, ଝରକା ଏବଂ ଦୁଇପରସ୍ତିଆ କାନ୍ଥ । ନିଜ ଚମତ୍କାର ଅଙ୍ଗରକ୍ଷୀ, ଇଂରାଜୀ ଘୋଡ଼ସବାର ବାହିନୀ ପଦାତିକ ଓ ଦେଶୀୟ ଅଶ୍ୱାରୋହୀ ଓ ପଦାତିକ ତାଙ୍କୁ ଜଗିରହିଥାନ୍ତି । କିନ୍ତୁ ଦିଲ୍ଲୀରେ ତାଙ୍କ ଶିବିରରେ ନିଆଁ ଲାଗି ବହୁ ତମ୍ବୁ ଓ ଜିନିଷପତ୍ର ନଷ୍ଟ ହୋଇଗଲା ଏବଂ ସେ ଲାହୋରରେ ପହଞ୍ଚିଲା ପରେ ତାଙ୍କୁ ନିବେଦନ କରାଗଲା ଯେ ସେଠାରୁ ପେଶାବାର ପର୍ଯ୍ୟନ୍ତ ଅଞ୍ଚଳ ଅତ୍ୟନ୍ତ ଜଙ୍ଗଲୀ ଏବଂ ଏତେ ବଡ଼ ଜନସମାଗମକୁ ସମ୍ଭାଳିବା ପାଇଁ ଅସମର୍ଥ, ପୁଣି ନିଆଁରେ ନଷ୍ଟ ହୋଇ ଯାଇଥିବା ତମ୍ବୁଗୁଡ଼ିକର ସ୍ଥାନ ପୂରଣ କରିବା ମଧ୍ୟ ସାଙ୍ଗେ ସାଙ୍ଗେ ସମ୍ଭବ ନୁହେଁ । ଯେଉଁ ଜିଲ୍ଲାଗୁଡ଼ିକ ଦେଇ ସେ ଯିବେ, ସେଠାରେ ଶାସକ ଅଫିସରଗଣ ତାଙ୍କୁ ନିମନ୍ତ୍ରଣ ଜଣାଇ କହିଲେ ଯେ ସେ ସେମାନଙ୍କ ଆତିଥେୟତା ଓ ସୁରକ୍ଷା ବ୍ୟବସ୍ଥାରେ ବିଶ୍ୱାସ ରଖି ଅଳ୍ପ କେତେଜଣ ଅନୁଚର ନେଇ ଆସନ୍ତୁ । ତାଙ୍କର ଚମତ୍କାର ବିଚାରବୁଦ୍ଧି ଫଳରେ ସେ ସାଙ୍ଗେ ସାଙ୍ଗେ ଦେଖାଇ ଦେଲେ ଯେ ବିଦ୍ରୋହ ଦମନର ବର୍ଷେ ନ ହେଉଣୁ ଭାରତର ଭାଇସ୍‌ରାଏ ଦେଶର ସର୍ବାଧିକ ଯୁଦ୍ଧପିପାସୁ ପ୍ରଦେଶ ମଧ୍ୟ ଦେଇ ଅଳ୍ପ କେତେକ ଅନୁଚରଙ୍କ ଗହଣରେ ନିରାପଦରେ ଭ୍ରମଣ କରିପାରିବା ଦ୍ୱାରା କେତେବଡ଼ ନୈତିକ ପ୍ରଭାବ ପଡ଼ିବ । ତେଣୁ ସେ ଚାରୋଟି ଓଟ ଟାଣୁଥିବା ଗୋଟିଏ ଗାଡ଼ିରେ ଛ'ଜଣ ଦେଶୀ ପାଇକ ନେଇ ଭ୍ରମଣରେ ଆସିଲେ । ସାଙ୍ଗରେ ଥିଲେ ପ୍ରଧାନ ସେନାପତି ଲର୍ଡ଼ କ୍ଲାଇଡ୍, କେତେକ ସଚିବ ଓ ପାର୍ଶ୍ୱରେ ଅଫିସର । ଲେଡ଼ି କ୍ୟାନିଂ ସେହିପରି ଏକ ଗହଣରେ ଦିନକ ପରେ ତାଙ୍କ ପଛରେ ଆସିଲେ । ହାର୍ଡ଼ିଞ୍ଜଙ୍କ ଘରଟି ତାଙ୍କ ଅଭ୍ୟର୍ଥନା ପାଇଁ ପ୍ରସ୍ତୁତ ହେଲା ଏବଂ ସେପରି ଏକ ରୁକ୍ଷ ଜିଲ୍ଲାରେ ଦୁଷ୍ପ୍ରାପ୍ୟ କାଚ ଓ ଅଳଙ୍କାର ଓ ପ୍ଲେଟ ଆମଠାରୁ ମଗାଇ ପାଇପାରିଥିବାରୁ ସେ ଆନନ୍ଦ ହେଲେ । ସେ ସବୁ ମୋ ସ୍ତ୍ରୀ ବିବାହର ପୁରସ୍କାର ରୂପେ ସାଙ୍ଗରେ ଆଣିଥିଲେ । ମୋ ସ୍ତ୍ରୀ ଅପୂର୍ବ ଉଦାରତା ଦେଖାଇ ତାଙ୍କ ଦର୍ପଣଟିକୁ ଧାରଦେଲେ । ଲେଡ଼ି କ୍ୟାନିଂଙ୍କ ସ୍ତରର ଜଣେ ମହିଳାଙ୍କ ବ୍ୟବହାର ଯୋଗ୍ୟ ପଞ୍ଜାବର ସେ ଅଂଶରେ ମାତ୍ର ସେଇ ଗୋଟିକ ଥିଲା । କେବଳ ସେଇ ଗୋଟିକ ଗୋଟିଏ ଓଟ ପିଠିରେ ଶିବିର ପରେ ଶିବିର ବୁହାହେଲା ଓ ଅନେକ ସପ୍ତାହ ପର୍ଯ୍ୟନ୍ତ ଆମ ପାଖକୁ ଫେରି ନ ଥିଲା । ସଣ୍ଡରସ୍, ହାର୍ଡ଼ିଞ୍ଜ ଏବଂ ମୁଁ ତଜନେ ସୱାରଙ୍କ ସହ ଆମ ଜିଲ୍ଲାର ଆରମ୍ଭସ୍ଥଳ ୱାଜିରାବାଦରେ ଭାଇସରାଏଙ୍କୁ ସାକ୍ଷାତ କରିବାକୁ ଗଲୁ । ସେ ରାତି ୮ଟାରେ ଆସି ପହଞ୍ଚିଲେ ଏବଂ ଓଟ ବଦଳି ହେଉଥିଲାବେଳେ ଗାଡ଼ିରୁ ଓହ୍ଲେଇଲେ । ଆମ ସମସ୍ତଙ୍କ ସହ ତାଙ୍କର ପରିଚୟ ହୋଇଗଲା । ସେ କେତେ ମୁହୂର୍ତ୍ତ ଆମ ସହ କରମର୍ଦ୍ଦନ କରି ଅମାୟିକ କଥାବାର୍ତ୍ତା କଲେ । ତା'ପରେ ସେ ପର୍ଯ୍ୟନ୍ତ ଆସିଥିବା ଗୁଜୁରାନ୍‌ୱାଲାର ଅଫିସରମାନଙ୍କୁ ବିଦାୟ ଦେଇ ଯାତ୍ରାରମ୍ଭ କଲେ । ହାର୍ଡ଼ିଞ୍ଜ ଓ ମୁଁ ତାଙ୍କ ଗାଡ଼ିର ଦୁଇପଟରେ ଚାଲୁଥିଲୁ ଏବଂ ସେହି ଜିଲ୍ଲା ଓ ଲୋକମାନଙ୍କ ସମ୍ପର୍କରେ ତାଙ୍କର ଅସଂଖ୍ୟ ପ୍ରଶ୍ନର ପାରୁପର୍ଯ୍ୟନ୍ତ ଉତ୍ତର ଦେଉଥିଲୁ । ସେ ସମ୍ପର୍କରେ ତାଙ୍କର ସ୍ପୃହା ଅସୀମ । ଆମେ ଅଳ୍ପ ଅଳ୍ପ ଛଡ଼ାରେ ମଶାଲଧାରୀଙ୍କୁ ନିଯୁକ୍ତ କରିଥିଲୁ । ଏହି ଲାଲକେଶଧାରୀ ଜଙ୍ଗଲୀ ଲୋକେ ଗାଡ଼ିର ଆଗରେ ଓ କଡ଼େ କଡ଼େ ଧାଉଁଥାଆନ୍ତି । ବାରଦାରିରେ ପହଞ୍ଚିଲା ବେଳକୁ ସାମନାର ଲମ୍ବା ରାସ୍ତାଟିସାକ ମଶାଲ ଆଲୁଅରେ ଝଲସି ଉଠିଲା । ୧୪ଶ ପଞ୍ଜାବ ଘୋଡ଼ସବାର ବାହିନୀର ସୈନ୍ୟମାନେ ଦୁଇପଟେ ଧାଡ଼ିହୋଇ ଠିଆ ହୋଇଥିଲେ । ସେ ଦୃଶ୍ୟ ଥିଲା ଯାଦୁଭଳି ସୁନ୍ଦର । ମଝିରେ ମଝିରେ ଲାଲ ଆଲୋକ ଅଶ୍ୱାରୋହୀ

ସୈନ୍ୟ, ପୋଲିସ ଓ ଦେଶୀ ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ବର୍ଚ୍ଛା, ଉନ୍ମୁକ୍ତ ତରବାରି ଓ ପରିଧାନମାନଙ୍କରେ ପଡ଼ି ଝଟକୁଥିଲା । ଦୀର୍ଘ ଇତସ୍ତତଃ ଗତିରେ ଓଟମାନେ ଶୀଘ୍ର ଶୀଘ୍ର ପାଦପକେଇ ଚାଲୁଥିଲେ, ଘୋଡ଼ା କଦମ ପକାଇ ଚାଲୁଥିଲେ, ଆଲୋକସବୁ ଜଳି ଉଠୁଥିଲା, ତୂରୀ ବାଜି ଉଠୁଥିଲା ଏବଂ ସମସ୍ତେ ଅଭିନନ୍ଦନ ସ୍ୱରରେ ଚିତ୍କାର କରୁଥିଲେ । ଆମେ ସାଙ୍ଗେ ସାଙ୍ଗେ ସାମନାର ଏକ ବିରାଟ କକ୍ଷରେ ରାତ୍ରି ଭୋଜନ ପାଇଁ ବସିଗଲୁ । ସେଇଠି ମୁଁ ପ୍ରଥମେ ଆଡାମସ୍‌କୁ ଭେଟିଲି । ସେଇ ଘରଟି ପତାକା, ଗାଲିଚା, ମାଳ, ଫୁଲ ଓ ଖାଦ୍ୟଦ୍ରବ୍ୟ ଭର୍ତ୍ତି ଲମ୍ୱା ସୁସଜ୍ଜିତ ଟେବୁଲରେ ନୂଆ ରୂପ ଗ୍ରହଣ କରିଥିଲା ।

ଲର୍ଡ଼ କ୍ୟାନିଂ ହେଉଛନ୍ତି ଜଣେ ଦୀର୍ଘକାୟ ମର୍ଯ୍ୟାଦାବନ୍ତ ପୁରୁଷ, ମୁଖାକୃତି ସୁନ୍ଦର ଧବଳ ଓ ନିର୍ଲିପ୍ତ; ଉପର ଓଠଟି ଲମ୍ୱାଳିଆ ହୋଇ ବାହାରି ଆସିଥିବାରୁ କିଛି ବେଢଙ୍ଗିଆ । ଲର୍ଡ଼ କ୍ଲାଇଡ଼ ହେଉଛନ୍ତି କ୍ଷୁଦ୍ରକାୟ ଲୋହିତଚର୍ମ ବୃଦ୍ଧ । ତାଙ୍କ ଆଖି ଉଜ୍ଜ୍ୱଳ ଓ ମୁହଁ ଶୀତଦିନିଆ ଆପଲ୍ ପରି ଲାଲ । ସେ ଥିଲେ ସେ ଦଳର ଜୀବନପରି । ପାର୍ଶ୍ୱରେ ଯୁବକ ଅଫିସରଗଣ ତାଙ୍କ ସହ ନାନା ପ୍ରକାର ପରିହାସ କରି ବିଭିନ୍ନ ପ୍ରକାର ମଦ୍ୟ ତାଙ୍କ ଗ୍ଲାସରେ ଢାଳି ଦେଉଥାନ୍ତି ଏବଂ ବେଳେ ବେଳେ ସେ ଏପରି ମଉଜିଆ କଥା କହୁଥାନ୍ତି ଯେ ଆମେ ହସକୁ ଚାପିରଖି ଟେବୁଲର ନିମ୍ନାଂଶରେ ଲୋଟି ଯାଉଥାଉ । ଉପର ପଟେ ନୀରବ ଗମ୍ଭୀର ଲର୍ଡ଼ କ୍ୟାନିଂ ସାଲମନ ଆଚାର ଓ ତାହା ଛଡ଼ା ଆଉ କିଛି ଗ୍ରହଣ କରୁ ନ ଥାନ୍ତି । ଆମକୁ ବୋଧହେଲା ତାଙ୍କୁ ଏ ଖାଦ୍ୟ ରୁଚୁ ନାହିଁ; କିନ୍ତୁ ସେ ବୁଝାଇ ଦେଲେ ଯେ, ତାଙ୍କ ଯାତ୍ରାପଥରେ ବାଟଯାକ କିଛି ଖାଇବାପାଇଁ ଅଟକା ଯାଉଥିବାରୁ ତାଙ୍କର ଆଉ ଭୋକ ନାହିଁ ।

ପରଦିନ ସକାଳୁ ସେମାନେ ପୁଣି ବାହାରିଲେ ଏବଂ ସେଇ ସନ୍ଧ୍ୟାରେ ଆମେ ପୁଣି ଲେଡ଼ି କ୍ୟାନିଂଙ୍କୁ ସାକ୍ଷାତ୍ କରି ବାଟେଇ ଆଣିବାକୁ ଚେନାବକୁ ଗଲୁ । ତାଙ୍କୁ ଅଭ୍ୟର୍ଥନା କରିବା ପାଇଁ ବାରଦାରିରେ ମୋ ସ୍ତ୍ରୀ ଥିଲେ । ଲେଡ଼ି କ୍ୟାନିଂ ଥିଲେ ରୁଗ୍‌ଣା ଓ ବାର୍ଦ୍ଧକ୍ୟଗ୍ରସ୍ତା; କିନ୍ତୁ ବ୍ୟବହାରରେ ମଧୁର ଓ ରୁଚିପୂର୍ଣ୍ଣ । ମୋ ସ୍ତ୍ରୀଙ୍କୁ ତାଙ୍କ ନିଜ କକ୍ଷରେ ଚାହା ଦେବାପାଇଁ କହିଲେ ଏବଂ ଖାନସମା ଯେତେବେଳେ ମୋ ସ୍ତ୍ରୀଙ୍କର ରୁପାର ନୂଆ କପ୍‌ଗୁଡ଼ିକୁ ଭଦ୍ରଲୋକଙ୍କ ପାଇଁ ରଖି ତାଙ୍କପାଇଁ ହାର୍ଡ଼ିଞ୍ଜର ବ୍ରିଟାନିଆ ଧାତୁ କପ୍ ପଠାଇଲା, ସେତେବେଳେ ସେ ଖୁବ୍ କୌତୂହଳାକ୍ରାନ୍ତ ହୋଇପଡ଼ିଲେ । ଦେଶୀୟ ଦୃଷ୍ଟିକୋଣରୁ ପୁରୁଷ ବଦଳରେ ସ୍ତ୍ରୀଲୋକଙ୍କୁ ଅଧିକା ସୁବିଧା ଦେବା ଅବାସ୍ତବ । ମୋ ସ୍ତ୍ରୀଙ୍କ ସହ ସେ ଅନେକ ସମୟଯାଏ ଗପ କଲେ କାରଣ ସେ କହିଲେ— ଜଣେ ନବବିବାହିତା ଇଂରାଜୀ ଝିଅ ଏପରି ଏକ ଜଙ୍ଗଲୀ ଜାଗାରେ ରହିବା ତାଙ୍କୁ ଖୁବ୍ ଆଶ୍ଚର୍ଯ୍ୟ ଲାଗୁଛି । ତାଙ୍କ ବ୍ୟବହାରର ମାଧୁର୍ଯ୍ୟ ଓ ଭଦ୍ରତା ଆମ ସମସ୍ତଙ୍କୁ ପ୍ରଭାବିତ କରିଥିଲା ।

ସେମାନେ ସମସ୍ତେ ଚାଲିଯିବାପରେ ଆମେ ଗସ୍ତରେ ଗଲୁ ଏବଂ ପ୍ରଥମକରି ଏକତ୍ର ଶିବିର ଜୀବନପୂରା ଉପଭୋଗ କଲୁ । ଆମେ ଘୋଡ଼ାରେ ବସି ଗସ୍ତରେ ଯାଉଥିବାବେଳେ ପାଇକମାନେ ଆମ ସାଙ୍ଗରେ ଯାଉଥାନ୍ତି । ସେମାନଙ୍କ ମଧ୍ୟରୁ ଜଣେ ଅତି ଗୁରୁତ୍ୱ ସହକାରେ

ଦାମୀ ରୁପା ଚା ପାତ୍ରଟି ବହନ କରୁଥାଏ ଏବଂ ଅନ୍ୟଜଣେ ମୋ ସ୍ତ୍ରୀଙ୍କ ମରୋକୋ ପ୍ରସାଧନ ଥଳିଟି ନେଉଥାଏ । ଲମ୍ବ ଦାଢ଼ିଧାରୀ ସହୃଦୟ ସରଦାରମାନେ ସବୁଜ ଓ ରକ୍ତବର୍ଣ୍ଣର ସୁନାଜରିପକା ସୁନ୍ଦର ଅଙ୍ଗାବରଣ ପିନ୍ଧି ଆମକୁ ସାକ୍ଷାତ କରୁଥାନ୍ତି ଏବଂ ଆମର ମନୋରଞ୍ଜନ ପାଇଁ ଶିକାରର ବନ୍ଦୋବସ୍ତ କରୁଥାନ୍ତି । ସେମାନେ ଘୋଡ଼ା ଚଢ଼ିଥିବାବେଳେ ଖୁବ୍ ସୁନ୍ଦର ଦେଖାଯାଉଥାନ୍ତି । ସମତଳ ବାଲୁକା ପ୍ରାନ୍ତରରେ ଥିବା ନୀଚା ବୁଦାମୂଳେ ଲୁଚିରହିଥିବା ତିତିର ପକ୍ଷୀମାନଙ୍କୁ ହାତମୁଠାରେ ରଖି ଶିକାର କରନ୍ତି । ସେମାନେ ମୋ ସ୍ତ୍ରୀଙ୍କ ବିଷୟରେ ଜାଣିବାପାଇଁ ଖୁବ୍ ଆଗ୍ରହୀ ଥିଲେ । ମୋ ସ୍ତ୍ରୀ ଭଲ ଘୋଡ଼ା ଚଢ଼ିପାରୁଥିଲେ, ସେଇଟା ସେମାନଙ୍କୁ ଆଶ୍ଚର୍ଯ୍ୟ ଲାଗୁଥିଲା; ଆହୁରି ଆଶ୍ଚର୍ଯ୍ୟ ଲାଗିଲା ଯେତେବେଳେ ମୋ ଚାକରଙ୍କଠାରୁ ଶୁଣିଲେ ସେ ଲେଖାପଢ଼ା ଜାଣନ୍ତି ଓ ହିସାବ ମଧ୍ୟ ରଖନ୍ତି । ମୁଁ ତାଙ୍କୁ କେତେ ଦେଇ କିଣିଛି ତାହା ଜାଣିବାକୁ ସେମାନେ ଖୁବ୍ ଉତ୍ସୁକ ହେଲେ (ପଞ୍ଜାବରେ ସ୍ତ୍ରୀମାନେ ସର୍ବଦା କିଣା ହୁଅନ୍ତି) ଏବଂ ଆମ ଲୋକେ ଯେତେବେଳେ କହିଲେ ଯେ ମୁଁ ତାଙ୍କ ପାଇଁ କିଛି ଦେଇ ନାହିଁ ସେପରି ଉକ୍ତିକୁ ଅସମ୍ଭବ କହି ସେମାନେ ଉଡ଼ାଇଦେଲେ । ଦିନେ ସକାଳେ ମୁଁ ଏକୁଟିଆ ଜଣେ ସୁନ୍ଦର ତରୁଣ ସର୍ଦ୍ଦାର ସହ ଘୋଡ଼ାଚଢ଼ି ଯାଉଥିବାବେଳେ ସେ କହିଲା ଯେ ଇଂରେଜମାନେ ସ୍ତ୍ରୀଲୋକଙ୍କୁ ପୂଜା କରିବାର ସେ ଜାଣେ; ସ୍ତ୍ରୀ ମୁଣ୍ଡ ସେମାନଙ୍କ ମୁଦ୍ରାରେ ଅଛି ଏବଂ ତାଙ୍କ ଛବି ସେମାନଙ୍କ ଗିର୍ଜାମାନଙ୍କରେ ଅଛି । ସାମରିକ ଛାଉଣୀ ବ୍ୟତୀତ ଅନ୍ୟତ୍ର ଇଂରେଜ ସ୍ତ୍ରୀଲୋକ କ୍ୱଚିତ ଦେଖାଯାଉଥିବାରୁ ସେ ସମୟରେ ପଞ୍ଜାବରେ କୁମାରୀ ମେରୀଙ୍କ ରୋମୀୟ ଛବି ଓ ରାଣୀଙ୍କ ମୁଣ୍ଡ ମଧ୍ୟରେ ଭ୍ରାନ୍ତି ଉପୁଜିବା ଖୁବ୍ ସ୍ୱାଭାବିକ ଥିଲା । ଶ୍ରୀମତୀ ଆଡ଼ମସ୍‌ଙ୍କ ପୂର୍ବରୁ ମାତ୍ର ଜଣେ ଇଂରେଜ ମହିଳା ଗୁଜୁରାଟରେ ଥିଲେ ଏବଂ ଶ୍ରୀମତୀ ଆଡ଼ାମସ୍ ସେଠାରେ ଅଳ୍ପ କେତେ ମାସ ହେଲା ଆସିଥିଲେ । ତେଣୁ ମୋ ସ୍ତ୍ରୀ ଥିଲେ ଏକ ଚମକପ୍ରଦ ନୂତନତ୍ୱ ଏବଂ ଦୂରଦୂରାନ୍ତରୁ ସ୍ତ୍ରୀଲୋକମାନେ ଶିବିର ଚାରିପଟେ ଜମାହୋଇ ଲାଜଲାଜ ହୋଇ ଭିତରକୁ ଉଣ୍ଡି ଚାହୁଁଥିଲେ ଏବଂ ମୁଁ ଶୁଣିଲି ଯେ ସେ ପୁରୁଷ କି ସ୍ତ୍ରୀ ବୋଲି ଖୁବ୍ ଯୁକ୍ତିତର୍କ ଚାଲୁଥିଲା; ସେ ଘୋଡ଼ା ଚଢୁଥିବାରୁ ପୁରୁଷ ବୋଲି ଯୁକ୍ତିଟା ଅକାଟ୍ୟ ମନେ ହେଉଥିଲା ।

ମୁଁ ଶିବିରରେ ଥିବାବେଳେ ଭାଇସରାଏ ସଦଳବଳ ଫେରିଲେ ଏବଂ ମୁଁ ଲେଡି କ୍ୟାନିଂଙ୍କ ଗାଡ଼ି ପାଖକୁ ଯାଇ ଯାହା କିଛି ଦର୍ଶନୀୟ ସ୍ଥାନ ସବୁ ଦେଖାଇଲି । ରାସ୍ତାନିକଟ ଖୋଲାପଡ଼ିଆରେ ପକାହୋଇଥିବା ଆମର ଦୁଇଟି ତମ୍ବୁର ଛୋଟ ଶିବିରଟି ସେ ଦେଖିଲେ ଏବଂ ମୋ ସ୍ତ୍ରୀ ତା' ଭିତରେ ଅଛନ୍ତି ଶୁଣି ତାଙ୍କ ନିକଟକୁ ଫେରିଯିବାକୁ ମୋତେ ବାଧ୍ୟକଲେ । ସେପରି ଜାଗାରେ ଜଣେ ନବୋଢ଼ା ତରୁଣୀ ଏକାକିନୀ ଦେଶୀ ଚାକରଗୁଡ଼ାଙ୍କ ମେଳରେ ରହିବା ସେ ଚିନ୍ତାକରି ପାରୁନଥିଲେ । ଲେଡି କ୍ୟାନିଂ ସର୍ବଦା ଅନ୍ୟମାନଙ୍କ କଥା ଭାବୁଥିଲେ ଏବଂ ଦୟା ଦେଖାଉଥିଲେ ।

ସିଆଲକୋଟରେ ଏକ ବିରାଟ ସଭା ହେଲା ଏବଂ ଗୁରୁତ୍ୱପୂର୍ଣ୍ଣ ଦରବାର ବସିଲା ଯେଉଁଠାକୁ କାଶ୍ମୀରର ମହାରାଜା, ଭାଇସରାଏ ଓ ତାଙ୍କର ଅଧିରାଜ୍ଞୀ ଇଂଲାଣ୍ଡର ରାଣୀଙ୍କୁ ସମ୍ମାନ ଜଣାଇବା ପାଇଁ ଆସିଥିଲେ । ତାଙ୍କର ତମ୍ବୁସବୁ ଦାମିକା କାଶ୍ମୀରୀସାଲରେ ନିର୍ମିତ

ହୋଇଥିଲା ଏବଂ ସିଂହାସନ ମଧ ସେଇଥିରେ ହୋଇ ସେଥିରେ ସୁନାର ଫୁଲକାମ ହୋଇଥିଲା । ତାହାସବୁ ଦେଖି ଲୋକେ କହିଲେ ସେମାନେ ଦେଖିଥିବା ସବୁ ଆଡ଼ମ୍ବର ମଧରେ ସେସବୁ ଉତ୍କୃଷ୍ଟତମ । ହାର୍ଡିଞ୍ଜଙ୍କୁ ସେଠାରେ ରହିବାକୁ ଡକାଗଲା ଏବଂ ତାଙ୍କ ଅନୁପସ୍ଥିତିରେ ଗୁଜୁରାଟ ଜିଲ୍ଲା ପରିଚାଳନା ପାଇଁ ମୋତେ ସେ ଡକାଇଲେ । ତେଣୁ ମୋତେ ଓ ମୋ ସ୍ତ୍ରୀକୁ ୨୦ମାଇଲ ବାଟ ଘୋଡ଼ାରେ ଆସିବାକୁ ହେଲା, ଯାହା ଫଳରେ ଅତିରିକ୍ତ ପରିଶ୍ରମରୁ ସେ ବେମାର ପଡ଼ିଲେ ଏବଂ ତାଙ୍କର ଏକ ଗର୍ଭ ନଷ୍ଟ ହୋଇଗଲା । ଅଧିକାଂଶ ଇଂରାଜୀ ସ୍ତ୍ରୀଲୋକ, ବିବାହପରେ କିପରି ସ୍ୱାସ୍ଥ୍ୟରକ୍ଷା କରିବାକୁ ହୁଏ ସେ ସମ୍ପର୍କରେ ଅଜ୍ଞ ଭାବରେ ବଢ଼ିଥିବାରୁ ଏବଂ ଉପଦେଶ ଦେବାପାଇଁ କୌଣସି ବୟସ୍କା ମହିଳା ନ ଥିବାରୁ ଭାରତରେ ଅନେକ ସମୟରେ ଭୟଙ୍କର ପରିସ୍ଥିତି ସୃଷ୍ଟି ହୁଏ । ମୋ ସ୍ତ୍ରୀ ଜାଣିନଥିଲେ ଯେ ଏ ପରିସ୍ଥିତିରେ ଘୋଡ଼ାରେ ବସିବା ଉଚିତ ନୁହେଁ ଏବଂ ବହୁତଦିନ ଅସୁସ୍ଥ ରହିବାପରେ ଏପରି ହେଲା । ଆମର ସେ ଜାଗାରେ ଜଣେ ମାତ୍ର ବଙ୍ଗାଳୀ ଡାକ୍ତର ଥିଲେ ଏବଂ ମୋ ସ୍ତ୍ରୀ ତାଙ୍କ ସହ ପରାମର୍ଶ କରିବାକୁ କୁଣ୍ଠିତା ହେଲେ । ତେଣୁ ଝେଲମ୍‌ର ସିଭିଲସର୍ଜନ ଡାଃ ଆଚିସନଙ୍କ ପାଖକୁ ମୁଁ ଲେଖିଲି । ସେ ସଦୟ ହୋଇ ତାଙ୍କୁ ଦେଖିବାକୁ ଆସିଲେ । ଝେଲମ ୩୦ ମାଇଲ ଦୂର ଏବଂ କାମର ଚାପ ହେତୁ ସପ୍ତାହରେ ଥରକରୁ ବେଶି ସେ ସ୍ଥାନରୁ ସେ ବାହାରିପାରନ୍ତି ନାହିଁ; କିନ୍ତୁ ପ୍ରତ୍ୟେକ ରବିବାର ନିୟମିତ ରୂପେ ସେ ଡାକଗାଡ଼ିରେ ଆସିଲେ । ଏଥିରେ ମୋ ସ୍ତ୍ରୀ ଆଶ୍ୱସ୍ତ ହେଲେ । ମୋ ସ୍ତ୍ରୀଙ୍କର ଧୈର୍ଯ୍ୟ ଓ ସାହସ ଥିଲା; କିନ୍ତୁ ତାଙ୍କ ପାଇଁ ବରାବର ଜଗାରଖାର ବନ୍ଦୋବସ୍ତ କରିନପାରି ମୋର ଖୁବ୍ ଦୁଃଖ ହେଲା । ମେ ମାସ ପର୍ଯ୍ୟନ୍ତ ସେ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ପାରିନଥିଲେ ।

ଏହି ସମୟରେ ଆଇନ, ବ୍ୟାବହାରିକ ନିୟମ ଓ ଭାଷାରେ ଉତ୍ତୀର୍ଣ୍ଣ ହେବାପାଇଁ ରାଓଲପିଣ୍ଡି ଗଲି । ପ୍ରଥମ ନିଯୁକ୍ତିବେଳେ ଜଣେ ତରୁଣ ସିଭିଲିଆନର 'ମାମୁଲି କ୍ଷମତା' ଥାଏ (ଯାହା ସେତେବେଳେ କୁହାଯାଉଥିଲା) । ଏହା ଦ୍ୱାରା ସେ ଛୋଟ କେଶ୍‌ମାନ ବିଚାର କରି କେବଳ ଲଘୁ ଦଣ୍ଡ ଦେଇପାରୁଥିଲା । ଛ'ମାସ-ପରେ ତା'ର ପ୍ରଥମ ପରୀକ୍ଷାରେ ପାସ୍ କରିବା କଥା ଏବଂ ଏଥିରେ ସଫଳ ହେଲେ 'ଦ୍ୱିତୀୟ ଶ୍ରେଣୀ କ୍ଷମତା' ପାଉଥିଲା । ଏହା ଦ୍ୱାରା ଅଧିକ ଗୁରୁତ୍ୱପୂର୍ଣ୍ଣ କେଶ୍ ବିଚାର କରୁଥିଲା । ଏହାର ଛ'ମାସ ପରେ ୨ୟ ଅଧିକତର କଷ୍ଟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ ହେଉଥିଲା । ଯାହାଦ୍ୱାରା ସେ ମ୍ୟାଜିଷ୍ଟ୍ରେଟରେ 'ପୂର୍ଣ୍ଣକ୍ଷମତା' ପାଇ, ଯେକୌଣସି କେଶର ବିଚାର ଓ ଯେକୌଣସି ଧରଣର ରାଜ ସ୍ୱକାମ କରିପାରୁଥିଲା । ସେଥରକ 'ନିମ୍ନ ଓ ଉଚ୍ଚ' ସ୍ତରୀୟ କୁହାଯାଉଥିବା ଉଭୟ ପରୀକ୍ଷା ଏକାଥରକେ ହେଲା, କାରଣ ପୂର୍ବ ନଭେମ୍ବରରେ ହେବାକୁ ଥିବା ପରୀକ୍ଷା କୌଣସି କାରଣରୁ ହୋଇପାରି ନ ଥିଲା । ବିଶେଷ କାରଣ ଯୋଗୁଁ ଉଭୟ ପରୀକ୍ଷାକୁ ଆମେ ଏକାବେଳକେ ଦେବାର ଅନୁମତି ପାଇଲୁ । ଏହା ଖୁବ୍ କଷ୍ଟ; କିନ୍ତୁ ମୁଁ ସଫଳ ହେଲି, ମୋର ସମସାମୟିକ ଚାର୍ଲସ ଏଡ୍‌ୱାର୍ଡ୍ ବର୍ଣ୍ଣାଡ୍ ମଧ ସଫଳ ହେଲେ । ମୋର ମନେହୁଏ କେବଳ ଆମେ ଦୁଇଜଣ ହିଁ ପ୍ରଥମଥର ପରୀକ୍ଷା ଦେଇ ଉଭୟ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲୁ । ଅବଶ୍ୟ କହିଦେବା ଉଚିତ ଯେ ବର୍ତ୍ତମାନଠାରୁ ସେତେବେଳେ ପରୀକ୍ଷା ଥିଲା କମ୍ କଷ୍ଟ । ଏହାର କାରଣ କେବଳ ପରୀକ୍ଷକମାନଙ୍କର ଖୋଲା ହାତ ନୁହେଁ, ପଞ୍ଜାବର

ଶାସନପଦ୍ଧତି ବର୍ତ୍ତମାନଠାରୁ ସେତେବେଳେ ଖୁବ୍ ସହଜ ଥିଲା । ଆମର କିଛି ଆଇନପ୍ରଣାଳୀ ନଥିଲା । ସିଭିଲ୍ ଓ ଫୌଜଦାରୀ ମାମଲାରେ କୌଣସି ଜଟିଳ ନିୟମ ପଦ୍ଧତି ନଥିଲା, ପଢ଼ିବା ପାଇଁ କୌଣସି ଭୟଙ୍କର ଜଟିଳ ହିସାବପଦ୍ଧତି ନ ଥିଲା । ଆମକୁ ଖାଲି ଦେଖାଇ ଦେବାକୁ ହେଉଥିଲା ଯେ ଆମର ସୁସ୍ଥ ବିଚାର ବୁଦ୍ଧି ଅଛି । ଆମକୁ ଦିଗ୍‌ନିର୍ଦ୍ଦେଶ ଦେବାପାଇଁ ଯେଉଁ ସରଳ ସ୍ୱଚ୍ଛ ଚିଠିପତ୍ର ଆସୁଥିଲା ତାହା ଆମେ ବୁଝିପାରୁ । ଭାଷା ପରୀକ୍ଷା ଥିଲା ଅଧିକତର କଷ୍ଟ, କାରଣ ଆମକୁ ଦେଖାଇବାକୁ ପଡୁଥିଲା ଯେ ଆମେ ସେଥିରେ ଭଲରୂପେ କଥାବାର୍ତ୍ତା କରିପାରୁ, ବୁଝିପାରୁ ଏବଂ ବିଭିନ୍ନ ଗାଉଁଲି ବୋଲି କହୁଥିବା ରୁକ୍ଷ ଚାଷୀକୁଳକୁ ଆମ ନିଜକଥା ବୁଝାଇ ଦେଇପାରୁ । ଏହି ସଫଳତା ଫଳରେ ମୋତେ ପୂର୍ଣ୍ଣ କ୍ଷମତା ମିଳିଲା ଏବଂ ମୋ ଦରମା ମାସକୁ ୪୦୦ରୁ ୫୦୦ ଟଙ୍କାକୁ ବଢ଼ିଗଲା ।

ଜୁନ୍ ମାସରେ ମୋ ସ୍ତ୍ରୀକୁ ଜଳବାୟୁ ପରିବର୍ତ୍ତନର ପରାମର୍ଶ ଦିଆଗଲା । ଶୈଳନିବାସ ଯିବାପାଇଁ ମୋତେ ଛୁଟି ନ ମିଳିବାରୁ ହାର୍ଡ଼ିଞ୍ଜ ମୋତେ ଦୟାକରି ଜିଲ୍ଲାର ପଶ୍ଚିମପଟ ପରିଚାଳନା ଦାୟିତ୍ୱ ଦେଲେ । ଏହି ଅଞ୍ଚଳରେ ଝେଲମ ନଦୀ ସହ ସମାନ୍ତରାଳ ଭାବରେ ପାବଲିମାନରେ ଏକ ଅନୁଚ୍ଚ ପର୍ବତଶ୍ରେଣୀ ରହିଛି । ଏହାରି ଶୀର୍ଷରେ ପୂର୍ବତନ ଡେପୁଟି କମିଶନର ବାଣୀ ନାମକ ସ୍ଥାନରେ ମନୋରମ ଛୋଟ ବଙ୍ଗଳାଟିଏ କରାଇଥିଲେ । ଏହାର ଚାରିପଟେ ଉଦ୍ୟାନ ଏବଂ ଅମଲା ଓ ଚାକରମାନଙ୍କର ଘର ଥିଲା । ଏଇଠାରୁ କାଶ୍ମୀର ପର୍ବତମାଳାର ସୁନ୍ଦର ଦୃଶ୍ୟ ଦେଖାଯାଉଥିଲା । ଏହିଠାରେ କିଛିଦିନ ଆମେ ଖୁବ୍ ଆନନ୍ଦରେ ରହିଲୁ । ଏହି ପରିବର୍ତ୍ତନ ସ୍ତ୍ରୀଙ୍କ ପାଇଁ ଖୁବ୍ ଭଲ ହେଲା । ବୃଦ୍ଧ ବନ୍ଧୁ ଆଚିସନ ଏଠାରୁ ମାତ୍ର ଛ'ମାଇଲ ଦୂର ଝେଲମରୁ ତାଙ୍କୁ ଦେଖିବାକୁ ଘୋଡ଼ାଚଢ଼ି ବରାବର ଆସୁଥିଲେ ଏବଂ ଆମେ ଅନେକ ସମୟରେ ଦିନେ ଦୁଇଦିନ ପାଇଁ ଝେଲମ୍‌କୁ ଯାଉଥିଲୁ । ସେ ସମୟ ଖୁବ୍ ଆନନ୍ଦରେ କଟୁଥିଲା ।

ସେତିକିବେଳେ ଏକ ଅପୂର୍ବ ଘଟଣା ଘଟିଲା । ସେ ସମୟରେ ଭାରତରେ ଥିବା ପାଦ୍ରୀମାନଙ୍କର ଯାଜକସୁଲଭ ଗୁଣ ନ ଥିଲା ଅନ୍ତତଃ ଆମେ ଯେଉଁମାନଙ୍କ ସମ୍ପର୍କରେ ଆସିଥିଲୁ; ଅବଶ୍ୟ ସମଗ୍ର ଗୋଷ୍ଠୀଟାକୁ ସମୂହ ଭାବରେ ଦୋଷ ଦେବା ଉଚିତ ହେବ ନାହିଁ । ଆମେ ଯେଉଁ କେତେଜଣକୁ ଭେଟିଥିଲୁ ସେମାନଙ୍କ ସ୍ୱଭାବରେ ନିଶ୍ଚୟ ତ୍ରୁଟି ଥିଲା । ଦିନେ ସକାଳେ ପାଖରେ ଥିବା ଏକ ପୋଲିସ୍ ଥାନାକୁ ପରିଦର୍ଶନ କରିବାକୁ ଯାଇ ମୁଁ ବିଷାଦଗ୍ରସ୍ତ ସମାବେଶଟିଏ ଭେଟିଲି । ଥାନାଦାର, ମୋହରିର ଓ ଜମାଦାର ତାଙ୍କ ମୁଣ୍ଡରେ ରକ୍ତମିଶା ଛିଣ୍ଡାକନା ବେଶ୍ କୌଶଳରେ ବାନ୍ଧିଛନ୍ତି, ରକ୍ତ ତାଙ୍କ ମୁହଁ ଉପରକୁ ବୋହି ଶୁଖିଯାଇଛି । ସେମାନଙ୍କ ପୋଷାକ ଚିରିଯାଇ ଧୂଳିଧୂସରିତ ହୋଇଯାଇଛି । ମୋ ପ୍ରଶ୍ନର ଉତ୍ତରରେ ସେ କହିଲେ ଯେ ରାତିରେ ଜଣେ ପାଦ୍ରୀ ଝେଲମରୁ ଏକ ଡୋଲିରେ ଆସି ପହଞ୍ଚିଲେ । ସେ ମାତାଲ ଥିଲେ ଏବଂ ଏଠାରୁ ନେବାପାଇଁ ତାଙ୍କ ପାଇଁ ଅନ୍ୟ ବାହକ ହଠାତ୍ ନ ମିଳିବାରୁ ରାଗିଯାଇ ପୋଲିସ୍ ଅଫିସରମାନଙ୍କୁ ଡକାଇ ଖୁବ୍ ଗାଳିଗୁଲଜ କଲେ ଏବଂ ଏକ ମୋଟା ଠେଙ୍ଗାରେ ସମସ୍ତଙ୍କୁ ପିଟିଲେ । ଏହି ଉତ୍ୟକ୍ତ କାଣ୍ଡ ପରେ କ୍ଳାନ୍ତ ହୋଇ ଡୋଲିରେ ଶୋଇଗଲେ ଏବଂ ନୂତନ ବାହାକମାନେ ଆସି ପହଞ୍ଚିବାରୁ ତାଙ୍କୁ ତାଙ୍କ ରାସ୍ତାରେ ପଠାଇ ଦିଆଗଲା । ଅବଶ୍ୟ ପୋଲିସ୍ ଅଫିସରମାନେ

ନିଜସ୍ୱ ରୀତିରେ ଘଟଣାକୁ ଅତିରଞ୍ଜିତ କରିଥାଆନ୍ତି ଏବଂ କ୍ଷତ ଓ ରକ୍ତସବୁ ବେଶି ପରିମାଣରେ ଦେଖାଇବାର ପ୍ରଯତ୍ନ କରିଥାନ୍ତି; କିନ୍ତୁ ମୁଁ ଏଥିପ୍ରତି ଦୃଷ୍ଟି ଦେବାକୁ ବାଧ ଏବଂ ସେଥରଜ ଆଚିସନ ଆସିବା ମାତ୍ରେ ସେ ସେହି ପାଦ୍ରୀକୁ ଚିହ୍ନନ୍ତି କି ନା ପ୍ରଶ୍ନ କଲି । ସେ ହସି ହସି କହିଲେ ଯେ ପୂର୍ବତନ ରାତିରେ ଝେଲମ୍‌ଠାରେ ସୈନ୍ୟବାହିନୀ ମେସ୍‌ରେ ସେ ଖାଉଥିବାବେଳେ ସେହି ପାଦ୍ରୀ (ଯାହାଙ୍କ ନାମ ସେ କହିଲେ) ସେଠାରେ ଥିଲେ ଏବଂ ଅଫିସରମାନେ କୌତୁକ ଦେଖିବା ପାଇଁ ତାଙ୍କୁ ମାତାଲ କରିଦେଇ ତାଙ୍କ ଡୋଲିରେ ଶୁଆଇଦେଇ ତାଙ୍କ ଗନ୍ତବ୍ୟପଥରେ ପଠାଇ ଦେଲେ । ସେ ପାଦ୍ରୀଙ୍କୁ ଡକାଇ ତାଙ୍କୁ ଖୋଲା ଅଦାଲତରେ ଦଣ୍ଡ ପାଇବାର ବଦନାମ୍‌ରୁ ରକ୍ଷାକରିବା ଇଚ୍ଛାରେ ସଂଯତ ଶବ୍ଦ ସମ୍ବଳିତ ଭାଷାରେ ଅଭିଯୋଗ ବିଷୟ ଜଣାଇ ଦେଲି ଏବଂ ସେଇ ପୋଲିସ୍ ଅଫିସରମାନଙ୍କୁ କିଛି ଉପହାର ଦେଇ ସେମାନଙ୍କ ସହ ସାଲିସ୍ କରି ଅଭିଯୋଗ ପ୍ରତ୍ୟାହାର କରିବାକୁ ପ୍ରବର୍ତ୍ତାଇବା ପାଇଁ ପରାମର୍ଶ ଦେଲି । ଆଚିସନ୍‌ଙ୍କ ନାମୋଲ୍ଲେଖ ନ କରି ମୁଁ ମଧ ତାଙ୍କୁ କହିଥିଲି ଯେ ମେସ୍‌ରେ ଘଟିଥିବା ଘଟଣାସବୁ ମୁଁ ଜାଣେ । ଅଳ୍ପଦିନ ମଧରେ ସେହି ପାଦ୍ରୀଙ୍କଠାରୁ ଚାଳିଶ ପୃଷ୍ଠାର ଏକ ଚିଠି ପାଇଲି । ସେଥିରେ ସେ ମୋ ଉପରେ ଅଭିଯୋଗ କରିଥିଲେ ଯେ ମୁଁ ତାଙ୍କ କ୍ରିୟାକଳାପ ଉପରେ ଗୁପ୍ତ ନଜର ରଖିଚି, ତାଙ୍କ ଉପରେ ବଦନାମୀ ଅଭିଯୋଗ ଆଣିବାକୁ ବେନାମୀ ଅଭିଯୋଗକାରୀଙ୍କୁ ଉସ୍‌କାଉଛି । ଚିଠି ଶେଷରେ "Pontius Pilati' Judas I scariot" (୧) ଅନ୍ଧାରରେ ଲୁକ୍‌କାୟିତ ହତ୍ୟାକାରୀ ଓ ସେହିପରି କେତେକ ଭୟଙ୍କର ଖ୍ରୀଷ୍ଟଧର୍ମୀୟ ଗାଳି ମୋ ଉପରେ ବର୍ଷଣ କରିଥିଲେ । ଯାହାହେଉ ସେ ଅଭିଯୋଗ ଅସ୍ୱୀକାର କରିନଥିଲେ । ବିଶପ କଟନଙ୍କ ସହ ମୋର ଥରେ ଦୁଇଥର ସାକ୍ଷାତ୍ ହୋଇଥିଲା । ମୁଁ ତାଙ୍କ ପାଖକୁ ଲେଖିଲି । ସେହି ସହୃଦୟ ଦୟାଳୁ ବିଶପ ପତ୍ରର ଉତ୍ତର ଦେଇ ସେ ପାଦ୍ରୀଙ୍କୁ ପୋଲିସ୍ କୋର୍ଟ୍‌କୁ ଅଣାଇ ନ ଥିବାରୁ ମୋତେ ଧନ୍ୟବାଦ ଦେଲେ । ତା'ର ଅବିଚାରିତ ଉଦ୍ଧତ୍ୟକ୍ତ କାଣ୍ଡପାଇଁ ଓ ସେ ଲେଖିଥିବା ୪୦ ପୃଷ୍ଠାର ଅପ୍ରାସଙ୍ଗିକ, ଅଯଥାର୍ଥ ଅପବାଦର ଭାଷା ପାଇଁ ଦୁଃଖ ପ୍ରକାଶ କଲେ । ସେ ଉଲ୍ଲେଖ କରିଥିଲେ ଯେ ସେ ସେହି ପାଦ୍ରୀକୁ ମୋର ବନ୍ଧୁସୁଲଭ ଉପଦେଶ ସାଙ୍ଗେ ସାଙ୍ଗେ ଗ୍ରହଣ କରି, ପୋଲିସ୍ ଉପରେ କରିଥିବା କ୍ଷତିର ପୂରଣ କରିବାକୁ ଏବଂ ମୋ ପାଖକୁ ଲେଖିଥିବା ଅପମାନଜନକ ପତ୍ର ପାଇଁ କ୍ଷମା ମାଗିବାକୁ ଲେଖିଛନ୍ତି । ଯଥାସମୟରେ ସେହି ପାଦ୍ରୀଠାରୁ ଏକ ଚିଠି ଆସିଲା— ଏଥର ଖୁବ୍ ଛୋଟ— ଅଧା କ୍ଷମା ମାଗିଲା ଭଳି । ପତ୍ର ଶେଷରେ ଏହିଭଳି ଉଲ୍ଲେଖ ଥିଲା, "ଆମ ଉଭୟଙ୍କର ଅନେକ କିଛି ଭୁଲିଯିବାର ଓ କ୍ଷମାଦେବାର ଅଛି ।" ଏହା ମୋତେ ଆଦୌ ସନ୍ତୋଷ ଦେଲା ନାହିଁ; କିନ୍ତୁ ସେ ପୋଲିସକୁ କ୍ଷତିପୂରଣ ଦେଇଥିବାରୁ ହାର୍ଡ଼ିଞ୍ଜଙ୍କ ଅନୁରୋଧ କ୍ରମେ ମୁଁ ସେ ଘଟଣାର ପୂର୍ଣ୍ଣଚ୍ଛେଦ ଟାଣିଦେଲି ।

---

(୧) ଜଣେ ଯିଶୁଖ୍ରୀଷ୍ଟଙ୍କୁ ଧରାଇ ଦେବା ଲୋକ ଓ ଅନ୍ୟ ଜଣେ ତାଙ୍କର କୃତଘ୍ନ ବନ୍ଧୁ । ଶିଖି ମନାଇ ପରି ଏହି ଦୁଇ ନାମ ଗାଳିରେ ପ୍ରଯୁକ୍ତ ହୁଏ । — ସଙ୍କଳକ ।

ବର୍ତ୍ତମାନ ହାର୍ଡ଼ିଞ୍ଜ ପ୍ରକାଶ କଲେ ଯେ ସେ ଛୁଟି ନେବାର ଅନୁମତି ଲୋଡ଼ିଛନ୍ତି । ଏଥିରେ ଆମେ ଖୁବ୍ ଦୁଃଖିତ ହେଲୁ, କାରଣ ସେ ଆମ ଉଭୟଙ୍କର ଅତି ପ୍ରିୟ ଥିଲେ । ସେ ସେପ୍ଟେମ୍ବରରେ ଚାଲିଗଲେ ଏବଂ ତାଙ୍କ ଜାଗାରେ ଆସିଲେ ଲେଫ୍ଟନାଣ୍ଟ ପାସଙ୍କେ, ସିଭିଲ୍ ସଂସ୍ଥାରେ ଥିବା ସାମରିକ ଲୋକମାନଙ୍କ ମଧ୍ୟରୁ ଅନ୍ୟତମ; ସେତେବେଳେ ସେ ଧରଣର ଅନେକ ଥିଲେ । ସେ ସେସମୟରେ ଅର୍ଥକମିଶନର ଶ୍ରୀ ଡୋନାଲଡ୍ ମ୍ୟାକ୍ଲଏଡ୍‌ଙ୍କର ଘନିଷ୍ଠ ବନ୍ଧୁ ଥିଲେ । ସେ ଶିକ୍ଷାବିଭାଗରେ ଥିବାବେଳେ ତାଙ୍କୁ ତାଙ୍କ ପୃଷ୍ଠପୋଷକ ବନ୍ଧୁ ଏହି ଉତ୍ତମ ପଦରେ ଭର୍ତ୍ତି କରାଇ ଦେଲେ । ତାଙ୍କ ସ୍ତ୍ରୀ ଥିଲେ ଅତ୍ୟନ୍ତ ଅକୁଳୀନା, ଉଗ୍ରସ୍ୱଭାବା । ସେ ତାଙ୍କ ସ୍ୱାମୀଙ୍କ ପଦମର୍ଯ୍ୟାଦାର ସମ୍ଭାବନାରେ ଅତି ବିକୃତ ରୂପେ ଫୁଲିଉଠି ମୁଁ ଓ ମୋ ସ୍ତ୍ରୀ ତାଙ୍କୁ ଚାଟୁକ୍ତି ସହ ସେବା କରିବୁ ବୋଲି ଆଶା କଲେ । ପୂର୍ବର ବନ୍ଧୁ ହାର୍ଡ଼ିଞ୍ଜଙ୍କ ସାମ୍ୟଭାବ ଓ ସହୃଦୟତା ସ୍ଥଳରେ ସମ୍ପୂର୍ଣ୍ଣ ବିପରୀତ ଭାବରେ ସେ ଆମକୁ 'ସହକାରୀ ମାତ୍ର' ବା ସେହିପରି ଅନ୍ୟ ଅପମାନଜନକ ଉକ୍ତିଦ୍ୱାରା ବାରମ୍ବାର ଉତ୍ତେଜିତ କରୁଥିଲେ । ଏହା ସାଙ୍ଗକୁ ପାସ୍‌କେ ଜିଲ୍ଲାର ଶାସନ ବ୍ୟବସ୍ଥାରେ ଅନେକ ପରିବର୍ତ୍ତନ କରି ଦେଲେ । ଜିଲ୍ଲା କାମରେ ତାଙ୍କର ଅଜ୍ଞତା ହେତୁ ଏହାର ଫଳ ଖରାପ ଆଡ଼କୁ ଗଡିକଲା । ପୁରୁଣା ସର୍ଦ୍ଦାର ଓ ଚୌଧୁରୀମାନେ ନୂଆ ଶାସନ ବିଷୟରେ ଅଭିଯୋଗ ନେଇ ମୋ ପାଖକୁ ଆସୁଥିଲେ ଏବଂ ସେମାନଙ୍କ ପରି ମୁଁ ମଧ ବିରକ୍ତ ହେଉଥିଲେ ମଧ କିଛି କରିପାରିବାର ଶକ୍ତି ମୋର ନ ଥିଲା । ଏହିପରି ଅପ୍ରୀତିକର ପରିବେଶରେ ଶୀତକାଳଟା କଟିଗଲା ଏବଂ ନବବର୍ଷର ଆରମ୍ଭ ବେଳକୁ ମୁଁ ଏହି ଲୋକଟିର କାମରେ ଦୁର୍ଭାଗ୍ୟବଶତଃ ନିଜକୁ ଏତେ ଉତ୍ତ୍ୟକ୍ତ କରି ଦେଲି ଯେ ମନର ଭାରସାମ୍ୟ ହରାଇ ତାଙ୍କ ସହ ଘୋର କଳହ କଲି, ଯାହା ଫଳରେ ମୋର ଅନ୍ୟ ଏକ ଜିଲ୍ଲାକୁ ବଦଳି ହେଲା ଏବଂ ଆମେ ୧୮୬୧ ଫେବୃୟାରୀରେ ଆମର ପ୍ରିୟ ଗୁଜୁରାଟ ଛାଡ଼ି ନୂଆ ଜିଲ୍ଲା ଅମ୍ବାଲାକୁ ଗଲୁ ।



# ନବମ ପରିଚ୍ଛେଦ

## ଅମ୍ବାଲା ଓ ଲୁଧିଆନା : ୧୮୬୧

ଆମର ବିଦାୟରେ ଖୁବ୍ ଦୁଃଖ ପ୍ରକାଶ କରାଗଲା ଏବଂ ସ୍ଥାନୀୟ ମୁଖିଆମାନଙ୍କର ଅଶ୍ୱାରୋହୀ ଶୋଭାଯାତ୍ରାଟିଏ କେତେ ମାଇଲ ପର୍ଯ୍ୟନ୍ତ ଆମ ସାଙ୍ଗରେ ଯାଇ ଆମଠାରୁ ସସ୍ନେହ ବିଦାୟ ଗ୍ରହଣ କଲେ । ଏଥିରେ ବୋଧହୁଏ ମୋର ଅଭିଯୋଗ କରିବାର ବିଶେଷ କିଛି ନ ଥିଲା, କାରଣ ପଞ୍ଜାବର ସର୍ବୋତ୍ତମ ବୋଲି ମନେ କରାଯାଉଥିବା ଜିଲ୍ଲାମାନଙ୍କରୁ ଗୋଟିକରେ ଦୁଇବର୍ଷ କାଳ ରହିଥିଲି । ଛ'ମାସଠାରୁ କମ୍ ସମୟ ମଧରେ ଲୋକଙ୍କୁ ବଦଳି କରାହେଉଥିବା ବେଳେ ଏହା ଥିଲା ଅସାଧାରଣ । ତଥାପି ଆମର ସେଇ ଛୋଟ ସୁନ୍ଦର ଘର ଓ ସେ ଅଞ୍ଚଳରେ ଆମର ହୋଇଥିବା ଅସଂଖ୍ୟ ବନ୍ଧୁଙ୍କୁ ଛାଡୁଥିବାରୁ ଦୁଃଖ ହେଲା । ତା'ପରେ ପୁଣି ପ୍ରଦେଶର ସମ୍ପୂର୍ଣ୍ଣ ଅନ୍ୟ ପ୍ରାନ୍ତକୁ ଯିବାକୁ ପଡ଼ିଲା ଯେଉଁଠି ଆମେ କାହାକୁ ଜାଣୁନା ଏବଂ ଯେଉଁଠାରେ ଜୀବନଧାରା ସମ୍ପୂର୍ଣ୍ଣ ଭିନ୍ନ । ସ୍ତ୍ରୀଙ୍କର ସ୍ୱାସ୍ଥ୍ୟ ମଧ ଅନୁକୂଳ ନ ଥିଲା । ୧୮୬୧ ଫେବୃୟାରୀ ୨୧ ତାରିଖରେ ୭ଦିନର କ୍ଲାନ୍ତିକର ଯାତ୍ରା ପରେ ଆମେ ଅମ୍ବାଲାରେ ପହଞ୍ଚିଲୁ ଏବଂ ଡେପୁଟି କମିଶନର କଲନେଲ ବସ୍କ ଆମକୁ ଆତିଥେୟତାର ସହ ସ୍ୱାଗତ କଲେ । ସେ ଜଣେ ଚୁପ୍‌ଚାପ୍ ଲାଜକୁଳା ମୃଦୁଦାର ବ୍ୟକ୍ତି, ସେତେ ମେଳାପୀ ନୁହନ୍ତି । ଯାହାହେଉ ଆମପ୍ରତି ସେ ସ୍ନେହଶୀଳ ହୋଇପଡ଼ିଲେ ଏବଂ ଅନ୍ୟମାନଙ୍କ ଅପେକ୍ଷା ଆମ ସହିତ ଅଧିକ ଖୋଲା ଭାବରେ ବ୍ୟବହାର କଲେ । ଦୀର୍ଘଯାତ୍ରା ଫଳରେ ମୋ ସ୍ତ୍ରୀ ବିଚରା ଏତେ ଭାଙ୍ଗିପଡ଼ିଥିଲେ ଯେ ମୁଁ ଗର୍ଭପାତ ହୋଇଯିବାର ସମ୍ଭାବନା କରୁଥିଲି । ଯାହାହେଉ କେତେଦିନର ବିଶ୍ରାମ ପରେ ସେ ସୁସ୍ଥ ହେଲେ । ଆମେ ଯେଉଁ ଖାଲି ଘରଟିଏ ପାଇ ରହିଲୁ ସେଥିରେ ସୁବିଧା ସବୁ ଚଳନୀୟ ଥିଲା ।

ଅମ୍ବାଲାରେ ମୋତେ କିପରି ଅଦ୍ଭୁତ ଧରଣର ଓ ଅଗାଧ ସାଗରରେ ପଶିବା ପରି ଲାଗିଲା, କାରଣ ପଞ୍ଜାବର ସବୁ ଜିଲ୍ଲା ଯଦିଓ ଗୋଟିଏ ପଦ୍ଧତିରେ ଶାସିତ ତଥାପି ଏ ସଂସାରରେ ସମ୍ପୂର୍ଣ୍ଣ ସାମ୍ୟ କେବେ ସମ୍ଭବ ନୁହେଁ ଏବଂ ସେ ସ୍ଥାନର ପରିସ୍ଥିତି ଗୁଜୁରାଟରୁ ଏତେ ଭିନ୍ନ ଯେ ସେଠିକାର କାମ ମୋ ପାଇଁ ଥିଲା ସମ୍ପୂର୍ଣ୍ଣ ନୂତନ । ଗୁଜୁରାଟଠାରେ ଏହି ଜିଲ୍ଲାଟି ଖୁବ୍ ବଡ଼ ଓ ସୁସଭ୍ୟ, ଫଳତଃ, କାମ ମଧ ଖାଲି ଅଧିକ ନୁହେଁ, ଜଟିଳ । ମୋର ପୁରୁଣା ଜିଲ୍ଲାରେ ଜାଠ ଓ ଗୁଜାରମାନଙ୍କର ଗୋମେଷାଦି ଅପହରଣ ଓ ନାରୀଧର୍ଷଣ ପ୍ରଭୃତି ସାମାନ୍ୟ ଅପରାଧ ସ୍ଥଳରେ ମୋତେ ବର୍ତ୍ତମାନ ଜାଲ୍, ମିଥ୍ୟାସାକ୍ଷ୍ୟ ଓ ତୋଷରପାତ ପ୍ରଭୃତି ଜଟିଳ କେଶ୍‌ର ବିଚାର କରିବାକୁ ପଡ଼ିଲା ଏବଂ ନିକଟରେ ମୋ ଉପରେ ନ୍ୟସ୍ତ ଏକ ବିଶେଷଧରଣର ଦାୟିତ୍ୱ ଫଳରେ ଥରେ ଅଧେ ସୈନ୍ୟ ଶିବିରରେ ୟୁରୋପୀୟ ସୈନିକମାନଙ୍କର ବିଚାର ମଧ କରିବାକୁ ପଡୁଥିଲା । ଅମ୍ବାଲାର ବେସାମରିକ ଅଞ୍ଚଳର ପ୍ରାୟ ଛ'ମାଇଲ ଦୂରରେ ପ୍ରଶସ୍ତ ସୁପରିକଳ୍ପିତ ସେନାନଗରୀ

ଥିଲା । ସେଥିରେ ଥିଲା ଅନେକ ମାଇଲର ଚଉଡ଼ା, ବୃକ୍ଷ ଛାୟା ସେବିତ, ପରସ୍ପର ସମକୋଣରେ ଛେଦ କରୁଥିବା ରାସ୍ତା, ବଡ଼ ହତା ଥିବା ଅନେକ ଘର, ଦୋକାନ, ବଜାର ଓ ସେନାଛାଉଣି । ସେଠାରେ ମଧ ଥିଲା ଏକ ବିରାଟ ଜନବହୁଳ, ପ୍ରାଚୀର ପରିବେଷ୍ଟିତ ଏବଂ ସୁଦୃଢ଼ ଦୁର୍ଗ ଦ୍ୱାରା ସୁରକ୍ଷିତ ଦେଶୀୟ ନଗରୀ । ତା'ର ଚତୁର୍ଦ୍ଦିଗରେ ଅନୁର୍ବର, ଶୁଷ୍କ, ଜଳହୀନ ବାଲି ଓ ପଥରର ପ୍ରାନ୍ତର ଥିଲା ଏବଂ ଉତ୍ତର ଦିଗ୍‌ବଳୟରେ ଦେଖାଯାଉଥିଲା ହିମାଳୟର ତୁଷାରମଣ୍ଡିତ ଚୂଡ଼ା । ମୋର ସେଠାରେ ପହଞ୍ଚିବାର ଠିକ୍ ପରେ ପରେ ସେଠାରେ ବର୍ଷର ଏକମାତ୍ର ପ୍ରଧାନ ଫସଲ ଗହମ ନଷ୍ଟ ହୋଇଯାଇଥିଲା ଏବଂ କେବଳ ଅମ୍ବାଲାରେ ନୁହେଁ ଚତୁର୍ଦ୍ଦିଗର ମାଇଲ ମାଇଲ ବ୍ୟାପୀ ଅଞ୍ଚଳରେ ଦୁର୍ଭିକ୍ଷ ପଡ଼ିଯାଇଥିଲା । ମୋତେ ପର୍ବତର ନିମ୍ନାଂଶରେ ଶତଲେଜ ନଦୀକୂଳରେ ଥିବା ରାପୋର, ଖରାର, ମୋରିନ୍ଦା ପରଗଣାମାନଙ୍କର ଦାୟିତ୍ୱ ନେବାପାଇଁ ପଠାହେଲା । ମୁଁ ତମ୍ବୁଭିତରେ ରହି ପ୍ରତିଦିନ ସୂର୍ଯ୍ୟୋଦୟ ପୂର୍ବରୁ ଉଠେ ଓ ତହସିଲଦାରଙ୍କ ସହ ଗାଁ ପରେ ଗାଁ ଘୋଡ଼ାରେ ବସି ବୁଲେ, ଫସଲର ଅବସ୍ଥା ପରୀକ୍ଷା କରେ ଏବଂ ଦୁର୍ଭିକ୍ଷଗ୍ରସ୍ତ ଲୋକମାନଙ୍କୁ କେତେ ପରିମାଣ ସାହାଯ୍ୟ ଦିଆଯିବା ଆବଶ୍ୟକ ସେ ବିଷୟରେ ଟିପିରଖେ । ସବୁ ଗାଁରେ ଲୋକେ ଆମ ଚାରିପଟେ ରୁଣ୍ଡ ହୋଇ ଶୁଖିଲା ପଡ଼ିଥିବା ସେମାନଙ୍କର କ୍ଷେତ ଓ ସମ୍ପୂର୍ଣ୍ଣ ନ ହେଲେ ମଧ ପ୍ରାୟ ଖାଲି ପଡ଼ିଥିବା ଶସ୍ୟାଗାର ଦେଖାଉଥିଲେ । ପ୍ରାୟ ୧୧ଟାବେଳେ ତମ୍ବୁରେ ପହଞ୍ଚି ମୁଁ ବିଚାର କାମ ସାରି ବିବରଣୀ ଲେଖି ଦିନଟି କଟାଇଦିଏ । ଚାରିଟାବେଳେ ପୁଣି ଘୋଡ଼ା ଉପରେ ଚଢ଼ି ଆଉ କେତେକ ଗାଁରେ ବୁଲି ସନ୍ଧ୍ୟାର ବହୁତ ପରେ ବସାକୁ ଫେରେ । ଅନୁର୍ବର ପଥୁରିଆ ପର୍ବତ ଧାରଠାରୁ ଦକ୍ଷିଣରେ ରାଜପୁତାନାର ମରୁଭୂମି ପର୍ଯ୍ୟନ୍ତ ଶସ୍ୟହାନି ହୋଇଥିଲା । ଗହମଗଛ ଖୁବ୍ ବେଶିରେ ୩ଇଞ୍ଚ ପର୍ଯ୍ୟନ୍ତ ବଢ଼ିଥିଲା ଏବଂ ସେଥିରେ ଶିଶା ବାହାରିଯାଇ ତାହା ଶୁଖିଲା ଓ ଫମ୍ପା ହୋଇଯାଇଥିଲା । କୂଅ ସବୁ ଶୁଖିଯାଇଥିଲା । ଅନେକ ଗୋରୁ ମରିଯାଇଥିଲେ ଏବଂ କେତେବେଳେ ମୃତ୍ୟୁ ଆସି ସେମାନଙ୍କୁ ମଧ ନେଇଯିବ ଲୋକେ ତାହାହିଁ ଅପେକ୍ଷା କରି ଦୁଃଖ ଓ ନୈରାଶ୍ୟ ଜର୍ଜରିତ ହୋଇ ଜୀବନରେ ଦିନ କାଟୁଥିଲେ । ଭାରତର ଏଇ ଅଂଶ ଅତି ଆଦିମ କାଳରୁ ଆକ୍ରମଣକାରୀଙ୍କ ସହ ଲଢ଼େଇର କ୍ଷେତ୍ର ହୋଇଥିବାରୁ ଏଠାରେ ବହୁ ପରିମାଣରେ ଦୁର୍ଗ ବିଛେଇ ହୋଇ ରହିଛି । ସେ ସବୁରେ ଆଶ୍ଚର୍ଯ୍ୟ ଭାବରେ ମଧ୍ୟଯୁଗୀୟ ୟୁରୋପୀୟ ଦୁର୍ଗଭଳି ମଝିରେ ଉଚ୍ଚ ପର୍ଯ୍ୟବେକ୍ଷଣ ସ୍ତମ୍ଭ, ଗୋଟିଏ ବା ଦୁଇଟି ପ୍ରାଙ୍ଗଣ, ମଝିରେ ଗୁଳିଚାଳନା ସ୍ଥାନ ଥିବା ଉଚ୍ଚ ଓ ସୁଦୃଢ଼ ପ୍ରାଚୀରଘେରା ସ୍ଥାନ ଥିଲା । ସମସ୍ତ ଦୁର୍ଗଟି ଗୋଟିଏ ଖାଇ ଦ୍ୱାରା ବେଷ୍ଟିତ ହୋଇ ସେଥିରେ ଗୋଟିଏ ମାତ୍ର ଅପସାରଣଶୀଳ ପୋଲ ରହୁଥିଲା । ଏହିସବୁ ଦୁର୍ଗରେ ଜଣେ ଜଣେ ପୁରାତନ ସାମନ୍ତ ରାଜା ରହୁଥିଲେ । ସେମାନେ ସମସ୍ତେ ସୁସଜ୍ଜିତ ହୋଇ ଆସି ମୋତେ ଭେଟିଲେ ଏବଂ ଅଭାବ ଯୋଗୁଁ ଭୋଗୁଥିବା ଦୁର୍ଦ୍ଦଶାର କରୁଣ ଅଭିଯୋଗ ଉପସ୍ଥାପିତ କଲେ । ଏପ୍ରିଲର ଅଧଯାଏ ମୁଁ ତମ୍ବୁରେ ଥିଲି । ତା'ପରେ ଗରମ ଅସହ୍ୟ ହେବାରୁ ମୋତେ ମୋ ସ୍ଥାନକୁ ଫେରାଇ ନିଆଗଲା । କ୍ଲାନ୍ତି ଓ ଖୋଲାପବନ ସମ୍ଭାଳିବାକୁ ଯଥେଷ୍ଟ ଦମ୍ଭ ଆସିନଥିବାରୁ ମୋ ସ୍ତ୍ରୀ ଏ ଗସ୍ତରେ ମୋ ସହ ଯାଇନଥିଲେ । ମୁଁ ଏତେ ସୁସ୍ଥ ଥାଇ ବି ଭାଙ୍ଗିପଡ଼ିଥିଲି । କିନ୍ତୁ ମୋ ପାଇଁ ବିଶ୍ରାମ ନ ଥିଲା । ସହରରେ ଓ ଜିଲ୍ଲାର ବିଭିନ୍ନ ଅଞ୍ଚଳରେ ଖାଦ୍ୟ ଓ ଆଶ୍ରୟ ପାଇଁ ଛତ୍ରମାନ ଖୋଲାଗଲା

ଏବଂ ଗାଁ ଗହଳରୁ ଦୁର୍ଭିକ୍ଷଗ୍ରସ୍ତ ଲୋକେ ଜମା ହେଲେ । ଡେପୁଟି କମିଶନର ଏବଂ ତାଙ୍କ ସହକାରୀମାନଙ୍କ ତତ୍ତ୍ୱାବଧାନରେ ସେମାନେ ଦିନକୁ ଦୁଇଥର କିଛି କିଛି ଖାଦ୍ୟ ପାଉଥିଲେ, କାରଣ ଏପରି ଭୀଷଣ ଜରୁରି ପରିସ୍ଥିତିରେ ମଧ ଆତ୍ମସାତ୍ କରିଦେବା ବିଷୟରେ ଦେଶୀ କର୍ମଚାରୀମାନଙ୍କୁ ବିଶ୍ୱାସ କରି ହେଉନଥିଲା । ତେଣୁ ପ୍ରତ୍ୟହ ଆମେ ପ୍ରତ୍ୟେକେ ଖାଦ୍ୟ ବଣ୍ଟନର ତତ୍ତ୍ୱ ନେଉଥିଲୁ । ସେହି ସମୟ ମଧରେ ବିଚାରକାର୍ଯ୍ୟ ମଧ ଚାଲୁ ରହିଥିଲା । ବିରାଟ କାରାଗାରଟି ଛୋଟ ଛୋଟ ଚୋରିରେ ଦଣ୍ଡିତ ଲୋକଙ୍କ ଦ୍ୱାରା ପୂରିଗଲା । ସେଠାକୁ ସେମାନେ ଜାଣିଶୁଣି ଆସୁଥିଲେ ଖାଦ୍ୟ ପାଇବା ପାଇଁ । ସେ ସମୟ ଥିଲା ଅତି ଭୟଙ୍କର ।

୧୮୬୧ ମେ ୧୪ରେ ମୋ ସ୍ତ୍ରୀ ପୁଅଟିଏ ପ୍ରସବ କଲେ, ନୀଳ ଆଖିଥିବା ସୁନ୍ଦର ବଡ଼ ଛୁଆଟିଏ । ଆମେ ଖୁବ୍ ଆନନ୍ଦିତ ହୋଇଥିଲୁ; କିନ୍ତୁ ଖୁବ୍ ଅଳ୍ପଦିନ ପାଇଁ, କାରଣ ଆମର ସେ ସୁନ୍ଦର ପିଲାଟି ୨୨ତାରିଖରେ ହଠାତ୍ ମରିଗଲା । ଆମେ ପରେ ଜାଣିଲୁ ଯେ ମଦୁଆ ଅସାବଧାନ ସେ ବୁଢ଼ା ଡାକ୍ତର ତାକୁ ସଂସାରକୁ ଆଣିଲାବେଳେ ତା' ମୁଣ୍ଡକୁ ଖଣ୍ଡିଆ କରି ଦେଇଥିଲା ଏବଂ ଆମକୁ ସେ କଥା ଲୁଚାଇଥିଲା । ୨୨ତାରିଖ ଦିନ ରାତିରେ ପଞ୍ଜାବରେ ଯେପରି ବାହାରେ ଶୁଅନ୍ତି ସେହିପରି ମୁଁ ବଗିଚାରେ ଖଟ ପକେଇ ଶୋଇଥିବାବେଳେ ମୋ ସ୍ତ୍ରୀଙ୍କ ଡକରାପାଇ ତାଙ୍କୁ ଦେଖିବାକୁ ଗଲି । ସେ ପିଲାଟିକୁ ବାହୁରେ ଧରିଥିଲେ ଏବଂ କହିଲେ ଯେ ସେ ଖୁବ୍ କଷ୍ଟ ଯୋଗୁଁ ଚିତ୍କାର କରି କାନ୍ଦୁଚି ଏବଂ ଅସ୍ୱାଭାବିକ ଭାବରେ ତେରେଛେଇ ଚାହୁଁଚି । ସେ ମୋତେ ଡାକ୍ତର ଡାକିବାକୁ ଅନୁରୋଧ କଲେ ଏବଂ ମୁଁ ପୋଷାକ ପିନ୍ଧି ଘୋଡ଼ା ମଗାଇ ସେନାନଗରୀରେ ଥିବା ଡାକ୍ତରଙ୍କ ନିବାସକୁ ଝପଟାଇଲି । ସେମାନେ ବେସାମରିକ ଅଞ୍ଚଳ ପାଇଁ କୌଣସି ବେସାମରିକ ଡାକ୍ତର ଦେଇନଥିଲେ । ଡାକ୍ତର ତାଙ୍କର ବଗିଚାରେ ଶୋଇଥିବା ଦେଖିଲି । ସେ ମୋ ପ୍ରତି ବିଶେଷ ଧାନ ଦେଲେ ନାହିଁ ଏବଂ ମୁଁ ଯେତେବେଳେ ଲକ୍ଷଣ ସବୁ ବର୍ଣ୍ଣନା କଲି ସେ ହସିଲେ ଏବଂ କହିଲେ— "ପେଟରେ କିଛି ବାୟୁ ହୋଇଛି ମାତ୍ର, ତାକୁ କିଛି ରୁବାର୍ବ (ଏକ ଜୀର୍ଣ୍ଣକାରୀ ଉଦ୍ଭିଦ ଓଡ଼ିଶାରେ ଯାହାକୁ କୁହାଯାଏ 'ରେଉଚିନି') ଦିଅ । ମୁଁ ସକାଳେ ଯିବି ଏବଂ ବୁଲିପଡ଼ି ପୁଣି ଶୋଇପଡ଼ିଲେ । ବହୁତ ସାନ୍ତ୍ୱନା ଲାଭକରି ମୁଁ ଘୋଡ଼ା ଝପଟାଇ ଫେରିଲି ଏବଂ ସ୍ତ୍ରୀଙ୍କ ଶୋଇବା ଘରକୁ ଯାଇ ଡାକ୍ତରଙ୍କ କହିବା କଥା କହିଲି । ସେ ମୋ କଥା ସବୁ ଶୁଣିଲେ ଏବଂ ସ୍ଥିରଭାବରେ କହିଲେ, "ପିଲାଟି ମରିଗଲା" । ଏହା ଥିଲା ଆମ ଉଭୟଙ୍କ ପାଇଁ ଏକ ଦାରୁଣ ଧକ୍କା, ବିଶେଷକରି ମୋ ସ୍ତ୍ରୀଙ୍କୁ । ତାଙ୍କୁ ସୁସ୍ଥ ହେବାପାଇଁ ବହୁତ ଦିନ ଲାଗିଲା ଏବଂ ନୂତନତମ ଚିକିତ୍ସାଜ୍ଞାନ ଲାଭ କରି ସଦ୍ୟ ଦେଶରୁ ଫେରିଥିବା ଜ୍ଞାନୀ ଯୁବକ ଡାକ୍ତର ଡା: ଇନ୍‌ସ ନ ଥିଲେ ହୁଏତ ଆଉ ଅନେକ ଦିନ ଲାଗିଥାନ୍ତା । ଇନ୍‌ସ୍‌ଙ୍କ କାଣିଆଙ୍ଗୁଠିରେ ଯାହା ଜ୍ଞାନ ଥିଲା, ନିର୍ବୋଧ ଅସାବଧାନ ମଦୁଆ ବୁଢ଼ା ବିସ୍ତର ସମଗ୍ର ପିଣ୍ଡରେ ସେତିକି । ବ୍ୟବସାୟିକ ଚଳଣି ଅନୁଯାୟୀ ଇନ୍‌ସ୍‌କୁ ମୋ ସ୍ତ୍ରୀଙ୍କୁ ଚିକିତ୍ସା କରିବାରେ ବାଧା ଦିଆଗଲା । ସେତେବେଳେ ବିଭାଗୀୟ ଅନ୍ୟାୟ ଏପରି ଥିଲା ଯେ ଆମେ କେବଳ ସରକାରୀ ନିଯୁକ୍ତ ଡାକ୍ତରଙ୍କୁ ଡାକି ପାରୁଥିଲୁ ଏବଂ ବେସାମରିକ ଅଞ୍ଚଳରେ ଡାକ୍ତରଙ୍କ ପ୍ରାପ୍ୟ ଖୁବ୍ ଲୋଭନୀୟ ଥିବାରୁ ଉଚ୍ଚପଦସ୍ଥ ମେଡ଼ିକାଲ ଅଫିସରମାନେ କେବଳ ଏହା ଦାବି

କରୁଥିଲେ ଓ ପାଉଥିଲେ । ଏହି ପୁରୁଣାକାଳିଆ ବୁଢ଼ାଙ୍କ ମଧ୍ୟରୁ ଅନେକ ବର୍ଷ ବର୍ଷ ଧରି ଦେଶକୁ ଫେରି ନ ଥିଲେ, କେବେ ଚିକିତ୍ସା ପୁସ୍ତକ ପଢ଼ି ନ ଥିଲେ କିମ୍ବା ଚିକିତ୍ସା ବିଜ୍ଞାନ କ୍ଷେତ୍ରରେ ଅଗ୍ରଗତି ସହ ସମ୍ପର୍କରେ ରଖି ନ ଥିଲେ । ସେମାନେ ଚିରାଚରିତ ରୀତିରେ ଅସାବଧାନରେ କାମ କରୁଥିଲେ ଏବଂ ଅଧିକାଂଶ ସମୟ ତାସ ଖେଳି, ମଦପିଇ କଟାଉଥିଲେ । ମୋ ସ୍ତ୍ରୀ ଥିଲେ ଜଣେ ସୁସ୍ଥ ସବଳ ତରୁଣୀ ଏବଂ ପିଲାଟି ମଧ ଥିଲା ସୁସ୍ଥ ଓ ପୂର୍ଣ୍ଣାବୟବ । ପ୍ରସବ ପୂର୍ବ ବିଶ୍ରାମରେ କିଛି ବ୍ୟାଘାତ ନ ଥିଲା । ବୃଦ୍ଧ ବି— ବୋଧହୁଏ ଥିଲେ ଅର୍ଦ୍ଧସୁସ୍ଥ ମାନସିକ ଅବସ୍ଥାର ଲୋକ । ସାମୟିକ ନିଯୁକ୍ତି ପାଇଁ କୌଣସି ସେବିକା ମିଳିଲେ ନାହିଁ । ସେପରି ଜଣେ ଥିଲେ ସେ ଡାକ୍ତରଙ୍କୁ ଏପରି ଦୁଷ୍କର୍ମ କରିବାରୁ ଅଟକାଇ ପାରିଥାନ୍ତେ । ପିଲାଟିର ଖପୁରି କିପରି ଭାବରେ ଆଘାତ ପାଇଲା ଯାହାଦ୍ୱାରା ସେ ମରିଗଲା । ଇନ୍‌ସ୍ ଖୁବ୍ ରାଗିଲେ ଏବଂ ସେ ଖୋଲାଖୋଲି ମୋ ସ୍ତ୍ରୀଙ୍କୁ ଚିକିତ୍ସା କରିପାରୁ ନ ଥିଲେ । ଆମେ ତାଙ୍କୁ ଖାଇବାକୁ ଡାକୁ । ଖାଇସାରି ସେ ତାଙ୍କ ସହ କିଛି ସମୟ କଥାବାର୍ତ୍ତା ହଚନ୍ତି ଏବଂ ବ୍ୟବସ୍ଥାପତ୍ର ଦିଅନ୍ତି । ବୃଦ୍ଧ ବି— ମୋ ସ୍ତ୍ରୀଙ୍କୁ କରଛଡ଼ା ଦେଲେ । ଦିଅନ୍ତୁ, ଭଲ ହେଲା । ଇନ୍‌ସ୍‌ଙ୍କୁ ଧନ୍ୟବାଦ ଯେ ସେ କ୍ରମେ କ୍ରମେ ଆରୋଗ୍ୟ ଲାଭ କଲେ । ଅମ୍ବାଲା କବରଖାନାରେ ପିଲାଟିକୁ କବର ଦିଆଗଲା । ହଠାତ୍ ମରିଯିବାରୁ ତା'ର ଦୀକ୍ଷା ଗ୍ରହଣ ହୋଇ ନ ଥିଲା, ତେଣୁ ପାଦ୍ରୀ ତା' ପାଇଁ କବର ସମୟରେ ପ୍ରାର୍ଥନା ପଢ଼ିବାକୁ ମନାକରି ଦେଲେ । ତେବେ ବହୁ କଷ୍ଟରେ ପବିତ୍ରୀକୃତ ଭୂମିରେ କବର ଖୋଳିବା ପାଇଁ ଅନୁମତି ଦେଲେ । ମୁଁ ଏ ବିଷୟରେ ବାପାଙ୍କୁ ଲେଖିଲି ଏବଂ ସେ ଏକ ବିସ୍ତୃତ ସ୍ନେହପୂର୍ଣ୍ଣ ଉତ୍ତର ଦେଲେ । ସେଥିରେ ସେ ଏ ବିଷୟରେ ଗିର୍ଜା କି ଶିକ୍ଷା ଦିଏ ତା'ର ଏକ ସମ୍ପୂର୍ଣ୍ଣ ଇତିହାସ ଦେଇଥିଲେ ଏବଂ ଚିଠି ଶେଷରେ ଲେଖିଥିଲେ ଯେ ଭଗବାନ୍‌ଙ୍କ ଦୟା ଓ ବିଚାରଶୀଳତା ଉପରେ ତାଙ୍କର ଏତେ ବିଶ୍ୱାସ ଅଛି ଯେ ବୋଧହୁଏ ସେ ଜଣେ ନିରୀହ ଶିଶୁର ଆତ୍ମାକୁ ଦୀକ୍ଷା ନ ପାଇଥିବା ଯୋଗୁ ନଷ୍ଟହେବାକୁ ଦେବେ ନାହିଁ । ତେଣୁ ଆମେ ସାନ୍ତ୍ୱନା ଲାଭ କଲୁ; କିନ୍ତୁ ପାଗ ଖୁବ୍ ଭୟଙ୍କର ହେଲା ଏବଂ ସ୍ତ୍ରୀଙ୍କ ଆରୋଗ୍ୟ ଲାଭ ବ୍ୟାହତ ହେଲା । ଦିନ ଓ ରାତିର ଗରମ ଅସହ୍ୟ, ମରୁଭୂମିର ଲୁ ପରି, ତାହାକୁ କୁହାଯାଏ ଧୂଳିଝଡ଼ । ଅନେକ ଦିନ ଧରି ଏହା ବାରମ୍ବାର ପ୍ରବାହିତ ହୁଏ । ଏହି ଧୂଳିଝଡ଼ ରାଜପୁତାନାର ମରୁଭୂମିରୁ ସରୁବାଲି ଉଡ଼ାଇନେଇ ସବୁଆଡ଼େ ଭର୍ତ୍ତି କରିଦିଏ, ଏପରିକି ଆପାତତଃ ଭଲରୂପେ ବନ୍ଦଥିବା ଘରେ ପଶି ଟେବୁଲ, ଖଟ, ଚଟାଣ ସବୁରେ ସରୁ ରଜରଜିଆ ବାଲିର ସ୍ତର ବସିଯାଏ । ସାଧାରଣତଃ ଏ ଝଡ଼ ଚାରିଦିନ ଯାଏ ରହେ । ସେତେବେଳେ ଆକାଶ ଉଡୁଥିବା ଧୂଳି ପଟଳରେ ଛାଇଥାଏ, ସୂର୍ଯ୍ୟ ଦେଖାଯାଆନ୍ତି ନାହିଁ ଏବଂ ବାୟୁମଣ୍ଡଳରୁ ଚାପା କ୍ରନ୍ଦନଧ୍ୱନି ପରି ଏକ ଶବ୍ଦ ଶୁଣାଯାଏ । ଏହି ପ୍ରକାର ଝଡ଼ ଭିତର ଦେଇ ଦୈନିକ ଅଢ଼େଇ ମାଇଲ କଚେରିକୁ ଯିବା ଥିଲା ମୋ ପକ୍ଷରେ ଅତି ଅସ୍ୱସ୍ତିକର ଅଭିଜ୍ଞତା । ଅବଶେଷରେ ଆମେ ଅନୁଭବ କଲୁ ଯେ ଅମ୍ବାଲାରେ ଆଉ ରହିହେବ ନାହିଁ ଏବଂ ମୁଁ ବଦଳି ପାଇଁ ଦରଖାସ୍ତ କଲି । ସାର୍ ହର୍ବଟ ମଣ୍ଟଗୋମେରୀ ମୋ ପାଖକୁ ଏକ ଦୟାର୍ଦ୍ର ପତ୍ର ଲେଖିଥିଲେ ଏବଂ ପାଖର ଲୁଧିଆନା ସହରକୁ ମୋତେ ବଦଳି କରିଦେଲେ ।

ଅମ୍ବାଲାରେ ମାତ୍ର ୪ ମାସରୁ କମ୍ ସମୟ ରହି ଆମେ ୧୫ଜୁନ୍ ୧୮୬୧ରେ ସେ ସ୍ଥାନ ଛାଡ଼ିଲୁ; କିନ୍ତୁ ଏହି ପରିବର୍ତ୍ତନ ମହର୍ଗରୁ ଯାଇଁ କାନ୍ତାରରେ ପଡ଼ିବାପରି ହେଲା । ଅମ୍ବାଲାରେ ଯେଉଁ ଯେଉଁ ଅସୁବିଧା ହେଉଥିଲା ଲୁଧିଆନାରେ ତା'ଠାରୁ ବେଶି ହେଲା । ଏହି ସ୍ଥାନର ଡେପୁଟି କମିଶନର କର୍ଣ୍ଣେଲ୍ ମ୍ୟାକ୍‌ନେଲ ଥିଲେ ଜଣେ ଏକଜିଦିଆ, ମନମୁଖି ଶାସକ, ସମ୍ପୂର୍ଣ୍ଣ ତାତାର ଧରଣର ଏବଂ ଅଧସ୍ତନଙ୍କ ପାଇଁ ଜଣେ ହିଂସ୍ର ଗୁଣ୍ଡାଭଳି । ଅବଶ୍ୟ ଏହା ଠିକ୍ ଯେ ସେ ସେହି ଜିଲ୍ଲାପାଇଁ ଉପଯୁକ୍ତ, କାରଣ ବିରାଟ ଲୁଧିଆନା ସହରଟି କାଶ୍ମୀରୀମାନଙ୍କ ଦ୍ୱାରା ପୂର୍ଣ୍ଣ ଯେଉଁମାନେ କି ସମଗ୍ର ଭାରତରେ ଦୁଃସାହସୀ ଗୁଣ୍ଡା ରୂପେ ପରିଚିତ । କେତେକ ଆଫଗାନ ଶାସକ ରାଜନୀତିକ ବନ୍ଦୀଭାବରେ ରହି ସେଠାରେ ଦରବାର କରୁଥିବାରୁ ସେଥିପ୍ରତି ଆକର୍ଷିତ ହୋଇ କିଛି ଆଫଗାନ ମଧ୍ୟ ସେଠାରେ ଥିଲେ । ଉତ୍ତର ଭାରତରେ ପ୍ରଚଳିତ ଏକ ଜଣାଶୁଣା କବିତା ପଙ୍‌କ୍ତିରେ କାଶ୍ମୀରୀ ଓ ଆଫଗାନଙ୍କୁ ନିକୃଷ୍ଟତମ ବ୍ୟକ୍ତି ବୋଲି ଉଲ୍ଲେଖ କରାଯାଇଛି । ଏହି ବିରାଟ ବିକାଶଶୀଳ ଅଞ୍ଚଳର ଗଣ୍ଡଗୋଳିଆ ଜନସାଧାରଣଙ୍କୁ ଶୃଙ୍ଖଳିତ ରଖିବାପାଇଁ ମ୍ୟାକ୍‌ନେଲଙ୍କ ପରି ଜଣେ କଠୋର ଦୃଢ଼ହସ୍ତ ଲୋକ ଦରକାର ଥିଲେ। ଶାସନ କ୍ଷେତ୍ରରେ ତାଙ୍କର ସାମର୍ଥ୍ୟପାଇଁ ତାଙ୍କୁ ଆମେ ସବୁମନେ ପ୍ରଶଂସା କରୁଥିଲେ ମଧ୍ୟ ତାଙ୍କ ତଳେ କାମ କରୁଥିବା ୟୁରୋପୀୟ ଅଫିସରମାନେ ମନେ କରୁଥିଲୁ ଯେ ସେହି ଚୋର, ଖଣ୍ଡ, ଦଙ୍ଗାକାରୀ ଆଫଗାନ ଓ କାଶ୍ମୀରୀଙ୍କ ପରି ଆମ ସହିତ ମଧ୍ୟ କର୍କଶ ବ୍ୟବହାର କରିବାର କୌଣସି ଅଧିକାର ତାଙ୍କର ନ ଥିଲା । ମୋ ଉପରେ ସେ ବିଶେଷରୂପେ ବୀତଶ୍ରଦ୍ଧ ଥିଲେ, କାରଣ ମୁଁ ଜଣେ ବେସାମରିକ ଅଫିସର ଏବଂ ସେ ସବୁ ବେସାମରିକ ଲୋକଙ୍କ ଉପରେ ବିରକ୍ତ; ଅନ୍ୟ କାରଣ ହେଉଛି ମୋର ସେଠାକୁ ଆସିବାରେ ତାଙ୍କର ଜଣେ ବନ୍ଧୁଙ୍କୁ ସ୍ଥାନାନ୍ତରିତ ହେବାକୁ ପଡ଼ିଥିଲା । ତେଣୁ ମୋତେ ଓ ସ୍ତ୍ରୀଙ୍କୁ ଅନେକ ଛୋଟ ଛୋଟ ଘଟଣାରେ ଅପଦସ୍ତ କରାହେଲା । ଭାରତର ଅନେକ ସ୍ଥାନରେ କେତେକ କ୍ଲବ ଥିଲା ଯେଉଁଠିକି ଅନ୍ୟତ୍ର ମିଳୁ ନ ଥିବା ଖାଦ୍ୟଦ୍ରବ୍ୟ ଓ ଅନ୍ୟାନ୍ୟ ସ୍ୱାଚ୍ଛନ୍ଦ୍ୟମୂଳକ ପଦାର୍ଥ ମିଳୁଥିଲା । ଉଦାହରଣତଃ ସେଠାରେ ଗୋଟିଏ ମାଂସ କ୍ଲବ୍ ଥିଲା । ସେ ସ୍ଥାନର ପ୍ରତ୍ୟେକ ୟୁରୋପୀୟ ପ୍ରତ୍ୟେକ ମାସରେ ନିର୍ଦ୍ଦିଷ୍ଟ ପରିମାଣ ଅର୍ଥ ଦେଉଥିଲେ ଏବଂ ସିଭିଲ ସର୍ଜନ ତାହାର ପରିଚାଳନା କରୁଥିଲେ । ସେ ମେଷପାଳକମାନଙ୍କୁ ଟଙ୍କା ଦେଇ ମେଣ୍ଢା କିଣୁଥିଲେ । ସେ ମେଣ୍ଢାକୁ ଠିକ୍ ଖାଇବାକୁ ଦିଆ ହେଉଛି କି ନାହିଁ ବୁଝୁଥିଲେ ଏବଂ ସପ୍ତାହରେ ଥରେ ଦୁଇଥର ସେ ମେଣ୍ଢାମାରି ମାଂସକୁ ସମସ୍ତ ଅଂଶୀଦାରମାନଙ୍କ ପାଖକୁ ପଠାଉଥିଲେ । କେବଳ ଏହି ପ୍ରକାର ଉପାୟରେ ହିଁ ଖାଦ୍ୟଉପଯୋଗୀ ମାଂସ ମିଳିପାରେ । ମ୍ୟାକ୍‌ନେଲ ଆଦେଶ ଦେଲେ ଯେ ଆମେ ଏ କ୍ଲବ୍‌କୁ ଚାନ୍ଦା ଦେଇପାରିବୁ ନାହିଁ । ଏପରି ଆଦେଶ ଦେବାର କୌଣସି କ୍ଷମତା ବା ଅଧିକାର ତାଙ୍କର ନ ଥିଲେ ମଧ୍ୟ ତାଙ୍କ ପ୍ରତି ସମସ୍ତଙ୍କର ଏତେ ଭୟ ଥିଲା ଯେ ତାଙ୍କୁ ଅମାନ୍ୟ କରିବାର ସାହସ କେହି କଲେ ନାହିଁ । ତେଣୁ ଡାକ୍ତର ଦୟାକରି ତାଙ୍କ ଅଂଶର ମାଂସ ଫଡ଼ିଆ ସହ ଆମକୁ ଅଂଶୀଦାର କଲେ । ସେ ପର୍ଯ୍ୟନ୍ତ ଆମକୁ ବଜାରର ବାଜେ ଛେଳି ମାଂସ ଉପରେ ନିର୍ଭର କରିବାକୁ ପଡୁଥିଲା । ଥରେ କ୍ଲବ୍‌ର ଜଣେ ସଭ୍ୟ କିଛି ଦିନ ପାଇଁ ଅନ୍ୟ ଏକ ଜାଗାକୁ ବଦଳି ହୋଇଗଲେ । ତାଙ୍କ ଅନୁପସ୍ଥିତିବେଳେ କ୍ଲବ୍‌ରେ ତାଙ୍କ ଅଂଶକୁ ସେହିପରି ରଖିଥିଲେ ଏବଂ ଆମେ ତାଙ୍କର ମାଂସଟା ଆଣୁଥିଲୁ । ଏହି

ଲୋକଟାଠାରୁ ଆମେ ଆଉ ଅନେକ ଛୋଟକାଟର ଅତ୍ୟାଚାର ଭୋଗକଲୁ; କିନ୍ତୁ ତାଙ୍କର ଏହି ନିର୍ଦ୍ଦୟ ଭାବ ଆପେ ଆପେ ପରାଭୂତ ହେଉଥିଲା, କାରଣ ଅନ୍ୟ ଇଂରାଜୀ ପୁରୁଷ ଓ ସ୍ତ୍ରୀ ତାଙ୍କର ଏହି ସ୍ୱ ବିରକ୍ତ ହୋଇ ଆମ ପ୍ରତି ଦୟା ପ୍ରଦର୍ଶନ କରି ସବୁ ପୂରଣ କରିବାକୁ ଚେଷ୍ଟା ଭାବରେ କରୁଥିଲେ ।

ଲୁଧିଆନାରେ ଥିବାବେଳେ ଏକମାତ୍ର ଆନନ୍ଦର ଘଟଣା ହେଲା ଘନିଷ୍ଠ ବନ୍ଧୁ ଇଲିଅଟର ଆଗମନ । ଏହି ସମୟରେ ସେ ବିବାହ କରିବାକୁ ସ୍ଥିର କଲା ଏବଂ ତା' ସ୍ତ୍ରୀର ସମସ୍ତ ବିରକ୍ତି ସତ୍ତ୍ୱେ ମଧୁଚନ୍ଦ୍ରିକା ପାଳନ ପାଇଁ ଆମରି ପାଖକୁ ଆସିଲା । ମୁଁ ତା'ର ଜୀବନୀ ଲେଖୁ ନାହିଁ ଏବଂ ତା'ର ଗୋପନୀୟ କଥା ପଦାରେ ପକାଇବାର କୌଣସି ଅଧିକାର ମୋର ନାହିଁ । ତେଣୁ ମୁଁ ତା'ର ବିବାହ ସମ୍ପର୍କରେ ନୀରବ ରହିବି । ସେମାନେ ୩ ସପ୍ତାହ ଆମ ପାଖରେ ରହିଲେ ଏବଂ ତାଙ୍କ ଯିବା ପରେ ମୁଁ ରୋଗରେ ପଡ଼ି ଡାକ୍ତରଙ୍କ ଦ୍ୱାରା ସିମଳା ପଠାହେଲି ଜଳବାୟୁ ପରିବର୍ତ୍ତନ ପାଇଁ । ସେଠାରେ ଆଗେ ମୋର ପୂର୍ବତନ ହେଲିବରୀ ବନ୍ଧୁ ସି.ଇ. ବର୍ଣ୍ଣାଡ଼ଙ୍କ ଦ୍ୱାରା ଭଡ଼ା ନିଆହୋଇଥିବା ଘରର ଏକ ଅଂଶରେ ମାସେ କାଳ ଆନନ୍ଦରେ ରହିଲୁ । ସେ ଭାରତ ସରକାରଙ୍କ ଅଣ୍ଡର ସେକ୍ରେଟାରୀ ଭାବରେ ଯୋଗଦେବା ପାଇଁ କଲିକତା ଯାଉଥିବାରୁ ସେଇ ଘର ଆମକୁ ଦେଇଯାଇଥିଲେ । ଘରର ଅନ୍ୟ ଅଂଶରେ ଥିଲେ ଅନ୍ୟଜଣେ ହେଲିବରୀ ବ୍ୟକ୍ତି ଆର.ଟି. ବର୍ଣ୍ଣ, ଯାହାଙ୍କ ସହ ବର୍ଣ୍ଣାଡ଼ଙ୍କ ବନ୍ଧୁତା ଥିଲା ଏବଂ ଆମର ଗୋଟିଏ ସୁନ୍ଦର ଗୋଷ୍ଠୀ ହୋଇଗଲା । ହିମାଳୟର ମହିମାମୟ ସୌନ୍ଦର୍ଯ୍ୟ ମଧ୍ୟରେ ଆମେ ବହୁ ସ୍କେଟିଂ କଲୁ । ସିମଳାରେ ଥିବାବେଳେ ମୁଁ ଥରେ ଅଳ୍ପକେ ରକ୍ଷା ପାଇଗଲି । ସିମଳାର ଲୋକେ ଅନ୍ୟ ଶୈଳନିବାସ ପରି ଖଚର ନ ଚଢ଼ି ସମତଳ ଅଞ୍ଚଳର ବଡ଼ ଘୋଡ଼ା ଚଢ଼ନ୍ତି । ମୁଁ ମୋର ବାଲୁଚି ଘୋଡ଼ାଟିକୁ ଚଢ଼ୁଥିଲି— ସୁନ୍ଦର ପଶୁଟିଏ ଏବଂ ଖୁବ୍ ଶୀଘ୍ର ଦୌଡ଼େ । ଦିନେ ମୁଁ ଗୋଟିଏ ଜଳ-ପ୍ରପାତ ଦେଖିବାକୁ ଯାଇ ଭୁଲ ରାସ୍ତାରେ ଚାଲିଗଲି । ଏହି ରାସ୍ତାଟି ଖୁବ୍ ଉଚ୍ଚ ପର୍ବତକୁ ଉଠି ଉଠି ଆସ୍ତେ ଆସ୍ତେ ଅଣଓସାରିଆ ହୋଇଯାଇଛି । ଶେଷରେ ଏହା ଏତେ ଅଣଓସାରିଆ ହୋଇଗଲା ଯେ ଘୋଡ଼ାରେ ଚଢ଼ିଯିବା ଆଉ ନିରାପଦ ହେଲା ନାହିଁ । ତେଣୁ ମୁଁ ଓହ୍ଲାଇ ଲଗାମ୍‌ଟିକୁ ହାତରେ ଧରି ଘୋଡ଼ାକୁ ବାଟ କଢ଼ାଇଲି । ଓହ୍ଲାଇବାର ଦୁଇ ମିନିଟ୍ ହୋଇ ନାହିଁ ଘୋଡ଼ାର ଗୋଡ଼ ଖସିଗଲା; ଏବଂ ସେ ଧାରକୁ ଚାଲିଗଲା । ମୁଁ ତା ଲଗାମ ଧରି ଭିଡ଼ିଲି କିନ୍ତୁ ଅଟକାଇ ପାରିଲି ନାହିଁ । ବିଚରା ପଶୁଟି ଉଦ୍ଧାର ପାଇବା ପାଇଁ ଯଥାସାଧ ଚେଷ୍ଟା କଲା କିନ୍ତୁ ହାଲୁକା ମାଟି ଖସିଗଲା ଏବଂ ସେ ତଳକୁ ଗଡ଼ିଗଲା । ଗୋଟିଏ ପଥରରୁ ଆଉ ଗୋଟିଏ ପଥରରେ ଛେଚି ହୋଇ ଗଡ଼ି ଗଡ଼ି ସେ ପ୍ରପାତ ପାଦଦେଶରେ ଏକ ଜଳଭଣ୍ଡାର ନିକଟରେ ପଡ଼ିଲା । ଧୀରେ ଧୀରେ ଏବଂ ବହୁ କଷ୍ଟରେ ମୁଁ ଓହ୍ଲାଇ ଦେଖିଲି ସେ ମରିଯାଇଛି । ମୁଁ ଜିନ୍ ଓ ଲଗାମ ଇତ୍ୟାଦି କାଢ଼ିଆଣି କାନ୍ଧରେ ବହି ଦୁଃଖ ଓ କ୍ଳାନ୍ତି ମଧ୍ୟରେ କେତେ ମାଇଲ ଚାଲି ଚାଲି ସିମଳାକୁ ଫେରିଆସିଲି ।

ମୁଁ ଲୁଧିଆନାକୁ ଫେରିବାର ପରେ ପରେ ପୂର୍ବରୁ କୌଣସି ସୂଚନା ନ ଥାଇ ମୋର ନିମ୍ନ ପ୍ରଦେଶ ବଙ୍ଗଳାକୁ ବଦଳି ହୋଇଥିବାର ଏକ ଆଦେଶ ପାଇଲି । ବହୁ ହଇରାଣ ହୋଇ

ମୁଁ ଲାହୋର ଆସି ସାର୍ ଇ. ମଣ୍ଟଗୋମେରୀଙ୍କୁ ଦେଖାକରି ପଞ୍ଜାବରେ ରହିବାପାଇଁ ଅନୁରୋଧ ଜଣାଇଲି । ସେ ମୋତେ ସରାଗହୀନ ବ୍ୟବହାର ଦେଖାଇ ସାନ୍ତ୍ୱନା ଦେଲେ ଯେ ବଙ୍ଗଳାରେ ମୋର ଚାକିରି ଜୀବନ ଆହୁରି ଭଲ ହେବ । ଆହୁରି କହିଲେ ଯେ ମୋର ଅବାଧତା ଓ ସ୍ୱାଧୀନଚେତା ଭାବ ପଞ୍ଜାବ ପାଇଁ ଅତିରିକ୍ତ ଏବଂ ବଙ୍ଗଳାରେ ଅଫିସର ଅଭାବ ପଡ଼ିବାରୁ ତାଙ୍କୁ ତିନିଜଣ ଅଫିସର ପଠାଇବାକୁ କୁହାଯାଇଥିଲା ଏବଂ ସେ ବିଶେଷ ଭାବରେ ମୋତେ ବାଛିଚନ୍ତି (ମୁଁ ଭାବିଲି ମୋତେ ଦୂରେଇ ଦେବା ପାଇଁ ସେ ଏପରି କଲେ) ଏବଂ ସେ ଯେତେବେଳେ ଭାରତ ସରକାରଙ୍କୁ ମୋ ନାଁ ଟା ପଠାଇ ସାରିଲେଣି ଆଉ ପରିବର୍ତ୍ତନ ସମ୍ଭବ ନୁହେଁ । ମୁଁ କୌଣସି ପ୍ରକାରେ ଏଥିରେ ସାନ୍ତ୍ୱନା ଲାଭ କଲି ଏବଂ ମୋ ଆସବାବପତ୍ର ବିକାବିକି କରିଦେଇ ୧୮୬୧ ନଭେମ୍ବର ୨୨ରେ ଲୁଧିଆନା ଓ ତା'ର ଦୁଇ ଦିନ ପରେ ସବୁଦିନ ପାଇଁ ପଞ୍ଜାବ ଛାଡ଼ିଲି ।

ଏହିପରି ମୋ ଜୀବନର ଗୋଟାଏ ଅଧ୍ୟାୟ ସରିଗଲା ଏବଂ ଭାରତର ଅନ୍ୟାଞ୍ଚଳରେ ସମ୍ପୂର୍ଣ୍ଣ ନୂତନ ଅବସ୍ଥିତି ଆରମ୍ଭ ହେଲା । ବର୍ତ୍ତମାନ ଅନେକ ବର୍ଷ ପରେ ମୁଁ ସେଇ ପଛକଥା ଭାବି ଦେଖୁଚି ଯେ ଆମର ଗତିପଥ ନିର୍ଣ୍ଣୟ କରୁଥିବା ସେଇ ପ୍ରେମମୟ ଭଗବାନ୍‌ଙ୍କ ଇଙ୍ଗିତକୁ ମୋତେ ବହୁ ଧନ୍ୟବାଦ ଦେବା କଥା ।

ମୁଁ ଶରୀର ଓ ମନରେ ସବଳ ଓ ସେ ଦେଶର ଲୋକଙ୍କ ପାଇଁ ଓ ମୋ ନିଜ କାମରେ ଖୁବ୍ ଉତ୍ସାହୀ ଥିଲେ ମଧ୍ୟ ତା ସଙ୍ଗେ ସଙ୍ଗେ ମୁଁ ଥିଲି ବଦ୍‌ରାଗୀ, ସ୍ୱାଧୀନଚେତା ଏବଂ ମୁଁ କ'ଣ କହୁଚି ବା କରୁଚି ସେ ବିଷୟରେ ଭୟଙ୍କର ଭାବରେ ଅସାବଧାନ । ମୁଁ ଯଦି ପଞ୍ଜାବରେ ଆଉ ଅଧିକ ଦିନ ରହିଥାନ୍ତି, ତେବେ ସିଭିଲ୍ ସଂସ୍ଥାରେ ଥିବା ସାମରିକ ଲୋକମାନଙ୍କ ସହିତ (ଯେଉଁମାନଙ୍କୁ ଆମେ 'କଚେରି କ୍ୟାପ୍‌ଟେନ' ବୋଲି କହୁଥିଲୁ) ନିଶ୍ଚୟ ଖୁବ୍ କଳହରେ ଜଡ଼ିତ ହୋଇ ପଡ଼ିଥାନ୍ତି । ଆମ ଭଳି ଅଧସ୍ତନ ସିଭିଲ୍ ଅଫିସରମାନଙ୍କ ପାଇଁ ସେମାନଙ୍କ ଉପସ୍ଥିତି ଆଦୌ ସୁଖକର ନ ଥିଲା, କାରଣ ସେମାନେ ଆମର ପଦୋନ୍ନତିରେ ବାଧା ଆଣୁଥିଲେ । ସେମାନେ ଥିଲେ ରୂକ୍ଷ, ଅହଂକାରୀ ଓ ସ୍ୱକର୍ତ୍ତୃତ୍ୱ ବିସ୍ତାରକାମୀ । ଆମ ନିଜ ସଂସ୍ଥାର ସଭ୍ୟମାନଙ୍କ ମଧ୍ୟରେ ଯେପରି ସହୃଦୟ ଭ୍ରାତୃତ୍ୱ ସମ୍ପର୍କ ଥାଏ ତା ସ୍ଥାନରେ ସେମାନେ ଅଧସ୍ତନଙ୍କ ଉପରେ ସାମରିକ ରୀତିନୀତିର ଆରୋପ କରନ୍ତି । ସିଭିଲ୍ ସଂସ୍ଥାର ଜଣେ ଡେପୁଟି କମିଶନରଙ୍କ ତଳେ କିମ୍ବା ଆମ ସମସ୍ତଙ୍କ ଉପରେ ଜଣେ ସିଭିଲ୍ କମିଶନର ଥାଇ ଆମେ ଏକତ୍ର ଖୁବ୍ ସୁସମ୍ପର୍କ ରଖି କାମ କରୁ । ଗୋଟିଏ ଅନୁଷ୍ଠାନର ସଭ୍ୟ ଭାବରେ ଉଚ୍ଚ ଅଫିସରଙ୍କୁ ସମ୍ମାନ ଦିଆଯାଏ । ତା'ଫଳରେ ଆମେ ପରସ୍ପରକୁ ସାହାଯ୍ୟ କରୁଥିଲୁ କାରଣ ଆମେ ଅନୁଭବ କରୁଥିଲୁ ଯେ ପଦପଦବୀ ଏକ ସାମୟିକ ବ୍ୟବସ୍ଥା ଏବଂ ଆମେ ସମସ୍ତେ ସମାନ ସାମାଜିକ ଅବସ୍ଥାର ଇଂରାଜୀ ଭଦ୍ରଲୋକ । ଅନ୍ୟ ପକ୍ଷେ ଜଣେ ସାମରିକ ଡେପୁଟି କମିଶନରଙ୍କଠାରୁ ଆମେ ଏପରି ବ୍ୟବହାର ପାଉଥିଲୁ ଯେପରିକି ଆମେ ସ୍ୱଭାବତଃ ନୀଚ । ଉଚ୍ଚମନ୍ୟଭାବେ ସେମାନେ ଆମ ଉପରେ ଚଢ଼ଉ କରୁଥିଲେ । ପଞ୍ଜାବର ନୂତନ ବିଜିତ ଅଞ୍ଚଳର ଶାସନ ପାଇଁ ଯଥେଷ୍ଟ ସିଭିଲ୍ ଲୋକେ ନାହାନ୍ତି ବୋଲି ମନେକରି ସେମାନଙ୍କୁ ସିଭିଲ୍ ସଂସ୍ଥା ଭିତରକୁ

ଅଣାଯାଇଥିବାରୁ ସେମାନେ ଅନୁପ୍ରବେଶକାରୀ । ସିଭିଲ୍ ଅଫିସରଙ୍କ ସଂଖ୍ୟା ବଢ଼ିଲେ ମଧ ସରକାର ଏହି ବ୍ୟବସ୍ଥାର ଖୁବ୍ ପୃଷ୍ଠପୋଷକତା କରି ତା ପ୍ରତି ଆସକ୍ତ ହୋଇପଡ଼ିଲେ ଏବଂ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କ ସନ୍ତାନ ଓ ସମ୍ପର୍କୀୟଙ୍କୁ ସେଥିରେ ସ୍ଥାନ ଦେଉଥିଲେ । ଫଳରେ ସାମରିକ ଲୋକଙ୍କ ଅନୁପ୍ରବେଶ କେବଳ ସାମୟିକ ବୋଲି ସରକାର ସିଭିଲ୍ ସଂସ୍ଥା ସହ ଯେଉଁ ଚୁକ୍ତି କରିଥିଲେ ତାହା ଭଗ୍ନକଲେ ଏବଂ ଏହି କଲନେଲ୍ ଓ କ୍ୟାପ୍‌ଟେନମାନଙ୍କୁ ସେମାନଙ୍କ ବାହିନୀକୁ ଫେରାଇ ନେବାକୁ ନାସ୍ତି କରିଦେଲେ । ସରକାର ଅବଶ୍ୟ ସିଭିଲିଆନଙ୍କୁ ସନ୍ତୁଷ୍ଟ କରିବା ପାଇଁ କଥା ଦେଇଥିଲେ ଯେ ରେଗୁଲେସନ ପ୍ରଦେଶମାନଙ୍କରେ ଥିବା ଲୋକମାନଙ୍କ ସହ ସେମାନଙ୍କ ପଦୋନ୍ନତି ସମସ୍ତରରେ ଗତି କରିବ; କିନ୍ତୁ ତଦନୁଯାୟୀ ଯେତେବେଳେ ଜଣେ ସିଭିଲିଆନର ପଦୋନ୍ନତି କରାଗଲା, ସବୁ କଚେରି କ୍ୟାପ୍‌ଟେନ୍‌ମାନେ ଚିତ୍କାର ଛାଡ଼ିଲେ । ତେଣୁ ଆମେ ସିଭିଲିଆନମାନେ ସେମାନଙ୍କୁ ସ୍ମରଣ କରାଇଦେଲୁ ଯେ ସେମାନେ ସୈନ୍ୟଙ୍କୁ ତାଲିମ ଦେବା ପାଇଁ ଓ ଲଢ଼ିବା ପାଇଁ ଭାରତକୁ ପଠା ହୋଇଥିଲେ; କିନ୍ତୁ ଜିଲ୍ଲାକୁ ଶାସନ କରିବା ବା ବିଚାର କାର୍ଯ୍ୟ କରିବାକୁ ନୁହେଁ । ସବୁ ସିଭିଲ୍ ନିଯୁକ୍ତିରେ ଆମର ଅଧିକାର । ସେମାନଙ୍କୁ ଏହା ଭଲ ନ ଲାଗିଲେ ସୈନ୍ୟବାହିନୀକୁ ଫେରିଯିବାର ପଥ ସେମାନଙ୍କ ପାଇଁ ଉନ୍ମୁକ୍ତ ଅଛି, ତାହାହିଁ ସେମାନଙ୍କ ପାଇଁ ଉପଯୁକ୍ତ ସ୍ଥାନ ଏବଂ ସେଠାରେ ସେମାନେ ଏହାଠାରୁ ଅଧିକ ଦରମା ପାଇବେ । ବୋଧହୁଏ ଏ ବିଷୟରେ ମୋ ଭଳି ଆଉ କାହାର ଏତେ ତିକ୍ତ ଅନୁଭୂତି ନ ଥିଲା, କାରଣ ଅତି ଘନିଷ୍ଠ ବନ୍ଧୁ ବ୍ରାଡ୍‌ଫୋର୍ଡ଼ ହାର୍ଡ଼ିଞ୍ଜର ସୌହାର୍ଦ୍ଦ୍ୟ ଓ ପାସକୋର ନୀଚ ଅହମିକା ମଧରେ ପାର୍ଥକ୍ୟ ମୁଁ ଅନୁଭବ କରିଥିଲି ଏବଂ ଅଳ୍ପକିଛି କାଳ ମ୍ୟାକ୍‌ନେଲର କ୍ରୂରତା ମଧ । ଦିନେ ମୁଁ ସେଇ ଭୟଙ୍କର ତାତାର ମ୍ୟାକ୍‌ନେଲକୁ କହିଲି (ସୈନ୍ୟମାନେ ଯେ ପୃଷ୍ଠପୋଷକତା ପ୍ରିୟାପ୍ରୀତି ଏବଂ ସ୍ୱାର୍ଥପରତା ଦ୍ୱାରା ସିଭିଲ୍ ନିଯୁକ୍ତି ପାଇଛନ୍ତି ସେଇ ଘୃଣ୍ୟ ବାସ୍ତବତାକୁ ଏଡ଼ାଇ) ଯେ ଆମର ପାରସ୍ପରିକ ଅବସ୍ଥା ମୋତେ ସେଣ୍ଟ୍‌ପଲ ଓ ସେଞ୍ଚୁରିଆନ କଥା ମନେପକାଇ ଦେଉଛି । ସେଞ୍ଚୁରିଆନ କହିଲା, ''ବହୁ ଅର୍ଥ ଦେଇ ମୁଁ ଏ ସ୍ୱାଧୀନତା ଲାଭ କରିଚି ।'' କିନ୍ତୁ ପଲ୍ କହିଲେ, ''ମୁଁ କିନ୍ତୁ ଆଜନ୍ମ ମୁକ୍ତ'' । ମ୍ୟାକ୍‌ନେଲ ଦେହରେ ନିଆଁ ଚରିଗଲା । ବୋଧହୁଏ ମୋର ଏଇସବୁ ଉକ୍ତି ସାଙ୍ଗକୁ ପାସକୋ ସହ କଳହ ଫଳରେ ମୁଁ ବଙ୍ଗଳାକୁ ବଦଳି ହେଲି । ଯେଉଁ କ୍ଷୁଦ୍ର ପ୍ରଭାବଶାଳୀ, କୌଶଳୀ ଗୋଷ୍ଠୀ ବଡ଼ଲାଟଙ୍କୁ ଘେରିଥିଲେ ଓ ସବୁ ଭଲ ଭଲ ପଦ ନିଜ ମଧରେ ବାଣ୍ଟି ନେଉଥିଲେ ପାସକୋ ସେଥିରୁ ଅନ୍ୟତମ । ସାଧାରଣରେ ସେମାନଙ୍କୁ 'ରାଜକୀୟ ପରିବାର' କୁହାଯାଉଥିଲା ଏବଂ ସେମାନଙ୍କ ମଧରୁ କାହାସହ କଳହ କଲେ ବ୍ୟକ୍ତିର ଭବିଷ୍ୟତ ମାରାତ୍ମକ ହେଉଥିଲା । ତେଣୁ ଦେଶର ସେହି ଅଞ୍ଚଳରୁ ଚାଲିଆସିବା ଥିଲା ମୋର ସୌଭାଗ୍ୟ । ତା'ଛଡ଼ା ପଞ୍ଜାବରେ ଯେଉଁ ପଦୋନ୍ନତି ପାଉଥିଲି ତା'ଠାରୁ ଶୀଘ୍ର ପଦୋନ୍ନତି ପାଇଲି । ତେଣୁ ଏ ସଂସାରରେ ଯାହା ସବୁଠାରୁ ଭଲ ସମ୍ଭବ ତାହାହିଁ ହେଲା ।

ଲମ୍ୱା ଯାତ୍ରାପଥରେ ଏକମାତ୍ର ଯାନ ଡାକଗାଡ଼ିରେ ଆମେ ଧୀରେସୁସ୍ଥେ ଦେଶର ନିମ୍ନାଞ୍ଚଳକୁ ଯାତ୍ରା କଲୁ । ଦୁର୍ଭିକ୍ଷ ଯୋଗୁଁ ଡାକଗାଡ଼ି କମ୍ପାନୀର ଘୋଡ଼ାଗୁଡ଼ିକ ଜୀର୍ଣ୍ଣଶୀର୍ଣ୍ଣ ଥିବାରୁ

ଆମର ଯାତ୍ରା ବିଳମ୍ବ ହେଉଥିଲା । ଆମେ ବୁଲନ୍ଦସହରଠାରେ ଇଲିଅଟ୍ ପାଖରେ ସପ୍ତାହଟିଏ ଅଟକିଲୁ । ଆଗ୍ରାରେ ଦୁଇଦିନ ରହି ସୁନ୍ଦର ତାଜ୍ ଓ ସିକନ୍ଦ୍ରାରେ ଆକବରଙ୍କ ସମାଧିର ନୀରବ ଚମତ୍କାରିତାକୁ ଆଡଥରେ ଦେଖିଲୁ । ସେଠାରୁ ଗଲୁ ୧୦ମାଇଲ ସିକନ୍ଦ୍ରାବାଦ ରେଳଷ୍ଟେସନ ଯେଉଁଠୁ ଆଲାହାବାଦ ପର୍ଯ୍ୟନ୍ତ ରେଳରାସ୍ତା ପଡ଼ିଛି । ଆଲାହାବାଦରେ ଆମେ ରାତ୍ରି ଆଶ୍ରୟ ପାଇବାରେ କିଛି ହଇରାଣ ହେଲୁ ଏବଂ ଶେଷରେ ଡିଆରି ଚାଲିଥିବା ଏକ ହୋଟେଲରେ ଯଥାତଥା ରହିଗଲୁ । ଆଲାହାବାଦର ୟୁରୋପୀୟ ବସତି କ୍ୟାନିଂ ଟାଉନରେ ଘରସବୁ ଅଧାଡିଆରି ହୋଇ ନିର୍ଜନ ଅବସ୍ଥାରେ ଥିଲା । ତେଣିକି ରେଳରାସ୍ତା ଖୋଲି ନ ଥିବାରୁ ପୁଣି ଡାକଗାଡ଼ିରେ ବନାରସ ଗଲୁ । ସେଠାରେ ସ୍ତ୍ରୀଙ୍କ ଭାଇ ହେନେରୀ ଓ ତା'ବନ୍ଧୁ ନିର୍ବାହୀ ଯନ୍ତ୍ରୀ ମେଜର ପ୍ରିଷ୍ଟଲି ଆମକୁ ସ୍ୱାଗତ କଲେ; ହେନେରୀର କମାଣବାହିନୀ ସେଇଠାରେ ଅବସ୍ଥିତ ଥିଲେ । ସେମାନଙ୍କ ଗହଣରେ ଆମେ ସେଇ ଅଦ୍ଭୁତ ସୁନ୍ଦର ପ୍ରାଚୀନ ନଗରୀ, ସାରନାଥର ପ୍ରସିଦ୍ଧ ବୌଦ୍ଧମଠର ଧ୍ୱଂସାବଶେଷ ପ୍ରଭୃତି ବୁଲି ବଣଭୋଜି, ଆମୋଦ ପ୍ରମୋଦ ଓ ଖାନାପିନାରେ ଆନନ୍ଦରେ ସପ୍ତାହେ କଟାଇଲୁ । ଏଇଠାରେ ମୁଁ ବଙ୍ଗଳା ସରକାରଙ୍କଠାରୁ ଏକ ସୁସମ୍ବାଦର ପତ୍ର ପାଇଲି ଯେ ମୁଁ ପୂର୍ବଠାରୁ ୨୦୦ ଟଙ୍କା ଅଧିକା ମାସକୁ ୭୦୦ ଟଙ୍କା ଦରମାରେ ସାହାବାଦର ଜଏଣ୍ଟ ମ୍ୟାଜିଷ୍ଟ୍ରେଟ ହେବି । ଏହା ନିମ୍ନପ୍ରଦେଶର ସୀମାନ୍ତ ଜିଲ୍ଲା ଏବଂ ବନାରସକୁ ନିକଟ । ବାଟ ଅଳ୍ପ ହେଲେ ମଧ ସୁଗମ ନ ଥିଲା ଏବଂ ଆମକୁ ଜିଲ୍ଲାର ରାଜଧାନୀ ଆରାରେ ପହଞ୍ଚିବା ପାଇଁ କିଛି କଷ୍ଟ କରିବାକୁ ହେଲା । ଡାକଗାଡ଼ିଯୋଗେ ଗଙ୍ଗାତୀରସ୍ଥ ବିଶାଳ ବେସାମରିକ ନଗରୀ ଗାଜିପୁର ଯାଇଁ ସେଠାରୁ ନୌକା ଯୋଗେ ସାହାବାଦର ପ୍ରଥମ ସହର ଗଙ୍ଗାତୀରସ୍ଥ ବକ୍ସାରକୁ ଗଲୁ । ସେଠାରେ ଆମେ ପୁଣି ରେଳରାସ୍ତା ଭେଟିଲୁ; କିନ୍ତୁ ତାହା ତିଆରି ସରିଥିଲେ ମଧ ସେଥିରେ ଟ୍ରେନ୍ ଚାଲି ନ ଥିଲା । ତେଣୁ ଆମକୁ ଟ୍ରଲିରେ ଯାଇ ୩୦ ମାଇଲ ଦୂର ଆରାରେ ପହଞ୍ଚିବାକୁ ପୂରା ଦିନଟାଏ ଲାଗିଲା । ଶେଷରେ ୧୮୬୧ ଡିସେମ୍ବର ୧୯ ତାରିଖ ସନ୍ଧ୍ୟା ୬ଟା ବେଳେ ଆମେ ପହଞ୍ଚି ସାହାବାଦ ମ୍ୟାଜିଷ୍ଟ୍ରେଟ୍ ଓ କଲେକ୍ଟର ଷ୍ଟିଓ୍ୟାଟ୍ କଲଭିନ୍ ବେଲିଙ୍କ ସହ ରହିଲୁ । ପରଦିନ ସକାଳେ ମୁଁ ଶପଥ ନେଇ ନୂଆ ଜିଲ୍ଲାର ଦାୟିତ୍ୱ ଗ୍ରହଣ କଲି ।



# ଦଶମ ପରିଚ୍ଛେଦ

## ସାହାବାଦ ଓ ପୂର୍ଣ୍ଣିଆ : ୧୮୬୧-୬୨

ରୁକ୍ଷ, ବଣ୍ୟ ପଞ୍ଜାବଠାରୁ ଶାନ୍ତସୁସଭ୍ୟ ବଙ୍ଗଳାର ପାର୍ଥକ୍ୟ ସୁସ୍ପଷ୍ଟ । ଆମେ ସେଇ ପାର୍ଥକ୍ୟକୁ ଖୁବ୍ ଅନୁଭବ କଲୁ । ସାମାଜିକ ସ୍ୱର ଅଧିକ ବ୍ୟାବହାରିକ, କମ୍ ହାର୍ଦ୍ଦିକ । ଲୋକେ ବନ୍ଧୁଭାବାପନ୍ନ; କିନ୍ତୁ ଟିକିଏ ଆନୁଷ୍ଠାନିକ ଏବଂ ସାମାଜିକ ନିମନ୍ତ୍ରଣ ପ୍ରଭୃତିରେ ଭଦ୍ରାମି ରକ୍ଷି ଚଳିଲାଭଳି । ଗୁଜୁରାଟରେ ହାର୍ଡ଼ିଞ୍ଜ କହୁଥିଲେ— "ଆସନ୍ତୁ ଆଜି ରାତିରେ ଖାଇବେ, ସାଙ୍ଗରେ ଆପଣଙ୍କର ଖାଇବା ନେଇ ଆସିଥିବେ ।" ତେଣୁ ଆମେ ଆମ ଚାକରଙ୍କ ହାତରେ ଆମ ଖାଇବା ମଗାଇ ତାଙ୍କ ସହ ମିଶାଉ ଏବଂ ମିଶି ଆନନ୍ଦରେ ଖାଉଁ । ଏଠାରେ ସେମାନେ ଲିଖିତ ନିମନ୍ତ୍ରଣ ପଠାଇ 'ଆମର ସାଦର ଆତିଥ୍ୟ ପାଇଁ ଅନୁରୋଧ କରନ୍ତି' ଇତ୍ୟାଦି । ପ୍ରଥମେ ଆମେ ଏହି ନୂତନ ପରିସ୍ଥିତିରେ ଖାପଖୁଆଇପାରିଲୁ ନାହିଁ ଏବଂ ମୋର ଆଶଙ୍କା କିଛିଦିନ ପର୍ଯ୍ୟନ୍ତ ବର୍ବର ଓ ଅସଂସ୍କୃତ ରୂପେ ଗଣ୍ୟ ହେଲୁ । କିନ୍ତୁ ଜାଗାଟା ଥିଲା ସୁନ୍ଦର । ୟୁରୋପୀୟମାନଙ୍କ ଘରଗୁଡ଼ିକ ଥିଲା ସୁଦୃଶ୍ୟ, ପ୍ରଶସ୍ତ କୋଠା, ହତାଗୁଡ଼ିକ ବଡ଼ ଏବଂ ସୁନ୍ଦର ଆସବାବରେ ସଜ୍ଜିତ । ସବୁ ୟୁରୋପୀୟଙ୍କର ଯଥେଷ୍ଟ ଘୋଡ଼ା ଓ ଗାଡ଼ି ଥିଲା । ସେମାନେ ଉତ୍ତମ ସତ୍କାର କରୁଥିଲେ ଏବଂ ପଞ୍ଜାବର ରୁକ୍ଷ ଅବସ୍ଥିତିରୁ ଆସିଥିବା ଆମକୁ ଖୁବ୍ ବିଳାସରେ ଥିବାଭଳି ବୋଧ ହେଉଥିଲେ । ସେମାନେ ରୁଚିପୂର୍ଣ୍ଣ ପୋଷାକ ପିନ୍ଧୁଥିଲେ ଏବଂ ମହିଳାଙ୍କ ପ୍ରସାଧନ ପ୍ୟାରୀର ସର୍ବାଧୁନିକ ରୁଚିଠାରୁ ଖୁବ୍ ପଛରେ ନ ଥିଲା । ମୁଁ ଶୀଘ୍ର ଜାଣିଲି ଯେ ମୋର ବର୍ଦ୍ଧିତ ଦରମା ଏହି ବ୍ୟୟସାପେକ୍ଷ ସ୍ଥାନର ଖର୍ଚ୍ଚ ପୂରଣ ପାଇଁ ଯଥେଷ୍ଟ ନୁହେଁ । ଅବଶ୍ୟ ଏହା ସତ ଯେ କଲିକତା ବାଟେ ଇଂଲାଣ୍ଡରୁ ଆସୁଥିବା କେତେକ ପଦାର୍ଥ କମ୍ ପରିବହନ ଖର୍ଚ୍ଚ ଯୋଗୁଁ ସୁଦୂର ପଞ୍ଜାବଠାରୁ ଆରାରେ ଶସ୍ତା । ଉଦାହରଣତଃ ଗୁଜୁରାଟରେ ଆମେ ବୋତଲର ବିଅର ଉପରେ ନିର୍ଭର କରୁଥିଲୁ । ଏହି ସାର୍ବଜନୀନ ଏବଂ ପ୍ରାୟ ଏକମାତ୍ର ପାନୀୟ ଝେଲମ୍‌ର ଜାମସଜୀ ନାମକ ଜଣେ ମାତ୍ର ଉଦ୍ୟୋଗୀ ପାର୍ଶୀ ରଖୁଥିଲା । ସେ ଡଜନକୁ ତେର ଚଉଦ ଟଙ୍କା ହାକୁଥିଲା ଏବଂ ତାହାବି ସରିଯାଉଥିଲା । ନୂଆ ମାଲ ସିନ୍ଧୁନଦୀବାଟେ ନୌକାରେ ଧୀରେ ଧୀରେ ଆସି ପହଞ୍ଚିବାକୁ ଅପେକ୍ଷା କରିବାକୁ ପଡୁଥିଲା । ଏଠାରେ ଆମେ ଦିନାପୁର ବାଟ ଦେଇ କଲିକତାରୁ ଆସୁଥିବା ମାଲ ଯଥେଷ୍ଟ ଡଜନ ୫/୬ ଟଙ୍କାରେ ପାଇଲୁ । ଭଲ ଓ ଶସ୍ତା କ୍ଲାରେଟ ମଧ ସର୍ବଦା ମିଳୁଥିଲା; କିନ୍ତୁ ଘୋଡ଼ା ଦାମ ତିନି ଚାରି ଗୁଣ ଅଧିକା ଏବଂ ଆମକୁ ଭଲ ପୋଷାକ କିଣିବାକୁ ପଡ଼ିବାରୁ ଲୁଗାପଟା ଖର୍ଚ୍ଚ ମଧ ଅଧିକ ହେଲା । ସୁନ୍ଦର ଘରଟିଏ ନେଇ ତାକୁ ଭଲଭାବରେ ସଜାଇଲୁ । ଆମର ଘୋଡ଼ା ଓ ଗାଡ଼ି ପଞ୍ଜାବରୁ ଅନେକ ଦିନରୁ ଆସି ପହଞ୍ଚିଯାଇଥିଲା । ନବବର୍ଷ ବେଳକୁ ଆମେ ଆରାରେ ଜମିଯାଇଥିଲୁ ।

ସରକାରୀ କାମ ଦୃଷ୍ଟିରୁ ପଞ୍ଜାବଠାରୁ ଏଠାର ପାର୍ଥକ୍ୟ ବହୁତ । ତଥାକଥିତ ବଙ୍ଗଳା ନିମ୍ନ ପ୍ରଦେଶରେ ଥିଲା ପାଞ୍ଚଟି ପ୍ରଦେଶ ୧— ପ୍ରାଚୀନ ବଙ୍ଗରାଜ୍ୟ (ଯାହାକୁ କୁହାଯାଉଥିଲା ନିଜବଙ୍ଗଳା) ୨— ଓଡ଼ିଶା, ୩— ବିହାର, ୪— ଆସାମ, ୫— ଛୋଟନାଗପୁର । ଆରା ଥିଲା ବିହାରର ସାହାବାଦ ଜିଲ୍ଲାର ରାଜଧାନୀ । ବଙ୍ଗଳା, ବିହାର ଓ ଓଡ଼ିଶା ଏ ତିନୋଟି ପ୍ରଦେଶ ଇଷ୍ଟଇଣ୍ଡିଆ କମ୍ପାନୀଙ୍କ ପ୍ରଥମ ଦଖଲକୁ ଆସିଥିବାରୁ ସେଠାରେ ଚିରସ୍ଥାୟୀ ବନ୍ଦୋବସ୍ତ ଚଳୁଥିଲା । ଏହି ବନ୍ଦୋବସ୍ତ ଅନୁଯାୟୀ ଦେଶକୁ ବହୁପୂର୍ବରୁ ବଡ଼ ବଡ଼ ଜମିଦାରୀରେ ବିଭକ୍ତ କରି ପ୍ରତ୍ୟେକକୁ ଜଣେ ଜଣେ ଜମିଦାରଙ୍କ ଅଧୀନରେ ରଖାଯାଇଥିଲା । ସେ ସେହି ଜମିଦାରୀ ଉପରେ ସରକାରୀ ଧାର୍ଯ୍ୟ ରାଜସ୍ୱ ଦାଖଲ କରିବାର ଦାୟିତ୍ୱ ନେଇଥିଲେ । ଏହି ଜମିଦାରମାନେ ୧୭୯୩ରେ ଚିରସ୍ଥାୟୀ ଏବଂ ପୁରୁଷାନୁକ୍ରମିକ ଜମିଦାର ରୂପେ ସ୍ୱୀକୃତ ହେଲେ ଏହି ସର୍ତ୍ତରେ ଯେ ସବୁଦିନ ପାଇଁ ନିର୍ଦ୍ଦିଷ୍ଟ ହୋଇଥିବା ପରିମାଣ ରାଜସ୍ୱ ସେମାନେ ଦେଉଥିବେ । ସେମାନେ ତାହା ଦେଇ ନ ପାରିଲେ ସେହି ଜମିଦାରୀ ସାଧାରଣରେ ନିଲାମ ଡକାଯାଇ ବେଶି ଡାକିଲାବାଲାକୁ ଦିଆଯିବ, ଯେ କି ତା' ପୂର୍ବରୁ ଥିବା ବ୍ୟକ୍ତି ପରି ସେହି ସର୍ତ୍ତରେ ଜମିଦାରୀ ପାଇବ ୧୮୬୨ରେ ଏବଂ ତା'ର ବହୁପରେ ଏପରି ଅବସ୍ଥା ଥିଲା ଯେ କଲେକ୍ଟର ଓ ଅନ୍ୟାନ୍ୟ ସରକାରୀ କର୍ମଚାରୀମାନଙ୍କର ସେ ଜମିଦାର କିପରି ଜମିଦାରୀ ପରିଚାଳନା କରୁଚି କିମ୍ବା ତା'ର ବହୁସଂଖ୍ୟକ ପ୍ରଜାଙ୍କ ସହ କିପରି ବ୍ୟବହାର କରୁଛି ସେ ବିଷୟ ବୁଝିବାର କୌଣସି ଦାୟିତ୍ୱ ବା ଅଧିକାର ନ ଥିଲା । ସେମାନଙ୍କ ମଧ୍ୟରେ କୌଣସି ଦ୍ୱନ୍ଦ୍ୱ ଉପୁଜିଲେ ସେ ସମ୍ପର୍କରେ ପ୍ରତିଷ୍ଠିତ ବିଚାରଧାରା (୧୮୫୯ର ଆକ୍ଟ-୧୦)ର ନିର୍ଦ୍ଦେଶ ଅନୁଯାୟୀ ସେମାନେ ଆଇନର ଆଶ୍ରୟ ନେଉଥିଲେ । ଏହା ପଞ୍ଜାବରେ ପ୍ରଚଳିତ ରୀତିର ସମ୍ପୂର୍ଣ୍ଣ ବିପରୀତ । ସେଠାରେ କୌଣସି ବଡ଼ ଜମିମାଲିକ ନ ଥିଲେ । ଚାଷୀ କେତେ କର ଦେବେ ତାହା ସରକାରୀ କର୍ମଚାରୀମାନେ ସ୍ଥିର କରି ଦେଉଥିଲେ ଏବଂ ଜମି ସମ୍ପର୍କରେ ସବୁପ୍ରକାର ବିଷୟରେ ହସ୍ତକ୍ଷେପ କରୁଥିଲେ । କର ଯେପରି ନିୟମିତ ଆଦାୟ ହୁଏ ତାହା ଦେଖିବା ମଧ୍ୟ ସେମାନଙ୍କ ଦାୟିତ୍ୱ ଥିଲା । ପ୍ରକୃତରେ ଏହାହିଁ ଥିଲା 'ରୟତୱାରୀ' ପଦ୍ଧତି । ମୁଁ ଯେତେବେଳେ ମୋର ନୂଆ କଲେକ୍ଟର ବେଲି (ପରେ ବଙ୍ଗଲାଟ)ଙ୍କ ସହ ରୟତଙ୍କର ମଙ୍ଗଳ ସମ୍ପର୍କରେ କଥାବାର୍ତ୍ତା କଲି ଏବଂ ଯେଉଁଠାରେ ସେମାନେ ଜମିଦାରଙ୍କ ଦ୍ୱାରା ନିର୍ଯାତିତ ହେଉଛନ୍ତି ସେଠାରେ ହସ୍ତକ୍ଷେପ କରିବାର ସୂଚନା ଦେଲି ସେ ମୋତେ ଉପହାସ କରି କହିଲେ ଯେ, ''ସେଥିରେ ଆମର କିଛି କରିବାର ନାହିଁ । ଜମିଦାରମାନେ ତାଙ୍କ ରୟତଙ୍କ ଉପରେ ଯାହାକିଛି କରିବାର ଅଧିକାର ପାଇଛନ୍ତି ।'' ମୋର ପଞ୍ଜାବୀ କର୍ମମୁଖରତା ବଙ୍ଗଳାର ସବୁ ଲୋକଙ୍କ ଦ୍ୱାରା ଉପହସିତ ହେଲା । କୌଣସି ଲୋକ କୌଣସି ବିଷୟରେ ମୁଣ୍ଡ ଖେଳାଉ ନ ଥିଲେ । ମୁଁ କହୁ ନାହିଁ ଯେ ସେମାନେ ଅଳସୁଆ ଥିଲେ, ବରଂ ସେମାନେ ନିୟମିତ ବିଚାରଶୀଳ ଭାବେ ସେମାନଙ୍କ କାମ କରୁଥିଲେ; କିନ୍ତୁ ଏଇଟା ହେଲା ପୂର୍ବଅଧିକୃତ 'ରେଗୁଲେଶନ ପ୍ରଦେଶ' ଯାହାକି ପ୍ରାୟ ଗୋଟାଏ ଶତାବ୍ଦୀ ବ୍ରିଟିଶ ଅଧୀନରେ ରହି ସାରିଥିଲା । ଆଇନର ଚେର ବହୁଦୂର ମାଡ଼ି ଟାଣ ହୋଇଯାଇଥିଲା ଏବଂ ବନ୍ଦୋବସ୍ତର ଏକ ନୂତନ ପଦ୍ଧତି ସୃଷ୍ଟି ହୋଇଥିଲା; ସେଥିରେ କର୍ମଚାରୀମାନଙ୍କର ବ୍ୟକ୍ତିଗତ ବିଚାର ପ୍ରୟୋଗର ଅବକାଶ ନ ଥିଲା । ଏଠାରେ କୌଣସି

ସମସ୍ୟା ଉପୁଜିଲେ ସେମାନେ ଆଇନ ବହି ଖୋଜି ଆବଶ୍ୟକୀୟ ଆଇନ ଦେଖୁଥିଲେ ଏବଂ ସେ ଅନୁଯାୟୀ ଆଦେଶ ଜାରୀ କରୁଥିଲେ, ଅନ୍ୟଥା ମୁଣ୍ଡ ଖେଳାଉ ନ ଥିଲେ । ଅନ୍ୟ ପକ୍ଷରେ ପଞ୍ଜାବରେ କୌଣସି ସମସ୍ୟା ଉପୁଜିଲେ ସେଠାରେ ଅନୁସୃତ ଆଇନ ନ ଥିବାରୁ ପ୍ରତ୍ୟେକ କର୍ମଚାରୀ ସେ ବିଷୟରେ ଭାବିଚିନ୍ତି ସବୁଠାରୁ ଭଲ କ'ଣ କରାଯାଇପାରେ ତାହା ସ୍ଥିର କରୁଥିଲେ । ତାଙ୍କୁ ଏହା ଅତି ଶୀଘ୍ର କରିବାକୁ ପଡୁଥିଲା, କାରଣ ସବୁବେଳେ ଚିନ୍ତା କରିବା ବା ଦ୍ୱିଧାଗ୍ରସ୍ତ ହେବାପାଇଁ ସମୟ ନ ଥିଲା; ଆଦେଶ ଦେଇ ତାହା କାର୍ଯ୍ୟକାରୀ କରିବା ଓ ସନ୍ତୋଷଜନକ ଭାବରେ କାମ କରୁଛି କି ନା ଦେଖିବା ଥିଲା ତାଙ୍କ ବ୍ୟକ୍ତିଗତ ଦାୟିତ୍ୱ । ସେ ଅନେକ ସମୟରେ ଘୋଡ଼ାରେ ଚଢ଼ି ସମ୍ପୃକ୍ତ ସ୍ଥଳ ଓ ବ୍ୟକ୍ତିଙ୍କ ପାଖକୁ ଯାଇ ତାଙ୍କ ନିର୍ଦ୍ଦେଶର କାର୍ଯ୍ୟକାରିତା ଦେଖୁଥିଲେ । ବଙ୍ଗଳାରେ ଏପରି କଥା ଅଶ୍ରୁତପୂର୍ବ ଥିଲା । ଥରେ ଏକ ଆଦେଶ ଜାରୀ ହେଲେ ତାହା କାର୍ଯ୍ୟକାରୀ କରିବାକୁ ଦେଶୀ ଅଫିସରମାନଙ୍କୁ ଦିଆ ହେଉଥିଲା ଏବଂ ଏ ବିଷୟରେ ଅଧିକ ଆବଶ୍ୟକୀୟ ଯାହାକିଛି ନିର୍ଦ୍ଦେଶାବଳୀ ଲିଖିତ ଭାବରେ ଦିଆହେଉଥିଲା । ବଙ୍ଗଳାରେ ତୁମେ ଏକ ନିର୍ଦ୍ଦେଶ ଦେବା ପୂର୍ବରୁ କେଉଁ ଆଇନ ବା ରେଗୁଲେସନର ଧାରାନୁସାରେ ତୁମେ ତାହା କରିପାରିବ ତାହା ଦେଖିବାକୁ ପଡୁଥିଲା । ପଞ୍ଜାବରେ ତୁମେ ତାହା କରୁଥିଲ; କାରଣ ତାହା ତୁମ କର୍ତ୍ତବ୍ୟ ବୋଲି ବିଚାରୁଥିଲ । ତେଣୁ ଏ ଅତି ଅଭିନବ ବ୍ୟବସ୍ଥାରେ ଅଭ୍ୟସ୍ତ ହେବାପାଇଁ ମୋତେ ଯେ ବହୁତ ଦିନ ଲାଗିଲା ଏବଂ କର୍ତ୍ତୃତ୍ୱ ନ ଥିବା କାମକରି ମୁଁ ଯେ ବାରମ୍ବାର ଭର୍ତ୍ସିତ ହେଲି ସେଥିରେ ଆଶ୍ଚର୍ଯ୍ୟ ହେବାର ନ ଥିଲା । ଏଠାରେ ମୋର ପ୍ରଧାନ ଅପରାଧ ହେଲା ଯେ, 'ଆଇନକୁ ମୁଁ ନିଜ ହାତକୁ ନେଉଛି ।' ପଞ୍ଜାବରେ ନିଜର ବିଚାରବୋଧ ଦ୍ୱାରା ପରିଚାଳିତ ହୋଇ ଅତି ଶୀଘ୍ର ମୁଁ ଯେଉଁ ସିଦ୍ଧାନ୍ତ ଦେଉଥିଲି ସେଥିପାଇଁ ବହୁ ପ୍ରଶଂସିତ ହେଉଥିଲି ଏବଂ ଥରେ ମୋ ବିଷୟରେ 'ବିରାଟ ପ୍ରଶାସନିକ ଦକ୍ଷତା' ଥିବା ଅଫିସର ବୋଲି ଉଲ୍ଲେଖ ହୋଇଥିଲା । ବଙ୍ଗଳାରେ ମୁଁ ସେଇଭଳି ଉଲ୍ଲେଖ କୋଡ଼ିଏ ବର୍ଷ ପରେ ପାଇଲି; କିନ୍ତୁ ପ୍ରଥମେ ପ୍ରଥମେ ମୁଁ ଦୋଷଦୁଷ୍ଟ ହୋଇପଡ଼ିଲି ।

ମୋର ପ୍ରଥମ ବଡ଼ ସଫଳତା ହେଲା ଫୌଜଦାରୀ କାମରେ । କଲେକ୍ଟର ବୋଲି ମଧ୍ୟ ଜଣେ ମାଜିଷ୍ଟ୍ରେଟ; କିନ୍ତୁ ସେ ଫୌଜଦାରୀ କାମ ଭଲ ପାଆନ୍ତି ନାହିଁ ଏବଂ ସେ ସମୟର ଅନେକ କଲେକ୍ଟରଙ୍କ ପରି ଏହାକୁ ପୂରାପୂରି ଜଏଣ୍ଟ ମାଜିଷ୍ଟ୍ରେଟଙ୍କ ଉପରେ ଛାଡ଼ିଦିଅନ୍ତି । ବହୁ ପୂର୍ବରୁ ଦକ୍ଷଲୋକଙ୍କ ଦ୍ୱାରା ଗଠିତ ଗୋଟିଏ କମିଶନଙ୍କ (ଯାହାର ମୁଖ୍ୟ ଥିଲେ ମହାନ୍ ଐତିହାସିକ ମାକଲେ) ଦ୍ୱାରା ଭାରତୀୟ ପିଙ୍ଗଲକୋଡ଼ ଓ ଫୌଜଦାରୀ ଦଣ୍ଡବିଧି ଆଇନ ପ୍ରଣିତ ହୋଇଥିଲା । ବଙ୍ଗଳା ସିଭିଲିଆନମାନେ ସେଗୁଡ଼ିକୁ ପସନ୍ଦ କଲେ ନାହିଁ ଏବଂ ସେଗୁଡ଼ିକର କାର୍ଯ୍ୟକାରିତା ଅନେକ ବର୍ଷ ଧରି ବନ୍ଦ ରହିଲା । ବଙ୍ଗଳା ଅଫିସରମାନେ ଏତେଦିନ ଧରି କେତେଗୁଡ଼ାଏ ପୁରୁଣା ଆଇନଧାରାର ଆଲୋକରେ (ବା ଅନ୍ଧାରରେ) ବିଚାର କରିବାରେ ଏତେ ଅଭ୍ୟସ୍ତ ହୋଇଯାଇଥିଲେ ଯେ ସେମାନେ ନୂଆ ଆଇନର ସୂକ୍ଷ୍ମତାରେ ବାନ୍ଧିହୋଇ ପଡ଼ିବାର ଭବିଷ୍ୟତକୁ ବିନା ଆଶଙ୍କାରେ ଗ୍ରହଣ କରିପାରିଲେ ନାହିଁ । 'ବିଉଫୋର୍ଟଙ୍କ ଡାଇଜେଷ୍ଟ' ନାମରେ ଏକାଠି ଗୋଳମାଳିଆ ଭାବରେ ଲିଖିତ ଗୋଟାଏ ଆଠପେଜିଆ ଆକାରର ଓଜନିଆ ବହି ଥିଲା ଯେଉଁଥିରେ କି ପ୍ରତ୍ୟେକ ଅପରାଧ ଅକ୍ଷର ନିୟମ କ୍ରମେ ଲିଖିତ ଥିଲା

ଏବଂ ପ୍ରତ୍ୟେକ ଅପରାଧ ପାଖରେ ସେ ସମ୍ପର୍କରେ ବଙ୍ଗଳାର ପୁରାତନ ପ୍ରଧାନ ଫୌଜଦାରୀକୋର୍ଟ୍ 'ସଦର ନିଜାମତ୍ ଅଦାଲତ୍'ର ବିଚାର ସିଦ୍ଧାନ୍ତର ଅଂଶବିଶେଷମାନ ଦିଆଯାଉଥିଲା ଏବଂ ମାଜିଷ୍ଟ୍ରେଟ ଯେଉଁ ଦଣ୍ଡ ଦେବେ ସେଥିପାଇଁ ସେ ସେଥିରୁ କିଛି ସୂଚନା ଗ୍ରହଣ କରିବେ ବୋଲି ଆଶା କରା ଯାଉଥିଲା । ବିଚାରକକ୍ଷର ଚାରିଆଡ଼େ ବସିଥିବା ଅମଲାମାନେ ସାକ୍ଷୀମାନଙ୍କ ସାକ୍ଷ ଲେଖି ନେଉଥିଲେ ଏବଂ ମାଜିଷ୍ଟ୍ରେଟଙ୍କ ଆଗରେ ଅନେକ ସମୟରେ ବହୁଦିନ ପରେ ପଢ଼ୁଥିଲେ । ସମସ୍ତ ପଦ୍ଧତିଟା ଥିଲା ସମ୍ପୂର୍ଣ୍ଣ ରୂପେ ଜଟିଳ, ଗୋଳମାଳିଆ ଓ ଅପାରଗ, ଯାହାର ସ୍ୱାଭାବିକ ପରିଣତିରେ ଅପରାଧୀମାନଙ୍କୁ ଉପଯୁକ୍ତ ଶାସ୍ତି ଦିଆଯାଇ ପାରୁନଥିଲା ଏବଂ ଅପରାଧ ବ୍ୟାପୀ ରହିଥିଲା । ୧୮୬୧ରେ ଶେଷଆଡ଼କୁ ମୋର କିଛିଦିନ ପାଇଁ ମାଜିଷ୍ଟ୍ରେଟ ହୋଇ ବସିବାର ଦୁର୍ଭାଗ୍ୟ ହୋଇଥିଲା ଏବଂ ଏହି ପୁରାତନ ପଦ୍ଧତିର ଦୁର୍ବଳତା ଓ ଅସାରତା ସମ୍ପର୍କରେ ମୋର ତୀବ୍ର ଅନୁଭୂତି ହୋଇଥିଲା । ନୂତନ ଆଇନର ଧାରା ୧୮୬୨ ଜାନୁୟାରୀ ପହିଲାରୁ କାର୍ଯ୍ୟକାରୀ ହେବାର ଥିଲା; କିନ୍ତୁ ବେଲି ମୋତେ କହିଲେ ଯେ ସେସବୁ ବିଷୟରେ ମୁଁ ମୁଣ୍ଡ ଖେଳେଇବା ଅନାବଶ୍ୟକ । ସେ କହିଲେ, ''ଯେତେଦୂର ସମ୍ଭବ ଆମେ ପୁରୁଣା ପଦ୍ଧତିରେ ଚାଲିବା । ସରକାର ବୋଧହୁଏ ଜାଣିବେ ଆମେ ସେପରି କରୁଛୁ ଏବଂ ନୂଆ ପଦ୍ଧତି ଗ୍ରହଣ କରିବା ପାଇଁ ଜୋର ଦେଇ ଆମ ପାଖକୁ ଚିଠି ସବୁ ଲେଖିବେ ଏବଂ ଆମକୁ ସେପରି କରାଇବାକୁ ତାଙ୍କୁ ଛ'ମାସ, କି ବର୍ଷେ କି ତଦୁର୍ଦ୍ଧ୍ୱ ସମୟ ଲାଗିଯିବ, ଆଉ ଏହାରି ମଧ୍ୟରେ ଆମେ ପୁରୁଣା ପଦ୍ଧତି ଚଳେଇ ରଖିପାରିବା ।'' ମୁଁ ଯେତେବେଳେ କହିଲି ଯେ କେବେ ନୂଆ ନିୟମ ଚାଲିବ ସେ ଦିନକୁ ମୁଁ ଅଧୀର ଆଗ୍ରହରେ ଅପେକ୍ଷା କରିଛି, ସେ ଆଶ୍ଚର୍ଯ୍ୟ ହୋଇଗଲେ । ମୁଁ ପଞ୍ଜାବ ଛାଡ଼ିବାର ଛ'ମାସ ପୂର୍ବରୁ ସେଠାରୁ ଏହା ଆଂଶିକ କାର୍ଯ୍ୟକାରୀ ହୋଇଥିଲା ଏବଂ ଆମେ ସମସ୍ତେ ଏଇ ନୂଆ ପଦ୍ଧତିକୁ ଖୁବ୍ ପସନ୍ଦ କରିଥିଲୁ । କିଛି ପରିମାଣରେ ଦ୍ୱିଧାଗ୍ରସ୍ତ ହୋଇ ସେ ମୋତେ ତାହା ଗ୍ରହଣ କରିବାକୁ ଅନୁମତି ଦେଲେ ଏବଂ ଯେଉଁ ନୂଆ ନିୟମ ଏ ପର୍ଯ୍ୟନ୍ତ ବଙ୍ଗଳା ଲୋକଙ୍କ ପକ୍ଷରେ ଘୃଣା ଓ ତାଚ୍ଛଲ୍ୟର ବିଷୟ ହୋଇ ରହିଆସିଥିଲା, ତାହାକୁ ମୁଁ ବାସ୍ତବରେ ପସନ୍ଦ କରୁଥିବାରୁ ଅନ୍ୟ ଲୋକଙ୍କ ଆଗରେ ମୋତେ ବିଦ୍ରୂପ କରିବାରେ ନିଜକୁ ନିୟୋଜିତ କଲେ । ସେ ଦିନଟି ଆସିଲା । ମୁଁ ବିଚାର କକ୍ଷରେ ମୋ ସ୍ଥାନରେ ବସି ବୋର୍ଡ଼ ଉପରକୁ ପ୍ରଥମ କେଶଟି ଡକାଇଲି । ଅମଲା ଓ ଓକିଲମାନଙ୍କ ମଧ୍ୟରେ ହଇଚଇ ପଡ଼ିଗଲା । ମୁଁ କିପରି ତାହା କରିପାରିଚି ଦେଖିବା ପାଇଁ କୋର୍ଟ ଲୋକାରଣ୍ୟ ହୋଇଗଲା । ନୂଆ ପଦ୍ଧତି ସହ ଛ'ମାସ ଅଭ୍ୟସ୍ତ ଥିବାରୁ ମୁଁ ସହଜରେ ସେ କାମ କରି ଚାଲିଲି ଏବଂ ମୁଁ ଯେଉଁ ଆଇନ ଅନୁଯାୟୀ କାମ କରୁଚି ତାହାର ବିଭିନ୍ନ ଧାରା ଅମଲା ଓ ଶ୍ରୋତାମାନଙ୍କୁ ନିର୍ଦ୍ଦିଷ୍ଟ କରି ବୁଝାଇ ଦେଲି । ଅଳ୍ପ ସମୟ ମଧ୍ୟରେ ୟୁରୋପୀୟ ଅଫିସରମାନେ ମୋ କୋର୍ଟକୁ ଆସି ବେଞ୍ଚରେ ବସି ମୋ ବିଚାରଧାରା ଦେଖିଲେ । ତା'ଦ୍ୱାରା ମୁଁ ଯଥେଷ୍ଟ ପ୍ରଶଂସା ଲାଭ କଲି ।

ଏହି ସମୟରେ ନୂତନ ନୀତି ମଧ ଲାଗୁ କରାହେଲା ଏବଂ ଏଥିରେ ମଧ୍ୟ ପଞ୍ଜାବ, ବଙ୍ଗଳାଠାରୁ ଆଗୁଆ ଥିଲା । ନୂତନ ପଦ୍ଧତିରେ ଅନ୍ୟମାନଙ୍କ ଅପେକ୍ଷା ଅଧିକ ପରିଚିତ ଥିବାରୁ ନୂତନ ପଦ୍ଧତିର ସାଙ୍ଗଠନିକ ବ୍ୟାପାରରେ ମୁଁ ଆବଶ୍ୟକ ହୋଇପଡ଼ିଲି ।

ଯାହାହେଉ ଆରାରେ ବେଶିଦିନ ରହିବା ଯୋଗ ମୋର ନ ଥିଲା । ମେ ମାସରେ ମୋତେ ୧୨୫୦ ଟଙ୍କା ଦରମାରେ ପୂର୍ଣିଆର କାର୍ଯ୍ୟକାରୀ ମାଜିଷ୍ଟ୍ରେଟ ଓ କଲେକ୍ଟର ରୂପେ ନିଯୁକ୍ତି ମିଳିବାରୁ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଏହା ଥିଲା ବଡ଼ ଧରଣର ଏକ ପଦୋନ୍ନତି ଏବଂ ଖୁବ୍ ଆଶାତୀତ; କାରଣ ସେତେବେଳେ ପଦୋନ୍ନତିର କେଉଁ ସ୍ତରରେ ଅଛୁ ଜାଣିବା ପାଇଁ ଆମର 'ତିନିମାସିଆ ସିଭିଲ୍ ତାଲିକା' ନ ଥିଲା । ସ୍ତ୍ରୀ ଗର୍ଭବତୀ ହେବାର ସମ୍ଭାବନା କରୁଥିଲେ, ତେଣୁ ତା ପୂର୍ବରୁ ବେଳ ଦେଖି ନୂଆ ଜାଗାକୁ ଚାଲିଯିବା ପାଇଁ ଆମେ ଭାବିଲୁ ଏବଂ ଆମେ ଆମ ଆସବାବପତ୍ର ବିକି ଯାତ୍ରାପାଇଁ ପ୍ରସ୍ତୁତ ହେଲୁ । ମୋ ଭାଇ ପିଅରସନ ବ୍ରହ୍ମଦେଶରେ ୬୯ତମ ପଦାତିକ ବାହିନୀରେ ଥିଲା । ଛୁଟିନେଇ ସେ ଆମ ସହ ଯୋଗଦେଲା ଏବଂ ଆମକୁ ବହୁ ସାହାଯ୍ୟ କଲା । ୧୮୬୨ ଜୁନ୍ ୩ ତାରିଖରେ ପାଲିକି ଯୋଗେ ଆମେ ଆରାରୁ ବାହାରି ପରଦିନ ସକାଳେ ପାଟନାରେ ପହଞ୍ଚିଲୁ । ସେଠାରେ ମୋ ସ୍ତ୍ରୀ ବୋଧହୁଏ ପାଲିକିର ଊଠାପକା ଫଳରେ ଅସୁସ୍ଥତା ଅନୁଭବ କଲେ ଏବଂ ଆଉ ଯାତ୍ରା କରିବାକୁ ଭୟ କଲେ । ଆମେ ଦିନାପୁର ଡାକ୍ତରଙ୍କ ଛଡ଼ା ଆଉ କାହାକୁ ଚିହ୍ନି ନ ଥିଲୁ । ସେ ଆମକୁ ଗୁଡ୍ ନାମକ ଜଣେ ଅଦ୍ଭୁତ ବୃଦ୍ଧ ବ୍ୟକ୍ତିଙ୍କ ବିଷୟରେ କହିଲେ । ତାଙ୍କର ପାଟନା ଓ ଦିନାପୁର ମଝିରେ ଦିଗାଠାରେ ଗୋଟିଏ ବଡ଼ ବଡ଼ ଆରାମଦାୟକ ହୋଟେଲ ଥିଲା । କୌଣସି ପଥିକ ଯଦି ତାଙ୍କ ଦ୍ୱାରକୁ ଯାଉଥିଲେ ଏବଂ ସ୍ଥାନଟିକୁ ହୋଟେଲ ବୋଲି ଭାବି ବ୍ୟବହାର କରୁଥିଲେ ତେବେ ସେ ବଦରାଗୀ ଲୋକଟି ଖୁବ୍ ଅପମାନିତ ବୋଧ କରୁଥିଲେ । ତେଣୁ ଡାକ୍ତରଜଣକ ତାଙ୍କ ପାଖକୁ ଯାଇ କହିଲେ ଯେ, ତାଙ୍କର କେତେଜଣ ବନ୍ଧୁ ପାଟନା ଦେଇ ଯାଉଥିଲେ ଏବଂ ସେମାନଙ୍କ ମଧ୍ୟରୁ ଜଣେ ମହିଳା ଅସୁସ୍ଥ ହୋଇଗଲେ ଏବଂ ସେମାନଙ୍କ ପାଇଁ ଅନ୍ୟତ୍ର ସ୍ଥାନ ନ ଥିବାରୁ ଶ୍ରୀଯୁକ୍ତ ଗୁଡ୍ ଦୟାକରି ନିଜ ଗହଣରେ ସ୍ଥାନ ଦେଲେ ସେ ଖୁବ୍ କୃତଜ୍ଞ ହୁଅନ୍ତେ । ସେ ରାଜିହେଲେ । ସ୍ତ୍ରୀଙ୍କ ଅସୁସ୍ଥତାଜନିତ ବିଘ୍ନ ନ ଉପୁଜିଲେ ଆମେ ଯେଉଁ ଷ୍ଟିମରରେ ଯିବାର ଥିଲା ସେଇଥିରେ କେତେଘଣ୍ଟା ବିତାଇ ଆମେ ଶ୍ରୀ ଗୁଡ୍‌ଙ୍କ ହୋଟେଲରେ ପହଞ୍ଚିଲୁ । ସେଠାରେ ଚାରିଦିନ ରହିଲୁ । ତା'ରି ମଧ୍ୟରେ ସେହି ପ୍ରବୀଣ ବ୍ୟକ୍ତି ଓ ତାଙ୍କ ସ୍ତ୍ରୀ ଆମେ ତାଙ୍କର ଅତିଥି ଥିବାଭଳି ପ୍ରହସନ ଲଗାଇଲେ । ସେମାନେ ଆମ ସହ ଖାଉଥିଲେ । ଶ୍ରୀ ଗୁଡ୍ ସର୍ବଦା ମୋ ସ୍ତ୍ରୀଙ୍କ ଆଡ଼କୁ ତାଙ୍କ ବାହୁ ବଢ଼ାଇ ଦେଉଥିଲେ ଏବଂ ମୋତେ ଶ୍ରୀମତୀ ଗୁଡ୍‌କୁ ନେବାକୁ ପଡୁଥିଲା । ସେମାନେ ଅତି ଇତର ଧରଣର ଲୋକ ହେଲେ ମଧ୍ୟ ହୃଦୟବାନ୍ । ତାଙ୍କ ବ୍ୟବସାୟ ଗାଡ଼ି ତିଆରି; ପାଟନା ଓ ପାଖାପାଖି ଅଞ୍ଚଳରେ ଗାଡ଼ିସବୁ ସଜାଡ଼ିବାର ବଡ଼ ବ୍ୟବସାୟ ତାଙ୍କର ଥିଲା । ଯେଉଁ ଖାମଖିଆଲ ଭାବରେ ସେ ତାଙ୍କ ହୋଟେଲ ଚଳାଉଥିଲେ ସେଇ ଭାବ ଭାରତରେ ଥିବା ପ୍ରତ୍ୟେକ ୟୁରୋପୀୟ ମଧ୍ୟବିତ୍ତ ଓ ନିମ୍ନଶ୍ରେଣୀୟ ଲୋକଙ୍କଠାରେ ଥିଲା; ପ୍ରତ୍ୟେକେ ନିଜକୁ 'ସାହିବ' ବା ଭଦ୍ରଲୋକ ବୋଲି ବିଚାରୁଥିଲେ । କିଛିଦିନର ବିଶ୍ରାମପରେ ପୁଣି ଯାତ୍ରା କରିପାରିବା ଭଳି ସ୍ତ୍ରୀ ସୁସ୍ଥ ହେଲେ । ଆମେ ଯିବାବେଳକୁ ଶ୍ରୀ ଗୁଡ୍ ତାଙ୍କ ବିଲ୍‌ଟା ପଠାଇବାକୁ ଭୁଲି ନ ଥିଲେ । ବିଲ୍‌ର ପରିମାଣ ୮୦ ଟଙ୍କା, କଲିକତାର ସର୍ବଶ୍ରେଷ୍ଠ ହୋଟେଲ ସେତିକି ନେଇଥାନ୍ତା ।

ସୌଭାଗ୍ୟକ୍ରମେ ଆମେ ଗଙ୍ଗାରେ ଯାଉଥିବା ଏକ ସରକାରୀ ଷ୍ଟିମର ପାଇଗଲୁ । ସରକାରୀ କାମରେ ଯୋଗଦେବାକୁ ଯାଉଥିବା ଅଫିସର ବିନା ଭଡ଼ାରେ ସେସବୁରେ

ଯାଇପାରନ୍ତି । ଏହି ଷ୍ଟିମରର ଗୋଟିଏ ଫ୍ଲାଟ୍ ବା ଦୁଇପଟକୁ ଭାଙ୍ଗିଯାଇଥିବା ମାଲବାହୀ ନୌକା ରହିଥିଲା । ତେଣୁ ମୋଟ ଉପରେ ଏହା ପାଖକୁ ପାଖ ଲଗା ତିନୋଟି ନୌକା । ମାଲପତ୍ର ସବୁ ଫ୍ଲାଟରେ ରହେ ଏବଂ ଷ୍ଟିମରଟି ଯାତ୍ରୀଙ୍କ ପାଇଁ ସଂରକ୍ଷିତ । ସେଇଟା ବର୍ଷର ସବୁଠାରୁ ଉତ୍ତପ୍ତ ଜୁନ୍ ମାସ ହେଲେ ବି ଜଳଯାନଟିର ବେଗଗମନ ଫଳରେ ଶୀତଳ ପବନ ସୃଷ୍ଟି ହେଉଥିଲା । ଡେକ୍ ଆଗର ଉଚ୍ଚା ଜାଗାରେ ଲମ୍ବା ବେତ ଚଉକିରେ ବସି ଯାତ୍ରାର ଆନନ୍ଦ ଖୁବ୍ ପାଇଲୁ । ଷ୍ଟିମର୍‌ରେ ଚାରିଦିନ ଯାତ୍ରାପରେ ଜୁନ୍ ୧୨ ତାରିଖରେ ଆମେ ପୂର୍ଣ୍ଣିଆ ଜିଲ୍ଲାର ପ୍ରବେଶ ସ୍ଥଳ କାରଗୋଲାରେ ଓହ୍ଲାଇଲୁ ଏବଂ ତା'ପର ଦିନ ଆମ ଗନ୍ତବ୍ୟ ସ୍ଥଳରେ ପହଞ୍ଚିଲୁ ।

ଜିଲ୍ଲାଟି ପ୍ରଥମ ଦର୍ଶନରୁ ହିଁ ଥିଲା ଅପ୍ରୀତିକର । କଲଗଙ୍ଗଠାରେ ନଦୀ ମଧ୍ୟକୁ ପଶିଆସିଥିବା ପାହାଡ଼ସବୁ ପାରିହେବାପରେ ଗଙ୍ଗା କ୍ରମେ ଚଉଡ଼ା ହୋଇଯାଇଛି, ଦକ୍ଷିଣ ତୀରରୁ ପାହାଡ଼ ସବୁ ଦୂରେଇ ଯାଇଚି ଏବଂ ବାମ ପଟରେ ପ୍ରାୟ ଗଙ୍ଗାଭଳି ପ୍ରଶସ୍ତ ଏକ ନଦୀ କୋଶୀ ଆସି ତା'ର ହଳଦିଆ ବହଳ ଗୋଳିଆ ପାଣି ଢାଳିଦେଉଛି । ଏହି ମିଳିତ ସ୍ରୋତ ପ୍ରାୟ ୯ ମାଇଲ ଚଉଡ଼ା । ବାମ ବା ଉତ୍ତର ତୀର ନୀଚ ଓ ସମତଳ । ମଝିରେ ମଝିରେ କେବଳ ଉଚ୍ଚା ବନ୍ଧ ସମକୋଣ ଭାବରେ ପଶିଆସିଛି । ଏଇ ହେଉଛି ଗଙ୍ଗା ଓ ଦାର୍ଜିଲିଂ ପଥ । ଏହାର ଦୁଇପାଖରେ ମନ୍ଦାଏ ମନ୍ଦାଏ ଜୀର୍ଣ୍ଣ ମାଟିଘର ଏବଂ ସେସବୁ ମଝିରେ ଅଳ୍ପ କେତେଟା ଚୂନଧଉଳା ଇଟାଘର । ମୁସଲମାନମାନଙ୍କର ସୁନ୍ଦର ଗମ୍ବୁଜ ଓ ଉଦ୍ୟାନଟିର ଧ୍ୱଂସାବଶେଷ କ୍ରମେ ନଦୀଗର୍ଭରେ ଲୀନ ହୋଇଯାଉଛି । ନଦୀ ହାଲୁକା ବାଲିଆ ମାଟିକୁ ଖାଇଯାଉଛି । ସ୍ଥଳଭାଗରେ ପ୍ରଶସ୍ତ ସମତଳଭୂମି ଚାରିଆଡ଼କୁ ଲମ୍ବିଯାଇଛି । ସେଥିରେ ମଣିଷଠାରୁ ଉଚ୍ଚ ଘାସଗଛ ଉପରେ ଧଳା ଧଳା ଫୁଲ । କାରଗୋଲା ଏକ ବିଧିବଦ୍ଧ ଗ୍ରାମ ନୁହେଁ । ଜିଲ୍ଲାର ପ୍ରବେଶ ପଥ ଏବଂ ଦାର୍ଜିଲିଂର କ୍ରମବର୍ଦ୍ଧମାନ ସ୍ୱାସ୍ଥ୍ୟନିବାସକୁ ବାଟ ହୋଇଥିବାରୁ ଏଠାରେ ଏକ ମିଶ୍ରିତ ବସତି ଗଢ଼ିଉଠିଥିଲା । ବର୍ତ୍ତମାନ ଏହା ଆଉ ନାହିଁ । ୧୮୬୪ରେ ନଦୀ ମଧ୍ୟରେ ଏହା ପୂରାପୂରି ଲୀନ ହୋଇଯାଇଛି । ପୂର୍ଣ୍ଣିଆରେ ଆମେ ଖୁବ୍ ଆତିଥେୟତା ପାଇଲୁ ଏବଂ ଅଳ୍ପ କିଛିଦିନ ପରେ ଘରଟିଏ ପାଇ କିଛି ଆସବାବପତ୍ର କିଣିଲୁ । ଆମର ଥଇଥାନ ସରିଛି କି ନାହିଁ ସ୍ତ୍ରୀଙ୍କର ବହୁପ୍ରତ୍ୟାଶିତ ପ୍ରସୂତିକାଳୀନ ବିଶ୍ରାମ ଆରମ୍ଭ ହେଲା । ୧୮୬୨ ଜୁଲାଇ ୨୫ରେ ସକାଳ ୮.୧୫ ମିନିଟ୍‌ରେ ଆମର ବଞ୍ଚିରହିଥିବା ସନ୍ତାନମାନଙ୍କ ମଧ୍ୟରେ ଜ୍ୟେଷ୍ଠ ଡାଭିଡ୍ ଜନ୍ମ ହେଲା । ସେପ୍ଟେମ୍ବର ୩ ତାରିଖ ପର୍ଯ୍ୟନ୍ତ ତା'ର ଦୀକ୍ଷାଗ୍ରହଣ ହୋଇନଥିଲା । ହେନେରୀ ଗୀଅରି ଆମ ପାଖରେ ରହିବାକୁ ଆସିଲେ । ସେ ଓ ମୋ ଭାଇ ପିଅରସନ ଧର୍ମପିତା ହେଲେ । ମୋ ସ୍ତ୍ରୀ ଅତିଶୀଘ୍ର ସୁସ୍ଥ ହୋଇ ମୋ ସହ ଘୋଡ଼ାଚଢ଼ି ବୁଲିବାରେ ସକ୍ଷମ ହୋଇଗଲେ ।

ନୂଆ କାମ ଓ ପୂର୍ଣ୍ଣିଆରେ ମୋ ସ୍ଥିତିର ନୂତନ ପରିବେଶରେ ମୁଁ କିଛିଦିନ ବିବ୍ରତ ରହିଲି । ମାତ୍ର ଚାରିବର୍ଷ ଚାକିରି ପରେ ମାଜିଷ୍ଟ୍ରେଟ୍ ଓ କଲେକ୍ଟର କାର୍ଯ୍ୟ ତୁଲାଇବାର ଏ ନିଯୁକ୍ତି ଥିଲା, ଏକ ଅଭୂତପୂର୍ବ ଶୀଘ୍ର ପଦୋନ୍ନତି ! ସେହି ଚାରିବର୍ଷ ବଙ୍ଗଳାରେ ଥିଲେ ବଙ୍ଗଳା ପଦ୍ଧତିରେ ଅବଶ୍ୟ ଅଭ୍ୟସ୍ତ ହୋଇପାରିଥାନ୍ତି, ତଥାପି ଜଣେ ତରୁଣ ଅଫିସର ଭାବରେ ଏତେ ବଡ଼ ଜିଲ୍ଲାର ଦାୟିତ୍ୱ ତୁଲାଇବା କଷ୍ଟକର ହୋଇଥାନ୍ତା । ଚାରିବର୍ଷ ପଶ୍ଚାତରେ ଜଟାଇ ସମ୍ପୂର୍ଣ୍ଣ

ଅଲଗା ପଦ୍ଧତିରେ ଅଭ୍ୟସ୍ତ ଥିବାରୁ ସେ କାମ କରିବା ଆହୁରି କଷ୍ଟକର ହେଲା । ପୂର୍ଣ୍ଣିଆ ୫୦୦୦ ବର୍ଗ ମାଇଲର ଏକ ଜିଲ୍ଲା ଏବଂ ପ୍ରାୟ ସେହି ସମୟରେ ସରକାରୀ ଭାବରେ 'ବଙ୍ଗଳାର ସବୁଠାରୁ ଅରାଜକ ଜିଲ୍ଲା' ଭାବରେ ବର୍ଣ୍ଣିତ ହେଉଥିଲା । ଏହାର ଭୀଷଣ ଅସ୍ୱାସ୍ଥ୍ୟକର ପରିବେଶ ଯୋଗୁଁ ସବୁ ଅଫିସର ଏଠାକୁ ଆସିବାକୁ ଅନିଚ୍ଛୁକ ଥିଲେ । ସେମାନଙ୍କ ଦକ୍ଷତା ଓ ବ୍ୟକ୍ତିଗତ ପ୍ରଭାବ ବଳରେ ସେମାନେ ନିଜ ପସନ୍ଦ ମୁତାବକ ସ୍ଥାନରେ ରହିପାରୁଥିଲେ । ତେଣୁ ଏହି ଜିଲ୍ଲା ସାଧାରଣତଃ କମ୍ ଦକ୍ଷତା ଥିବା କିମ୍ବା ବଦ୍‌ନାମ ହୋଇଥିବା ଲୋକର ଦାୟିତ୍ୱରେ ଦିଆଯାଉଥିଲା, କାରଣ କେତେକ ଅତି ଅସ୍ୱାସ୍ଥ୍ୟକର ଜିଲ୍ଲାକୁ 'ଅପରାଧ ବସତି' ରୂପେ ସଂରକ୍ଷିତ ରଖି ଦଣ୍ଡଦେବାକୁ ଇଚ୍ଛା କରୁଥିବା କୌଣସି ଲୋକକୁ ସେଠାକୁ ପଠାଇବା ସରକାରଙ୍କର ଏକ ଅଭ୍ୟାସ ଥିଲା । ମୁଁ ସେଠାକୁ ପଠାହୋଇଥିଲି କାରଣ ମୁଁ ଥିଲି ଏକ ନବାଗତ ଯାହା ବିଷୟରେ କେହି କିଛି ଜାଣି ନ ଥିଲେ ବା ଜାଣିବାକୁ ଇଚ୍ଛା କରି ନ ଥିଲେ । ବଙ୍ଗଳାର ପ୍ରଧାନ ବିଚାରପତି ସାର୍ ବାର୍ନେସ ପିକକ୍‌ଙ୍କ ପୁଅର ଯୋଗ୍ୟତା ମୋ ସହ ସମାନ । ସେ ସେହି ସମୟରେ କଲେକ୍ଟର ରୂପେ ନିଯୁକ୍ତି ପାଇ ସ୍ୱାସ୍ଥ୍ୟକର ଓ ପସନ୍ଦଯୋଗ୍ୟ ଜିଲ୍ଲା ମୁଙ୍ଗେର୍‌ରେ ନିଯୁକ୍ତି ପାଇଲା, କିନ୍ତୁ ମ୍ୟାଲେରିଆ ଗ୍ରସ୍ତ ପୂର୍ଣ୍ଣିଆ ଥିଲା ମୋ ଭଳି ବନ୍ଧୁହୀନ( ୧ ) ପାଇଁ ଯଥେଷ୍ଟ ।

'ମ୍ୟାଜିଷ୍ଟ୍ରେଟ୍ ଓ କଲେକ୍ଟର' ପଦବୀରେ ଥିବା ଅଫିସରଜଣକ ସାଧାରଣତଃ ଦୁଇଠାରୁ ପାଞ୍ଚ ହଜାର ବର୍ଗମାଇଲ ବ୍ୟାପୀ ଅଞ୍ଚଳ ଓ ଅଧିକାଂଶ କ୍ଷେତ୍ରରେ ୧୫ରୁ ୨୦ ଲକ୍ଷ ଅଧିବାସୀ ଥିବା ଜିଲ୍ଲାସବୁର ପ୍ରକୃତ ପକ୍ଷେ ଶାସକ ଥିଲେ । ସମଗ୍ର ଶାସନ ପରିଚାଳନାର ସେ ଥିଲେ ସ୍ତମ୍ଭ ପରି; ତାଙ୍କ ତଳେ ଥିବା ସମସ୍ତେ ତାଙ୍କ କଥା ମାନି ତାଙ୍କୁ ସାହାଯ୍ୟ କରିବାରେ ନିଯୁକ୍ତ ଥିଲେ, ତାଙ୍କ ଉପରେ ଥିବା ସମସ୍ତେ ଖବର ଅନ୍ତର ପାଇଁ ତାଙ୍କ ଉପରେ ନିର୍ଭର କରୁଥିଲେ ଏବଂ ତାଙ୍କୁ ନିର୍ଦ୍ଦେଶ ଓ ପରାମର୍ଶ ଦେବାରେ ନିଯୁକ୍ତ ରହୁଥିଲେ; କିନ୍ତୁ ମିଶରୀୟ କାରାଗାରରେ ଯୋଶେଫ୍‌ଙ୍କ ପରି 'ସେଠାରେ ଯାହାକିଛି କରାଯାଉଥିଲା ସେ କରୁଥିଲେ ।' ତେଣୁ ଏହି ଦିନଠାରୁ ମୋ ଜୀବନର ପ୍ରକୃତ କର୍ମମୁଖର ଓ ଗୁରୁତ୍ୱପୂର୍ଣ୍ଣ ଅଂଶ ଆରମ୍ଭ ହେଲା ।

ପ୍ରଥମେ ମୁଁ ଖୁବ୍ ଉତ୍ସାହ ଓ ଦୃଢ଼ତାରେ କାମ ଆରମ୍ଭ କଲି । ଏଭଳି ବିଶୃଙ୍ଖଳ ଜିଲ୍ଲାକୁ ଶୃଙ୍ଖଳିତ କରିବା ପାଇଁ ଯେଉଁ ଗୁଣ ସବୁ ବିଶେଷରୂପେ ଦରକାର ଯଥା— କର୍ମପ୍ରବଣତା, ଦୃଢ଼ତା ଏବଂ ମାଡ଼ିମକଚି କରିଯିବାର ମାନସିକ ବଳ, ସେଇ ସବୁଗୁଡ଼ିକ ଥିଲା

---

(୧) ଭାରତରେ ଥିବାବେଳେ ମୁଁ ବରାବର ବନ୍ଧୁ ଇଭିଅଟ ସହ ପତ୍ରାଳାପ କରୁଥିଲି । ସପ୍ତାହରେ ହାରାହାରି ଦୁଇଥର ଲମ୍ବା ଚିଠି ଓ ମଝିରେ ମଝିରେ ଛୋଟ ଚିଠିମାନ ଦେଉଥିଲି । ସେ ମୋ ପାଖକୁ ଏତେ ଥର ଲେଖୁ ନ ଥିଲେ ମଧ ଦୀର୍ଘତର ଚିଠିମାନ ଲେଖୁଥିଲା । ମୁଁ ତା'ର ଚିଠିସବୁ ନଷ୍ଟ କରି ଦେଉଥିଲି; କିନ୍ତୁ ସେ ମୋ ଚିଠି ସବୁ ରଖିଥିଲା । ୧୮୯୩ରେ ଭାରତ ଛାଡ଼ିବା ପୂର୍ବରୁ କିଛି କଷ୍ଟ ସ୍ୱୀକାର କରି ତାକୁ ପ୍ରବର୍ତ୍ତାଇ ବଡ଼ ବାକ୍‌ସରେ ଭର୍ତ୍ତିଥିବା ମୋ ଚିଠିଗୁଡ଼ିକ ଆଣିଲି । ପ୍ରାୟ ଦୈନନ୍ଦିନ ଲେଖା ହୋଇଥିବା ମୋ ଭାରତ ଜୀବନର ସମ୍ପୂର୍ଣ୍ଣ ଇତିହାସ ସେଥିରେ ଥିବାରୁ ସେଥିରୁ କିଛି କିଛି ଅଂଶ ଦେଉଛି । ତାହାର କେବଳ ବର୍ଷକ୍ରମେ ଘଟୁଥିବା ଘଟଣାବଳୀର ଶୁଷ୍କ ବର୍ଣ୍ଣନା ଅପେକ୍ଷା ସେତେବେଳର ଜୀବନର [illegible] ।

ମୋର ପ୍ରଧାନ ଦୋଷ ବୋଲି ଆଲୋଞ୍ଜେ ମନି ମୋତେ କହୁଥିଲେ ଏବଂ ମୋର ବନ୍ଧୁ ଓ ଶୁଭେଚ୍ଛୁମାନେ ବରାବର ମୋତେ ସତର୍କ କରାଇ ଦେଉଥିଲେ ଯେ ମୁଁ ଏତେ ଉଗ୍ର ସ୍ୱଭାବର ବା ଯାହାକୁ ସେମାନେ କହୁଥିଲେ 'ଏତେ ପଞ୍ଜାବୀ' ହେବା ଉଚିତ ନୁହେଁ ।

ସବୁ ଜିନିଷକୁ ଧୀରସ୍ଥିର ଭାବରେ ଗ୍ରହଣ କରିଯିବା, ହୋଇପାରୁଥିବା କୌଣସି କାମକୁ ନିଜେ ଦାୟିତ୍ୱ ନେଇ ନ କରିବା, ବିଚାର କକ୍ଷରେ ନୀରବରେ ବସି ବିବରଣୀ ସବୁ ଶୁଣି ଓ ପଢ଼ି ଦିନର କେତେ ଘଣ୍ଟା ନିର୍ଦ୍ଦେଶ ସବୁ ଡାକିଦେବା, କମିଶନରଙ୍କ ପାଖକୁ ଆଳଙ୍କାରିକ ଭାଷାରେ ବିବରଣୀମାନ ଲେଖିବା, ସାମୟିକ ବିବରଣୀପତ୍ର ସବୁ ଠିକ୍‌ଠିକ୍ ପଠାଇବାର ବନ୍ଦୋବସ୍ତ କରିବା, ଓକିଲମାନେ ସେମାନଙ୍କ ମକ୍କେଲଙ୍କ ପାଇଁ ଏକ ନିଃଶ୍ୱାସରେ ବକିଯାଉଥିବା କଥାଗୁଡ଼ାକ ଧୈର୍ଯ୍ୟଧରି ଶୁଣିବା— ଏଇଗୁଡ଼ାକ ଥିଲା ଉଚିତ ଏବଂ କରଣୀୟ ଏବଂ ସେମାନଙ୍କ ବନ୍ଧୁମାନଙ୍କ ପାଇଁ ନିଶ୍ଚିତ କର୍ତ୍ତବ୍ୟ । ଏହାଠାରୁ ଯାହାକିଛି ଅଧିକ ସେସବୁ ଥିଲା ଦୂଷିତ ।

ମୋ ଜୀବନର ପ୍ରଥମ କଠିନ ଓ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ପଡ଼ିଲା ଦରଭଙ୍ଗା ଜମିଦାରୀ କଥା ବୁଝିବା । ମୁଁ ମନିଙ୍କୁ ଦେଖା କରିବାକୁ ଭାଗଲପୁର ଯାଇଥିବାବେଳେ ସେ ମୋତେ ଏହି ବିଷୟଟାକୁ ଖୁବ୍ ସାବଧାନତା ସହ ଦେଖିବା ପାଇଁ ଜୋର ଦେଇ କହିଲେ । ତେଣୁ ଦାୟିତ୍ୱ ନେବା ପରେ ମୋର ପ୍ରଥମ କାମ ହେଲା, ପ୍ରଧାନ କିରାଣିଙ୍କୁ ଦରଭଙ୍ଗା ମାମଲାର କାଗଜପତ୍ର ଆଣିବା ପାଇଁ କହିବା । ସେ ଟିକିଏ ଆଶ୍ଚର୍ଯ୍ୟ ହୋଇଗଲେ ଏବଂ ଗୋଟିଏ ଶବ୍ଦରେ ପଚାରିଲେ, ''ସବୁ ?'' ଏପରି କାହିଁକି ପଚାରୁଛନ୍ତି ବୋଲି ବିସ୍ମିତ ହୋଇ ମୁଁ କହିଲି, ''ହଁ ସବୁ ।'' ପରଦିନ ସକାଳେ ମୁଁ ତା' ଅର୍ଥ ବୁଝିପାରିଲି ଯେତେବେଳେ ଧାଡ଼ି ଧାଡ଼ି କୁଲି ବଡ଼ ବଡ଼ ବୁଜୁଳାମାନ ବୋହି ଆଣି ପହଞ୍ଚିଲେ ଏବଂ ସହଜ ସ୍ୱରରେ କହିଦେଲେ ଯେ, ସେ ସବୁ ଦରଭଙ୍ଗା କାଗଜପତ୍ର ! ରଖାହେବାରୁ ସେ ସବୁ କାଗଜ ବିଡ଼ାଟା ଘରଟାରେ ଚାରିଆଡ଼େ ତିନିଫୁଟ ଉଚ୍ଚରେ ଭର୍ତ୍ତି ହୋଇଗଲା ।

ଦରଭଙ୍ଗା ହେଉଛି ନିମ୍ନପ୍ରଦେଶର ସର୍ବବୃହତ୍ ଜମିଦାରୀମାନଙ୍କ ମଧ୍ୟରୁ ଅନ୍ୟତମ । ମାଲିକ ହେଉଛନ୍ତି ମହାରାଜା ପଦବୀଧାରୀ ବିହାରର ସର୍ବଶ୍ରେଷ୍ଠ ସମ୍ଭ୍ରାନ୍ତ ପୁରୁଷ । ଏ ଜମିଦାରୀରେ ଅନେକ ପ୍ରଗଣା ରହିଛି ଏବଂ ସେ ସବୁ ଗଙ୍ଗା ଓ ହିମାଳୟ ମଧ୍ୟରେ ପ୍ରାୟ ୨୦୦ ମାଇଲ ବିସ୍ତୃତ । ସମୁଦାୟ କ୍ଷେତ୍ରଫଳ, ୨,୪୬୦ ମାଇଲ, ଅନେକ ୟୁରୋପୀୟ ରାଜ୍ୟଠାରୁ ବଡ଼ । ଏହାର ଧରମପୁର ଅଂଶଟି ପୂର୍ଣ୍ଣିଆ ଜିଲ୍ଲାରେ । ଏହା ହାରାହାରି ୨୦ ମାଇଲ ଚଉଡ଼ାରେ ପ୍ରାୟ ୪୦ ମାଇଲ ଲମ୍ବା କ୍ଷେତ୍ରଫଳ ପ୍ରାୟ ୬୦୦ ବର୍ଗମାଇଲ । ବିରାଟ କୋଶୀନଦୀ ଏହା ଭିତରେ ପ୍ରବାହିତ ହୋଇ ଏହାକୁ ସମାନ ଦୁଇଭାଗରେ ବିଭକ୍ତ କରିଛି । ଏହି ବିରାଟ ଜମିଦାରୀର ମାଲିକ, ଜମିଦାରୀକୁ କରଜରେ ବୁଡ଼ାଇ ଦେଇ ଅଳ୍ପକାଳ ହେଲା ମରିଯାଇଥିଲେ । ତାଙ୍କ ପୁଅ ଓ ଉତ୍ତରାଧିକାରୀ ଥିଲା ମାତ୍ର ୩ ବର୍ଷର ଶିଶୁ । ଏସବୁ କ୍ଷେତ୍ରରେ କାର୍ଯ୍ୟ ପରମ୍ପରା ହେଲା, ସରକାର ଜମିଦାରୀର ଦାୟିତ୍ୱ ନେଇ ନିଜ ଅଧୀନରେ ରଖିବା— ଯାହାକୁ 'କୋର୍ଟ ଅଫ ଓ୍ୟାଡ଼ସ୍' କହନ୍ତି । ଏହି ତଥାକଥିତ କୋର୍ଟ ପ୍ରକୃତରେ ଆଦୌ କୋର୍ଟ ନୁହେଁ । ଜିଲ୍ଲାର କଲେକ୍ଟର ଆଂଶିକ ନିଜ କର୍ତ୍ତୃତ୍ୱରେ ଏବଂ ଆଂଶିକ ସେଇ ମଣ୍ଡଳର କମିଶନରଙ୍କ ନିର୍ଦ୍ଦେଶରେ

ଏପରି ଜମିଦାରୀର ପରିଚାଳନା କରନ୍ତି ଏବଂ ନାବାଳକର ରକ୍ଷଣାବେକ୍ଷଣ ଓ ଶିକ୍ଷା ଖର୍ଚ୍ଚ ଯୋଗାନ୍ତି । କମିଶନର ମଧ୍ୟ ଏ ବିଷୟରେ କଲିକତାରେ ଥିବା ରାଜସ୍ୱ ପରିଷଦର ସାଧାରଣ ନିର୍ଦ୍ଦେଶାନୁଯାୟୀ ଚଳନ୍ତି । ଦରଭଙ୍ଗା ମାମଲାରେ ଜମିଦାରୀଟି କେତେଗୁଡ଼ିଏ ଜିଲ୍ଲାରେ ବିଭକ୍ତ ହୋଇ ରହିଥିବାରୁ ପ୍ରତ୍ୟେକ ଜିଲ୍ଲାର କଲେକ୍ଟରେ ତାଙ୍କରି ସୀମାଭୁକ୍ତ ଅଂଶର ପରିଚାଳନା କଲେ ଏବଂ ଆଉ ଜଣେ ଜେନେରାଲ ମ୍ୟାନେଜର ନିଯୁକ୍ତ ହୋଇ ନାବାଳକ ଉତ୍ତରାଧିକାରୀର ବ୍ୟକ୍ତିଗତ ଦାୟିତ୍ୱ ନେଲେ । ଜମିଦାରୀ ଶାସନ ସମ୍ପର୍କୀୟ ତାଙ୍କ କ୍ଷମତାର ସୀମା ସ୍ପଷ୍ଟ ନ ଥିଲା । ଏହି ବ୍ୟବସ୍ଥା ଖୁବ୍ ଗୋଳମାଳିଆ ହୋଇ ପରସ୍ପରବିରୋଧୀ କର୍ତ୍ତୃତ୍ୱ ସୃଷ୍ଟି କରିବା ଫଳରେ ସୁଦକ୍ଷ କର୍ମଚାରୀଙ୍କ ନିର୍ଦ୍ଦିଷ୍ଟ କ୍ଷମତା ଠୁଳ ହୋଇପାରେ ନାହିଁ । ଏହି ବ୍ୟବସ୍ଥା ବ୍ରିଟିଶ ପ୍ରକୃତିର ଖୁବ୍ ପ୍ରିୟ, ଯେଉଁଥିପାଇଁ ଦେଶ ଭିତରେ ଓ ବାହାରେ ଆମର ଏତେ ଶାସନ ବିଭ୍ରାଟ ।

ଦରଭଙ୍ଗା ଜମିଦାରୀର ଅଧିକାଂଶ ଅଂଶ ଥିଲା ତିର୍‌ହୁତ୍ ଜିଲ୍ଲାରେ । ସେଇ ଜିଲ୍ଲାର ରାଜଧାନୀ ମୁଜାଫର୍‌ପୁରରେ ଥିବା ମହାରାଜାଙ୍କ ଅନ୍ୟତମ ପ୍ରାସାଦରେ ରହୁଥିଲେ ଜେନେରାଲ ମ୍ୟାନେଜର ଫର୍ଲଙ୍ଗ୍ । ସେ ଥିଲେ ଜଣେ ନୀଳଚାଷୀ, ଦୀର୍ଘକାୟ ଆଡ଼ମ୍ବରପ୍ରିୟ ବ୍ୟକ୍ତି; କିନ୍ତୁ ବୁଦ୍ଧିମାନ ଓ କର୍ମଚଞ୍ଚଳ । ସେ ଗୋଟିଏ ଲମ୍ବା କୋଟ ପିନ୍ଧୁଥିଲେ ଯାହାକି ନାଟକର ପୋଷାକ ପରି କାନ୍ଧ ଚାରିପଟେ ଓହଳୁଥିଲା । ସେ ଗାଡ଼ିରେ ବସି ଯାଆନ୍ତି ଏବଂ ତାଙ୍କ ପଛେ ପଛେ ଗାଢ଼ ସବୁଜ ପୋଷାକ ପିନ୍ଧା ଘୋଡ଼ସବାର ଅନୁଚରମାନେ ଖଣ୍ଡା ଓ ଛୋଟ ବନ୍ଧୁକ ଧରି ଚାଲିଥାଆନ୍ତି । ଜମିଦାରୀର ଆଞ୍ଚଳିକ ମ୍ୟାନେଜର ଥିଲେ ରିଚାର୍ଡ଼ ଡି କର୍ସି । ସେ ମଧ୍ୟ ଥିଲେ ନୀଳଚାଷୀ । ସେ ଜିଲ୍ଲାର ଜଣେ ପୁରୁଣା ଅଧିବାସୀ ଥିବାରୁ ସେଠା ଲୋକଙ୍କ ଚାଲିଚଳଣ ବିଷୟ ଭଲ ଭାବରେ ଜାଣିଥିଲେ ।

ଏଇସବୁ ସଙ୍ଗଠନ ଥିଲା ସମ୍ପୂର୍ଣ୍ଣ ନୂତନ । ଫର୍ଲଙ୍ଗ୍, ଡିକର୍ସି ଓ ଅନ୍ୟମାନେ ଅଳ୍ପ କେତେଦିନ ହେବ ନିଯୁକ୍ତି ପାଇଥିଲେ । କଲେକ୍ଟରଙ୍କ ପ୍ରଥମ କାମ ହେଲା ଏକ ଦୀର୍ଘ ବିବରଣୀ ଲେଖିବା— ଭାରତରେ 'ବିବରଣୀ' ବିନା କିଛି କରିହୁଏ ନାହିଁ । ଏଥିରେ ଥିଲା ସେ ଜମିଦାରୀରେ କେତେ ଚାଷଜମି, ସେ ସବୁର ଆୟତନ ଓ ଅବସ୍ଥା ଏବଂ ପ୍ରତ୍ୟେକରୁ ମିଳୁଥିବା ଖଜଣା ଓ ଆଉ ଅନେକ ବିଷୟ । ଯେଉଁ ଗଦା ଗଦା କାଗଜ ମୁଁ ମୋ ଅଫିସ୍‌କୁ ଅଣାଇଲି ସେ ସବୁ ଥିଲା ଖଜଣା ଆଦାୟ ପାଉତି, ଦେଶୀୟ ଅଧସ୍ତନ କର୍ମଚାରୀମାନଙ୍କଠାରୁ ଆସିଥିବା ବିବରଣୀ ଏବଂ ଜମିଦାରୀକୁ କୋର୍ଟ ଅଫ୍ ଓ୍ୟାର୍ଡ଼ସକୁ ଆଣିବା ପାଇଁ ପ୍ରଥମ ପଦକ୍ଷେପସ୍ୱରୂପ ରାଜସ୍ୱ ପରିଷଦ ସହ କମିଶନର ଓ କଲେକ୍ଟରଙ୍କର ଠିକ୍ ସେତିକିବେଳେ ଯେଉଁ ସବୁ ପତ୍ରାଳାପ ହୋଇଥିଲା ସେଗୁଡ଼ାକ । ଏସବୁ ପ୍ରାରମ୍ଭିକ କାର୍ଯ୍ୟ ସରିବା ପରେ ପ୍ରକୃତ ପରିଚାଳନା ଆରମ୍ଭ କରିବା ପାଇଁ ମୋ ବିବରଣୀକୁ ଅପେକ୍ଷା କରାଯାଉଥିଲା । ଏପରି ଏକ ବିବରଣୀ ଲେଖିବା କାମ ଯେକୌଣସି ଲୋକ ପକ୍ଷରେ କଷ୍ଟକର ହୁଅନ୍ତା । ବଙ୍ଗଳା ଭୂରାଜସ୍ୱ ପରିଚାଳନାର ଜଟିଳ ଗଭୀରତାରେ ଅନଭ୍ୟସ୍ତ ଲୋକପାଇଁ ଏହା ବିଶେଷ ରୂପେ କଷ୍ଟ । ଏ ବିଷୟରେ ୩୦ବର୍ଷ ଅଭିଜ୍ଞତା ପରେ ମଧ୍ୟ ଆଜି ମୁଁ କହୁଚି ମୋର ଜାଣିଥିବା ସବୁ କାମ ମଧ୍ୟରେ ଏହା ସବୁଠାରୁ କଷ୍ଟ, ବିଭ୍ରାନ୍ତିକର ଓ ଜଟିଳ । ସୌଭାଗ୍ୟବଶତଃ ଡି କର୍ସିଙ୍କପରି ଜଣେ ସାଧୁ, ପରିଶ୍ରମୀ ଏବଂ

ଅତି ଅଭିଜ୍ଞ ସାହାଯ୍ୟକାରୀ ମୋର ଥିଲେ ଏବଂ ତାଙ୍କ ସାହାଯ୍ୟରେ ମାସେକାଳ ପରିଶ୍ରମ କରି ଜମିଦାରୀର ତତ୍‌କାଳୀନ ଅବସ୍ଥା ବର୍ଣ୍ଣନା କରି ଏବଂ ଏହାର ଭାବୀ ପରିଚାଳନା ସମ୍ପର୍କରେ ପ୍ରସ୍ତାବ ଦେଇ ମୁଁ ବିରାଟ ଆକାରର ଏକ ବିବରଣୀ ତିଆରି କଲି । ମୋର ପ୍ରସ୍ତାବ ସବୁ ଗୃହୀତ ହୋଇଗଲା ଏବଂ ସେ ସବୁ ସାଙ୍ଗେ ସାଙ୍ଗେ କାର୍ଯ୍ୟକାରୀ କରିବା ପାଇଁ ମୋତେ ନିର୍ଦ୍ଦେଶ ମିଳିଗଲା ।

ମୋ ଦାୟିତ୍ୱରେ ଥିବା ଧରମପୁର ଅଂଶଟି ପ୍ରଧାନତଃ କୋଶୀ ନଦୀର ପୂର୍ବ ଦିଗକୁ ଥିଲା ଏବଂ ସେଠାକୁ ମହାରାଜା ଆଦୌ ଯାଇ ନ ଥିଲେ । ନିଜେ ବ୍ରାହ୍ମଣ ହୋଇ ମଧ ସେ ବ୍ରାହ୍ମଣମାନଙ୍କୁ ଗଭୀର ଭାବରେ ବିଶ୍ୱାସ କରୁଥିଲେ । ସେମାନେ ଏକ ସୁଚତୁର ପରମ୍ପରା ସୃଷ୍ଟି କରାଇଥିଲେ ଯେ ଦରଭଙ୍ଗାର ପ୍ରଭୁ ଯେବେ କୋଶୀନଦୀ ପାର ହୁଅନ୍ତି ତେବେ ତାଙ୍କ ଜମିଦାରୀ ହସ୍ତାନ୍ତର ହୋଇଯିବ ଏବଂ ତାଙ୍କ ବଂଶ ଲୋପ ହୋଇଯିବ । ଏହିପରି ଭାବରେ ଜମିଦାରୀର ଏହି ଅଂଶର ପରିଦର୍ଶନରେ ଅସୁବିଧା ସୃଷ୍ଟି କରାଇ ସେମାନେ ଏହି ଅନ୍ଧବିଶ୍ୱାସରୁ ଲାଭ ଉଠାଉଥିଲେ । ଅତି ପ୍ରାଚୀନକାଳରୁ ହିନ୍ଦୁ ଧନୀ ଜମିଦାରମାନଙ୍କର ବ୍ରାହ୍ମଣମାନଙ୍କୁ ନିଷ୍କର ଭୂମିଦାନ କରିବାର ଏକ ପରମ୍ପରା ଥିଲା । ସେଥିରେ ସେମାନେ ନିଜ ଭରଣପୋଷଣ କରି କେତେକ ଦେବମୂର୍ତ୍ତି ପୂଜାର ଖର୍ଚ୍ଚ ବହନ କରୁଥିଲେ । ଜମିଦାରମାନଙ୍କୁ ଶିଖାଇ ଦିଆଯାଇଥିଲା ଯେ ଏହା ଦ୍ୱାରା ସେମାନେ ପରଜନ୍ମପାଇଁ ଫଳ ସଂଚୟ କରିବେ, ଏ ସବୁ ଜମି ନେଇଗଲେ ଭୟଙ୍କର ପାପ ଅର୍ଜିବେ । ଏହିପରି ଏହି ଅଳସୁଆ, ନିଷ୍କର୍ମା ବ୍ରାହ୍ମଣମାନେ ଧରମପୁରର ଗ୍ରାମାଞ୍ଚଳରେ ନିଷ୍କର ବୃତ୍ତି ପାଇଥିଲେ ଏବଂ ଯେଉଁଠି ୧୦ ଏକର ପାଇଥିଲେ ସେଠାରେ ସେମାନଙ୍କ ଜାତିପ୍ରତି ଥିବା ଉଚ୍ଚତମ ଭକ୍ତି ଓ ସମ୍ମାନ ବଳରେ ଚକ୍ରାନ୍ତ କରି ୫୦ ବା ୧୦୦ଏକର ପର୍ଯ୍ୟନ୍ତ ଅଧିକାର କରି ନେଉଥିଲେ । ସୁତରାଂ ଯେଉଁ ବିସ୍ତୃତ ଉର୍ବର କୃଷିଉପଯୋଗୀ ଜମିରୁ ଜମିଦାରଙ୍କୁ ରାଜସ୍ୱ ମିଳୁଥାନ୍ତା ସେସବୁ ଏହି ଉଦ୍ଧତ ଭିକାରିମାନେ ମାଗଣା ଭୋଗ କରୁଥିଲେ । ଏହି ଚକ୍ରାନ୍ତ ମହାରାଜା ଜାଣିପାରୁନଥିଲେ, ଜାଣିପାରିଥିଲେ ମଧ ପ୍ରତିକାର କରିବାକୁ ହୁଏତ ସାହସ କରିପାରି ନ ଥାନ୍ତେ । ପରିଚାଳନାର ସମସ୍ତ ପଦ୍ଧତି ଥିଲା ଦୋଷଯୁକ୍ତ । ଏହି ପଦ୍ଧତି ସେ ସମୟରେ ଓ ପରବର୍ତ୍ତୀ କେତେବର୍ଷ ପର୍ଯ୍ୟନ୍ତ ଅନୁସୃତ ହେଉଥିଲା । ପରେ ଅବଶ୍ୟ ଏହାର ଦୋଷ ଜଣାପଡ଼ିଲା ଏବଂ ସମସ୍ତଙ୍କ ଦ୍ୱାରା ନିନ୍ଦିତ ହେଲା । ୧୮୬୨ରେ ଯେ ଏହାର ସମାଲୋଚନା କରିଥାଆନ୍ତା ତାଙ୍କୁ ଜଣେ କଳ୍ପନାବିଳାସୀ ଓ ପରମ୍ପରାବିରୋଧୀ ବୋଲି ନିନ୍ଦା କରାଯାଇଥାନ୍ତା । ବୋଧହୁଏ ମୋର ପଞ୍ଜାବ ତାଲିମ ଯୋଗୁଁ ଏହି ପଦ୍ଧତିକୁ ଅତି ଭୟାନକ କହି ମୁଁ ପ୍ରତିବାଦର ଯେଉଁ କ୍ଷୀଣ ସ୍ୱର ଉତ୍ତୋଳନ କଲି ତା'କୁ ଦୃଢ଼ ହସ୍ତରେ ଚାପି ଦିଆଗଲା ।

ସେ ପଦ୍ଧତି ଥିଲା ଏହିପରି । ଜମିଦାରୀରେ ଜମି ଚଷୁଥିବା ପ୍ରତ୍ୟେକ ରୟତକୁ ଅବଶ୍ୟ ଖଜଣା ଦେବାକୁ ପଡ଼େ । କିନ୍ତୁ ବହୁ ବ୍ୟୟରେ ନିଯୁକ୍ତ କର୍ମଚାରୀଗୋଷ୍ଠୀ ବିନା ଏତେ ବିପୁଳସଂଖ୍ୟକ ଲୋକଙ୍କଠାରୁ ଖଜଣା ସଂଗ୍ରହ କାର୍ଯ୍ୟ ଅସମ୍ଭବ ଥିବାରୁ ଜମିଦାରୀକୁ ଏକ ଠାରୁ ବାର ପର୍ଯ୍ୟନ୍ତ ଗ୍ରାମକୁ ନେଇ ଗଠିତ କେତୋଟି ଗୋଷ୍ଠୀରେ ଭାଙ୍ଗିଦେବାର ରୀତି ଥିଲା । ପ୍ରତ୍ୟେକ ଗୋଷ୍ଠୀକୁ ଜଣେ ଠିକାଦାର ବା 'ମୁଜିସ୍ତର'କୁ ଦିଆଯାଇଥିଲା । ସେ ବାର୍ଷିକ କିଛି

ନିର୍ଦ୍ଦିଷ୍ଟ ପରିମାଣ ଦେଉଥିଲା ଏବଂ ପରେ ତାହା ଲୋକଙ୍କଠାରୁ ସଂଗ୍ରହ କରି ନେଉଥିଲା । ଚାଷୀଙ୍କଠାରୁ ଖଜଣା ନେଇ ଏବଂ ଅନଧିକୃତ ଜମିକୁ ନୂତନ ଲୋକଙ୍କୁ ପଟା ଦେଇ ଏ ବାବଦ୍ ବହୁତ ଲାଭ କରୁଥିଲେ । ଏହି ପଟା ସବୁ ୩, ୭ ବା ୧୦ ବର୍ଷ ପାଇଁ ଦିଆଯାଉଥିଲା ଏବଂ ସାଧାରଣରେ ନିଲାମ ହୋଇ ସର୍ବୋଚ୍ଚ ଡାକକୁ ଦିଆଯାଉଥିଲା । ଚାଷୀ କେତେ ଖଜଣା ଦେଲେ ତାହା କଳନା କରିବା, ଲେଖି ରଖିବା ଓ ନିର୍ଦ୍ଧାରଣ କରିବା ପାଇଁ କୌଣସି ଚେଷ୍ଟା ହେଉ ନ ଥିଲା ଏବଂ ଯେଉଁଠାରେ ପ୍ରତିଯୋଗିତା ଖୁବ୍ ତୀବ୍ର ସେଠାରେ ଖଜଣା ଏତେ ବଢ଼ିଯାଉଥିଲା ଯେ ତଦ୍ୱାରା ରୟତମାନେ ନିପୀଡ଼ିତ ହେଉଥିଲେ ଏବଂ ଜମିଦାରୀର କ୍ଷତି ଘଟୁଥିଲା । ଏହାର କେବଳ ଗୋଟିଏ ଭଲ ଗୁଣ ଅଛି— ଯଦି ତାହା ଭଲ ବୋଲି କୁହାଯାଏ— ତାହାହେଲା ଏହା ଜମିଦାରୀକୁ ବହୁ ଖର୍ଚ୍ଚ ଓ ଅସୁବିଧାରୁ ରକ୍ଷାକରେ, ଯଦିବା ଏହାଦ୍ୱାରା ଦୁଃସ୍ଥ ରୟତମାନେ ପେଷି ହୋଇଯାଆନ୍ତି— ସେମାନଙ୍କ କଥା ଭାବୁଚି କିଏ ? ବିଚାରାଳୟ ସବୁ ଅଛନ୍ତି; ବେଶି ଖଜଣା ଧାର୍ଯ୍ୟ ହୋଇଯାଇଛି ବୋଲି ଭାବୁଥିବା ଚାଷୀ ସଠିକ ଖଜଣା ନିର୍ଦ୍ଧାରଣ ପାଇଁ ସେହି କୋର୍ଟର ଆଶ୍ରୟ ନେଇପାରେ; କିନ୍ତୁ ଚାଷୀମାନଙ୍କ ଅଜ୍ଞତା ଓ ଦାରିଦ୍ର୍ୟ ଏବଂ ସର୍ବଶକ୍ତିଶାଳୀ ମୁସ୍ତାଜିରମାନଙ୍କର କ୍ରୋଧକୁ ଭୟ (ସୁସଙ୍ଗଠିତ ଓ ଦୁର୍ଦ୍ଧର୍ଷ ମିଥ୍ୟା ସାକ୍ଷଦାତାମାନଙ୍କ କଥା ନ କହିଲେ ଭଲ) ମିଛ ହିସାବ ଏବଂ ସେସବୁ କରାଇବା ପାଇଁ ଲାଞ୍ଚ ଓ ଦୁର୍ନୀତି ଏ ସବୁ ଏକାଠି ହୋଇଯିବା ଫଳରେ ଅଧିକାଂଶ ଚାଷୀ ନ୍ୟାୟ ବିଚାର ପାଇବାରୁ ବଂଚିତ ହେଉଥିଲେ । ନୀରବରେ ସେମାନେ କ୍ଷୁଧା ଓ ରୋଗରେ ମୃତ୍ୟୁବରଣ କରୁଥିଲେ । ଅବଶ୍ୟ ମୁଁ ବର୍ତ୍ତମାନ କହିପାରେ ଯେ ସେ ସମୟରେ ସୁପ୍ରତିଷ୍ଠିତ ୧୮୫୯ର ଖଜଣା ଆଇନ ସମ୍ପର୍କରେ ଖୁବ୍ ଜୋର ଆନ୍ଦୋଳନ ଆରମ୍ଭ ହୋଇଥିଲା । କିନ୍ତୁ ଜିଲ୍ଲାର ଅନ୍ୟାନ୍ୟ ଅଞ୍ଚଳରେ ଏହି ଆନ୍ଦୋଳନର ପ୍ରଭାବ, ଅନୁଭୂତ ହେଉଥିଲେ ମଧ ଧରମପୁର ଜମିଦାରୀରେ ସେତେବେଳେ ତାହା ପ୍ରାୟ ସ୍ପର୍ଶ କରି ନ ଥିଲା ।

ଏହିପରି ଭାବରେ ଧରମପୁରର ପରିଚାଳନା ଗ୍ରହଣ କରି ମଧ ପ୍ରଚଳିତ ପଦ୍ଧତିର ପରିବର୍ତ୍ତନର କୌଣସି ଆଶା ବା ଅଧିକାର ପାଇଲି ନାହିଁ । ମୋର କେବଳ ଏତିକି କର୍ତ୍ତବ୍ୟ ଥିଲା ଯେ ସେ ସମୟର ମୁସ୍ତଜିରମାନଙ୍କଠାରୁ ବାକିଆ ପାଉଣା ସଂଗ୍ରହ କରିବି, ପଟା ଦିଆଯାଇଥିବା ଗ୍ରାମଗୁଡ଼ିକୁ ନିଲାମରେ ଜିତିଥିବା ଲୋକଙ୍କୁ ପଟା ଦେବି, ବିଶୃଙ୍ଖଳିତ ଅବସ୍ଥାରେ ଥିବା ହିସାବପତ୍ର ସଜାଡ଼ିବି, ଜମିଦାରୀ ଉପରେ ହୋଇଥିବା ମକଦ୍ଦମାଗୁଡ଼ିକୁ ଲଢ଼ିବି ଏବଂ ସେ ସମୟର ବିଶୃଙ୍ଖଳା ବଦଳରେ ଏକ ନିୟମିତ ଶୃଙ୍ଖଳିତ ପରିଚାଳନା ପ୍ରତିଷ୍ଠା କରିବି ।

ଶେଷ କାମଟି ପ୍ରଥମେ କରିବାର ଥିଲା । ମୁସ୍ତଜିରମାନେ ଦରଭଙ୍ଗାରେ ଥିବା ମହାରାଜାଙ୍କ ଖଜଣା ନ ଦେଇ ପୂର୍ଣ୍ଣିଆରେ ଥିବା ଜଣେ ଦେଶୀୟ ମ୍ୟାନେଜରକୁ ଦେଉଥିଲେ । ତା'ର ଥିଲେ ଅନେକ ଅମଲା, ଗୋଟାଏ ଖଜଣାଖାନା ଏବଂ ଗୋଟାଏ ପିଅନ (ଜଗୁଆଳି ଓ ଅଫିସ୍‌ର ପତ୍ରବାହକ) ବାହିନୀ । ଏ ଲୋକଟି ଜାତିରେ ବୟସ୍ଥ ଏବଂ ତା ଜାତିର ଅଧିକାଂଶଙ୍କ ପରି ଧୂର୍ତ୍ତ ଓ ଶୋଷଣକାରୀ ଶଠ । ସେ ନିଜେ ଓ ବନ୍ଧୁବାନ୍ଧବ ଓ ଅମଲାମାନଙ୍କ ମିଛ ନାମରେ ଜମିଦାରୀର ସବୁଠାରୁ ଭଲ ଗ୍ରାମଗୁଡ଼ିକ ଅତି କମ୍ ଖଜଣାରେ ପଟା ନେଇଥିଲା । ସେ

ଖଜଣାବି ସେ ଆଦୌ ଦଉ ନ ଥିଲା, ହିସାବ ସବୁ ଏପଟ ସେପଟ କରି ତାହା ଲୁଚାଇବା ପାଇଁ ବଢ଼ି ବା ମରୁଡ଼ିରେ ଫସଲ ନଷ୍ଟ ହୋଇଗଲା ବୋଲି ଏକ କାଳ୍ପନିକ ବିବରଣୀ ଦରଭଙ୍ଗାକୁ ପଠାଇ ଦେଉଥିଲା । ମହାରାଜାଙ୍କ ଦରବାରରେ ମଧ ତା'ର ଅନେକ ଲୋକ ଥିଲେ । ଘୁଷ୍ ଓ ଉପହାରରେ ବଶୀଭୂତ ହୋଇ ସେମାନେ ତାକୁ ଏ ଠକାମିରେ ସାହାଯ୍ୟ କରୁଥିଲେ ଏବଂ ସୁସ୍ଥି, ଆଳସ୍ୟପରାୟଣ ମହାରାଜାଙ୍କ ପାଖରେ କୌଣସି ଅଭିଯୋଗ ପହଞ୍ଚାଇ ଦେଉ ନ ଥିଲେ ।

ଏହିପରି ଭାବରେ ମ୍ୟାନେଜର ଝାବୁଲାଲ ଧନସମ୍ପଦ ଠୁଳକରି ତା' ନିଜ ଗାଁରେ ବିରାଟ ଘର ତିଆରି କରୁଥିବାବେଳେ ଜମିଦାରୀର ରାଜସ୍ୱ ଦୈନିକ କମି କମି ଯାଉଥିଲା ଏବଂ ଆଉ ଦିଆଗଲା ନାହିଁ । ଦରଭଙ୍ଗାର ସରକାରଙ୍କୁ ବାର୍ଷିକ ଦେୟ ୬୦,୦୦୦ ଟଙ୍କା । ଯେତେବେଳେ ମହାରାଜା ମରିଗଲେ ଏବଂ ସରକାର ଜମିଦାରୀର ଦାୟିତ୍ୱ ନେଲେ ଏହି ଅବସ୍ଥା ବହୁ ଜଞ୍ଜାଳ ସୃଷ୍ଟି କଲା ଏବଂ ଆଲୋଞ୍ଜୋ ମନି ମୋତେ ଯେଉଁସବୁ ପ୍ରାଥମିକ ଦାୟିତ୍ୱ ଦେଲେ ସେଥିରୁ ଅନ୍ୟତମ ହେଉଛି ଏହାର ପ୍ରତିକାର ପନ୍ଥା ବାହାର କରିବା । ବଙ୍ଗଳା ସରକାରଙ୍କ କାମ ହେଲା ସେମାନେ ଜଣେ ଅନଭିଜ୍ଞ ଯୁବକକୁ ଗୋଟାଏ କଠିନ କାମରେ ଲଗାଇବେ ଏବଂ ସେହି କର୍ତ୍ତବ୍ୟ ପାଳନରେ ସେ ସମସ୍ତଙ୍କ ସହ ସମାନ ହେବ ବୋଲି ଆଶା କରିବେ । ଏ ହେଉଛି ଗୋଟାଏ ପିଲାକୁ ପହଁରା ଶିଖାଇବା ପାଇଁ ପାଣିମଝିକୁ ଫିଙ୍ଗିଦେବା ପରି । ଯାହା ହେଉ ଆମ ମଧରୁ ଅଧିକାଂଶ ପହଁରିଥିଲୁ ।

ଅନ୍ୟାୟ ଦୂରୀକରଣ ପାଇଁ ମୋର କୌଶଳ ହେଲା— ସିଧାସଳଖ ସବୁଠୁ ବଡ଼ ଶିକାରର ତଣ୍ଟିରୁ ଧରିବା । ଛୋଟକୋଟିଆମାନଙ୍କୁ ଆକ୍ରମଣ କରି ଧ୍ୱଂସ କରିବା ଖାଲି ସମୟ ନଷ୍ଟ । ସେମାନେ ସବୁ ଧ୍ୱଂସ ହୋଇଗଲେ ବଡ଼ଲୋକଜଣକ ସେମାନଙ୍କ ସ୍ଥାନ ପୂରଣ ପାଇଁ ସର୍ବଦା ନୂଆ ଦଳେ ବୋଲକରା ଯୋଗାଡ଼ କରିଦେଇ ପାରିବ । ଉଇହୁଙ୍କାକୁ ଖୋଳି ନଷ୍ଟ କରିବାକୁ ହେଲେ କର୍ମୀ ଉଇଙ୍କୁ ମାରିବା ପଣ୍ଡଶ୍ରମ ମାତ୍ର, କାରଣ ରାଣୀ ଉଇ ଅତିଶୀଘ୍ର ନୂଆ ମଦାଏ ସୃଷ୍ଟି କରିଦେଇପାରିବ; କିନ୍ତୁ ରାଣୀକୁ ଧରି ମାରିଦେଲେ ସମ୍ପୂର୍ଣ୍ଣ ହୁଙ୍କାଟି ଭାଙ୍ଗିପଡ଼େ । ତେଣୁ ଡି.କର୍ସିଙ୍କ ଭୟ ସତ୍ତ୍ୱେ ମୁଁ ଝାବୁଲାଲକୁ ସାଧ କରିବାକୁ ସ୍ଥିରକଲି । ସେ ଜମିଦାରୀର ସବୁଠାରୁ ବଡ଼ କେତେକ ଚାଷଜମି ରଖିଥିଲେ ମଧ କେତେବର୍ଷ ଧରି ଖଜଣା ଦେଇ ନ ଥିଲା । ଡି.କର୍ସି ଏବଂ ତାଙ୍କ ଅମଲାମାନେ ହିସାବପତ୍ର ଠିକ୍ କରିଦେବାମାତ୍ରେ ଏହା ପରିଷାର ଜଣାପଡ଼ିଗଲା । ଏପରି ଅବସ୍ଥାରେ ପଡ଼ିବାରୁ ଝାବୁଲାଲ ବହୁପରିମାଣ ଟଙ୍କାର ଏକ ଲମ୍ବା ଫର୍ଦ୍ଦର ବିଲ୍ ଆଣି ଦାଖଲ କଲା ଏବଂ ଜମିଦାରୀଠାରୁ ତାହା ତା'ର ପ୍ରାପ୍ୟ ବୋଲି କହିଲା । ପୂର୍ବ ବାକିଆ ଖଜଣା ଦେବାକୁ କୁହାଯିବାରୁ ସେ ଡି.କର୍ସିଙ୍କ ଆଖି ଆଗରେ ସେଇ ବିଲ୍‌ଟିକୁ ହଲାଇଲା । ଶେଷରେ ମୁଁ ଖଜଣା ଦେଇନଥିବା ସବୁଲୋକଙ୍କର ଏକ ତାଲିକା କରି ସେ ସମସ୍ତଙ୍କୁ ଏକ ନିର୍ଦ୍ଦିଷ୍ଟ ଦିନରେ ଡି.କର୍ସିଙ୍କ ଅଫିସ୍‌ରେ ହାଜର ହେବାକୁ ଡକାଇଲି । ନିର୍ଦ୍ଦିଷ୍ଟ ଦିନରେ ସେଠାରେ ପହଞ୍ଚିବାରୁ ଜଣାଗଲା ଯେ ଝାବୁଲାଲ ପରି ଖଜଣା ଦେଇନଥିବା ଲୋକଙ୍କ ମଧରୁ ଅଧିକାଂଶ ତା'ର ବନ୍ଧୁ ବା ଅନୁଚର । କୌତୂହଳୀ ହୋଇ ମଧ ଅନେକ ସେଠାକୁ ଆସିଥିଲେ । ଅନଭିଜ୍ଞ ବାଳକପ୍ରତିମ କଲେକ୍ଟରକୁ ଚତୁର ଝାବୁଲାଲ କିପରି କୌଶଳରେ କାବୁ କରିବ

ତାହା ଦେଖିବାକୁ ସେମାନେ ଆସିଥିଲେ । ପ୍ରଥମେ ଝାବୁଲାଲର ନାମ ଡକାଗଲା । ତୀକ୍ଷ୍ଣ, ବୁଦ୍ଧିଦୀପ୍ତ ମୁଖବିଶିଷ୍ଟ, ଶୁଭ୍ରଧବଳ ବସ୍ତ୍ର ପରିହିତ ସେହି ଦୀର୍ଘକାୟ ସୌମ୍ୟ ବ୍ୟକ୍ତି ହସ ହସ ମୁହଁରେ ନଇଁ ନଇଁ ଆସିଲା । ମୁଁ ବୁଝାଇ ଦେଲି ଯେ, ପୂର୍ବର ସବୁ ବାକିଆ ପରିମାଣର ବ୍ୟବସ୍ଥା କରିଦେବା ପାଇଁ ମୁଁ ଆଦେଶ ପାଇଛି ଏବଂ ଏତେ ହଜାର ଟଙ୍କା ତାଙ୍କ ଉପରେ ବାକି ଥିବାର ଦେଖୁଚି । ସାଙ୍ଗେ ସାଙ୍ଗେ ସେ ଟଙ୍କା ଦେଇ ଦେବା ପାଇଁ ତାକୁ ଅନୁରୋଧ କଲି । ଆଖି ଅଧା ମୁଦି ସେ ମଧୁର ହସ ହସିଲା ଏବଂ ମୋ ଆଦେଶ ମାନିବାକୁ ସେ ପ୍ରସ୍ତୁତ ବୋଲି କହିଲା; ତା' ସଙ୍ଗେ ସଙ୍ଗେ ସେ ଅନେକ କିଛି ଲେଖାଥିବା ଗୋଛାଏ କାଗଜ ଦାଖଲ କଲା. ଏବଂ ସଂଭ୍ରମରେ ଜଣାଇଲା ଯେ ସେ ପରିମାଣ ତାକୁ ଦେଇଦେବା ପାଇଁ ମୁଁ ଯେପରି ଡି.କର୍ସିଙ୍କୁ ଆଦେଶ ଦିଏଁ । ମହାରାଜାଙ୍କ ପାଇଁ ସେ ଅର୍ଥ ସେ ନିଜ ପକେଟରୁ ଦେଇଚି । ମୁଁ ମୋଟ ପରିମାଣ ଆଡ଼େ ଚାହିଁଲି । ତାହା ଉପରେ ଥିବା ବାକି ପରିମାଣର ତାହା ଦୁଇଗୁଣ । ମୁହୂର୍ତ୍ତେକାଳ ମୁଁ ହତ୍‌ବତ୍‌ହୋଇ ଗଲି କିନ୍ତୁ ବିଷୟଗୁଡ଼ିକ ଉପରେ ଆଖି ପକେଇବାରୁ ମୋ ମନରେ ଏକ ଭାବନା ଖେଳିଗଲା । ମୁଁ କହିଲି, ''ମୁଁ ସରକାରୀ ଚାକିରିଆ ହୋଇଥିବାରୁ କୌଣସି ବେନିୟମ ମଞ୍ଜୁରି ଦେଇପାରିବି ନାହିଁ । ବର୍ତ୍ତମାନ ଏହି ହିସାବଟିର ପ୍ରତ୍ୟେକଟି ବିଷୟ ପଢ଼ାହେବ । ପ୍ରତ୍ୟେକଟିର ପରିମାଣ ତୁମେ ବିଚାରାଳୟରେ ନାଲିସ୍ କରି ଆମଠାରୁ ନେବାର ସୁଯୋଗ ଦେବି; କିନ୍ତୁ ଅଧିକ କିଛି ନୁହେଁ ।'' ସତେ କି ବଜ୍ର ପଡ଼ିଗଲା ! ଦର୍ଶକ ଗହଳି ମଧରେ ସହାନୁଭୂତିର ଏକ କମ୍ପନ ଖେଳିଗଲା । ଝାବୁଲାଲ କିଛିକ୍ଷଣ ଗୋଟାସୁଦ୍ଧା ଥରିଗଲା, କିନ୍ତୁ ପୁଣି ସାହସ ସଞ୍ଚୟ କରି କହିଲା ଯେ, ମ୍ୟାନେଜର ଭାବରେ ତାକୁ କେତେ ବାବଦରେ ଖର୍ଚ୍ଚ କରିବାକୁ ହୋଇଛି ଯାହାକୁ ଆଇନ ସ୍ୱୀକାର କରିବ ନାହିଁ ଏବଂ ମୁଁ ସେ ପନ୍ଥା ଗ୍ରହଣ କଲେ ସେ ତଳିତଳାନ୍ତ ହୋଇଯିବ । ଆଉ ଅଧିକ ଅଗ୍ରସର ନ ହେବା ପାଇଁ ଡି. କର୍ସି ମୋ କାନରେ ଫୁସ୍‌ଫୁସ୍ କରି କହିଲେ; କିନ୍ତୁ ମୁଁ ଦୃଢ଼ ରହିଲି । ବିଷୟ ସବୁ ବଡ଼ ପାଟିରେ ପଢ଼ାଗଲା । ମୁଁ ଯାହା ଆଗରୁ ଦେଖିଥିଲି ସେଗୁଡ଼ିକ ଥିଲା ସେହିପରି— ଅଧିକାଂଶତଃ ବିଚାରାଳୟର କର୍ମଚାରୀଙ୍କୁ ଲାଞ୍ଚ ଦେବା ବିଷୟ । ଗୋଟିଏ ମକଦ୍ଦମାରେ 'ସୁବିଧା' କରିଦେବାପାଇଁ ବିଚାରପତିଙ୍କ ସିରସ୍ତାଦାରକୁ ୫୦୦ ଟଙ୍କା, ଶୀଘ୍ର ଡାକରା ପଡ଼ିବା ପାଇଁ ନାଜିରକୁ ୨୦୦ଟଙ୍କା, 'ଆମ ସପକ୍ଷରେ' ସାକ୍ଷ୍ୟ ଦେବାପାଇଁ ୪ ଜଣ ସାକ୍ଷୀଙ୍କୁ ୮୦୦ ଟଙ୍କା ଇତ୍ୟାଦି । ମୁଁ ପଚାରିଲି, ''ଏ ପରିମାଣ ଫେରାଇଦେବା ପାଇଁ ତୁମେ ଜମିଦାରୀ ଉପରେ ନାଲିସ କଲେ ବିଚାରାଳୟ ତୁମ ସପକ୍ଷରେ ରାୟ ଦେବ କି ?'' ସେ ସ୍ୱୀକାର କରିବାକୁ ବାଧ ହେଲା ଯେ, ଏପରି ଏକ କାର୍ଯ୍ୟରେ ସେ ନାଲିସ କରିବାକୁ ସାହସ କରିବ ନାହିଁ । ଘଣ୍ଟାକର ପରିଶ୍ରମ ପରେ ଆମେ ସେ ବିଲ୍‌ଟିକୁ ଶେଷ କଲୁ ଏବଂ ତା'ପରେ ଜାଣିଲୁ ଯେ ଆଇନତଃ ସେ ଯେତିକି ଦାବି କରିପାରିବ ତାହା ସମଗ୍ର ବିଲ୍‌ର ଏକଦଶମାଂଶ । ଆମ ପ୍ରାପ୍ୟ ଦାବିରୁ ତାହାର ଏହି ପରିମାଣ ବାଦ୍ ଦିଆଯିବା ପରେ ବହୁପରିମାଣର ବାକିଦେୟ ରହିଗଲା । ଆକାଶରୁ ପଡ଼ିବାପରି ହୋଇ ସେ ଅତି ନମ୍ରଭାବରେ ଏହି ପରିମାଣ ଦେବାପାଇଁ ୧୫ଦିନ ସମୟ ପ୍ରାର୍ଥନା କଲା । ଏହି ସମୟ ମୁଁ ଦେଲି । ତା'ପରେ ତାଲିକାର ପରବର୍ତ୍ତୀ ଲୋକପାଖକୁ ମୁଁ ଯିବାକୁ ବସିଚି ସମଗ୍ର ଜନତା ଗୋଟିଏ ସ୍ୱରରେ କହିଉଠିଲେ ଯେ, ସେମାନଙ୍କୁ ଯାହା କିଛି ଦେୟ ଦିଆଯିବାକୁ କୁହାଯିବ

ବିନା ପ୍ରତିବାଦରେ ସେମାନେ ଦେବେ । ସେମାନେ ସେହିପରି କଲେ ଏବଂ ମାସେ ମଧ୍ୟରେ ପ୍ରାୟ ୫୦ହଜାର ଟଙ୍କା ମିଳିଗଲା । ତା'ପରେ ମୁଁ ସେ ଦଲଟାଯାକଙ୍କୁ ସେମାନଙ୍କ ଜମିରୁ ଉଚ୍ଛେଦ କରି ପ୍ରକୃତରେ ଉପଯୁକ୍ତ ଲୋକଙ୍କୁ ପଟାଦେଲି । ଏହିପରି ସେ ଗୋଷ୍ଠୀଟି ଭାଙ୍ଗି ଧ୍ୱଂସ ହୋଇଗଲା । ଆଉ କେତେକ ଛୋଟ ଛୋଟ ବିଷୟର ମୀମାଂସା ରହିଗଲେ ମଧ ପରବର୍ତ୍ତୀ କାର୍ଯ୍ୟାନୁଷ୍ଠାନ ସହଜ ହୋଇଗଲା । ଅବଶ୍ୟ ବିଷୟଟିକୁ ଜାଣିଥିବା ଲୋକେ ଭଲଭାବରେ ବୁଝିଥିଲେ ଯେ, ଝାବୁଲାଲର କୋର୍ଟକର୍ମଚାରୀଙ୍କୁ ଘୁସ୍ ଦେଇଥିବା ହିସାବ ଅତ୍ୟନ୍ତ ଅତିରଞ୍ଜିତ । ପଚାଶ ଦେଇଥିବା ସ୍ଥଳେ ସେ ୫୦୦ ଲେଖିଥିଲା । ସେଇ ପଚାଶ ଦେବାର ମଧ କୌଣସି ଆବଶ୍ୟକତା ନ ଥିଲା ଏବଂ ସମଗ୍ର ହିସାବଟା ଜାଲିଆତିର ଏକ ନିର୍ଲଜ୍ଜ ଧୃଷ୍ଟତା । ୬ଧେ ଓ ତା' ଗୋଷ୍ଠୀ ତଡ଼ାଖାଇଯିବା ପରେ ଦରଭଙ୍ଗା ଆଉ କିଛି ଅସୁବିଧା କଲା ନାହିଁ । ମୁଁ ପୂର୍ଣ୍ଣିଆ ଛାଡ଼ିବା ପୂର୍ବରୁ ସେଠାରୁ ମହାରାଜାଙ୍କୁ ଭଲ ଲାଭ ମିଳୁଥିଲା । କହିବା ବାହୁଲ୍ୟ ଯେ ଏଥିପାଇଁ ମୋ ଅପେକ୍ଷା ଡି.କର୍ସିଙ୍କ ଅବଦାନ ଅଧିକ । ମୋର ଏକମାତ୍ର ଅବଦାନ ତାକୁ ଯଦି ଅବଦାନ ବୋଲି କୁହାଯାଏ, ହେଉଛି ମୁଁ ତାଙ୍କର ସମସ୍ତ କାର୍ଯ୍ୟକୁ ଦୃଢ଼ ଓ ବିଶ୍ୱସ୍ତ ଭାବରେ ସମର୍ଥନ କରିଥିଲି ଏବଂ ସେ, ତାଙ୍କ ଉପରେ ଥିବା ମୋ ଆସ୍ଥାର ଉଦାର ପ୍ରତିଫଳନ କରିଥିଲେ ।

ମୋର ସମସ୍ତ ସମୟ କିନ୍ତୁ ଦରଭଙ୍ଗା ମାମଲାରେ ଯାଉନଥିଲା । ସେଇ ସମୟ ମଧ୍ୟରେ ଜିଲ୍ଲାର ଅନ୍ୟ ସବୁ କାମ ଦେଖିବାକୁ ହେଉଥିଲା । ଗୋଟିଏ ଗୁରୁତ୍ୱପୂର୍ଣ୍ଣ କାମ ହେଲା ନୂଆ ପୋଲିସ୍ ସଂସ୍ଥା । ଏହାର ପ୍ରଚଳନ ଓ ସଙ୍ଗଠନ ମୋତେ ବହୁ ଅସୁବିଧାରେ ପକେଇଥିଲା । ଜିଲ୍ଲାଟିକୁ ତେରଟି ମଣ୍ଡଳ ବା ଥାନାରେ ବିଭକ୍ତ କରାଯାଇଥିଲା । କେନ୍ଦ୍ରୀୟ ଅଞ୍ଚଳରେ ଅବସ୍ଥିତ ପ୍ରତ୍ୟେକ ସହର ବା ଗାଁରେ ଥିବା ପୋଲିସ୍ ଷ୍ଟେସନକୁ ଥାନା କୁହାଯାଉଥିଲା । ହିନ୍ଦୁସ୍ଥାନୀ ଶବ୍ଦ 'ଥାନା'ର ଅର୍ଥ ସ୍ଥାନ (ଷ୍ଟେସନ) କିନ୍ତୁ ଏହି ଶବ୍ଦର ଅର୍ଥ ପରିବ୍ୟାପ୍ତ ହୋଇ ସେଇ ଥାନା ଅଧୀନସ୍ଥ ସମଗ୍ର ଅଞ୍ଚଳକୁ ବୁଝାଇଲା । ପ୍ରତ୍ୟେକ ଥାନାରେ ଥିଲେ ଗୋଟିଏ ଛୋଟ ପୋଲିସ୍ ବାହିନୀ । ସେଠାରେ ଥିଲେ ଜଣେ ପ୍ରଧାନ କର୍ମଚାରୀ ଯାହାଙ୍କୁ କୁହାଯାଏ ଦାରୋଗା (କିମ୍ବା ସମୟେ ସମୟେ ଥାନାଦାର) । ଜଣେ ମୋହରିର ବା କିରାଣି, ଜଣେ ଜମାଦାର ବା ସର୍ଜେଣ୍ଟ ଏବଂ ପ୍ରାୟ ୧୨ରୁ ୧୫ କନେଷ୍ଟବଲ୍ ବା ବରକନ୍ଦାଜ୍ । ଏମାନଙ୍କ ନିଯୁକ୍ତି, ପଦୋନ୍ନତି, ଦଣ୍ଡ ଓ ପଦଚ୍ୟୁତି କ୍ଷମତା ଜିଲ୍ଲା ମାଜିଷ୍ଟ୍ରେଟଙ୍କ ଉପରେ ନ୍ୟସ୍ତ ।

ସେ କାଳରେ ଦାରୋଗାମାନେ ଥିଲେ ଏକ ଉଲ୍ଲେଖଯୋଗ୍ୟ ଶ୍ରେଣୀର ଲୋକ ଯେଉଁମାନେ ବର୍ତ୍ତମାନ ସମ୍ପୂର୍ଣ୍ଣ ବିଲୁପ୍ତ । ସେମାନେ ନିଜ ଅଞ୍ଚଳରେ ଛୋଟକାଟର ରାଜାଭଳି ଶାସନ କରୁଥିଲେ ଏବଂ ସବୁ ଶ୍ରେଣୀୟ ଲୋକଙ୍କଠାରୁ ଲାଞ୍ଚ ଆକାରରେ ବହୁ ଅର୍ଥ ସଂଗ୍ରହ କରୁଥିଲେ । ପୂର୍ଣ୍ଣିଆ ଥାନାର ଦାରୋଗା ଏହି ଶ୍ରେଣୀର ଏକ ସୁନ୍ଦର ନମୁନା । ସେ ଥିଲା ଜଣେ ମୋଟା, ଡେଙ୍ଗା ମୁସଲମାନ, ଦାଢ଼ି ଧଳା, ଚାହାଣି ମଧୁର ଚିକ୍‌କଣ, କୋକିଶିଆଳୀ ପରି ଧୂର୍ତ୍ତ, ବ୍ୟବହାରରେ ଖୁବ୍ ଭଦ୍ର, ଉଚ୍ଚ ଅଫିସରମାନଙ୍କ ପ୍ରତି ସମ୍ପୂର୍ଣ୍ଣ ଅଲଗା ବ୍ୟବହାର; କିନ୍ତୁ ଅଧସ୍ତନମାନଙ୍କ ପ୍ରତି କ୍ରୋଧୀ ଓ ଅତ୍ୟାଚାରୀ । ତା'ର ବିରାଟ ଲାଲ ପଗଡ଼ିରେ ସୁନା ଜରିର ଧଡ଼ି । ସୁନା କାମକରା କମରପଟିରୁ ତା'ର ଖଣ୍ଡା ଝୁଲୁଥିଲା ଏବଂ ଉଜ୍ଜ୍ୱଳ ଧବଳ ପୋଷାକ ଓ

ଲମ୍ବା ଘୋଡ଼ାଚଢ଼ା ଜୋତା ସେ ପିନ୍ଧୁଥିଲା । ସେ ଚଢୁଥିବା ମିଶ୍ରିତ ବର୍ଣ୍ଣର ଦୁର୍ବଳିଆ ଘୋଡ଼ାଟିର ଧୂସର ଚକ୍ଷୁ, ଲାଲ ନାକ ଓ ଲମ୍ବା ଚିକ୍‌କଣ ପୁଚ୍ଛ ଥିଲା । ସେହି ପଶୁଟିର ଗୋଡ଼ଗୁଡ଼ିକ ଆଣ୍ଠୁ ପର୍ଯ୍ୟନ୍ତ ଏବଂ ପୁଚ୍ଛର ନିମ୍ନାର୍ଦ୍ଧ ହେନା ରଙ୍ଗରେ ଲାଲ କରାହୋଇଥିଲା ଯାହା ସୂଚେଇ ଦିଏ ଯେ ଘୋଡ଼ାର ମାଲିକ ତା' ଶତ୍ରୁମାନଙ୍କ ରକ୍ତରେ ପଶିକରି ଆସିଚି ! ଏହିପରି ସେ ନିଜ ଅଞ୍ଚଳରେ ଘୋଡ଼ାରେ ଚଢ଼ି ରାଜକୀୟ ଭ୍ରମଣ କରେ, ପଛେ ପଛେ ଯାଉଥାନ୍ତି ବରକନ୍ଦାଜ ଦଳ ଏବଂ ଜିନିଷପତ୍ର ମୁଣ୍ଡାଇ ଗାଁ ଚଉକିଆମାନେ । ତା' ଆଗରେ ସମସ୍ତେ ଥରନ୍ତି, କାରଣ ତାକୁ ବିରକ୍ତ କଲେ ସେ ମାଜିଷ୍ଟ୍ରେଟଙ୍କୁ ଲେଖିଦେବ ଯେ ତୁମେ ଅପରାଧ କରିଛ ଯଥା କୌଣସି ଖରାପ ଚରିତ୍ର ଲୋକକୁ ଆଶ୍ରୟ ଦେଇଛ କିମ୍ବା ଅପରାଧୀମାନଙ୍କୁ ସେ ଧରିପାରିବାରେ ତୁମେ ସାହାଯ୍ୟ କରୁ ନାହଁ ବୋଲି ସେ ସନ୍ଦେହ କରେ । ଏହା ଫଳରେ ତୁମ ଉପରକୁ ଦୁଃଖ ମାଡ଼ିଆସିବ ! ଦାରୋଗା ସାହେବ ଯେତେ ଇଚ୍ଛା ସେତେ ସାକ୍ଷୀ ଯୋଗାଡ଼ କରିପାରିବେ ଏବଂ ସେମାନେ ସମସ୍ତେ ତାଙ୍କ କହିବାନୁଯାୟୀ ଶପଥ କରି ସାକ୍ଷ ଦେବେ । ମାଜିଷ୍ଟ୍ରେଟ ମିଥ୍ୟାସାକ୍ଷ ବାରିପାରିବାରେ ଅସାଧାରଣ ବିଚକ୍ଷଣ ନ ଥିଲେ ତୁମ ଭାଗ୍ୟରେ ଚାପା ପଡ଼ିଯିବ । ମୋହରିର ଓ ଜମାଦାରମାନେ ଆଉ କିଛି କମ୍ ଭାବରେ ସେମାନଙ୍କ ମୁଖ୍ୟଙ୍କୁ ଅନୁକରଣ କରନ୍ତି । ବରକନ୍ଦାଜମାନେ ତା' ପଛକୁ ଲାଗିଯାଆନ୍ତି । ଶେଷୋକ୍ତ ଜୀର୍ଣ୍ଣଶୀର୍ଣ୍ଣ ଗୋଷ୍ଠୀଟି ମାସକୁ ପାଞ୍ଚଟଙ୍କା ଦରମା ପାଆନ୍ତି ଏବଂ ଲାଞ୍ଚଦ୍ୱାରା ତାହା ବର୍ଦ୍ଧିତ କରନ୍ତି । ସେମାନଙ୍କ ଅଧୀନରେ ପୁଣି ଥିଲେ ଚୌକିଦାର ବା ଗ୍ରାମଜଗୁଆଳ, ପ୍ରତ୍ୟେକ ଗ୍ରାମରୁ ଜଣେ ବା ଦୁଇଜଣ କରି । ସେମାନେ ନାମକୁ ମାତ୍ର ମାସକୁ ତିନିଟଙ୍କା କରି ପାଆନ୍ତି ଯାହାକି ଘରପିଛା କେତେ ଅଣାକରି ଆଦାୟ ହୁଏ; କିନ୍ତୁ ସେମାନେ ମାସ ମାସ ଏପରିକି ବର୍ଷ ବର୍ଷ ଧରି ଦରମା ନ ପାଇଲେ ମଧ ଗ୍ରାମବାସୀଙ୍କ ବିରାଗଭାଜନ ହେବା ଭୟରେ ମ୍ୟାଜିଷ୍ଟ୍ରେଟଙ୍କ ପାଖକୁ ଲେଖିବାର ସାହସ କରନ୍ତି ନାହିଁ । କେତେକ ସ୍ଥଳରେ ଟଙ୍କା ଜାଗାରେ ଖଣ୍ଡେ ଛୋଟ ଜମି ଦିଆଯାଇଥାଏ ଯାହାକୁ ଚଷି ସେମାନେ ପ୍ରତିପୋଷିତ ହୁଅନ୍ତି । ନାଲି ମୋଟା କନାର ପଟି ଉପରେ ଛୋଟ ପିତଳ ଫଳକଟିଏ ସେମାନେ ଲଗାଇଥାଆନ୍ତି ଏବଂ ଅସ୍ତ୍ରସ୍ୱରୂପ ପୁରୁଣାକାଳିଆ ବର୍ଚ୍ଛା କିମ୍ବା କଳଙ୍କି ଲଗା ଖଣ୍ଡା ବା ଲୁହା ଗୋବଦିଆ ବାଉଁଶ ଠେଙ୍ଗାଟିଏ ଧରିଥାଆନ୍ତି । ସେମାନଙ୍କ କାମ ହେଉଛି ରାତିରେ ତାଙ୍କ ଗ୍ରାମ ବୁଲି ପହରା ଦେବା ଏବଂ କୌଣସି ଅପରାଧ ଘଟିଲେ ସାଙ୍ଗେ ସାଙ୍ଗେ ଥାନାକୁ ଯାଇ ଖବର ଦେବା । ଯେତେ ଦରିଦ୍ର ଓ ଘୃଣିତ ହେଲେ ମଧ ଏହିପରି ଭାବରେ ସେମାନେ ମଧ ଯଥେଷ୍ଟ ପ୍ରଭାବ ପକାଉଥିଲେ । ପ୍ରଭାବଶାଳୀ ଜମିଦାର କିମ୍ବା ଗ୍ରାମର ମୁଖିଆ ଯଦି କୌଣସି ଅପରାଧକୁ ଘୋଡ଼ାଇ ଦେବାକୁ ଚାହେଁ ତ ଚଉକିଦାରକୁ ଘୁଷ୍ ଦେଉଥିଲା କିମ୍ବା ତା' ମୁହଁ ବନ୍ଦ କରିଦେବାକୁ ବଳ ପ୍ରୟୋଗ କରୁଥିଲା । ସମସ୍ତେ ଘଟଣାକୁ ଚପାଇଦେବାକୁ ଚାହୁଁଥିଲେ କାରଣ ଗ୍ରାମକୁ ଦାରୋଗା ଆସିବା ଥିଲା ଏକ ଭୟଙ୍କର ଜିନିଷ । ମାମଲାଟାକୁ ଉଡ଼ାଇ ଦେବାପାଇଁ ଦାରୋଗାକୁ ଖୁସି କରାଇବାରେ ଖର୍ଚ୍ଚ ଖୁବ୍ ବେଶି । ତା'ଉପରେ ପୁଣି ସେହି ମହାନ୍ ବ୍ୟକ୍ତି ଓ ତା' ଅନୁଚରମାନଙ୍କୁ ଖୁଆଇବା ଖର୍ଚ୍ଚ ଏବଂ ତା'ର ଓ ତା' ଜୀର୍ଣ୍ଣଶୀର୍ଣ୍ଣ ବାହିନୀର ମାଲପତ୍ର ବୋହିବାରେ ଗ୍ରାମବାସୀଙ୍କର ଯେଉଁ ସମୟ ନଷ୍ଟ ହେବ ସେସବୁ କଥା ନ କହିଲେ ଚଳେ । ଆହୁରି ମଧ ପୋଲିସ୍ କୌଣସି ସ୍ଥାନକୁ ଗଲେ ପଇସା କାଢ଼ିବାପାଇଁ ସନ୍ଦେହର

ଛଳନା କରି ଲୋକଙ୍କ ଉପରେ ପ୍ରାୟ ଅତ୍ୟାଚାର କରେ । ବହୁ ଅପରାଧ ନିଶ୍ଚିତ ଭାବରେ ଘୋଡ଼େଇ ଦିଆଯାଏ । ପୋଲିସ୍ ଦ୍ୱାରା କୌଶଳକ୍ରମେ ଯୋଗାଯାଇଥିବା ମିଛ ସାକ୍ଷୀଦ୍ୱାରା ଅନେକ ନିରୀହ ଲୋକ ମାମଲାରେ ପଡ଼ି ଦଣ୍ଡିତ ହେଉଥିବାବେଳେ ଅପରାଧୀମାନେ ସେଇ ଶକ୍ତିଶାଳୀ ବ୍ୟକ୍ତିମାନଙ୍କୁ ଅର୍ଥ ଦେଇ ଖସିଯାଆନ୍ତି । ଅନ୍ୟ ପକ୍ଷରେ ଦାରୋଗାମାନେ ଅନେକ ସମୟରେ ଅପରାଧୀକୁ ଜାଣିବାରେ ଅତି ବିଚକ୍ଷଣ । ସେମାନେ ସବୁ ଅପରାଧୀ ଓ ସନ୍ଦେହଜନକ ବ୍ୟକ୍ତିଙ୍କୁ ଠିକ୍ ଚିହ୍ନିଥାନ୍ତି ଏବଂ ତାଙ୍କର ଆବଶ୍ୟକ ପଡ଼ିବା ମାତ୍ରେ ସେମାନଙ୍କ ଉପରେ ଚଢ଼ାଉ କରିଥାଆନ୍ତି । ଦୃଢ଼ମନା ଓ କର୍ମକ୍ଷମ ମାଜିଷ୍ଟ୍ରେଟଙ୍କୁ ସେମାନେ ଭୟ କରନ୍ତି ଏବଂ ତାଙ୍କ ଅଧୀନରେ ଚମତ୍କାର କାମ କରନ୍ତି । ଯଦି ସେମାନଙ୍କର ସାଧୁତା ବା ଚଳନୀୟ ସାଧୁତା ଥାଏ (ଏଠି ସେଠି କେତେଜଣ ସେପରି ଥିଲେ) ସେମାନେ ଥାନାକୁ ଅତ୍ୟନ୍ତ ଶୃଙ୍ଖଳିତ ରଖିପାରନ୍ତି ।

ଯାହାହେଉ ପୁରୁଣା ପଦ୍ଧତି ଆଦୌ ସନ୍ତୋଷଜନକ ନ ଥିଲା ଏବଂ ଏକ ଆଇନ ବଳରେ ଏହାର ଲୋପ ହୋଇ ନୂଆ ପଦ୍ଧତି ପ୍ରଚଳିତ ହେଲା । କଲିକତାରେ ଥିବା ପୋଲିସ୍ ଇନ୍‌ସପେକ୍ଟର ଜେନେରାଲ ସମଗ୍ର ବଙ୍ଗଳାର ପୋଲିସ୍ ଉପରେ ଶାସନ କରୁଥିଲେ । ପ୍ରତ୍ୟେକ ଡିଭିଜନରେ ଜଣେ ଡେପୁଟି ଇନସ୍‌ପେକ୍ଟର ଜେନେରାଲ ଏବଂ ପ୍ରତ୍ୟେକ ଜିଲ୍ଲାରେ ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଏବଂ ତାଙ୍କ ତଳେ ଥିଲେ ସହକାରୀମାନେ । ସୁପରିଣ୍ଟେଣ୍ଡେଣ୍ଟ ଜିଲ୍ଲାର ପୋଲିସଙ୍କ ତତ୍ତ୍ୱାବଧାନ କରନ୍ତି । ସେ ଅପରାଧ ନିୟନ୍ତ୍ରଣ ଓ ଦମନ ବିଷୟକ ସମସ୍ତ କାର୍ଯ୍ୟରେ ମାଜିଷ୍ଟ୍ରେଟଙ୍କ ଅଧସ୍ତନ କିନ୍ତୁ ପୋଲିସ୍ ବାହିନୀର ତାଲିମ, ଶୃଙ୍ଖଳା ଓ ଆଭ୍ୟନ୍ତରୀଣ ଶୃଙ୍ଖଳା ରକ୍ଷା ବିଷୟରେ ସ୍ୱାଧୀନ ଥିଲେ । ବାସ୍ତବରେ ନିୟମିତ ସୁସଙ୍ଗଠିତ ଏକ ପୋଲିସ୍ ବିଭାଗର ଆବଶ୍ୟକତା ଥିଲା । ସହକାରୀ ସୁପରିଣ୍ଟେଣ୍ଡେଣ୍ଟଙ୍କଠାରୁ ଉଚ୍ଚତର ସମସ୍ତ ଅଫିସର ଥିଲେ ଇଂରେଜ ଏବଂ ଅଧିକାଂଶତଃ ଭଦ୍ରଲୋକ । ନିଜ କର୍ତ୍ତବ୍ୟ ସମ୍ପର୍କରେ ନିମ୍ନତମ ଓ ଅତି ମୌଳିକ ଧାରଣା ମଧ ସେମାନଙ୍କର ନ ଥିଲା; କିନ୍ତୁ ସେମାନେ ଖୁବ୍ ପାଟିତୁଣ୍ଡ କରି ଦାବି କରୁଥିଲେ ଯେ ମାଜିଷ୍ଟ୍ରେଟଙ୍କ କ୍ଷମତା ସରିଗଲା ଏବଂ ସେମାନେ ତାଙ୍କ ସ୍ଥାନରେ ଶାସନ କରିବେ । ସେମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ପଞ୍ଜାବର 'କଚେରି କଲନେଲ୍'ଙ୍କ ପରି ପୂର୍ବତନ ସାମରିକ ଲୋକ, କାରଣ ସେ ସମୟରେ ଭାରତ ସରକାର ଏଇ ଧାରଣା ରଖି କାମ କରୁଥିଲେ ଯେ ସାମରିକ ଲୋକେ ଯେ କୌଣସି କାମ ପାଇଁ ଉପଯୁକ୍ତ; ଏବଂ ସୈନ୍ୟବାହିନୀରେ ସେମାନଙ୍କର ଆଉ ଆବଶ୍ୟକତା ନାହିଁ ।

ପୂର୍ଣ୍ଣିଆରେ ମୁଁ ଯୋଗଦେବାର ଅଳ୍ପଦିନ ପୂର୍ବରୁ ୧୮୬୨ ଜୁନ୍‌ରେ ସେଠାରେ ନୂତନ ପୋଲିସ୍ ସଂସ୍କାରର ପ୍ରବର୍ତ୍ତନ ହୋଇଥିଲା ଏବଂ ତାହା ସଙ୍ଗଠନ କରିବାର ସମସ୍ତ କାମ ମୋ ଉପରେ ପଡ଼ିଲା । ଜିଲ୍ଲା ସୁପରିଣ୍ଟେଣ୍ଡେଣ୍ଟ୍ ମେଜର ଫ୍ରାନସିସ୍ କ୍ରଶମାନ୍ ଏଥିରେ ମୋତେ ସାହାଯ୍ୟ କରିଥିଲେ (ବସ୍ତୁତଃ ବାଧା ସୃଷ୍ଟି କରିଥିଲେ) । ସେ ଏହି କାମକୁ ସମ୍ପୂର୍ଣ୍ଣ ଅନୁପଯୁକ୍ତ ବୋଲି ବେଶ୍ ଅନୁମାନ କରାଯାଇପାରେ । ସେ ଥିଲେ ଦୀର୍ଘକାୟ, ସୁନ୍ଦର, ସୈନ୍ୟସୁଲଭ ଆକୃତି — ଠିକ୍ ଜଣେ ଦୁଃସାହସୀ ଅଶ୍ୱାରୋହୀ ସୈନ୍ୟପରି, ବଦଖର୍ଚ୍ଚୀ, ଚତୁର ଓ ଦୁର୍ଦ୍ଧର୍ଷ ।

ଅଶ୍ୱାରୋହୀ ବାହିନୀରେ ତାଙ୍କର କାର୍ଯ୍ୟକାଳ ଆରମ୍ଭରୁ ସେ ବହୁ ସଙ୍କଟରେ ପଡ଼ି ପ୍ରଭାବଶାଳୀ ବନ୍ଧୁମାନଙ୍କ ସାହାଯ୍ୟରେ ସେଥିରୁ ରକ୍ଷା ପାଉଥିଲେ । ଯଦିଓ ସେ ବହୁଦିନୁ ମଲେଣି ତଥାପି ତାଙ୍କ ପୁଅଝିଅମାନେ ବର୍ତ୍ତମାନ ମଧ ଅଛନ୍ତି । ସେଇମାନଙ୍କ ପାଇଁ ମୁଁ ନୀରବ ରହୁଚି ଏବଂ ତାଙ୍କର ଦୁର୍ବର୍ଷ, ଆମୋଦଦାୟକ, ଉଚ୍ଛୃଙ୍ଖଳ କାଣ୍ଡଗୁଡ଼ିକର ବର୍ଣ୍ଣନାରୁ ବିରତ ରହୁଚି । ତାଙ୍କର ଆତ୍ମା ଶାନ୍ତି ପାଉ ! ତାଙ୍କପାଇଁ ମୋର ବହୁ ଜଞ୍ଜାଳମୟ ସମୟ ନଷ୍ଟ ହେଉଥିଲା । ମୁଁ ଯେତେବେଳେ ବହୁ କଷ୍ଟ ସ୍ୱୀକାର କରି ନୂଆ ପୋଲିସ୍‌ବାହିନୀ ପାଇଁ ଲୋକ ସଂଗ୍ରହ କରୁଥିବି ଏବଂ ସେଥିରୁ ସେ ବାଛିବେ ବୋଲି ଦଳେ ଆଣି ରୁଣ୍ଡ କରୁଥିବି ସେତେବେଳେ ଦେଖିବି ଯେ ସେ ସାଙ୍ଗମାନଙ୍କ ସହ ତା'ସ ଖେଳୁଚନ୍ତି ବା ବ୍ରାଣ୍ଡି ଓ ସୋଡ଼ା ପିଉଚନ୍ତି ବା ତାଙ୍କ ଗୀଟାର ଧରି ଫରାସୀ Grivois ଗୀତ ଗାଉଚନ୍ତି । ଯଦି ମୋ ଚେଷ୍ଟାବଳରେ ସେ ଘୋଡ଼ାରେ ପ୍ୟାରେଡ୍ ପଡ଼ିଆକୁ ଆସିପାରିଲେ ତେବେ ମୋ ଦ୍ୱାରା ସଂଗୃହୀତ ଲୋକମାନଙ୍କ ଆଡ଼କୁ ଅବଜ୍ଞା ଦୃଷ୍ଟିରେ ଥରେ ଆଖି ବୁଲାଇଦେବେ, ଚମତ୍କାର ହିନ୍ଦୁସ୍ଥାନୀରେ ଗୋଟାଏ ଦୁଇଟା ଚାତୁର୍ଯ୍ୟପୂର୍ଣ୍ଣ ଏବଂ ଅତି ଅଶ୍ଳୀଳ ଥଟ୍ଟାକରି ସେମାନଙ୍କୁ ହସାଇଦେବେ ଏବଂ କାହାକୁ ପସନ୍ଦ ବା ଅପସନ୍ଦ ନ କରି ଘୋଡ଼ାରେ ଚଢ଼ି ଚାଲିଯିବେ । ଶେଷରେ ନିରାଶ ହୋଇ ମୁଁ ନିଜେ ଆବଶ୍ୟକସଂଖ୍ୟକ ଲୋକଙ୍କର ତାଲିକା କରି ସେଇ କାଗଜ ତାଙ୍କ ପାଖକୁ ପଠାଇବି । ସେ ଥରେ ନ ଚାହିଁ ମଧ ସେଗୁଡ଼ାକରେ ଦସ୍ତଖତ କରିଦେବେ । ଏହିପରି ପ୍ରାୟ ୮୦୦ ଜଣ ଲୋକ ସଂଗ୍ରହ କରି ମୁଁ ସେମାନଙ୍କୁ ବିଭିନ୍ନ ସ୍ଥାନକୁ ପଠାଇଦେଲି । ତା'ପର କାମ ହେଲା ପୁରୁଣା ଦାରୋଗାମାନଙ୍କୁ ଅଣାଇ ସେମାନଙ୍କୁ ରଖି ସେମାନଙ୍କୁ କର୍ତ୍ତବ୍ୟ ଶିକ୍ଷାଦେବା । ଏହିସବୁ ପୁରୁଣା ଭଦ୍ରବ୍ୟକ୍ତିଗଣ ବାହ୍ୟ ଚେହେରାରେ ସମ୍ପୂର୍ଣ୍ଣ ପରିବର୍ତ୍ତିତ ହୋଇଗଲେ, କିନ୍ତୁ ଖାଲି ନାମାବଳି ପକେଇ ଦେଲେ କେହି ସନ୍ନ୍ୟାସୀ ହୁଅନ୍ତି ନାହିଁ । ଗାଢ଼ ନୀଳବର୍ଣ୍ଣର ସୈନିକ କୋଟ୍ ସହ, କମରପଟି ଓ କାର୍ତ୍ତୁଜ ବାକସ ସେମାନଙ୍କୁ ସୈନ୍ୟ କରିପାରିଲା ନାହିଁ; କିନ୍ତୁ ଏସବୁ ପିନ୍ଧି ସେମାନଙ୍କୁ କଷ୍ଟେମଷ୍ଟେ ଡ୍ରିଲ୍ ଅଭ୍ୟାସ କରିବାକୁ ପଡ଼ିଲା । ଏମାନଙ୍କୁ ଶିକ୍ଷାଦେବାପାଇଁ ସୈନ୍ୟବାହିନୀର ପୂର୍ବତନ ଡ୍ରିଲ୍ ସର୍ଜେଣ୍ଟମାନଙ୍କୁ ଅଣାଗଲା ଏବଂ ସେମାନେ ବହୁକାଳ ଖୁବ୍ ପରିଶ୍ରମ କଲେ । ନୂଆ ପୋଲିସ୍‌ଙ୍କ ଚେହେରା ସୈନ୍ୟସୁଲଭ ହେବାପାଇଁ ବର୍ଷ ବର୍ଷ ଲାଗିଗଲା । ସବୁଠାରୁ ବଡ଼ କଥା ବର୍ତ୍ତମାନ ଦେଖାଗଲା ଯେ, ଏହି ନୂଆ ବାହିନୀଟି ହେଲା ବହୁପ୍ରକାର ଲୋକଙ୍କ ମିଶ୍ରଣ । ଏମାନଙ୍କ ଅଫିସରମାନେ ମଧ ହେଲେ ସାମରିକ ଲୋକ, କିରାଣି, ବଡ଼ବଡ଼ିଆଙ୍କ ପାଖଲୋକ, ଭାଙ୍ଗି ଯାଇଥିବା କୃଷି ଉଦ୍ୟାନର ଚାଷୀ ପ୍ରଭୃତିଙ୍କର ମିଶ୍ରଣ, ଯେଉଁମାନେ ଅପରାଧ ଧରିବାରେ ଟିକିଏ ବି ଅଭ୍ୟସ୍ତ ନୁହନ୍ତି । ସେମାନଙ୍କଠାରୁ ଯେଉଁ ଅଦ୍ଭୁତ ଧରଣର ସଂସ୍କାର ଆଶା କରାଯାଉଥିଲା, ତାହା ସେମାନେ କିପରି କରିବେ ? ପ୍ରଥମରୁ ମୋତେ ଜଣାଇ ଦିଆଗଲା ଯେ, 'ଡକାୟତି' ପାଇଁ ପୂର୍ଣ୍ଣିଆର ବହୁଦିନୁ ବଦ୍‌ନାମୀ ଅଛି । ବର୍ତ୍ତମାନ ମୋ ସହ କାମ କରିବା ପାଇଁ ନୂଆ ପୋଲିସ୍ ପରି ଯେଉଁ ଚମତ୍କାର ଯନ୍ତ୍ରଟାଏ ଦିଆଗଲା, ତା' ସାହାଯ୍ୟରେ ମୁଁ ଯଦି ସମସ୍ତ ଅପରାଧ ଓ ବିଶୃଙ୍ଖଳାକୁ ସାଙ୍ଗେ ସାଙ୍ଗେ ଦମନ କରି ନ ପାରେ ତେବେ ତା'ର କୈଫିୟତ ଥାଇ ନ ପାରେ । ଏହା ୧୮୬୨ର କଥା । ମୁଁ ଯେତେବେଳେ ୨୫ ବର୍ଷରୁ ଊର୍ଦ୍ଧ୍ୱକାଳ ପରେ ୧୮୮୯ରେ ଶେଷଥର ପାଇଁ ପୂର୍ଣ୍ଣିଆ ଯାଇଥିଲି, ଡକାୟତି ସେହିପରି ପୂରାଦମ୍‌ରେ ଥିଲା । ଜଣେ ଅଞ୍ଚ

ଚାଷୀକୁ ନୀଳକୋଟ୍ ଓ ନାଲି ପଗଡ଼ି ପିନ୍ଧାଇ ଓ ପ୍ରାଥମିକ ସାମରିକ ଡ୍ରିଲ୍ ଶିଖାଇ ଚତୁର ଅପରାଧ ତତ୍ତ୍ୱବିଦ୍‌ରେ ପରିଣତ କରାଯାଇ ନ ପାରେ ।

ଡକାୟତି (ଶୁଦ୍ଧ ଶବ୍ଦ 'ଡାକାତି') ହେଉଛି ବିଶେଷ ଭାବରେ ସଂଗଠିତ ଏକ ଦଳର ଲୁଣ୍ଠନ କାର୍ଯ୍ୟ । ବଙ୍ଗଳାର ପ୍ରତ୍ୟେକ ଜିଲ୍ଲାରେ ଆପାତତଃ ଚାଷୀଭଳି ଚଳୁଥିବା ସାଧାରଣତଃ ନିମ୍ନଜାତୀୟ ଅନେକ ଲୋକ ଅପରାଧ ଦ୍ୱାରା ଜୀବିକାର୍ଜନ କରୁଥିଲେ । ସେମାନେ ସମସ୍ତେ ଜଣେ ବା ଦୁଇଜଣ ପୁରୁଣା ଅଭିଜ୍ଞ ଲୋକଙ୍କ ଜଣାଶୁଣା ଯେଉଁମାନେ କି ସଂଗଠକ ବା ସର୍ଦ୍ଦାରର କାମ କରନ୍ତି । ଏହି ନେତାମାନେ ସର୍ବଦା ସତର୍କ ରହି ଲୁଣ୍ଠନ ପାଇଁ କେଉଁ ଘରେ ସମ୍ପତ୍ତି ଅଛି ତାର ସନ୍ଧାନ ନେଉଥାନ୍ତି । ତାହା ନିର୍ଦ୍ଦିଷ୍ଟ ହୋଇଗଲା ପରେ ସେମାନଙ୍କ ମଧ୍ୟରୁ ଦୁଇ ତିନିଜଣ ଏକତ୍ର ହୋଇ ଯୋଜନା କରନ୍ତି; ତା'ପରେ ସେମାନେ ଅଲଗା ଅଲଗା ବିଭିନ୍ନ ଜାଗାକୁ ଯାଇ ବ୍ୟକ୍ତିଗତ ଭାବରେ ବଦ୍‌ମାସମାନଙ୍କ ସହ ସାକ୍ଷାତ୍ କରି ଏହି କାମପାଇଁ ସେମାନଙ୍କୁ ବାଛନ୍ତି । ଏଥିପାଇଁ ଦୂର ଦୂର ଜାଗାରେ ରହୁଥିବା ଏବଂ ପରସ୍ପରକୁ ଚିହ୍ନି ନ ଥିବା ଲୋକଙ୍କୁ ବିଶେଷରୂପେ ବଛାଯାଏ । ଗୋଟିଏ ସ୍ଥାନରେ ଓ ଗୋଟିଏ ସମୟରେ ଏକାଠି ହେବାପାଇଁ ନିର୍ଦ୍ଦେଶ ଦିଆଯାଏ । ନିର୍ଦ୍ଦିଷ୍ଟ ସମୟରେ ସାଧାରଣତଃ ଅନ୍ଧାର ଓ ବର୍ଷାରାତିରେ, ମଧ୍ୟ ରାତ୍ରିର କିଛି ପୂର୍ବରୁ ପନ୍ଦରରୁ କୋଡ଼ିଏ ଲୋକ ଗୋଟିଏ ନିଛାଟିଆ ଜାଗାରେ ଏକାଠି ହୁଅନ୍ତି । ସମସ୍ତଙ୍କ ହାତରେ ଥାଏ ଠେଙ୍ଗା, ସମ୍ଭବତଃ ଖଣ୍ଡାଟିଏ ଏବଂ ଗୋଟାଏ ଦୁଇଟା ବନ୍ଧୁକ । ସେମାନଙ୍କ ହାତରେ ମଶାଲ ଥାଏ ଏବଂ ମୁହଁରେ କଳାଜନା ଗୁଡ଼ା ହୋଇଥାଏ । ସମସ୍ତେ ଏକାଠି ହୋଇଯିବାପରେ ଜାଗା ଉପରକୁ ଚାଲନ୍ତି ଏବଂ ଆକ୍ରମିତ ହେବାକୁ ଥିବା ଘରଟିକୁ ଘେରାଉ କରିଦିଅନ୍ତି, ମଶାଲ ଜଳାଇ ଦିଅନ୍ତି ଏବଂ ଘର ଭିତରକୁ ଧସେଇ ପଶିଲାବେଳେ ଜୋରରେ ଚିତ୍କାର କରନ୍ତି । ଏଇଥିରୁ ଏ ଅପରାଧର ନାମକରଣ ହୋଇଛି ('ଡାକ' ଅର୍ଥ ଚିତ୍କାର ଏକ ଡକାଏତ— ଚିତ୍କାରକାରୀ) । ସମସ୍ତ ଗ୍ରାମବାସୀ ଏବଂ ଅଧିକାଂଶ ସମୟରେ ଗାଁ ଚଉକିଆ (ଯାହାର ଗାଁକୁ ଜଗିବା କଥା କିନ୍ତୁ ଯେ ବରାବର ପ୍ରାୟ ଏଥିରେ ସହଯୋଗୀ ଥାଏ) ନିଜ ନିଜ ଘର ଭିତରେ ଭୟରେ ଲୁଚିରହନ୍ତି ଏବଂ ଡକାଏତମାନେ ଘର ଭାଙ୍ଗି ପଶି, ଘର ଲୋକଙ୍କୁ ବାନ୍ଧି, ପ୍ରତିରୋଧ କରିବା ଲୋକଙ୍କୁ ଆହତ କରି ଯାହା ପାଇଲେ ତାହା ଲୁଣ୍ଠନ କରନ୍ତି । ତା'ପରେ ସେମାନେ ଲୁଣ୍ଠିତ ଦ୍ରବ୍ୟସବୁ ନେଇ ପଳାନ୍ତି ଏବଂ ସେମାନଙ୍କର ଚାଲିଯିବାର ଶୁଣିପାରି ଗ୍ରାମବାସୀମାନେ ସେମାନଙ୍କ ମଧ୍ୟରୁ ଜଣେ ଦୁଇଜଣ କାହାକୁ ଚିହ୍ନିପାରିବା ଆଶାରେ ସମ୍ମାନଜନକ ଦୂରତ୍ୱ ରକ୍ଷାକରି ସେମାନଙ୍କର ଅନୁଧାବନ କରନ୍ତି । କିନ୍ତୁ ଗୋଟାଏ ଦୁଇଟା ଗୁଳି ଏପରିକି କିଛି ଧମକସୂଚକ ଚିତ୍କାର ଏମାନଙ୍କୁ ଦୂରେଇ ରଖିବାପାଇଁ ଯଥେଷ୍ଟ । ଡାକୁ ଦଳ କୌଣସି ନିର୍ଜ୍ଜନ ସ୍ଥାନକୁ ଯାଇ ସେଠାରେ ଭାଗ କରନ୍ତି । ପ୍ରତ୍ୟେକେ ନିଜ ଅଂଶ ନେଇ ବିଭିନ୍ନ ଜାଗାକୁ ପଳାନ୍ତି । ପରେ ଆଣିବାପାଇଁ ସାଧାରଣତଃ ସେମାନେ ଲୁଣ୍ଠିତ ଦ୍ରବ୍ୟକୁ ପୋତି ଦିଅନ୍ତି । କେତେକ ଅତି ବେହୁସିଆର ଲୋକ ନିଜ ନିଜ ଅଂଶକୁ ଘରକୁ ବୋହି ନିଅନ୍ତି ।

ଏପରି ଏକ ଅପରାଧ ଧରିବା ଖୁବ୍ କଷ୍ଟସାଧ୍ୟ ବୋଧହୁଏ । ପୁରୁଣାକାଳିଆ ଦାରୋଗାମାନେ ନିଜେ ଅସାଧୁ ପ୍ରକୃତିର ହୋଇଥିବାରୁ ସେ ଲୋକମାନଙ୍କୁ ଭଲଭାବରେ ଚିହ୍ନନ୍ତି

ଏବଂ ଅନେକ ସମୟରେ ଏହି ଅପରାଧ ଧରିବାରେ ଖୁବ୍ ସଫଳ ହୁଅନ୍ତି । ସେମାନଙ୍କ ମଧ୍ୟରୁ ଅନେକ ଡକାଏତ୍ ଦଳର ସର୍ଦ୍ଦାରଙ୍କୁ ଜାଣିଥାଆନ୍ତି ଏବଂ ଚୁକ୍ତି ଅନୁଯାୟୀ ଡକାୟତିରେ ଅଣାଯାଇଥିବା ପଦାର୍ଥରୁ ଅଂଶ ପାଇ ଆଖି ବୁଜିଦିଅନ୍ତି । କିନ୍ତୁ ଘଟଣାକ୍ରମେ ଏପରି ବେଳେ ବେଳେ ହୁଏ ଯେ ମାଜିଷ୍ଟ୍ରେଟ କୌଣସି ଏକ ନିର୍ଦ୍ଦିଷ୍ଟ ଡକାୟତି ଧରାଯିବା ପାଇଁ ଜୋର ଦିଅନ୍ତି । ସେ କ୍ଷେତ୍ରରେ ଦାରୋଗା ସର୍ଦ୍ଦାରଙ୍କୁ ଡକାଇ କହେ ଯେ ସେ ଏଥରକ କାହାକୁ ହେଲେ ନିଶ୍ଚୟ ଧରିବ । ତା'ପରେ ସର୍ଦ୍ଦାରମାନେ ମିଶି ଦଳର ତିନିଚାରିଜଣ ଅପେକ୍ଷାକୃତ ତରୁଣଙ୍କୁ ବାଛନ୍ତି ଏବଂ ସେମାନଙ୍କୁ କହିଦିଅନ୍ତି ଯେ ଅନ୍ୟମାନଙ୍କ ପାଇଁ କଷ୍ଟ ସହିବା ସେମାନଙ୍କର କର୍ତ୍ତବ୍ୟ । ଲୁଣ୍ଠିତ ଦ୍ରବ୍ୟ ମଧ୍ୟରୁ କମ୍ ମୂଲ୍ୟର କିଛି ଦ୍ରବ୍ୟ ଯଥା ପିତଳ ଲୋଟା, ଥାଳି ଏବଂ ଗୋଟାଏ ଦୁଇଟା ଚୁଡ଼ି, ଅବଶ୍ୟ ରୁପାର, ବଛାଯାଇଥିବା ଶିକାରଙ୍କ ଘରେ ଥୋଇଦିଆଯାଏ । ଏହି ବ୍ୟବସ୍ଥା ଜାଣିଥିବା ଦାରୋଗା ଯଥାରୀତି ସେସବୁ ପଦାର୍ଥ ପାଆନ୍ତି । ତା'ପରେ ଦୋଷୀମାନଙ୍କୁ ଧରି ବିଚାର କରାଯାଏ ଏବଂ ଭିନ୍ନ ଭିନ୍ନ ସମୟପାଇଁ ଜେଲ ହୁଏ । ଖଲାସ ହେବା ପରେ ସେମାନଙ୍କୁ ସସମ୍ମାନେ ଦଳଭୁକ୍ତ କରାଯାଏ କାରଣ ସେମାନେ ଏ ବ୍ୟବସାୟର ତାଲିମରେ ସଫଳତାର ସହ ଉତ୍ତୀର୍ଣ୍ଣ ହୋଇଥିବାର ପ୍ରମାଣ ଦେଇଛନ୍ତି । ଏହିପରି ଭାବରେ ଦଳଟି ନିର୍ଦ୍ୱନ୍ଦ୍ୱରେ ବିକାଶଲାଭ କରେ, ଦକ୍ଷତା ଲାଗି ଦାରୋଗାର ସମ୍ମାନ ବଢ଼େ, ମାଜିଷ୍ଟ୍ରେଟ ଓ ବିଚାରପତି ସନ୍ତୁଷ୍ଟ ହୁଅନ୍ତି ଓ ପ୍ରତ୍ୟେକେ ଖୁସି ହୁଅନ୍ତି ।

ଆଇନଦ୍ୱାରା ଅପରାଧ ଧରାଯାଇପାରେ ବୋଲି ସମ୍ଭାବନା କରିବା ହିଁ ନୂଆ ପୋଲିସ୍ ପଦ୍ଧତିର ଭ୍ରାନ୍ତି । ନୂଆ ପୋଲିସ୍ ଇନ୍‌ସପେକ୍ଟରଙ୍କ ହାତଗୋଡ଼ ଗୁଡ଼ାଏ ରୀତିନୀତିର ବନ୍ଧା ଥିଲା । ପ୍ରତିଦିନ ସେମାନେ କି କି ପଦକ୍ଷେପ ଗ୍ରହଣ କଲେ ତାହାର ଦୈନିକ ବିବରଣୀ ଦେବାକୁ ପଡୁଥିଲା । ଆଇନରେ ଉଲ୍ଲେଖ ନ ଥିବା କାମ କରିଦେଲେ ସେମାନେ କଠିନ ଦଣ୍ଡ ପାଉଥିଲେ । ଏ ସବୁ କାମରେ ସେମାନେ ଏତେ ନୂଆ ଥିବାବେଳେ ଏ ବ୍ୟବସ୍ଥା କେଡ଼େ ଅବାସ୍ତବ ! ଫଳତଃ ସେମାନେ ନୈରାଶ୍ୟଜନକ ଭାବରେ ଅସଫଳ ହେଲେ । ପୁରୁଣା ଦାରୋଗାମାନେ ସେମାନଙ୍କ ଅଭିଜ୍ଞ କାନ୍ଧକୁ ଝାଡ଼ିଦେଇ କହିଦେଲେ ଯେ, ଏ ଅବସ୍ଥାରେ କାମ କରି ଆମେ କେବେ ସଫଳ ହେବୁ ନାହିଁ । ଯଥାର୍ଥତଃ ସେମାନେ ମତ ଦେଲେ ଯେ ଅପରାଧୀମାନଙ୍କୁ, ବିଶେଷଭାବରେ ସେଇମାନଙ୍କ ଅସ୍ତ୍ର— ଜାଲ୍, ଲାଞ୍ଚ, ଗୁପ୍ତଚର ଓ ଅତ୍ୟାଚାର ବଳରେ ମୁକାବିଲା କରାଯିବା କଥା— ବାସ୍ତବରେ 'ଜଣେ ଚୋରକୁ ଧରିବା ପାଇଁ ଜଣେ ଚୋରକୁ ଲଗାଅ' । ଦେଶୀୟମାନେ ଅଧା ବୁଝୁ ନ ଥିବା ବିଦେଶୀଙ୍କ ଉଦ୍ଭାବିତ ଆଇନରେ ବାନ୍ଧି ହୋଇଗଲେ ତୁମେ ସଫଳ ହୋଇପାରିବ ନାହିଁ । ନୂଆ ପୋଲିସ୍‌ମାନେ ପୁରୁଣା ପୋଲିସଙ୍କର 'ଅଣଆଇନ ପନ୍ଥା'ରୁ କିଛି ଆବିଷ୍କାର ନ କରିବା ଯାଏ କେତେବର୍ଷ ପର୍ଯ୍ୟନ୍ତ ଆମେ ଚରମ ଅସଫଳତା ଭୋଗିଲୁ । ନୂଆ ପୋଲିସ୍ ପ୍ରଥାର ପ୍ରଚଳନ ବିଷୟରେ ଯେତେ ଡିଣ୍ଡିମ ପିଟାହେଲେ ମଧ୍ୟ ଏବଂ ସେମାନେ କାମର ଯେତେ ବାଗ ପାଇଲେ ମଧ୍ୟ ପୁରୁଣା ପୋଲିସ୍‌ଙ୍କଠାରୁ ବିଶେଷ କିଛି ଭଲ ହୋଇପାରିଲେ ନାହିଁ ।



# ଏକାଦଶ ପରିଚ୍ଛେଦ

## ପୂର୍ଣ୍ଣିଆ : ୧୮୬୨-୬୩

ବଡ଼ି ସକାଳୁ ସମ୍ପୂର୍ଣ୍ଣ ସନ୍ଧ୍ୟା ହେବା ପର୍ଯ୍ୟନ୍ତ ରାଜସ୍ୱ, ପୋଲିସ୍, ବିଚାରବିଭାଗୀୟ, ରାସ୍ତା, ଜେଲ୍, ଶିକ୍ଷା, ଫସଲ ଓ ଲୋକମାନଙ୍କ ଅବସ୍ଥା ପ୍ରଭୃତି ବାରରକମ୍ କାମ ଗୋଟାକ ପରେ ଗୋଟାଏ ଅନବରତ ପଡ଼ୁଥାଏ ଏବଂ ତାହାରି ଭିତରେ ମୋର ଦିନସବୁ ଶୀଘ୍ର ଗଡ଼ିଯାଉଥାଏ । ସେପ୍‌ଟେମ୍ବର ମଧ୍ୟଭାଗକୁ ଆସିଲା ବିରାଟ ବଢ଼ି । ପୂର୍ଣ୍ଣିଆର ନୀଚା ସନ୍ତସନ୍ତିଆ ବାଲିଆ ଭୂମି ଉପରେ ହିମାଳୟରୁ ଗଙ୍ଗାକୁ ଅନେକ ନଦୀ ବହିଆସିଛନ୍ତି । ଏମାନେ ସର୍ବଦା ନିଜର ଗତିପଥ ପରିବର୍ତ୍ତନ କରୁଚନ୍ତି ଏବଂ ସବୁଠୁ ବେଶି କରୁଚି ବିରାଟ ଗଙ୍ଗାନଦୀ ନିଜେ । ଏହି ସମତଳ ଅଞ୍ଚଳରେ ନଦୀମାନେ ସେମାନଙ୍କ ପାଣିଦ୍ୱାରା ପର୍ବତରୁ ବୋହିଆଣୁଥିବା କାଦୁଅର ଶଯ୍ୟା ଉପରେ ପ୍ରବାହିତ ହୁଅନ୍ତି । ଏହିପରି ସେମାନେ ପାଖାପାଖି ଥିବା ସମତଳ ଭୂମିଠାରୁ ଉଚ୍ଚରେ ଥାଆନ୍ତି ଏବଂ ଅଗଷ୍ଟ ମାସର ବର୍ଷାରେ ବଢ଼ିଗଲେ, ଅନେକ ସମୟରେ ହାଲୁକା ବାଲିଆ ବନ୍ଧକୁ ଭାଙ୍ଗିଦିଅନ୍ତି, ଭୟଙ୍କର ବଢ଼ିପାଣି କ୍ଷେତମାନଙ୍କରେ ଭର୍ତ୍ତିକରି ଦିଅନ୍ତି, ନୂଆ ନୂଆ ଧାରସବୁ ଖୋଲିଦିଅନ୍ତି; ପୁରୁଣା ଶଯ୍ୟାସବୁ ଅଳ୍ପ ପାଣି ଥାଇ ସନ୍ତସନ୍ତିଆ ପାଟରୂପେ ପଡ଼ିରହେ ।

ସଉରା ନାମକ ଏହିପରି ଏକ ନଦୀର ପରିତ୍ୟକ୍ତ ଶଯ୍ୟା ପୂର୍ଣ୍ଣିଆ ସହର ମଧ୍ୟଦେଇ ପଡ଼ିଛି । ଅନେକ ସ୍ଥଳରେ ତା' ମଧ୍ୟ ଦେଇ ଯା'ଆସ ହେଉଥିଲେ ମଧ୍ୟ ତାହା ପୂରା ଶୁଖିଲା ନଥିଲା । ସ୍ଥାନେ ସ୍ଥାନେ, ବିଶେଷତଃ ସହରର ଠିକ୍ ତଳେ କିଛିବାଟ ପର୍ଯ୍ୟନ୍ତ ଖୁବ୍ ଗଭୀର ଥିଲା ଏବଂ ତା' ଉପର ଦେଇ ଗୋଟିଏ ବଡ଼ ଜୀର୍ଣ୍ଣ ପୋଲ ଥିଲା । ସଉରା ହେଉଛି ଛୋଟ କୋଶୀର ଉପନଦୀ, ଛୋଟ କୋଶୀ ପୁଣି ବଡ଼ କୋଶୀରେ ଉପନଦୀ । ଛୋଟ କୋଶୀ ସହରର ଦକ୍ଷିଣ-ପଶ୍ଚିମ ପଟେ ପ୍ରାୟ ଦୁଇମାଇଲ ଦୂରରେ ପ୍ରବାହିତ । ସଉରା ଓ ଏହା ମଧ୍ୟରେ ଅଛି ଏକ ବିରାଟ ସନ୍ତସନ୍ତିଆ ପାଟ । ତା'ରି ମଧ୍ୟରେ ଗୁଡ଼ିଏ ଅଧାପୋତା ପ୍ରଣାଳୀ ପାଖାପାଖି ହୋଇ ଉଭୟ ନଦୀକୁ ସ୍ପର୍ଶ କରିଛି । କେତେ ଦିନ ଓ କେତେ ରାତି ଧରି ନିରବଚ୍ଛିନ୍ନ ବର୍ଷା ହେବା ଫଳରେ ସେପ୍‌ଟେମ୍ବର ୧୯ ତାରିଖ ଦିନ ନଦୀର ପାଣି ଏହି ପାଟ ଉପରକୁ ଉଚ୍ଛୁଳି ଆସିଲା ଓ ସମଗ୍ର ଗ୍ରାମାଞ୍ଚଳକୁ ବ୍ୟାପିଗଲା, ଅନେକ ଦେଶୀ କୁଡ଼ିଆଘର ବୁଡ଼ାଇଦେଲା, ମଣିଷ ଓ ଗୋରୁଗାଈ ଅନେକ ଭସାଇ ନେଲା, ପୋଲ ଓ ବନ୍ଧସବୁ ଭାଙ୍ଗିଦେଲା, ବଡ଼ ବଡ଼ ଗଛସବୁ ଓପାଡ଼ି ପକାଇଲା ଏବଂ ସହର ଓ ୟୁରୋପୀୟ ବସତି ମଧ୍ୟରେ ଯୋଗାଯୋଗ ସମ୍ପୂର୍ଣ୍ଣ ଛିନ୍ନ କରିଦେଲା ।

ମୁଁ ସକାଳୁ ଉଠିଲାବେଳକୁ ପୋଲିସ୍ ଇନ୍‌ସପେକ୍ଟର ନିର୍ଦ୍ଦେଶ ନେବାପାଇଁ ମୋ ଦୁଆରେ ଅପେକ୍ଷାକରି ରହିଥିଲେ । ଦେଶୀୟ କର୍ମଚାରୀମାନେ କିଛି ଅସୁବିଧାରେ ପଡ଼ିଲେ କେବଳ ଗୋଟିଏ କଥା ଜାଣୁଥିଲେ— ଉଚ୍ଚ ଅଫିସରଙ୍କଠାରୁ ନିର୍ଦ୍ଦେଶ ଲାଭ କରିବା । ଜଙ୍ଗଲ ନିକଟରେ ଥିବା ଗୋଟିଏ ଛୋଟ ରେଲଷ୍ଟେସନର ବଙ୍ଗାଳୀ ଷ୍ଟେସନମାଷ୍ଟରଙ୍କ ବିଷୟରେ ଯେଉଁ କୌତୁକାବହ କଥାଟି ଅଛି ତାହା ଅତିରଞ୍ଜିତ ନୁହେଁ । କଲିକତାକୁ ମ୍ୟାନେଜରଙ୍କୁ ସେ ତାର କଲେ— ''ପ୍ଲାଟଫର୍ମରେ ଭୟଙ୍କର ବାଘ । ଦୟାକରି ତାର ଯୋଗେ ନିର୍ଦ୍ଦେଶ ଦିଅନ୍ତୁ ।''

ଉଠିପଡ଼ି ଦେଖିଲି ଯେ ଚାରିଆଡ଼ ପାଣି ଘେରେଇ ମୋ ଘର ଗୋଟିଏ ଦ୍ୱୀପ ହୋଇଯାଇଚି । ପୋଷାକ ପିନ୍ଧି ଘୋଡ଼ାଉପରକୁ ଯିବା ଡେରି ଲାଗିଲା ନାହିଁ । ବର୍ଷା ମଧ୍ୟରେ ପାଣି ମାଡ଼ିଥିବା ଅଞ୍ଚଳ ଭିତର ଦେଇ ବନ୍ଧଯାଏ ଯିବାକୁ କିଛି ଅସୁବିଧା ହେଲା । ସେଠାରେ ଆମେ ନିର୍ବାହୀଯନ୍ତ୍ରୀ ବାର୍ନଫାଦର ଓ ତାଙ୍କ ସହକାରୀ ଉଇଣ୍ଡଲ୍‌ଙ୍କୁ ଦେଖିଲୁ । ପାଣି ଭିତରେ ବହୁଦୂରରେ ଆମେ ଲୋକଙ୍କୁ ଗଛରେ ଏବଂ କୁଡ଼ିଆଘର ଉପରେ ଓହଳି ରହିଥିବା ଦେଖିଲୁ ଏବଂ ସାହାଯ୍ୟ ପାଇଁ ସେମାନଙ୍କ ଚିତ୍କାର ଶୁଣିଲୁ । ସ୍ୱଭାବସୁଲଭ ସ୍ୱାର୍ଥପରତା ଫଳରେ ସହରର ତୁଳା ନେଇ ଯାଉଥିବା ବ୍ୟବସାୟୀମାନେ ନିଜ ଡଙ୍ଗାଗୁଡ଼ିକୁ ବହୁଦୂରରେ ସହରର ବିପରୀତ ପାର୍ଶ୍ୱରେ ବାଉଁଶବଣିଆ ଭିତରେ ଯତ୍ନର ସହ ଲୁଚାଇ ରଖିଥିଲେ । ସେମାନେ ଏଇଆ ଭାବନ୍ତି ଯେ, ଯଦି ସାହାଯ୍ୟ ଆସେ ତେବେ ୟୁରୋପୀୟମାନେ ଥିବା ସହରର ସରକାରୀ ଅଞ୍ଚଳରୁ ଆସିବ । ଡଙ୍ଗାସବୁ ଲୁଚାଇ ରଖିବାରେ ସେମାନଙ୍କ ଉଦ୍ଦେଶ୍ୟ ହେଉଛି ରକ୍ଷାକାମରେ ଲଗାଇବାପାଇଁ ସେଗୁଡ଼ିକୁ ଧରି ନିଆଗଲେ ସେମାନଙ୍କ ତୁଳା ପରିବହନ କାମ ଡେରି ହେଇଯିବ, ତେଣୁ ସେଥିରୁ ରକ୍ଷା ପାଇବା । ବହୁତ ଖୋଜାଖୋଜି ପରେ ଆମେ ଦୁଇଟି ନୌକା ପାଇଲୁ ଯାହାକୁ ନେଇଯିବାପାଇଁ ମାଲିକମାନେ ସମୟ ପାଇ ନ ଥିଲେ । ମୁଁ ବହୁପରିମାଣ ଭଡ଼ା ଯାଚିଲେ ମଧ ସେମାନେ ପ୍ରତିବାଦ କଲେ; ତା' ସତ୍ତ୍ୱେ ଆମେ ସେଗୁଡ଼ିକୁ ଧରି ଚାଲିଲୁ । ଏତେ ଓଜନିଆ ନୌକାଗୁଡ଼ିକୁ ଏତେ ପ୍ରବଳ ସ୍ରୋତରେ କାତମାରି ନେବା ବିପଦ ଓ ଅସୁବିଧାଜନକ । ପାଣିତଳେ ଥିବା ଚାଳଘରର ଛାତ କିମ୍ବା ଗଛର ଗଣ୍ଡି ଦେହରେ ଧକ୍‌କା ଖାଇ ଆମର ବରାବର ଓଲଟି ପଡ଼ିବା ଅବସ୍ଥା ହେଉଥିଲା । ଯାହାହେଉ କ୍ରମେ ସବୁ ଲୋକଙ୍କୁ ବିପଦରୁ ଉଦ୍ଧାର କରିଦେଇପାରିଲୁ, ଯଦିଓ ସେମାନଙ୍କ ମଧ୍ୟରୁ କେତେକ, ବିଶେଷତଃ ବୃଦ୍ଧମାନେ ସେମାନଙ୍କ ଅନୁପସ୍ଥିତିରେ ଦରିଦ୍ରର ସମ୍ବଳ ସେମାନଙ୍କର ସାମାନ୍ୟ ସମ୍ପତ୍ତିକୁ କିଏ ନେଇଯିବା ଭୟରେ ବିପଦପୂର୍ଣ୍ଣ ତାଙ୍କ ଘରର ଚାଳକୁ ଛାଡ଼ିବାକୁ ଅମଙ୍ଗ ହେଉଥିଲେ । ରୋମୀୟ କ୍ୟାଥଲିକ୍ ଯାଜକଙ୍କୁ ତାଙ୍କ ଛୋଟ କୋଠାର ଉପର ମହଲାରେ ଦେଖିଲୁ । ତାଙ୍କ ପ୍ରାର୍ଥନା ଗୃହରେ ପାଣି ଭର୍ତ୍ତି ହୋଇଯାଇଥିଲା । ସେ ପ୍ରାଣଭୟରେ ଶଙ୍କିତ ହୋଇ ପଡ଼ିଥିଲେ ମଧ ସ୍ଥାନ ଛାଡ଼ିବାକୁ ଅମଙ୍ଗ ହେଉଥିଲେ । ସେ କେବଳ ଇଟାଲି ଭାଷା କହୁଥିଲେ ଏବଂ ସେ ସମୟରେ ମୁଁ ସେ ଭାଷାଟି ଭଲ କହିପାରୁ ନ ଥିଲି । କ୍ରମେ କ୍ରମେ ଆମେ ଜାଣିବାକୁ ପାଇଲୁ ଯେ, ତାଙ୍କର ପବିତ୍ର ପାତ୍ର ଓ ପୋଷାକସବୁ ଗିର୍ଜାର ଭଣ୍ଡାରରେ ଛାଡ଼ି ଯିବାପାଇଁ ସେ କୁଣ୍ଠା ପ୍ରକାଶ କରୁଛନ୍ତି । ଭଜନାଳୟରେ ଜଣେ ପୋଲିସ୍ ଜଗୁଆଳି ରଖିବାପାଇଁ ମୁଁ ଅଧା ଇଟାଲିଆନ୍ ଓ ଅଧା ଲାଟିନ୍‌ରେ

ପ୍ରତିଶ୍ରୁତି ଦେବା ପରେ ଯାଇଁ ସେ ଗୋଟିଏ ହାତରେ ତାଙ୍କର ପ୍ରିୟ ବେହେଲା ଓ ଅନ୍ୟ ହାତରେ ପ୍ରାର୍ଥନା ପୁସ୍ତକଟି ଧରି ଝରକାବାଟେ ଆମ ନୌକାକୁ ଡେଇଁ ପଡ଼ିବାକୁ ରାଜି ହେଲେ । ଅନବରତ ବର୍ଷାରେ ଭିଜିବା ଓ କ୍ଳାନ୍ତି ହେତୁ ଆମେ ଭାଙ୍ଗି ପଡୁଥିଲୁ ଏବଂ ଓଦା ଜୁବୁବୁବୁ ପୋଷାକ ପାଲଟିବା ପାଇଁ ଓ କିଛି ଖାଇଦେବା ପାଇଁ ଘରକୁ ଆସୁଥିଲୁ । ପାଞ୍ଚଥର ଆମେ ସେ ବୁଡ଼ି ଅଞ୍ଚଳରେ ବୁଲି ଡଙ୍ଗା ବୋଝେଇକରି ଦେଶୀୟମାନଙ୍କୁ ଆଣି ଉପରେ ଛାଡ଼ିଲୁ । ଶେଷଥରକ ସନ୍ଧ୍ୟାବେଳେ ଆମେ ଛୋଟ ହୁଲି ଡଙ୍ଗାଟିରେ ଫେରୁଥିବାବେଳେ ମୋ ବାଉଁଶ କାତଟି ହାତରୁ ଖସିଗଲା ଏବଂ ଆମେ ରାସ୍ତା ଉପର ଦେଇ ପଡ଼ିଥିବା ଭଙ୍ଗାପୋଲ ଆଡ଼କୁ ଭାସିଚାଲିଲୁ । ସେଠାରେ ପାଣି ଏକ ପ୍ରପାତ ସୃଷ୍ଟି କରିଛି । ଆମ ଜୀବନ ଶେଷ ହୋଇଗଲା ପରି ମନେହେଲା; କିନ୍ତୁ ନୌକାର ପଛଭାଗରେ ବସିଥିବା ବାର୍ନଫାଦର ତାଙ୍କ କାତଟି ମୋ ଆଡ଼କୁ ଫିଙ୍ଗିଦେଲେ । ସେଇଟିକୁ ଧରିନେଇ ମୁଁ ପ୍ରାଣାନ୍ତକ ଏକ ଶେଷ ଚେଷ୍ଟାରେ ସେ ଡଙ୍ଗାଟିକୁ ପାଣି ଉପରକୁ ଓହଳ ରହିଥିବା ଗୋଟାଏ ଗଛର ଡାଳ ସନ୍ଧିରେ ଜୋରରେ ଭର୍ତ୍ତି କରିଦେଲି । ତା'ପରେ ମୋ ମୁଣ୍ଡ ଘୂରିଗଲା ଏବଂ ଆମେ କିପରି କୂଳକୁ ଆସିଲୁ ଏବଂ ନୌକାର କ'ଣ ହେଲା ସେସବୁ ମୁଁ ପ୍ରାୟ କିଛି ଜାଣି ନାହିଁ; କିନ୍ତୁ ସମସ୍ତଙ୍କୁ ଉଦ୍ଧାର କରାଯାଇଥିଲା ଏବଂ ରହିବା ଖାଇବାର ବନ୍ଦୋବସ୍ତ କରି ଦିଆଯାଇଥିଲା । ପରଦିନ ବାର୍ନଫାଦର, ଉଇଣ୍ଡଲ ଓ ମୁଁ କ୍ଳାନ୍ତି, ଆଣ୍ଠୁଗଣ୍ଠି ଦରଜ ଓ ସର୍ବାଙ୍ଗ ବ୍ୟଥାରେ ପଡ଼ିଗଲୁ । ବଢ଼ି ଶୀଘ୍ର ଛାଡ଼ିଗଲା କିନ୍ତୁ ଧନ ଓ ଜୀବନର ଭୟଙ୍କର କ୍ଷତି କରିଥିଲା । ତଥାପି ବିପଦ ସହ ଘନିଷ୍ଠତା ଫଳରେ ତା' ପ୍ରତି ଭୟ ଏତେ କମ୍ ଥିଲା ଯେ, ଲୋକେ ସାଙ୍ଗେ ସାଙ୍ଗେ ସେଇ ଜାଗା ଉପରେ ପୁଣି କୁଡ଼ିଆ ଘରମାନ ତିଆରି କରିଦେଲେ ଏବଂ କେତେମାସ ମଧ୍ୟରେ ସ୍ରୋତରେ ଭାସିଆସି ପଡ଼ିରହିଥିବା ବଡ଼ ବଡ଼ ଗଛଗୁଡ଼ାକ ଛଡ଼ା ଏତେ ବଡ଼ ବଢ଼ିର ସ୍ମୃତିଚିହ୍ନ ଆଉ କିଛି ରହିଲା ନାହିଁ । ସେଗୁଡ଼ାକ ମଧ୍ୟ ଶୀଘ୍ର କଟାହୋଇ ଜାଳେଣି ରୂପେ ବିକ୍ରି ହୋଇଗଲା । ଆମର କାମପାଇଁ ଆମେ ସରକାରଙ୍କଠାରୁ ଧନ୍ୟବାଦ ପାଇଥିଲୁ ।

ବର୍ତ୍ତମାନ ଆମେ ନୀଳଚାଷୀମାନଙ୍କର ପରିଚୟ ପାଇଲୁ । ପୂର୍ଣିଆର ନୀଳଚାଷୀମାନେ ପ୍ରାୟ ଅଲଗା ଏକ ଶ୍ରେଣୀୟ । ଗୋଟିଏ ପଟେ ବଙ୍ଗଳାର ନୀଳଚାଷୀଙ୍କଠାରୁ ଓ ଅନ୍ୟପଟେ ବିହାରର ଚାଷୀଙ୍କଠାରୁ ପୃଥକ । ସେମାନେ ସମସ୍ତେ ପ୍ରାୟ ୟୁରୋପୀୟ ଏବଂ ଦୁଇତିନି ପୁରୁଷ ଧରି ଏହି ନୀଳଚାଷ ଜମିଦାରୀ ପ୍ରତିଷ୍ଠା କରିଥିଲେ । ଭାରତ ଥିଲା ସେମାନଙ୍କର ଘର । ସେମାନଙ୍କ ମଧ୍ୟରୁ ଅଧିକାଂଶ ଇଂଲାଣ୍ଡକୁ କେବେ ଯାଇ ନ ଥିଲେ ବା ଯିବାକୁ ଇଚ୍ଛା କରୁ ନ ଥିଲେ । ସେମାନେ ସମସ୍ତେ ପ୍ରାୟ ରୋମୀୟ କ୍ୟାଥଲିକ । ସେମାନଙ୍କ ଝିଅମାନେ ଦାର୍ଜିଲିଂରେ ଥିବା ଲୋରେଟୋ କନ୍‌ଭେଣ୍ଟରେ ଖ୍ରୀଷ୍ଟ ସନ୍ନ୍ୟାସିନୀମାନଙ୍କ ଦ୍ୱାରା ଚମତ୍କାର ଶିକ୍ଷା ପାଉଥିଲେ । ଏହି ଅନୁଷ୍ଠାନ ପ୍ରଥମ ଶ୍ରେଣୀୟ ବୋର୍ଡ଼ିଂ ସ୍କୁଲରୁ କିଛି ଭଲ । ସେମାନେ ସେଠାରେ ଇଂରାଜୀ, ଫରାସୀ, ଇଟାଲି ଭାଷା, ସଙ୍ଗୀତ ଏବଂ ଗୀତ ଗାଇବା ଶିକ୍ଷା କରୁଥିଲେ । କମ୍ ଲୋକଦେଖାଣିଆ ଓ ବେଶି ବ୍ୟାବହାରିକ ଦୃଷ୍ଟିରୁ ସେମାନେ ଏ ଶିକ୍ଷା ପାଉଥିଲେ । ବାଳକମାନେ କଲିକତାର ମାର୍ଟିନୀୟର, ସେଣ୍ଟପଲ ସ୍କୁଲ ବା ସେଣ୍ଟଜାଭିଅର୍ସ କଲେଜକୁ

ଯାଉଥିଲେ । କେତେକ କ୍ଷେତ୍ରରେ ଚାଷୀମାନେ ନିଜ ଜମିରେ ନୀଳଚାଷ କରୁଥିଲେ, ଅନ୍ୟତ୍ର ସେମାନେ ଏଥିପାଇଁ ଦୀର୍ଘ ମିଆଦିରେ ଜମି ପଟା ଦେଉଥିଲେ । ଏହା ଫଳରେ କେତେ ହଜାର ଏକର ବିରାଟ ଜମିଦାରୀ ବା କ୍ଷେତ ଅଞ୍ଚଳରେ ଥିବା ଗ୍ରାମର ରୟତମାନଙ୍କ ଉପରେ ସେମାନଙ୍କର ଖୁବ୍ ପ୍ରଭାବ ରହୁଥିଲା । ସେମାନେ ମୋଟ ଉପରେ ନମ୍ର ଓ ଉଦାର ଥିବାରୁ ସାଧାରଣତଃ ଲୋକପ୍ରିୟ ଥିଲେ; ଯଦିବା ସ୍ୱେଚ୍ଛାଚାରୀ ଥିଲେ ତଥାପି ରୟତମାନେ ଯେତିକିରେ ଅଭ୍ୟସ୍ତ ତା'ଠାରୁ ବେଶି ନୁହେଁ । ସବୁ ବିଭାଗରେ ଭାରତୀୟମାନେ ଜଣେ ଲାଲଫିତା ଶାସକଠାରୁ ଜଣେ ଉଦାର ଏକଛତ୍ରବାଦୀକୁ ବେଶି ପସନ୍ଦ କରନ୍ତି । ଅବଶ୍ୟ ଏହି ଚାଷୀମାନଙ୍କ ମଧ୍ୟରେ କେତେକ ସ୍ୱେଚ୍ଛାଚାରୀ ଅନୁଦାର ମଧ୍ୟ ଥିଲେ; କିନ୍ତୁ ସେମାନେ ଥିଲେ ବ୍ୟତିକ୍ରମ; ପ୍ରତ୍ୟେକ ନିୟମରେ ବ୍ୟତିକ୍ରମ ଥାଏ । ସେ ଯାହାହେଉ ଖୋଲା ହୃଦୟର ସାଡ଼ମ୍ବର ଆତିଥେୟତାରେ ଗୋଟିଏ ବୋଲି ବ୍ୟତିକ୍ରମ ନ ଥିଲା । କାରଖାନା ସମସ୍ତଙ୍କ ପାଇଁ ଉନ୍ମୁକ୍ତ ଥିଲା । ଖାଇବା ଓ ପ୍ରଚୁର ପିଇବା ପାଇଁ ସମସ୍ତଙ୍କୁ ସ୍ୱାଗତ କରାଯାଉଥିଲା । ରାତିଏ ବା ବାରରାତି ଶୋଇବାପାଇଁ ମଧ୍ୟ ଶଯ୍ୟା ମହଜୁଦ୍ ରହୁଥିଲା । ବାଘ ଶିକାର ପାଇଁ ହାତୀ, ଭ୍ରମଣ ପାଇଁ ଘୋଡ଼ା, ଡଙ୍ଗା, ବଗି, ବନ୍ଧୁକ, ବର୍ଚ୍ଛା ୟୁରୋପୀୟ ଅଫିସର ଓ ଅଣଅଫିସରମାନେ ଯାହା ଭଦ୍ରତା ସହ ସେମାନଙ୍କଠାରୁ ଚାହୁଁଥିଲେ ତାହା ସାଙ୍ଗେ ସାଙ୍ଗେ ମିଳୁଥିଲା । ଷାଠିଏ ସତୁରିଜଣ ଅତିଥିଙ୍କୁ ନିମନ୍ତ୍ରଣ କରି ଦିନସାରା ପୁରୁଷମାନଙ୍କ ପାଇଁ ଶିକାର ଓ ଲକ୍ଷ୍ୟଭେଦ, ରାତିସାରା ମହିଳାମାନଙ୍କ ପାଇଁ ନୃତ୍ୟ; ଏହିପରି ଚାରି ପାଞ୍ଚଦିନ କାଳ ଅନବରତ ଦିନରାତି ଭୋଜି; ବିଲିଆଡ଼ ଓ ତାସଖେଳ ଚାହୁଁଥିବା ଲୋକଙ୍କୁ ତାହା ଯୋଗାଇଦେବାରେ ସେମାନେ ସବୁଠୁ ବେଶି ଆନନ୍ଦ ପାଉଥିଲେ । ୧୮୬୨ରେ ପୂର୍ଣ୍ଣିଆରେ, ପ୍ରଧାନତଃ ଜିଲ୍ଲାର ଦକ୍ଷିଣ ଓ ପଶ୍ଚିମାଞ୍ଚଳରେ ଏହିପରି ୩୦ଟି ଯାକେ କାରଖାନା ଥିଲା । ବୃଦ୍ଧ କୋସ ଥିଲେ ନୀଳଚାଷୀ ଶ୍ରେଣୀର ପ୍ରାଚୀନତମ ବ୍ୟକ୍ତିରୂପେ ସ୍ୱୀକୃତ । ସହରଠାରୁ ପ୍ରାୟ ୧୬ମାଇଲ ଦୂରରେ ସେ ଘରଟିଏ ପ୍ରସ୍ତୁତ କରି ରଖିଥିଲେ । ତାଙ୍କ ପିତୃପ୍ରଧାନ ପରିବାରରେ ୨୦ରୁ ଅଧିକ ପିଲା ଥିଲେ । ସେମାନେ ସମସ୍ତେ ଗୋଟାଏ ପୁରୁଣା ବଡ଼ଘରେ ସମ୍ପୂର୍ଣ୍ଣ ଶୃଙ୍ଖଳାର ସହ ଚଳୁଥିଲେ । ତାଙ୍କର ଅନେକ ଚାକରବାକର ଭୂଇଁରେ ଧାଡ଼ି ଧାଡ଼ି କୁଡ଼ିଆଘର କରି ରହୁଥିଲେ, ଯାହାର ଆକାର ସାଧାରଣ ଏକ ଗାଁଠୁ ବଡ଼ । ସେମାନଙ୍କ ପିଲାମାନେ ବଡ଼ ହୋଇଗଲା ମାତ୍ରେ ସେମାନେ ତାଙ୍କୁ 'କୋ'ଙ୍କ ଘରକୁ ନେଇ ଆସୁଥିଲେ ଚାକିରି ପାଇଁ । ଆହୁରି ମଧ୍ୟ ଥିଲେ କାରଖାନା ଚାକର, କିରାଣି, ତଦାରଖକାରୀମାନଙ୍କର ଏକ ଦଳ— ପୁଣି ମଧ୍ୟ ବାହାରିଆ ଚାକର ଯଥା ମାଳି, ସଇସ, ନୌଚାଳକ ପ୍ରଭୃତି । 'କୋ'ଙ୍କର ହାତୀ, ଘୋଡ଼ା, ବଳଦ, ଗାଈ, ଛେଳି, ମେଣ୍ଢା, ବିରାଟ ପ୍ରମୋଦ ତରୀ ଓ ମାଲବାହୀ ନୌକାଗୁଡ଼ିକ ପାଇଁ ଗୋଟିଏ ଚାକର ବାହିନୀର ଆବଶ୍ୟକତା ଥିଲା । ସେ ସମସ୍ତଙ୍କର ରହିବା ପାଇଁ ସେଇ ହତା ମଧ୍ୟରେ ଘର, କୁଡ଼ିଆ, ବାହାରଘର, ଗୋଦାମଘର ଓ ବଖରାମାନ ଥିଲା । ସେଠାରେ ସେମାନଙ୍କ ସଂଖ୍ୟା କେତେ ତାହା ବୃଦ୍ଧ କୋ ସମ୍ଭବତଃ ଜାଣୁ ନ ଥିଲେ । ତାଙ୍କ ନିଜର କେତେ ପିଲା ତାହା ମଧ୍ୟ ସେ ବୋଧହୁଏ ଜାଣି ନ ଥିଲେ । ନିଜ ଔରସଜାତ ସନ୍ତାନ କି ନୁହେଁ ତାହା ନିର୍ଦ୍ଦିଷ୍ଟଭାବେ ଜାଣିବା ପାଇଁ ବାରଣ୍ଡାରେ ଗୁରୁଣ୍ଡୁ ଥିବା ଗୋଟାଏ କପିବର୍ଣ୍ଣର ଛୋଟ ଶିଶୁକୁ ଉଠାଇନେଇ କିଛି ସମୟ

ଚାହୁଁଥିବାର ସୁଁ ଦେଖିଚି । ସେ ଥିଲେ ଖର୍ବକାୟ, ସବଳ, ବୁଡ଼ାଳିଆ, ଦେହ ରଙ୍ଗ ଖୁବ୍ କଳା, ମୁହଁ ପୂର୍ଣ୍ଣ ଗୋଲାକାର, ପୃଥୁଳ ଚେହେରା ଏବଂ ଅଳ୍ପ ଚନ୍ଦା । ତାଙ୍କ ମୁଖର ପ୍ରତ୍ୟେକ ରେଖା, ତାଙ୍କ ବିଶାଳ ପୃଷ୍ଠଦେଶ ଓ ପୃଥୁଳ ଉଦରର ପ୍ରତ୍ୟେକ ଭାଙ୍ଗରୁ ସୁସ୍ୱଭାବ ବାରିହୋଇ ପଡୁଥିଲା । ମାତ୍ର ସମସ୍ତ ସୁଗୁଣ ସଙ୍ଗେ ସଙ୍ଗେ ସେ ଥିଲେ ଛୁଞ୍ଚିଭଳି ତୀକ୍ଷ୍ଣ, ପକ୍କା ବ୍ୟବସାୟୀ ଏବଂ ପ୍ରତିବର୍ଷ ତାଙ୍କ ନୀଳଚାଷରୁ ଖୁବ୍ ଲାଭ କରୁଥିଲେ । ତାଙ୍କ ବାପା କିମ୍ବା ଜେଜେବାପା ପୂର୍ଣ୍ଣିଆରେ ଯେଉଁ ରୋମୀୟ କ୍ୟାଥିଲିକ୍ ଭଜନାଳୟ ତୋଳାଇଥିଲେ ତାହାକୁ ସେ ଯଥେଷ୍ଟ ଦାନ ଦେଉଥିଲେ । ଜୋ ଓ ତାଙ୍କ ପରିବାର ଯଦି ଉଦାର ଭାବରେ ଖାଦ୍ୟ ଓ ଅର୍ଥ ଦେଉ ନ ଥାନ୍ତେ ତେବେ ବିଚରା ଅର୍ଦ୍ଧାହାରରେ ଥିବା ଯାଜକଟି ପୂରା ଅନାହାରରେ ରହୁଥାଆନ୍ତା ।

ପୂର୍ଣ୍ଣିଆରେ ପଟ୍ଟା ଓ ଅଗ୍ରିମ ଦେଇ ନୀଳଚାଷ କରାଯାଏ । ଗୋଟିଏ 'ଦିହାତ' ବା ଗୋଟିଏ କାରଖାନା ଅଧୀନସ୍ଥ ଷାଠିଏ ସତୁରି ହଜାର ଏକର ବିଶିଷ୍ଟ, ଗ୍ରାମଗୁଡ଼ିକର ସମସ୍ତ ରୟତ ସେମାନଙ୍କ ଜମିର ଗୋଟିଏ ଅଂଶରେ ନୀଳଚାଷ କରିବା ପାଇଁ ବାଧ୍ୟ । ଜୁନ୍ ମାସରେ ଫସଲ ପାଚିଲେ ସେମାନେ ତାହା ନେଇ କାରଖାନାକୁ ଯାଉଥିଲେ ଏବଂ ସେଇଥିରୁ ନୀଳ ପ୍ରସ୍ତୁତ ହେଉଥିଲା । ସେମାନେ ଅଗ୍ରିମ ମଞ୍ଜି ଓ ନଗଦ ଟଙ୍କା ପାଉଥିଲେ ଏବଂ ଯେଉଁ ନୀଳଗଛ ନେଇ ସେମାନେ ଦେଉଥିଲେ ତାହାର ମୂଲ୍ୟରୁ ଏହି ଅଗ୍ରିମ ଅର୍ଥ ମଜୁରା ହେଉଥିଲା । ଛୋଟ ଛୋଟ ବୁଦାଳିଆ ନୀଳଗଛ ସବୁ ବିଡ଼ା ହୋଇ ବନ୍ଧାଯାଇଥାଏ । ଏକ ନିର୍ଦ୍ଦିଷ୍ଟ ଦୈର୍ଘ୍ୟର ଫିତା ସେ ବିଡ଼ା ଉପରେ ପକାଇ ତାହାକୁ ମପାଯାଏ । ଟଙ୍କାକୁ କେତେ ବିଡ଼ା କରି କିଣାଯାଏ । ହିସାବ ଛିଡ଼ିଯିବାପରେ ରୟତ ନୂଆବର୍ଷ ପାଇଁ ପୁଣି ଅଗ୍ରିମ ନିଏ । ସେମାନେ ସର୍ବଦା କାରଖାନାର ଧାରୁଆ ହୋଇଥାଆନ୍ତି । ସେମାନଙ୍କୁ ବଚସ୍କର କରି ରଖିବା ପାଇଁ ଜାଣିଶୁଣି ଏପରି କରାହୋଇଥାଏ ।

ରୟତମାନେ ଯେପରି ଉତ୍ପୀଡ଼ିତ ନ ହୁଅନ୍ତି ତାହା ଦେଖିବା ଥିଲା ମୋର କାମ, ତା' ସଙ୍ଗେ ସଙ୍ଗେ ମୋର ଚାଷୀମାନଙ୍କୁ ମଧ୍ୟ ସନ୍ତୁଷ୍ଟ ରଖିବା କଥା । ସାଧୁ, ଉଦାର, ନୀତିବାନ୍ ନୀଳଚାଷୀଙ୍କ କ୍ଷେତ୍ରରେ ଏ କାମ ସହଜ; କିନ୍ତୁ ସେପରି ନ ଥିବା କେତେଜଣଙ୍କ ସହ ମୋତେ ଥରେ ଦୁଇଥର ଅସୁବିଧାରେ ପଡ଼ିବାକୁ ହୋଇଛି । ପରବର୍ତ୍ତୀକାଳରେ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାରର ଦଳେ ଲୋକଙ୍କ ସହ ମୋର ମୁହାଁମୁହିଁ ହୋଇଥିଲା ।

ଏହି ସମୟରେ ଘରୁ ଏକ ଦୁଃସମ୍ବାଦ ଆସି ପହଞ୍ଚିଲା । ମୋ ଭାଇ ଉଇଲିର ମୃତ୍ୟୁ ଓ ସେଣ୍ଟଜେମସ୍‌ଙ୍କ ଘରଟି ନ ପାଇବାର ନୈରାଶ୍ୟ ଫଳରେ ବାପା ଦୁଇ ଦୁଇଟା ଧକ୍କା ପାଇ ସେଥିରୁ ବିଚରା ସୁସ୍ଥ ହୋଇପାରିଲେ ନାହିଁ । ସେ ଖୁବ୍ ବେମାର ହୋଇପଡ଼ିଲେ ଏବଂ ଜଳବାୟୁ ପରିବର୍ତ୍ତନ ପାଇଁ ଜର୍ମାନ ଯିବାକୁ ଡାକ୍ତର ପରାମର୍ଶ ଦେଲେ । ସେ ଲାଙ୍ଗେନ୍ ସ୍ୱଲବାକ୍‌କୁ ଏଥିପାଇଁ ବାଛିଲେ । ସାର୍ ଫ୍ରାନ୍‌ସିସ୍ ହେଡ଼ଙ୍କର 'ବବଲସ୍ ଫ୍ରମ୍ ଦି ବ୍ରୁନେନ୍ ଅଫ୍ ନାସାଉ' ନାମକ ଏକ ସୁନ୍ଦର ବହିରୁ ସେ ଏହି ସ୍ଥାନଟି ବିଷୟରେ ପଢ଼ିଥିଲେ । ମୋ ଭାଇ ପିଅରସନ୍ ୬୯ତମ ବାହିନୀରୁ ଡବଲିନ୍‌ରେ ଥିବା ୧/୧୧ତମ ବାହିନୀକୁ ବଦଳି ହୋଇଥିଲା । ସେ ଛୁଟି ନେଇ ତାଙ୍କ ସଙ୍ଗେ ଗଲା । ମନେକରାଯାଉଥିଲା ଯେ (ଭୁଲ୍ ଭାବରେ ବୋଲି ପରେ ଜଣାଗଲା)

କିଙ୍ଗ୍‌ସ୍ କଲେଜରେ ଜର୍ମାନଭାଷା ପଢ଼ିଥିବାରୁ ସେ ଏହାକୁ ଭଲ ଭାବରେ କହିପାରୁଥିବ । ବାପା ଅଳ୍ପକିଛି ଫରାସୀ ମାତ୍ର ଜାଣିଥିଲେ, କିନ୍ତୁ ପିଅରସନ ଜର୍ମାନ ଭାଷାରେ ପଦଟିଏ ମଧ୍ୟ କହିପାରିଲା ନାହିଁ ଏବଂ ତା' ଛୁଟି ପୂରିଯିବାରୁ ବାପାଙ୍କୁ ଜର୍ମାନୀରେ ଏକୁଟିଆ ଛାଡ଼ିଦେଇ ଘରକୁ ଚାଲିଗଲା । ବାପା ବିଚରା ଏକା ଏକା ଘରକୁ ଆସିବାକୁ ଚେଷ୍ଟା କଲେ ଏବଂ ରାଇନ୍ ନଦୀବାଟେ ଆସି କୌଣସି ପ୍ରକାରେ ଆଣ୍ଟେର୍‌ପଠାରେ ପହଞ୍ଚିଲେ । ସେଇଠି ତାଙ୍କ ମୁଣ୍ଡ ଗୋଳମାଳ ହୋଇଗଲା । ଲଣ୍ଡନକୁ ଆସୁଥିବା ଷ୍ଟିମରରେ ତାଙ୍କୁ ବସାଇ ଦିଆଗଲା ଏବଂ ସେ ନିରାପଦରେ ଘରେ ପହଞ୍ଚିଲେ, କିପରି ପହଞ୍ଚିଲେ କେହି ଜାଣନ୍ତି ନାହିଁ; କିନ୍ତୁ ତାଙ୍କର ସମସ୍ତ ଜିନିଷପତ୍ର ସହ ସୁନ୍ଦର ସୁନାଘଡ଼ି ଓ ଚେନ୍‌ଟିଏ ଛାଡ଼ିଦେଇ ଆସିଲେ । ସେ କପର୍ଦ୍ଦକ ଶୂନ୍ୟ ହୋଇ ତାଙ୍କର ତାତ୍କାଳିକ ବାସସ୍ଥାନ ବ୍ରମ୍ପଟନ ହେରଫୋର୍ଡ଼ ସ୍କୋୟାରରେ ପହଞ୍ଚିଲେ ଏବଂ କିପରି ପହଞ୍ଚିଲେ ତା'ର ସଠିକ୍ ବିବରଣୀ କିଛି ଦେଇପାରିଲେ ନାହିଁ । ବହୁ କଷ୍ଟରେ ତାଙ୍କର କେତେକ ବନ୍ଧୁ ତାଙ୍କର ମାର୍ଗ ଅନୁସନ୍ଧାନ କରି ତାଙ୍କର ଜିନିଷପତ୍ର ଓ ଘଡ଼ିକୁ ଆଣ୍ଟୋର୍‌ପର ଏକ ହୋଟେଲ୍‌ରୁ ପାଇଲେ । ତାଙ୍କ ବିଲ୍ ଦିଆହେବା ପର୍ଯ୍ୟନ୍ତ ହୋଟେଲବାଲା ସେ ସବୁ ରଖିଥିଲା ଏବଂ ଷ୍ଟିମରର କ୍ୟାପ୍‌ଟେନ୍ ତାଙ୍କୁ ପଦସ୍ଥ ବ୍ୟକ୍ତି ବୋଲି ଜାଣି ଦୟାକରି ନେଇଗଲେ ଏବଂ ତାଙ୍କ ବନ୍ଧୁମାନଙ୍କଠାରୁ ତାଙ୍କ ପ୍ରାପ୍ୟ ପାଇଗଲେ । ବାପାଙ୍କ ବନ୍ଧୁ ଜେମସ୍ ନୋଏଲସ୍ ଏବଂ ଷ୍ଟେନଫୋର୍ଥ ଉଭୟଙ୍କର ପ୍ରାପ୍ୟ ଚୁକ୍ତି କରିଦେଲେ । ବାପାଙ୍କୁ ଏକ ବେସରକାରୀ ସ୍ୱାସ୍ଥ୍ୟ ନିବାସରେ ୬ମାସ ରହିବାକୁ ପଡ଼ିଲା । ୧୮୬୩ ମାର୍ଚ୍ଚରେ ସେ ସୁସ୍ଥ ମନ କିନ୍ତୁ ଖୁବ୍ ଦୁର୍ବଳ ସ୍ୱାସ୍ଥ୍ୟ ନେଇ ଘରକୁ ଫେରିଲେ । ସେଣ୍ଟଜେମସ୍ ଗିର୍ଜାଞ୍ଚଳର ଲୋକେ ଚାନ୍ଦାକରି ରେକ୍ଟର ଶ୍ରୀ କେମ୍ପେଙ୍କ ଜରିଆରେ ମା'ଙ୍କୁ ଭଲ ପରିମାଣ ଅର୍ଥ ଦେଇଥିଲେ । ବାପାଙ୍କୁ ଅବଶ୍ୟ କାମରୁ ଇସ୍ତଫା ଦେବାକୁ ପଡ଼ିଲା ଏବଂ ମୁଁ ଯଥାସାଧ୍ୟ ପରିମାଣ ଅର୍ଥ ବାପା ଓ ମାଙ୍କ ଚଳିବା ପାଇଁ ପଠାଇଲି । ସେ ସୁସ୍ଥହୋଇ କେତେଗୁଡ଼ିଏ ଲମ୍ବା ଚିଠି ମୋ ପାଖକୁ ପଠାଇଥିଲେ । ସେଗୁଡ଼ିକ ଖୁବ୍ ସ୍ନେହାର୍ଦ୍ର ହେଲେ ମଧ୍ୟ ଖାପଛଡ଼ା ଧରଣର ଲେଖା ।

୧୮୬୩ ଜୁନ୍‌ରେ ମୋର ସବା ସାନଭାଇ ହ୍ୟାରୀ ଜେଜେବାପାଙ୍କ ଇଚ୍ଛାପତ୍ର ଅନୁଯାୟୀ ୫୦୦ ପାଉଣ୍ଡ ପାଇ କୃଷି ବ୍ୟବସାୟ କରିବା ପାଇଁ ନାଟାଲ ଦେଶକୁ ଚାଲିଗଲା । ତା'ର ପରବର୍ତ୍ତୀ ଇତିହାସ ପରେ କେଉଁଦିନ ମୁଁ କହିବି ।

୧୮୬୩ର ଆରମ୍ଭରେ ଦେଶରୁ ମୋଠାରୁ ଜ୍ୟେଷ୍ଠ ଜଣେ ବ୍ୟକ୍ତି ଆସିଯିବାରୁ ତାଙ୍କର ନିଯୁକ୍ତି ପାଇଁ ମୋତେ ମୋ ନିଯୁକ୍ତି କିଛିଦିନ ହରାଇବାକୁ ପଡ଼ିଲା । ସେ ଥିଲେ ପ୍ରସିଦ୍ଧ ଜ୍ୟୋତିର୍ବିଜ୍ଞାନୀ ଉଇଲିଅମ ହରସେଲଙ୍କ ପୁଅ । ସେ ବଦରାଗୀ ସ୍ୱଭାବର ହେଲେ ମଧ୍ୟ ଚମତ୍କାର ବନ୍ଧୁ, ଅନେକ ବିଷୟରେ ପଢ଼ାଶୁଣା କରିଥିଲେ, ସୁନ୍ଦର କଥାବାର୍ତ୍ତା କରୁଥିଲେ, କାମରେ ମଧ୍ୟ ଦକ୍ଷ ଥିଲେ । ଆମେ ତାଙ୍କ ସାନ୍ନିଧ ଖୁବ୍ ଉପଭୋଗ କଲୁ ଏବଂ ପୂର୍ଣ୍ଣିଆରେ ସେ ଯେଉଁ ଅଳ୍ପ କେତେଦିନ ରହିଲେ ତା' ମଧ୍ୟରେ ମୋତେ ଅନେକ କିଛି ଶିଖାଇଗଲେ । ସେ ବେଶିଦିନ ରହିଲେ ନାହିଁ ଏବଂ ମାର୍ଚ୍ଚ ଶେଷଆଡ଼କୁ ସେ ଅନ୍ୟ କାମରେ ଚାଲିଯବାରୁ ମୁଁ ମୋ ପଦ ଫେରିପାଇଲି ।

ବର୍ଷଟିଯାକ ଚିରାଚରିତ ରୀତିରେ କିନ୍ତୁ ଅନେକ ମନଲାଖି କାମ ମଧ୍ୟରେ କଟିଗଲା । ଲୋକମାନଙ୍କୁ ଶାସନ କରିବା ହେଉଛି ଖୁବ୍ ବଡ଼ କାମ, ସବୁଠାରୁ ମହତର କାମ, ଯଦିଓ ସମ୍ଭବତଃ ଖୁବ୍ କଷ୍ଟକର । ସବୁ କାମ ଥିଲା ସେଇ ଧରାବନ୍ଧା ଗତ ପରି । କ୍ରମେ ମୁଁ ସେଇ ଛୋଟ କିନ୍ତୁ ଅପରିହାର୍ଯ୍ୟ ବିଷୟମାନଙ୍କରେ ଅଧିକ ଅଭିଜ୍ଞ ଓ ପରିଚିତ ହୋଇଯିବାରୁ ନିଜର ଶକ୍ତି ସମ୍ପର୍କରେ ଜାଣିଗଲି ଏବଂ ମୋ କାମ କରିବାରେ ଅଧିକ ଆନନ୍ଦ ପାଇଲି । ବଙ୍ଗଳାର ଲାଟ ସାର ସିସିଲ୍ ବିଡ଼ନ ଏବଂ ତାଙ୍କ ସଚିବ ମାନ୍ୟବର ଆସଲେ ଏଡ଼େନ ପୂର୍ଣ୍ଣିଆ ଦେଇ ଦାର୍ଜିଲିଂ ଶୈଳନିବାସକୁ ଗଲେ ଏବଂ ସେଇବାଟେ ଫେରିଲେ । ସେମାନେ ମୋ କାମକୁ ପସନ୍ଦ କଲେ ଯଦିଓ 'ପଞ୍ଜାବୀ' ରୀତିକୁ ଟିକିଏ ପରିହାସ କଲେ । ସେମାନଙ୍କ ମତରେ ସେ ରୀତି ଉଗ୍ରତା ଓ ଭାବପ୍ରବଣତାର ଲକ୍ଷଣ; କିନ୍ତୁ ମୋର ସ୍ୱାସ୍ଥ୍ୟରକ୍ଷା ବ୍ୟବସ୍ଥା ଓ ମୁଁ କରିଥିବା ଦୁଇଟି ଅପୂର୍ବ ଧରଣର ଉଲ୍ଲେଖଯୋଗ୍ୟ ମାମଲାର ବିଚାର ପାଇଁ ସେମାନେ ମୋ ପ୍ରତି ଅନୁକୂଳ ମତପୋଷଣ କରିଥିଲେ ।

ପ୍ରଥମ ମାମଲାଟି ହେଉଛି ଜିଲ୍ଲାର ସବୁଠାରୁ ପ୍ରଭାବଶାଳୀ ଜମିଦାର ଜୟନାରାୟଣ ସିଂହଙ୍କର । ତାଙ୍କ ଭାଇ ଉଦୟନାରାୟଣ ପୁରୁଣା ଶାସନକଳର ମ୍ୟାନେଜରଙ୍କ ସଲାରେ ଦରଭଙ୍ଗା ଜମିଦାରୀରୁ ବିରାଟ ଭୂମି ଖଣ୍ଡେ ନେଇଥିଲେ । ସେ ଆଦୌ ଖଜଣା ଦେଉ ନ ଥିଲେ କିମ୍ବା ଦେବାକୁ ଇଚ୍ଛା କରୁ ନ ଥିଲେ ଏବଂ କେତେଟା ବର୍ଷ ମଧ୍ୟରେ ତାଙ୍କ ଦେୟ ପରିମାଣ ଅତ୍ୟଧିକ ହୋଇଗଲା । ଆମେ ଜଜ୍‌କୋର୍ଟ୍‌ରେ ତାଙ୍କ ବିରୋଧରେ ଡିକ୍ରି ଆଣିଲୁ; କିନ୍ତୁ ସେଇଟା ପ୍ରଥମ ସୋପାନ ଓ ଖୁବ୍ ସହଜ । ଆଦାୟ କରିବାଟା ହେଲା ଅସଲ କଷ୍ଟ କିମ୍ବା ଯାହାକୁ ବୈଷୟିକ ଭାଷାରେ କୁହାଯାଏ— 'ଡିକ୍ରିକୁ କାର୍ଯ୍ୟକାରୀ କରିବା' । ଏଥିପାଇଁ ଦେଣାଦାତା ଦେଣାଦାରର କେତେକ ସମ୍ପତ୍ତିକୁ ନିର୍ଦ୍ଦିଷ୍ଟ କରିଦିଏ ଏବଂ ସେ ସବୁକୁ ସଂପୃକ୍ତ କରି ବିକ୍ରୟ କରିବା ପାଇଁ ବିଚାରାଳୟକୁ ଜଣାଏ; କିନ୍ତୁ ଉଦୟ ସାନଭାଇ ହୋଇଥିବାରୁ ତା ନାଁରେ କିଛି ସମ୍ପତ୍ତି ନ ଥିଲା କେବଳ ପାରିବାରିକ ଜମିଦାରୀ କୋଠଅଂଶ ଯାହା ଥିଲା । ତା'ର ଯାହା ବା କିଛି ଅର୍ଥ ବା ନିଜସ୍ୱ ଅନ୍ୟାନ୍ୟ ସମ୍ପତ୍ତି ଥିଲା ସେସବୁକୁ ସେ ଏପରି ଲୁଚାଇଥିଲା ଯେ, ଆମ ଏଜେଣ୍ଟମାନେ ଖୋଜିଖୋଜି ତାହା ପାଇଲେ ନାହିଁ । ସର୍ବଶେଷରେ ଡି. କର୍ସି ଖବର ପାଇଲେ ଯେ, ଆମ ଋଣଗ୍ରହିତା ତା'ଭାଇ ଜୟନାରାୟଣ ପାଖରେ ରହୁଚି ଏବଂ ମୋତେ ଉପଦେଶ ଦେଲେ ଯେ, ତାକୁ ଗିରଫ କରିବା ପାଇଁ ଆଦେଶ ଦେବାକୁ ମୁଁ ବିଚାରପତିକୁ ଲେଖେ, କାରଣ କୌଣସି ସମ୍ପତ୍ତି ନ ମିଳିବା ବେଳେ ତା'କୁ ବାନ୍ଧିଆଣିବା ହିଁ ସର୍ବଶେଷ ପନ୍ଥା । ଗିରଫ ଆଦେଶ ମଞ୍ଜୁର ହୋଇଗଲା ଏବଂ ପରିସ୍ଥିତି ଅନୁଯାୟୀ ବିଚାରପତି ଆଦେଶ ଦେଲେ ଯେ, ମାଜିଷ୍ଟ୍ରେଟ ତାଙ୍କ ପିଅନ (ବା ପରୱାନାବାହୀ ପିଆଦା)କୁ ସାହାଯ୍ୟ କରିବା ପାଇଁ ପୋଲିସ୍ ପଠାନ୍ତୁ । ପୋଲିସ୍ ପଠାହେଲେ, କିନ୍ତୁ ଦାୟିତ୍ୱରେ ଥିବା ସର୍ଜେଣ୍ଟ ବା ହେଡ୍‌କନେଷ୍ଟବଲ୍ 'ବଳ ଅପେକ୍ଷା ବିଚାର ବୁଦ୍ଧି ପ୍ରୟୋଗ ଭଲ' ବୋଲି ଭାବି ଗଛ ଓ ବାଉଁଶବଣ ଘେରା ଜୟନାରାୟଣଙ୍କ ସୁଦୃଢ଼ ଓ ବିରାଟ ଘରର ଅଳ୍ପ ଦୂରରେ ପୋଲିସ୍ ଦଳଙ୍କୁ ଲୁଚାଇ ରଖିଲା । ପିଅନମାନେ ପ୍ରବେଶ ପଥର ବିରାଟ ଗମ୍ବୁଜ ନିକଟରେ ପହଞ୍ଚିଲାବେଳେ ଦ୍ୱାର ବନ୍ଦ ହୋଇ କିଳା ହୋଇଥିବା ପରି

ଜଣାଯାଉଥିଲା । ଉପରୁ କେହି ଜଣେ ଡାକି ସେମାନେ କଅଣ ଚାହାନ୍ତି ବୋଲି ପଚାରିଲା । ସେମାନେ ପରୱାନା କାଢ଼ି ଉପରକୁ ହଲାଇ ଦେଖାଇଲେ ଏବଂ ଉଦୟନାରାୟଣଙ୍କୁ ସଶରୀରେ ଦେଇଦେବାପାଇଁ କହିଲେ । ଉପରୁ ସେ ସ୍ୱରଟି ଉତ୍ତର ଦେଲା ଯେ, ସେ ଘରେ ନାହିଁ ଏବଂ ଆହୁରି କହିଲା ଯେ ସେମାନେ ଚାଲି ନ ଗଲେ ଗୁଳି ଚଳାଯିବ । ସାଙ୍ଗେ ସାଙ୍ଗେ ବନ୍ଧୁକର ମୁହଁ ଝରକା ବାହାରକୁ ଦେଖାଗଲା । ପିଅନମାନେ ପଳାଇଯାଇ ଗଛ ଆରପଟେ ଆଶ୍ରୟ ନେଲେ ଏବଂ ପୁଲିସ୍‌କୁ ସାହାଯ୍ୟ ପାଇଁ ଡାକ ପକାଇଲେ । ତହୁଁ ଛ'ରୁ ଆଠ ଜଣଯାଏ ସେହି ସାହସୀ ଯୋଦ୍ଧା ସେମାନଙ୍କର ନୂତନ ପରିଚ୍ଛଦର ବୀରତ୍ୱ ନେଇ, କିନ୍ତୁ ରାଇଫଲଗୁଡ଼ାକ ଦୟାପ୍ରକାଶ ପୂର୍ବକ ଛାଡ଼ିଦେଇ ଆଗେଇ ଆସିଲେ । ଏହିପରି ଭାବରେ ପ୍ରସ୍ତୁତ ହୋଇ ସେ ବୀରଦଳଟି ଗୋଟିଏ ଗଛ ପାଖରୁ ଆଉ ଗୋଟିଏ ଗଛ ପାଖକୁ ଘୁଞ୍ଚି ଘୁଞ୍ଚି ଶେଷରେ ଏପରି ଏକ ସ୍ଥାନରେ ପହଞ୍ଚିଲେ ଯେଉଁଠୁ ସେମାନେ ନିରାପଦରେ ବିରାଟ ଫାଟକ ନିକଟକୁ ଧାଇଁଯାଇ ପାରିବେ । ପରେ ଜଣାପଡ଼ିଲା ସେ ଫାଟକ କିଳା ଯାଇ ନ ଥିଲା, ଆଉଜା ହୋଇଥିଲା ମାତ୍ର । ଅଗଣା ଭିତରକୁ ପଶି ସେମାନେ ଦେଖିଲେ ତାହା ଖାଲି । ନିଜ କର୍ତ୍ତବ୍ୟ ସମ୍ପର୍କରେ ଅନିଶ୍ଚିତ ଅବସ୍ଥାରେ ଠିଆ ହୋଇଥିବାବେଳେ ଭିତର ପ୍ରସ୍ଥର କୌଣସି ଆଡୁ ବିରାଟ କୋଳାହଳ ଶବ୍ଦ ଶୁଣିଲେ ଏବଂ ଧାଇଁ ପଳାଇ ଆସି ପୁଣି ଗଛ ପଛଆଡ଼େ ଲୁଚିଗଲେ । ଘରର କଡ଼ରେ ଥିବା ଉଦ୍ୟାନଟି ସବୁ ଦେଶୀୟ ଉଦ୍ୟାନ ପରି ବହଳ ବୃକ୍ଷରାଜିରେ ଘନଲତା ପରିବେଷ୍ଟିତ ହୋଇ ଦୁଷ୍ପ୍ରବେଶ୍ୟ ଆବରଣ ପରି ହୋଇଥିଲା । ସେ ଉଦ୍ୟାନ ଆଡୁ ଖଣ୍ଡା, ବର୍ଚ୍ଛା ଓ ଗୋଟାଏ ଦୁଇଟା ଜଙ୍କ୍‌ଲଗା ପୁରୁଣା ବନ୍ଧୁକ ଧରି ଉଦୟନାରାୟଣର ଅନୁଚରମାନେ ହାତୀରେ ଏକ ଶୋଭାଯାତ୍ରା କରି ଆସିଲେ । ପୋଲିସ୍‌ର କଥା ଅନୁଯାୟୀ ପ୍ରାୟ ୨୦୦ ଲୋକ ସେଥିରେ ଥିଲେ; ୨୦/୩୦କୁ ସାଧାରଣତଃ ୨୦୦ ବୋଲି କୁହାଯାଏ । ପ୍ରଥମ ହାତୀରେ ଜୟନାରାୟଣ ଗୋଟିଏ ସୁନ୍ଦର ଆଧୁନିକ ରାଇଫଲ ଧରି ଏବଂ ଦ୍ୱିତୀୟ ହାତୀରେ ଆମର ଖାତକ ଉଦୟ ମଧ ଅସ୍ତ୍ର ସଜ୍ଜିତ ହୋଇ ଆସୁଥିଲେ । ସେହି ଗହଳି ମଧ୍ୟରୁ ଜଣେ କେହି ଆମର ଜଣେ ପିଅନକୁ ଧରି ତା'ଠାରୁ ପରୱାନାଟି ଛଡ଼ାଇନେଇ ଗୋଟାଏ ବର୍ଚ୍ଛା ଆଗରେ ଲଗାଇଦେଇ ବିଜୟୋଲ୍ଲାସରେ ଫେରିଗଲେ । ସେଇ ସମୟ ମଧ୍ୟରେ ବନ୍ଧୁକଗୁଡ଼ିକ ଆମ ପିଅନ ଓ ସାହସୀ ପୋଲିସ୍‌ମାନଙ୍କ ଆଡ଼କୁ ଲକ୍ଷ୍ୟ କରାଯାଇଥିଲା । ପୋଲିସ୍‌ମାନେ ନିରାପଦ ଦୂରତ୍ୱ ରକ୍ଷା କରିବାରେ ଯଥେଷ୍ଟ ଚେଷ୍ଟା କରିଥିଲେ । ଶୋଭାଯାତ୍ରା ବାହୁଡ଼ିଗଲାବେଳେ ଜୟନାରାୟଣ କଲେକ୍ଟରଙ୍କୁ ତା'ର ସଲାମ ଜଣାଇଦେବାକୁ ଏବଂ ସେ ଯେ ଉଦୟକୁ ତାଙ୍କ ସୀମାର ବାହାରକୁ ନେଇଯାଉଛି ତାହା ଜଣାଇ ଦେବାକୁ ପିଅନମାନଙ୍କୁ ପାଟିକରି କହିଗଲା । ତା'ପରେ ସେମାନେ ଗୋଟିଏ ଛୋଟିଆ ଝରଣା ପାରହୋଇ ପାଖ ଜିଲ୍ଲା ଭାଗଲପୁରକୁ ଚାଲିଗଲେ । ଏପରି କାମର ଉଦ୍ଦେଶ୍ୟ ହେଲା ଯେ ଆମେ ବର୍ତ୍ତମାନ ବିଚାରପତିଙ୍କୁ ପରୱାନା କାର୍ଯ୍ୟକାରୀ କରିବାପାଇଁ କେତେଶହ ମାଇଲ ଦୂରରେ ଥିବା ଭାଗଲପୁରର ବିଚାରପତିଙ୍କ ପାଖକୁ ଲେଖିବାକୁ ଜଣାଇବୁ । ଏଥିପାଇଁ ସମୟ ଲାଗିବ ଏବଂ ତା'ରି ଭିତରେ ରଣଗ୍ରହିତା ଶୂନ୍ୟରେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଯିବ । ଶୋଭାଯାତ୍ରା ଦୃଷ୍ଟିସୀମା ବାହାରକୁ ଯିବାମାତ୍ରେ ପୋଲିସ୍ ସଦର୍ପରେ ଜାଗିଉଠିଲେ; ଘର ମଧ୍ୟରେ ପ୍ରବେଶ କରି ପଛପଟ ଅଗଣାରୁ ଦୁଇଜଣ ବୁଢ଼ା, ଜଣେ ବାସନମଜାଳି ଓ ଜଣେ ମାଳିକୁ ଗିରଫକରି

ଥାନାକୁ ଆଣିଲେ ଏବଂ ଏଇ ଦୁଇଜଣ 'ଦୁର୍ଦ୍ଧର୍ଷ ବଦମାସ'ଙ୍କ ସହ ଗୋଟିଏ ଲମ୍ବା ବିବରଣୀ ପଠାଗଲା ଯେ, ସରକାରୀ କର୍ମଚାରୀଙ୍କୁ କାମରେ ବାଧା ଦେବା ଅପରାଧରେ ସେମାନଙ୍କର ବିଚାର ହେଉ । ଅବଶ୍ୟ ଉପରିବର୍ଣ୍ଣିତ ଘଟଣା ପୋଲିସ୍ ବିବରଣୀରେ ଥିବା ବର୍ଣ୍ଣନାରୁ ବହୁ ପୃଥକ । ଏହା କଡ଼ାକଡ଼ି ଅନୁସନ୍ଧାନ ଫଳରେ ଜଣାପଡ଼ିଲା । ସେ ସମୟରେ ମୁଁ ନିକଟବର୍ତ୍ତୀ ଏକ ଶିବିରରେ ଥିଲି ଏବଂ ପୋଲିସର ଏ ଭୀରୁତା ସମ୍ପର୍କରେ ଆଗରୁ ଯେବେ ଅନୁମାନ କରି ପାରିଥାନ୍ତି, ନିଜେ ପରଓ୍ଵାନା ନେଇ ଯାଇଥାଆନ୍ତି । ପରେ ପରେ ମୁଁ ଟିକିନିଖି ଅନୁସନ୍ଧାନ ଚଳାଇ ପିଅନମାନଙ୍କ ଆଡ଼କୁ ବନ୍ଧୁକ ଦେଖାଇଥିବା ଜୟନାରାୟଣର ଦୁଇଜଣ ଅନୁଚରଙ୍କୁ ଗିରଫ କରିବାରେ ସକ୍ଷମ ହେଲି । ପରଦିନ ସକାଳେ ପ୍ରାୟ ୯ଟାବେଳେ ମୁଁ କୌଣସି କାମରୁ ଘୋଡ଼ାରେ ଏକ ଲମ୍ବା ଗସ୍ତରୁ ଫେରି ତମ୍ବୁ ସାମନାରେ ମୋ ସ୍ତ୍ରୀଙ୍କ ସହ ଆଳାପ ଓ ପୁଅ ଡେଭିଡ୍ ସହ ଖେଳୁଥିବାବେଳେ ଗୋଟିଏ ପାଲିଙ୍କି ଆସି ପହଞ୍ଚିଲା ଏବଂ ଜଣେ ସୌମ୍ୟ ଦେଶୀୟ ବୃଦ୍ଧ ଭଦ୍ରବ୍ୟକ୍ତି ସୁବର୍ଣ୍ଣଖଚିତ ବସ୍ତ୍ର, ଦାମୀ ଫୁଲପକା ପଗଡ଼ି ଓ କାଶ୍ମୀରୀ ଶାଲ ପରିଧାନ କରି ବାହାରି ଆସି ମୋ ପାଖରେ ପହଞ୍ଚି ସସମ୍ମାନ ପ୍ରଣାମ କଲେ । ମୁଁ ଦେଖିଲି ଯେ ଠିକ୍ ସେହି ସମୟରେ— ଯେପରିକି ଦୈବକ୍ରମେ, ମୋ ଜଗୁଆଳିମାନଙ୍କ ମଧ୍ୟରେ ମୁଖ୍ୟ କନେଷ୍ଟବଲ ଦୁଇଟି କନେଷ୍ଟବଲଙ୍କ ସହ ମୋ ପଛରେ ଠିଆ ହୋଇଥିଲେ । ବୃଦ୍ଧ ଭଦ୍ରବ୍ୟକ୍ତି କହିଲେ ଯେ, ସେ ଏବେ ତାଙ୍କର ଦୁଇଜଣ ଚାକରଙ୍କୁ ଗିରଫ କରାଯାଇଛି ବୋଲି ଶୁଣୁଛନ୍ତି । ସେମାନେ ନିର୍ଦ୍ଦୋଷ ବୋଲି ପ୍ରମାଣିତ କରିବା ପାଇଁ ସେ ପ୍ରସ୍ତୁତ । ତେଣୁ ସେମାନଙ୍କୁ ଜାମିନ୍‌ରେ ଛାଡ଼ିଦେବାପାଇଁ ସେ ପ୍ରାର୍ଥନା କଲେ । ସେ କିଏ ବୋଲି ମୁଁ ପଚାରିଲି । ସେ ଉତ୍ତର ଦେଲେ— 'ଆପଣଙ୍କର ଦାସ ଜୟନାରାୟଣ ସିଂହ ।'' ମୁଁ କହିଲି, ''ଓଃ, ତୁମକୁ ତ ମୁଁ ଖୋଜୁଥିଲି— ତାଙ୍କୁ ଗିରଫ କର !'' ବୃଦ୍ଧ ଭଦ୍ରବ୍ୟକ୍ତି ପାଦେ ଦୁଇପାଦ ପଛକୁ ଘୁଞ୍ଚିଗଲେ ଏବଂ ପଳେଇବାଭଳି ଉଦ୍ୟମ କଲେ; କିନ୍ତୁ ହେଡ୍ କନେଷ୍ଟବଲ ଆଗରୁ ସମ୍ଭବତଃ ତାହା ଅନୁମାନ କରିଥିଲା ଏବଂ ଡେଇଁପଡ଼ି ତାଙ୍କୁ ଧରି ପକେଇଲା । ତାଙ୍କୁ ବନ୍ଦୀମାନଙ୍କ ତମ୍ବୁକୁ ଅଣାଗଲା ଏବଂ ସେଠାରେ ମାସେ ପର୍ଯ୍ୟନ୍ତ ରଖାଗଲା । ସେହି ସମୟ ମଧ୍ୟରେ ତାଙ୍କୁ ଅନ୍ୟ ବନ୍ଦୀମାନଙ୍କ ସାଙ୍ଗରେ ହାତକଡ଼ି ଦିଆଯାଇ ଦିନପରେ ଦିନ ଗୋଟିଏ ଶିବିରରୁ ଅନ୍ୟ ଏକ ଶିବିରକୁ ନିଆଗଲା । ଆମେ ପୂର୍ଣ୍ଣିଆକୁ ଫେରିଲା ବେଳକୁ ସାକ୍ଷୀମାନେ ଆସିଯାଇଥିଲେ ଏବଂ ବିଚାର କରାଯାଇ ତାଙ୍କୁ ଦୁଇବର୍ଷ ସଶ୍ରମ କାରାଦଣ୍ଡ ଦିଆଗଲା । ସେ ଅପିଲ କଲା । ଜଜ୍ ମୋ ବିଚାରକୁ ସ୍ୱୀକାର କରିଥିଲେ । ତା'ପରେ ସେ ହାଇକୋର୍ଟ୍‌ରେ ଅପିଲ କଲା । ସେହି ମହିମାନ୍ୱିତ କର୍ମତତ୍ପର ବିଚାର ସଂସ୍ଥାକୁ ଏହି ଅପିଲଟିର ବିଚାର ପାଇଁ ଛ'ମାସ ସମୟ ଲାଗିଲା ଏବଂ ସେହି ସମୟ ମଧ୍ୟରେ ଦିନେ ଦିନେ ମୁଁ ଜେଲ୍ ପରିଦର୍ଶନ କରିବାକୁ ଯାଇ ଦେଖେ ଜୟନାରାୟଣ ଆଉ ସୁନାର ବସ୍ତ୍ର ଓ କାଶ୍ମୀରୀଶାଲ ପିନ୍ଧି ନାହିଁ, କିନ୍ତୁ ଖଣ୍ଡିଏ ଧୋତି ପିନ୍ଧି ଜେଲ ବଗିଚାରେ ବନ୍ଧାକୋବି କୋଡୁଚି । ସେ ସାହସ କରି ମୋ ଆଡ଼େ ଚାହିଁ ହସି ପଚାରିଲା— ''ମୋର ଖଲାସ ହେବା ଆଦେଶ ଆସିଗଲା କି ?'' ମୁଁ ଯେତେବେଳେ ନା ବୋଲି କହିଲି ସେ ଉତ୍ତର ଦେଲା— ''ଠିକ୍ ଅଛି, ଶୀଘ୍ର ଆସିଯିବ ।'' ଖୁବ୍ ଶୀଘ୍ର ଅବଶ୍ୟ ଏହା ଆସିଗଲା । ହାଇକୋର୍ଟ୍ ସାକ୍ଷୀଙ୍କ ଉତ୍ତରର

ଗୋଟିଏ ଛୋଟ ବିଷୟରେ ଅଟକିଯାଇ ଅନ୍ୟଗୁଡ଼ିକୁ ଭୁଲ ବୁଝିଲେ । ଜଣେ ଚତୁର ବାରିଷ୍ଟର କୌଶଳକ୍ରମେ ସମଗ୍ର ମାମଲାଟିକୁ ବୁଲାଇବଙ୍କାଇ ଦେଲେ ଏବଂ ଶେଷରେ ଦ୍ୱିଧାର ସହ ବନ୍ଦୀକୁ ସନ୍ଦେହରେ ଖଲାସ କରି ଜେଲରୁ ମୁକ୍ତ କରିଦେବାକୁ ଆଦେଶ ହେଲା । ଏଥିରେ ଜୟନାରାୟଣଙ୍କର ୬୦୦୦ ଟଙ୍କା ଖର୍ଚ୍ଚ ହେଲା । ସେ ମୁକ୍ତ ହେବାପରେ ଡି.କର୍ସି ଆଗରେ ସ୍ୱୀକାର କରିଥିଲା ଯେ ଅଭିଯୋଗ ସତ୍ୟ । ତା' ଓକିଲ ହାଇକୋର୍ଟକୁ କିପରି ବିଭ୍ରାନ୍ତ କଲେ ସେ ବିଷୟ ହସି ହସି ବର୍ଣ୍ଣନା କଲା । ଏ ବିଷୟରେ ଯଦିଓ ସେ ଏତେ ସାହସ ଦେଖାଉଥିଲା ତଥାପି ମୁକ୍ତ ହେବାର ଅଳ୍ପ କେତେ ମାସପରେ ଭଗ୍ନହୃଦୟରେ ପ୍ରାଣତ୍ୟାଗ କଲା । ଏ ଘଟଣା ଯେତେ ଦୁଃଖଦାୟକ ହେଲେ ମଧ ଅନେକ ମଙ୍ଗଳ କଲା । ପୂର୍ଣ୍ଣିଆର ଉଦ୍ଧତ ଆଇନ ଅମାନ୍ୟକାରୀ, ପ୍ରପୀଡ଼କ ଜମିଦାରମାନେ ଏହା ଦ୍ୱାରା ଶିକ୍ଷାଲାଭ କଲେ ଯେ ସେମାନେ ଆଉ ଆଇନ ଅମାନ୍ୟ କରିପାରିବେ ନାହିଁ କିମ୍ବା ସେମାନଙ୍କ ଇଚ୍ଛାନୁଯାୟୀ ଗରିବ ପଡ଼ୋଶୀମାନଙ୍କ ଉପରେ ଅତ୍ୟାଚାର କରିପାରିବେ ନାହିଁ । ଏହି ଘଟଣାଦିନଠାରୁ ଜିଲ୍ଲାରେ ଏକ ନୂଆ ବାତାବରଣ ଆରମ୍ଭ ହେଲା, ଯେଉଁ ଜିଲ୍ଲାକୁ କି 'ବଙ୍ଗଳାର ସବୁଠାରୁ ଅରାଜକ ଜିଲ୍ଲା' ବୋଲି କୁହାଯାଉଥିଲା । ଏହି ଉନ୍ନତତର ଅବସ୍ଥା ଆଣିବାପାଇଁ ମୁଁ ହେନେରୀ ମାଇକେଲ ଉଏଦରହଲଙ୍କଠାରୁ ସବୁଠାରୁ ଉପାଦେୟ ସାହାଯ୍ୟ ପାଇଥିଲି । ସେ କ୍ରସ୍‌ମ୍ୟାନଙ୍କ ସ୍ଥାନରେ ଜିଲ୍ଲା ସୁପରିଣ୍ଟେଣ୍ଡେଣ୍ଟ ହୋଇ ଆସିଥିଲେ । ତାଙ୍କୁ ମାଇକ୍ ବୋଲି ଡକାଯାଉଥିଲା । ସେ ଭାରତରେ ୟୁରୋପୀୟ ପିତାମାତାଙ୍କଠାରୁ ଜନ୍ମିଥିଲେ, ଅନ୍ତତଃ ସେଇଆ ସେ କହୁଥିଲେ; କିନ୍ତୁ ତାଙ୍କଠାରେ ଏକ ବା ଏକାଧିକ ପୂର୍ବପୂରୁଷଙ୍କଠାରୁ ପ୍ରାପ୍ତ 'କଳାରକ୍ତ' ଯେ ଥିଲା ଏହା ନିଶ୍ଚିତ । ତାଙ୍କ ନିଜ ଘର ହେଉଛି ଶ୍ରୀରାମପୁର ନିକଟସ୍ଥ ରିଷ୍ଡା । ସେ ସାମାନ୍ୟ ଭିନ୍ନ ଉଚ୍ଚାରଣର ଇଂରାଜୀ କହନ୍ତି; କିନ୍ତୁ ବଙ୍ଗଳା ଓ ଉର୍ଦ୍ଦୁ ଠିକ୍ ଦେଶୀୟଙ୍କ ଭଳି କହନ୍ତି । ଦେଶୀ ପୋଷାକ ପିନ୍ଧିଥିବାବେଳେ ତାଙ୍କର ଧୂସରବର୍ଣ୍ଣ ଯୋଗୁଁ ମୁସଲମାନମାନଙ୍କ ମେଳରୁ ସେ ମୁସଲମାନ ରୂପେ ଚଳିଯାଆନ୍ତି । ସେ କୋକିଶିଆଳି ପରି ଧୂର୍ତ୍ତ ଓ ଜନ୍ତୁରୁ ସନ୍ଧାନୀ । ସମଗ୍ର ଜୀବନ ସେ ଦେଶୀୟମାନଙ୍କ ସହ ଚଳିଥିବାରୁ ସେମାନଙ୍କ ରୀତିନୀତି, କୌଶଳ ଓ ଅନ୍ଧବିଶ୍ୱାସଗୁଡ଼ିକ ସମ୍ପର୍କରେ ଭଲଭାବେ ଜାଣିଥିଲେ ଏବଂ ନିଜେ ସମ୍ପୂର୍ଣ୍ଣ ନୀତିହୀନ ହୋଇଥିବାରୁ ଅତ୍ୟନ୍ତ ଧୂର୍ତ୍ତ ଅପରାଧୀମାନଙ୍କ ସହ ଠିକ୍ ତାଳଦେଇ ପାରୁଥିଲେ । ଏହି ମାମଲାଟିରେ ସେ ମୋର ବହୁତ କାମରେ ଆସିଥିଲେ ।

ରାଜା ଲୀଳାନନ୍ଦ ସିଂହଙ୍କର ଜମିଦାରୀ ବିରାଟ ହେଲେ ମଧ ଏଣେତେଣେ ବିଛାଇ ହୋଇଥିଲା । ଈଶ୍ୱରୀପ୍ରସାଦ ଥିଲା ତାଙ୍କର ପ୍ରଧାନ ପରିଚାଳକ ଓ ବିଶ୍ୱସ୍ତ ପ୍ରତିନିଧି । ରାଜା ଥିଲେ ରୋଗଣା, ଆଳସ୍ୟ ପରାୟଣ ଓ ଖୁବ୍ ବଦ୍‌ଖର୍ଚ୍ଚୀ; କିନ୍ତୁ ବେଳେ ବେଳେ ଖୁବ୍ କର୍ମଚଞ୍ଚଳ ହୋଇଉଠୁଥିଲେ । ଥରେ ଏହିପରି ଏକ କର୍ମଚଞ୍ଚଳ ମୁହୂର୍ତ୍ତରେ ସେ ତାଙ୍କ ଜମିଦାରୀ ତନଖି କରି ଦେଖିଲେ ଯେ ଈଶ୍ୱରୀପ୍ରସାଦ ବହୁ କ୍ଷେତ୍ରରେ ଆତ୍ମସାତ୍ ଓ କୁପରିଚାଳନା ଦୋଷରେ ଦୁଷ୍ଟ । ଏଥିରେ ସେ ଭୀଷଣ ରାଗିଯାଇ ତାକୁ କାମରୁ ବହିଷ୍କାର କରିଦେଲେ । ଈଶ୍ୱରୀ ପୂର୍ବପରି ନିଜେ ଓ ନିଜ ବନ୍ଧୁମାନଙ୍କ ନାମରେ ଜମିଦାରୀର ସର୍ବୋତ୍କୃଷ୍ଟ ଜମିସବୁ ବହୁଦିନ ବ୍ୟାପୀ ପଟା ନେଇଥିଲା ଏବଂ ବହୁବର୍ଷ ଧରି ଖଜଣା ଦେଉ ନ ଥିଲା । ରାଜା ପୂର୍ବର ବାକିଆ ଟଙ୍କା

୪୦,୦୦୦ ପାଇଁ ତା'ଉପରେ ନାଲିସ କଲେ । ଏହା ତା'ଠାରୁ ଥିବା ପ୍ରାପ୍ୟର ଅଂଶ ମାତ୍ର । ମାମଲାଟି ଜଣେ ବୃଦ୍ଧ ଅଭିଜ୍ଞ ମିଶ୍ରିତ ଜାତିର ଡେପୁଟି କଲେକ୍ଟର ରିକେଟ୍ ଅନୁସନ୍ଧାନ କରୁଥିଲେ । ସ୍ୱପକ୍ଷ ସମର୍ଥନବେଳେ ପ୍ରତିବାଦୀ ଗୋଟିଏ ଦଲିଲ ଦାଖଲ କରି ଉଭୟ ବାଦୀ ଓ ବିଚାରାଳୟକୁ ଆଶ୍ଚର୍ଯ୍ୟାନ୍ୱିତ କରିଦେଲା । ଏହି ଦଲିଲଟି ଆପାତତଃ ଠିକ୍ ଥିଲା ଏବଂ ସେଥିରେ ରାଜାଙ୍କର ମୁଦ୍ରାଙ୍କନ ଥିଲା । ସେଥିରୁ ରାଜା ପୂରା ପରିମାଣ ଟଙ୍କା ପାଇଥିବାର ସୂଚିତ ହେଉଥିଲା । ରିକେଟ୍ଙ୍କ ଅଭିଜ୍ଞ ଆଖିରେ କିନ୍ତୁ ତାହା ଜାଲ ବୋଲି ଧରାପଡ଼ିଗଲା ଏବଂ ସେ ସେଇ ଅଭିଯୋଗରେ ଫୌଜଦାରୀ ବିଚାରାଳୟରେ ତାହାର ବିଚାର ପାଇଁ ନିର୍ଦ୍ଦେଶ ଦେଲେ । ମାଇକ୍ ଉଏଦରହଲ ତାଙ୍କ ସ୍ୱକୀୟ ରହସ୍ୟଜନକ ଉପାୟରେ କାମରେ ଲାଗିପଡ଼ିଲେ ଏବଂ ତୁରନ୍ତ ପ୍ରମାଣ ଦାଖଲ କଲେ ଯେ ରାଜାଙ୍କ ମୋହର ଯେଉଁ ବାକ୍ସରେ ଥାଏ ତାହା ଅପସାରିତ ହୋଇ ମହମରେ ତା'ର ଏକ ନକଲ ତିଆରି ହୋଇଛି ଏବଂ ସେ ବିଷୟ ଜଣାଯିବା ପୂର୍ବରୁ ପୁଣି ଆଣି ରଖି ଦିଆଯାଇଛି । ଈଶ୍ୱରୀକୁ ଏ ବିଷୟରେ ସାହାଯ୍ୟ କରିବା ଲୋକଙ୍କୁ ମଧ୍ୟ ସେ ଖୋଜି ଧରିଲେ ଏବଂ ସେମାନଙ୍କ ଅପରାଧକୁ ବିଶ୍ୱାସଯୋଗ୍ୟ ଭାବରେ ଉପସ୍ଥାପିତ କରାଇଲେ । ଈଶ୍ୱରୀ ଓ ତା'ର ସହକର୍ମୀମାନଙ୍କୁ ଜାଲ କରିବା ଓ ଜାଲ ଦଲିଲ କରିବା ଅପରାଧରେ ସେସନ ବିଚାରପାଇଁ ପଠାଇ ଦିଆଗଲା । ସେମାନେ କଲିକତାରୁ ଜଣେ ବାରିଷ୍ଟର ଅଣାଇଲେ । ସେହି ବାରିଷ୍ଟର କୋରିଟନ ଭାରତକୁ ନୂଆ କରି ଆସିଥିଲେ ; ସେ ନିଜ ମହକିଲମାନଙ୍କର ଆତ୍ମରକ୍ଷାର ସାମାନ୍ୟତମ ଯୁକ୍ତି ନାହିଁ ବୋଲି ଜାଣିପାରି ଅନ୍ୟପକ୍ଷକୁ ଗାଳିଗୁଲଜ ଦେବା ଆରମ୍ଭ କରିଦେଲେ । ରାଜାଙ୍କ ଜଙ୍ଘରେ ପାକ୍ଷା ଥିବାରୁ ସେ ଚାଲିପାରୁ ନଥିଲେ ଏବଂ ବିଚାରାଳୟକୁ ବୁହାହୋଇ ଆସିଲେ ଏବଂ ଦେଶୀୟମାନଙ୍କ ପ୍ରତି ସାଧାରଣତଃ ଯେଉଁ ସୌଜନ୍ୟ ଦେଖାଇବା କଥା ତଦନୁଯାୟୀ ବିଚାରପ୍ରତି ତାଙ୍କୁ ବେଞ୍ଚରେ ବସିବାକୁ ଦେଲେ । ସେ ସାକ୍ଷୀ ଅଡ଼ା ମଧ୍ୟରେ ଠିଆ ହୋଇ ପାରି ନ ଥାନ୍ତେ । କରିଟନ ଏହାର ପ୍ରତିବାଦ କଲେ; କିନ୍ତୁ ଗମ୍ଭୀର ଅଭିଜ୍ଞ ବୃଦ୍ଧ ବିଚାରପତି ମୁସ୍‌ପ୍ରାଟ୍ ତାଙ୍କୁ ଚୁପ୍ କରାଇଦେଇ କହିଲେ— ''ଶ୍ରୀ କରିତନ ! ଆପଣଙ୍କର ଯାହା କିଛି ପଚାରିବା କଥା ସେତିକିରେ ନିଜକୁ ସୀମିତ ରଖିଲେ ମୁଁ ଆପଣଙ୍କୁ ଧନ୍ୟବାଦ ଦେବି; ସାକ୍ଷୀ କେଉଁଠି ବସି ତାହା ସ୍ଥିରକରିବା ମୋର କାମ ।'' କୋରିଟନ୍‌ଙ୍କର ଓଲଡ୍‌ବେଲୀ ଭଙ୍ଗୀ ଓ ତାଚ୍ଛଲ୍ୟର ସ୍ୱର ରାଜାଙ୍କ ପାଖରେ କିଛି ବି କାମ ଦେଲା ନାହିଁ, କାରଣ ରାଜା ଇଂରାଜୀରେ ଗୋଟିଏ ଶବ୍ଦ ମଧ୍ୟ ବୁଝିପାରୁ ନ ଥିଲେ ଏବଂ ତାଙ୍କୁ ଯେ ପଚରାଯାଉଛି ତାହା ମଧ୍ୟ ଜାଣିପାରୁ ନ ଥିଲେ । 'ମନେ ରଖନ୍ତୁ ମହାଶୟ, ଆପଣ ଶପଥ ପାଠ କରିଛନ୍ତି' ଏ ଧରଣର ସତ୍ୟ ବାକ୍ୟସମୂହ ସମ୍ପୂର୍ଣ୍ଣ ନିଷ୍ଫଳ ହୋଇଗଲା ।

ତାଙ୍କର କେତେ ଚାକର ଅଛନ୍ତି ବୋଲି ପ୍ରଶ୍ନ ରାଜାଙ୍କୁ ଅନୁବାଦ କରି ଶୁଣାଇ ଦେବାରୁ ରାଜା ଟିକିଏ ହସି କହିଲେ, ''ତାଙ୍କର କିଛି ଧାରଣା ନାହିଁ ।'' ଏଥିରେ ଉତ୍ତେଜିତ ହୋଇ କୋରିଟନ ତାଙ୍କ ଉପରେ ଗର୍ଜନ ତର୍ଜନ କରି କହିଲେ, ''ମହାଶୟ ! ଆପଣ କ'ଣ କୋର୍ଟକୁ କହିବାକୁ ଚାହାନ୍ତି ଯେ ଆପଣ ସତରେ କିଛି ଜାଣନ୍ତି ନାହିଁ'' ଇତ୍ୟାଦି । କିନ୍ତୁ ମୁସ୍‌ପ୍ରାଟ୍ ପୁଣି ତାଙ୍କୁ ବାଧାଦେଇ ନିଜ ମତ ବ୍ୟକ୍ତ କଲେ ଯେ ରାଜାଙ୍କର କେତେ ଚାକର ଅଛନ୍ତି ତାହା ସେ

ଜାଣି ନ ପାରିବା ଖୁବ୍ ସମ୍ଭବ । ପ୍ରକୃତରେ ଯଦି ସେ ଆଇନଜ୍ଞ କେବେ ରାଜାଙ୍କର ବହୁ ଅଗଣାବିଶିଷ୍ଟ ପ୍ରାସାଦ ଏବଂ ବହୁ ଆଶ୍ରିତମାନଙ୍କ ଦ୍ୱାରା ପୂରିତ ଗାଁ ପରି ଖୁନ୍ଦିଖାନ୍ଦି ହୋଇ ଥିବା ବାହାରିଆ ଘରସବୁ ଦେଖିଥାଆନ୍ତେ ସେ ଏପରି ପ୍ରଶ୍ନ ପଚାରି ନ ଥାନ୍ତେ । ସବୁ ପ୍ରମାଣ ନିଆଯିବା ପରେ କୋରିଟନ ଭାରତରେ ଥିବା ଅନ୍ୟାନ୍ୟ ବାରିଷ୍ଟରଙ୍କର ପରି ଲମ୍ବା ବକ୍ତୃତାଟିଏ ଦେଲେ; କିନ୍ତୁ ସେତେବେଳେ ସେ ଭୁଲିଗଲେ ଯେ ଏ ବକ୍ତୃତା ସେ ସରଳ ହୃଦୟର ଓ ସହଜରେ ପ୍ରଭାବିତ ହୋଇପାରୁଥିବା ଏକ ଜୁରୀ ଆଗରେ ଦେଉ ନାହାନ୍ତି, ଦେଉଛନ୍ତି କଠିନ ହୃଦୟର ଜଣେ ବିଚାରପତିଙ୍କ ଆଗରେ ଯେ କି ତାଙ୍କ ବାଗ୍ମିତାରେ ଟିକିଏ ମଧ୍ୟ ପ୍ରଭାବିତ ହେବେ ନାହିଁ । ଏ ସମ୍ପର୍କରେ ମୁସ୍‌ପ୍ରାଟ କହୁଥିଲେ ଯେ, ବହୁ ପରିମାଣରେ ଫିସ୍ ନେଇଥିବାରୁ ବାରିଷ୍ଟର ଏତେ ଘଣ୍ଟାଧରି କହିବାକୁ ବାଧ୍ୟ ଥିଲେ କିନ୍ତୁ ସେ (ମୁସ୍‌ପ୍ରାଟ୍) ସେହି ସମୟ ମଧ୍ୟରେ ନିଜେ କରିଥିବା ନୋଟକୁ ଦେଖି ପ୍ରମାଣଗୁଡ଼ିକର ଗୁରୁତ୍ୱ ନିରୂପଣ କରି କ'ଣ ଦଣ୍ଡ ଦିଆଯାଇପାରେ ସେ ସମ୍ପର୍କରେ ଚିନ୍ତା କରୁଥିଲେ । ଏହି ସମୟରେ କୋରିଟନ ନିଜ ମହକିଲ ସପକ୍ଷରେ କିଛି କହି ନ ପାରି ଉଏଦରଅଲ, ରିକେଟ ଓ ଶେଷକୁ ମୋତେ ଗାଳି ଦେବାକୁ ଲାଗିଲେ । ସେ 'ଏହି ଜନ ବୀମ୍‌ସ- ଏହି ମ୍ୟାଜିଷ୍ଟ୍ରେଟ' କହି ଏତେ ପ୍ରଳାପ କଲେ ଯେ ଶେଷକୁ ମୁସ୍‌ପ୍ରାଟ ତାଙ୍କୁ ଚାହିଁ କହିଲେ, ''ଆମେ ଜନ ବୀମ୍‌ସଙ୍କ ବିଚାର କରୁ ନାହୁଁ, ଈଶ୍ୱରୀ ପ୍ରସାଦର କରୁଛୁ । ମୋର ଅନୁରୋଧ ଆପଣଙ୍କ ମତାମତ ତା'ରି ବିଷୟରେ ସୀମିତ ରଖିବେ ।''

ଈଶ୍ୱରୀ ପ୍ରସାଦ ୧୪ବର୍ଷ ଜେଲ ଗଲା ଓ ତାକୁ ଆଣ୍ଡାମାନ ଦ୍ୱୀପକୁ ପଠାଇ ଦିଆଗଲା । କୋରିଟନ ବହୁ ପରିମାଣରେ ଉପହସିତ ହେଲେ ଏବଂ ମୁଁ ସାଧାରଣରେ ଯେଉଁ ସହାନୁଭୂତି ଲାଭ କଲି ସେଥିରେ ମୋ କ୍ରୋଧ ଶାନ୍ତ ହୋଇଗଲା । ଏହା ବୋଧହୁଏ ଏକ ଚରମ ଦୃଷ୍ଟାନ୍ତ; କିନ୍ତୁ ଭାରତରେ ଥିବା ବାରିଷ୍ଟର ଓ ସିଭିଲ କର୍ମଚାରୀମାନଙ୍କ ମଧ୍ୟରେ ଚିରନ୍ତନ ଓ ସମ୍ଭବତଃ ସହଜାତ ଶତ୍ରୁତା ରହିଆସିଛି ।

କିନ୍ତୁ ବିଚାର ସମ୍ପର୍କୀୟ କାମ ଜଣେ ଜିଲ୍ଲା ମାଜିଷ୍ଟ୍ରେଟର ଏକମାତ୍ର ବା ପ୍ରଧାନ କାମ ମଧ୍ୟ ନୁହେଁ । ପରିଷ୍କାର ପରିଚ୍ଛନ୍ନତା ପ୍ରତି ମଧ୍ୟ ସେତେବେଳେ ଦୃଷ୍ଟି ଦେବାକୁ ପଡୁଥିଲା ଏବଂ ତାହା ଏକ ଜଟିଳ ସମସ୍ୟା ରୂପେ ଦେଖା ଦେଉଥିଲା । ଦେଶୀୟମାନଙ୍କର ଅତ୍ୟନ୍ତ ଅପରିଷ୍କାର ଅଭ୍ୟାସସବୁ ଆପାତତଃ ଜ୍ଞାନକୃତ ବା ଇଚ୍ଛାକୃତ ନୁହେଁ; କିନ୍ତୁ ଠିକ୍ ସେହି କାରଣରୁ ସମୂହ ଜନତା ମଧ୍ୟରୁ ତାକୁ ଲୋପ କରିବା ଦୁଃସାଧ୍ୟ ଥିଲା । ତା ସାଙ୍ଗକୁ ନର୍ଦ୍ଦମା ଓ ସଫାଇ ସମସ୍ୟା ଜଡ଼ିତ ହୋଇ ବଙ୍ଗଳାରେ ଥିବା ଅନେକ ସହରରେ ଆମର ସମସ୍ତ ଚେଷ୍ଟା ପଣ୍ଡ କରୁଥିଲା । ପୂର୍ଣ୍ଣିଆକୁ ଏକ ସହର କୁହାଯାଉଥିଲେ ମଧ୍ୟ ପ୍ରକୃତରେ ତାହା ଥିଲା ସନ୍ତସନ୍ତିଆ ଭୂମି ଉପରେ ଏଣେତେଣେ ବିଶୃଙ୍ଖଳିତ ଭାବରେ ବଢ଼ି ଉଠିଥିବା, ଗହଳ ଗଛଲତା ଓ ବାଉଁଶ ବଣରେ ଘୋଡ଼େଇ ହୋଇ ପଡ଼ିଥିବା ଛୋଟ କୁଡ଼ିଆ ଘରମାନଙ୍କର ସମଷ୍ଟି । ଯେଉଁଆଡ଼େ ଯାଅ ଦେଖିବ ସ୍ଥିର କଳାପାଣିର ଗଡ଼ିଆମାନଙ୍କ ଉପରେ ଦଳ ମାଡ଼ିଯାଇଛି ଓ ପାଖଘରୁ ନର୍ଦ୍ଦମା ପାଣି ଆସି ତାହା ଦୁର୍ଗନ୍ଧମୟ ହୋଇଯାଇଚି । ଅଙ୍କାବଙ୍କା ହୋଇ ପଡ଼ିଥିବା ଅଣଓସାରିଆ ରାସ୍ତାର ଦୁଇକଡ଼ରେ ଜାଗାକୁ ଜାଗା କଳା ପଚପଚିଆ କାଦୁଅରେ ଅସଂଖ୍ୟ ପୋକଜୋକ, ଘର ଓ

କୁଡ଼ିଆଗୁଡ଼ାକର କାନୁସବୁ ଖିଉଳିରେ ସବୁଜ, ପ୍ରତ୍ୟେକ ବାଡ଼ ଓ ବୁଦା ପାଇଖାନାରେ ପରିଣତ ହୋଇ ଅବର୍ଣ୍ଣନୀୟ ଦୁର୍ଗନ୍ଧରେ ପୂର୍ଣ୍ଣ । ଲୋକସଂଖ୍ୟାର ଦଶରୁ ନ' ଭାଗ ଦାରିଦ୍ର୍ୟ ଓ ଅଜ୍ଞତାର ନିମ୍ନତମ ସ୍ତରରେ ଏବଂ ଅପେକ୍ଷାକୃତ ଧନୀ ଓ ଶିକ୍ଷିତ ଶ୍ରେଣୀ ମଧ୍ୟ ଅନ୍ୟାନ୍ୟଙ୍କ ପରି ପରିଚ୍ଛନ୍ନତା ବିଷୟରେ ଉଦାସୀନ । ସବୁ ବଡ଼ ସହର ପରି ପୂର୍ଣ୍ଣିଆ ମଧ୍ୟ ଏକ ନଗରପାଳିକା ଗଢ଼ିଥିଲା । ସେଥିରେ ନଗରପାଳିକା ସଭ୍ୟମାନେ ଥିଲେ ଯେଉଁମାନଙ୍କର କି ରାସ୍ତା ତିଆରି, ସଂରକ୍ଷଣ, ସଫାଇ ଏବଂ ଅନ୍ୟାନ୍ୟ ଜନହିତକର କାର୍ଯ୍ୟପାଇଁ ଟିକସ ବସାଇବାର କେତେକ କ୍ଷମତା ଥିଲା; କିନ୍ତୁ ଅର୍ଥର ସବୁବେଳେ ନିଅଣ୍ଟ ହେଉଥିଲା ଏବଂ ଯେଉଁ ଅଧଡଜନେ ଓକିଲ ଓ ବ୍ୟବସାୟୀ ନଗରପାଳିକା କମିଶନର ରୂପେ ନିଯୁକ୍ତ ହେଉଥିଲେ ସେମାନେ ସେହି ନିଯୁକ୍ତିର ଉଦ୍ଦେଶ୍ୟ ବୁଝୁ ନ ଥିଲେ କି ସେଥିପାଇଁ ଚେଷ୍ଟିତ ନ ଥିଲେ । ବାସ୍ତବରେ ଧନୀ ନାଗରିକମାନଙ୍କର ଘର ଓ ବଗିଚାସବୁ ଥିଲା ସହରର ସବୁଠାରୁ ଅପରିଚ୍ଛନ୍ନ ସ୍ଥଳ ଏବଂ ସେଥିରେ ହସ୍ତକ୍ଷେପର କୌଣସି ଉଦ୍ୟମକୁ ସେମାନେ ପ୍ରବଳ ବିରୋଧ କରୁଥିଲେ । ଡାକ୍ତର ଓ ମୁଁ କେବଳ ଏ ବିଷୟରେ ଯାହା କିଛି କରୁଥିଲୁ । ମଇଳା ଆବର୍ଜନା ସଫାକରିବା ପାଇଁ ଝାଡୁଦାରଙ୍କୁ ରଖିବାରେ, ଜଙ୍ଗଲ ସବୁ ସଫା କରିବାରେ ଏବଂ ନିଜ ହାତକୁ ପରିଷ୍କାର ରଖୁ ନ ଥିବା ଲୋକଙ୍କୁ ଜୋରିମାନା କରିବାରେ ଆମେ ଯେତିକି ପାରିଲୁ କଲୁ। ନର୍ଦ୍ଦମାସବୁ ଖୋଳାଯାଇ ସଫା କରାଗଲା, ରାସ୍ତା ଓ ପୋଲସବୁ ମରାମତି କରାଗଲା ଏବଂ ଆଉ କେତେକ ଉନ୍ନତ ବ୍ୟବସ୍ଥା ପ୍ରଚଳନ କରାଗଲା । ଦୈନିକ ସକାଳେ ଘୋଡ଼ାରେ ସହରସାରା ଓଭରସିଅରଙ୍କ ସାଙ୍ଗରେ ବୁଲିବା, କାମ ବରାଦ କରିବା, ତାହା କାର୍ଯ୍ୟକାରୀ ହେଲା କି ନା ଦେଖିବା ମୋର ଅଭ୍ୟାସ ହୋଇଗଲା; କିନ୍ତୁ ଏ କାମ ଥିଲା ନିହାତି ନୈରାଶ୍ୟଜନକ ଓ ସେଥିରେ ସଫଳତା ମିଳିଲା ନାହିଁ । ମ୍ୟାଲେରିଆ ସବୁଦିନେ ଲାଗିରହିଲା ଏବଂ ତା ଫଳରେ ପ୍ଲିହାବୃଦ୍ଧି, ହଇଜା କେବେ ସମ୍ପୂର୍ଣ୍ଣ ଗଲା ନାହିଁ । ସମସ୍ତ ଲୋକେ ରକ୍ତହୀନ, କ୍ଷୁଦ୍ରକାୟ ଓ ବେମାର ହୋଇଗଲେ ।

ନିଆଁ ଥିଲା ମୋର ସବୁଠାରୁ ବଡ଼ ସହାୟକ । ମାର୍ଚ୍ଚଠାରୁ ଜୁନ୍ ପର୍ଯ୍ୟନ୍ତ ପଶ୍ଚିମରୁ ଶୁଖିଲା ପବନ ବହେ ଏବଂ ଦିନବେଳା ପବନ ଥାଏ ଚୁଲାରୁ ଆସୁଥିବା ବାୟୁପରି । ଅଧିକାଂଶ ଲୋକ ଯେଉଁ କୁଡ଼ିଆଘରେ ରହୁଥିଲେ, ସେ ସବୁର କାନୁ ବାଉଁଶ ତଲେଇରେ ଓ ଛପର ଘାସରେ ହୋଇଥାଏ । ଏଇସବୁ ଦଗ୍ଧ ପ୍ରବଣ ଘର ଭିତରେ ମାଟିଚୁଲିରେ ସ୍ତ୍ରୀଲୋକ ଜଣେ ଖାଦ୍ୟ ରାନ୍ଧୁଥିବାବେଳେ ନିଆଁର ଝୁଲଟିଏ ଶୁଖିଲା ନଡ଼ାରେ ଲାଗିଗଲା ତ ମୁହୂର୍ତ୍ତକ ମଧ୍ୟରେ କୁଡ଼ିଆଟା ଜଳି ଉଠିବ । ଘଣ୍ଟାକ ମଧ୍ୟରେ ସମଗ୍ର ବଜାରରେ ନିଆଁ ଲାଗିଯାଏ ଏବଂ ଅଳ୍ପ ସମୟରେ ମାଇଲିଏ ବା ବେଶି ଦୀର୍ଘ ରାସ୍ତାରେ ଘରସବୁ ପୋଡ଼ି ମାଟିରେ ମିଶିଯାଏ । ଜୀବନହାନୀ ହୁଏ ନାହିଁ ଓ ଧନହାନୀ ଖୁବ୍ କମ୍ ହୁଏ । ମେହେନ୍ତରମାନଙ୍କୁ ଗଦାଗଦା ଅଳିଆ ସଫା କରିବାକୁ ବିରାଟ ସୁଯୋଗ ମିଳେ; କିନ୍ତୁ ନିଆଁ ଖାଇଥାଏ ଆହୁରି ବେଶି । ଲୋକେ ତାଙ୍କ ସାମାନ୍ୟ କୁଡ଼ିଆଟିମାନ ଶୀଘ୍ର ତିଆରି କରି ଦିଅନ୍ତି ଏବଂ ନିଆଁ ଲାଗିଥିବା ଅଞ୍ଚଳଟି ଅନେକ ବର୍ଷ ପର୍ଯ୍ୟନ୍ତ ଅସ୍ୱାଭାବିକ ଭାବରେ ସ୍ୱାସ୍ଥ୍ୟକର ରହେ ।

ଥରେ ମୁଁ ଜିଲ୍ଲା ଭିତରେ ବ୍ୟାପକ ସତୁରି ମାଇଲଯାଏ ଘୋଡ଼ାରେ ବୁଲି କ୍ଲାନ୍ତ ହୋଇ ଘରକୁ ଫେରିଲାବେଳକୁ ଦେଖିଲି ଯେ ବହଳିଆ ଧୂଆଁର ସ୍ତମ୍ଭ ଉଠୁଚି । ଉତ୍କଣ୍ଠିତ ହୋଇ ମୁଁ ଆଗେଇ ଆସିଲି, କାରଣ ଆମ ଘର ଥିଲା ଛପର ଘର ଏବଂ ଏସବୁ ଘର କେତେ ଶୀଘ୍ର ଜଳିଯାଏ ମୁଁ ଜାଣେ । ବାଟରେ ମୋ ପୁଅ ଓ ସେମାନଙ୍କ ଆୟାକୁ ପାଲିଙ୍କିରେ ଯାଉଥିବା ଦେଖିଲି । ମୋ ସ୍ତ୍ରୀ ସେମାନଙ୍କ ନିରାପତ୍ତା ପାଇଁ ପଡ଼ୋଶୀଘରକୁ ପଠାଇଦେଇ ଆସବାବ ଓ ଯେଉଁ ଅଳ୍ପ ମୂଲ୍ୟବାନ୍ ଦ୍ରବ୍ୟ ଥିଲା ସେ ସବୁ ବଗିଚାକୁ କାଢ଼ି ଆଣିଥିଲେ । ହତାରେ ଥିବା ଘାସରେ ମାତ୍ର ନିଆଁ ଲାଗିଥିଲା; କିନ୍ତୁ ଜୋର ପବନରେ ନିଆଁ ମାଡ଼ିଯାଉଥିଲା ଏବଂ ଘର ଆଉ ବେଶି ଦୂର ନ ଥିଲା । ଚାକରମାନେ ଏଣେତେଣେ ଧାଇଁ ବିଶୃଙ୍ଖଳିତ ଭାବରେ ମାଠିଆରେ ପାଣି ପକାଉଥିଲେ । କେତେବେଳେ ପାଣି ନିଆଁରେ ପଡ଼ିଲା ତ କେତେବେଳେ ନାହିଁ । ମୁଁ ମୋ ଲମ୍ବା ଘୋଡ଼ସବାର ଜୋତାକୁ ଖୋଲି ପକାଇ ସେଥିରେ ପାଣି ଭର୍ତ୍ତିକରି ଚରି ଆସୁଥିବା ନିଆଁ ଉପରେ ଯତ୍ନରେ ଛିଞ୍ଚିଲି । ଚାକରମାନଙ୍କ ଦ୍ୱାରା ଗଛଡାଳ ସବୁ ଅଣାଇ, ପତ୍ରରେ ଯଥେଷ୍ଟ ପାଣିପକାଇ ନିଆଁ ଉପରେ ତାକୁ ପିଟିବାକୁ କହିଲି । ଘଣ୍ଟାଏ ମଧ୍ୟରେ ଆମେ ଲିଭାଇ ଦେଲୁ । ସେ ଅଞ୍ଚଳରେ ଅଧିକାଂଶ ଲୋକଙ୍କ ପରି ଆମେ ସେବର୍ଷ ଆମ ହତାରେ ଓଟ୍ ଫସଲ କରିଥିଲୁ । ସେସବୁ କଟାଯାଇ ଅମଳ ହେଉଥିବାବେଳେ ପାଖ କୁଡ଼ିଆ ଘରୁ ଜଳନ୍ତା କୁଟାଖଣ୍ଡେ ଆସି ଖଳାରେ ପଡ଼ିଲା ଏବଂ ପୂରା ଜାଗାଟାକୁ ଜାଳିଦେଲା ।

ଭବିଷ୍ୟତରେ କେବଳ ମୋତେ ନୁହେଁ ସରକାରୀ ଅଫିସରମାନଙ୍କୁ ବିପଦରୁ ରକ୍ଷା କରିବା ପାଇଁ ମୁଁ ସେ ଜାଗାରେ ପଶ୍ଚିମରେ ଥିବା ଦେଶୀୟ ଗ୍ରାମକୁ ସରକାରୀ ନିବାସସବୁ ଘୁଞ୍ଚାଇ ଦେବାକୁ ସଙ୍କଳ୍ପ କଲି ଏବଂ ଏ ସମ୍ପର୍କରେ ତା'ର ମାଲିକ ରାଜା ଲୀଳାନନ୍ଦ ସିଂହଙ୍କୁ ନିର୍ଦ୍ଦେଶ ଦେଲି । ସେ ସେହି ଗ୍ରାମକୁ ଉଠାଇ ଦୁଇମାଇଲ୍ ଦୂରରେ ଗଢ଼ିଦେଲେ । ତା'ପରେ ମୁଁ ଦକ୍ଷିଣଦିଗରେ ସରକାରୀ ଜାଗାରେ ବଡ଼ ବଜାରଟିଏ ବସାଇଲି । ଏହା କ୍ରମୋନ୍ନତି ଲାଭ କଲା, କାରଣ ଦେଶୀୟ ବଜାର ଚାରିମାଇଲ ଦୂରରେ ଥିଲା ଏବଂ ସେଠା ବାସିନ୍ଦାମାନେ ଜିନିଷପତ୍ର ଆଣିବାପାଇଁ ଚାକରକୁ ପଠାଉଥିଲେ । ସେ କାମରେ ଦିନର ଅଧା ଚାଲିଯାଉଥିଲା । ମୋ ନୂଆ ବଜାରରେ ହାତ ପାଖରେ ଆବଶ୍ୟକୀୟ ଜିନିଷ ମିଳିଲା । ଦେଶୀୟମାନଙ୍କ ଅନୁରୋଧକ୍ରମେ ମୁଁ ତାହାର ନାମ ''ବୀମସ୍‌ଗଞ୍ଜ'' ରଖିବାକୁ ସମ୍ମତ ହେଲି ।

ପଚିଶ ବର୍ଷ ପରେ ୧୮୮୯ରେ ମୁଁ ସେଠାକୁ ଯାଇ ତାହା ଏକ ସମୃଦ୍ଧିଶାଳୀ ବିପଣୀରେ ପରିଣତ ହୋଇଥିବା ଦେଖିଲି ।



# ଦ୍ୱାଦଶ ପରିଚ୍ଛେଦ

## ପୂର୍ଣ୍ଣିଆ : ୧୮୬୪-୬୬

ବର୍ତ୍ତମାନ ମୋ ଚାକିରିରେ ଆସିଲା ଏକ ଗୁରୁତ୍ୱପୂର୍ଣ୍ଣ ସମୟ । ୧୮୬୪ ସେପ୍ଟେମ୍ବରରେ ସରକାର ଭୁଟାନ ସହ ଯୁଦ୍ଧ କରିବାକୁ ମନସ୍ଥ କଲେ । ଏହାର କିଛି ପୂର୍ବରୁ ବଙ୍ଗ ସରକାରଙ୍କ ସେକ୍ରେଟାରୀ ମାନ୍ୟବର ଆସଲେ ଏଡ଼େନ ଏହି ବଣ୍ୟ ପାର୍ବତ୍ୟ ରାଜ୍ୟକୁ ଦୌତ୍ୟରେ ଯାଇଥିଲେ ଏବଂ ରାଜାଙ୍କ ଦରବାରରେ ପହଞ୍ଚିବା ପରେ ଭୟଙ୍କର ଅପମାନିତ ହେଲେ । ଜଣେ ଦର୍ଶକ ତା'ପାଟିରୁ ଚୋବା ହୋଇଥିବା ଗୁଆ କାଢ଼ି ଏଡ଼େନଙ୍କ ମୁହଁ ଉପରକୁ ଫୋପାଡ଼ିଲା । ସେ ଦାଗକୁ ଲିଭାଇବାକୁ ପଡ଼ିବ ଏବଂ ଏହି 'ମିଥ୍ୟା ଟାରେନ୍‌ଟମ୍‌ର କୁକୁର'ମାନଙ୍କୁ ଏହି ଅପମାନ ପାଇଁ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । ବିରାଟ ସଂଖ୍ୟକ ସୈନ୍ୟ ଦୁଇଟି ସ୍ତମ୍ଭରେ ଭୁଟାନରେ ପଶିବାର ସ୍ଥିର ହେଲା ଏବଂ ସମସ୍ତ ବାମପଟର ସ୍ତମ୍ଭଟି ମୋ ଜିଲ୍ଲା ଦେଇ ଯାଉଥିଲା ।

ଭାରତୀୟ ଜିଲ୍ଲା ମାଜିଷ୍ଟ୍ରେଟ୍-କଲେକ୍ଟରମାନେ ଥିଲେ ଅନେକ ପରିମାଣରେ ଇଜିପ୍ଟ ଦେଶ କାରାଗାରର ଯୋଶେଫପରି 'ଯାହା କିଛି କରାଯାଏ ସେ ତା'ର କର୍ତ୍ତା' । ଟୀକାଦାନଠାରୁ ଶିକ୍ଷା, ଦୁର୍ଭିକ୍ଷ ନିରୋଧଠାରୁ ଜେଲ ଅପରାଧୀଙ୍କ କମ୍ବଳ ଗଣତି; ଜନଗଣନାଠାରୁ ସୈନ୍ୟବାହିନୀ ଯାଉଥିବାବେଳେ ତାଙ୍କୁ ଖୁଆଇବା ଏସବୁ କାମ ତା' ଉପରେ ପଡ଼େ । ଯଦି ସେ ସାମାନ୍ୟ ପ୍ରତିବାଦ କରେ ବା ସମସ୍ତ କାମ ସଫଳତାର ସହ କରି ନ ପାରେ ତେବେ ଦଣ୍ଡସ୍ୱରୂପ ତା' ପଦୋନ୍ନତି ବନ୍ଦହୁଏ; ସାଧାରଣରେ ତିରସ୍କାର କରାଯାଏ ଏବଂ କମ୍ ଗୁରୁତ୍ୱପୂର୍ଣ୍ଣ ପଦବୀକୁ ଖସାଇ ଦିଆଯାଏ । ସେ ଯଦି ସବୁ ଭଲଭାବରେ କରେ ତେବେ ସେ ଆଗ୍ରହୀ ଥିଲେ କିଛି ପୁରସ୍କାର ପାଇପାରେ । ଯଦି ତା'ର କ୍ଷମତାସୀନ କୌଣସି ବନ୍ଧୁ ନ ଥାନ୍ତି, ତେବେ ସେ ଧର୍ମଶାସ୍ତ୍ରର ପାଠ ଅନୁଯାୟୀ ଧ୍ୟାନ କରେ— ''ଆମଭଳି ଭୃତ୍ୟଙ୍କଠାରୁ ଲାଭ କିଛି ନାହିଁ; ଆମର ଯାହା କର୍ତ୍ତବ୍ୟ ତାହାହିଁ ଆମେ କରିଛୁ ।'' ଏଡ଼େନ୍ ତରବରିଆ ଭାବରେ ଯେଉଁ ପତ୍ରଟି ମୋ ପାଖକୁ ଲେଖିଥିଲେ ତାହା ଅପ୍ରୀତିକର ନ ହେଲେ ମଧ୍ୟ ପ୍ରଭୁତ୍ୱବ୍ୟଞ୍ଜକ— ''ଭୁଟାନ କ୍ଷେତ୍ରକୁ ଯାଉଥିବା ବାହିନୀର ସମଗ୍ର ବାମ ଅଂଶଟି ତୁମ ଜିଲ୍ଲା ଦେଇ ଯିବ । ତୁମେ ସେମାନଙ୍କର ଖାଇବା ପିଇବା ବୁଝିବ ଏବଂ ସେମାନଙ୍କର ଜିନିଷପତ୍ର ଓ ଗୋଳିଗୁଳା ପାଇଁ ଗାଡ଼ି ଯୋଗାଇ ଦେବ । ତୁମର ଯାହା ଖର୍ଚ୍ଚ ହେବ ତାହା ଦିଆଯିବ; କିନ୍ତୁ ଜଣେ ସୈନ୍ୟ ବା ବସ୍ତାଏ ଶସ୍ୟ ଯଦି ଦିନକପାଇଁ ବାଟରେ ଡେରି ହୋଇଯାଏ ତା'ହେଲେ ତୁମକୁ କ୍ଷମା ଦିଆଯିବ ନାହିଁ । ବଙ୍ଗଳା ଭିତରେ ଏ କାମ ଯଦି କିଏ କରିପାରେ ତ ସେ ତୁମେ, ଆଗେଇ ଯାଅ ।'' ଏ ଥିଲା ଅତି ସିଧା କଥା ଏବଂ ତଦନୁଯାୟୀ ମୁଁ ଆଗେଇଗଲି ।

ଅତ୍ୟଧିକ କାମର ଝଞ୍ଜାଳ ଭିତରେ ବୁଡ଼ି ରହିବାକୁ ମୁଁ ସେତେବେଳେ ସ୍ୱାଗତ କରୁଥିଲି । କାରଣ ବାପାଙ୍କ ମୃତ୍ୟୁ ସମ୍ବାଦ ସେତେବେଳେ ମୋତେ ଖୁବ୍ ଧକ୍କା ଦେଇଥିଲା । ଏହା ଘଟିଲା ୧୮୬୪ ଅଗଷ୍ଟରେ ଏବଂ ଏଡ଼େନ୍‌ଙ୍କ ଚିଠିର ଠିକ୍ ପୂର୍ବରୁ ଏ ସମ୍ବାଦ ମୋ ପାଖରେ ପହଞ୍ଚିଲା । ସମସ୍ତଙ୍କ ଜାଣିବାରେ ସେ ହଠାତ୍ ବିନା କଷ୍ଟରେ ମରିଗଲେ । ଶବ ପରୀକ୍ଷାରୁ ଜଣାଗଲା ଯେ, ତାଙ୍କର ହୃଦ୍‌ଯନ୍ତ୍ର ଟାଣ ହୋଇଯାଇ ମସ୍ତିଷ୍କରେ ପାଣି ଜମିଗଲା । କେନସେଲ ଗ୍ରୀନ୍ କବରଖାନାରେ ତାଙ୍କୁ କବର ଦିଆଗଲା । ମଲାବେଳକୁ ତାଙ୍କୁ ମାତ୍ର ଅଣଚାଶ ବର୍ଷ ହୋଇଥିଲା । ବିବାହ ପରଠାରୁ ସେ ଦାରିଦ୍ର୍ୟ ଓ ସଂଗ୍ରାମର ଏକ କଷ୍ଟକର ଜୀବନ କଟାଉଥିଲେ । ଜୋର ଥିବା ପର୍ଯ୍ୟନ୍ତ ସେ ସାହସର ସହ ସେହି ଜୀବନର ସମ୍ମୁଖୀନ ହୋଇଥିଲେ । ସେ ଥିଲେ ଅତ୍ୟନ୍ତ ବୁଦ୍ଧିଦୀପ୍ତ, ଅଦ୍ଭୁତ ସ୍ମୃତିଶକ୍ତି ସମ୍ପନ୍ନ, ଚମତ୍କାର ବକ୍ତା, ବରଂ କୁହାଯାଇପାରେ ବହୁଭାଷୀ । ଉଚ୍ଚସ୍ୱରରେ ପାଟିତୁଣ୍ଡ କରିବା ସ୍ୱଭାବ ତାଙ୍କର ଥିଲା । ସୁଦକ୍ଷ ଧର୍ମ ପ୍ରଚାରକ; ଅତି ନୈଷ୍ଠିକ ଧର୍ମଯାଜକ ଥାଇ ଉଇଣ୍ଡମିଲ ଷ୍ଟ୍ରିଟ୍ ଓ ନିକଟବର୍ତ୍ତୀ ଅନ୍ୟାନ୍ୟ ନିମ୍ନାଞ୍ଚଳ ବସତିରେ ରହୁଥିବା ଚରମପନ୍ଥୀ ନିରୀଶ୍ୱରବାଦୀ ମୋଚିମାନଙ୍କର ସେ ଖୁବ୍ ପ୍ରିୟ ଥିଲେ ଏବଂ ସେମାନଙ୍କ ମଧ୍ୟରୁ ଅନେକଙ୍କର ସେ ଈଶ୍ୱର ବିଶ୍ୱାସ ଫେରାଇଆଣି ପାରିଥିଲେ । ସେ ଥିଲେ ସବଳ ଶରୀରର ଜଣେ ଖେଳଓ୍ୱାଡ଼ ଏବଂ ତାଙ୍କ ବନ୍ଧୁ ଚାର୍ଲସ କିଙ୍ଗସ୍‌ଲେଙ୍କ ଭାଷାରେ ବଳିଷ୍ଠ ଖ୍ରୀଷ୍ଟିଆନ । ସେ ଥିଲେ 'ଉଦାର ଗିର୍ଜା' ଦଳୀୟ ଏବଂ 'ଉଚ୍ଚଗିର୍ଜା' ବାଲାଙ୍କ ଯାଜକୀୟ ରୀତିନୀତି ଓ କର୍ମକର୍ମାଣିର ବାହୁଲ୍ୟକୁ ଏବଂ 'ନିମ୍ନଗିର୍ଜା' ବାଲାଙ୍କ ନବ-କାଲଭିନ୍ ପନ୍ଥାକୁ ଏକାପରି ବିରୋଧ କରୁଥିଲେ । ସେ ଥିଲେ, ଅତି ଧାର୍ମିକ ଏବଂ ନୈଷ୍ଠିକ ଈଶ୍ୱରବିଶ୍ୱାସୀ, ଯଦିଓ ଶେଷ ଜୀବନରେ ଈଶ୍ୱର ତତ୍ତ୍ୱ ସମ୍ପର୍କୀୟ ଜର୍ମାନ ବହିପଢ଼ି ଏତେଦୂର ପ୍ରଭାବିତ ହେଲେ ଯେ ଧର୍ମକୁ ନିମ୍ନତମ ସ୍ଥାନକୁ କମାଇ ଦେଲେଣି ବୋଲି କହିବାକୁ ଲାଗିଲେ । ତାଙ୍କୁ ହରାଇ ମୁଁ ବଡ଼ ଧକ୍କା ପାଇଲି । ବାସଲେ ମୋ ହାତକୁ ଆସିଗଲା; କିନ୍ତୁ ଏଥିରୁ ବାର୍ଷିକ ଦୁଇଶହ ପାଉଣ୍ଡରୁ କ୍ୱଚିତ ଅଧିକ ମିଳିଲା । ସେଇଥିରୁ ମୋତେ ଶ୍ରୀମତୀ ସ୍ଲିମାନଙ୍କୁ ଶହେ·ପାଉଣ୍ଡ ଓ ରୋଲାଣ୍ଡକୁ ଚାଳିଶ ପାଉଣ୍ଡରୁ କରି ବାର୍ଷିକ ଦେବାକୁ ପଡ଼ିଲା, ତା'ଛଡ଼ା ଟିକସ୍, ବାହାର ଘରର ମରାମତି, ଉତ୍ତରାଧିକାର କର ଏବଂ ଓକିଲ ଖର୍ଚ୍ଚ ପରେ ଯାହା କିଛି ବଳେ ମୁଁ ମା'ଙ୍କୁ ଦେଇଦିଏ । ତା'ଛଡ଼ା ତେଇଶ ବର୍ଷ ଯାଏ ମା'ଙ୍କ ମୃତ୍ୟୁ ପର୍ଯ୍ୟନ୍ତ ମୁଁ ମାସିକ ନିୟମିତ ରୂପେ ଦେଇ ଆସୁଥିଲି ।

ଭୁଟାନ ଯୁଦ୍ଧର କାମ ଏହିପରି ଭାବରେ ଦୁଃଖଦାୟକ ଅବସ୍ଥାରୁ ମୋ ମନକୁ ମୁକ୍ତ କଲା । ସୈନ୍ୟବାହିନୀର ଯିବା ରାସ୍ତା ମୋ ଜିଲ୍ଲାରେ ଥିଲା ଶହେକୋଡ଼ିଏ ମାଇଲ୍; ଦଶଦଶ ମାଇଲ ଛଡ଼ାରେ ବାରଟି ବିଶ୍ରାମ ଶିବିର, ପ୍ରତ୍ୟେକ ଜାଗାରେ ସେମାନେ ଦିନେ ଲେଖାଏଁ ରହିବେ ଏବଂ ସେଠାରେ ମଣିଷ ଓ ପଶୁଙ୍କ ପାଇଁ ଖାଦ୍ୟ ଦରକାର । ଚିରସ୍ଥାୟୀ ବନ୍ଦୋବସ୍ତର ଏହା ଅନ୍ୟତମ ସର୍ତ୍ତ ଯେ ସୈନ୍ୟବାହିନୀ କୌଣସି ଜମିଦାରଙ୍କ ଅଞ୍ଚଳ ଦେଇ ଯାଉଥିଲାବେଳେ ସେ ସେମାନଙ୍କ ପାଇଁ ରସଦ ଯୋଗାଇବେ । ଏହି ରାସ୍ତାରେ ଥିବା ତିନୋଟି ଶିବିର ପଡ଼ିଲା କୋର୍ଟ ଅଫ୍ ଓ୍ୱାର୍ଡ଼୍‌ସ୍‌ରେ ଥିବା ଦରଭଙ୍ଗା ଜମିଦାରୀରେ, ବାକିତକ ଅନ୍ୟ ଜମିଦାରମାନଙ୍କ ଅଞ୍ଚଳରେ । ପୂର୍ଣ୍ଣିଆରେ ଧାନ ଛଡ଼ା ଅନ୍ୟକିଛି ହୁଏ ନାହିଁ; କିନ୍ତୁ ସୈନ୍ୟବାହିନୀ ମୋଠାରୁ

ଚାହିଁଲେ ଅଟା, ଡାଲି, ମସଲା, ଗୋରୁ ଓ ଘୋଡ଼ାପାଇଁ ଦାନା ଓ ଘାସ, ଜାଳେଣିକାଠ, ନଡ଼ା ଏବଂ ଆଉ ଅନେକ ଜିନିଷ । ସେମାନଙ୍କ ଆସିବା ଦିନ ଜଣା ନ ଥିଲା । ମୋର ସାନୁନୟ ଅନୁରୋଧ ଫଳରେ ସରକାର ମୋତେ କେତେଜଣ ନିମ୍ନ ପାହ୍ୟାର ସିଭିଲ୍ ଅଫିସର ଦେଲେ; ପ୍ରତ୍ୟେକ ଶିବିରଠାରେ ସେମାନଙ୍କ ମଧ୍ୟରୁ ଜଣେ ରହିଲେ । ତାଙ୍କ କାମ ହେଲା ଜାଗାଟିକୁ ସଫାକରି ପ୍ରସ୍ତୁତ ରଖିବା, କୂଅଗୁଡ଼ିକୁ ସୁରକ୍ଷିତ ରଖିବା, ରସଦ ଦ୍ରବ୍ୟ ସାଇତିବା, ଗୋଦାମଘର ତିଆରି କରିବା, ସେସବୁ ରସଦ କିପରି ଆସିବ, ରହିବ ଏବଂ ସୈନ୍ୟବାହିନୀ ଆସିଲେ ତାଙ୍କୁ ଯୋଗାଇଦିଆଯିବ, ତା'ର ବନ୍ଦୋବସ୍ତ କରିବା ଏବଂ ତା' ସଙ୍ଗେ ସଙ୍ଗେ ସେମାନଙ୍କୁ ଗାଡ଼ିଶଗଡ଼ ଯୋଗାଇ ଦେବା । ପୂର୍ଣିଆରେ ଯାଇ ମୁଁ ନିଜେ ସବୁ ବୁଝାସୁଝା କରୁଥିଲି । ଦରକାରୀ ଜିନିଷ ଯୋଗାଇ ଦେବାପାଇଁ ଜମିଦାରମାନଙ୍କୁ ଆଦେଶ ଦିଆଗଲା । ଜିଲ୍ଲାରେ ସେସବୁ ଜିନିଷ ମିଳୁ ନ ଥିବାରୁ କଲିକତାକୁ ଲୋକ ପଠାଇ ଅଣାଇବାକୁ ସେମାନଙ୍କୁ ବହୁ ଖର୍ଚ୍ଚ ପଡ଼ିଲା । ବହୁ କଷ୍ଟରେ ମୁଁ ଆଠହଜାର ପାଞ୍ଚଶହ ଶଗଡ଼ଗାଡ଼ି ପ୍ରକୃତରେ କହିଲେ ଜିଲ୍ଲାର ପ୍ରାୟ ସମସ୍ତ ଶଗଡ଼ ସଂଗ୍ରହ କଲି । ଶଗଡ଼ିଆଙ୍କ ଦେୟ ନିୟମିତ ଦେବାପାଇଁ ଏକ ପଦ୍ଧତି ମଧ୍ୟ ପ୍ରସ୍ତୁତ ହେଲା । ଜିଲ୍ଲାର ଲୋକେ ଭୀରୁ ଓ ଲାଜକୁଳା, ବେଶି ପାଉଣା ଦେଇ ଓ ବିଚାରବନ୍ତ ଭାବେ ନରମ ବ୍ୟବହାର ଦେଖାଇ ସେମାନଙ୍କୁ ସୈନ୍ୟମାନଙ୍କ ପାଇଁ କାମ କରିବାକୁ ପ୍ରବର୍ତ୍ତାଗଲା । ବିଭିନ୍ନ ଜାଗାରେ ଶଗଡ଼ସବୁ ବଦଳ କରାଇ ପରବର୍ତ୍ତୀ ସୈନ୍ୟଦଳ ପାଇଁ ପ୍ରସ୍ତୁତ ହେବାପାଇଁ ପଠାଇ ଦିଆଯାଉଥିଲା । ସୌଭାଗ୍ୟକ୍ରମେ ଜିଲ୍ଲା ସୁପରିଣ୍ଟେଣ୍ଡେଣ୍ଟ୍ ଉଏଦରଅଲ ୧୮୫୭ର ବିଦ୍ରୋହବେଳେ ସେନାର ରସଦ ଯୋଗାଣ ବିଭାଗରେ କାମ କରୁଥିଲେ ଏବଂ ଦେଶୀୟଙ୍କ ସମ୍ପର୍କରେ ତାଙ୍କର ଜ୍ଞାନ ଓ ଅଭିଜ୍ଞତା ମୋତେ ଖୁବ୍ କାମ ଦେଲା । ମୁଁ ତାଙ୍କୁ ପୂର୍ଣିଆଠାରୁ ଚାଳିଶ ମାଇଲ ଦୂର କିଷାନଗଞ୍ଜଠାରେ ରଖାଇଲି । ସେଠାରୁ ସେ ଶଗଡ଼ରେ ଯୋଗାଣ କାମ ସଂଗଠିତ କଲେ । ଜଙ୍ଗଲରେ ଶଗଡ଼ ପାଇଁ ରାସ୍ତା ନ ଥିବା ଜାଗାରେ ପରିବହନ ପାଇଁ ଚାରି ହଜାର ପାଞ୍ଚଶହ ଭାରୁଆ ବଳଦ ଓ ଅଶୀଟି ହାତୀ ମଧ୍ୟ ଲଗାଯାଇଥିଲା ।

ସମ୍ପୂର୍ଣ୍ଣ ବ୍ୟବସ୍ଥା ହୋଇଯିବାର ଅବ୍ୟବହିତ ପୂର୍ବରୁ ଆଡ଼ଜୁଟାଣ୍ଟ ଜେନେରାଲ, କ୍ୱାଟର ମାଷ୍ଟର ଜେନେରାଲ, କମିଶାରି ଜେନେରାଲ ଏବଂ ଅନ୍ୟ ବହୁ ହାମବଡ଼ା ସାମରିକ କର୍ତ୍ତୃପକ୍ଷଙ୍କଠାରୁ ଟେଲିଗ୍ରାମର ସୁଅ ଛୁଟିଲା । ଏସବୁ ତାର ଅଧିକାଂଶତଃ ରାତି ଅଧରେ ପହଞ୍ଚୁଥିଲା । ଭୋର ପାଞ୍ଚଟାରୁ ଉଠି ଶଗଡ଼ମାନଙ୍କୁ ପାଉଣା ଦେଇ ଓ ପଠାଇ, ସହକାରୀମାନଙ୍କୁ ବାର ପ୍ରକାର ବିଷୟରେ ଲିଖିତ ନିର୍ଦ୍ଦେଶମାନ ଦେଇ, ଅସୁବିଧା ଦୂର କରିବା ଓ ବ୍ୟବସ୍ଥାସବୁ ପରିଦର୍ଶନ କରିବା ପାଇଁ ଘୋଡ଼ାରେ କୋଡ଼ିଏ ବା ତିରିଶ ମାଇଲ ଯାଇ, ସୁବିଧା ପାଇବାମାତ୍ରେ ଅଳ୍ପ କିଛି ଖାଇଦେଇ, ମୋ ଘୋଡ଼ାମାନଙ୍କୁ ଦୂରବର୍ତ୍ତୀ କୌଣସି ଗୁରୁତ୍ୱପୂର୍ଣ୍ଣ ସ୍ଥାନକୁ ପରଦିନ ସକାଳେ ଯିବା ସକାଶେ ପଠାଇ ଦେଇ ମୁଁ ଅନେକ ରାତିରେ ଟିକିଏ ଶୋଇଯିବା ପାଇଁ ଚେଷ୍ଟା କରୁଥିବି, ଶେଯରେ ମୁଁ ଅଧଘଣ୍ଟାଏ ଥିବି କି ନା ତାରଟାଏ ଆସିବ ଏବଂ ରାତି ଭିତରେ ତିନି ବା ଚାରିଥର ଆସିବ । ଶେଷକୁ ହତାଶ ହୋଇ ମୁଁ ଏକାଭଳି ଉତ୍ତର ସମସ୍ତଙ୍କ ପାଖକୁ ପଠାଇବାକୁ ଲାଗିଲି, 'ଠିକ୍ ଅଛି, ସବୁ ପ୍ରସ୍ତୁତ' । ଏଇ ବୁଢ଼ା ସାମରିକ ଲୋକଗୁଡ଼ାକଙ୍କର ଅଜ୍ଞତା, ଅସ୍ଥିର

ବୁଦ୍ଧି ଓ ଦୂରଦୂରିଆ ହାମବଡ଼ା ଭାବ ଥିଲା ଅବର୍ଣ୍ଣନୀୟ । ଅନେକ ଥର ଆସିବାଦିନ ସ୍ଥିର କରି ଏବଂ ସେସବୁ ଦିନରେ ନ ଆସି ଶେଷରେ ପ୍ରଥମ ବାହିନୀ କାରଗୋଲାରେ ପହଞ୍ଚିଲେ ଏବଂ ଛ ସପ୍ତାହକାଳ ପ୍ରତ୍ୟେକ ଦୁଇତିନି ଦିନରେ ଗୋଟିଏ ନୂଆ ଦଳ ଆସିଲେ । ବେଳେ ବେଳେ ଦିନେ ଛଡ଼ା ଦିନେ ଆସିଲେ ଯେପରିକି ଏକା ସମୟରେ ରାସ୍ତାରେ ସାତଟା ବା ଆଠଟା ଦଳ ରହିଗଲେ । ପ୍ରତ୍ୟେକ ଦଳର କୋଲନେଲଙ୍କ ସହ ମତେ ରୀତିମତ ସଂଗ୍ରାମ ଲଗାଇ ରଖିବାକୁ ପଡ଼ିଲା । ପ୍ରତ୍ୟେକ ଏପରି କିଛି କରିବାକୁ ଚାହିଁଲେ ବା ମାଗିବସିଲେ ଯାହା କି ସେ ଅଞ୍ଚଳର ଅବସ୍ଥା ଦୃଷ୍ଟିରୁ କରିବା ବା ମିଳିବା ଅସମ୍ଭବ । ଶଗଡ଼ିଆମାନଙ୍କୁ ସୈନ୍ୟମାନେ ମାରଧର କରିବା ଫଳରେ ସେମାନେ ପଳେଇଲେ ଏବଂ ସେମାନଙ୍କ ପଛରେ ଧାଇଁ ସେମାନଙ୍କୁ ଫେରେଇ ଆଣିବାକୁ ପଡ଼ିଲା । ହଇରାଣ ହୋଇଯାଉଥିବା ଜମିଦାରମାନେ ମାଲ ଯୋଗାଇବାରେ ଡେରି କରି ଦେଉଥାଆନ୍ତି ଏବଂ ଠିକ୍ ସମୟରେ ଆଣିଦେବା ପାଇଁ ସେମାନଙ୍କ ଉପରେ ଚାପ ଦେବାକୁ ପଡୁଥାଏ । ଏହି ଗଣ୍ଡଗୋଳିଆ ପରିସ୍ଥିତିରେ କେହି କେହି ଯୁବକ ସହକାରୀ ବିଚଳିତ ହୋଇପଡ଼ନ୍ତି ଏବଂ ମୋତେ ତିରିଶ ମାଇଲ ବାଟ ଘୋଡ଼ାରେ ଯାଇ ତାଙ୍କୁ ସଳଖିବାକୁ ପଡ଼େ; କିମ୍ବା କୌଣସି ସୈନ୍ୟଦଳର କଲନେଲ ଯୋଗାଯାଇଥିବା ରସଦର ମୂଲ୍ୟ ଦେବାକୁ ମନାକରି ଦିଅନ୍ତି ଏବଂ ତାଙ୍କୁ ବାଟକୁ ଆଣିବାପାଇଁ କଡ଼ାକଡ଼ା ଭାଷାରୁ ପାନେ ଶୁଣାଇବାକୁ ପଡ଼େ । ଏପରି ଘଟିଲା ଯେ ସେମାନଙ୍କ ମଧ୍ୟରୁ କେତେକ ଟଙ୍କା ନ ଦେଇ ଖସିଗଲେ ଏବଂ ତାହା ଆଦାୟ କରିବା ପାଇଁ ମୋତେ ପରେ ବହୁ କଷ୍ଟ କରିବାକୁ ହେଲା ।

ଏଇସବୁ ଭିତରେ ବାହିନୀର ଯୋଗାଣ କର୍ମଚାରୀମାନେ ଖାଲି ବସି ରହିଲେ ଏବଂ ସାହାଯ୍ୟ କରିବାକୁ ମନା କରି କହିଲେ ଯେ ସୈନ୍ୟମାନେ ରଣକ୍ଷେତ୍ରରେ ନ ପହଞ୍ଚିବାଯାଏ ସେମାନଙ୍କ କାମ ଆରମ୍ଭ ହୁଏ ନାହିଁ । ତା' ସଙ୍ଗେ ସଙ୍ଗେ ସେମାନେ ଟନ୍ ଟନ୍ ପରିମାଣ ଅଟା ଓ ଅନ୍ୟାନ୍ୟ ଜିନିଷ ଜିଲ୍ଲା ଭିତରକୁ ଅଣାଇ ଏବଂ ତାକୁ ପଠାଇଦେବା ପାଇଁ ମୋତେ କହି ଅବସ୍ଥାକୁ ଆହୁରି ଜଟିଳ କରିଦେଲେ । ଏହିପରି ଛ ସାତ ସପ୍ତାହକାଳ ମୋର ଦୈନିକ କାମ ହେଲା ଯୋଗାଣ ବ୍ୟବସ୍ଥା ସଂଗଠନ କରିବା ଏବଂ ସମସ୍ତଙ୍କୁ ଟଙ୍କା ଅଗ୍ରିମ ଦେବା, ଦେଇଥିବା ଟଙ୍କା କଲନେଲମାନଙ୍କଠାରୁ ଆଦାୟ କରିବା, ଶିବିର ସ୍ଥାନକୁ ସହକାରୀମାନଙ୍କୁ ପଠାଇବା, ଜମିଦାରମାନଙ୍କୁ ଠିକ୍ ବାଟରେ ଲଗାଇବା ଏବଂ ଉପରୁ ଆସୁଥିବା ସବୁ ପ୍ରକାର ଅସୁବିଧାଜନକ ଗଣ୍ଡଗୋଳିଆ ଚିଠିର ଉତ୍ତର ଦେବା ।

ଶେଷରେ ସୈନ୍ୟବାହିନୀ— ଉଣେଇଶଟି ସୈନ୍ୟଦଳ, କେତେକ କମାଣଦଳ ଓ ବହୁ ପରିମାଣ ଭଣ୍ଡାର ଓ ଗୋଳିଗୁଳା ଯୁଦ୍ଧକ୍ଷେତ୍ରକୁ ଚାଲିଗଲେ । ନଭେମ୍ବର ଆରମ୍ଭରେ ଶେଷ ଦଳଟି ପାରହେଲାବେଳେ ପୂର୍ଣ୍ଣିଆଠାରୁ ଷାଠିଏ ମାଇଲ ଦୂର ରାସ୍ତାକଡ଼ରେ ଏକ ନିର୍ଜନ ସ୍ଥାନ ଇଲଓ୍ୱାବାରୀଠାରେ ପରିବହନ ସଂକ୍ରାନ୍ତୀୟ କିଛି ଅସୁବିଧା ସୃଷ୍ଟି ହେଲା ଏବଂ ଯଥାରୀତି ମୋର ଉପସ୍ଥିତି ଦରକାର ପଡ଼ିଲା । ସେଠାରେ ଶିବିର ପଡ଼ିଆ ନିକଟରେ ଆସବାବପତ୍ର ନ ଥିବା ଛୋଟ ଇନ୍‌ସ୍‌ପେକସନ୍ ବଙ୍ଗଳାଟିଏ ଥିଲା; କିନ୍ତୁ ମୋର ଜଣେ ସହକାରୀଙ୍କୁ ସେଠା ଦାୟିତ୍ୱରେ ରଖାଇଥିଲି ଏବଂ ଭାରତର ଚଳଣି ଅନୁଯାୟୀ ତାହାରି ଉପରେ ଖାଦ୍ୟ ଓ ଶୟନ ବ୍ୟବସ୍ଥା ପାଇଁ

ନିର୍ଭର କରୁଥିଲି । ମୁଁ ଘୋଡ଼ାରେ ଯାଉ ଯାଉ କିଶାନଗଞ୍ଜରୁ ଉଏଦରଅଲଙ୍କୁ ନେଲି ଏବଂ ବାଟଯାକ ଆମେ ବିଭିନ୍ନ ଜାଗାକୁ ଯାଇ ବିଭିନ୍ନ ବ୍ୟବସ୍ଥା ବୁଝି ବୁଝି ଗଲୁ । ବହୁତ ରାତିରେ ଆମେ କ୍ଳାନ୍ତ ହୋଇ ଇଲଓ୍ବାରିରେ ପହଞ୍ଚି ଦେଖିଲୁ ଯେ ସେହି ଅନାଡ଼ି ବେହୁସିଆର ତରୁଣ ସହକାରୀଟି ବିନା ଆଦେଶରେ ଜାଗା ଛାଡ଼ି ଚାଲିଯାଇଚି ଏବଂ ସୈନ୍ୟଦଳ ସହ ପରବର୍ତ୍ତୀ ଶିବିରକୁ ଘୋଡ଼ାରେ ଯାଇଛି । ଅଳ୍ପ ସମୟ ହେଲା ସେଇ ବାଟ ଦେଇ ଯାଇଥିବା ସୈନ୍ୟଦଳଟିରେ କେତେକ ଅଫିସର ତା'ର ବନ୍ଧୁ ଥିଲେ । ସେଠାରେ ଖାଦ୍ୟ କିମ୍ୱା ଶଯ୍ୟା ନ ଥିଲା କାରଣ ସେ ତା ତମ୍ବୁ ପ୍ରଭୃତି ସାଙ୍ଗରେ ନେଇଯାଇଥିଲା । ଗୋଟିଏ ଟିଣପାତ୍ରରେ ଭର୍ତ୍ତି ଥଣ୍ଡା ଆଳୁ ଛଡ଼ା ଆଉ କିଛି ଆମେ ପାଇଲୁ ନାହିଁ । ଜଣେ ମୁସଲମାନ ହେଡ଼କନେଷ୍ଟବଲ ଦୟାକରି ସେତକ ଓ ଶୋଇବାକୁ କିଛି ନଡ଼ା ଆଣି ଦେଲା । ସବୁ ବନ୍ଦୋବସ୍ତ ସାରି ପରଦିନ ସକାଳେ ଘୋଡ଼ାରେ କ୍ଳାନ୍ତିକର ଷାଠିଏ ମାଇଲ ବାଟ ପୂର୍ଣ୍ଣିଆକୁ ଘୋଡ଼ାରେ ଫେରିଲି । ଅବଶ୍ୟ ସେତେବେଳକୁ କୋଡ଼ିଏ ଜଣ ବିଭିନ୍ନ ପ୍ରକାରର ଲୋକ ଆଦେଶ ଓ ନିର୍ଦ୍ଦେଶ ପାଇବା ପାଇଁ ଅପେକ୍ଷା କରିଥିଲେ; ଅନ୍ୟମାନେ ଟଙ୍କା, ରସଦ, ଗାଡ଼ି ଓ ଅନ୍ୟାନ୍ୟ ପଦାର୍ଥ ଚାହୁଁଥିଲେ । ରାତି ବହୁତ ପର୍ଯ୍ୟନ୍ତ ସେମାନଙ୍କ ଦ୍ୱାରା ମଧ କାମ କରାଇଲି । ପରଦିନ ସକାଳୁ ଉଠିଲାବେଳକୁ ମୋତେ ଏତେ ଜର ଯେ ମୋ ଜୀବନରେ ସେତେ କେବେ ହୋଇ ନ ଥିଲା । କିଛି ସମୟ ପର୍ଯ୍ୟନ୍ତ ମୁଁ ପ୍ରଳାପ କଲି ଏବଂ ମୋ ସ୍ତ୍ରୀ ସାମରିକ ଅଫିସରମାନଙ୍କ ଉତ୍ପୀଡ଼ନରୁ ମୋତେ ରକ୍ଷା କରିବା ପାଇଁ ଘରେ ଜଗିରହିଲେ । ସେମାନେ ଘୋଡ଼ାରେ ଚଢ଼ି ଆସି ମୋ ସହ ସାକ୍ଷାତ୍ କରିବାପାଇଁ ଉଦ୍ଧତ ଭାବରେ ଦାବି କରୁଥିଲେ । ଖୁବ୍ ସାହସର ସହ ସେ ସେମାନଙ୍କୁ ଦୂରେଇ ରଖିଲେ । ସୁସ୍ଥ ହେବା ପରେ ପନ୍ଦରଦିନ ଲାଗି ମୋତେ ଦାର୍ଜିଲିଂ ପଠାହେଲା । ସେଠାରେ ଡେପୁଟି କମିଶନର ହେରେଓ୍ବାଡ଼ଉଏକ୍ ସି.ବି. ମୋତେ ଅତିଥିରୂପେ ସ୍ୱାଗତ କଲେ । ଶୀତଳ, ନିର୍ମଳ ପାର୍ବତ୍ୟ ପବନରେ ମୁଁ ଶୀଘ୍ର ରୋଗମୁକ୍ତ ହେଲି ଏବଂ ଫେରିଲା ବେଳକୁ ସବୁ ସୈନ୍ୟ ଯାଇଥିଲେ ଏବଂ କିଛି ସମୟ ଶାନ୍ତ ପଡ଼ିଯାଇଥିଲା । ଶୀତରତୁଟା ଯଥାରୀତି ଜିଲ୍ଲାର ବିଭିନ୍ନ ସ୍ଥାନରେ ଶିବିର ପକାଇ କଟିଲା ।

ଯୁଦ୍ଧ ଅଳ୍ପଦିନେ ଶେଷ ହୋଇଗଲା ଏବଂ ବିଶେଷ ଗୌରବାବହ ନ ଥିଲା । ଅଳ୍ପ କେତେ ମାସରେ ଏହା ସରିଗଲା ଏବଂ ୧୮୬୫ର ପ୍ରଥମଭାଗରେ ସୈନ୍ୟମାନେ ଫେରିଲେ । ପ୍ରଥମେ ଫେରିଲେ ରୁଗ୍ଣ ଓ ଆହତ ଅଫିସରମାନେ । ଆମକୁ ସେମାନଙ୍କ ସେବା କରିବାକୁ ପଡ଼ିଲା । ଆମ ଘରଟି ଡାକ୍ତରଖାନା ଭଳି ହୋଇଗଲା । ବାମ ଅଂଶର ସେନାପତି ଜେନେରାଲ ଡନକମ୍ବେ ଆଣ୍ଠୁଗଣ୍ଠି ବାତରେ ହାତ କିମ୍ୱା ଗୋଡ଼ ହଲାଇ ନ ପାରି ପାଲିଙ୍କିରେ ବୁହାହୋଇ ଫେରିଲେ, କେତେକଙ୍କୁ ଆମାଶୟ ଝାଡ଼ା ବା ଜର ହୋଇଥିଲା । ଅଳ୍ପ କେତେକ ଆହତ ହୋଇଥିଲେ । ତା'ପରେ ଆସିଲେ ସୈନ୍ୟମାନେ ଏବଂ ସେମାନଙ୍କୁ ଜିଲ୍ଲା ପାର କରାଇବାର ପୁରୁଣା ଜଞ୍ଜାଳ ଭିତର ଦେଇ ପୁଣି ଥରେ ଯିବାକୁ ହେଲା । ମାର୍ଚ୍ଚ ସୁଦ୍ଧା ସେସବୁ କାମ ସରିଲା । ତା'ପରେ ମୁଁ ହିସାବପତ୍ର ପରୀକ୍ଷା କରି ଦେଖିଲି ଯେ, ବିନା ମଞ୍ଜୁରିରେ ମୁଁ ସାଢ଼େ ଚାରିଲକ୍ଷ ଟଙ୍କା ଖର୍ଚ୍ଚ କରିଦେଇଚି ! ଜଣେ କଲେକ୍‌ଟର କୌଣସି ଉଚ୍ଚ କର୍ତ୍ତାଙ୍କ ମଞ୍ଜୁରି ନ

ପାଇ ଜିଲ୍ଲା କୋଷାଗାରରୁ ଏତେ ପରିମାଣ ଅର୍ଥ ଖର୍ଚ୍ଚ କରିବା ନିୟମ ନୁହେଁ ଏବଂ ମଝିରେ ମଝିରେ ସେ ଲମ୍ବା ଓ ଜଟିଳ ହିସାବ ଫର୍ଦ ସବୁ କଲିକତାରେ ଥିବା ଏକାଉଣ୍ଟାଣ୍ଟ୍ ଜେନେରାଲଙ୍କ ନିକଟକୁ ପଠାଇବା କଥା । ବିନା ମଞ୍ଜୁରିରେ ଏତେ ଟଙ୍କା ଖର୍ଚ୍ଚ ହୋଇଥିବାର ଦେଖିଦେଇ ସେ ମହାଶୟଙ୍କର ଭାରସାମ୍ୟ ଭୟଙ୍କର ଭାବରେ ଦୋହଲିଗଲା ଏବଂ ତାଙ୍କ ଅଫିସ୍‌ର ପ୍ରଚଳିତ ରୀତି ଅନୁଯାୟୀ ମୋତେ ଲିଖିତ ଭାବରେ ପଚାରିଲେ ଯେ, ମଞ୍ଜୁରି ନ ମିଳିଥିବା ଏହି ଖର୍ଚ୍ଚ ମୋ ବ୍ୟକ୍ତିଗତ ହିସାବରୁ ଭରଣା ହୋଇ ମୋ ଦରମାରୁ କାହିଁକି କଟାନଯିବ ସେ ବିଷୟରେ ମୋର କିଛି କାରଣ ଦର୍ଶାଇବାର ଅଛି କି ? ମୁଁ ଯେପରି କରିଥିଲି ଜଲପାଇଗୁଡ଼ିର କଲନେଲ ହଟନ ମଧ୍ୟ ସେହିପରି କରିଥିଲେ ଏବଂ ସେହିପରି ଏକ ଚିଠିପାଇ ସେ ଉତ୍ତର ଦେଲେ ଯେ, ତାଙ୍କର ଓ ତାଙ୍କର ପାଞ୍ଚପୁରୁଷ ପର୍ଯ୍ୟନ୍ତ ବଂଶଧରଙ୍କର ଆୟ ବାଜ୍ୟାପ୍ତ କଲେ ମଧ୍ୟ ଆକାଉଣ୍ଟାଣ୍ଟ ଜେନେରାଲ ସେହି ପରିମାଣ ଅର୍ଥ ଭରଣା କରିପାରିବେ ନାହିଁ ଏପରି ଏକ ଉକ୍ତି ବାଚାଳତା ବୋଲି ଗୃହୀତ ହୋଇ କଲନେଲଙ୍କୁ ଭର୍ତ୍ସନା କରାଗଲା । ମୋର ଯତ୍ନଶୀଳା ପ୍ରିୟ ପତ୍ନୀ ସୌଭାଗ୍ୟବଶତଃ ଆମ୍ଭେ ଏଡ଼େନଙ୍କ ପୂର୍ବୋକ୍ତ ପତ୍ରଟି ସାଇତି ରଖିଥିଲେ । ଏହି ଚିଠିର ଏକ ନକଲ ସହ କ୍ରୋଧରେ ଏକ ପ୍ରତିବାଦ ସରକାରଙ୍କୁ ପଠାଇବାରୁ ମୁଁ ସମସ୍ତ ପରିମାଣର ମଞ୍ଜୁରି ପାଇଲି, କିନ୍ତୁ ସାମରିକ କର୍ତ୍ତୃପକ୍ଷଙ୍କୁ ଦେଇଥିବା ଅଗ୍ରିମ ଫେରସ୍ତ ପାଇବାକୁ ୧୮୬୬ ହୋଇଗଲା । ସବୁ ସରିଲା ପରେ ମୁଁ ଭାରତ ସରକାରଙ୍କଠାରୁ ସଂକ୍ଷିପ୍ତ ଗତାନୁଗତିକ ଧନ୍ୟବାଦ ପତ୍ରଟିଏ ପାଇଲି । ସେତେବେଳେ ଭାଇସରାଏ ଥିବା ଜନ୍ ଲରେନ୍ସ ଅଧସ୍ତନମାନଙ୍କୁ କେବେ ପ୍ରଶଂସା କରୁ ନ ଥିଲେ ବରଂ ସୁବିଧା ମିଳିଲେ ସାମାନ୍ୟ ଭୁଲଲାଗି କଠୋର ଦଣ୍ଡ ଦେଉଥିଲେ । ଯାହାହେଉ ବଙ୍ଗଳା ସରକାରଙ୍କ ପ୍ରଶଂସା ଥିଲା ହାର୍ଦ୍ଦିକ ଏବଂ ମୋତେ ସେତିକିରେ ସନ୍ତୁଷ୍ଟ ରହିବାକୁ ପଡ଼ିଲା । ମୋ ଶରୀର ଓ ମନ ଉପରେ ଏହି ଭୟଙ୍କର ଚାପ ଯୋଗୁଁ ସ୍ୱାଭାବିକ ସ୍ୱାସ୍ଥ୍ୟ ଓ କର୍ମକ୍ଷମତା ଫେରିପାଇବା ପାଇଁ ବହୁବର୍ଷ ଲାଗିଗଲା ।

୧୮୬୫ ମାର୍ଚ୍ଚ ୭ ତାରିଖରେ ମୋର ତୃତୀୟ ପୁତ୍ର ରୁପର୍ଟ ଜନ୍ମ ହେଲା । ମୋ ସ୍ତ୍ରୀ ପ୍ରସବ ପାଇଁ ପ୍ରସ୍ତୁତ ହେବାର ବହୁ ପୂର୍ବରୁ ସେ ଭୂମିଷ୍ଠ ହୋଇପଡ଼ିଲା ଏବଂ ସେବିକା ତାକୁ ନିଜ ବାହ୍ୟାବରଣରେ ଧରିନେଲେ ! ସ୍ତ୍ରୀ ଶୀଘ୍ର ସୁସ୍ଥ ହେଲେ; କିନ୍ତୁ ଡାଭିଡ୍ ଓ ଫ୍ରେଡ଼ି ପୂର୍ଣ୍ଣିଆର ମାରାତ୍ମକ ଜଳବାୟୁର ପ୍ରଭାବ ଅନୁଭବ କରିବାକୁ ଲାଗିଲେ, ବିଶେଷତଃ ମ୍ୟାଲେରିଆରୁ ଡାଭିଡ୍‌ର ପ୍ଲିହା ବଢ଼ିଲା । ଫଳରେ ସେ ସମସ୍ତଙ୍କୁ ମୋତେ ଦାର୍ଜିଲିଂ ପଠାଇବାକୁ ହେଲା । ସେଠି ସେମାନଙ୍କ ପାଇଁ ଗୋଟିଏ ଘର ନେଲି । ସେଠାରେ ସେମାନେ ଅପ୍ରେଲରୁ ନଭେମ୍ବର ପର୍ଯ୍ୟନ୍ତ ରହିଲେ ଏବଂ ସମ୍ପୂର୍ଣ୍ଣ ସ୍ୱାସ୍ଥ୍ୟ ଫେରିପାଇଲେ । କେତେକ ସହକାରୀଙ୍କୁ ସାଙ୍ଗରେ ଧରି ମୁଁ ପ୍ରଥମ କରି ନବପ୍ରଚଳିତ ଘୋଡ଼ା ଉପର ହକି ଖେଳ ଶିଖିଲି, ଯାହାକୁ ବର୍ତ୍ତମାନ କୁହାଯାଉଛି ପୋଲୋ । ଏ ଖେଳର ପ୍ରଥମ ସ୍ଥାନ ମଣିପୁର । ସେଠାରୁ ଆସିଥିବା ଟଟୁ କିମ୍ବା ଦାର୍ଜିଲିଂ ବା ଭୁଟାନରୁ ଆସିଥିବା ପାହାଡ଼ି ଟଟୁ ଘୋଡ଼ାରେ ଚଢ଼ି ଆମେ ସବୁ ସନ୍ଧ୍ୟାରେ ଖେଳୁଥିଲୁ ।

ଭୁଟାନ ଅଭିଯାନ ସମୟର କର୍ମକ୍ଳାନ୍ତିର କୁପ୍ରଭାବକୁ ମୁଁ ଏଡ଼ାଇଦେଇ ପାରିଲି ନାହିଁ ଏବଂ ଜୁଲାଇରେ ମୋତେ ତିନିମାସ ଛୁଟିନେଇ ଦାର୍ଜିଲିଂରେ ମୋ ପରିବାର ସହ ଯୋଗଦେବାକୁ

ପଡ଼ିଲା । ଏ ସ୍ଥାନଟି ବର୍ତ୍ତମାନ ଏତେ ଜଣାଶୁଣା ଯେ, ତା'ର ବର୍ଣ୍ଣନା ଅନାବଶ୍ୟକ । ସେତେବେଳେ ଏହା ଖୁବ୍ ଛୋଟ ଥିଲା ଏବଂ ସେଠାକୁ ରେଲ ନ ଥିଲା । ମଧୁର ଶୀତଳ ପବନରେ ମୁଁ ଶୀଘ୍ର ସ୍ୱାସ୍ଥ୍ୟ ଫେରିପାଇଲି ଏବଂ କିଛି କାମ ନ ଥିବାର ବିରକ୍ତି ଦୂର କରିବାପାଇଁ ପର୍ବତର ଅଭ୍ୟନ୍ତରକୁ ବୁଲିଯିବାର ଯୋଜନା କଲି । ହୋୱାଡ୍ ନାମରେ ଅଶିତମ ବାହିନୀର ଜଣେ ତରୁଣ ଅଫିସର ମୋ ସାଙ୍ଗରେ ଗଲେ । ଆମେ ପ୍ରାୟ ବାରଜଣ କୁଲି ନେଇଥିଲୁ । ପ୍ରତ୍ୟେକ ପିଠିରେ ବଡ଼ ଟୋକେଇ ବା 'କିଲଟା'ଟିଏ ବୋହୁଥାଆନ୍ତି । ସେଥିରେ ଆମ ଶେଯ, ପୋଷାକ, ରୋଷେଇ ବାସନ, ଖାଦ୍ୟ ଓ ମଦ ଥାଏ । ଜଣେ ଭାଷାନ୍ତରକାରୀ ଓ ପଥପ୍ରଦର୍ଶକ ମଧ ଆମ ସହ ଥିଲା । ସେଇ ମଉଜିଆ ଲେପ୍‌ଚା ବୁଢ଼ାଟିର ନାଁ କିନ୍‌ଲେ । ପ୍ରଥମ ଦିନର ଅଭିଜ୍ଞତା ହେୱାଡ୍‌କୁ ଭଲ ଲାଗିଲା ନାହିଁ ଏବଂ ମୋତେ ଏଦୁଟିଆ ଯିବାକୁ ଛାଡ଼ିଦେଇ ସେ ନିଜ ସ୍ଥାନକୁ ଫେରିଗଲା । ପାହାଡ଼ି ରାସ୍ତାରେ ଉଠାଣି ଚଢ଼ିବା ପ୍ରଥମେ ମୋତେ କଷ୍ଟକର ଜଣାପଡ଼ିଲା; କିନ୍ତୁ ଦିନେ ଦୁଇଦିନ ପରେ ମୁଁ ଏଥିରେ ଅଭ୍ୟସ୍ତ ହୋଇଗଲି । ଗୋଟାଏ ପରେ ଗୋଟାଏ ଥିବା ଉଚ୍ଚ ପର୍ବତ ଧାର ଦେଇ ଆମ ରାସ୍ତା ପଡ଼ିଥିଲା । ଗଭୀର ଅପ୍ରଶସ୍ତ ଉପତ୍ୟକାର ମ୍ୟାଲେରିଆରୁ ରକ୍ଷାପାଇବା ପାଇଁ ଆମେ ପର୍ବତ ଶିଖରରେ ଥିବା ଜଣେ ଦେଶୀୟର କୁଡ଼ିଆ ଘରେ ରାତିଯେ ଶୋଇଲୁ । ଖୁବ୍ ସକାଳୁ ଆମେ ଉଠୁ ଏବଂ କିନ୍‌ଲେ କଫି ଓ ଅଣ୍ଡା ତିଆରି କରୁଥିବାବେଳେ ମୁଁ ତଉଲିଆ ଓ ସାବୁନ ନେଇ ପାହାଡ଼ ଦେହରେ ଥିବା କୌଣସି ଏକ ପୋଖରୀକୁ ଯାଏ । ସେଠାରେ ସ୍ୱଚ୍ଛ ନିର୍ମଳ ଝର ବାହାରି ଆସୁଥାଏ । ସେଠାରେ ମୁଁ ଧୁଆଧୋଇ ହୁଏ ଯାହା ଲେପଚାଙ୍କ ପକ୍ଷରେ ଅପୂର୍ବ ଓ ଅକଳ୍ପନୀୟ ବୋଧ ହେଉଥାଏ ଏବଂ ସେମାନଙ୍କୁ ଖୁବ୍ ଆମୋଦ ଦେଉଥାଏ । ଅଳ୍ପକିଛି ପ୍ରାତରାଶ ପରେ ଆମ ଜିନିଷପତ୍ର ସବୁ କିଲଟାମାନଙ୍କରେ ବନ୍ଧାଯାଏ ଏବଂ ତା'ପରେ ଆମେ ପର୍ବତର ଗଡ଼ାଣି ଦେଇ ପଦଚିହ୍ନ ବାରି ହୋଇପାରୁ ନ ଥିବା ରାସ୍ତାଦେଇ ଆଗେଇ ଚାଲୁ । ବ୍ରିଟିଶ ଅଞ୍ଚଳର ସୀମା ସେପଟେ ଆଉ ରାସ୍ତା ନ ଥିଲା ।

ଛ'ଘଣ୍ଟାକାଳ ଆମେ ତଳକୁ ଓହ୍ଲାଇଲା ପରେ ମଧାହ୍ନରେ ପର୍ବତ ତଳେ ପହଞ୍ଚିଲୁ । ସେଠାରେ ସାଧାରଣତଃ ଛୋଟ ନଦୀ ଉପରେ ବେତର ପୋଲ ଥାଏ । ସେଠାର ଉଦ୍ଭିଦ ଘଞ୍ଚ ଓ ବିଷୁବ ମଣ୍ଡଳୀୟ— ବଣୁଆ କଦଳୀ, ଫର୍ଣ୍ଣ ଗଛ, ଅର୍ଚିଡ଼୍, ଗୁଡ଼ାଇ ହୋଇଥିବା ଘଞ୍ଚଲତା ଏବଂ ଅସମ୍ଭବ ଗରମ । ସେଇଠି ଆମେ ବିଶ୍ରାମ ନେଇ ବିସ୍‌କୁଟ, ଶୀତଳ ଟାଣସିଦ୍ଧ ଅଣ୍ଡା ଓ ବାଜରାରୁ ତିଆରି ଅମ୍ଳଘଟିତ ପାନୀୟ ମାରୋଆରେ ଭୋଜନ ବଢ଼ାଇଲୁ । ତା'ପରେ ଆରମ୍ଭ ହେଲା କଷ୍ଟକର ଉଠାଣି । ସମଗ୍ର ଉପରଓଲିଟି ଆମେ ମଝିରେ ବହୁବାର ଅଟକି ଅଟକି ବହୁ କଷ୍ଟରେ ଉପରକୁ ଉଠିଲୁ ଏବଂ ରାତି ହେଲାବେଳକୁ ଭୂତଳଠାରୁ ପ୍ରାୟ ସାତ ବା ଆଠହଜାର ଫୁଟ ଉପରେ ପର୍ବତ ଶୀର୍ଷରେ ପହଞ୍ଚିଲୁ । ଏଇ ଉଚ୍ଚତାରେ ଗାଁସବୁ ତିଆରି ହୋଇଚି । ସେଥିରେ ପାଞ୍ଚ ଛ'ଟା କୁଡ଼ିଆରୁ ଅଧିକ କ୍ୱଚିତ୍ ଥାଏ, କଦବା କେଉଁଠି ଗୋଟାଏ ଲେଖାଏଁ ବୌଦ୍ଧ ମନ୍ଦିର । ଆମେ ସର୍ବଦା ସବୁଠାରୁ ଭଲ ଘରଟିକୁ ଯାଉଁ ଏବଂ ସ୍ମିତବଦନା ଗୃହିଣୀଟିଏ ଆମକୁ ସ୍ୱାଗତ ଜଣାଏ । ସେ ନିଆଁ ଜଳୁଥିବା ସ୍ଥାନରେ ମୋପାଇଁ ଗୋଟିଏ କୋଣ ଓଲାଇ ଦିଏ । ସେଠି ମୋ ବିଛଣା ପଡ଼େ । ସେ ଗିନାଏ ମାରୋଆ ଆଣିଦିଏ । ତାକୁଇ ପିଇ ଓ ପାଇପ୍‌ଟିଏ ଲଗାଇ ମୁଁ

ଚାଲିବାର କ୍ଳାନ୍ତି ଦୂର କରେ । ବେଳେ ବେଳେ ଅସଂଖ୍ୟ ଜୋକ କାମୁଡ଼ା ଯୋଗୁଁ ରକ୍ତ ବହି ମୋ ଗୋଡ଼ରେ ମୋଜା ଲାଖିଯାଇଥାଏ । ଏହି ଜୋକସବୁ ବୁଦାରେ ଓହଳି ଥାଆନ୍ତି ଏବଂ ଚାଲିଲାବେଳେ ସେ ସବୁରେ ଗୋଡ଼ ଘଷିହେବାରୁ ଲୋକଙ୍କ ଗୋଡ଼ରେ ଲାଗିଯାଆନ୍ତି । ପ୍ରଥମେ ସେଗୁଡ଼ିକ ସୂତାପରି ସରୁ ଥାଆନ୍ତି । ତା'ପରେ ରକ୍ତ ଶୋଷି ଏତେ ଫୁଲିଯାଆନ୍ତି ଯେ ସେଗୁଡ଼ାକ ଆଖିରେ ପଡ଼ିଯାଆନ୍ତି ଏବଂ କାଢ଼ି ଅଣାଯାଏ । ସେହି ସହୃଦୟା ସ୍ତ୍ରୀଲୋକ ଗରମପାଣିରେ ମୋ ଗୋଡ଼ ଧୋଇଦିଏ ଏବଂ ପାର୍ବତ୍ୟ ଲୋକେ ଜାଣିଥିବା କେଉଁ ପତ୍ର ଆଣି ତାହାର ଏକ ପ୍ରଲେପ ବୋଳିଦିଏ । ପ୍ରାୟ ପ୍ରଥମ ଦିନଟି ପରେ ଖାଲି ଗୋଡ଼ରେ ଚାଲିବା ଭଲ ବୋଲି ମୁଁ ଜାଣିଲି । କିନ୍ତୁ ମୋ ପଛେ ପଛେ ରହି ତୀକ୍ଷ୍ଣ ନଜର ରଖିଥାଏ ଏବଂ ମୋ ପେଣ୍ଡାରେ ଜୋକ ଲାଗିବାମାତ୍ରେ ତା' ଉପରେ ନିଜେ ଚୋବାଉଥିବା ଧୂଆଁପତ୍ର ପିଚ୍ ପିଚ୍ କରି ଛାଡ଼ିଦିଏ । ଏଥିରେ ଜୋକ ଝଡ଼ିପଡ଼ିବା ସଙ୍ଗେ ସଙ୍ଗେ ରକ୍ତ ମଧ ବନ୍ଦ ହୋଇଯାଏ । ଆମେ ଯାଉଥିବା ବାଟରେ ଛୋଟ ଛୋଟ ଝରଣାସବୁ ପଡ଼ୁଥାଏ । ତାହାର ହିମଶୀତଳ ପାଣି ଲାଗି କାମୁଡ଼ା ଜାଗା ଆଉ ଫୁଲିପାରେ ନାହିଁ । ଲେପଚାଙ୍କର କୁଡ଼ିଆଗୁଡ଼ିକ ପ୍ରଶସ୍ତ କାଠତିଆରି ଘର । ଅନେକ କ୍ଷେତ୍ରରେ ତାହା ଚାଳିଶ ବା ପଚାଶ ଫୁଟ ଲମ୍ବ ଓ କୋଡ଼ିଏ ଫୁଟ ଓସାରର ଗୋଟିଏ ବଖରା । ସେ ସବୁ ଢାଲୁ ଭୂମିରେ ତିଆରି ହୋଇଥାଏ । ଫଳରେ ଗୋଟିଏ ପଟ ଭୂମିକୁ ଆଶ୍ରୟ କରିଥିବାବେଳେ ଅନ୍ୟପଟଟି ଦମ୍ଭ କାଠଖୁମ୍ବ ଉପରେ ଥାଏ । ଚଟାଣ, କାନ୍ଥ ଓ ଛାତସବୁ ଖୁବ୍ ମୋଟ ମୋଟ କାଠପଟାର । ଘର ତଳେ ଥିବା ଖାଲିଜାଗାରେ କୁକୁଡ଼ା ଓ ଗୋମେଷାଦି ରଖାଯାଆନ୍ତି । କୁଡ଼ିଆର ଯେଉଁ ପଟଟି ପାହାଡ଼କୁ ଲାଗିକରି ଥାଏ ସେଇଠାରେ ଖାଲିମାଟି ଥିବା ଜାଗାରେ ଚଟାଣପାଇଁ ଜାଗା ଛଡ଼ା ଯାଇଥାଏ ଏବଂ ତିନୋଟି ଗୋଜିଆ ପଥର ସେଠାରେ ରଖାଯାଇଥାଏ । ତା'ରି ଭିତରେ ଦିନରାତି ନିଆଁ ଜଳୁଥାଏ ଏବଂ ଲୁହାର କେଟଲି ବା କରେଇରେ ସର୍ବଦା ପାଣି ଗରମ ହେଉଥାଏ । ନିଆଁ ଚାରିପଟେ ଥୁଆହୋଇଥିବା ଧାଡ଼ି ଧାଡ଼ି ପାତ୍ରସବୁ ବଡ଼ ବାଉଁଶର ଗଣ୍ଡିକୁ ଖଣ୍ଡ ଖଣ୍ଡ କରି ସେଥିରୁ ତିଆରି ହୋଇଥାଏ । ଜଣେ କେହି ଆଗନ୍ତୁକ ଆସିବାମାତ୍ରେ— ଲୋକେ ତ ଦିନଯାକ ଆସୁଥାନ୍ତି ବୋଲି ମନେହୁଏ— ଘରଣୀ ଏହି ପାତ୍ରସବୁ ମରୋଆ ଦାନାରେ ପୂର୍ଣ୍ଣକରି ସେଥିରେ ଗରମପାଣି ଢାଳେ ଏବଂ ଅତିଥିଙ୍କ ଆଗରେ ରଖେ । ଅତିଥି ବସିଯାଇ ନଡ଼ାଭଳି ସରୁ ଏକ ଛୋଟ ଜାତୀୟ ବାଉଁଶ ନଳୀରେ ତାକୁ ଶୋଷନ୍ତି । ପାଣିମିଶା ହାଲୁକା ହୋକ୍ ପରି ଏହାର ସ୍ୱାଦ ।

କିନ୍ତୁ କୁକୁଡ଼ାଟିଏ କିଣି ମୋପାଇଁ ରାନ୍ଧେ । ଏହା ସହ ଟିଣେ ସସେଜ, ବିସ୍କୁଟ୍ ଓ ପାଣିମିଶା ବ୍ରାଣ୍ଡିରେ ଉତ୍ତମ ଭୋଜନ ହୋଇଯାଏ । ବୌଦ୍ଧ ହୋଇଥିବାରୁ ଏଇ ସରଳ ଲୋକଙ୍କର ଜାତି ବିଚାର ନାହିଁ । ତେଣୁ ମୋ ଛାଡ଼ିଯାଇଥିବା ପଦାର୍ଥକୁ ଅତି ଆଗ୍ରହରେ ଖାଇଯାଆନ୍ତି । ସେମାନଙ୍କ ଭାତଖିଆ ସରିଲେ ଆମେ ଧୂଆଁ ଓ ମରୋଆ ପିଉ । ଲେପଚାମାନେ ପ୍ରଫୁଲ୍ଲମନା, ମଉଜିଆ ଲୋକ ଏବଂ ମୁଁ ଭାଷାନ୍ତରକାରୀ ମାଧମରେ ସେମାନଙ୍କ ସହ କଥାବାର୍ତ୍ତା କରି ଆନନ୍ଦ ପାଉଥିଲି ।

ଷଷ୍ଠଦିନ ବିରାଟ ପାହାଡ଼ର ଦକ୍ଷିଣପଟ ଦେଇ ଗହଳ ବଣବୁଦାର ଜୋକକାମୁଡ଼ା ସହି ଝାଳନାଳ ହୋଇ କଷ୍ଟେମଷ୍ଟେ ଉଠୁଥିବାବେଳେ ହଠାତ୍ ଆମେ ବୃକ୍ଷହୀନ ଏକ ପ୍ରଶସ୍ତ ସ୍ଥାନକୁ ଚାଲିଆସିଲୁ । ଏହା ଉପରେ ଉତ୍ତରରୁ ଦକ୍ଷିଣକୁ ଯାଇଛି ପ୍ରାୟ ଛଅଶହ ପଚାଶ ଗଜ ଦୀର୍ଘ 'ଗ୍ୟାଳିଙ୍ଗ୍ ମେଁ ଡଙ୍ଗ୍' ବା ସିକିମ୍‌ର ପ୍ରାର୍ଥନା ପାଚିରି । ଏହା ଏକ ସିଧା ପାଚିରି । ପ୍ରାୟ ଚାରି ଫୁଟ ଚଉଡ଼ା ଓ ଛଅ ଫୁଟ ଉଚ୍ଚାରେ ଆବଡ଼ାଖାବଡ଼ା ପଥରସବୁ ବିନା ଚୂନରେ ହାଲୁକାଭାବରେ ବସିଯାଇଚି । ଉଭୟ ପଟରେ ବଡ଼ ବଡ଼ ଫଳକଗୁଡ଼ିକର ଅଖଣ୍ଡିତ ଧାଡ଼ି ରହିଚି । ତା'ରି ଉପରେ ଅନଭ୍ୟସ୍ତ ହସ୍ତରେ ଖୋଦିତ ପଦ୍ମର ପ୍ରତ୍ୟେକ ପାଖୁଡ଼ାରେ ପବିତ୍ର ବୌଦ୍ଧନୀତି ସମ୍ବଳିତ ଅକ୍ଷର ଲେଖା ଅଛି 'ଓଁ ମଣିପଦ୍ମେ ହୁଁ' । ପ୍ରତ୍ୟେକ କଡ଼ରେ ଏବଂ ମଝିରେ ବାରଫୁଟ ଉଚ୍ଚ ଚତୁଷ୍କୋଣାକାର ସ୍ତମ୍ଭ ରହିଚି । ସେଥିରେ ମଧ୍ୟ ସେହିପରି ପ୍ରସ୍ତର ଫଳକ ରହିଚି ଏବଂ ତା'ଉପରେ ଥିବା ଗହଳ ଗଛତାଳରୁ ତୀର୍ଥଯାତ୍ରୀମାନେ ମାନସିକ କରି ଅର୍ପଣ କରିଥିବା ବିଭିନ୍ନ ରଙ୍ଗର କନା ଝୁଲୁଚି । ଏହାପରେ ଆବଡ଼ାଖାବଡ଼ା ପଥରର ପ୍ରାୟ ଅସରନ୍ତି ପାହାଚ ଉଠିଯାଇଚି । ବହଳ ବଣବୁଦା ମଧ୍ୟଦେଇ ଏଇ ପାହାଚ ସବୁ ଯାଇଚି ଉଚ୍ଚମାଳଭୂମିରେ ଥିବା ପୂର୍ବତମ ରାଜଧାନୀ ରେବ୍-ଦିନଚି ଯାଏ । ଏଇଠି ଭଙ୍ଗାରୁଜା କାନ୍ଥ ଭିତରେ ରହିଥିଲା ରାଜାଙ୍କର ପ୍ରାଚୀନ ପ୍ରାସାଦ । ଘନ ଧୂସର ବର୍ଣ୍ଣର ନିଦା ପଥରରେ ତିଆରି ଏହି ତିନିମହଲା ଉଚ୍ଚ ପ୍ରାସାଦରୁ ବାହାରକୁ ଉଚ୍ଚାଉଚ୍ଚା ପଥରର ପାହାଚ ଥିଲା । ସେଠାରୁ ପୁଣି ପର୍ବତର ଉପରଯାଏ ପାହାଚ ପଡ଼ିଚି । ସେଇ ଉପରେ ଅଛି ସିକିମ୍‌ର ସବୁଠାରୁ ଧନଶାଳୀ ମଠ ପେମ-ୟଙ୍ଗ-ଚି । ଏହା ମଧ୍ୟ ନିଦା ପଥରରେ ତିଆରି ତିନିମହଲା ଉଚ୍ଚ ଘର; ସୁନ୍ଦର କାରୁକାର୍ଯ୍ୟ ଖଚିତ ସୁନ୍ଦର ଦ୍ୱାରମାନଙ୍କରେ ମଣ୍ଡିତ । ଆମେ ଉପରକୁ ଯିବା ବାଟରେ ଅନେକ ଲେପଚା ଓ ଭୁଟିଆଙ୍କୁ ଭେଟିଲୁ । ଭିକ୍ଷୁ ଓ ସନ୍ନ୍ୟାସୀମାନଙ୍କ ପାଇଁ ସେମାନେ ଖାଦ୍ୟ ଓ ଉପହାର ନେଇ ଯାଉଥାନ୍ତି, ଯାହାଙ୍କୁ କି ସେମାନେ ଲାମା ବୋଲି କହନ୍ତି । ଆମେ ସନ୍ନ୍ୟାସୀମାନଙ୍କୁ ଠିକ୍ ପ୍ରାର୍ଥନା କରିବାକୁ ବାହାରିଥିବାବେଳେ ଭେଟିଲୁ । ସେମାନେ ସୁସ୍ଥ ଓ ସୁସ୍ୱଭାବର ଜଣାଯାଉଥିଲେ ଏବଂ ଢିଲା ହାତବାଲା ଲାଲ ଆଲଖାଲା ଓ ଶିରୋଭୂଷଣ ପିନ୍ଧିଥିଲେ । ମହନ୍ତ ବା ଡୋର-ଜି-ଲା-ବେନ୍ (ଆକ୍ଷରିକ ଅର୍ଥରେ ଘଡ଼ଘଡ଼ି ନିୟନ୍ତ୍ରଣକାରୀ) ଏକ ମିଟର ଲମ୍ବ ଲାଲରେ ହଳଦିଆ ଡେଣା ଲାଗିଥିବା ଆଲଖାଲା ପିନ୍ଧିଥିଲେ । ସେ ଥିଲେ ମୋଟା, ମୁଖାକୃତି ଚୀନାଙ୍କର ପରି ଧୂର୍ତ୍ତ, ଆଖି ସରୁ ଏବଂ ତେରେଛା, ଦାଢ଼ି ଖୁବ୍ କମ୍ ଓ ଧବଳ ।

ତଳ ମହଲାରେ ଥିବା ଉପାସନାଳୟରେ ଗୋଟିଏ ବସିବା ସ୍ଥାନ ଓ ଦୁଇଟି ପାର୍ଶ୍ୱ ଥିଲା । କାନ୍ଥ, ଛାତ ଓ ସ୍ତମ୍ଭର ପ୍ରତ୍ୟେକଟି ଅଂଶ ଚୀନ୍‌ରୁ ଆସିଥିବା କଳାକାରମାନଙ୍କ ଦ୍ୱାରା ଲାଲ ହଳଦିଆ ଓ ଅନ୍ୟାନ୍ୟ ଉଜ୍ଜ୍ୱଳ ରଙ୍ଗରେ ଚିତ୍ରିତ ହୋଇଥିଲା । ସେଥିରେ ଅବଲୋକିତ ପ୍ରଭୃତି ମହାଯାନ ପନ୍ଥାର ପବିତ୍ର ମୂର୍ତ୍ତି ଓ ଗୌତମବୁଦ୍ଧଙ୍କ ଜାତକ ସମୂହର ଦୃଶ୍ୟ ଅଙ୍କିତ ଥିଲା । ଖାଲି ଜାଗାମାନଙ୍କରେ ଡ୍ରାଗନ ଓ ଅନ୍ୟ କୁତ୍ସିତ ଆକୃତିର ରାକ୍ଷସ ମୂର୍ତ୍ତିର ଛବି ପୂରି ରହିଥିଲା । ମୁକ୍ତ ଦ୍ୱାର ଓ ଅଳ୍ପ କେତେକ ତୈଳ ପ୍ରଦୀପରୁ ଆସୁଥିବା କ୍ଷୀଣ ଆଲୋକରେ ଦେଖିଲେ ସେହି ଛବିସବୁ ସୁନ୍ଦର ମନୋରମ ପ୍ରଭାବ ସୃଷ୍ଟି କରେ । ଉଚ୍ଚ ବେଦିକାରେ ଘନନୀଳ

ରଙ୍ଗରେ ରଞ୍ଜିତ ଓ ଧ୍ୟାନମୁଦ୍ରାରେ ଉପବିଷ୍ଟ ବାରଫୁଟ ଉଚ୍ଚର ବୁଦ୍ଧମୂର୍ତ୍ତି ଥିଲା । ମଝିରେ ଥିବା ବସିବା ସ୍ଥାନର ଦୁଇକଡ଼ରେ ସନ୍ନ୍ୟାସୀମାନଙ୍କ ବସିବା ପାଇଁ ଅନୁଚ୍ଚ ଆସନସବୁ ଥିଲା । ଦକ୍ଷିଣପଟରେ ବସିବାର ଖାଲିସ୍ଥାନ ଆଡ଼କୁ ମୁହଁକରି ମହନ୍ତ ବସୁଥିଲେ । ତାଙ୍କ ଆଗରେ ଏକ ଅନୁଚ୍ଚ ଆସ୍ଥାନରେ ଥିଲା ତାଙ୍କ ଦୋର୍ଜି ବା ବଜ୍ରର ପାରମ୍ପରିକ ଧାରଣାନୁଯାୟୀ ଗଠିତ ପିତଳର ଏକ କ୍ଷୁଦ୍ର ଦଣ୍ଡ । ସେମାନେ ପାର୍ଶ୍ୱଅଂଶରେ ମୋତେ ବସାଇଲେ । ସମସ୍ତେ ବସିଗଲାପରେ ପ୍ରତ୍ୟେକ ସନ୍ନ୍ୟାସୀ ସେମାନଙ୍କ ବିରାଟ ଅଙ୍ଗାବରଣର ଛାତି ପଟରେ ହାତ ଭର୍ତ୍ତିକରି ଗୋଟିଏ ଲେଖାଏଁ ଛୋଟ କାଠଗିନା ବାହାର କରି ଆଣିଲେ । ଜଣେ ତରୁଣ ଭୃତ୍ୟ ବେତରେ ସୁନ୍ଦର ବୁଣାକାମ ହୋଇଥିବା କାଠପାତ୍ରରୁ ସେ ଗିନାମାନଙ୍କରେ ଚାହା ଢାଳିଦେଲା । ସେଇ ଗିନାଗୁଡ଼ିକୁ ଅଙ୍ଗୁଳିର ଅଗ୍ରଭାଗରେ ଧରିରଖି ନିଜ ମୁଣ୍ଡ ଚାରିପାଖରେ ଧୀରେ ଧୀରେ ଘୂରାଇବାବେଳେ ଗୁରୁଗମ୍ଭୀର ସ୍ୱରରେ ତିବ୍ବତୀ ଭାଷାରେ ମନ୍ତ୍ର ବୋଲିଲେ । ଏହାପରେ ସେମାନେ ତାଙ୍କ ଚାହା ପିଇଲେ ଏବଂ ବେଦିକାକୁ ବହୁବାର ପ୍ରଣାମ କରି କରି ଗୋଟି ଗୋଟି ହୋଇ ବାହାରିଗଲେ । ମୁଁ ମଧ୍ୟ କପେ ଚାହା ପିଇଲି । ଏହା ଇଟା ରଙ୍ଗର ଚାହା ' ଚାହାର ଭଙ୍ଗା ପତ୍ର, ଡାଙ୍ଗ ଓ ଅନ୍ୟାନ୍ୟ ତ୍ୟକ୍ତ ଅଂଶକୁ ବଳଦ ରକ୍ତରେ ଗୋଳେଇ ପିଠାଭଳି କରାଯାଇଥାଏ । ଏଥିରେ ଗରମ ପାଣି, ଲୁଣ ଓ ବାସୀ ଲହୁଣି ଦେଇ ବହଳ ସୁପ୍‌ଭଳି ହୁଏ; କିନ୍ତୁ ଆଶ୍ଚର୍ଯ୍ୟର କଥା ନିହାତି ଖରାପ ଲାଗେ ନାହିଁ। ଆମେ ବାହାରି ଆସିଲାବେଳେ ସନ୍ନ୍ୟାସୀମାନେ କିଏ କୁଆଡ଼େ ଚାଲିଯାଇଥିଲେ ଏବଂ ମନ୍ଦିର ଆଗରେ ଥିବା ବିରାଟ ବେଦୀଟି ଶୂନ୍ୟ ଓ ଧବଳ ସୂର୍ଯ୍ୟାଲୋକରେ ଆଲୋକିତ ହୋଇଥିଲା । ଚତୁଷ୍ପାର୍ଶ୍ୱର ଦୃଶ୍ୟ ଥିଲା ସମଗ୍ର ପୃଥିବୀରେ ବିରଳ । ଆମର ବହୁତ ତଳେ ଉଚ୍ଚ ପର୍ବତର ଢାଲୁ ଅଂଶରେ ସୂର୍ଯ୍ୟକିରଣ ପଡ଼ୁ ନ ଥିବା ଗଭୀର କୃଷ୍ଣ ବିବର ପର୍ଯ୍ୟନ୍ତ ଘନ ସବୁଜଠାରୁ ଧୂସର ଓ ବାଇଗଣୀ ପ୍ରଭୃତି ବିଭିନ୍ନ ବର୍ଣ୍ଣ ବୈଚିତ୍ର୍ୟ ସୃଷ୍ଟି କରୁଥିଲା । ଅଙ୍କାବଙ୍କା ହୋଇ ପଡ଼ିଥିବା ଅଣଓସାରିଆ ଉପତ୍ୟକାର ଆରପଟେ ଅନ୍ୟ ପାହାଡ଼ ଏବଂ ପାହାଡ଼ପରେ ପାହାଡ଼ । ଶେଷରେ ଖୁବ୍ ଦୂରରେ ଦକ୍ଷିଣ ଦିଗ୍‌ବଳୟ ସୀମାରେ କ୍ଷୀଣ ଭାବରେ ଦେଖାଯାଉଥିଲା ଦାର୍ଜିଲିଂର ଅର୍ଦ୍ଧଚନ୍ଦ୍ରାକୃତି ବୃକ୍ଷ ଗହଳ ଏବଂ ତା' ପଛକୁ ଠିଆ ହୋଇଥିବା ମେଘାବୃତ୍ତ ସେଞ୍ଚଲ । ପଶ୍ଚିମ ପଟରେ ପର୍ବତର ସ୍କନ୍ଧଦେଶ ଦୃଶ୍ୟ ଅବରୋଧ କରିଥିଲା; କିନ୍ତୁ ଉତ୍ତର ଦିଗରେ ସର୍ବାଞ୍ଚଳରେ ପୃଥିବୀର ଉଚ୍ଚତମ ପର୍ବତମାନେ ମହିମାମୟ ଗାମ୍ଭୀର୍ଯ୍ୟ ଧରି ଦଣ୍ଡାୟମାନ ହୋଇଥିଲେ । କେଉଁଠି କିପରି ଶୃଙ୍ଗ ଗମ୍ବୁଜ ବା ପୃଷ୍ଠପଟ ଆକାରରେ ଖଣ୍ଡିତ ହୋଇଥିଲା । ଏହା ଥିଲା ଦୀର୍ଘ ତୁଷାରଧବଳ ଶ୍ରେଣୀ, ଉଚ୍ଚତାରେ ପଚିଶ ହଜାର ଫୁଟରୁ କମ୍ ନୁହେଁ । ପର୍ବତର ଧବଳ ପାର୍ଶ୍ୱଦେଶ ତଳେ ଅନ୍ଧାରିଆ ଫାଙ୍କଗୁଡ଼ିକ ଗାଢ଼ ରକ୍ତବର୍ଣ୍ଣ ଦେଖାଯାଉଥିଲା ଏବଂ ମଝିରେ ମଝିରେ ଥିବା ବଡ଼ ବରଫସ୍ରୋତଟି ଜଣାଯାଉଥିଲା ଯେପରି ଗୋଟାଏ ଜଳପ୍ରପାତ ଖଣ୍ଡିତ ଶୀର୍ଷଦେଶରୁ ଡେଇଁ ପଡ଼ିଲାବେଳେ ମଝିରେ ଅଟକି ଯାଇ ହଠାତ୍ ଜମାଟ ବାନ୍ଧିଯାଇଛି । ସାତହଜାର ଫୁଟ ଖେପୁପେରୀର ମେଘାଶ୍ରିତ ଶୀର୍ଷକୁ ଚାହିଁଲେ ଆଖି ଉପର ତଳ, ଶୃଙ୍ଗପରେ ଶୃଙ୍ଗ ବୁଲିବୁଲି ଶେଷକୁ ଲୌହବର୍ଣ୍ଣର ବିରାଟ ପ୍ରାଚୀରଠାରେ ଅଟକିଯାଏ । ଧାଡ଼ି ବାନ୍ଧି ଓ ସ୍ତରସ୍ତରରେ ବରଫ ରଞ୍ଜିତ ସେହି ପ୍ରାଚୀର ଶେଷକୁ ଉପରକୁ ଉଠି ଉଠି ତିନିଶୀର୍ଷ ବିଶିଷ୍ଟ

କାଞ୍ଚନଜଙ୍ଗାରେ ପରିଣତ ହୋଇଛି । ଜୀବନରେ ଥରେ ଜଣେ ଏ ଦୃଶ୍ୟ ଦେଖିପାରେ । ଧରା ଓ ସ୍ୱର୍ଗ ମଝିରେ ଝୁଲୁଥିବାପରି ଅନୁଭୂତି ଏଠାରେ ଆସେ । ବିରାଟ ରକ୍ତବର୍ଣ୍ଣର ବିବରର ଅସୀମ ଗଭୀରତା, ଉତ୍ତୁଙ୍ଗ ଶୀର୍ଷ ସମୂହର ଚିରନ୍ତନ ତୁଷାର ଉପରେ ଛାୟାଲୋକର ବିଚିତ୍ର ଲୀଳା, ବିହଙ୍ଗପକ୍ଷ ପରି ବନାନୀର ବହୁବର୍ଣ୍ଣିଳ ସୁଷମାର ଦୁର୍ଲଭ ଛବି କେବେବି ବିସ୍ମୃତ ହେବାର ନୁହେଁ ।

ଅନିଚ୍ଛାସତ୍ତ୍ୱେ ମୁଁ ମହନ୍ତଙ୍କ ନିକଟକୁ ଫେରିଆସିଲି । ସେ ମୁରୋବା ଓ ମିଠେଇ ଖାଇବା ପାଇଁ ମୋତେ ନିମନ୍ତ୍ରଣ ଜଣାଇଥିଲେ । ଏହି କୋଠରିଟି ଗୋଟିଏ ବଡ଼ ଢାଲୁ ଜାଗା ଉପରେ, ଗୋଟିଏ ମାଳଭୂମିର ଠିକ୍ ନିମ୍ନ ଅଂଶରେ ସୁନ୍ଦର ବୃକ୍ଷରାଜିର ମଧ୍ୟରେ ନିର୍ମିତ । ଆମେ ସୁନ୍ଦର କାରୁକାର୍ଯ୍ୟ ଖଚିତ କାଠର ବାଲକୋନିରୁ ପକ୍ଷୀପରରେ ତିଆରି ଆସନରେ ବସି ଅପୂର୍ବ ଦୃଶ୍ୟାବଳୀ ଆଡ଼କୁ ଚାହିଁଥିଲୁ । ଦଲାଇଲାମାଙ୍କଠାରୁ ପବିତ୍ରତା ଲାଭ କରିବା ପାଇଁ ସେ ବରଫ ଉପର ଦେଇ ଲାସାକୁ ଯାଇଥିଲେ; କିନ୍ତୁ ସେ ରହସ୍ୟମୟ ପବିତ୍ର ନଗରୀ ବିଷୟରେ ୟୁରୋପୀୟମାନଙ୍କୁ କିଛି ଜଣାଇବା ପାଇଁ ସେ ଇଚ୍ଛୁକ ନ ଥିଲେ । ଯାହାହେଉ ବିଗତ ଭୁଟାନ ଯୁଦ୍ଧ ଓ ସିକିମ୍‌ର ପ୍ରଧାନମନ୍ତ୍ରୀ ଟୋଙ୍ଗସୁ ପିନ୍‌ଲୋର ଦୁଷ୍କର୍ମ ବିଷୟରେ ସେ ବହୁତ ଗପିଲେ ।

ଆମେ ଯେଉଁ ରାସ୍ତାରେ ଯାଇଥିଲୁ ଅନ୍ୟ ଏକ ଅଧିକ ସୁଗମ ରାସ୍ତାଦେଇ ଦାର୍ଜିଲିଂ ଫେରିଲୁ । ଏହା ଅପେକ୍ଷାକୃତ ନିର୍ଜନ ଓ ଗମନାଗମନ କାମ । ଏଇ ଲେପଚା କୁଲିମାନଙ୍କୁ 'ବାନା' ବା ସେମାନେ ଧରିଥିବା ଲମ୍ବା ସଳଖ ଛୁରୀରେ ବହୁପ୍ରକାର କୌଶଳ ଦେଖାଇବାର ସୁବିଧା ମିଳେ । ଦଶମିନିଟ୍‌ରୁ କମ୍ ସମୟ ମଧ୍ୟରେ ବାଉଁଶ କାଟି ସେମାନେ ଆଶ୍ରୟଟିଏ ତିଆରି କରିଦେଇପାରିବେ କିମ୍ୱା ବାଉଁଶଗୁଡ଼ାକୁ ଏକାଠି ଟାଣ ଲଟିରେ ବାନ୍ଧିଦେଇ ଝରଣା ଉପରେ ଏକ ପୋଲ ତିଆରି କରିଦେଇପାରିବେ । ଆମର ଖାଦ୍ୟ ସରିଗଲା ଏବଂ ଦିନେ ରାତିରେ ବାଉଁଶ କରଡ଼ି ଛଡ଼ା ଆମର ଆଉ ଖାଇବାକୁ କିଛି ନ ଥିଲା । ସେଗୁଡ଼ିକ ଗଛର କଅଁଳ ଗଜା ଏବଂ ଘିଅରେ ରନ୍ଧାହୁଏ । ଦେଖିବାକୁ ଏବଂ ସ୍ୱାଦରେ ତାହା ଆସପାରାଗସ୍‌ଠାରୁ ଭିନ୍ନ ନୁହେଁ । ଶେଷ ରାତିରେ ପାହାଡ଼ ଓ ଉପତ୍ୟକା ଦେଇ ଅଠରମାଇଲର ଦୀର୍ଘପଥ ଅତିକ୍ରମ କରି ଆମେ ବ୍ରିଟିଶ ରାଜ୍ୟ ଭିତରେ ଥିବା ଗୋଟିଏ ଛୋଟ ପୋଲିସ୍‌ଥାନା ଗୋକ୍‌ରେ ପହଞ୍ଚିଲୁ । ମୁଁ କ୍ଳାନ୍ତ ଓ କ୍ଷୁଧାର୍ତ୍ତ ହୋଇପଡ଼ିଥିଲି ଏବଂ ଭାରୁଆମାନେ ପଛରେ ରହିଯାଇଥିଲେ । ମୋଟ ଭାତ ଛଡ଼ା ପୋଲିସ୍‌ଙ୍କର ମୋତେ ଦେବାର କିଛି ନ ଥିଲା । ତାହା ପୁଣି ଖୁବ୍ କମ୍ । ଛୋଟ କୁଡ଼ିଆ ଘର ବାହାରେ ଚନ୍ଦ୍ରକିରଣରେ ବସି ମୁଁ ଅପେକ୍ଷା କରିଥିବାବେଳେ ପାହାଡ଼ିଆ ରାସ୍ତା ଉପରୁ କଳାକଳା ଓଦାଳିଆ ଉଚ୍ଚା ଗଛର ଗଣ୍ଡି ଅନ୍ତରାଳରୁ ସହଜ ଚଞ୍ଚଳ ପଦରେ ଭୁଟିଆ ପୋଷାକ ପିନ୍ଧି ଜଣେ ଡେଙ୍ଗା କର୍ମଠ ଯୁବକ ବାହାରି ଆସିଲା । ମୋତେ ଖୁବ୍ ଆଶ୍ଚର୍ଯ୍ୟ କରି ସ୍ପଷ୍ଟ ଇଂରାଜୀରେ ସେ ମୋତେ ସମ୍ବୋଧନ କଲା ଏବଂ କହିଲା ଯେ, ଦାର୍ଜିଲିଂର ଲୋକେ ମୋର କ'ଣ ହେଲା ବୋଲି ଭାବି ହେଉଛନ୍ତି । ଭୁଟିଆମାନେ ତାଙ୍କ ଜିନିଷପତ୍ର ନିଜ ଢିଲା ଅଙ୍ଗାବରଣର ଛାତିପାଖରେ ବୋହି ଆଣିଛନ୍ତି । ସେଇ ଜାଗା ଖୋଲି ଦେଇ ସେ ବୋତଲେ ବ୍ରାଣ୍ଡି, ଖଣ୍ଡ ଖଣ୍ଡ କଟା ହୋଇ ଖବରକାଗଜରେ ଗୁଡ଼ିଆ ହୋଇଥିବା ଗୋଟିଏ ଥଣ୍ଡା ଟର୍କି

ପକ୍ଷୀ, ଟାଣସିଦ୍ଧ ଅଣ୍ଡା ଓ ଗୋଟାଏ ପାଉଁରୁଟି ବାହାର କଲା । ସହୃଦୟତାର ସହ ସେଥିରେ ସେ ମୋତେ ଅଂଶୀଦାର କଲା ଏବଂ ଆମର ମନଭରି ଭୋଜନଟା ହେଲା । ତା'ପରେ ସେ ମୋତେ ତା'ର ଉପର ପରିଧାନଟି ଦେଲା ଏବଂ ତା'ତଳେ ଦେହକୁ ଚାପି ରଖିଥିବା ଯେଉଁ ସୁଟଟି ପିନ୍ଧିଥିଲା ସେଇଥିରେ ରାତିସାରା ଭାଲୁ ଶିକାର କରିବା ପାଇଁ ବାହାରିଗଲା । ତା'ର ନାଁ ଟମି ମ୍ୟାସନ, ଭାରତରେ ଜନ୍ମ ଓ ଲାଳିତ ହୋଇଥିବା ଜଣେ ଇଂରାଜୀ ଯୁବକ । ସେ ଇଂରାଜୀ ପୋଷାକ ଓ ଚଳଣି ସାଙ୍ଗକୁ ଦେଶୀୟ ପୋଷାକ ଓ ଚଳଣି ମଧ ଗ୍ରହଣ କରିଥିଲା । ସୈନ୍ୟବାହିନୀରେ କ୍ୟାପ୍‌ଟେନ ଥିବା ତା'ର ବାପା ଅବସର ନେବାପରେ ପୁଅ ଓ ଝିଅଙ୍କ ବଡ଼ ପରିବାର ନେଇ ଦାର୍ଜିଲିଂରେ ରହିଲେ ଏବଂ ସେମାନଙ୍କୁ ବଣ୍ୟ ଓ ଅଶିକ୍ଷିତ ରୂପେ ବଢ଼ିବା ପାଇଁ ଛାଡ଼ିଦେଲେ ।

ପରଦିନ ସକାଳେ ଆମେ ଗୋକ୍ ପାହାଡ଼ ଓହ୍ଲାଇ ରଙ୍ଗୀତ ନଦୀର ବେତ ତିଆରି ପୋଲ ଅତିକ୍ରମ କରି ଦାର୍ଜିଲିଂ ଆଡ଼କୁ ଆଗେଇଲୁ । ଏହି ସ୍ଥଳକୁ ମୋର ବିଚାରଶୀଳା ପ୍ରିୟ ପତ୍ନୀ ମୋର ଟଟୁଘୋଡ଼ା ସାଙ୍ଗକୁ ବୋତଲେ କ୍ଲାରେଟ୍, ଖଣ୍ଡେ ମାଂସଦିଆ ପିଠା ଓ ଅନ୍ୟାନ୍ୟ ସୁଖାଦ୍ୟ ସହ ସେ ସବୁ ବିଛାଇ ରଖିବା ପାଇଁ ଖଣ୍ଡେ ଧଳା କନା ପଠାଇ ଥିଲେ । ବଣୁଆ ଅଞ୍ଚଳରେ ଏଠି ସେଠି ଅନେକ ଦିନ ରହିବାପରେ ଭୋଜନଟି ଯେତେ ସୁସ୍ୱାଦୁ ହେଲା ତା'ଠାରୁ ବେଶି ହେଲା ନୟନପ୍ରୀତିକର । ଏସବୁ ଉତ୍ତମ ଦ୍ରବ୍ୟର ଯଥେଷ୍ଟ ସଦ୍‌ବ୍ୟବହାର କରି ଟଟୁଘୋଡ଼ା ଉପରେ ଉଠିଲି ଏବଂ ଅପାର ଅଙ୍କାବଙ୍କା ରାସ୍ତା ଦେଇ ଉଠି ଦାର୍ଜିଲିଂ ବାହାରିଲି । ଅବଶ୍ୟ ବାଟଯାକ ବର୍ଷା ହେଲା; କିନ୍ତୁ ଶେଷକୁ ଓଦା ଜୁତୁବୁତୁ ହୋଇ ଓ ଦେହସାରା ଅପରିଷ୍କାର ହୋଇ ତିନିଟାବେଳେ ନିରାପଦରେ ଘରେ ପହଞ୍ଚିଲି ।

ଭ୍ରମଣଜନିତ କ୍ଳାନ୍ତି ଓ ଥଣ୍ଡା ବାଜିବା ଦ୍ୱାରା ଜ୍ୱର ଆସିଗଲା ଏବଂ କିଛିଦିନ ମୁଁ ପ୍ରଳାପ ଅବସ୍ଥାରେ ରହିଲି । ଡାକ୍ତର ମତ ଦେଲେ ଯେ ମ୍ୟାଲେରିଆ ଜଳବାୟୁ ମୋ ଉପରେ ଏବଂ ଆମ ସମସ୍ତଙ୍କ ଉପରେ ପୂର୍ଣ୍ଣ ଭାବରେ ଜମିଯାଇଥିବାରୁ ମୋର ଆଉ ପୂର୍ଣ୍ଣିଆରେ ରହିବା ଚଳିବ ନାହିଁ । ପ୍ରଥମ ସୁବିଧା ଆସିବା ମାତ୍ରେ ଅଧିକ ସ୍ୱାସ୍ଥ୍ୟକର ଏକ ଜାଗାକୁ ବଦଳି କରିଦେବାପାଇଁ ଏଡ଼େନ୍ ସଦୟ ପ୍ରତିଶ୍ରୁତି ଦେଲେ । ମୁଁ ସୁସ୍ଥ ହେବାମାତ୍ରେ ଆମେ ପୂର୍ଣ୍ଣିଆ ଫେରିଲୁ ଏବଂ ଶୀତଦିନଟାଯାକ ଭୁଟାନ ଅଭିଯାନର ହିସାବପତ୍ର ତୁଟାଇବାରେ ମୁଁ ବ୍ୟସ୍ତ ରହିଲି ଯେପରିକି ବଦଳି ଆସିବାମାତ୍ରେ ମୁଁ ଜିଲ୍ଲା ପରିତ୍ୟାଗ କରିବା ପାଇଁ ପ୍ରସ୍ତୁତ ଥିବି । ଅପ୍ରେଲ ପର୍ଯ୍ୟନ୍ତ ଏହା ନ ଆସିବାରୁ ଆମେ ପ୍ରାୟ ଆଶା ଛାଡ଼ିଦେଇଥିଲୁ । ଶେଷକୁ ଚମ୍ପାରଣ ଜିଲ୍ଲାକୁ ମୋର ବଦଳି ହେଲା ଏବଂ ଆମେ ଷୋହଳ ଅପ୍ରେଲ ୧୮୬୬ରେ ପୂର୍ଣ୍ଣିଆରେ ଚାରିବର୍ଷରୁ ଅଳ୍ପ ଊଣା କାମ କରିବା ପରେ ସେ ସ୍ଥାନ ତ୍ୟାଗ କଲୁ ।



# ତ୍ରୟୋଦଶ ପରିଚ୍ଛେଦ

## ଚମ୍ପାରଣ : ୧୮୬୬-୬୭

ଆମେ ଟ୍ରେନ୍‌ରେ ସାହିବଗଞ୍ଜରୁ ପାଟନା ଯାଇ ସେଠାରେ କମିଶନର ଦାଲରିମ୍ପଲ୍‌ଙ୍କ ଅତିଥି ଭାବରେ କିଛିଦିନ ରହିଲୁ । ତା'ପରେ ପାଲିଙ୍କିରେ ବସି ବିରାଟ ତିର୍‌ହୁତ ଜିଲ୍ଲାର ସଦର ମହକୁମା ମୁଜାଫରପୁର ଗଲୁ । ପରଦିନ ରାତିରେ ପୁଣି ପାଲିଙ୍କି ଚଢ଼ି ବାଉନ ମାଇଲ ଦୂର ମୋତିହାରୀ ଆଡ଼କୁ ଚାଲିଲୁ । ପରଦିନ ଖୁବ୍ ଭୋରରୁ ଉଠି ଦେଖିଲୁ ଯେ ଆମ ପାଲିଙ୍କିମାନ ତଳେ ଥୁଆହୋଇଛି ଏବଂ ଭାରୁଆମାନେ ଚାରିଆଡ଼େ ଠିଆ ହୋଇଚନ୍ତି । କାହିଁକି ରହିଲେ ବୋଲି ପଚାରିବାରୁ ସେମାନେ କହିଲେ ଯେ, ଆମେ ବରାହ କାରଖାନାରେ ପହଞ୍ଚିଛୁ ଏବଂ ବାହାରକୁ ଆସି ଚାହା ପିଇବୁ । ମୁଁ ପ୍ରତିବାଦ କରି କହିଲି ଯେ ମୁଁ ଏଠାରେ ରହିବା ଚାହେଁ ନାହିଁ । ମୁଁ ସେ ଚାଷମାଲିକଙ୍କୁ ଚିହ୍ନେ ନାହିଁ, ମୁଁ ଅତିଶୀଘ୍ର ମୋତିହାରୀରେ ପହଞ୍ଚିବାକୁ ଚାହେଁ; କିନ୍ତୁ ସବୁ ନିଷ୍ଫଳ । ସେମାନେ ଉତ୍ତର ଦେଲେ ଯେ, ସବୁ ଇଂରାଜୀ ଭଦ୍ରଲୋକ ଏଇଠି ରହନ୍ତି ଏବଂ ସେମାନେ ଯଦି ଆମକୁ ନେଇଯାଇଥାଆନ୍ତେ ତେବେ ସେ ଚାଷମାଲିକ ସେମାନଙ୍କ ଉପରେ ଖୁବ୍ ରାଗିଥାଆନ୍ତା । ଆମକୁ ରାଜିହେବାକୁ ପଡ଼ିଲା ଏବଂ ବିରାଟ ଉଦ୍ୟାନ ଥିବା ଏକ ହତା ମଧ୍ୟ ଦେଇ ଆମକୁ ନିଆଗଲା ଏକ ପ୍ରକାଣ୍ଡ ଘରକୁ । ଜଣେ ଭଦ୍ର ବୃଦ୍ଧ ପରିଚାରକ ଆସି ଆମକୁ ଓହ୍ଲାଇବାରେ ସାହାଯ୍ୟ କଲେ ଏବଂ ସାଜଘରକୁ ନେଇଗଲେ । ସେଠାରେ ଆମେ ଧୁଆଧୋଇ ହୋଇ ପୋଷାକ ବଦଳାଇଲୁ । ବାହାରି ବାରଣ୍ଡାକୁ ଆସି ଆମେ ଦେଖିଲୁ ଚାହା, କଫି, ଅଣ୍ଡା, ହାମ୍, ଥଣ୍ଡା ମାଂସ, ହେରିଂ, ଜାମ୍, ଫଳ ଓ ଅନ୍ୟାନ୍ୟ ପଦାର୍ଥର ବିପୁଳ ପ୍ରାତରାଶର ସମ୍ଭାର । ଆମେ ଭଲଭାବରେ ଖିଆପିଆ ସାରିବାପରେ ଯିବାପାଇଁ ଚିନ୍ତା କରୁଛୁ ଏଇ ସମୟରେ କାରଖାନାର ଅନ୍ୟତମ ମାଲିକ ଡା:ହିଲସ୍ ଆସି ଆମକୁ ନମ୍ର ଅଭିବାଦନ କଲେ ଏବଂ ଜଣାଇଲେ ଯେ, ଆମର ଉପଯୁକ୍ତ ସେବା ହୋଇଛି ବୋଲି ସେ ଆଶା କରନ୍ତି । ଆମେ କିଏ ବୋଲି ସେ ପଚାରିଲେ ନାହିଁ ଏବଂ ତାହା ଜାଣିବାରେ ଆଗ୍ରହୀ ଥିବାପରି ଜଣାଗଲେ ନାହିଁ । ସବୁ ଆଗନ୍ତୁକଙ୍କର ଚର୍ଚ୍ଚା କରିବା ତାଙ୍କ କାରଖାନାର ମାଲିକଙ୍କର ଥିଲା ଏକ ଗର୍ବର ବିଷୟ; ଏପରିକି ସାଧାରଣ ରାସ୍ତାକୁ ତାଙ୍କ ଜମି ମଧ୍ୟଦେଇ ବୁଲାଇ ନେବାକୁ ମାଜିଷ୍ଟ୍ରେଟଙ୍କୁ ସେମାନେ ପ୍ରଭାବିତ କରିଥିଲେ ଯେପରିକି କେହି ସେମାନଙ୍କ ନଜରରୁ ଖସି ନ ଯାଆନ୍ତି । ଏପରି ଉନ୍ମୁକ୍ତ ଆତିଥେୟତା ସବୁ କାରଖାନାର ଏକ ନିୟମ ଥିଲା । ଆମେ ମୋତିହାରୀରେ ପହଞ୍ଚିବା ପରେ ବାହକମାନେ ଆମକୁ ଆଉ ଏକ କାରଖାନାକୁ ନେଲେ । ସେଠାରେ ମ୍ୟାନେଜର ବଲଡ୍‌ୱିନ ଆମକୁ ଅଭ୍ୟର୍ଥନା ଜଣାଇଲେ, ଅବଶ୍ୟ କର୍ତ୍ତବ୍ୟ ଦୃଷ୍ଟିରୁ । ଘରେ ପହଞ୍ଚି ଥଇଥାନ ହେବାପାଇଁ ଆମକୁ ପ୍ରାୟ ପନ୍ଦର ଦିନ ଲାଗିଲା । ଏଇ ଘରଟି ଥିଲା ସୁନ୍ଦର ହ୍ରଦ କୂଳରେ ଥିବା ଗୋଟିଏ ବିରାଟ ମନୋରମ

ବଙ୍ଗଳା । ଚମ୍ପାରଣ ହେଉଛି ନିମ୍ନ ପ୍ରଦେଶର ଉତ୍ତର ପଶ୍ଚିମାଞ୍ଚଳର ସୀମାନ୍ତ ଜିଲ୍ଲା । ଏହା ଏକ ଛୋଟ ଜିଲ୍ଲା, ପୂର୍ଣ୍ଣିଆର ପ୍ରାୟ ଏକଚତୁର୍ଥାଂଶ ଏବଂ କାମ ସ୍ୱାଭାବିକ ଭାବରେ କମ୍ । ଏତେ ହାଲୁକା ଜିଲ୍ଲା ହୋଇଥିବାରୁ ହିଁ ଏଡ଼େନ୍ ମୋତେ ଏହା ଦେଇଥିଲେ । ସେ ଭାବିଲେ ପୂର୍ଣ୍ଣିଆର ଗୁରୁଭାର ପରେ ମୋର ବିଶ୍ରାମ ଦରକାର । ଅବଶ୍ୟ ଏହା ମୋ ପାଇଁ ପୁଷ୍ପଶଯ୍ୟା ପରି ନ ଥିଲା । ପ୍ରଥମରୁ ହିଁ ମୁଁ ସଂଗ୍ରାମ ଆଗତପ୍ରାୟ ବୋଲି ଅନୁମାନ କରିଥିଲି, ଯଦିଓ ତାହା କେଉଁ ରୂପରେ ଆସିବ କଳ୍ପନା କରି ନ ଥିଲି ।

ପାଟନାରେ ଦଲ ରିମ୍ପଲ୍‌ଙ୍କ ଘରେ ଥିବାବେଳେ ମୋ ନୂଆ ଜିଲ୍ଲା ସମ୍ପର୍କରେ ସ୍ୱଭାବତଃ ବହୁସମୟ ଆଲୋଚନା କରିଥିଲି । ଦଲ୍ (ସେହି ନାଁରେ ସମସ୍ତେ ତାଙ୍କୁ ଡାକୁଥିଲେ) ଜଣେ ବିଚାରବାନ୍ ବ୍ୟକ୍ତି ଯଦିଓ ଅତ୍ୟନ୍ତ ଆଳସ୍ୟପରାୟଣତା ଫଳରେ ସେ ଜଣେ ଭଲ ଅଫିସର ହୋଇପାରିଲେ ନାହିଁ । ମୁଁ ପରେ ଜାଣିଲି ଚମ୍ପାରଣ ସମ୍ପର୍କରେ ତାଙ୍କର ବର୍ଣ୍ଣନା ସମ୍ପୂର୍ଣ୍ଣ ଠିକ୍ । ସେ କହିଥିଲେ ଯେ ସେଠାରେ ନୀଳଚାଷୀଙ୍କ ସଂଖ୍ୟା ଓ ଶକ୍ତି ଖୁବ୍ ବେଶି । ସେମାନଙ୍କଠାରୁ ସହାନୁଭୂତି ଓ ଆତିଥ୍ୟ ମିଳୁଥିବାରୁ ଏ ପର୍ଯ୍ୟନ୍ତ ଜିଲ୍ଲାକୁ ଶାସନ କରିଆସୁଥିବା ମାଜିଷ୍ଟ୍ରେଟମାନେ ସେମାନଙ୍କୁ ସାମାଜିକ ବାସନ୍ଦ ବା ସେମାନଙ୍କ ସହ କଳହ କରିବା ଅପେକ୍ଷା ସେମାନଙ୍କୁ ନିଜ ନିଜ ବଟେ ଛାଡ଼ିଦେବା ଭଲ ମନେକରି ଆସିଚନ୍ତି । ଏସବୁ ସେ ଖୁସି ମନରେ ଓ କଥା ଲହରରେ କହିଗଲେ ମଧ ଏସବୁ କରିଥିବା ଯୋଗୁଁ ସେହି ମାଜିଷ୍ଟ୍ରେଟମାନଙ୍କୁ ସେ ଦୋଷ ଦେଉ ନ ଥିଲେ । ତଥାପି ତାଙ୍କ ଚିନ୍ତାଧାରାର ଏହି ବାସ୍ତବ ଦିଗ ଅତି ଖରାପ ଅବସ୍ଥା ସୃଷ୍ଟି କରୁଥିବା ଏହି ସବୁ କାର୍ଯ୍ୟକଳାପର ବିରୋଧୀ ଥିଲା । ଏହିସବୁ ଅବସ୍ଥା ଫଳରେ ହିଁ କମିଶନର ଭାବରେ ସେ ସରକାରଙ୍କ ଦ୍ୱାରା ନିନ୍ଦିତ ହେଉଥିଲେ । ଯେଉଁ ଲୋକେ ସରକାରୀ ଚାକିରିଆ ନୁହନ୍ତି, କାହାରିଠାରେ ଉତ୍ତରଦାୟୀ ନୁହନ୍ତି ଏବଂ ନିଜ ସ୍ଥାନ ଓ ତା'ର ପ୍ରକୃତି ଦୃଷ୍ଟିରୁ ଯେଉଁମାନେ ସହଜରେ ନିରପେକ୍ଷ ହୋଇ ନ ପାରନ୍ତି ସେମାନଙ୍କ ହାତରେ ଏତେ କ୍ଷମତା ରହିବା ଉପଯୁକ୍ତ ନୁହେଁ । ବସ୍ତୁତଃ ଏ ଜିଲ୍ଲା ପାଇଁ ଜଣେ ଟାଣୁଆ ଲୋକ ଦରକାର, ଯେ କି ସବୁକୁ ଏକାଠି କରି ସରକାରଙ୍କ କର୍ତ୍ତୃତ୍ୱ ପ୍ରତିଷ୍ଠା କରିପାରିବ । ଦଲ୍ ନୀରବ ହସଟିଏ ହସି ସୂଚାଇ ଦେଲେ ଯେ ମୁଁ ଯଦି ସେ କାମ ପାଇଁ ଉପଯୁକ୍ତ ବୋଲି ପ୍ରମାଣିତ ହୁଏ, ତେବେ ସେ ଆଶ୍ଚର୍ଯ୍ୟ ହେବେ ନାହିଁ । ମୋତେ ସଂଗ୍ରାମ ପଥରେ ମତାଇ ଦେଉଛନ୍ତି ବୋଲି ମୋର ଦୂରଦର୍ଶିନୀ ସ୍ତ୍ରୀ ତାଙ୍କୁ ସତର୍କ କରାଇ ଦେବାରୁ ସେ କେବଳ କହିଲେ ଯେ, ମୁଁ ନିଜକୁ ପ୍ରତିଷ୍ଠିତ କରେ ବୋଲି ସେ ଆଶା କରନ୍ତି ।

ମୋର ପହଞ୍ଚିବା ଦିନ ସକାଳବେଳା ବଲଡ୍‌ଓ୍ୱିନ ତା ବଗିରେ ମୋତେ ସେ ଛୋଟ ସହର ଓ ସରକାରୀ ନିବାସ ଚାରିଆଡ଼ ବୁଲାଇ ଦେଖାଇଲା । ଅବଶ୍ୟ ତା'ର ଉଦ୍ଦେଶ୍ୟ ଥିଲା ଯେ ନୂଆ ମାଜିଷ୍ଟ୍ରେଟ ସହ ତା'ର ଯେ ଭଲ ପଡୁଛି ଏହା ଦେଶୀୟ ଲୋକଙ୍କୁ ଦେଖାଇଦେବା । ଆମେ ଯାଉଥିବାବେଳେ ସେ କୌଣସି କୌଣସି ସ୍ଥାନ ଆଡ଼କୁ ନିର୍ଦ୍ଦେଶ କରି ଗର୍ବର ସ୍ୱରରେ କହୁଥାଏ, ''ସେଇଟା ମୋର— ମ୍ୟାଜିଷ୍ଟ୍ରେଟଙ୍କର ସେଠାରେ କୌଣସି କ୍ଷମତା ନାହିଁ । ମୁଁ କିଛି କହିଲି ନାହିଁ କିନ୍ତୁ ଦଲଙ୍କ ଉକ୍ତି ମୋର ମନେପଡ଼ିଲା । ପରେ ମୁଁ ବୁଝିପାରିଲି ସେଦିନ

ସକାଳେ ଆମେ ବରାଦ୍ଧ କାରଖାନାଠାରେ ରହିଥିବା ବେଳେ ଡା: ହିଲ୍‌ଙ୍କର ଯେକୌଣସି ବ୍ୟକ୍ତିପ୍ରତି ଯେ ନିର୍ଲିପ୍ତ ଭାବ ତା' ଥିଲା ଛଳନା । ମୁଁ କିଏ ତାହା ସେ ଭଲ ଭାବରେ ଜାଣିଥିଲେ କିନ୍ତୁ ସେ ମୋତେ ଜଣାଇ ଦେବାକୁ ଚାହୁଁଥିଲେ ଯେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ବ୍ୟକ୍ତିତ୍ୱର କିଛି ପ୍ରଭାବ ନାହିଁ ଏବଂ ତାଙ୍କ ଆଗମନ କିଛି ଗୁରୁତର ବିଷୟ ନୁହେଁ । କିନ୍ତୁ ପ୍ରକୃତରେ ଏଇଟା ଥିଲା ଖୁବ୍ ଗୁରୁତର ଏବଂ ନୀଳଚାଷୀମାନେ ବାସ୍ତବରେ ଏକ ସଂଗ୍ରାମ ପାଇଁ ପ୍ରସ୍ତୁତ ହେଉଥିଲେ ।

ଜଣେ ଲୋକର ନାଁ ମୁଁ ଏଠି କହୁ ନାହିଁ । ପୂର୍ଣ୍ଣିଆଠାରେ ତା'ର ଅନେକ ଖରାପ କାମ ଜାଣିପାରି ମୁଁ ତା'ର ମୁଖା ଖୋଲି ଦେଇଥିଲି । ସେ ତିର୍‌ହୁତ୍‌କୁ ବଦଳି ହୋଇ ପ୍ରତିହିଂସାରେ ମୋ ବିଷୟରେ ନାନା କ୍ଷତିକାରକ କଥା ପ୍ରଚାର କରିଥିଲା ଏବଂ ଅନ୍ୟମାନଙ୍କୁ ମଧ ତାହା କରିବାକୁ ପ୍ରବର୍ତ୍ତାଉଥିଲା । ଫଳରେ ସମସ୍ତ ଚାଷମାଲିକ ଗୋଷ୍ଠୀଟାର ପୂର୍ବରୁ ମୋ ସମ୍ପର୍କରେ ଖରାପ ଧାରଣା ସୃଷ୍ଟି ହୋଇଥିଲା । ଏହିପରି ବିଭେଦର ବୀଜ ବୁଣା ସରିଥିଲା ।

ମୁଁ ପହଞ୍ଚିଥିଲା ବେଳକୁ ମୋତିହାରୀ ଦୁର୍ଭିକ୍ଷ ଠିକ୍ ଆରମ୍ଭ ହୋଇଥାଏ । ପୂର୍ଣ୍ଣିଆରେ କିଛି ଫସଲହାନୀ ହୋଇଥିଲା । କିନ୍ତୁ ଚମ୍ପାରଣରେ ବ୍ୟାପକ ଫସଲହାନୀ ଓ ଦୁର୍ଦ୍ଦଶା ପଡ଼ିଥିଲା । ମୋର ପହଞ୍ଚିବାର ଅଳ୍ପଦିନ ପରେ ମୋ ପୂର୍ବବର୍ତ୍ତୀ ମାଜିଷ୍ଟ୍ରେଟଙ୍କ ବିଜ୍ଞପ୍ତି ଅନୁଯାୟୀ ଦୁର୍ଦ୍ଦଶାର ପ୍ରତିକାର ପାଇଁ କି କି ବ୍ୟବସ୍ଥା କରାଯିବ ତାହା ବିଚାର କରିବା ପାଇଁ ପ୍ରଧାନ ବାସିନ୍ଦାମାନଙ୍କର ଏକ ସଭା ହେଲା । କଲେକ୍‌ଟର ଭାବରେ ମୋର ସେଥିରେ ସଭାପତି ହେବା କଥା । ମୁଁ କକ୍ଷରେ ପହଞ୍ଚି ଦେଖିଲି ପ୍ରାୟ ୨୦ ଖଣ୍ଡେ ନୀଳଚାଷୀ ମୋପାଇଁ ଅପେକ୍ଷା ନ ରଖି ସଭାକାର୍ଯ୍ୟ ଆରମ୍ଭ କରି ଦେଇଛନ୍ତି । ସେମାନଙ୍କ ମଧ୍ୟରୁ ଜଣେ କିଛି ଉଦାରତା ଦେଖାଇ ମୋତେ କହିଲା ଯେ ସେମାନେ ସିଦ୍ଧାନ୍ତ କରିଛନ୍ତି ନିଜ 'ଦେହାତ୍'ରେ ଥିବା ଦୁର୍ଗତ ଗ୍ରାମମାନଙ୍କୁ ପ୍ରତ୍ୟେକ ଚାଷୀ ସାହାଯ୍ୟ ଦେବେ ଏବଂ କୌଣସି ସରକାରୀ ହସ୍ତକ୍ଷେପ ସେମାନେ ବରଦାସ୍ତ କରିବେ ନାହିଁ । ଏ ବିଷୟରେ ମୁଁ କେବଳ କହିଲି ଯେ ସରକାର ଜିଲ୍ଲା ତମାମ ଏକ ସାହାଯ୍ୟସଂସ୍ଥା ସଂଗଠନ କରିବା ପାଇଁ କଲେକ୍ଟର ହିସାବରେ ମୋତେ ନିର୍ଦ୍ଦେଶ ଦେଇଛନ୍ତି ଏବଂ ଏଥିପାଇଁ କିଛି ଅର୍ଥ ମୋ ଦାୟିତ୍ୱରେ ଦିଆଯାଇଥିବାରୁ ଚାଷୀମାନେ ଓ ମୋ ନିୟନ୍ତ୍ରଣରେ ଥିବା ସରକାରୀ କର୍ମଚାରୀମାନେ ଯଦି ଅନିୟନ୍ତ୍ରିତ ଭାବେ ପରସ୍ପର ବିରୋଧୀ କାର୍ଯ୍ୟ କରନ୍ତି ତେବେ ଅର୍ଥ ଓ ଶକ୍ତିର ଅପଚୟ ସାର ହେବ । ଶେଷରେ ଯୁକ୍ତିତର୍କରେ ବହୁ ସମୟ ନଷ୍ଟ ହେବା ପରେ ସେମାନେ ସରକାରୀ ସାହାଯ୍ୟ ପାଣ୍ଠିକୁ ଚାନ୍ଦା ଦେବାପାଇଁ ରାଜି ହେଲେ । ସମଗ୍ର ଜିଲ୍ଲାରେ ବିଧିବଦ୍ଧ ସାହାଯ୍ୟ ଯୋଜନା ସଂଗଠିତ କରି ତାକୁ କାର୍ଯ୍ୟକାରୀ କରାଇବା ପାଇଁ କେତେକ ସରକାରୀ କର୍ମଚାରୀ ଓ କେତେକ ଚାଷୀଙ୍କୁ ନେଇ କମିଟି ଗଢ଼ାଗଲା । ଉପଯୁକ୍ତ ସ୍ଥଳରେ ସାହାଯ୍ୟକେନ୍ଦ୍ରମାନ ଖୋଲାଯିବାର ସ୍ଥିର ହେଲା । ଚାଷୀମାନଙ୍କ ସମ୍ମାନ ରକ୍ଷାକରିବା ପାଇଁ ଏବଂ ସେମାନଙ୍କ ଆତ୍ମବଡ଼ିମାକୁ ଆହୁରି ସମ୍ପ୍ରସାରିତ କରିବା ପାଇଁ କାରଖାନାମାନଙ୍କୁ ସାହାଯ୍ୟ କେନ୍ଦ୍ର ରୂପେ ବଛାଗଲା ଏବଂ ପ୍ରତ୍ୟେକ ଚାଷୀଙ୍କୁ ତା ନିଜ କେନ୍ଦ୍ରର ପରିଚାଳକ ନିଯୁକ୍ତ କରାଗଲା । ପ୍ରଥମେ ସେମାନେ କେତେ ଲୋକଙ୍କୁ ସାହାଯ୍ୟ ଦିଆଯିବ ବା କେତେ ଟଙ୍କା ଦିଆଯିବ ସେ ବିଷୟରେ ବିବରଣୀ ଦେବା ପାଇଁ ମନା କରିଦେଲେ । କିନ୍ତୁ ସେମାନଙ୍କୁ ବତାଇ

ଦିଆଗଲା ଯେ ସମ୍ବାଦପତ୍ର ପ୍ରତିନିଧିମାନେ ଆସୁଛନ୍ତି ଏବଂ ଯେଉଁମାନଙ୍କ ସାହାଯ୍ୟ କାମ ବିଶଦ ଭାବରେ ଉଭୟ ସରକାର ଓ ଜନସାଧାରଣଙ୍କ ଦୃଷ୍ଟିକୁ ଆସିବ ସେମାନଙ୍କର ସମ୍ମାନ ଓ ମାହାତ୍ମ୍ୟ ଖୁବ୍ ବଢ଼ିବ । ଏଥିରେ ସେମାନଙ୍କର ମନ ମାନିଗଲା ଏବଂ ସେମାନେ ନିୟମାନୁଯାୟୀ ବିବରଣୀ ପଠାଇବାକୁ ରାଜି ହେଲେ । ସଭା ଶେଷ ହେବା ବେଳକୁ ଜଣେ ଦୁଇଜଣ ବୟସ୍କ ଚାଷୀ ଓ କର୍ମଚାରୀ ମୋ କାମର ସଫଳତା ଲାଗି ମୋତେ ଅଭିନନ୍ଦନ ଜଣାଇଲେ । ଏଥିରେ ସମସ୍ତେ ଅଧିକ ଆଶ୍ଚର୍ଯ୍ୟ ହୋଇଗଲେ । କାରଣ ଅଧିକାଂଶ ଚାଷୀ ମୋର କୌଣସି ପ୍ରସ୍ତାବରେ ରାଜି ହେବେ ନାହିଁ ବୋଲି ଆଗରୁ ସିଦ୍ଧାନ୍ତ କରି ସଭାକୁ ଆସିଥିଲେ । ଯାହାହେଉ ଦୁଇଜଣ ପ୍ରଧାନ ଚାଷୀ ବଲଡୁଇନ ଓ ଗିବନ ('ଟମ' ଗିବନ ବଙ୍ଗଳା ସାରା ଜଣାଶୁଣା ଥିଲେ) ମୋ ପଛରେ ଠିଆ ହେଲେ ଏବଂ ମୋର ସମସ୍ତ ପ୍ରସ୍ତାବ କାର୍ଯ୍ୟକାରୀ କରାଇବାରେ ସାହାଯ୍ୟ କଲେ । ବିରାଟ ଅଞ୍ଚଳ ତିରହୁତ୍‌ର (ଚମ୍ପାରଣ ଯାହାର ଅନ୍ତର୍ଭୁକ୍ତ) ନୀଳଚାଷୀମାନେ ପୂର୍ଣ୍ଣିଆ ଚାଷୀମାନଙ୍କଠାରୁ ଅଲଗା ଶ୍ରେଣୀର ଲୋକ ଏବଂ ସେମାନଙ୍କ କର୍ମପଦ୍ଧତି ମଧ ଅଲଗା । ଯେଉଁମାନେ ନିଜକୁ ଚମ୍ପାରଣରେ ବ୍ୟବସାୟର ପ୍ରଥମ ପ୍ରବର୍ତ୍ତକ ବୋଲି କହୁଥିଲେ ସେମାନେ ବହୁ ସମ୍ପତ୍ତି ରୋଜଗାର କରିସାରି ପରିଚାଳକମାନଙ୍କ ହାତରେ ବ୍ୟବସାୟ ଛାଡ଼ିଦେଇ ଅବସର ନେଇ ଇଂଲଣ୍ଡ ଫେରିଯାଇଛନ୍ତି । ଏହି ପରିଚାଳକମାନଙ୍କ ମଧ୍ୟରୁ ଅଧିକାଂଶ ରୁକ୍ଷ, ଅଶିକ୍ଷିତ, ମାତାଲ, ଲମ୍ପଟ ଏବଂ ଦେଶୀୟମାନଙ୍କ ପ୍ରତି ସହାନୁଭୂତିବିହୀନ । ପ୍ରଥମେ ବ୍ୟବସାୟ ଏହିପରି ଭାବରେ ପ୍ରତିଷ୍ଠିତ ହୋଇଥିଲା । ଜଣେ ଖୁବ୍ ଧନୀ ଜମିଦାର— ବେଟିହାର ମହାରାଜା ଅଳ୍ପ କିଛି ଅଞ୍ଚଳ ବ୍ୟତୀତ ସମଗ୍ର ଜିଲ୍ଲାର ମାଲିକ ଥିଲେ । ତାଙ୍କ ବ୍ୟବସ୍ଥାନୁଯାୟୀ 'ମୁସ୍ତାଜିର' ବୋଲାଉଥିବା ଚାଷୀମାନଙ୍କୁ ସେ ତାଙ୍କ ଜମିଦାରୀର ଗ୍ରାମସବୁ ବହୁକାଳ ପାଇଁ ପଟ୍ଟା ଦେଉଥିଲେ । ସେ ଚାଷୀ ବାର୍ଷିକ ନିର୍ଦ୍ଦିଷ୍ଟ ପରିମାଣ ରାଜସ୍ୱ ଦେବାପାଇଁ ସମ୍ମତ ହୋଇ ଗ୍ରାମବାସୀମାନଙ୍କଠାରୁ ଖଜଣା ଆଦାୟ କରି ତାହାର ଭରଣା କରୁଥିଲା । ଜଣେ ଇଂରେଜ ବ୍ୟକ୍ତି ମହାରାଜାଙ୍କଠାରୁ ଲଗାଲଗି କେତେଗୁଡ଼ିଏ ଗ୍ରାମ— ବୋଧହୁଏ ୧୫ କିମ୍ବା ୨୦ ହେବ, ବହୁ ଦିନପାଇଁ ପଟ୍ଟା ନେଇପାରୁଥିଲା । ଏହାକୁ ସେ କହୁଥିଲା ତାହାର 'ଦିହାତ' (ଗୋଟିଏ ପାର୍ଶି ଶବ୍ଦ— ଅର୍ଥ ଗ୍ରାମସମୂହ) । ଏଇଠାରେ ସେ ଗୋଟିଏ ପ୍ରଧାନ ଓ କେତେଗୁଡ଼ିଏ ସହାୟକ କାରଖାନା ବସାଉଥିଲା । ତା'ପରେ ସେସବୁ ଗାଁର ପ୍ରଧାନଙ୍କୁ ଡକାଇ ସେମାନଙ୍କୁ ବୁଝାଇ ସୁଝାଇ ବା ବାଧକରି ଗୋଟିଏ ଦଲିଲ ଦସ୍ତଖତ କରାଇ ନେଉଥିଲା । ସେଥିରେ ସେ ନିଜର ଓ ସମସ୍ତ ଚାଷୀମାନଙ୍କ ପକ୍ଷରୁ ଚୁକ୍ତି କରିନେଉଥିଲା ଯେ ସେମାନେ ସେମାନଙ୍କ ଜମିର ଏକ ନିର୍ଦ୍ଦିଷ୍ଟ ଅଂଶରେ— ବିଘାଏ ଜମିରେ ଚାରିକୋଟା ହାରରେ ଅର୍ଥାତ୍ ସମସ୍ତ ଜମିର ଏକ ଚତୁର୍ଥାଂଶରେ ନୀଳଚାଷ କରିବେ । ମଞ୍ଜି ବୁଣିବା ଋତୁ ଆସିଲେ ପ୍ରତ୍ୟେକ ରୟତ ତା ଜମିରେ ବୁଣିବା ଭଳି ଯଥେଷ୍ଟ ମଞ୍ଜି ପାଉଥିଲା ଏବଂ ହଳ କରିବା, ମଞ୍ଜି ବୁଣିବା ଓ ଦଳ କାଢ଼ିବା ଇତ୍ୟାଦି ଖର୍ଚ୍ଚ ପାଇଁ ଅଳ୍ପ କିଛି ଟଙ୍କା ପାଉଥିଲା । ଅମଳ ସମୟରେ ରୟତ ନୀଳ କାଟି କାରଖାନାକୁ ବୋହି ନେଉଥିଲା । ସେଠାରେ ସେସବୁ ଯଥାରୀତି ମପାଯାଇ ଦିଆଯାଇଥିବା ଅଗ୍ରିମ ଟଙ୍କା କାଟିରଖି ନିର୍ଦ୍ଦିଷ୍ଟ ହାରରେ ଟଙ୍କା ଦିଆଯାଉଥିଲା । ରୟତ ନେଇଥିବା ମଞ୍ଜିରୁ ଯେତିକି ଉତ୍ପାଦନ ହେବା କଥା ତା'ଠାରୁ କମ୍ ନୀଳ ଆଣିଥିବା ମନେ ହେଲେ ମାଲିକ ସେଇ

ହାରରେ ଟଙ୍କା କାଟି ଦେଉଥିଲା । ଏହିପରି ଭାବରେ ରୟତ ସର୍ବଦା ଚାଷୀର ଧାରୁଆ ହୋଇ ରହୁଥିଲା ଏବଂ ଚାଷ ମାଲିକ ନିଜ ସ୍ୱାର୍ଥପାଇଁ ତାକୁ ସେହିପରି ରଖୁଥିଲା । ପରେ ମୁଁ ଏ ବିଷୟ ପୁଣି ଆଲୋଚନା କରିବି । ମୋର କଷ୍ଟକର ଅବସ୍ଥା ବୁଝାଇ ଦେବାପାଇଁ କେବଳ ଏଠାରେ ଏତକ କୁହାଗଲା । ରୟତ ଉପରେ ସର୍ବମୟ ନିୟନ୍ତ୍ରଣ ବଜାୟ ରଖିବା ଅତ୍ୟନ୍ତ ଆବଶ୍ୟକ ବୋଲି ମାଲିକମାନେ ମନେ କରୁଥିଲେ ଏବଂ ମାଜିଷ୍ଟ୍ରେଟଙ୍କ କର୍ତ୍ତୃତ୍ୱ ସେଥିରେ ବାଧା ସୃଷ୍ଟି କରୁଥିବାରୁ ତାହାକୁ ଯେତେ ସମ୍ଭବ ଦୂରେଇ ରଖିବା ଥିଲା ସେମାନଙ୍କର ନୀତି । ଏହି ନିୟନ୍ତ୍ରଣ କ୍ରମେ ନିର୍ଦ୍ଦୟ ଉତ୍ପୀଡ଼ନରେ ପରିଣତ ହେଲା ।

ମୋର ବିରୋଧୀମାନେ କହୁଥିଲେ ଯେ, ମୁଁ କେବଳ କ୍ଷମତାର ନିଶାରେ ମୋ ଜିଲ୍ଲାର ହର୍ତ୍ତାକର୍ତ୍ତା ହେବାପାଇଁ ଏବଂ ସବୁ ବିଷୟରେ ମୋ ମତ ସାବ୍ୟସ୍ତ କରିବାପାଇଁ ଜୋର ଦେଉଚି; କିନ୍ତୁ ପ୍ରକୃତରେ ତାହା ଭୁଲ । ସରକାର ମୋ ଉପରେ ଜିଲ୍ଲାର ପବିତ୍ର ଦାୟିତ୍ୱ ନ୍ୟସ୍ତ କରିଥିଲେ ଏବଂ ସେଥିପ୍ରତି ବିଶ୍ୱସ୍ତ ରହିବାକୁ ମୁଁ ବାଧ୍ୟ । ସୁଖ, ସ୍ୱାଚ୍ଛନ୍ଦ୍ୟ ଓ ସହଜ ଜନପ୍ରିୟତା ପ୍ରତି ଆଗ୍ରହୀ ହୋଇ ମୁଁ ଯଦି ନିଷ୍କର୍ମା ହୋଇ ବସିରହି ମୋ କାମ ଓ ସ୍ଥାନ ଅନ୍ୟଦ୍ୱାରା ଅଧିକୃତ ହେବାକୁ ଦେଇଥାଆନ୍ତି, ତେବେ ତାହା ମୋ ପକ୍ଷରେ ଅତି ନୀଚତା ହୋଇଥାଆନ୍ତା । ଲୋକଙ୍କୁ ଶାସନ କରିବା ଖାଲି ଅଭିଜ୍ଞ (Le premier venu) ମାନଙ୍କ କରିବା ଭଳି କାମ ନୁହେଁ ଏବଂ ବୟସରେ କନିଷ୍ଠତର ହେଲେ ମଧ୍ୟ ମୋର ଯଥେଷ୍ଟ ଶିକ୍ଷା ସହ ପାଞ୍ଚବର୍ଷର ତାଲିମ ଓ ଅଭିଜ୍ଞତା ଥିଲା ଯାହାକି ଏହିସବୁ 'ପଣ୍ୟବାହୀ ଜାହାଜର ଏକଦା ସହକାରୀ' ବା 'ବ୍ୟବସାୟ ପ୍ରତିଷ୍ଠାନର ପୂର୍ବତନ କିରାଣିମାନଙ୍କର ନ ଥିଲା ।

ସେତେବେଳକୁ ମୋର ଚମ୍ପାରଣରେ ଅଳ୍ପ କେତେ ସପ୍ତାହ ମାତ୍ର ହୋଇଥାଏ । ନିଜକୁ ମୋତିହାରୀ ସହରର ପ୍ରଭୁ ଓ ସର୍ବେସର୍ବା ବୋଲି ବିଚାରୁଥିବା ବଲଡ୍‌ୱିନ୍ ଜଣେ ଲୋକକୁ ତା' ବାସସ୍ଥଳୀ ଗୃହରୁ ଉଚ୍ଛେଦ କରିବାକୁ ଇଚ୍ଛାକଲା, କାରଣ ସେ ନୀଳଚାଷ କରିବା ପାଇଁ ମନାକରି ଦେଇଥିଲା । ସେ ଅଭିଯୋଗ କଲା ଯେ ଅନ୍ୟ ଫସଲ କଲେ ତାକୁ ବେଶି ଲାଭ ମିଳିବ ଏବଂ ଗାଁ ମୁଖିଆଠାରୁ ସମଗ୍ର ଗ୍ରାମବାସୀଙ୍କ ତରଫରୁ ଜୋର ଜବରଦସ୍ତ ଯେଉଁ ଚୁକ୍ତିପତ୍ର ଲେଖାଇ ନିଆଯାଇଛି ସେଥିରେ ସେ ବାଧ୍ୟ ନୁହେଁ । ସେ ଯଥାର୍ଥରେ କହିଲା ଯେ ମୁଖିଆର ନିଜ ଛଡ଼ା ଅନ୍ୟ କାହାକୁ ଚୁକ୍ତିବଦ୍ଧ କରିବାର କ୍ଷମତା ନାହିଁ ଏବଂ ଏଥିରେ ତା'ର ମତାମତ ନିଆଯାଇ ନ ଥିବାରୁ ସେ ଏଥିରେ ବାଧ୍ୟ ନୁହେଁ । ଚମ୍ପାରଣର ଚାଷମାଲିକଙ୍କ ଦୃଷ୍ଟିରେ ନୀଳଚାଷ କରିବାକୁ ମନାକରୁଥିବା ଲୋକ ହେଉଛି ବିଦ୍ରୋହୀ ଓ ମାରାତ୍ମକ ବ୍ୟକ୍ତି । ତା' ବିରୋଧରେ ସମସ୍ତ କାର୍ଯ୍ୟ ଆଇନସଂଗତ । ତେଣୁ ବଲଡ୍‌ୱିନ ହଳିଆମାନଙ୍କୁ ପଠାଇ ସେ ରୟତର କୁଡ଼ିଆ ଚାରିପଟେ ଥିବା ଜମିର ପ୍ରତି ଇଞ୍ଚ ଚାଷ କରାଇଦେଲା, ଅତି ଶସ୍ତା ନିମ୍ନଶ୍ରେଣୀୟ ଡାଲିଜାତୀୟ ଫସଲର ମଞ୍ଜି ବୁଣି ତା' ଚାରିପଟେ କଣ୍ଟାବାଡ଼ ଦେଇଦେଲା; ଫଳରେ ସେ ଲୋକ ଓ ତା ପରିବାରକୁ ତା ନିଜ ଘରେ ବନ୍ଦୀ କରିଦେଲା । ପୁଣି ସେ ସେହି ଲୋକକୁ ଜଣାଇଦେଲା ଯେ ସେ ଯଦି ବିହନ ବୁଣା ହୋଇଥିବା ଜାଗାରେ ପାଦଦିଏ ତେବେ ଅନଧିକାର ପ୍ରବେଶ ଅପରାଧରେ ଜେଲ ଯିବ । ସେ ଦୁର୍ଗତ ଲୋକ ଓ ତା' ପରିବାର ଭୟଭୀତ ହୋଇ ଦୁଇଦିନକାଳ କଷ୍ଟ

ଭୋଗକଲେ; କିନ୍ତୁ ସେମାନଙ୍କ ଖାଦ୍ୟ ସରିଗଲାରୁ ଏବଂ ପାଣିଟୋପେ ପାଇବା ପାଇଁ କୂଅ ପର୍ଯ୍ୟନ୍ତ ଯାଇ ନ ପାରିବାରୁ ସେଇ ହତାଶା ତାଙ୍କୁ ବଳ ଯୋଗାଇଦେଲା । ସେମାନଙ୍କୁ ଜଗିବାକୁ ଲୋକ ନିଯୁକ୍ତ ହୋଇଥିଲେ ମଧ ରୟତଟି ରାତିରେ ଖସିଆସି ସକାଳଯାଏ ଲୁଚିରହି, ସକାଳେ ମୋ କଚିରି ଭିତରକୁ ଆସି ସମସ୍ତ ଘଟଣା କହିଲା । ଭାରତୀୟ ଦଣ୍ଡବିଧିର 'ବେଆଇନ ଅବରୋଧ' ଦଫାରେ ବଲଡ୍‌ୱିନ୍ ଅପରାଧୀ, ତେଣୁ ମୁଁ ବଲଡ୍‌ୱିନ୍ 'ଓ ତା' ଲୋକମାନଙ୍କ ନାମରେ ସମନ ପଠାଇଲି । ବଲଡ୍‌ୱିନ୍ ଯେତିକି ଗୁଣ୍ଡା ସେତିକି ଭୟାଳୁ । ମୁଁ ଏପରି ଅସାଧାରଣ ପନ୍ଥା ଗ୍ରହଣ କରିବାର ଦେଖି ଭୀତ ହୋଇ ସେ ମାମଲାଟିକୁ ତୁଟାଇ ଦେବା ପାଇଁ ସେ ଲୋକଟିକୁ ବହୁତ ଟଙ୍କା ଦେଲା । ସେ ମଧ ବାଡ଼ ଉଠାଇନେଇ ଆଉ ଲୋକଟିକୁ ହଇରାଣ କଲା ନାହିଁ ।

ବଲଡ୍‌ୱିନ୍‌ର ଏକ ବାହାରିଆ କାରଖାନାରେ ନୀଳମଣ୍ଡସବୁ ଚାପା ଦିଆଯାଇ ପିଠାଭଳି କରାହେଉଥିଲା । ସେଠାରେ ଥିବା ତା' ସହକାରୀ ଏଡ୍‌ୱାର୍ଡ୍‌ସର ଲୋକ ଦରକାର ପଡ଼ିଲା । ମଣ୍ଡ ଶୁଖିଯିବା ପୂର୍ବରୁ ଚାପ ଦେଇଦେବା କଥା । ତେଣୁ ସେ କାମ ଖୁବ୍ କଷ୍ଟ ଏବଂ ଅବିଶ୍ରାନ୍ତ । ଓଦା ନୀଳର ଦୁର୍ଗନ୍ଧ ହେତୁ ମଧ ଏହି କାମ ଅତି ଅପ୍ରୀତିକର । ପ୍ରଥମେ ନିଯୁକ୍ତି ପାଇଥିବା ଲୋକମାନେ ବେଶି ହାରରେ ଦରମା ପାଇବା ପାଇଁ ଧର୍ମଘଟ କଲେ; କିନ୍ତୁ ତାହା ମନାକରାଯିବାରୁ ହଠାତ୍ ଛାଡ଼ି ପଳେଇଲେ । ଏ ଦୁର୍ଦ୍ଦଶାରେ ପଡ଼ି ଏଡ୍‌ୱାଡ୍‌ସ୍ ସାହାଯ୍ୟ ପାଇଁ ବଲଡ୍‌ୱିନ୍ ପାଖକୁ ଜରୁରି ଖବର ପଠାଇଲା । ବଲଡ୍‌ୱିନ୍ ପ୍ରବୃତ୍ତିଚାଳିତ ହୋଇ ଲୋକ ପଠାଇ ରାତିରେ ୩ ଜଣ ରୟତଙ୍କୁ (ସେମାନଙ୍କୁ ସେ 'ତା'ର ପ୍ରଜା' ବୋଲି କହୁଥିଲା) ସେମାନଙ୍କ ଘରୁ ଘୋଷାରି ଆଣିଲା ଏବଂ ତା'ର ସେଇ ବାହାରିଆ କାରଖାନାକୁ ପଠାଇ ଦେଲା । ସେଠାରେ ଚାପାଦେବା କାମ ଶେଷ ହେବା ପର୍ଯ୍ୟନ୍ତ ସେମାନେ ବନ୍ଦୀଭଳି ହୋଇ ରହିଲେ । ତା'ପରେ ସେମାନେ ସେଠାରୁ ଉଦ୍ଧାର ପାଇ ଅଭିଯୋଗ ଦାଖଲ କଲେ । ତାହା ମଧ ଦଣ୍ଡବିଧି ଅନୁଯାୟୀ ଏକ ଅପରାଧ ଏବଂ ମୁଁ ବଲଡ୍‌ୱିନ୍‌ର ବିଚାର କରି ୫୦୦ ଟଙ୍କା ଜୋରିମାନା କଲି ଏବଂ ଆଉ ଏପରି କଲେ ୬ମାସ ଜେଲ ହେବ ବୋଲି ଲେଖାଇ ନେଲି ।

ଏଇ ଦୁଇଟି ଘଟଣା ଜିଲ୍ଲାରେ ବେଶ୍ ଚାଞ୍ଚଲ୍ୟ ଖେଳାଇ ଦେଲା ଏବଂ ଉଭୟ ଚାଷୀ ଏବଂ ରୟତ ଜାଣିଲେ ଯେ 'ଇସ୍ରାଏଲ୍‌ରେ ଜଣେ ରାଜା ଅଛି' । ପ୍ରଥମ ଗୋଷ୍ଠୀଟି ଖୋସାମତ କରି ମୋ ମନ ନେବାକୁ ଚେଷ୍ଟା କଲେ । ସେମାନଙ୍କ କାରଖାନାକୁ ମୋତେ ନିମନ୍ତ୍ରଣ କରି ମୋତେ ଓ ମୋ ସ୍ତ୍ରୀକୁ ବହୁମାନ୍ୟ ପ୍ରଦର୍ଶନ କଲେ । କିଛିଦିନ ପରେ ସେମାନେ ମଧ ରୟତମାନଙ୍କ ସହ ସେମାନଙ୍କ ବିବାଦର ସମାଧାନ ପାଇଁ ମୋର ସାହାଯ୍ୟ ଲୋଡ଼ିଲେ । ରୟତମାନେ ମଧ ଜାଣିଗଲେ ଯେ ମୁଁ ଚାଷମାଲିକମାନଙ୍କ ସପକ୍ଷ ନୁହେଁ ଏବଂ ମୋ ନିରପେକ୍ଷତାରେ ଆସ୍ଥା ଥିବାରୁ ଉତ୍ପୀଡ଼ିତ ହେଲେ ବିଚାର ପାଇଁ ଆସିବାକୁ ଲାଗିଲେ । ଏ କଥା ଲେଖି ମୁଁ ମୋ ପୂର୍ବବର୍ତ୍ତୀ ମାଜିଷ୍ଟ୍ରେଟଙ୍କ ଉପରେ କିଛି କଟାକ୍ଷ କରୁ ନାହିଁ । ସେ ଥିଲେ ଭଲ ପ୍ରକୃତିର ଜଣେ ଧୀର, ସୁସ୍ଥି ଲୋକ ଏବଂ ଚାଷ ମାଲିକମାନଙ୍କର ଅତ୍ୟନ୍ତ ପ୍ରିୟଭାଜନ । ନିଜ ଦୃଷ୍ଟିକୋଣରୁ ସେ ଯେ ତାଙ୍କର କର୍ତ୍ତବ୍ୟ କରିଛନ୍ତି ଏଥିରେ ମୋର ସନ୍ଦେହ ନାହିଁ ବା କିଛି କହିବାର ନାହିଁ । ମୋ ଦୃଷ୍ଟିକୋଣରୁ ମୋ କର୍ତ୍ତବ୍ୟ ମୋତେ କରିବାକୁ ପଡ଼ିଲା ।

ଏସବୁ ଭିତରେ ମୁଁ ଦୁର୍ଭିକ୍ଷ ନିରୋଧ କରୁଥିଲି । ହଜାର ହଜାର ଅନାହାରକ୍ଲିଷ୍ଟ ଲୋକଙ୍କୁ ସାହାଯ୍ୟକେନ୍ଦ୍ରମାନଙ୍କରେ ଖାଇବାକୁ ଦିଆଯାଉଥିଲା । ଜିଲ୍ଲା ସାରା ପ୍ରାୟ ୧୫ ମାଇଲ ଛଡ଼ାରେ ସେଗୁଡ଼ିକ ଖୋଲା ଯାଇଥିଲା । ବର୍ତ୍ତମାନର ଲମ୍ବା ଚଉଡ଼ା ନିୟମ ଓ ପଦ୍ଧତି ସେତେବେଳେ ସୃଷ୍ଟି ହୋଇ ନ ଥିଲା । ଆମର ସାଧ୍ୟମତେ ଆମେ ସୁନ୍ଦର ବ୍ୟବସ୍ଥାଟିଏ ସଂଗଠିତ କରିଥିଲୁ ଏବଂ ଖୁବ୍ ସଫଳ ହୋଇଥିଲୁ । ଅନାହାର ମୃତ୍ୟୁ ଖୁବ୍ କମ୍ ହେଲା । କଡ଼ାକଡ଼ି ଭାବେ ଜଗି ଖର୍ଚ୍ଚ କରିବା ଫଳରେ ରାଜସ୍ୱ ପରିଷଦ ଯେଉଁ ସ୍ୱଳ୍ପ ପରିମାଣ ଅର୍ଥ ଦେଇଥିଲେ (ପ୍ରାୟ ୨୦,୦୦୦ ଟଙ୍କା) ତାହାକୁ ବ୍ୟକ୍ତି ବିଶେଷ ମୁକ୍ତ ହସ୍ତରେ ଦେଇଥିବା ଦାନଦ୍ୱାରା ବର୍ଦ୍ଧିତ କରିବାରୁ ଦୁର୍ଦ୍ଦଶା ଦୂରକରିବା ପାଇଁ ତାହା ଯଥେଷ୍ଟ ହେଲା ।

ଅଗଷ୍ଟ ମାସରେ ନେପାଳ ସୀମାନ୍ତର ଏକ ସାହାଯ୍ୟ କେନ୍ଦ୍ର ପରିଦର୍ଶନ କରି ରାତିରେ ଫେରୁଥିବାବେଳେ ଗୋଟିଏ ନଦୀରେ ପଶି ପାରହେବା ପାଇଁ ଚେଷ୍ଟା କରୁଥିବା ବେଳେ ମୁଁ ବୁଡ଼ିଯିବାରୁ ଅଳ୍ପକେ ରକ୍ଷା ପାଇଗଲି । ମୁଁ ଏବଂ ଜିଲ୍ଲା ପୋଲିସପାଳ କୋର୍ନିଶ ସକାଳେ ଅଳ୍ପ ପାଣି ଥିବା ଜାଗାରେ ନଦୀପାର ହୋଇ ଗଲାବେଳେ ସେଠାରେ ମାତ୍ର ଦୁଇଫୁଟ ପାଣି ଥିଲା; କିନ୍ତୁ ରାତିରେ ଫେରିଲାବେଳକୁ ଦେଖିଲୁ ସ୍ରୋତ ଓ ଭଉଁରୀ ଖେଳାଇ ବହୁତ ପାଣି ଚାଲିଚି । କେତେ ଗଭୀର ଜାଣି ନ ପାରି ଆମେ ଘୋଡ଼ାରେ ଚଢ଼ି ତା'ଭିତରକୁ ପଶିଗଲୁ ଏବଂ ଅତି ଶୀଘ୍ର ଜାଣିଗଲୁ ଯେ ଆମ ଘୋଡ଼ାମାନେ ପହଁରୁଚନ୍ତି । ଘୋଡ଼ା ସାଜକୁ ଦେହରୁ ଖସାଇଦେଇ ଘୋଡ଼ାଙ୍କର ମୁଣ୍ଡର କେଶର ଧରି ଧରି ଆମେ ଅନ୍ୟ କୂଳରେ ପହଞ୍ଚିଲୁ । ଅଳ୍ପକେ ରକ୍ଷାପାଇବା ଭଳି ଇଏ !

ଏହାପରେ ମୋ ସ୍ତ୍ରୀ ବିଚରା ବହୁଦିନ ବେମାର ପଡ଼ିଲେ । ଫୈଜାବାଦରୁ ମୋ ଭାଇ ପିଅରସନର ସେନାବାହିନୀରୁ ଆମେ ଅଣାଇଥିବା ଜଣେ ଆଇରିଶ ସେବିକା ମାତାଲ ହୋଇ ମୋ ସହ ଲଢ଼େଇ କରିବାକୁ ବାହାରିଲା । ଯେଉଁ ଦେଶୀୟମାନେ ତାକୁ ଧରିବାକୁ ଚେଷ୍ଟାକଲେ ସେମାନଙ୍କ ମଧ୍ୟରୁ ପ୍ରାୟ ଅଧଡଜନଙ୍କୁ ସେ ଗଡ଼ାଇ ପକାଇଲା । ମୋ ସ୍ତ୍ରୀ ଏଥିରେ ଭୟଙ୍କର ଶଙ୍କିତ ହୋଇ ପଡ଼ିବାରୁ ତାଙ୍କର ଗର୍ଭପାତ ହୋଇଗଲା । ସେ ଅନେକ ମାସ ଶଯ୍ୟାଶାୟୀ ହେଲେ ।

କିନ୍ତୁ କାମ କରିବାକୁ ପଡ଼ିଲା । ସୀମାରେ ଥିବା ନେପାଳର ଗୋଟିଏ ଜିଲ୍ଲାକୁ ଜଙ୍ଗ୍‌ବାହାଦୁର ନାମରେ ଜଣେ ଅଦ୍ଭୁତ ଲୋକ ଶାସନ କରୁଥିଲେ । ସେ ନାମକୁ ମାତ୍ର ପ୍ରଧାନମନ୍ତ୍ରୀ କିନ୍ତୁ ପ୍ରକୃତରେ ଥିଲେ ମହାରାଜା । ଅସଲ ମହାରାଜା ଥିଲେ ସକ୍ଷୀଗୋପାଳ ପରି । ତାଙ୍କ ପ୍ରାସାଦର ଚାରିକାନ୍ଥ ବାହାରକୁ ଯିବାକୁ ତାଙ୍କୁ ଦିଆଯାଉ ନ ଥିଲା । ଦରବାରରେ ଥିବା ଅନ୍ୟୂନ ୧୭ଜଣ ପିତୃବ୍ୟଙ୍କୁ ଗୁଳିକରି ଜଙ୍ଗ୍ କ୍ଷମତା ଅଧିକାର କରିପାରିଥିଲେ । ସେ ଥିଲେ ତେଜସ୍ୱୀ ଏବଂ ବୁଦ୍ଧିମାନ ଶାସକ ଏବଂ ବ୍ରିଟିଶ ସରକାରଙ୍କ ସହ ଭଲ ସମ୍ପର୍କ ରଖିବାରେ ଯତ୍ନଶୀଳ । ବିଦ୍ରୋହବେଳେ ସେ ତାଙ୍କର ଗୁର୍ଖାବାହିନୀ ଦେଇ ଆମର ବହୁତ ଉପକାର କରିଥିଲେ । ତାଙ୍କ ଓ ଆମ ମଧ୍ୟରେ ଏକ ଚୁକ୍ତି ଥିଲା ଯାହାକୁ କୁହାଯାଉଥିଲା, 'ପାରସ୍ପରିକ

ଚୁକ୍ତି ।' ତା'ରି ବଳରେ ଗୋଟିଏ ଦେଶର କୌଣସି ପ୍ରଜା ଅନ୍ୟ ଦେଶର ସୀମାରେ ଅପରାଧ କରୁଥିବା ଧରାପଡ଼ିଲେ, ସେନ ଦେଶର କର୍ତ୍ତୃପକ୍ଷଙ୍କ ଦ୍ୱାରା ଗିରଫ ହୋଇ ଦଣ୍ଡ ପାଇବା ପାଇଁ ତା' ନିଜ ଦେଶକୁ ପଠା ହେଉଥିଲା । ଜଙ୍ଗ୍ ଅଭିଯୋଗ କଲେ ଯେ ବ୍ରିଟିଶ କର୍ମଚାରୀମାନେ ଚୁକ୍ତିର ସେମାନଙ୍କ କର୍ତ୍ତବ୍ୟ ପାଳନ କରୁ ନାହାନ୍ତି । ତତ୍କାଳୀନ ଗଭର୍ଣ୍ଣର ଜେନେରାଲ ସାର୍ ଜନ୍ ଲରେନ୍ସ ତଦନ୍ତ କରିବା ପାଇଁ ଜଣେ ଅଫିସର ପଠାଇଲେ । ଏହି ଅଫିସର (ସିଭିଲ୍ ସଣ୍ଡାର ଜେ.ଡି.ଗର୍ଡ଼ନ) ଏ ଅଭିଯୋଗ ଭିତ୍ତିହୀନ ବୋଲି ଜଣାଇଦେଲେ; କିନ୍ତୁ ଜଙ୍ଗ୍ ସନ୍ତୁଷ୍ଟ ନ ହୋଇ ୧୮୬୬ ବର୍ଷଟା ତମାମ ବିରକ୍ତି ପ୍ରକାଶ କରିବାରେ ଲାଗିଲେ । ଅଭିଯୋଗର କାରଣ ବରାବର ସୃଷ୍ଟି ହେଉଥିଲା । ବ୍ରିଟିଶ ଏବଂ ନେପାଳୀ ପ୍ରଜାଙ୍କ ଏକ ମିଳିତ ଡକାଏତ ଦଳ ବିନା ବାଛବିଚାରରେ ଉଭୟପଟୁ ଲୁଣ୍ଠନ କରୁଥିଲେ । ସେମାନଙ୍କ ଲୁଣ୍ଠିତ ଦ୍ରବ୍ୟରେ ଭାଗୀଦାର ଥିବା କ୍ଷମତାଶୀଳ ଜମିଦାରମାନେ ସେମାନଙ୍କୁ ଘଣ୍ଟ ଘୋଡ଼ାଉଥିଲେ ।

ଚୁକ୍ତି ଅନୁଯାୟୀ ନେପାଳ ଅଞ୍ଚଳରେ ଲୁଣ୍ଠନ କରୁଥିବା ବ୍ରିଟିଶ ପ୍ରଜାମାନଙ୍କୁ ନେପାଳୀ କର୍ତ୍ତୃପକ୍ଷ ଗିରଫ କରି ଦଣ୍ଡ ଦେବାପାଇଁ ମୋ ପାଖକୁ ପଠାଉଥିଲେ । ସେହିପରି ଆମ ଅଞ୍ଚଳରେ ଧରାଯାଉଥିବା ନେପାଳୀ ପ୍ରଜାଙ୍କୁ ମୁଁ ନେପାଳୀ ସୁବା (ବା ମାଜିଷ୍ଟ୍ରେଟ) ପାଖକୁ ଦଣ୍ଡଦେବାପାଇଁ ପଠାଉଥିଲି । ଜଙ୍ଗ୍‌ଙ୍କର ଅଭିଯୋଗ ଥିଲା ଯେ ସୁବାମାନଙ୍କ ପାଖକୁ ପଠାଯାଉଥିବା ପ୍ରତ୍ୟେକଙ୍କୁ ସେମାନେ ଚୁକ୍ତି ରକ୍ଷାକରି ଦଣ୍ଡ ଦେଉଥିବାବେଳେ ସେମାନେ ଯେଉଁମାନଙ୍କୁ ପଠାଉଥିଲେ ମୁଁ ବରାବର ସେମାନଙ୍କୁ ଛାଡ଼ି ଦେଉଥିଲି । କଥାଟା ଥିଲା ଠିକ୍ କିନ୍ତୁ ତା'ଛଡ଼ା ଅନ୍ୟ ପନ୍ଥା ନ ଥିଲା । ମୋ ପୋଲିସ ମୋ ଜିଲ୍ଲା ଭିତରେ ଯେଉଁ ନେପାଳୀ ଡକାଏତଙ୍କୁ ଧରୁଥିଲେ ସେମାନେ ଆମ ଆଇନ ଅନୁଯାୟୀ ତାଙ୍କୁ ଦଣ୍ଡ ଦେବାକୁ ସବୁ ପ୍ରମାଣ ସଂଗ୍ରହ କରୁଥିଲେ । ବନ୍ଦୀମାନେ ପ୍ରମାଣ ଇତ୍ୟାଦି ସହ ବିଚାରପାଇଁ ପାଖକୁ ପଠାହେଉଥିଲେ । ସେ ମହାଶୟ ପ୍ରମାଣ ନିମନ୍ତେ କେବେ ମୁଣ୍ଡ ଖେଳାଉଥିଲେ । ନେପାଳରେ ସେ ରୀତି ମଧ ନ ଥିଲା । ସେ କେବଳ ବନ୍ଦୀମାନଙ୍କୁ କହୁଥିଲେ, ''ତୁ...'' (ଏପରି ଗାଳି ଯାହାକୁ ଅନୁବାଦ କରି ହେବ ନାହିଁ) ଏଇ ସୁବିଖ୍ୟାତ ଇଂରେଜୀ ସାହାବ ତୋତେ ମୋ ପାଖକୁ ପଠାଇଚନ୍ତି ଦଣ୍ଡ ଦେବାକୁ; ସଙ୍ଗେ ସଙ୍ଗେ ମାନି ଯା ।'' ଯଦି ସେମାନେ ତାହା ନ କରନ୍ତି ତେବେ ତାହା କରିବା ପର୍ଯ୍ୟନ୍ତ ଚାବୁକମାଡ଼ ଓ କଷ୍ଟ ଦିଆଯାଏ । ତା'ପରେ ସ୍ୱୀକାରୋକ୍ତି ସବୁ ଲେଖି ନିଆହୁଏ ଏବଂ ସେମାନଙ୍କୁ ଜେଲ, ଜୋରିମାନା କିମ୍ବା ଅନ୍ୟ ଦଣ୍ଡ ଦିଆଯାଏ । ଏ ପନ୍ଥା ସରଳ କିନ୍ତୁ ସନ୍ତୋଷଜନକ ନୁହେଁ । ନେପାଳୀମାନେ ଯେତେବେଳେ ବ୍ରିଟିଶ ପ୍ରଜାଙ୍କୁ ଧରନ୍ତି ତାଙ୍କୁ ସୁବାଙ୍କ ପାଖକୁ ନିଅନ୍ତି । ସେ ସ୍ୱୀକାରୋକ୍ତି କରିବା ପର୍ଯ୍ୟନ୍ତ ସେମାନଙ୍କୁ ଯନ୍ତ୍ରଣା ଦିଅନ୍ତି । ତା'ପରେ ସେହି ଲିଖିତ ସ୍ୱୀକାରୋକ୍ତି ସହ ବନ୍ଦୀକୁ ମୋ ପାଖକୁ ପଠାନ୍ତି । ତା'ରି ଉପରେ ମୁଁ କାହାକୁ ଦଣ୍ଡ ଦେଇ ପାରନ୍ତି ନାହିଁ । ତା' କରିଥିଲେ ଉଚ୍ଚନ୍ୟାୟାଳୟ ମୋ ଉପରେ ଜୋରସୋରରେ ଚଡ଼ାଉ କରିଥାନ୍ତା । ସାକ୍ଷୀ ଓ ପ୍ରମାଣ ପଠାଇବାପାଇଁ ମୁଁ ସୁବାଙ୍କ ପାଖକୁ ଲେଖେ । ତାଙ୍କର ପଠାଇବା ପାଇଁ କିଛି ନ ଥାଏ । ପ୍ରମାଣ କ'ଣ ତାହା ବୋଧହୁଏ ସେ ଜାଣନ୍ତି ନାହିଁ । ଗୋଟିଏ ପ୍ରକାର ଉତ୍ତର ସେ ମୋ ପାଖକୁ ପଠାଇଦିଅନ୍ତି— ''ମୋର ସମ୍ମାନନୀୟ ବନ୍ଧୁ (ମିହିରବାନ ଇମାନ— ସେମାନେ କେଡ଼େ

ସଭ୍ୟ ତାହା ଜଣାଇ ଦେବାପାଇଁ ସର୍ବଦା ପାର୍ଶ୍ୱରେ ଲେଖୁଥିଲେ) । ମୁଁ ଆପଣଙ୍କ ପାଖକୁ ଲିଖିତ ସ୍ୱୀକାରୋକ୍ତି (କାଇଲ ନାମା) ପଠାଇଛି । ଆଉ କ'ଣ ଦରକାର ?'' ତେଣୁ ଅନେକ ଦିନ ପର୍ଯ୍ୟନ୍ତ ବ୍ୟର୍ଥ ପ୍ରତୀକ୍ଷା କରି ଏବଂ କୌଣସି ପ୍ରକାର ପ୍ରମାଣ ନ ପାଇ ମୁଁ ବନ୍ଦୀମାନଙ୍କୁ ମୁକ୍ତକରି ଦେବାକୁ ବାଧ ହୁଏ । ଏଥିରେ ଅବଶ୍ୟ ଅହଂକାରୀ ଜଜ୍ ଖୁବ୍ ଅପମାନିତ ବୋଧ କରନ୍ତି; କିନ୍ତୁ ମୁଁ କଅଣ କରିଥାନ୍ତି ! ଶୀତଦିନ ତମାମ ଏହି ପ୍ରଶ୍ନ ଉପରେ ଖୋଳତାଡ଼ ଲାଗି ରହିଲା ପରବର୍ଷ ମହା ହଇଚଇରେ ପରିଣତ ହେବା ପର୍ଯ୍ୟନ୍ତ; ସେ କଥା ମୁଁ ପରେ ଉଲ୍ଲେଖ କରିବି ।

୧୮୬୬ର ବଡ଼ଦିନଟା ଆମେ ଗୋରଖପୁରରେ କଟାଇଲୁ । ଉତ୍ତର ପଶ୍ଚିମ ପ୍ରଦେଶର ଏହି ଜିଲ୍ଲାଟି ଚମ୍ପାରଣକୁ ଲାଗିଚି । ମୋର ବହୁ ଦିନର ବନ୍ଧୁ ଫ୍ରେଡ୍ ଇଲିଅଟ ସେଇଠାରେ ଜଏଣ୍ଟ ମ୍ୟାଜିଷ୍ଟ୍ରେଟ ଥିଲା । ଶିବିରକୁ ଶିବିର ଦିନକୁ ୧୦/୧୨ ମାଇଲ କରି ଆମେ ୧୨୦ ମାଇଲ ଯାଏ ବୁଲିଲୁ । ଦୁଇଟି ସେଟ୍ ତମ୍ବୁ ଥିବାରୁ ରାତିରେ ଗୋଟିଏ ତମ୍ବୁ ପଠାଇ ଦିଆହୁଏ । ସେ ଥିଲା ଏକ ପିତୃପ୍ରଧାନ ଯାଯାବର ଗୋଷ୍ଠୀ । ଗୋରଖପୁରର ଜଣେ ପୋଲିସ କର୍ମଚାରୀ ପଦରାଉନଠାରେ 'ଲାଖହଜାରୀ ବାଗ ବା '୧୦୧୦୦୦ ଗଛର ବଗିଚା'ର ଚମତ୍କାର ଆୟତୋଟା ମଧ୍ୟରେ ଶିବିର ପକାଇଥିଲେ । ତାଙ୍କ ବନ୍ଧୁମାନଙ୍କୁ ଆମର ପରିଚୟ କରାଇଦେଲେ । ସେ କହିଲେ ଯେ ଦିନେ ସକାଳେ ଗୁଡ଼ିଏ ଶଗଡ଼ ଗାଡ଼ିରେ ତମ୍ବୁ ବୋଝେଇ କରି ଡଜନେ ଖଣ୍ଡେ ଚପରାସୀ, ତମ୍ବୁଟଣାଳି ଓ ପୋଲିସବାଲା ଆସି ପହଞ୍ଚିଲେ । ସେ ପଦରାଉନ୍‌ର ତହସିଲଦାରଙ୍କୁ ଡକାଇଲେ ଏବଂ ତାଙ୍କୁ ଅପେକ୍ଷା କରିଥିବା ସମୟ ମଝିରେ ରନ୍ଧାରନ୍ଧି କରି ଖାଇଲେ । କିଛି ସମୟ ପରେ ସେହି ରାଜୋପମ କର୍ମଚାରୀ ଦଳେ ପିଅନକୁ ସାଙ୍ଗରେ ଧରି ନିଜ ଘୋଡ଼ା ଉପରେ ବସି ଧୀର ପଦପାତରେ ଆସି ପହଞ୍ଚିଲେ । ସେ ଓ ଚପରାସୀମାନେ ଅନେକ ସମୟ ଧରି କଥାବାର୍ତ୍ତା ହେଲେ । ତା'ପରେ ସେମାନେ ଶିବିର ପାଇଁ ଜାଗା ବାଛିବାକୁ ତୋଟାଯାକ ବୁଲିଲେ । ଚପରାସୀମାନେ ବୁଝାଇ ଦେଉଥାନ୍ତି ଯେ ଶିବିର ପାଇଁ ଏ ଜାଗାଟା ଭଲ ଲାଗିବ, ସେ ଜାଗାଟା ଭଲ ଲାଗିବ ନାହିଁ । ସେମାନଙ୍କର ଏ ଆଲୋଚନା ଆମୋଦଦାୟକ ହେଉଥାଏ । ଶେଷରେ ତାଙ୍କୁ ଭଲ ଲାଗୁଥିବା ଗୋଟାଏ ଜାଗା ସେମାନେ ଠିକଣା କଲେ । ତା'ପରେ ଭଲଭାବରେ ସେ ସ୍ଥାନଟି ଓଳାଓଳି କରିଦେଇ ବହୁ ପାଟିତୁଣ୍ଡ କରି ବୈଠକଖାନା ପାଇଁ ଗୋଟିଏ 'ସୁଇସ୍ କୁଟୀର' ତମ୍ବୁ, ଶୋଇବା ପାଇଁ ଚାରିକୋଣିଆ ଦୁଇଟା ବଡ଼ ତମ୍ବୁ, କଚେରି ପାଇଁ ତା'ଠାରୁ ଛୋଟ ଗୋଟିଏ ତମ୍ବୁ ଏବଂ ଚାକରମାନେ ଏକାଠି ରହିବା ପାଇଁ କେତୋଟି ତମ୍ବୁ ପକାଇବାରେ ଲାଗିପଡ଼ିଲେ । ତହସିଲଦାରଙ୍କୁ ତାଙ୍କ କଲେକ୍ଟର ଆବଶ୍ୟକୀୟ ପଦାର୍ଥ ଯୋଗାଇ ଦେବାପାଇଁ ଆଦେଶ ଦେଇଥିବାରୁ ଖାଦ୍ୟ ପଦାର୍ଥ କେତେ ଆବଶ୍ୟକ ପଡ଼ିବ, ସେ ବିଷୟରେ ବହୁ ଯୁକ୍ତିତର୍କ ଚାଲିଲା । ତହସିଲଦାର ଅଳ୍ପ ସମୟ ଦେଖାଦେଖି କରିଦେଇ ପୁଣି ଧୀରେ ଧୀରେ ଚାଲିଗଲେ ଏବଂ ଚପରାସୀ ଓ ଅନ୍ୟମାନେ ଗୁଞ୍ଜିଗାଞ୍ଜି ହୋଇ ଶୋଇପଡ଼ିଲେ । ସନ୍ଧ୍ୟାବେଳକୁ କୁଲିମାନେ ଶିବିର ପାଇଁ ନଡ଼ା, ରୋଷେଇ ବାସନ, ଜାଳେଣି କାଠ, ଚାଉଳ ଓ ଅନ୍ୟାନ୍ୟ ଦ୍ରବ୍ୟ ଧରି ପହଞ୍ଚିଲେ ।

ପରଦିନ ସକାଳୁ ଆଉ ଅଧିକ ଶଗଡ଼ଗାଡ଼ିରେ ସାହେବଙ୍କ ରୋଷେଇ ସରଞ୍ଜାମ ଟେବୁଲ, ଚେୟାର, ବାକ୍ସ ଓ ଅନ୍ୟାନ୍ୟ ପଦାର୍ଥ ବୁହାହୋଇ ଆସିଲା । ତା' ସହିତ ଆସିଲା ଦୁଇଟା ଦୁହାଁଳିଆ ଗାଈ, ଦୁଇତିନିଟା ଛେଳି, ଝୁଡ଼ିଭର୍ତ୍ତି କୁକୁଡ଼ା ଓ ଗୋଟାଏ ମୋଟାସୋଟା ମେଣ୍ଢା । ତା'ପରେ ତମ୍ବୁର ଆସବାବପତ୍ର ପକେଇ ସଜେଇ ଦିଆଗଲା, ଗଛତଳେ ରୋଷେଇଶାଳ ବନ୍ଦୋବସ୍ତ କରିଦିଆଗଲା ଏବଂ ପ୍ରାତରାଶ ରୋଷେଇ ଆରମ୍ଭ ହୋଇଗଲା । ମହାମାନ୍ୟ ଖାନସାମା ତାଙ୍କ ଅଧସ୍ତନ ଚାକରମାନଙ୍କୁ ଧରି ଟଟ୍ଟୁଘୋଡ଼ାରେ ବସି ଆସିଲେ ଏବଂ କାମର ଦାୟିତ୍ୱ ନେଲେ । ଘଣ୍ଟାଏ ପରେ ଶିବିରରେ ଏକ ଚାଞ୍ଚଲ୍ୟ ଖେଳିଗଲା ଏବଂ ଚାକରମାନେ ସେମାନଙ୍କ ପୋଷାକପତ୍ର ପିନ୍ଧିପକାଇ ମନଧ୍ୟାନ ଦେଇ କାମରେ ଲାଗିଲାପରି ଦେଖାଗଲା । ଦୁଇଜଣ ସଇସ ଘୋଡ଼ାମାନଙ୍କୁ ଅଡ଼େଇ ଏବଂ ଆଉ ଦୁଇଜଣ ଟଟ୍ଟୁଘୋଡ଼ାମାନଙ୍କୁ ଅଡ଼େଇ କ୍ଳାନ୍ତ ହୋଇ ଆସି ପହଞ୍ଚିଲେ ଏବଂ କହିଲେ ଯେ ସାହେବ ପଛେ ପଛେ ଆସୁଚନ୍ତି । ସେଇ ସମୟରେ ଦୂରରୁ ଘୋଡ଼ାଟାପୁର ଶବ୍ଦ ଶୁଭିଲା, ସମସ୍ତେ ଠିଆ ହୋଇପଡ଼ିଲେ ଏବଂ କଲେକ୍ଟର ଓ ତାଙ୍କ ସ୍ତ୍ରୀ ଦୁଇଟି ସୁନ୍ଦର ଆରବୀ ଘୋଡ଼ାରେ ଚଢ଼ି କଦମ ପକେଇ ତୋଟା ଭିତରକୁ ଆସି ଓହ୍ଲାଇ ପଡ଼ିଲେ । ସାଙ୍ଗେ ସାଙ୍ଗେ ତାଙ୍କପାଇଁ ଚାହା ଅଣାଗଲା । ପରେ ଦୁଇଟି ବଳଦରେ ଟଣା ଗୋଟିଏ ଗାଡ଼ି ଆସି ପହଞ୍ଚିଲା । ସେଥିରୁ ତିନୋଟି ଛୋଟ ପୁଅ, ଜଣେ ଆୟା, ଅନୁଚର ଏବଂ ଗୁଡ଼ାଏ କନାପଟା, ପୋଷାକପତ୍ର, ଖେଳନା ଏବଂ ଅନ୍ୟାନ୍ୟ ଜିନିଷ ବାହାରିଲା ।

ସେ ସମୟରେ କଲେକ୍ଟରମାନେ କିପରି ଧରଣର ଶିବିର କରୁଥିଲେ, ଏହା ତାହାର ଏକ ବାସ୍ତବ ବର୍ଣ୍ଣନା । ମୁଁ ମନେକରେ ବର୍ତ୍ତମାନ ମଧ୍ୟ ଅବସ୍ଥା ଅନେକାଂଶରେ ସେହିପରି ଅଛି; କିନ୍ତୁ ଭାରତରେ ମଧ୍ୟ ଅନେକ ପରିବର୍ତ୍ତନ ହୋଇଯାଉଛି ଏବଂ ଶିବିରସବୁ ବୋଧହୁଏ ବିଗତ ଦିନର କଥା ହୋଇଗଲାଣି । ସେ ଥିଲା ଭ୍ରମଣର ଅତି ଆରାମଦାୟକ ପନ୍ଥା ।

ଦଶଦିନ କାଳ ଭୋଜିଭାତ, ନାଚ ଓ ଅନ୍ୟାନ୍ୟ ଆମୋଦ ପରେ ଆମେ ଫେରି ମୋତିହାରୀରେ ଜାନୁୟାରୀ ୧୦,୧୮୬୭ରେ ପହଞ୍ଚିଲୁ । ସେଠାରେ ମୋ ଭାଇ ହ୍ୟାରୀ ଆମକୁ ସ୍ୱାଗତ ଜଣାଇଲା । କେତେବର୍ଷ ସେ ରୋମାଞ୍ଚକର ଜୀବନ ଅତିବାହିତ କରୁଥିଲା । ସାବାଳକ ହେବାମାତ୍ରେ ଜେଜେଙ୍କ ଇଚ୍ଛାପତ୍ର ଅନୁଯାୟୀ ୫୦୦ ପାଉଣ୍ଡ ପାଇ ସେ ନାଟାଲକୁ ଚାଲିଗଲା । ସେଠାରେ ସେ ଦୁଷ୍ଟ ଲୋକମାନଙ୍କ ମେଳରେ ପଡ଼ିଗଲା ଯେଉଁମାନେ ତାର ସମସ୍ତ ଧନ ଠକି ନେଇଗଲେ । ତା'ପରେ ଉତ୍ତରାଞ୍ଚଳରେ ବୁଲି ବୁଲି କାଫିର କାରାଲ୍‌ରେ ରହି ପଶୁପାଳନ କଲା, ପଥର ମିସ୍ତ୍ରି ରୂପେ କାମ କଲା, ପାନଶାଳା ଏବଂ ଜଣେ ନାବିକସହ ଅଂଶୀଦାର ହୋଇ ଉମବତୀ ନଦୀରେ ଯାତ୍ରୀ ନବାଆଣିବା କଲା । ସେଇ ନାବିକପାଇଁ ସେ ଭେଲ୍‌ଟ ତୃଣଭୂମିରେ ଅଶ୍ୱପାଳନ କଲା ଏବଂ ଶେଷକୁ ସେଣ୍ଟ ହେଲେନା ଯିବାପାଇଁ ଆବଶ୍ୟକୀୟ ପାଥେୟ ସେ ଯୋଗାଡ଼ କଲା । ସେଇଠି ସେ ଅଟକି ରହିଗଲା ଏବଂ ଜଣେ ସାଧାରଣ ନାବିକ ପରି ମାସ୍ତୁଲ ସାମନାରେ ମାଂସ କଟାଳିର ସହଯୋଗୀ ରୂପେ କାମକରି ସେ ଜାହାଜରେ ଆସିଲା । ଲଣ୍ଡନରେ ଓହ୍ଲାଇଲା ବେଳକୁ ତା' ପକେଟରେ ପାଞ୍ଚପାଉଣ୍ଡ ଥିଲା, ସେଇଟା ତା' ଯାତ୍ରା ସମୟର ମଜୁରି ।

ଶ୍ରୀଯୁକ୍ତ ବଲ୍‌ଙ୍କ ଦୟାରୁ ସେ ମୋ ପାଖଯାଏ ଆସିବାପାଇଁ ଟଙ୍କା ପାଇଗଲା ଏବଂ ତା'ପାଇଁ ଖଣ୍ଡେ ଚାକିରି ଯୋଗାଡ଼ କରିବା ପାଇଁ ମୋତେ ମୁଣ୍ଡ ଖେଳେଇବାକୁ ପଡ଼ିଲା । ଏଇ ସମୟ ମଧ୍ୟରେ ସେ ଆମ ପାଖରେ ରହି ହିନ୍ଦୁସ୍ତାନୀ ଶିଖିବାରେ ଲାଗିପଡ଼ିଲା, କାରଣ ଭାରତରେ ଚାକିରି ପାଇବାକୁ ସେଇଟା ପ୍ରଥମେ ଦରକାର । ସେ ଥିଲା ଜଣେ ଦୀର୍ଘ ପ୍ରଶସ୍ତ ସ୍କନ୍ଧଯୁକ୍ତ ଯୁବକ । ତା'ର କେଶ ହାଲୁକା, ଆଖି ନୀଳ । ସେ ସବଳ, କର୍ମକ୍ଷମ, ଭଲ ଘୋଡ଼ାଚଢ଼ାଳି, କୌତୁକପ୍ରିୟ ଓ ଦୁଃସାହସୀ ।

ଶୀତଦିନ ଯାକ ନେପାଳସହ ଯେଉଁ ବିବାଦ ଲାଗିଥିଲା ତାହା ୧୮୬୭ରେ ଖୁବ୍ ଘନେଇଗଲା । ବେଟିହାର କେତେକ ଦେଶୀୟ ଖ୍ରୀଷ୍ଟିଆନ ମୁଙ୍ଗେର୍‌ରେ ଥିବା ହରସେଲ ଡିନ୍ ଆଣ୍ଡକୋ ପାଇଁ ଜିଲ୍ଲାର ଉତ୍ତରରେ ଥିବା ଜଙ୍ଗଲରୁ କାଠଗଣ୍ଡି ହାଣି ପେଟ ପୋଷୁଥିଲେ । ଏହି କମ୍ପାନୀ ରେଳବାଇ ପାଇଁ ସ୍ଲିପର ଯୋଗାଇବାର ଠିକା ନେଇଥିଲା । ଦିନେ ଅନେକ ସଶସ୍ତ୍ର ନେପାଳୀ ଜଙ୍ଗଲ ଜଗୁଆଳି ସେମାନଙ୍କ ଉପରେ ଚଢ଼ଉକରି କାମ ବନ୍ଦ କରିବାକୁ ଆଦେଶ ଦେଲେ । ସେମାନେ ଗଛକାଟିଲେ ନେପାଳୀମାନେ ସେମାନଙ୍କୁ କାଟିଦେବେ ବୋଲି ମଧ୍ୟ ସୂଚେଇ ଦେଲେ । ଖ୍ରୀଷ୍ଟିଆନମାନେ ନିରୀହ ହୋଇଥିବାରୁ ପଳେଇଯାଇ ସେମାନଙ୍କ କମ୍ପାନୀ ମାଲିକଙ୍କୁ ଏକଥା ଜଣାଇଲେ । ସେ ମୋତେ ଦରଖାସ୍ତ ଦେଲେ ସୁରକ୍ଷାମୂଳକ ସାହାଯ୍ୟ ପାଇଁ । ସେ ଜଙ୍ଗଲ ବ୍ରିଟିଶ ଅଞ୍ଚଳ ବୋଲି ଜାଣିସାରିବା ପରେ କାଠକଟାଳିଙ୍କ ସୁରକ୍ଷାପାଇଁ ମୁଁ ଦଳେ ସଶସ୍ତ୍ର ପୋଲିସ୍ ପଠାଇଲି । ଜଙ୍ଗ୍ ବାହାଦୁର ଭାଇସ୍‌ରାୟଙ୍କୁ ଏ ବିଷୟରେ ଲେଖିଲେ ଏବଂ କେତେକ ପତ୍ରାଳାପ ପରେ ମୋତେ ଆଦେଶ ମିଳିଲା ଗଣ୍ଡକନଦୀ ପାର୍ବତ୍ୟାଞ୍ଚଳରୁ ବାହାରି ଆସିଥିବା ସ୍ଥାନ ତ୍ରିବେଣୀ ଘାଟଠାରେ ସୁବାଙ୍କ ସହ ସାକ୍ଷାତ କରି ସୀମା ନିର୍ଦ୍ଧାରଣ କରିବା ପାଇଁ । ମୋ ସଙ୍ଗରେ ହ୍ୟାରୀ ଓ ମୋ ସହକାରୀ ରୁଡ଼୍ୱୋକୁ ନେଇଥିଲି । ସେ ସମୟରେ ସେଠାରେ ଖୁବ୍ ବଡ଼ ମେଳା ଲାଗିଥିଲା । ସେଇ ଜାଗାରେ ନଦୀ ଖୁବ୍ ପବିତ୍ର ମନେ କରାଯାଉଥିବାରୁ ହଜାର ହଜାର ହିନ୍ଦୁ ଗାଧୋଉଥିଲେ । ସେ ସୁବା ଥିଲେ ଗେଡ଼ା, ମୋଟାସୋଟା, ଚତୁରଦର୍ଶନ ସବଳ ନେପାଳୀ । ସେ ଜଙ୍ଗବାହାଦୁରଙ୍କ ସୈନ୍ୟବାହିନୀର ଜଣେ 'ମେଜର କ୍ୟାପଟେନ' ଶ୍ରେଣୀୟ ବୋଲି ମତେ କହିଲେ ଏବଂ ଦୁଇଜଣ 'ଲେଫଟ୍‌ନାଣ୍ଟ'ଙ୍କୁ ସାଙ୍ଗରେ ନେଇ ଆସିଥିଲେ । ସେ ମୋତେ ଗୋଟିଏ ସୁନ୍ଦର ଖୁକ୍‌ରୀ (ନେପାଳୀ ବଙ୍କା ଛୁରୀ), ସୁନ୍ଦର ଫୁଲ ପଡ଼ିଥିବା ଚୀନା ରେଶମ ଓ ଚଅଁର ଉପହାର ଦେଇଥିଲେ । ସୀମା ସମସ୍ୟା ତୁଟାଇବା ପାଇଁ ବେଶି ସମୟ ଲାଗିଲା ନାହିଁ କାରଣ ବିସ୍ତୃତ ଭାବେ ମାପଚୁପ ହୋଇ କରାଯାଇଥିବା ଆମର ମାନଚିତ୍ର ଦେଖି ସେ ସମ୍ପୂର୍ଣ୍ଣ ସନ୍ତୁଷ୍ଟ ହେଲେ ଏବଂ ପରସ୍ପରର ଶିବିରରେ କେତେକ ବନ୍ଧୁତ୍ୱମୂଳକ ଦେଖାସାକ୍ଷାତ୍ ପରେ ଆମେ ଉତ୍ତମ ବନ୍ଧୁରୂପେ ବିଦାୟ ନେଲୁ ଏବଂ ମୁଁ ମୋତିହାରୀକୁ ଫେରିଆସିଲି ।

କିନ୍ତୁ ଜଙ୍ଗବାହାଦୁରଙ୍କ ସହ ଶାନ୍ତି ରକ୍ଷାକରି ରହିବା ଥିଲା ବଡ଼ କଷ୍ଟ । ନେପାଳକୁ ସେ ଲୌହଦଣ୍ଡ ଧରି ଶାସନ କରୁଥିଲେ ଏବଂ ନିଜ ଅଧସ୍ତନମାନଙ୍କ ଭଳି ବ୍ରିଟିଶ କର୍ମଚାରୀଙ୍କ ଉପରେ ମଧ୍ୟ ପ୍ରଭୁତ୍ୱ ବିସ୍ତାର କରିବାପାଇଁ ଇଚ୍ଛା କରୁଥିଲେ । ସାର ଜନ୍ ଲରେନ୍‌ସ ତାଙ୍କ ସହ

ଅତି ଉଦାର ବ୍ୟବହାର କରୁଥିଲେ ଏବଂ ଆମେ ତାଙ୍କଠାରୁ ନିଜ ପ୍ରଜାମାନଙ୍କୁ ରକ୍ଷା କରିବାକୁ ଗଲାବେଳେ ମଧ୍ୟ ସରକାରଙ୍କଠାରୁ କୌଣସି ସାହାଯ୍ୟ ପାଇବା ଆଶା ନ ଥିଲା । ସୀମାନ୍ତରୁ ମୋର ଫେରିଆସିବା ପରେ ପରେ ଆଉ ଏକ ଘଟଣା ଘଟିଗଲା । ମୋ ଜିଲ୍ଲାର ଜଣେ ଧନୀ ବଣିକର ଗୋଟାଏ ହାତୀ ଫିଟିଯାଇ ନେପାଳ ଜଙ୍ଗଲକୁ ପଳାଇଲା । ସେଠାରେ ଜଙ୍ଗ୍‌ଙ୍କର ହାତୀ ଶିକାରୀମାନେ ତାକୁ ଧରିଲେ ଏବଂ ତା' ଦେହରେ ପୋଷାହାତୀର ବନ୍ଧାଚିହ୍ନ ଥିଲେ ମଧ୍ୟ ବଣୁଆ ହାତୀ ଭାବରେ ଅଧିକାର କରି ମହାରାଜାଙ୍କ ହାତୀଶ୍ରେଣୀଭୁକ୍ତ କରିଦେଲେ । ଅଳ୍ପଦିନ ପରେ ହାତୀଟି ପୁଣି ଫିଟିଯାଇ ମୋ ଜିଲ୍ଲାକୁ ଫେରିଆସିଲା । ସେଠାରେ ତାକୁ ପୋଲିସ ଧରି ମୋ ପାଖକୁ ଆଣିଲେ । ଯଥାରୀତି ମୁଁ ବିଜ୍ଞାପନ ଦେଲି ଯେ ଯାହାର ହାତୀ ସେ ଆସି ତା'ର ମାଲିକାନାର ପ୍ରମାଣ ଦେଉ । ବଣିକଟି ଆସି ସନ୍ତୋଷଜନକ ପ୍ରମାଣ ଦେଲା ଏବଂ ପଶୁଟିକୁ ତାକୁ ଦିଆଗଲା । ଏହାପରେ ଜଙ୍ଗ୍‌ଙ୍କଠାରୁ ପ୍ରଭୁତ୍ୱ ଓ ଔଦ୍ଧତ୍ୟପୂର୍ଣ୍ଣ ଏକ ଚିଠି ପାଇଲି ଯେଉଁଥିରେ ହାତୀଟି ତାଙ୍କୁ ଦେଇଦିଆଯାଉ ବୋଲି ଦାବି କରାଯାଇଥିଲା; କିନ୍ତୁ ତାହା ମୁଁ କରିପାରିଲି ନାହିଁ । ତେଣୁ ସେ ଭାଇସ୍‌ରାଏଙ୍କୁ ପ୍ରାର୍ଥନା କଲେ । ଭାଇସ୍‌ରାଏ ମୋତେ କୈଫିୟତ ମାଗିଲେ ଏବଂ ମୁଁ ଯାହା ଦେଲି ସେ ସେଥିରେ ସନ୍ତୁଷ୍ଟ ହେଲେ; କିନ୍ତୁ ନେପାଳ ସହ ଆମର ଅସନ୍ତୋଷଜନକ ସର୍ତ୍ତ ଓ ବ୍ରିଟିଶ କର୍ମଚାରୀଙ୍କ ପ୍ରତି ଜଙ୍ଗ୍‌ଙ୍କର ବ୍ୟବହାର ସମ୍ପର୍କରେ ମୋର କେତେକ ମନ୍ତବ୍ୟ ଯୋଗୁଁ ସେ ଖୁବ୍ କ୍ରୁଦ୍ଧ ହୋଇଗଲେ । ମତେ ଉତ୍ତର ଦେଇ ଜଣାଇ ଦିଆଗଲା ଯେ— "ଭାରତ ସରକାର ତାଙ୍କର ସୀମାନ୍ତ ନୀତି ସମ୍ପର୍କରେ ଶ୍ରୀ ବୀମସ୍‌ଙ୍କ ସ୍ତରର ଅଫିସରଙ୍କଠାରୁ ଉପଦେଶ ଚାହାନ୍ତି ନାହିଁ ।" ଏହାରି ଉପରେ କଲିକତାର ପ୍ରଧାନ ସମ୍ବାଦପତ୍ର ଇଂଲିଶମ୍ୟାନ ମନ୍ତବ୍ୟ କରିଥିଲେ ଯେ ଏହା ଠିକ୍ କଥା 'କାରଣ ସରକାର ଅଭିଜ୍ଞ ସୀମାନ୍ତ କର୍ମଚାରୀଙ୍କୁ ଲୋଡୁନଥିବାରୁ ଏହାଙ୍କ ସୀମାନ୍ତ ନୀତି ଏକା ପରି ବ୍ୟର୍ଥ ହେଉଛି ।' ସରକାରଙ୍କ ଚିଠିରେ ଆଉ ଏକ କଟୁ କଥା ମଧ୍ୟ ଥିଲା । ସେଥିରେ ଉଲ୍ଲେଖ ଥିଲା ଯେ ସୀମାନ୍ତରେ ଏପର୍ଯ୍ୟନ୍ତ ଡକାୟତି ଲୋପ ହେଲା ନାହିଁ (ସତେ କି ଯେପରି ଏହା କେବେ ହୋଇପାରିବ !) ଏବଂ ମୁଁ ଏହା କରିନପାରିବା ପର୍ଯ୍ୟନ୍ତ ନେପାଳୀ ଶାସନର ଦୁର୍ବଳତା ସମ୍ବନ୍ଧରେ ଯେତେ କମ୍ କହେ ଭଲ ।

ମତେ ଏହା ଖୁବ୍ ଉତ୍ୟକ୍ତ କଲା, କାରଣ ଡକେଇତି ବନ୍ଦ କରିବା ପାଇଁ ମୁଁ ବହୁତ କିଛି ଉଦ୍ୟମ କରିଥିଲି ଏବଂ ସୁବା ଓ ମୋ ନିଜ ପୋଲିସଙ୍କ ଉଚିତ ସମର୍ଥନ ପାଇଥିଲେ ମୁଁ ଆଉ ଅନେକ କିଛି କରିପାରିଥାନ୍ତି । ସେ ସମୟରେ ତଥାପି ଅନେକ ସାମରିକ ଲୋକ ପୋଲିସ୍‌ରେ ଥିଲେ । ମୋର ଜିଲ୍ଲା ସୁପରିଣ୍ଟେଣ୍ଡେଣ୍ଟ ମେଜର ଏମ୍— ସେମାନଙ୍କ ମଧ୍ୟରୁ ଜଣେ । ମୋର ବିଶ୍ୱାସ ବିଚରା ସେ ବୃଦ୍ଧ ତାଙ୍କର ସଂକୀର୍ଣ୍ଣତା ସତ୍ତ୍ୱେ ଖୁବ୍ ସାଧୁ ପ୍ରକୃତିର ଥିଲେ ଏବଂ ଯୁଦ୍ଧ କ୍ଷେତ୍ରରେ ଖୁବ୍ ଟାଣୁଆ ପୁରୁଣା ହାତବାଡ଼ି ପରି କାମ ଦେଖାଉଥିଲେ ବୋଲି ସାହସ କରି କହିପାରେ କିନ୍ତୁ ଜିଲ୍ଲା ପୋଲିସର ମୁଖ୍ୟ ଭାବରେ ସେ ଥିଲେ ପ୍ରାୟ ଅପଦାର୍ଥ । ଅପରାଧ ଅନୁସନ୍ଧାନ କାର୍ଯ୍ୟରେ ସେ ପ୍ରଧାନତଃ ଜଣେ ଶିଖ ଇନ୍‌ସପେକ୍ଟର ତାଲିବନ୍ଦ ସିଂ ଏବଂ ଆଉ ଜଣେ ଇନ୍‌ସିପେକ୍ଟର, ଶୃଗାଳ ପରି ଧୂର୍ତ୍ତ, ଜାତିରେ ଅଯୋଧ୍ୟା ବଣିଆ ହରକ୍ ଚାନ୍ଦ ଉପରେ ନିର୍ଭର କରୁଥିଲେ । ବିଗତ କିଛିଦିନ ହେବ ଏହି ଜିଲ୍ଲାର ନେପାଳ ସୀମାର

ଧୀରେ ଧୀରେ ଥିବା ଦୁଇ ଗାଁ ବିଶିଷ୍ଟ ଗୋଟିଏ ଛୋଟିଆ ଜମିଦାରୀର ମାଲିକ ଶେଓ ପ୍ରକାଶ ସିଂ ବୋଲି ଜଣେ ବ୍ୟକ୍ତିର କୁକାର୍ଯ୍ୟ ଦ୍ୱାରା ସେ ନିଃସହାୟ ଭାବରେ ଖୁବ୍ ସନ୍ତାପିତ ହେଉଥିଲେ । ଏହି ଏମ୍—କୁ ନିଶ୍ଚିତ ଭାବରେ ଜଣାଥିଲା ଯେ ଏହି ବ୍ୟକ୍ତି ମାଗୟାଡ଼ୋମ ବୋଲି ବାରବୁଲା ଧରଣର ଛୋଟ ଜାତିର ଗୋଟାଏ ବଡ଼ ଦଳକୁ ଆଶ୍ରୟ ଦେଇ ସଂଗଠିତ କରିଥିଲା, ଯେଉଁମାନେ କି ଭବିଷ୍ୟତବାଣୀ କହି ଚୋରିକରି ଚଳୁଥିଲେ । ସେ ଏଇ ଡୋମମାନଙ୍କ ଦ୍ୱାରା ହେଉଥିବା ଡକେଇତିରେ ଲୁଣ୍ଠିତ ଧନରୁ ଚତୁର୍ଥାଂଶ ନେଉଥିଲା । ବିଭିନ୍ନ ଛଦ୍ମବେଶରେ ସେ ସୀମାର ଉଭୟ ପଟେ ଘୂରି ବୁଲୁଥିଲା । ଗୋଟିଏ ଅଞ୍ଚଳରେ ତା'ର ଅବସ୍ଥିତି ଅସମ୍ଭବ ହୋଇପଡ଼ିଲେ ସେଠାରୁ ଅନ୍ୟ ଅଞ୍ଚଳକୁ କିଛି ସମୟ ପାଇଁ ଚାଲିଯାଉଥିଲା । ଯେତେବେଳେ ଭାଇସରାଏ ମୋର ବ୍ୟର୍ଥତା ସମ୍ପର୍କରେ କଟାକ୍ଷ କରିବାକୁ ଉପଯୁକ୍ତ ମନେକରୁଥିଲେ ସେତେବେଳେ ଏମ୍—ଙ୍କ ପାଖରେ ଅନ୍ୟୁନ ୧୫ଟି ମାମଲାର କାଗଜପତ୍ର ଥିଲା; ତଥାପି ଅନୁସନ୍ଧାନ କୌଶଳରେ ସେ ଏତେ ଦୁର୍ବଳ ଯେ ସେ ଏ ମାମଲାରେ ଯୁକ୍ତିଯୁକ୍ତ ଭାବରେ ଜଣେ କାହାକୁ ଗିରଫ କଲାପରି ପ୍ରମାଣ ପ୍ରସ୍ତୁତ କରିପାରିଲେ ନାହିଁ । ଦୁର୍ଭିକ୍ଷ ଫଳରେ ପୂର୍ବବର୍ଷଠାରୁ ଡକାୟତି ଅସ୍ୱାଭାବିକ ଭାବରେ ବଢ଼ିଥିଲା, କାରଣ କେତେକ ଛୋଟ ଜାତିର ଲୋକ ଖାଦ୍ୟାଭାବରୁ ଚୋରି କରିବାକୁ ବାଧ୍ୟ ହେଉଥିଲେ; କିନ୍ତୁ ଏ ଧରଣର ଚୋରି ଯେ ପେସାଦାର ଡକାୟତିଠାରୁ ଭିନ୍ନ ତାହା ଏମ୍—ବ୍ୟତୀତ ଅନ୍ୟ ସମସ୍ତଙ୍କୁ ଭଲ ଭାବରେ ଜଣାପଡ଼ି ଯାଉଥିଲା । ମୁଁ ବର୍ତ୍ତମାନ ଅନୁଭବ କଲି ଯେ କିଛି ଗୁରୁତର କର୍ମପନ୍ଥା ଗ୍ରହଣ କରିବାର ବେଳ ଆସିଗଲା । ତେଣୁ ମୁଁ ତାଙ୍କ ଉପରେ ଓ ତାଙ୍କର ବିଶ୍ୱସ୍ତ ଉପଦେଷ୍ଟା ତାଲିବନ୍ଦ ସିଂ ଉପରେ ଚଢ଼ାଉ କଲି ଏବଂ ଏହିସବୁ ମାମଲା ଅଣାଯାଇ ପ୍ରମାଣିତ ହେଉ ବୋଲି ଜୋର ଦେଲି । ବହୁ ଚାପ ପକାଇବା ଫଳରେ ଏବଂ ସନ୍ତୋଷଜନକ ପ୍ରମାଣ ହାତରେ ଥିବାରୁ ମୁଁ ଗିରଫର ପରଓ୍ୱାନା ପଠାଇଲି । ଏମ୍— ଆଶା କରିଥିଲେ ଯେ ଏହା ଡୋମମାନଙ୍କ ପାଇଁ ଉଦ୍ଦିଷ୍ଟ । କିନ୍ତୁ ମୂଳୁ ମାଇଲେ ଯିବ ସରି ରୀତିରେ ଏ ପରଓ୍ୱାନା ଥିଲା ଶେଓପ୍ରକାଶ ପାଇଁ । ମୋର ପୂର୍ବବର୍ତ୍ତୀ କଲେକ୍ଟର ଅନେକଥର ଏହି ଦଳରୁ ଅନେକଙ୍କୁ ବିଚାରକରି ଦଣ୍ଡ ଦେଇଥିଲେ । କିନ୍ତୁ ଅଳ୍ପ କେତେକ ମାଗେୟାଡୋମଙ୍କୁ ଜେଲରେ ପୂରାଇ ଲାଭ ନାହିଁ, ଯେପର୍ଯ୍ୟନ୍ତ ଦଳର ନେତା ବାହାରେ ରହି ସେମାନଙ୍କ ଜାଗାରେ ଆଉ ପଞ୍ଚାଏ ବଦମାସକୁ ପୂରଣ କରିଦେଇ ପାରୁଛି । ଶେଓ ପ୍ରକାଶ ପ୍ରାଣମୂର୍ଚ୍ଛା ପ୍ରତିରୋଧ କଲା ମାତ୍ର ଜଣେ କନେଷ୍ଟବଲକୁ ଗୁଳିରେ ଆହତ କଲାପରେ ଧରାପଡ଼ିଗଲା । ତା'ର ଅପରାଧ ଜାମିନ୍ ଯୋଗ୍ୟ କିନ୍ତୁ ମୁଁ ବେଶି ପରିମାଣ ଜାମିନ ଧାର୍ଯ୍ୟ କରିଦେଲି । ଜଜ୍ଙ୍କ ଆଦେଶ କ୍ରମେ ଏ ପରିମାଣ କମିଗଲେ ମଧ ତାହା ସେ ଦେଇପାରିଲା ନାହିଁ । ତେଣୁ ଡକାଯାଇଥିବା ସାକ୍ଷୀମାନେ ଆସିବା ପର୍ଯ୍ୟନ୍ତ ମୋତିହାରୀ ଜେଲରେ ରହିଲା । ବିଚାର ଆରମ୍ଭ ହେବାପାଇଁ ଅବଶ୍ୟ କିଛିଦିନ ଚାଲିଗଲା । କିନ୍ତୁ ଅନ୍ୟାନ୍ୟ ବିଷୟରେ ମୋତେ ପୂରା ସମୟ ଦେବାକୁ ପଡ଼ିଲା । ଏ ଘଟଣାର ପରବର୍ତ୍ତୀ କଥା ପରେ କୁହାଯିବ ।

ଏହି ଛୋଟ ଜିଲ୍ଲାଟିର ଦୈନନ୍ଦିନ ସାଧାରଣ କାର୍ଯ୍ୟସବୁ ହାଲୁକା ଧରଣର ହେଲେ ମଧ ମୋ ହାତରେ ଗୁଡ଼ାଏ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ଥିଲା, ଯାହାପାଇଁ ମୋତେ ଅନେକ ଖଟିବାକୁ

ପଡୁଥିଲା । ବାସ୍ତବିକ ମୋର ପ୍ରିୟ ଅତି ଆପଣାର ପତ୍ନୀ ମୋତେ ଯେପରି ସାହାଯ୍ୟ କଲେ ଏବଂ ଯେପରି ଆରାମ ଦେଲେ, ତାହା ବିନା ମୋର ଅବସ୍ଥା ଅତି ଖରାପ ହୋଇଥାଆନ୍ତା । ମୋର ଶରୀର ଓ ମନ ଅତି ଖରାପ ଅବସ୍ଥାରେ ଥିଲା ଏବଂ ତାଙ୍କର ସ୍ନେହ, ଯତ୍ନ ଓ ବିଜ୍ଞ ପରାମର୍ଶ ଆବଶ୍ୟକ କରୁଥିଲା । ଭଗବାନ୍ ମୋତେ ଏପରି ଏକ ଉତ୍ତମ ସ୍ତ୍ରୀ ଦେଇ ଯେଉଁ ଆଶୀର୍ବାଦ କରିଛନ୍ତି ତାହା ସହ ତାଙ୍କର ମୋ ପ୍ରତି ଅନ୍ୟ କୌଣସି ଆଶୀର୍ବାଦ ତୁଳନୀୟ ନୁହେଁ । ଏପରି ଏକ ଅମୂଲ୍ୟ ସମ୍ପଦ ପାଇଁ କୌଣସି ଧନ୍ୟବାଦ ଯଥେଷ୍ଟ ନୁହେଁ । ଭଗବାନ୍ ତାଙ୍କୁ (ମୋ ସ୍ତ୍ରୀଙ୍କୁ) ଆଶୀର୍ବାଦ କରନ୍ତୁ ।

ଏମ୍— ଓ ତାଙ୍କର ଡକାୟତି ଘଟଣାରୁ ମୋତେ ବର୍ତ୍ତମାନ ସମ୍ପୂର୍ଣ୍ଣ ଅନ୍ୟ ଏକ ପ୍ରକାର ଜଞ୍ଜାଳ ଭିତରକୁ ଗତି କରିବାକୁ ହେଲା । ଜିଲ୍ଲାର ପ୍ରାୟ ସମସ୍ତ ଜମିର ମାଲିକ ଥିଲେ ବେଟିହାର ମହାରାଜା । ମୋତିହାରୀ ଠାରୁ ୩୦ମାଇଲ ଉତ୍ତର ପଶ୍ଚିମ ଦିଗରେ ୧୫୦୦ ଜନସଂଖ୍ୟା ବିଶିଷ୍ଟ ବାଣିଜ୍ୟ କେନ୍ଦ୍ର ବେଟିହା ସହରରେ ସେ ବାସ କରନ୍ତି । ସହରର ସମସ୍ତ ରାସ୍ତା ପ୍ରାସାଦର ଫାଟକ ନିକଟକୁ ପଡ଼ିଛି । ଏହି ଫାଟକଟି ଖୁବ୍ ସୁନ୍ଦର ଏବଂ ଏତେ ଉଚ୍ଚ ଯେ ତଳେ ହାତୀ ଯିବା ଆସିବା କରିପାରୁଥିଲା । ଏଇଠାରୁ ଅନେକ ବିରାଟ ଅପରିଷ୍କୃତ ଅଗଣାର ବାଟ ପଡ଼ିଛି । ଏହି ଅଗଣାମାନଙ୍କରେ ଘୋଡ଼ା, ହାତୀ ଓ ରକ୍ଷକମାନେ ବାସ କରୁଥିଲେ । ମଝିରେ ଧାଡ଼ିଏ ତିନି ମହଲାର ଉଚ୍ଚା କୋଠା । ସେଥିରେ ମହାରାଜା ନିଜେ ରହନ୍ତି । ସହରର ମାଇଲିଏ ଦୁଇମାଇଲ ବାହାରେ ତାଙ୍କର କେତେଗୁଡ଼ିଏ ଉଦ୍ୟାନ ପ୍ରାସାଦ ମଧ ରହିଥିଲା । ସେ ଥିଲେ ୪୦ ବର୍ଷର, କିନ୍ତୁ ଅସଂଯତ ଅଭ୍ୟାସ ଫଳରେ ଖୁବ୍ ବୟସ୍କପରି ଦେଖାଯାଉଥିଲେ । ସେ ଥିଲେ ବଦ୍ଧ ମଦୁଆ ଓ ଅନ୍ତଃପୁରରେ ତାଙ୍କର ବହୁ ସ୍ତ୍ରୀ ଥିଲେ । ପ୍ରାୟ ୫୦ମାଇଲ ଲମ୍ବ ଓ ୩୦ ମାଇଲ ଚଉଡ଼ା ତାଙ୍କର ବିରାଟ ଜମିଦାରୀ ଅତି କୁପରିଚାଳିତ ହେଉଥିଲା ଏବଂ ସେ କରଜରେ ବୁଡ଼ିରହିଥିଲେ । ସମ୍ଭବ ହେଲେ ତାଙ୍କୁ ସମ୍ପୂର୍ଣ୍ଣ ଧ୍ୱଂସରୁ ରକ୍ଷା କରିବାପାଇଁ ତାଙ୍କରି ଅନୁରୋଧକ୍ରମେ ସରକାର ତାଙ୍କୁ ଜଣେ ୟୁରୋପୀୟ ମ୍ୟାନେଜର ଦେଇଥିଲେ । ସାମରିକ ବିଭାଗରୁ ଅବସର ନେଇଥିବା ଏହି ବ୍ୟକ୍ତି କ୍ୟାପ୍‌ଟେନ୍ କୋଲ ମଧ କିଛିଦିନ ଡେପୁଟୀ ମ୍ୟାଜିଷ୍ଟ୍ରେଟ ଚାକିରି କରୁଥିଲେ । ମୋତେ ନିର୍ଦ୍ଦେଶ ଦିଆଯାଇଥିଲା ଜମିଦାରୀ ପରିଚାଳନାରେ କୌଣସି ହସ୍ତକ୍ଷେପ ନ କରି ମ୍ୟାନେଜରଙ୍କୁ ସବୁ ପ୍ରକାର ସାହାଯ୍ୟ ଯୋଗାଇ ଦେବା । ପ୍ରକୃତରେ କହିବାକୁ ଗଲେ ମୋତେ ଏକାବେଳକେ କାମ କରିବା ପାଇଁ ଓ ନ କରିବା ପାଇଁ କୁହାଗଲା । ସରକାରଙ୍କ ଉପରୁ ଦାୟିତ୍ୱ ଖସାଇଦେଇ ଅଫିସରମାନଙ୍କୁ ଖରାପ ପରିସ୍ଥିତିରେ ପକାଇବା ସଚିବାଳୟର ରୀତିମତ ଏକ କୌଶଳ ଥିଲା । କୋଲ୍ ଥିଲେ ଏକ ଦକ୍ଷ, କର୍ମଠ ଏବଂ ଶାନ୍ତ ପ୍ରକୃତିର ଲୋକ । ସହର ବାହାରେ ଏକ ସୁନ୍ଦର ଘରେ ସେ ରହୁଥିଲେ । ମାସକୁ ଦରମା ୧୫୦୦ ଟଙ୍କା । ମହାରାଜା ଗାଡ଼ି ଓ ଚାକରମାନଙ୍କୁ ଯୋଗାଇ ଦେଇଥିଲେ । କିନ୍ତୁ ତାଙ୍କୁ ବହୁତ ହଇରାଣ ହେବାକୁ ପଡୁଥିଲା । ଜମିଦାର ନାବାଳକ ବା ବାଧ ଥିବାବେଳେ ଗୋଟାଏ ବିରାଟ ଦେଶୀୟ ଜମିଦାରୀ ପରିଚାଳନା କରିବା କଷ୍ଟ, ଆହୁରି ବେଶି କଷ୍ଟ ହୁଏ ଜମିଦାର ବୟସ୍କ ଥାଇ ନିଜ କାମ ନିଜେ ବୁଝୁଥିବାବେଳେ; କିନ୍ତୁ ଏ ହେଉଛନ୍ତି ଜଣେ ରାଜା ଯେ କି

ବସିଥାଇ ସର୍ବଦା ମାତାଲ ରହୁଥିଲେ, ସେଇ ଅବସ୍ଥାରେ ଥାଇ ନୀଚ ସୁଖ ପାଇଁ ତାଙ୍କ ଗୋଡ଼ାଣିଆ, ଅନ୍ୟ ପରାମର୍ଶଦାତା ଓ ଚାଟୁକାରମାନଙ୍କୁ ଟଙ୍କା ଓ ଜମି ଲେଖି ଦେବା ବା ଉପହାର ଦେବାପାଇଁ ସହଜରେ ରାଜି ହୋଇଯାଉଥିଲେ । ସର୍ବଦା ଅନ୍ୟ ଉପାୟରେ ଚାପ ପକାଇ ମ୍ୟାନେଜର ଯତ୍ନର ସହ କରିଥିବା ବ୍ୟବସ୍ଥା ସବୁକୁ ଓଲଟପାଲଟ କରିଦେଉଥିଲେ । ତାଙ୍କୁ ଖୋସାମଦ କରୁଥିବା ଓ ଲୁଣ୍ଠନ କରୁଥିବା ଦଳେ ଚାଟୁକାରଙ୍କୁ ଅସନ୍ତୁଷ୍ଟ କଲାଭଳି ମ୍ୟାନେଜରଙ୍କ କୌଣସି ଯୋଜନାକୁ ସେ ସ୍ୱୀକୃତି ଦେଉନଥିଲେ । ତା' ସାଙ୍ଗକୁ ଥିଲେ ମହାରାଜାଙ୍କ ମା ଓ ତାଙ୍କର ଦଳେ ମନ୍ତ୍ରଣାକାରୀ— ତାଙ୍କ ସ୍ତ୍ରୀ ବା ମହାରାଣୀ ଏବଂ ତାଙ୍କ ଗହଣରେ ରହୁଥିବା ଦଳେ ଲୋଭୀ ପରାଙ୍ଗପୁଷ୍ଟ-ମହାରାଜାଙ୍କ ଅନ୍ଧବିଶ୍ୱାସରୁ ନିଜ ଫାଇଦା ଉଠାଉଥିବା ବ୍ରାହ୍ମଣମାନଙ୍କର ଏକ ବିରାଟ ବାହିନୀ - ଅନ୍ତଃପୁର ନିବାସିନୀ ଗୁଡ଼ାଏ ଦୁଷ୍ଟଚରିତ୍ରା ଏବଂ ଶେଷରେ ଏକାପରି ଅନିଷ୍ଟକାରୀ ଥିଲେ ନୀଳଚାଷୀଦଳ ଯେଉଁମାନେ 'ବ୍ରିଟିଶ ବ୍ୟବସାୟ ସଂସ୍ଥା'କୁ ସାହାଯ୍ୟ କରିବା ପାଇଁ ଚିତ୍କାର କରୁଥିଲେ । ବିଚରା କୋଲଙ୍କ ଜୀବନ ଦୁର୍ବିସହ ହୋଇଉଠିଲା । ତଥାପି ନିଜ ବ୍ୟକ୍ତିତ୍ୱ ଖଟାଇ ସେ କିଛିକାଳ ସଂଗ୍ରାମ କଲେ । ମୋର ସାହାଯ୍ୟକ୍ରମେ ସେ ମହାରାଜାଙ୍କ ବ୍ୟକ୍ତିଗତ ଖର୍ଚ୍ଚ, ତାଙ୍କ ସ୍ତ୍ରୀ, ମାତା, ପୁଅ ଓ ଅନ୍ୟାନ୍ୟ ଘରୋଇ ଖର୍ଚ୍ଚକୁ ବାର୍ଷିକ ୩୬୦,୦୦୦ ଟଙ୍କାକୁ କମାଇ ଦେବାର ଏକ ଯୋଜନା ପାଇଁ ମହାରାଜାଙ୍କର ସମ୍ମତି ଆଣିବାରେ ସକ୍ଷମ ହେଲେ । ଏ ପରିମାଣ ଯେ କୌଣସି ଭାରତୀୟ ରାଜାଙ୍କ ପାଇଁ ଯଥେଷ୍ଟ । ଜମିଦାରୀର ବଳକା ଲାଭାଂଶ ୧୧ଲକ୍ଷ ଟଙ୍କାରୁ ଅଧିକ (ପ୍ରାୟ ୧୧୦,୦୦୦ ପାଉଣ୍ଡ, ସେତେବେଳେ ଟଙ୍କାର ମୂଲ୍ୟ ଦୁଇ ସିଲିଂ ଥିଲା) ଧାର ସୁଝିବା ବା ସରକାରୀ ରାଜସ୍ୱ ଦେବାପାଇଁ ସେ ଯୋଜନାରେ ନିର୍ଦ୍ଦିଷ୍ଟ ଥିଲା କିନ୍ତୁ ଯେଉଁ ରାତିରେ ସେ ଏହି ଚୁକ୍ତିପତ୍ରରେ ଦସ୍ତଖତ କଲେ ତା' ପରଦିନ ରାତିରେ ସେ ପୂରା ମାତାଲ ଥିବା ଅବସ୍ଥାରେ ତାଙ୍କର ଜଣେ ତୋଷାମଦକାରୀ ପରାଙ୍ଗପୁଷ୍ଟ ବ୍ୟକ୍ତିଙ୍କୁ ବିରାଟ ଅଞ୍ଚଳଟିଏ ମାତ୍ର ଅଳ୍ପ କେତେ ଟଙ୍କା ବିନିମୟରେ ବହୁକାଳ ପାଇଁ ପଟ୍ଟାକରି ସେଥିରେ ଦସ୍ତଖତ କରିଦେଲେ । ଏହି ବ୍ୟକ୍ତିଟି ଥିଲା ରାଜାଙ୍କର ମା ବା ପୂର୍ବତନ ମହାରାଜାଙ୍କ ସମ୍ପତ୍ତିର ଉତ୍ତରାଧିକାରିଣୀଙ୍କର ଉପଗତି । ପରଦିନ ସକାଳେ ସେ ପଟାଟି କୋଲ୍‌ଙ୍କୁ ଦିଆଯିବାରୁ ସେ ତାଙ୍କୁ କାର୍ଯ୍ୟକାରୀ କରିବାକୁ ମନା କରିଦେଲେ । ଏହା ଫଳରେ ପ୍ରାସାଦ ମଧ୍ୟରେ ଏତେ ଜୋରରେ ହଲ୍ଲା ଉଠିଲା, ଏତେ ଗାଳିଗୁଲଜ ଓ ଏତେ ଅପମାନଜନକ ଭାଷାର ପ୍ରୟୋଗ କରାଗଲା ଯେ କୋଲ୍, ନିଜେ ରକ୍ଷା ପାଇବାକୁ ଚାହୁଁ ନ ଥିବା ଜଣେ ବ୍ୟକ୍ତିକୁ ରକ୍ଷା କରିବାର ନିଷ୍ଫଳ ଚେଷ୍ଟାରେ କ୍ଳାନ୍ତ ହୋଇ ନିଜ ପଦରୁ ଇସ୍ତଫା ଦେଇ ଅବସର ନେଲେ । ସୌଭାଗ୍ୟବଶତଃ ତାଙ୍କର ମଧ୍ୟମଧରଣର ବ୍ୟକ୍ତିଗତ ସମ୍ପତ୍ତି ଥିଲା । ସେଇଥିରେ ସେ ଇଂଲାଣ୍ଡରେ ଆରାମରେ ଚଳିଲେ ।

ବର୍ଷାଧିକକାଳ ମୁଁ ଯେଉଁ କାମରେ ଖୁବ୍ ଆଗ୍ରହ ସହ ଲାଗିଥିଲି, ସେହି ସଂଗ୍ରାମର ଏହିପରି ଦୁର୍ଭାଗ୍ୟଜନକ ସମାପ୍ତି ଘଟିଲା । କୋଲ୍ ଏ ସମ୍ପର୍କରେ ବରାବର ମୋ ସହ ପରାମର୍ଶ କରୁଥିଲେ । ମୁଁ କେତେ ରିମ୍ କାଗଜର ଚିଠି ତାଙ୍କ ପାଖକୁ ଲେଖିଚି ଏବଂ ଘଣ୍ଟା ଘଣ୍ଟା ଧରି ତାଙ୍କ ସହ ଓ ମହାରାଜାଙ୍କ କର୍ମଚାରୀମାନଙ୍କ ସହ ଆଲୋଚନାରେ ବ୍ୟୟ କରିଛି । କିନ୍ତୁ

ସରକାରଙ୍କ ଆଦେଶରେ ମୋ ହାତ ଏତେ ବନ୍ଧାଥିଲା ଯେ କିଛି ବାସ୍ତବ ସାହାଯ୍ୟ କରିପାରିଲି ନାହିଁ । କୋଲ୍‌ଙ୍କ ଜାଗାରେ ମହାରାଜା ଜଣେ ପ୍ରଧାନ ନୀଳଚାଷୀ ଥୋମାସ ମାଇକେଲ ଗିବନଙ୍କୁ ନିଯୁକ୍ତ କଲେ । ସେ ଆବରଡ଼ନ୍‌ରୁ ଆସିଥିବା ଜଣେ ଅଭିଜ୍ଞ ବୁଦ୍ଧିମାନ ସ୍କଟବାସୀ । ସେ ତୋଷାମଦ ଓ ଜବରଦସ୍ତିର ମିଶ୍ରଣ କୌଶଳ ପ୍ରୟୋଗ କରି ରାଜାଙ୍କୁ ସମ୍ଭାଳିଲେ । ଯାହାହେଉ ବାହ୍ୟତଃ ଏହି ଉପାୟ ଭଲକାମ ଦେଖାଇଲା । ଗୀବନ ଥିଲେ କୋଲ୍‌ଙ୍କଠାରୁ ଅଧିକ ଟାଣୁଆ । ଗୁପ୍ତ ମନ୍ତ୍ରଣାରେ ହଟିଯିବାର ଲୋକ ସେ ନୁହନ୍ତି ଏବଂ ମନ୍ତ୍ରଣାକାରୀମାନଙ୍କ ପ୍ରତି ସେଇମାନଙ୍କ ଅସ୍ତ୍ର ପ୍ରୟୋଗକରି ସଂଗ୍ରାମ କରିବାରେ ସେ କୁଣ୍ଠିତ ନ ଥିଲେ ।

ତାଙ୍କୁ ନିଯୁକ୍ତି ଦିଆଯିବାରେ ମୁଁ ବିଶେଷ ଖୁସି ହେଲି ନାହିଁ; କିନ୍ତୁ ସେସବୁ ବ୍ୟବସ୍ଥା ମୋ ଅଗୋଚରରେ ହେଲା ଏବଂ ସବୁ ସରିବା ପର୍ଯ୍ୟନ୍ତ ମୋତେ ଜଣାଇଦିଆଗଲା ନାହିଁ । ମୁଁ ଯେପରି ବିରୋଧ କରି ନ ପାରେ ସେଇଥିପାଇଁ ଏପରି କରାଗଲା ନିଶ୍ଚୟ । ନୀଳଚାଷୀ ଓ ରୟତମାନଙ୍କ ମଧ୍ୟରେ ସମ୍ପର୍କ ତିକ୍ତ ହୋଇଉଠୁଥିଲା । ସେ କ୍ଷେତ୍ରରେ ଟମ୍ ଗୀବନ ନିଜେ ଜଣେ ପ୍ରତିଷ୍ଠିତ ଚାଷୀହୋଇ ମହାରାଜାଙ୍କ ବିସ୍ତୃତ ଜମିଦାରୀ ମଧ୍ୟରେ ନିଜର ଚାଷୀ ବନ୍ଧୁମାନଙ୍କୁ ପଟାଦେବାର କ୍ଷମତା ଅଧିକାର କରିବା ଉଚିତ ନୁହେଁ । ବିଶେଷକରି ମ୍ୟାନେଜର ପଦ ଅନ୍ୟ କୌଣସି ଦୃଷ୍ଟିରୁ ଆକର୍ଷଣୀୟ ନ ହେଲେ ମଧ୍ୟ ସେ କେବଳ ଏହି କ୍ଷମତା ପାଇବା ପାଇଁ ତାହା ଗ୍ରହଣ କରିଥିଲେ । ଏହି ସମୟରେ ୧୮୬୭ର ଗ୍ରୀଷ୍ମଋତୁରେ ରୟତମାନଙ୍କଠାରେ ଯେଉଁ ନୀରବ ଦୃଢ଼ ପ୍ରତିବାଦ ରୂପ ପାଇଲା ସେଥିରେ ଚାଷମାଲିକମାନେ ଭୀତହୋଇ ପଡୁଥିଲେ । ମୋତେ ଏ ସବୁର ମୂଳବୋଲି ସେମାନେ ବିଚାରୁଥିଲେ ମଧ୍ୟ ସାହାଯ୍ୟ ପାଇଁ ମୋ ନିକଟକୁ ଆସିଲେ । ମୁଁ ରୟତମାନଙ୍କୁ କୌଣସି ପ୍ରକାରେ ଉତ୍ତେଜିତ କରିନଥିଲି; କିନ୍ତୁ ସେମାନେ ବହୁଦିନୁ ଅସନ୍ତୁଷ୍ଟ ଥିଲେ । ଅବଶେଷରେ ଏବେ ନୀଳଚାଷୀ ଓ ସେମାନଙ୍କ ମଧ୍ୟରେ ଥିବା ବିବାଦର ନିରପେକ୍ଷ ବିଚାର କରୁଥିବା ଜଣେ ମ୍ୟାଜିଷ୍ଟ୍ରେଟ୍ ପାଇ ଉତ୍ପୀଡ଼ନର ପ୍ରତିରୋଧ ପାଇଁ ଏଇ ସୁବିଧା ବେଳ ବୋଲି ସେମାନେ ମନେକଲେ । ଆନ୍ଦୋଳନକୁ ପ୍ରକୃତ ଚେତେଇବା ଲୋକ ହେଉଛନ୍ତି ତିରହୁତ୍‌ର କେତେକ ଓକିଲ ଓ ଆଇନ ଏଜେଣ୍ଟ । ଆମେ ପରେ ଜାଣିପାରିଲୁ ସେମାନେ ଗ୍ରାମାଞ୍ଚଳକୁ ଯାଇ ଲୋକମାନଙ୍କଠାରେ ସେମାନଙ୍କ ଅଧିକାର ସମ୍ପର୍କରେ ପ୍ରଚାର କରୁଥିଲେ । ନୀଳ ବିହନ ବୁଣିବା ସମୟ ହେବାରୁ ଶହ ଶହ ରୟତ ନୀଳଚାଷ ଲାଭଦାୟକ ହେବ ନାହିଁବୋଲି ଦର୍ଶାଇ (ଯାହାକି ସମ୍ପୂର୍ଣ୍ଣ ସତ୍ୟ) ଜମିରେ ଅନ୍ୟ ଫସଲ ବୁଣିଲେ । ପୂର୍ବବର୍ତ୍ତୀ କେତେ ପୃଷ୍ଠାରେ ମୁଁ ବର୍ଣ୍ଣନା କରିଛି ଯେ ଜଣେ ଗାଁ ମୁଖିଆଠାରୁ ସମଗ୍ର ଗ୍ରାମପାଇଁ ଜବରଦସ୍ତି ଚୁକ୍ତିପତ୍ର ଲେଖାଇ ନେବାର କିପରି ରୀତି ଥିଲା, ଯାହା ଫଳରେ କି ସେମାନେ ସେମାନଙ୍କ ପୂରା ଜମିର ବାରଭାଗରୁ ଚାରି ଭାଗ ଅର୍ଥାତ୍ ବିଘାକେ ଚାରିକୋଟା ଜମିରେ ନୀଳ ବୁଣିବା ପାଇଁ ଅଙ୍ଗୀକାରକରି ପ୍ରତ୍ୟେକ ବିଘାରେ ଉତ୍ପନ୍ନ ହେଉଥିବା ନୀଳପାଇଁ ଆଠଟଙ୍କା କରି ନେଉଥିଲେ । ସେମାନେ ଅଭିଯୋଗ କଲେ ଯେ ଏହି ସର୍ତ୍ତ ଆଉ ଲାଭଦାୟକ ହେଉ ନାହିଁ ଏବଂ ବିଘାପ୍ରତି ତିନି କୋଟାକୁ କମାଇ ଦେବାକୁ ଓ ବିଘାଏ ଜମିର ଉତ୍ପାଦନ ପାଇଁ ଦଶ ଟଙ୍କା କରି ଦେବାକୁ ପାଟିତୁଣ୍ଡ ଆରମ୍ଭ କଲେ । ସେମାନଙ୍କର ଆଉ ମଧ୍ୟ ଅଭିଯୋଗ ଥିଲା ଯେ,

ମାଲିକମାନେ ଭଲ ଜମିସବୁ ନୀଳଚାଷ ପାଇଁ ନେଇଯାଉଛନ୍ତି ଏବଂ ସେମାନେ ଅନ୍ୟ ଫସଲ ଚାଷ କଲାବେଳେ ସେମାନଙ୍କୁ ନୀଳଜମିକୁ ଦଳକଢ଼ା ଓ କୋଡ଼ିହଣା ପ୍ରଭୃତି କାମପାଇଁ ବାଧ କରାଯାଉଛି । ପ୍ରକୃତରେ ଚାବୁକ ଧରି ଲୋକେ ଗାଁକୁ ଯାଇ ରୟତମାନଙ୍କୁ କାମକୁ ଅଡ଼େଇ ଆଣୁଥିଲେ । ମୋ ନିଜ ଚାକର ମଧ୍ୟରୁ କେତେକଙ୍କର ଆଖପାଖ ଗାଁରେ ଛୋଟ ଖଣ୍ଡେ ଲେଖାଏଁ ଚାଷଜମି ଥିଲା । ବଲ୍‌ଡ୍‌ଉଇନ ଯେତେବେଳେ ଇଚ୍ଛା ସେତେବେଳେ ନୀଳଜମିରୁ ଦଳ କାଢ଼ିବା ପାଇଁ ସେମାନଙ୍କୁ ଧରିନେଉଥିଲା । ଅବଶ୍ୟ ମୋ କ୍ଷେତ୍ରରେ ମୁଁ ଏହାକୁ ଅତିଶୀଘ୍ର ବନ୍ଦ କରିଦେଲି ଏବଂ ଜିଲ୍ଲା ସାରା ଏହା ବନ୍ଦ କରାଇବା ମୋର କର୍ତ୍ତବ୍ୟ ବୋଲି ମନେକଲି ।

ମୁଁ ସେମାନଙ୍କର ମତପାର୍ଥକ୍ୟ ଦୂରକରେ ବୋଲି ଯେତେବେଳେ ଉଭୟପକ୍ଷ ଉଦ୍‌ଗ୍ରୀବତା ପ୍ରକାଶ କଲେ ମୁଁ ସେ କାମ ଗ୍ରହଣ କଲି ଏବଂ ଜିଲ୍ଲାଯାକ ଏ କାରଖାନାରୁ ସେ କାରଖାନା ବୁଲି ରୟତ ଓ ନୀଳଚାଷୀମାନଙ୍କୁ ଏକତ୍ର କରାଇଲି ଏବଂ ଯେଉଁ ଚୁକ୍ତିପତ୍ର ଉପରେ ସେମାନଙ୍କର ଏ କାରବାର ପ୍ରତିଷ୍ଠିତ ତାହାକୁ ପରୀକ୍ଷା କଲି । ଏହି ଚୁକ୍ତିଗୁଡ଼ିକ ସାଧାରଣତଃ କୋଡ଼ିଏ ବର୍ଷପାଇଁ କରାହୋଇଥିଲା । ସେଥିରୁ ୧୮୬୭ ସୁଦ୍ଧା କେତେକ ସରୁଥିଲା, ଆଉ କେତେକ ଦୁଇ ତିନିବର୍ଷ ଲେଖାଏଁ ଥିଲା । ରୟତମାନେ ଥିଲେ ଅଶିକ୍ଷିତ ଏବଂ ନୀଳଚାଷୀମାନେ ଆଇନ ବିଷୟରେ ଅଜ୍ଞ ଓ ନିସ୍ପୃହ । ଏହି ଚୁକ୍ତିପତ୍ର ସବୁ କାରଖାନାର କିରାଣିମାନଙ୍କ ଦ୍ୱାରା ଅଯତ୍ନରେ ଅର୍ଥଶୂନ୍ୟ ଭାବରେ ଲେଖାଯାଇଥିଲା ଏବଂ ଅନେକ କ୍ଷେତ୍ରରେ ସଠିକ ଭାବରେ କାର୍ଯ୍ୟକାରୀ ହେବାଭଳି ଦସ୍ତଖତ ଆଦି ହୋଇନଥିଲା । ବହୁତ ବୁଝାବୁଝି ପରେ ଶେଷରେ ସେମାନଙ୍କୁ ଏକ ସମାଧାନରେ ରାଜି କରାଇଲି । ଯେଉଁ ରୟତମାନଙ୍କ ଚୁକ୍ତି ସରିବାକୁ ଆଉ ବର୍ଷେ ଦୁଇବର୍ଷ ଥିଲା, ସେମାନେ ଚୁକ୍ତି ସମୟ ସରିବା ପର୍ଯ୍ୟନ୍ତ ଚୁକ୍ତିର ସର୍ତ୍ତ ଅନୁଯାୟୀ କାମ କରିବେ । ଯେଉଁମାନଙ୍କ ଚୁକ୍ତିକାଳ ସରିଯାଇଥିଲା ସେମାନେ ଇଚ୍ଛାନୁଯାୟୀ କାମ କରିବେ ଏବଂ ନୀଳଚାଷପାଇଁ ନୂତନ ଚୁକ୍ତି କରିବାକୁ ବାଧ ରହିବେ ନାହିଁ । ପ୍ରତି ବିଘାରେ ତିନି କୋଟା ଓ ପ୍ରତି ବିଘାର ନୀଳ ଉତ୍ପାଦନ ପାଇଁ ଦଶ ଟଙ୍କା ସର୍ତ୍ତକୁ ମାନିନେବାକୁ ନୀଳଚାଷୀମାନଙ୍କୁ ପ୍ରବର୍ତ୍ତାଇବାକୁ ଚେଷ୍ଟାକଲି । ସେମାନଙ୍କୁ ବୁଝାଇଦେଲି ଯେ କୋଡ଼ିଏ ବର୍ଷ କିମ୍ବା ତା' ପୂର୍ବରୁ ପୁରୁଣା ଚୁକ୍ତିପତ୍ର ଲେଖାହୋଇଥିବା ବେଳଠାରୁ ଚାଉଳ ଓ ଅନ୍ୟାନ୍ୟ ଫସଲର ଦାମ ଏତେ ବଢ଼ିଗଲାଣି ଯେ ନୀଳ ଅପେକ୍ଷା ସେଗୁଡ଼ାକ ଚାଷ କରିବା ଚାଷୀପକ୍ଷରେ ଲାଭଦାୟକ ହେବ ଏବଂ ସେମାନେ ଏହି ଯୁକ୍ତିଯୁକ୍ତ କଥାରେ ରାଜି ନ ହେଲେ ରୟତମାନେ ଚୁକ୍ତି ସମୟ ପୂରିଯିବା ମାତ୍ରେ ଆଉ ନୀଳଚାଷ କରିବାକୁ ରାଜି ହେବେ ନାହିଁ ଏବଂ ଅଳ୍ପ କେତେ ବର୍ଷରେ ସେମାନଙ୍କ ବ୍ୟବସାୟ ଲୋପ ପାଇଯିବ । ସେତେବେଳେ ସେମାନେ ମୋ କଥାରେ କର୍ଣ୍ଣପାତ କଲେ ନାହିଁ; କିନ୍ତୁ କେତେ ବର୍ଷପରେ ସେମାନେ ମୋତେ କହିଲେ ଯେ, ମୋ କଥା ନ ଶୁଣି ସେମାନେ ସେଇଦିନଠାରୁ ପଶ୍ଚାତ୍ତାପ କରୁଛନ୍ତି, କାରଣ ଅବଶେଷରେ ଆହୁରି ଖରାପ ସର୍ତ୍ତରେ ସେମାନଙ୍କୁ ରାଜି ହେବାକୁ ପଡ଼ିଲା । ମୁଁ ଚାଲିଗଲା ପରେ ରୟତମାନେ କହିଲେ ଯେ, 'ଚଷମାବାଲା' (ସେମାନେ ମୋତେ ସେଇପରି କହୁଥିଲେ) ଚାଲିଗଲା ପରେ ସେମାନେ ଆଉ କେଉଁ ମ୍ୟାଜିଷ୍ଟ୍ରେଟକୁ ବିଶ୍ୱାସ କରିପାରିବେ ନାହିଁ । ୧୮୬୮ରେ ଦଙ୍ଗା ଏତେ ପ୍ରବଳ ହେଲା ଯେ

ମୋତିହାରୀର ସରକାରୀ ଅଞ୍ଚଳକୁ ରକ୍ଷା କରିବା ପାଇଁ ତତ୍କାଳୀନ ମ୍ୟାଜିଷ୍ଟ୍ରେଟ ମେଟ୍‌କାଫ୍‌କୁ ସୈନ୍ୟବାହିନୀକୁ ଡାକିବାକୁ ପଡ଼ିଲା । ପାଞ୍ଚବର୍ଷ ପରେ ଲାଟ ଜି. କାମ୍ପବେଲ୍ ସେ ଜିଲ୍ଲାକୁ ଯାଉଥିବାବେଳେ ଲୋକେ ସେହି 'ଚଷମାବାଲା'କୁ ଫେରେଇ ଆଣିବା ପାଇଁ ତାଙ୍କୁ ନିବେଦନପତ୍ର ଦେଇଥିଲେ ।

ଏହି ଗ୍ରୀଷ୍ମ ଓ ବର୍ଷା ସମୟରେ ମୁଁ ଯେତେ କର୍ମବ୍ୟସ୍ତ ଓ ଉତ୍କଣ୍ଠିତ ରହିଥିଲେ ମଧ ମୋର 'ଆଧୁନିକ ଭାରତୀୟ ଭାଷାମାନଙ୍କର ତୁଳନାତ୍ମକ ବ୍ୟାକରଣ' ପାଇଁ ପଢ଼ାପଢ଼ି ଆରମ୍ଭ କରିଥିଲି । ଦୈନିକ ମୁଁ ଘଣ୍ଟାଏ ଦୁଇଘଣ୍ଟା ଖଣ୍ଡେ ବଙ୍ଗଳା ସଂସ୍କୃତ ଓ ପ୍ରାକୃତ ପାଠ ମଧରେ ବୁଡ଼ିଯାଏ । ସମସ୍ତ ସରକାରୀ କାମର ଜଞ୍ଜାଳ ମଧରେ ମୋର କ୍ଲାନ୍ତ ହୃଦୟକୁ ତାହା ପ୍ରଫୁଲ୍ଲିତ କରେ ।

ମୋ ଭାଇ ହ୍ୟାରୀକୁ ଆମୋଦ ପ୍ରମୋଦ ଭଲ ଲାଗୁଥିଲା— ତା'ର ସେ ବୟସରେ ସେଇଟା ଥିଲା ସ୍ୱାଭାବିକ । ସେସବୁ ସେ ପାଉଥିଲା ଅଶିକ୍ଷିତ ଯୁବକ ନୀଳଚାଷୀ ଏବଂ ଏକାଭଳି ଅଶିକ୍ଷିତ ମୋତିହାରୀରୁ ବାରମାଇଲ ଦୂରରେ ଥିବା ସେଗାଉଲି ନାମକ ଛୋଟ ସ୍ଥାନରେ ଅବସ୍ଥିତ ଷଷ୍ଠ ବଙ୍ଗଳା ଘୋଡ଼ସବାର ବାହିନୀର ଯୁବକ ଅଫିସରମାନଙ୍କ ସହ । ଦିନେ ସେ ଜଣେ ଆଡ଼ବାୟା ଆଇରୀଶ ଡାକ୍ତର ସାଙ୍ଗରେ ଗୋଟାଏ ଦୁଷ୍ଟ ଘୋଡ଼ା ଉପରେ ବସି ଯାଉଥିଲା । ଉଭୟେ ଛିଞ୍ଚାଡ଼ିହୋଇ ପଡ଼ିଲେ । ହ୍ୟାରିର ଗୋଡ଼ ଭାଙ୍ଗିଗଲା ଓ କେତେ ମାସ ପର୍ଯ୍ୟନ୍ତ ସେ ପଡ଼ିରହିଲା ।

ଏହିପରି ବର୍ଷାଦିନ ଚାଲିଗଲା ଏବଂ ଆମ ଉପରେ ଶୀତଦିନ ମାଡ଼ିଆସିଲା । ଆମେ ଗସ୍ତକୁ ଯିବାପାଇଁ ଯୋଜନା କରୁଥିଲୁ, ଦିନେ ସକାଳେ ଯଥାରୀତି ଧୀରସ୍ଥିର ଭାବରେ ମୋର ଚିଠିପତ୍ର ଖୋଲୁ ଖୋଲୁ ଗୋଟିଏ ସରକାରୀ ଚିଠି ପଢ଼ି ଜାଣିଲି ଯେ ମୁଁ ସସ୍‌ପେଣ୍ଡ (ଚାକିରିରୁ ରହିତ) ହୋଇଛି ! ଏହା ଥିଲା ମୋର କଳ୍ପନାର ସମ୍ପୂର୍ଣ୍ଣ ବାହାରେ— ଶୂନ୍ୟରୁ ବଜ୍ରପାତ ପରି । ଲାଟ ସାର୍ ଉଇଲିୟମ ଗ୍ରେଙ୍କର ସମ୍ପୂର୍ଣ୍ଣ କାର୍ଯ୍ୟକାଳ ସଚିବାଳୟରେ କଟିଯାଇଥିଲା; ତେଣୁ ଜିଲ୍ଲା ଅଫିସରମାନଙ୍କର ଅଭାବ ଅସୁବିଧା ପାଇଁ ସହାନୁଭୂତି ଦେଖାଇବାରେ ତାଙ୍କର ଧାରଣା ବା କ୍ଷମତା ନ ଥିଲା । କଲିକତାର ପ୍ରବଳ ସରକାରୀ ବିରୋଧୀ 'ଇଣ୍ଡିଆନ ଡେଲି ନ୍ୟୁଜ' ନାମକ ଏକ ସମ୍ବାଦପତ୍ରରୁ ଶେଓପ୍ରକାଶ ପ୍ରତି ମୁଁ କରିଥିବା ବ୍ୟବହାର ସମ୍ପର୍କରେ କେତେକ ଅତିରଞ୍ଜିତ ମତାମତ, ଲେଖା ଓ ପତ୍ର ସେ ପଢ଼ିଲେ । ଏହି ଉଡ଼ାଟିଆ କାଗଜ ସେ ବୁଢ଼ା ଡକାଇତ ସର୍ଦ୍ଦାର ସମ୍ପର୍କରେ ଲେଖିଥିଲା— "ଏହି ବୟସ୍କ ସମ୍ଭ୍ରାନ୍ତ ପୁରୁଷ ତାଙ୍କର ସାମାଜିକ ସ୍ଥିତିର ସୁଖସମ୍ଭୋଗରୁ ବଂଚିତ ହୋଇ ଅପରାଧୀ ପରି କାରାଗାରରେ ଶଢୁଚନ୍ତି । ପରେ ମୁଁ ଜାଣିଲି ଯେ ଅନ୍ୟ କାରଣ ଯୋଗୁଁ ଚମ୍ପାରଣରୁ ମୋତେ ହଟାଇବା ପାଇଁ ଇଚ୍ଛା କରୁଥିବାରୁ ଏଇ ଘଟଣାଟିକୁ ସେ ଆୟୁଧ କଲେ ଏବଂ ମୋତେ ଚାକିରିରୁ ରହିତ କରାଇ ତାଙ୍କ କାର୍ଯ୍ୟ ଆରମ୍ଭ କଲେ । ତା'ପରେ ସେ ମୋର ଏ ବ୍ୟବହାର ପାଇଁ କୈଫିୟତ ମାଗିଲେ । ଏହା ଘୋଡ଼ା ଆଗରେ ଗାଡ଼ି ଯୋଖିବା ପରି କାମ । ବିଗତ ଘଟଣାବଳୀର ପରିପ୍ରେକ୍ଷୀରେ ମୁଁ

ମୋ କାର୍ଯ୍ୟପାଇଁ କୈଫିୟତ ଦାଖଲ କଲି ଏବଂ ବିଶେଷ ରୂପେ ଦେଖେଇ ଦେଲି ଯେ, ଶେଓପ୍ରକାଶ ବନ୍ଦୀହେଲା ଦିନଠାରୁ ଆଉ ଜମା ଡକାୟତି ହୋଇ ନାହିଁ ଯେଉଁଠି କି ତା'ର ଗିରଫ ହେବା ପୂର୍ବ ଛ'ମାସରେ ଅନ୍ୟୂନ ପଞ୍ଚଷଠି ଥର ହୋଇଥିଲା । ବିଚାର ପୂର୍ବରୁ ତାକୁ ଏତେଦିନ ଧରି ଜେଲରେ ରଖିବାର କାରଣ ହେଉଛି ପୋଲିସ ତଦନ୍ତରେ ଉଲ୍ଲେଖ ଥିବା ଯେଉଁ ସାକ୍ଷୀମାନଙ୍କ ଜମାନବନ୍ଦୀ ଉପରେ ନିର୍ଭର କରି ମୁଁ ତାକୁ ଗିରଫ କରିଥିଲି, ପୋଲିସ୍ ସେମାନଙ୍କୁ ଆଣିପାରିଲେ ନାହିଁ କିମ୍ବା ଆଣିଲେ ନାହିଁ । ପରେ ପରେ ମୁଁ ଜାଣିପାରିଲି ଯେ ସାକ୍ଷୀମାନଙ୍କୁ ସୀମା ଆରପଟକୁ ଘଉଡ଼ି ଦିଆଗଲା ଏବଂ ସେମାନଙ୍କର ଏଇ ଉଭେଇଯିବାରେ ସାହାଯ୍ୟ କରି ହରକ୍‌ଚାନ୍ଦ ବହୁ ପରିମାଣ ଲାଞ୍ଚ ପାଇଥିଲା । ଏମ୍— ଅନ୍ୟ ଏକ ଜିଲ୍ଲାକୁ ବଦଳି ହୋଇ ଯାଇଥିଲେ ଏବଂ ତାଙ୍କ ଜାଗାରେ ଆସିଥିବା ଲୋକ ଏ ବିଷୟରେ କିଛି ଜାଣି ନ ଥିଲେ ।

ମୁଁ ଏହି ପ୍ରକାର ଉତ୍ତର ଦେଇ ଆଦେଶକୁ ଅପେକ୍ଷା କରି ରହିଲି; କିନ୍ତୁ ନୂଆ ମ୍ୟାଜିଷ୍ଟ୍ରେଟ ଦାୟିତ୍ୱ ଗ୍ରହଣ କରିସାରିଥିଲେ । ମୁଁ ଆଉ କର୍ମହୀନ ହୋଇ ବସିପାରିଲି ନାହିଁ । ମୋ ଭାଇ, ସ୍ତ୍ରୀ ଓ ବନ୍ଧୁମାନେ ସମସ୍ତେ ମତେ ଛୁଟି ନେଇ ଯିବାପାଇଁ କହିଲେ । କାମ ଓ ବାରମ୍ବାର ଜ୍ୱର ଭୋଗି ମୁଁ ଦୁର୍ବଳ ହୋଇପଡ଼ିଥିଲି ଏବଂ ଏଇ ଶେଷ ଆଘାତଟି ମୋତେ ସମ୍ପୂର୍ଣ୍ଣ ଭାଙ୍ଗିଦେଲା । ଡାକ୍ତର ମୋତେ ଏକ ଡାକ୍ତରୀ ପ୍ରମାଣପତ୍ର ଦେଲେ ଏବଂ ମୁଁ ଅସୁସ୍ଥତା ଛୁଟି ନେଇ ଇଂଲଣ୍ଡ ଯିବାପାଇଁ କାଗଜପତ୍ରସବୁ ପଠାଇ ଦେଲି ।

ଯେଉଁ ସ୍ଥାନରେ ଏତେ ବର୍ଷଧରି ମୁଁ ଖୁବ୍ କଷ୍ଟକର କାମସବୁ ଆଗ୍ରହର ସହ କରିଥିଲି ତାକୁ କିଛି ଦୁଃଖର ସହ ତ୍ୟାଗକରି ଆମେ ନୌକାରେ ଗଣ୍ଡକ ଓ ଗଙ୍ଗାଦେଇ ମୁଙ୍ଗେର ଗଲୁ । ମୋ ସ୍ତ୍ରୀଙ୍କ ପ୍ରସବ ସମୟ ପାଖେଇ ଆସିଥିବାରୁ ମୁଙ୍ଗେରରେ ମୋତେ କିଛିଦିନ ରହିବାକୁ ପଡ଼ିଲା । ୧୮୬୮ ଜାନୁୟାରୀ ଦୁଇ ତାରିଖରେ ପ୍ରାଚୀନ ମୁଙ୍ଗେର ଦୁର୍ଗର ଅତ୍ୟୁଚ୍ଚ ପ୍ରାଚୀର ସୀମାରେ ଅବସ୍ଥିତ କରନଚଉରା ନାମକ ବିରାଟ ପ୍ରାସାଦୋପମ ଗୃହରେ ମୋର ଜ୍ୟେଷ୍ଠାକନ୍ୟା ମାର୍ଗାରେଟ ଜନ୍ମଗ୍ରହଣ କଲା ।



# ଚତୁର୍ଦ୍ଦଶ ପରିଚ୍ଛେଦ

## ଛୁଟିରେ ଘରକୁ : ୧୮୬୮

ଜଞ୍ଜାଳମୁକ୍ତି ହେବାମାତ୍ରେ ମୁଁ କଲିକତା ଯାଇ ସରକାରଙ୍କ ସଚିବ ଟାମ୍ପିଅର୍‌ଙ୍କୁ ଦେଖାକଲି । ସେ ମୋତେ କହିଲେ ଯେ ମୋର କୈଫିୟତ ସମ୍ପୂର୍ଣ୍ଣ ସନ୍ତୋଷଜନକ ହୋଇଛି । ସେ ଜିଲ୍ଲାରେ ମୋର ସାଧାରଣ ଶାସନବ୍ୟବସ୍ଥା ସନ୍ତୋଷଜନକ । ମୋର ପୁନର୍ନିଯୁକ୍ତି ହୋଇଛି ଏବଂ କାର୍ଯ୍ୟରୁ ରହିତ ହୋଇଥିବା ସମୟର ପୂରା ଦରମା ମୋତେ ମଞ୍ଜୁର ହୋଇଛି । ଓଡ଼ିଶାର ବାଲେଶ୍ୱର ଜିଲ୍ଲାରେ ମୋର ନିଯୁକ୍ତି ହେଲା । ସେ ମୋତେ ସୂଚନା ଦେଲେ ଯେ ଯଦିଓ ସେଓପ୍ରକାଶର ଘଟଣାଟି ସମ୍ଭବତଃ କିଛି ଗୁରୁତର କିନ୍ତୁ ଜଣେ ଲୋକକୁ ଚାକିରିରୁ ରହିତ କରିଦେବାଭଳି ନୁହେଁ । ମୋର କର୍ମ ରହିତ ହେବାର କାରଣ ହେଲା ସାର ଜନ୍ ଲରେନ୍‌ସ ଜଙ୍ଗବାହାଦୁର ପ୍ରତି ମୋର ମନୋବୃତ୍ତିରେ ଅସୁବିଧାରେ ପଡ଼ି ସୀମାନ୍ତଠାରୁ ଦୂରର କୌଣସି ଜିଲ୍ଲାକୁ ମୋତେ ପଠାଇବା ପାଇଁ ବ୍ୟକ୍ତିଗତ ଭାବରେ ଲେଖିଲେ । ତାଙ୍କୁ ଖୁସି କରିବା ପାଇଁ ଜଣେ ମାଜିଷ୍ଟ୍ରେଟଙ୍କୁ ବଦଳିକରାହେଲା ବୋଲି ଜଙ୍ଗ୍ ମନେ କରିବା ଉଚିତ ନ ଥିବାରୁ ମୋର ସାମାନ୍ୟତମ ବିଚ୍ୟୁତିର ପ୍ରଥମ ସୁଯୋଗ ନେଇ ଲାଟ ମୋତେ ବଦଳି କଲେ । ମୁଁ କହିଲି ଯେ ସୁନାମ ଥିବା ଜଣେ ଇଂରାଜୀ ଅଫିସରଙ୍କୁ ଏପରି ଭାବରେ ବଦଳି କରିବାକୁ ସେମାନେ କିପରି ସଙ୍କୁଚିତ ହେଲେ ନାହିଁ ତାହାହିଁ ମୋତେ ଆଶ୍ଚର୍ଯ୍ୟ ଲାଗୁଚି । ଏହାଦ୍ୱାରା ଆଡ଼କୁ କାମରେ ମୋର ଆଗ୍ରହ କମିଯିବ ବୋଲି କ'ଣ ସେମାନଙ୍କର ଭୟ ହେଲା ନାହିଁ । ସେମାନେ ମୋତେ ପୁନର୍ନିଯୁକ୍ତି ଦେଇଛନ୍ତି ସତ୍ୟ କିନ୍ତୁ ଯେଉଁ ଅଯଥା ଅପମାନ ଓ ଉତ୍କଣ୍ଠା ସୃଷ୍ଟି ହେଲା, ସଫଳ କର୍ମକ୍ଷେତ୍ରରେ ଯେଉଁ ବ୍ୟାଘାତ ଆସିଲା ତାହା କିପରି ପୂରଣ ହେବ ? ସେ ଟିକିଏ କାନ୍ଧ ଝାଡ଼ି ହେଲେ ଏବଂ କହିଲେ, "ଆମେ ଜଣେ ଇଂରାଜୀ ଭଦ୍ରଲୋକ ସହ ଯେପରି ବ୍ୟବହାର କଲୁ ସେଥିରେ କ'ଣ ଅଛି ? ସେ ତ କର୍ତ୍ତବ୍ୟ ଓ ଆତ୍ମସମ୍ମାନ ଭାବ ନେଇ ନିଶ୍ଚୟ ଅନୁରକ୍ତ ଭାବରେ କାମ କରିବେ ।" ଏଥିପାଇଁ ବୋଧହୁଏ ସେମାନେ ଦେଶୀୟ କର୍ମଚାରୀମାନଙ୍କ ସହ ଅନ୍ୟପ୍ରକାର ବ୍ୟବହାର ଦେଖାନ୍ତି ।

ଘରକୁ ଯିବା ପାଇଁ ଯୋଗାଡ଼ କରିବାରେ କିଛି ସମୟ ଲାଗିଲା କିନ୍ତୁ ଶେଷରେ ସବୁ ସରିଲା ଏବଂ ମାର୍ଚ୍ଚ ତିନି, ୧୮୬୮ରେ ମୁଁ ପି.ଓ. ଷ୍ଟିମର 'ମୁଲତାନ'ରେ ଇଂଲଣ୍ଡ ଅଭିମୁଖେ କଲିକତା ଛାଡ଼ିଲି—ଯେବେ କଲିକତାରେ ପାଦ ଦେଇଥିଲି ସେବଠାରୁ ଅଳ୍ପ କେତେଦିନ କମ୍ ଦଶବର୍ଷ ପରେ । ମୋ ଭାଇ ହ୍ୟାରୀ, ପିଅରସନ ପାଖରେ ରହିବାକୁ ଗଲା ଏବଂ ପରେ ପରେ ବଙ୍ଗଳାରେ ଜଣେ ଧନୀ ଜମିଦାର ବର୍ଦ୍ଧମାନ ମହାରାଜାଙ୍କ ଗୃହଶିକ୍ଷକ ରୂପେ ନିଯୁକ୍ତି ପାଇଲା । ଷ୍ଟିମର୍‌ରେ ଥିଲା ଭୟଙ୍କର ଗହଳି । ଗ୍ରୀଷ୍ମକାଳ ଆରମ୍ଭ ହୋଇଯିବା ପୂର୍ବରୁ ପଳେଇଯିବାର ଉତ୍କଣ୍ଠା ଯୋଗୁଁ ଏହି ମାର୍ଚ୍ଚ ମାସରେ ଲୋକେ ଦଳଦଳ ହୋଇ ଘରକୁ ଯିବା ସ୍ୱାଭାବିକ । ସେଥିରେ

ଥିଲେ ପ୍ରାୟ ଦୁଇଶହ ଯାତ୍ରୀ ଏବଂ ପଞ୍ଚଅଶୀଟି ପିଲା—ସେ ସମୟର ଅପେକ୍ଷାକୃତ କ୍ଷୁଦ୍ର ତରୀଟିଏ ପାଇଁ ଏ ସଂଖ୍ୟା ଖୁବ୍ ବେଶି । ମୋର ବଡ଼ ପୁଅ ଡାଭିଡ୍ ଓ ଫ୍ରେଡ୍ ଉଭୟ ମୋତିହାରିଠାରେ ଝାଡ଼ା ରୋଗରେ ଆକ୍ରାନ୍ତ ହୋଇଥିଲେ ଏବଂ ଷ୍ଟିମରର ଗହଳି ଅବସ୍ଥା, ଗରମ, ଦୁର୍ଗନ୍ଧ ଏବଂ ଅଣାଯାଉଥିବା ଅନୁପଯୁକ୍ତ ଖାଦ୍ୟ ଫଳରେ ସେ ରୋଗ ଲେଉଟିଲା । ଡାଭିଡ୍‌ଠାରୁ ଦୁର୍ବଳ ଫ୍ରେଡ୍ କିଛିଦିନ ଖୁବ୍ ବେମାର ହୋଇ ପଡ଼ିଲା; ଏପରି ହେଲା ଯେ ଆମେ ମାନ୍ଦ୍ରାଜରେ ଓ୍ଲାଇବା ବେଳକୁ ତାକୁ ବଞ୍ଚାଇବା ଆଶା ପ୍ରାୟ ଛାଡ଼ି ଦେଇଥିଲୁ । ଏ ଧରଣର ଜାହାଜମାନଙ୍କରେ ଅଂଶଂଶ ସମୟରେ ତରୁଣ ଅନଭିଜ୍ଞ ଡାକ୍ତରମାନେ ଥାଆନ୍ତି । ସେ ଡାକ୍ତର ତା' ପାଇଁ ଥିଲା କିଛି କରିପାରିଲେ ନାହିଁ; କିନ୍ତୁ ଜଣେ ସହକାରୀ ନୌଚାଳକଙ୍କ ପାଖରେ ଦୁଇଟି ବେଲଫଳ ଥିଲା । ଏହି ଫଳ ଝାଡା ରୋଗର ନିଶ୍ଚିତ ଆରୋଗ୍ୟକାରୀ । ଏହାକୁ ପାଣିରେ ମିଶାଇ ତିନିଚାରି ଗ୍ଲାସ ବହଳିଆ କରି ପିଇଦେଲା ପରେ ବିଚରା ପିଲାଟା ସୁସ୍ଥ ହୋଇ ଉଠିଲା ଏବଂ ଆରୋଗ୍ୟକାରୀ ସମୁଦ୍ରପବନ ଏତେ ଶୀଘ୍ର କାମ କଲା ଯେ ସିଲୋନରେ ପହଞ୍ଚିଲାବେଳକୁ ସେ ଭଲ ହୋଇଯାଇଥିଲା । ଆମେ ସୁଏଜରେ ପହଞ୍ଚିଲା ବେଳକୁ ଯଥାରୀତି ଦୟନୀୟ ସଂଗ୍ରାମ କରିବାକୁ ପଡ଼ିଲା । ପାଣି ଅଗଭୀର ଥିବା ଯୋଗୁଁ ଷ୍ଟିମର୍ କୂଳଠାରୁ ମାଇଲିଏ କିମ୍ବା ବେଶି ଭିତରେ ରହିଲା ଏବଂ ସମୁଦ୍ରଯାତ୍ରୀ ସେମାନଙ୍କର ମାଲପତ୍ର ସହ ଅତି ଅପରିଚ୍ଛନ୍ନ ଖୁବ୍ ଛୋଟ ବାଷ୍ପଚାଳିତ ଟଗ୍ ମଧରେ ଭର୍ତ୍ତି ହେଲେ । ଏଠାରେ ମୋ ଉଦ୍ଭାବିତ ଏକ କୌଶଳ କାମରେ ଆସିଲା । ମୋଟାଏ କଡ଼ରେ ପିତଳ ମୁଦିଆ ଥିବା ତିନିଟା ମୋଟା ଚମଡ଼ା ପଟି ମୁଁ ନେଇଥିଲି । ଏହାକୁ ପ୍ରତ୍ୟେକ ପିଲାଙ୍କ ଅଣ୍ଟାରେ ବାନ୍ଧି ଦିଆଗଲା ଏବଂ ମୁଦିଆଗୁଡ଼ାକ ମୋ ଆଙ୍ଗୁଠିରେ ରହିଲା । କୁକୁରଙ୍କୁ ବାନ୍ଧିରଖିଲା ପରି ମୁଁ ସେମାନଙ୍କୁ ବାନ୍ଧି ରଖିଲି, ତେଣୁ ଦଳା ଚକଟାରେ ସେମାନେ ଦୂରେଇ ଯାଇ ପାରିଲେ ନାହିଁ । ମୋ ସ୍ତ୍ରୀ ଏବଂ ଆମ ଦେଶୀ ଆୟା ମାର୍ଗାରେଟ ମୋ କାମିଜକୁ ଜାବୁଡ଼ି ଧରିଲେ । ଏହିପରି ଆମେ ନିରାପଦରେ ହୋଟେଲରେ ପହଞ୍ଚିଲୁ । ଏଠାରେ ସ୍ତ୍ରୀ ଓ ପିଲାଙ୍କ ପାଇଁ ଶୋଇବା ଓ ପୋଷାକ ବଦଳାଇବା ଘର ନାହିଁ । ତେଣୁ ଗୋଟାଏ ବିରାଟ କୋଳାହଳପୂର୍ଣ୍ଣ କକ୍ଷରେ ଆମେ ଅତି କରୁଣ ଅବସ୍ଥାରେ ଦିନ କଟେଇଲୁ । କାନ୍ଥ ଚାରିପଟର ଥାକ ଛଡ଼ା କୌଣସି ଆସବାବ୍ ମଧ ନ ଥିଲା । ଖାଦ୍ୟ ଥିଲା ଆହାରର ଅନୁପଯୁକ୍ତ ଏବଂ ସବୁ ପଦାର୍ଥ ଉପରେ ମାଛି ଭଣଭଣ ହେଉଥିଲେ । ଅବଶେଷରେ ସନ୍ଧ୍ୟା ଛ'ଟା ବେଳେ ବଡ଼ ଘଣ୍ଟାଟାଏ ବାଜିଲା । ଆମେ ରେଳଷ୍ଟେସନ କୁହାଯାଉଥିବା ଏକ ଖୋଲା ଛାତ ତଳକୁ ଗଲୁ । ସେଠାରେ ଅଳ୍ପ କେତୋଟି ଡବାର ଗୋଟିଏ ଟ୍ରେନ୍ ଠିଆ ହୋଇଥିଲା—ଆମ ପାଇଁ ଆଦୌ ଯଥେଷ୍ଟ ନୁହେଁ । ମୁଁ ଏବଂ ଆଉ ଜଣେ ଦୁଇଜଣ ଲୋକ ଖୋଜି ଖୋଜି 'ବୁରୋ'କୁ ଗଲୁ । ଏହା ଅଣଓସରିଆ ପାହାଚ ଉପରେ ଥିବା ଛୋଟିଆ ଘରଟିଏ । ସେଠାରେ ଫେଜଟୋପି ଓ ନୀଳ କୋଟ ପିନ୍ଧି ଚାରି ପାଞ୍ଚଜଣ ପୂର୍ବଦେଶୀୟ ଲୋକ (Levantine) ବସି ସିଗାରେଟ ପିଉଥିଲେ । ମୁଁ ଜଣେ ଫରାସୀ କହିପାରୁଥିବା ଲୋକ ଥିବାରୁ ମୋତେ ବୁଝାଇ ଦେବାକୁ ପଡ଼ିଲା ଯେ ଆମର ଅଧିକ ପରିମାଣରେ ଡବା ଦରକାର । ସେଇ ସକାଳେ ଯେ ଜାହାଜ ଭର୍ତ୍ତି ଯାତ୍ରୀ ଆସି ପହଞ୍ଚିଛନ୍ତି ସେ ବିଷୟରେ ସେମାନେ ଅବହିତ ଥିଲା ପରି ଜଣାଗଲା ନାହିଁ । ଆମ ଦଳର ଖୁବ୍ ତତ୍ପର କେତେ ଜଣ ଇଂରେଜ ଶେଷରେ ସେମାନଙ୍କୁ କ୍ରିୟାଶୀଳ କରାଇଲେ ଏବଂ ଆଉ କେତେକ ଡବା ଯୋଗାଇ ଦିଆଗଲା । ଟ୍ରେନ୍ ପ୍ରାୟ ଦୁଇ ଘଣ୍ଟା ଡେରିରେ ବାହାରିଲା । ଆମକୁ କୁହାଗଲା ଯେ ଇଜିପ୍ଟ୍ ପାଇଁ ଏ ଡେରି କିଛି ନୁହେଁ । କେବଳ ଆମ ପାଇଁ ଗୋଟିଏ ଡବା ପାଇଗଲୁ ଏବଂ ପରଦିନ

ଆଲକଜାଣ୍ଡ୍ରିଆରେ ପହଞ୍ଚିଲୁ । ସେଠାରେ ସାଙ୍ଗେ ସାଙ୍ଗେ ଆମକୁ ଗୋଟିଏ ଟଗ୍ ଦ୍ୱାରା ଏସ୍.ଏସ୍. ତାଞ୍ଜୋର ଜାହାଜକୁ ନିଆଗଲା । ଏହି ପରିଷ୍କାର ଏବଂ ଆରାମପ୍ରଦ ଜାହାଜଟିଏ । ଅଧିକାଂଶ ଯାତ୍ରୀ ବିଶେଷତଃ ପିଲାମାନେ ସାଉଦାମ୍ପଟନ ଷ୍ଟିମରରେ ଗଲେ । ତେଣୁ ଆମର ଯଥେଷ୍ଟ ରହିବା ଜାଗା ଓ ଭଲ ଖାଦ୍ୟ ଥିଲା ଏବଂ ଚାରି ଦିନ କାଳ ମନୋରମ ପାଗରେ ଘନନୀଳ ଭୂମଧ୍ୟସାଗରରେ ମେସିନା ପ୍ରଣାଳୀ ଦେଇ ମାର୍ସେଲିସ ପର୍ଯ୍ୟନ୍ତ ଯାତ୍ରା ଆମେ ଉପଭୋଗ କଲୁ । ସେଠାରେ ଆମକୁ ତିନି ଦିନ ଅଟକିବାକୁ ପଡ଼ିଲା, କାରଣ ମୋ ସ୍ତ୍ରୀ ଅସୁସ୍ଥ ହୋଇପଡ଼ିଲେ । କିନ୍ତୁ ଶେଷରେ ଆମେ ଯାତ୍ରାରମ୍ଭ କଲୁ ଏବଂ ଟ୍ରେନ୍‌ରେ ୨୪ ଘଣ୍ଟା ଯାତ୍ରା କଲା ପରେ ପ୍ୟାରୀରେ ପହଞ୍ଚିଲୁ । ସେତେବେଳକୁ ଅସୁସ୍ଥତାରେ ମୁଣ୍ଡ ଘୂରାଇ ମୂର୍ଚ୍ଛାଗଲା ପରି ଲାଗୁଥିଲା । ଗୋଟିଏ ରାତି ହୋଟେଲରେ ଆରାମରେ ବିଶ୍ରାମ ନେବାପରେ ଆମେ ସୁସ୍ଥ ହେଲୁ ଏବଂ ପରଦିନ ପ୍ୟାରୀରେ ବୁଲାବୁଲି କରି କଟେଇ ଦେଲୁ । ରାସ୍ତାର ପ୍ରତ୍ୟେକ ମୋଡ଼ରେ ଆମେ ଦେଖିଲୁ ଡ୍ରମ ବାଜୁଛି, ବାଦ୍ୟଯନ୍ତ୍ରୀମାନେ ବଜାଉଛନ୍ତି ଏବଂ ଗୋଡ଼ରେ ଲାଲ ଚିହ୍ନ ଥିବା ଫରାସୀ ସୈନ୍ୟବାହିନୀ Portant pour la Syric ସଙ୍ଗୀତର ତାଳେ ତାଳେ କଦମ ପକାଇ ଚାଲିଛନ୍ତି ଯାହା ଥିଲା ଦ୍ୱିତୀୟ ସାମ୍ରାଜ୍ୟ ଅଧୀନରେ ଜାତୀୟ ସଙ୍ଗୀତର ଏକ ବିକୃତ ପରିପ୍ରକାଶ । ମୁଁ ପ୍ରସିଦ୍ଧ ପ୍ରାଚ୍ୟତତ୍ତ୍ୱବିତ୍ ଗ୍ରାସିନ୍ ଡି ଟାସିଙ୍କୁ ଦେଖାକଲି ଯାହାଙ୍କ ସହ ମୁଁ କେତେକ ପତ୍ରାଳାପ କରିଥିଲି । ପରଦିନ ରାତିରେ ଆମେ ଇଂଲଣ୍ଡ ଗଲୁ ଏବଂ ଅପ୍ରେଲ ୧୨ ତାରିଖ ସକାଳ ୯ଟା ବେଳେ ମୋ ସ୍ତ୍ରୀଙ୍କ ଭଉଣୀ କ୍ୟାରୀ ଏବଂ ତା' ସ୍ୱାମୀ ରବର୍ଟ ହ୍ୟାମିଲଟନ୍‌ଙ୍କ ଘରଠାକୁ ଯାଇ ସେମାନଙ୍କୁ ଆଶ୍ଚର୍ଯ୍ୟ କରିଦେଲୁ । ସେମାନଙ୍କ ସହ ଦିନଟିଏ ରହି ପରଦିନ ମୋ ମା'ଙ୍କ ନିକଟକୁ ଗଲୁ । ସେ ରିଚମଣ୍ଡଠାରେ ଗୋଟିଏ ଛୋଟିଆ ଘରେ ରହୁଥିଲେ । ସେ ଘରଟି ଆମ ସମସ୍ତଙ୍କ ପାଇଁ ଖୁବ୍ ଛୋଟ ହେବାରୁ ମୁଁ ଟୁକେନ୍‌ହେମ୍‌ଠାରେ ବଡ଼ ଘରଟିଏ ନେଲି । ସେଇଠି ଆମ ଇଂଲଣ୍ଡ ରହଣିର ଅଧିକାଂଶ ସମୟ ଆମେ ରହିଥିଲୁ । ମା'ଙ୍କ ଚେହେରାରେ ଖୁବ୍ କମ୍ ପରିବର୍ତ୍ତନ ହୋଇଥିଲା । ତାଙ୍କ ବାଳ ପୂର୍ବପରି ଖୁବ୍ କଳା ଥିଲା କିନ୍ତୁ ସେ ମୂର୍ଚ୍ଛା ରୋଗରେ ଆକ୍ରାନ୍ତ ହେଉଥିଲେ ଏବଂ କ୍ଷଣକୋପୀ ଓ ଚିଡ଼ିଚିଡ଼ା ସ୍ୱଭାବର ହୋଇଯାଇଥିଲେ । ପ୍ରଥମେ ସେ ମୋତେ ଚିହ୍ନି ପାରିଲେ ନାହିଁ । ୧୮୫୮ରେ ଇଂଲଣ୍ଡ ଛାଡ଼ିଲାବେଳେ ମୋର ନିଶଦାଢ଼ି କିଛି ନ ଥିଲା । ଦଶବର୍ଷ ପରେ ମୁଁ ଫେରିଲାବେଳକୁ ଦାଢ଼ିନିଶ ରଖିଥିଲି ଏବଂ ସୁନା ବନ୍ଧା ଚଷମାରେ ମୋ ଚେହେରା ଆହୁରି ଘୋଡ଼େଇ ହୋଇଯାଇଥିଲା । ମୋ ପିଲାବେଳେ କେବଳ ସାମରିକ ଲୋକଙ୍କ ଛଡ଼ା ଆଉ କେହି ଦାଢ଼ିନିଶ ରଖୁନଥିଲେ । ଲୋକେ ଲମ୍ବା ଦାଢ଼ି ରଖୁଥିଲେ, ଯାହାକୁ 'ଡାଣ୍ଡିଜ' ବୋଲି କୁହାଯାଉଥିଲା, ଯାହାକୁ ତେଲ ଲଗାଇ ମୋଡ଼ି ମୋଡ଼ି କରି ରଖିବାରେ ଗର୍ବ ଅନୁଭବ କରୁଥିଲେ । ଲମ୍ବ ଓ କୁଞ୍ଚିତ ବାଳ ମଧ୍ୟ ରଖୁଥିଲେ; କିନ୍ତୁ ଆମ ସୈନ୍ୟମାନେ ଯେତେବେଳେ ୧୮୫୫ରେ ଚମତ୍କାର ଦାଢ଼ି ନିଶ ରଖି କ୍ରିମିଆ ଯୁଦ୍ଧରୁ ଫେରିଲେ ସେମାନଙ୍କ ଚେହେରାକୁ ସାଧାରଣ ଲୋକେ ପ୍ରଶଂସା କଲେ ଏବଂ ସେମାନେ ମଧ୍ୟ ଦାଢ଼ି ରଖିବାକୁ ଆଗ୍ରହୀ ହେଲେ । ଏହି ରୁଚି ପ୍ରଥମେ ଡାକବାଲା, ରେଳଗାର୍ଡ଼ ଓ ମାଲବୁହାଳିମାନେ ଗ୍ରହଣ କଲେ । ପ୍ରଥମେ ଏହାକୁ ଥଟ୍ଟା କରାହେଲେ ମଧ୍ୟ ଶୀଘ୍ର ଉଚ୍ଚଶ୍ରେଣୀୟ ଲୋକଙ୍କଠାରେ ସମ୍ପ୍ରସାରିତ ହେଲା । 'ପିକାଡ଼ିଲି ଇଉପରସ୍' ନାମରେ ପରିଚିତ ଲମ୍ବା ତରଙ୍ଗାୟିତ ଦାଢ଼ି କ୍ରମେ ଲୋପ ପାଇଗଲା ଏବଂ କଲେଜ ପଢ଼ୁଆ ତରୁଣମାନେ ବହୁ ଥଟ୍ଟା ଓ ବିଦ୍ରୂପ ସତ୍ତ୍ୱେ ନିଶ ବଢ଼ାଇବାକୁ ଲାଗିଲେ । ୧୮୬୮ ରେ ମୁଁ ଯେତେବେଳେ ଇଂଲଣ୍ଡ ଫେରିଲି ନିଶଟା ଅତି ସାଧାରଣ ହୋଇଯାଇଥିଲା ।

ଖିଅର ହେବା ଅତି ହଇରାଣିଆ କାମ ବୋଲି ଅନୁଭବ କରି ୧୮୬୨ରେ ଏହା ମୁଁ ପୂରା ଛାଡ଼ିଦେଲି । ସେଇଦିନଠାରୁ ମୁଁ ମୋ ବାଳ ସ୍ୱାଭାବିକ ବଢ଼ିବାକୁ ଛାଡ଼ି ଦେଇଛି । ବର୍ତ୍ତମାନ ଦାଢ଼ି ପୂରା କ୍ଷୌର ହୋଇ ଅଳ୍ପ ନିଶ ରଖିବା ଯେପରି ସାଧାରଣ ରୁଚିରେ ପରିଣତ ହୋଇଛି ତାହା ଅନେକ ବର୍ଷ ପରର କଥା ।

ଗ୍ରୀଷ୍ମ କାଳଟାଯାକ ମୁଁ ଟେମସ୍‌ରେ ନୌକା ବାହୀ କଟାଇଲି; କିନ୍ତୁ ଲଣ୍ଡନ ଜୀବନକୁ ମଧ୍ୟ ମୁଁ ଶାନ୍ତ ପରିବେଶରେ ଉପଭୋଗ କଲି । ମୁଁ କ୍ଲବ୍‌ରେ ଯୋଗ ଦେଉଥିଲି ଏବଂ ରୟାଲ ଏସିୟାଟିକ, ସୋସାଇଟିକୁ ବରାବର ଯାଉଥିଲି । ସେଠାରେ ବହୁ ପ୍ରାଚ୍ୟତତ୍ତ୍ୱ ବିଶେଷଜ୍ଞ ବିଶେଷକରି ସୋସାଇଟିର ସେକ୍ରେଟାରୀ ବୃଦ୍ଧ ବନ୍ଧୁ ଡା: ରୋଷ୍ଟଙ୍କୁ ଭେଟିଲି । ତାଙ୍କ ସହ ମୁଁ ଖୁବ୍ ଘନିଷ୍ଠ ହୋଇ ପଡ଼ିଥିଲି । ଆମେ ମଧ୍ୟ ଅକ୍‌ସଫୋର୍ଡ଼ର ସଂସ୍କୃତ ଅଧ୍ୟାପକ ମୋନିଅର ଉଇଲିଅମଙ୍କ ପାଖରେ କିଛିଦିନ ଆରାମରେ କଟାଇଲୁ । ସେ ହେଲିବରୀରେ ଆମର ସଂସ୍କୃତ ଅଧ୍ୟାପକ ଥିଲେ । ବାସଲେକୁ ମଧ୍ୟ ଯାଇଥିଲି । ତାହା ଖୁବ୍ ଛୋଟ ଓ ସାମାନ୍ୟ ବୋଧହେଲା । ଯେଉଁ ସ୍ଥାନକୁ ଶୈଶବକାଳରେ ଖୁବ୍ ମହାନ୍ ଓ ଆଭିଜାତ୍ୟସମ୍ପନ୍ନ ବୋଲି ମନେକରି ଥାଅ ପରବର୍ତ୍ତୀ କାଳରେ ତାହାର କ୍ଷୁଦ୍ରତ୍ୱ ଉପଲବ୍ଧି କରି ଆଶ୍ଚର୍ଯ୍ୟ ହେବାକୁ ହୁଏ । କ୍ୟାପଟେନ୍ ହ୍ୟୁଗସ୍ ବୋଲି ଜଣେ ଲୋକଙ୍କୁ ଏହା ଭଡ଼ା ଦିଆଯାଇଥିଲା । ଆସବାବପତ୍ରର ସାଜସଜା ଥିଲା ଖୁବ୍ କମ୍ ଏବଂ ହତଶ୍ରୀ ପରି ଜଣାଯାଉଥିଲା ।

ଆମର ଇଂଲଣ୍ଡ ରହଣି ବେଳେ ଉଲ୍ଲେଖଯୋଗ୍ୟ କିଛି ନ ଥିଲା । ସେ ଥିଲା ଶାନ୍ତ କର୍ମହୀନ ଜୀବନ, ଘଟଣାରହିତ ଓ ସରାଗହୀନ । ଆମର ସମ୍ପର୍କୀୟମାନେ ଥିଲେ ଶ୍ରଦ୍ଧାହୀନ ଓ କଳହପ୍ରବଣ । ଆମର ଓ ସେମାନଙ୍କର ଚାଲିଚଳଣ ମଧ୍ୟରେ ସାମ୍ୟ ନ ଥିଲା ଏବଂ ସେ ସମ୍ପର୍କ ରକ୍ଷା କରିବାକୁ ବହୁମୂଲ୍ୟ ଦେବାକୁ ପଡ଼ିବ ବୋଲି ମୋର ମନେ ହେଲା । ତେଣୁ ୧୮୬୯ ଜାନୁୟାରୀରେ ଆମେ ଭାରତକୁ ଫେରିବାକୁ ସ୍ଥିର କଲୁ । ଆମେ ଆମ ତିନି ପୁଅଙ୍କୁ ବକିଂହାମ ସାୟାରର ପ୍ରିନସସ୍ ରିସବୋରୋଠାରେ ଡାଃ ୱାଟସନ ନାମରେ ଜଣେ ଅବସରପ୍ରାପ୍ତ ଚିକିତ୍ସକଙ୍କ ପାଖରେ ଛାଡ଼ିଗଲୁ । ସେମାନଙ୍କୁ ବିଦାୟଦେବା ଅତି ଦୁଃଖଦାୟକ ହେଲା । ସବା ସାନ ପୁଅ ରୁପର୍ଟ ମାତ୍ର ଚାରି ବର୍ଷର ହୋଇଥାଏ । ସେଇଦିନଠାରୁ ମୁଁ ଆଉ ତାକୁ ଦେଖି ନାହିଁ । ତାକୁ ବର୍ତ୍ତମାନ ଚଉତିରିଶ ବର୍ଷ ଏବଂ ରାସ୍ତାରେ ଯଦି ମୁଁ ତା'ର ମୁହାଁମୁହିଁ ହୁଏ ମୁଁ ତାକୁ ଚିହ୍ନିପାରିବି ନାହିଁ! ସବାସାନ ପିଲା ମାଗିକୁ ଆମେ ଆମ ସହ ଭାରତକୁ ଫେରାଇନେଲୁ ଏବଂ ଏଲିଜା କାଫେରି ନାମକ ଜଣେ ପାଳିକା ନିଯୁକ୍ତ କରି ଆମ ସାଙ୍ଗରେ ନେଲୁ । ଶେଷରେ ଫେବୃୟାରୀ ଚବିଶ ତାରିଖରେ ଆମେ ଇଂଲଣ୍ଡ ଛାଡ଼ିଲୁ । ପ୍ୟାରୀରେ ଦୁଇଦିନ ରହିଲୁ । ମାର୍ସେଲିଠାରେ ଷ୍ଟିମର ଧରିଲୁ ଏବଂ ପୂର୍ବପରି ବିରକ୍ତିକର ଜଳଯାତ୍ରା ପରେ ଅପ୍ରେଲ୍ ଚାରି ତାରିଖରେ କଲିକତାରେ ପଦାର୍ପଣ କଲୁ । ଏ ଯାତ୍ରାର ଏକମାତ୍ର ଆକର୍ଷଣୀୟ ବସ୍ତୁ ଥିଲା ଜାହାଜରେ ଯାଉଥିବା ଅନେକ ବିଦେଶୀ ଲୋକ । ମୋର ଫରାସୀ, ଇଟାଲୀୟ, ସ୍ପେନୀୟ ଓ ଜର୍ମାନ ଭାଷାର ଜ୍ଞାନ ବଢ଼ାଇବାପାଇଁ ମୁଁ ସେମାନଙ୍କ ସହ ବନ୍ଧୁତା କରିଥିଲି । ଆମର ଆନନ୍ଦଦାୟକ ବହୁଭାଷିକ କଥୋପକଥନରୁ ମୋର ବହୁତ ଉପକାର ହେଲା ।



# ପଞ୍ଚଦଶ ପରିଚ୍ଛେଦ

## ବାଲେଶ୍ୱର : ୧୮୬୯-୭୦

କଲିକତାରେ ପହଞ୍ଚି ଜାଣିବାକୁ ପାଇଲି ଯେ ମୁଁ ବାଲେଶ୍ୱରର ପ୍ରଥମ ଶ୍ରେଣୀ କଲେକ୍ଟର ରୂପେ ନିଯୁକ୍ତି ପାଇଛି । ସେ ସମୟରେ ପ୍ରଥମ ଶ୍ରେଣୀବାଲାଙ୍କ ଦରମା ଥିଲା ମାସିକ ଟ.୧,୯୧୬ଙ୍କା । ସେ ପର୍ଯ୍ୟନ୍ତ ଟଙ୍କାର ମୂଲ୍ୟ ଦୁଇ ସିଲିଂ ସହ ସମାନ ଥିଲା । ଯଦିଓ ପରେ ପରେ ଖୁବ୍ ଖସିଗଲା ।

ଏହିଠାରୁ ମୁଁ ଓଡ଼ିଶାରେ ଦୀର୍ଘ ନ'ବର୍ଷର ଚାକିରି ଜୀବନରେ ପ୍ରବେଶ କଲି । ବହୁଦିନରୁ ଅଲଗା ରହି ଆସିଥିବା ଏଇ ଗୋଟିକିଆ ଛୋଟ ପ୍ରଦେଶଟି ନିଜର ବିଶେଷ ମୌଳିକତା ରକ୍ଷା କରିଚି । ବଙ୍ଗୋପସାଗରର ପଶ୍ଚିମରେ, ଉତ୍ତର ଅର୍ଥାତ୍ ଉପରପଟକୁ ଖଣ୍ଡେ ଅଣଓସାରିଆ ଉର୍ବର ସମତଳ ଭୂମି ଭାବରେ ଏହା ଅବସ୍ଥିତ । ପଛପଟକୁ ରହିଛି ମଧ୍ୟ ଭାରତ ପର୍ଯ୍ୟନ୍ତ ବ୍ୟାପ୍ତ ଅଦୁଆ ତଦୁଆ ପର୍ବତଶ୍ରେଣୀର ବିସ୍ତୃତ ଅଞ୍ଚଳ । ଉତ୍ତରପୂର୍ବରୁ ଦକ୍ଷିଣ ପଶ୍ଚିମ ପର୍ଯ୍ୟନ୍ତ ପ୍ରାୟ ଦୁଇଶହ ମାଇଲ ଏବଂ ସମୁଦ୍ରଠାରୁ ଅଭ୍ୟନ୍ତରର ଦୂରତମ ସୀମା ପର୍ଯ୍ୟନ୍ତ ପ୍ରାୟ ଦୁଇ ଶହ ପଚାଶ ମାଇଲ ଏହାର ଦୈର୍ଘ୍ୟ ଓ ପ୍ରସ୍ଥ । ପ୍ରତ୍ୟକ୍ଷ ବ୍ରିଟିଶ ଶାସନଧୀନରେ ଥିବା ଉପକୂଳର ସଂକୀର୍ଣ୍ଣ ସମତଳ ଭୂମିଖଣ୍ଡକ ତିନୋଟି ଜିଲ୍ଲାରେ ବିଭକ୍ତ; ଉତ୍ତରରେ ବାଲେଶ୍ୱର, ମଝିରେ କଟକ ଏବଂ ଦକ୍ଷିଣରେ ପୁରୀ ।

ମୁଁ ଦେଖିଲି ବାଲେଶ୍ୱର ଗୋଟିଏ ଛୋଟିଆ ଜିଲ୍ଲା । ସମୁଦ୍ର ଓ ପର୍ବତ ମଧ୍ୟରେ ଲମ୍ବ ହୋଇ ସରୁ ଚେନାଏ ଭୂମି । ଗୋଟିଏ ପଟେ ଏହାର ଦୈର୍ଘ୍ୟ ମାତ୍ର ନ'ମାଇଲ ଯଦିଓ ଅନ୍ୟ ଅଂଶରେ ପଚାଶ ମାଇଲ ପର୍ଯ୍ୟନ୍ତ । କ୍ଷୁଦ୍ର, ସୁଦୃଶ୍ୟ ବାଲେଶ୍ୱର ସହରଟି ସମୁଦ୍ରଠାରୁ ନାକସିଧା ପ୍ରାୟ ଆଠ ମାଇଲ ଦୂରରେ ବୁଢ଼ାବଳଙ୍ଗନଦୀର ଉଚ୍ଚ ବନ୍ଧକୁ ଲଗାଲଗି ହୋଇରହିଛି । ଏହା ଏକ ସାମୁଦ୍ରିକ ବନ୍ଦର । ଅଦ୍ଭୁତ ଧରଣର ବେଢ଼ଙ୍ଗିଆ ଦେଶୀୟ ନୌକାସବୁ ଏ ଜିଲ୍ଲାର ପ୍ରଧାନ ଖାଦ୍ୟ ସାମଗ୍ରୀ ଚାଉଳ ଧରି ସେ ସମୟରେ ମାନ୍ଦ୍ରାଜ ଉପକୂଳରେ ଥିବା ବନ୍ଦରମାନଙ୍କୁ ଯା'ଆସ କରୁଥିଲେ । ବଡ଼ ବଡ଼ ଧଳା କୋଠା ଏହି ପରିଷ୍କାର ପରିଚ୍ଛନ୍ନ ସହରଟିର ପଶ୍ଚିମ ଦିଗରେ ଏକ ଆବଡ଼ାଖାବଡ଼ା ଭୂମି ଉପରେ ସରକାରୀ କୋଠାବାଡ଼ି ଅଛି । ଏଇଠି ଅଛି ୟୁରୋପୀୟ କର୍ମଚାରୀମାନଙ୍କ ଘର ଓ ଅନ୍ୟାନ୍ୟ ଦପ୍ତର ଏବଂ ବ୍ୟାପ୍‌ଟିଷ୍ଟ ଧର୍ମଯାଜକଙ୍କ ବସତି, ଯାହାଙ୍କର ଗିର୍ଜାରେ ଥିଲା ସୁନ୍ଦର ସୁନ୍ଦର ଘର ଓ ଖୁବ୍ ବଡ଼ ଟାୱାରଟିଏ ।

ମୋର ଘରଟି ଥିଲା ବେଶ୍ ବଡ଼, ସୁନ୍ଦର, ସ୍ୱଚ୍ଛନ୍ଦ ବାୟୁ ସଂଚାଳିତ, ମନୋରମ ଉଦ୍ୟାନଘେରା ଏବଂ ପାଖକୁ ଲାଗିଥିଲା କଚେରି । ଜାଗାଟା ଥିଲା ଶାନ୍ତ ଓ ନୀରବ ଏବଂ

ସେଠାରେ ଆମର ଜୀବନ ମୋଟାମୋଟି ଘଟଣାବିହୀନ । ସେଠାରେ ଘଟିଥିବା ପ୍ରଥମ ଘଟଣାଟି ହେଉଛି ୧୮୬୯ମେ ତିରିଶ ତାରିଖ ଭୋର ସାଢ଼େଚାରିଟାରେ ଆମର ଦ୍ୱିତୀୟା କନ୍ୟା ଏଡ଼ିଥର ଜନ୍ମ ।

ଜଣେ ଜଏଣ୍ଟ ମ୍ୟାଜିଷ୍ଟ୍ରେଟ୍, ଜଣେ ଡାକ୍ତର, ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ, ଜଣେ ପୋତାଶ୍ରୟ ରକ୍ଷକ ଏବଂ ଜଣେ ଟେଲିଗ୍ରାଫ୍ ଇନସ୍‌ପେକ୍ଟରଙ୍କୁ ନେଇ ଥିଲା ଆମର କ୍ଷୁଦ୍ର ସମାଜ । ଆହୁରି ମଧ ଥିଲେ ଦୁଇଜଣ ପୋଲିସ୍ ସହକାରୀ ଓ ଜଣେ ଡେପୁଟି ମ୍ୟାଜିଷ୍ଟ୍ରେଟ । ଏ ସମସ୍ତେ ଇଂରେଜ ଏବଂ ସେମାନଙ୍କ ମଧ୍ୟରୁ କେତେକ ବିବାହିତ । ଡୋଭର, ନ୍ୟୁ ହାମ୍ପସାୟାର, ଯୁକ୍ତରାଷ୍ଟ୍ରରୁ ଆସିଥିବା ଧର୍ମପ୍ରଚାରକମାନେ ଫ୍ରିଉଇଲ ବ୍ୟାପ୍‌ଟିଷ୍ଟ ନାମକ ଏକ ସ୍ୱତନ୍ତ୍ର ଗୋଷ୍ଠୀର । ତା'ଛଡା ଫାଦର ସାପାର୍ଟ ନାମରେ ବେଲ୍‌ଜିଅମ୍‌ର ଜଣେ ଜେସୁଇଟ ପ୍ରଚାରକ ଏବଂ ସ୍କଟଲ୍ୟାଣ୍ଡ, ଜର୍ମାନୀ ଓ ବେଲଜିଅମରୁ ଆଗତ ଜଣେ ଲେଖାଏଁ ନନ୍ (ଖ୍ରୀଷ୍ଟ ସନ୍ନ୍ୟାସିନୀ) ମଧ ଥିଲେ । ଏହି ବ୍ୟାପ୍‌ଟିଷ୍ଟ ଓ କ୍ୟାଥିଲିକ୍‌ମାନେ ୧୮୬୬ର ଭୀଷଣ ଦୁର୍ଭିକ୍ଷରେ ଅନାଥ ହୋଇ ପଡ଼ିଥିବା ଦେଶୀୟ ପିଲାଙ୍କର ଗୋଟିଏ ଗୋଟିଏ ଦଳର ଦାୟିତ୍ୱ ନେଇଥିଲେ । ସରକାର ଏମାନଙ୍କର ଯତ୍ନ ନେଉଥିଲେ ଏବଂ ପ୍ରତି ପିଲା ପାଇଁ ମାସକୁ ତିନିଟଙ୍କା କରି ଏଇ ଧର୍ମପ୍ରଚାରକମାନଙ୍କୁ ଦେଉଥିଲେ ।

ଏମାନଙ୍କ ମଧ୍ୟରୁ କେତେକ ଭାରତରେ ଦେଖାଯାଉଥିବା ବିଚିତ୍ର ଲୋକମାନଙ୍କର ଗୋଟିଏ ଗୋଟିଏ ଆକର୍ଷଣୀୟ ନମୁନା । ବିଭିନ୍ନ ଦେଶରୁ ବହୁ ଶ୍ରେଣୀର ଲୋକେ ଏ ଦେଶରେ ଅଛନ୍ତି; ଯେଉଁମାନଙ୍କ ଠିକଣା ସମ୍ପର୍କରେ ସେମାନଙ୍କ ନିଜ ନିଜ ଦେଶର ଅଳ୍ପ ଜନତା କିଛି ବି ଜାଣନ୍ତି ନାହିଁ । ଫାଦର ସାପାର୍ଟ ନାମରେ ଜଣେ ସୁଯୋଗ୍ୟ ଜେସୁଇଟ ପ୍ରଚାରକ ଏହିପରି ବିଚିତ୍ର ଚରିତ୍ରର ଏକ ଉଦାହରଣ । ଲୋଭେନ୍ (ସେ କହନ୍ତି ଲୋଭଏନ) ଅଞ୍ଚଳରୁ ଆସିଥିବା ୱାଲୁନ ଜାତିର ଜଣେ ଭ୍ରାମ୍ୟମାଣ ବଢ଼େଇ କିମ୍ବା ଇଟା ମିସ୍ତ୍ରିର ପୁଅ ସେ । ସରୁ, ଡେଙ୍ଗା, ଉଚା, ଗୋଜିଆ ନାକ, ଗହୀରିଆ ଆଖି, ତରଙ୍ଗାୟିତ ଲମ୍ବ ଦାଢ଼ି ଏବଂ ଖରାରେ ସିଝି ବାଦାମି ପଡ଼ିଥିବା ମୁଖବିଶିଷ୍ଟ ରୁଗ୍ଣ ବ୍ୟକ୍ତି ସେ । କୌଣସି ଏକ ଜେସୁଇଟ ବିଦ୍ୟାଳୟରେ ଅଳ୍ପ କିଛି ପାଠ ପଢ଼ିଥିବା ସରଳ ଚରିତ୍ରବାନ୍ ସେହି ବ୍ୟକ୍ତିଙ୍କର କେବଳ ଗୋଟିଏ ଲକ୍ଷ୍ୟ ଥିଲା ତାଙ୍କ ନିଜ ଧର୍ମର ବଢ଼ତି କରାଇବା । ନିଜ କାମରେ ଭୁଲଭ୍ରାନ୍ତି ଯଦିବା ଥାଏ; ତଥାପି ସେଥିରେ ଆନ୍ତରିକତା ବା ଗୁରୁତ୍ୱର ଅଭାବ ତାଙ୍କର କେବେ ନ ଥିଲା ।

ଆମର ବାଲେଶ୍ୱରରେ ପହଞ୍ଚିବାର ପ୍ରାୟ ବର୍ଷକ ପୂର୍ବରୁ ସେ ସେଠାରେ ପହଞ୍ଚିଥିଲେ ପାଦରେ ଚାଲିଚାଲି । ଆସବାବ୍ ମଧ୍ୟରେ ଖଣ୍ଡେ ମସିଣା, ଗୋଟିଏ ଟିଣପାତ୍ର ଏବଂ ପାନୀୟ ପ୍ରସ୍ତୁତି ସାମଗ୍ରୀର ଗୋଟିଏ ସଜ । ଗୋଟିଏ ଗଛତଳେ ବସିପଡ଼ି ସେ ଛୋଟ ଛୋଟ ବାଉଁଶ ଓ ଘାସ ନିର୍ମିତ ଛପରଟିଏ ତିଆରିରେ ଲାଗିଗଲେ । ସେଇଠି ରହି ଦେଶୀୟ ଲୋକଙ୍କ ପରି ଭାତ ଖାଇଲେ । ତା'ପରେ ସେ ୟୁରୋପୀୟ ଓ ୟୁରେସୀୟ (ଶେଷୋକ୍ତଙ୍କ ମଧ୍ୟରୁ ଅଧିକାଂଶ ରୋମୀୟ କ୍ୟାଥିଲିକ)ମାନଙ୍କଠାରୁ ଭିକ୍ଷା ମାଗିଲେ ଏବଂ ଗୋଟିଏ ମାଟି କାନ୍ଥ ଓ ଚାଳ ଛପର ଘରପାଇଁ

ଯଥେଷ୍ଟ ଅର୍ଥ ସଂଗ୍ରହ କରିନେଲେ । ତା'ପରେ ସେ ଖଣ୍ଡେ ଜମି ପଟା ନେଇ ତାଙ୍କ ଦାୟିତ୍ୱରେ ଦିଆଯାଇଥିବା ଅନାଥ ପିଲାମାନଙ୍କୁ ଗୋଟିଏ କୁଡ଼ିଆରେ ରଖାଇଲେ ଏବଂ ସେଇମାନଙ୍କ ସାହାଯ୍ୟରେ ମାଟି ଖୋଳେଇ, ଇଟା ଗଡାଇ ପୋଡ଼ାଇଲେ । ତା'ପରେ ସେ କାମରେ ଲାଗିଗଲେ । ଖଣ୍ଡେ ବଡ଼ କାଗଜରେ ଗିର୍ଜା, ପାଦ୍ରୀ ନିବାସ ଓ ବିଦ୍ୟାଳୟ ଏକତ୍ର ଥାଇ ଗୋଟିଏ କୋଠାର ନକ୍‌ସା ଆଙ୍କିଲେ । ତେବେ ବି ସେ ବରାବର ଭିକ୍ଷା ମାଗୁଥାନ୍ତି ଏବଂ ଏହିପରି ରାଜମିସ୍ତ୍ରିଙ୍କ ମଜୁରି ସଂଗ୍ରହ କରି ମୂଳଦୁଆ ଖୋଳାଇଲେ ଏବଂ ଗଢ଼ିବା ଆରମ୍ଭ କରିଦେଲେ । ଭିକ୍ଷାଲବ୍ଧ ଅଳ୍ପ ଅଳ୍ପ ଧନରେ ଧୀରେ ଧୀରେ କାମ ଚାଲିଥାଏ; ପଇସା ସରିଗଲେ ପୁଣି ସେ ଭିକ୍ଷାମାଗି ଚାଲିଯାଉଥାନ୍ତି । ଏହି ସମୟ ମଧ୍ୟରେ ଭାତ ଖାଇ ଜୀବନ ଧାରଣ କରି, ସେ ଘରର କେଉଁ କଣରେ ଟିକିଏ ମୁଣ୍ଡଗୁଞ୍ଜି ରହି ଖଟି ଲାଗିଲେ ଏବଂ ପ୍ରାୟ ଛ'ବର୍ଷରେ ଖୁବ୍ ସୁନ୍ଦର ଗୋଥିକ ଶୈଳୀର ଗିର୍ଜାଟିଏ ଗଢ଼ିଦେଲେ । ତା'ତଳେ ଥିଲା ସ୍ୱଚ୍ଛନ୍ଦ ବାୟୁବାହୀ ଉପାସନା ଗୃହ ଯେଉଁଠି ସେ ବିଦ୍ୟାଳୟ କରିଥିଲେ, ପିଲାମାନଙ୍କ ପାଇଁ ଦୁଇଟା ବଡ ରହିବା ଘର ଏବଂ ପ୍ରାଦ୍ରୀମାନଙ୍କ ପାଇଁ ବିଭିନ୍ନ କୋଠରି, ନିର୍ମାଣ ବିଭାଗର କର୍ମଚାରୀମାନେ କୋଠାର ଗଢଣଟିକୁ ପ୍ରଶଂସା କଲେ । ତା'ପରେ ସାପାର୍ଟ ଲାଗିପଡ଼ି ଗୋଟିଏ ସନ୍ନ୍ୟାସିନୀ ଆଶ୍ରମ(ନନେରି) ଓ ସେମାନଙ୍କ ବାସସ୍ଥାନ ଗଢ଼ିଲେ । ବାଲେଶ୍ୱରର ୟୁରୋପୀୟ ଓ ୟୁରେସୀୟମାନଙ୍କଠାରୁ ଯେତେ ଦାନ ଆଶା କରାଯାଏ ତାହା ପାଇସାରିବା ପରେ ସେ ତାଙ୍କ ମସିଣା ଓ ରୋଷେଇ ଉପକରଣ ବୋହିବା ପାଇଁ ପିଲାଟିଏ ଧରି ବାହାରି ପଡୁଥିଲେ ଚାରି ପାଞ୍ଚଶହ ମାଇଲର ଦୁର୍ଗମ ପଥରେ କଟକ, ସମ୍ବଲପୁର କିମ୍ବା ଅନ୍ୟ କୌଣସି ସ୍ଥାନକୁ ତାଙ୍କ ଗିର୍ଜା ଲାଗି ଭିକ୍ଷା ମାଗିବା ପାଇଁ । ମୁଁ ମନେକରେ ସେ ବାଲେଶ୍ୱରରେ ସର୍ବମୋଟ ସାତ କିମ୍ବା ଆଠ ବର୍ଷ ଥିଲେ, ସର୍ବଦା ନିର୍ମାଣ କାର୍ଯ୍ୟରେ ଲାଗିଥିଲେ । ନିର୍ମାଣ କାର୍ଯ୍ୟ ସରି ବ୍ୟବହାର ଉପଯୋଗୀ ହୋଇ କଲିକତାର ରୋମୀୟ ଆର୍ଚ୍ଚବିଶପଙ୍କ ଦ୍ୱାରା ସେହି ଗିର୍ଜା ଉଦ୍‌ଘାଟିତ ହୋଇଯିବା ପରେ ପରେ ତାଙ୍କୁ କୌଣସି ଏକ ଦୂର ସ୍ଥାନକୁ ପଠାଇ ଦିଆଗଲା ଏବଂ ତା'ପରେ ସେ ଆଉ ତାଙ୍କର ପ୍ରିୟ ଗିର୍ଜାକୁ ଥରେ ଦେଖି ବି ନାହାନ୍ତି । ଜେସୁଇଟମାନଙ୍କର ଏଇଆ ହିଁ ରୀତି । ଦରିଦ୍ର, ନୀତିବାନ୍, ସରଳ ସେଇ ବୃଦ୍ଧ ସାପାର୍ଟ ମୋତେ ଖୁବ୍ ଭଲ ପାଉଥିଲେ ଏବଂ ମୁଁ ଭିନ୍ନ ଧର୍ମମତବାଦୀ ଥିବାରୁ ଦୁଃଖ କରୁଥିଲେ । ସେ ମୋତେ ଧର୍ମାନ୍ତରିତ କରିବାପାଇଁ ଉଦ୍ୟମ କରୁଥିଲେ; କିନ୍ତୁ ସେ ନିଜେ ବେଲଜିୟମ ଧାର୍ମିକ ପଦ୍ଧତି ଅନୁସାରେ ଶିକ୍ଷା ପାଇ ତା' ବ୍ୟତୀତ ଅନ୍ୟ କିଛି ଜାଣି ନ ଥିବାରୁ ସେହି ଉଦ୍ୟମରେ ଆଦୌ ସଫଳ ହୋଇପାରିଲେ ନାହିଁ । ସେ ଭଲ ଇଂରାଜୀ କହୁଥିଲେ ମଧ୍ୟ ଫରାସୀ ବ୍ୟବହାରକୁ ଅଧିକ ପସନ୍ଦ କରୁଥିଲେ ଏବଂ ଆମେ ସେଇ ଭାଷାରେ ତାଙ୍କ ସହ ପତ୍ରାଳାପ କରୁଥିଲୁ ।

ଏହି ଅପ୍ରାନ୍ତ କ୍ଷୁଦ୍ର ସ୍ଥାନର ଅନ୍ୟ ଏକ ଅଦ୍ଭୁତ ଚରିତ୍ରର ବ୍ୟକ୍ତି ହେଉଛନ୍ତି ଭାରତୀୟ ନୌବିଭାଗର କ୍ୟାପଟେନ୍ ଆଲଫ୍ରେଡ୍ ବଣ୍ଡ ଯାହାଙ୍କ ନାମ ଆମେ ଦେଇଥିଲୁ ଆଦିମ ନାବିକ (ଦି ଆନସିଏଣ୍ଟ ମାରିନର) । ଷାଠିଏ ବର୍ଷରୁ ଊର୍ଦ୍ଧ୍ୱ ହେବ ସେ ଭାରତରେ ରହିଛନ୍ତି ଏବଂ ତା' ମଧ୍ୟରେ ସେ ଥରେ ମଧ୍ୟ ଇଂଲଣ୍ଡ ଯାଇ ନାହାନ୍ତି । 'ବଣ୍ଡଙ୍କ ଦାଗ ଦେବା କାଳି'ର ଉଦ୍ଭାବକଙ୍କର ସେ ସମ୍ପର୍କୀୟ, ସେତିକି ହେଉଛି ନିଜ ଜନ୍ମଭୂମି ସହ ତାଙ୍କର ଯୋଗସୂତ୍ର । ଯାହାଙ୍କ ସହ

ତାଙ୍କର ସାକ୍ଷାତ ହୁଏ ସେହି କାଳି ବ୍ୟବହାର କରିବା ପାଇଁ ସେ ଦୃଢ଼ ସୁପାରିସ କରନ୍ତି । ସେ ଥିଲେ ବନ୍ଦର ରକ୍ଷକ, ଲୁଣଗୋଦାମ ପରିଚାଳକ ଏବଂ ଦୁଇ ମାସ୍ତୁଲ ବିଶିଷ୍ଟ ପୋତ 'ଓଡ଼ିଶା' (ପ୍ରକୃତ ପକ୍ଷରେ ତାହା ଥିଲା ବଡ ସ୍କୁନର ଜାତୀୟ ପୋତ)ର କମାଣ୍ଡର । ଏଇ ଛୋଟ ଦ୍ରୁତଗାମୀ ଜାହାଜଟି ଥିଲା ଆଗକାଳିଆ ଅବସ୍ଥାର ଏକ ପ୍ରତୀକ। ବ୍ରିଟିଶ ଶାସନର ଆଦିକାଳରେ ଯେତେବେଳେ ବିଶେଷ ରାସ୍ତାଘାଟ ନ ଥିଲା, ଯାହା ବି ଥିଲା ଖୁବ୍ ଖରାପ, ବ୍ରିଟିଶ ପ୍ରଭୁତ୍ୱ ଦେଶର ଅଭ୍ୟନ୍ତରକୁ ଅଳ୍ପମାତ୍ର ପରିବ୍ୟାପ୍ତ ହୋଇଥିଲା ସେତେବେଳେ ଇଷ୍ଟଇଣ୍ଡିଆ କମ୍ପାନୀ ଉତ୍ତରରେ କଲିକତାଠାରୁ ଦକ୍ଷିଣରେ ମାନ୍ଦ୍ରାଜ ପର୍ଯ୍ୟନ୍ତ ଉପକୂଳସ୍ଥ ଉପନିବେଶମାନଙ୍କ ମଧ୍ୟରେ ସଂଯୋଗ ରକ୍ଷା ନିମନ୍ତେ ଅସ୍ତ୍ରସଜ୍ଜିତ ଛୋଟ ଜାହାଜର ଭେଳାଟିଏ ରଖିଥିଲେ । ଏହି ଜାହାଜଗୁଡ଼ିକ ଅଫିସରମାନଙ୍କୁ ସେମାନଙ୍କ ନିଯୁକ୍ତି ସ୍ଥଳକୁ ନେବା ସଙ୍ଗେ ସଙ୍ଗେ ଅଫିମ ଓ ଅନ୍ୟାନ୍ୟ ଦ୍ରବ୍ୟସବୁ ପରିବହନ କରୁଥିଲେ । ବେଳେ ବେଳେ ସେଗୁଡ଼ିକ ମଧ୍ୟ କୌଣସି ଅମାନିଆ ଜମିଦାରଙ୍କ ମାଟିତିଆରି ଦୁର୍ଗ ଆକ୍ରମଣ କରିବାରେ ଏବଂ ଏପରିକି ଫରାସୀମାନଙ୍କ ବିରୋଧରେ ଇଂରେଜ ସୈନ୍ୟଙ୍କ ଯୁଦ୍ଧରେ ବ୍ୟବହୃତ ହେଉଥିଲେ । ସେ କାଳ ବହୁଦିନୁ ଗଲାଣି, କିନ୍ତୁ ସେ ବ୍ରିଗ୍ ଓ ସ୍କୁନର ସବୁକୁ ଏପର୍ଯ୍ୟନ୍ତ ମଧ୍ୟ ରଖାଯାଇଛି। ସେଗୁଡ଼ିକ ଏବେ ମଧ୍ୟ ବେଳେ ବେଳେ ଅଫିମ, ଷ୍ଟାମ୍ପ ମୋହର ଏବଂ କଲିକତାରୁ ଅଫିମ ସରଞ୍ଜାମ ଓ ଅନ୍ୟାନ୍ୟ ସରକାରୀ ଜିନିଷ ପରିବହନ କରୁଛନ୍ତି ଏବଂ ଲୁଣ ଚୋରାବେପାରୀଙ୍କ ଅନୁଧାବନ କରିବାପାଇଁ ଯାଉଛନ୍ତି। ସେ ଯାହାହେଉ ବର୍ଷର ଅଧିକାଂଶ ସମୟ ଏହି ଛୋଟ ବ୍ରିଗ୍ 'ଓଡ଼ିଶା' ପୋତାଶ୍ରୟରେ ନିଷ୍କଳ ଭାବରେ ପଡ଼ିରହି ବରାବର ରଙ୍ଗ ଲଗା ହେଉଥାଏ, ରଙ୍ଗ ଛଡ଼ା ହେଉଥାଏ, ପୁଣି ପାଲିଶ ହେଉଥାଏ ଏବଂ (ଆମେ ପରେ ଜାଣିପାରିଲୁ) ଭିତର ଆଡୁ ଆସ୍ତେ ଆସ୍ତେ ଉଈଙ୍କ ମୁହଁରେ ନଷ୍ଟ ହେଉଥାଏ । ଥରେ ଥରେ ସେ ପାଲ ଉଡ଼ାଇ ଜଳଯାତ୍ରା କରେ ଏବଂ ଏହି ସମୟରେ ବେଳେ ବେଳେ ଖରାପ ପାଗ ଯୋଗୁଁ ସମୁଦ୍ର ଭିତରେ ପଡ଼ିଯାଇ ଆଉ ଫେରି ନ ପାରି ଅଟକି ଯାଏ। ସେଥିରେ ଥିବା ସବୁ ଖାଦ୍ୟ ଦ୍ରବ୍ୟ ସରିଯାଏ । 'ଆଦିମ ନାବିକ'ଟିକୁ ଏବଂ ଅନ୍ୟାନ୍ୟ କର୍ମଚାରୀମାନଙ୍କୁ ଭୋକର ଦାଉ ସମ୍ଭାଳିବାକୁ ପଡ଼େ ।

ଏତେଦିନ ଭାରତରେ ରହିଲେ ମଧ୍ୟ ଏହି 'ଆଦିମ ନାବିକ'ଙ୍କର ଭାରତୀୟ ଭାଷାରେ ଜ୍ଞାନ ଖୁବ୍ କମ୍—ଆରବୀ, ପାରସୀ, ମାଳୟୀ, ତାମିଲ, ପର୍ତ୍ତୁଗୀଜ ଓ ଉର୍ଦ୍ଦୁ ଶବ୍ଦାବଳୀର ଅଦ୍ଭୁତ ମିଶ୍ରଣର ତାଙ୍କ ହିନ୍ଦୁସ୍ତାନୀ ଯାହାର ଉଚ୍ଚାରଣ ମଧ୍ୟ ଅତ୍ୟନ୍ତ ବିକୃତ । ବଙ୍ଗୋପସାଗରରେ ସିଙ୍ଗାପୁରରୁ କଲିକତା ଓ କଲିକତାରୁ କଲମ୍ବୋ ଯିବାଆସିବା କରୁଥିବା ବିଭିନ୍ନ ଦେଶର ଜାହାଜରେ ଏଇ ଭାଷା ବ୍ୟବହାର କରାଯାଏ । ବଙ୍ଗୋପସାଗରର ଏଇ ନୌଜୀବନ ଖୁବ୍ ଅଦ୍ଭୁତ ଧରଣର। ତାହା ଏକ ସ୍ୱତନ୍ତ୍ର ଦୁନିଆ। ଏହି ଜାହାଜର କପ୍ତାନ ଓ ଅଫିସରମାନେ ୟୁରୋପୀୟ ଓ ଅନ୍ୟ 'ଲସ୍କର'ମାନେ ଚିଟାଗଙ୍ଗ, ମାନ୍ଦ୍ରାଜ ଉପକୂଳ ଓ ପୂର୍ବବଙ୍ଗରୁ ଆସିଥିବା ଲୋକ । ସେ ଜୀବନର ବର୍ଣ୍ଣନା ପାଇଁ ଏକ ସ୍ୱତନ୍ତ୍ର ଗ୍ରନ୍ଥ ଦରକାର । ମୋର ନୂଆ ଚାକିରିରେ ସଂପୃକ୍ତ ବହୁପ୍ରକାର ଦାୟିତ୍ୱ ମଧ୍ୟରୁ କଷ୍ଟମ କଲେକ୍ଟର ଦାୟିତ୍ୱ ଅନ୍ୟତମ—ସେହି ଅବସରରେ ମୁଁ ବାରମ୍ବାର ଏହି ଜୀବନର ସଂପର୍କରେ ଆସିଚି ଯାହା ବର୍ଣ୍ଣନା କରିବାର ସୁଯୋଗ ପରେ ବହୁବାର ଆସିବ ।

ଏହି 'ଆଦିମ ନାବିକ'ଙ୍କ ପତ୍ନୀ ତଥା ପରିଚାଳିକା ଶ୍ରୀମତୀ ବ୍ରିଗେଟ ବଣ୍ଡ ଥିଲେ ଜଣେ କ୍ଷୁଦ୍ରାକାୟା, ଲୋଳିତଚର୍ମା ବୃଦ୍ଧା ଯେ କି ଗୋଟିଏ ଗାଧୁଆ ଚୌକିରେ ବସି ବୁଲାଚଲା କରନ୍ତି ଏବଂ ସ୍ୱାମୀ ସମୁଦ୍ରର ସବୁ ବିଷୟ ଚିକିନିଖି ବୁଝିଲାପରି ସେ ସ୍ଥଳର ସବୁ ବିଷୟ ବୁଝନ୍ତି । ତାଙ୍କର କିଛି ଜମି ଓ କେତେଟା ଘର ଥିଲା; କିନ୍ତୁ ତାଙ୍କର ବିଶେଷ ଖ୍ୟାତି ଥିଲା ଆଉ ଏକ ବିଷୟରେ ଯାହାକୁ ତାଙ୍କ ସ୍ୱାମୀ କହୁଥିଲେ, 'ପ୍ଲାଇ ମାଉଥ୍ ଭ୍ରାତୃମଣ୍ଡଳୀ' । ଏଥିପାଇଁ ସେ ତାଙ୍କ ଘରେ ପ୍ରାର୍ଥନସଭା ଡକାଉଥିଲେ ଯେଉଁଠିକି ଏହି 'ଆଦିମ ନାବିକ' ଆମକୁ ନିୟନ୍ତ୍ରଣ କରି କହୁଥିଲେ—ବିଡ୍‌ଡିର ପ୍ରାର୍ଥନା ସଙ୍ଗୀତ ଶୁଣିବାକୁ ଆସିବେ ଆପଣ । ବିଡ୍‌ଡି ଖୁବ୍ ସୁନ୍ଦର ପ୍ରାର୍ଥନା କରେ । ଦୁଃଖର ସହିତ କହୁଚି ଯେ ଆମେ କେବେ କେହି ସେଠାକୁ ଯାଇ ନାହୁଁ । ବିଡ୍‌ଡି, ସେହି ବୃଦ୍ଧାଜଣକ ନିଶ୍ଚୟ ବୁଦ୍ଧିମତୀ ଏବଂ କୌଣସି ସମୟରେ ଉତ୍ତମ ଶିକ୍ଷା ଲାଭ କରିଥିବା ପରି ମନେହୁଏ । କେବେ କେବେ ସନ୍ଧ୍ୟାବେଳେ ସେ ଆମ ଉଦ୍ୟାନରେ ଆମ ସହ ବସନ୍ତି ଏବଂ ତାଙ୍କ କଥାବାର୍ତ୍ତାରୁ ବିଭିନ୍ନ ବିଷୟରେ ତାଙ୍କର ଜ୍ଞାନର ଗଭୀରତା ଦେଖି ଅନେକ ସମୟରେ ଆମେ ଆଶ୍ଚର୍ଯ୍ୟ ହେଉଁ । ତାଙ୍କ ବଂଶ ପରିଚୟ କ'ଣ ଏବଂ କିପରି ଏଇ ସୁଦୂର ଅପାଙ୍‌କ୍ତେୟ ବାଲେଶ୍ୱର ଜିଲ୍ଲାକୁ ଟାଣିହୋଇ ଆସିଲେ ତାହା ଏକ ରହସ୍ୟ ଥିଲା । ତାଙ୍କର ପରିବାର ବଡ଼ । ଗୁଡ଼ିଏ ପୁଅଝିଅ । ଜଣକ ଛଡ଼ା ସମସ୍ତେ ବଙ୍ଗଳାର ବିଭିନ୍ନ ସ୍ଥାନରେ ବିବାହ କରି ଭଲ ଦରମାରେ ଚାକିରି ପାଇ ରହିଯାଇଥିଲେ । ଗୋଟିଏ ଅବିବାହିତା କନ୍ୟା ଏଲିସ୍, ଚାଳିଶ କିମ୍ବା ତଦୂର୍ଦ୍ଧ୍ୱ ବୟସର, ଶ୍ଳଥଚର୍ମା, ଧୂର୍ତ୍ତସ୍ୱଭାବା କୁମାରୀ ତାଙ୍କ ପାଖରେ ଥାଏ ଏବଂ ବାଲେଶ୍ୱରକୁ ଯେତେ ଯୁବକ ଯାଆନ୍ତି ସେମାନଙ୍କୁ କବଳିତ କରିବା ପାଇଁ ତା'ର ବହୁ ଅଭ୍ୟସ୍ତ ମାୟାମନ୍ତ୍ର ପ୍ରୟୋଗ କରିବାର ବିଫଳ ପ୍ରୟାସ କରେ ।

ଏହି ନିଷ୍କଳ ସ୍ଥାନରେ ଏହିପରି କିଂଭୂତ ସମାଜ ମଧ୍ୟରେ ଆମେ ଚାରିବର୍ଷ ରହିଲୁ । ମୁଁ ଅତିଶୀଘ୍ର ଓଡ଼ିଶାର ଭାଷା ଓଡ଼ିଆ ଶିଖିଗଲି ଏବଂ ଜଣେ ଆମେରିକୀୟ ବ୍ୟାପ୍‌ଟିଷ୍ଟ ପ୍ରଚାରକ ଇ. ବି. ହାଲାମକୁ ଓଡ଼ିଆ ବ୍ୟାକରଣ ଲେଖିବାରେ ସାହାଯ୍ୟ କଲି । ମୁଁ ମଧ୍ୟ ବର୍ତ୍ତମାନ ମୋର 'ଆଧୁନିକ ଭାରତୀୟ ଆର୍ଯ୍ୟ ଭାଷାସମୂହର ତୁଳନାତ୍ମକ ବ୍ୟାକରଣ' ଆରମ୍ଭ କରି ଅଠର ମାସରେ ଶେଷ କଲି । ସେଥିପାଇଁ ପ୍ରାତଃଭୋଜନ ପୂର୍ବରୁ ପ୍ରତିଦିନ ସକାଳ ଆଠଟାରୁ ଦଶଟା—ଦୁଇ ଘଣ୍ଟା ପରିଶ୍ରମ କଲି । ମୋର ସରକାରୀ କାମ ଖୁବ୍ ଭିଡ଼ ନ ହେଲେ ମଧ୍ୟ ବରାବର ଲାଗି ରହିଥାଏ ଏବଂ ସେଥିରୁ ଏଇ ଦୁଇ ଘଣ୍ଟାଟି ମାତ୍ର ମୁଁ ଦେଇପାରୁଥିଲି । ଦିନର ସବୁ ସମୟରେ ଲୋକେ ଏ କାମ ସେ କାମ ନେଇ ଆସନ୍ତି, ବେଳେ ବେଳେ ବହୁତ ରାତିଯାଏ ମଧ୍ୟ । ଏଇ ସମୟରେ ମୁଁ ମୋର ପ୍ରିୟ ଘୋଡ଼ା, 'ବାଲାକ୍ଲାଭା'କୁ କିଣିଲି ଯେ କି ନ'ବର୍ଷଯାଏ ମୋର ବିଶ୍ୱସ୍ତ ଭୃତ୍ୟ ରୂପେ ଶହ ଶହ ମାଇଲ ମୋତେ ବୋହି ନେଇଥିଲା । ସେ ଦେଖିବାକୁ ସୁନ୍ଦର ନ ଥିଲା । ବିଶାଳ ଶରୀର, ବଡ଼ ଅସ୍ଥି ବିଶିଷ୍ଟ ଏଇ ଚେଷ୍ଟନଓ୍ୱାଲର (ନ୍ୟୁ ସାଉଥ ୱେଲସ୍‌ରୁ ଭାରତକୁ ଆସୁଥିବା ସାମରିକ ଅଶ୍ୱ)ର ଚାରିଟା ଧଳା ପାଦ ଆବରଣ ଏବଂ ଭୟଙ୍କର ଚକ୍ଷୁ ଥିଲା । ମୁଁ କିଙ୍ଗ୍ ଲୋକ୍‌ଙ୍କର କ୍ରିମିଆ ପଢୁଥିଲି ଏବଂ ଏଇ ଘୋଡ଼ା ଆଣିଲାବେଳେ ବାଲାକ୍ଲାଭାଠାରେ ହାଲକା ବାହିନୀର ପ୍ରସିଦ୍ଧ ଆକ୍ରମଣ ସମୟରେ ଲର୍ଡ଼ କାର୍ଡିଗାନଙ୍କର ଆକ୍ରମଣକାରୀ ଅଶ୍ୱର ବର୍ଣ୍ଣନା

ଚାଲିଥିଲା । ମୁଁ ପଢୁଥିବା ସେହି ଅଶ୍ୱର ବର୍ଣ୍ଣନା ସହିତ ମୋ ଘୋଡ଼ାଟିର ସାମଞ୍ଜସ୍ୟ ଏତେ ଅଧିକ ଥିଲା ଯେ ମୁଁ ତା'ର ନାମକରଣ ସେହିପରି କରିଦେଲି । ମୋ ସ୍ତ୍ରୀଙ୍କର ଗୋଟିଏ ସୁନ୍ଦର ଉପସାଗରୀୟ ଘୋଡ଼ୀ ଥିଲା । ଆମେ ଦୁହେଁ ଅନେକଥର ଗ୍ରାମାଞ୍ଚଳରେ କାର୍ଯ୍ୟ ଉପଲକ୍ଷରେ ପ୍ରମୋଦ ଭ୍ରମଣରେ ଯାଉଥିଲୁ । ବାଲାକ୍ଲାଭା ଖୁବ୍ ଦୁଷ୍ଟ ଥିଲା ଏବଂ ଭୟଙ୍କର ଭାବରେ ପିଠି ବଙ୍କେଇ ଲମ୍ଫ ଦେଉଥିଲା, ତା'ର ସଇସକୁ କାମୁଡ଼ି ଦେଉଥିଲା ଏବଂ ସକାଳେ ଯାତ୍ରାରମ୍ଭ ସମୟରେ ମୋର ତା'ସହିତ ପ୍ରାୟ ସଂଘର୍ଷ ଘଟୁଥିଲା; କିନ୍ତୁ ସେ ମତେ ଚିହ୍ନିଥିଲା ଏବଂ ଆମେ ଘନିଷ୍ଠ ବନ୍ଧୁ ଥିଲୁ ।

ସେ ବର୍ଷ ବଡ଼ଦିନ ଆମେ କଟକରେ ଜଜ୍ ରବଟ୍ ଆଲେକଜାଣ୍ଡରଙ୍କର ଅତିଥି ଭାବରେ କଟାଇଲୁ । ସେ ଥିଲେ ମେଳାପି, ଉଦାର ହୃଦୟର ବୃଦ୍ଧ, ଆମର ଘନିଷ୍ଠ ବନ୍ଧୁ ଏବଂ ବୋତଲ ବିୟର ପାନରେ ପାରଙ୍ଗମ । ତାଙ୍କ ପରି ଲୋକ ମୁଁ ଆଉ ଦେଖି ନାହିଁ । ଆମେ ଟ୍ରଙ୍କରୋଡ୍ ଦେଇ ଯାଇଥିଲୁ ଏବଂ ତମ୍ବୁ ବା ବଙ୍ଗଳାରେ ରହୁଥିଲୁ । ଭାରତର ଅଧିକାଂଶ ଅଞ୍ଚଳ ପରି ଓଡ଼ିଶାର ସର୍ବତ୍ର ଦଶ, ପନ୍ଦର ମାଇଲ ଅନ୍ତରରେ ଛୋଟ ବଙ୍ଗଳାମାନ ଅଛି । ଏସବୁ ସରକାରଙ୍କ ଦ୍ୱାରା ତିଆରି । ପ୍ରଧାନତଃ ରାସ୍ତା ଏବଂ ଅନ୍ୟାନ୍ୟ ନିର୍ମାଣ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରୁଥିବା ବେଳେ ନିର୍ମାଣ ବିଭାଗର କର୍ମଚାରୀମାନଙ୍କର ପାଇଁ ଏ ସବୁ ଉଦ୍ଦିଷ୍ଟ ।

କଟକରୁ ପ୍ରାୟ ଚବିଶ ମାଇଲ ଦୂରରେ ନେଉଳପୁରଠାରେ କେନାଲରେ ଜଳସେଚନ ବିଭାଗର ଗୋଟିଏ ଛୋଟ ଷ୍ଟିମର ଆମ ପାଇଁ ଅପେକ୍ଷା କରିଥିବାର ଦେଖିଲୁ । ସେ କେନାଲ ଅଳ୍ପଦିନ ପୂର୍ବରୁ ସେଠାରେ ଖୋଲା ସରିଥିଲା । ଷ୍ଟିମରର ଯାତ୍ରୀ ଦଳରେ ଥିଲେ ବାରଜଣ ପୁରୁଷ, ତନି ଚାରିଜଣ ମହିଳା, କେତେ ଜଣ ପିଲା । ବେଶ୍ ଆନନ୍ଦଦାୟକ ହେଲା । ଆମେ ସକାଳୁ ବାହାରିଲୁ । ଦିନଯାକ ପ୍ରଧାନତଃ ଭୋଜନ, ପାନ, ଧୂମପାନ, ତାସ୍‌ଖେଳ ଓ ଗୀତରେ କଟିଲା । ତେଣୁ କଟକରେ ରାତି ଏଗାରଟାବେଳେ ପହଞ୍ଚିଲା ବେଳକୁ ଖୁବ୍ କ୍ଲାନ୍ତ ହୋଇ ପଡ଼ିଥିଲୁ । ମହାନଦୀର ଗୁଡ଼ାଏ ବାଲିଚଡ଼ାରେ ଲାଗି ରହିବାରୁ ଆମର ଏତେ ଡେରି ହେଲା । ମନୋରମ କଟକ ସହର ବିଷୟରେ ମୁଁ ଏଠାରେ ବର୍ଣ୍ଣନା କରୁ ନାହିଁ; କାରଣ ପରବର୍ତ୍ତୀ ସମୟରେ ଆମେ ଏହାକୁ ଆହୁରି ଭଲ ଭାବରେ ଜାଣିଲୁ । ତାହାର ଆକର୍ଷଣ ଆମକୁ ପ୍ରଥମ ଭ୍ରମଣ କାଳରେ ହିଁ ମୁଗ୍ଧ କଲା । ପ୍ରଶସ୍ତ ଛାୟାଶ୍ରିତ ରାସ୍ତା, ସବୁଜ ପ୍ୟାରେଡ୍ ପଡ଼ିଆ, ଛବିଳ ହର୍ମ୍ୟରାଜି, ଦୁଇ ପ୍ରଶସ୍ତ ନଦୀ ଏବଂ ସେମାନଙ୍କ ପୃଷ୍ଠପଟରେ ସୁନ୍ଦର ନୀଳ ପର୍ବତମାଳା ଏସବୁ ମିଶି ଏ ସ୍ଥାନଟିକୁ ଭାରତର ସୁନ୍ଦରତମ ସ୍ଥାନ ମଧ୍ୟରେ ଅନ୍ୟତମ କରିଛି ।

ସହରଠାରୁ ପ୍ରାୟ ମାଇଲିଏ ଦୂରରେ ଗୋଟିଏ ବିରାଟ ସମତଳ ଅଞ୍ଚଳରେ ଅଛି ଘୋଡ଼ାଦୌଡ଼ ପଡ଼ିଆ ଓ ଉଚ୍ଚ ମଞ୍ଚ । ଖୁବ୍ ସକାଳୁ ସେଠାରେ ଘୋଡ଼ାଦୌଡ଼ ହେଉଥିଲା । ବିଜୟନଗର ମହାରାଜା ଜଣେ ଖର୍ବକାୟ ଇଂରେଜ ଘୋଡ଼ା ଦୌଡ଼ାଳିଙ୍କ ଦାୟିତ୍ୱରେ କେତେଗୁଡ଼ିଏ ଘୋଡ଼ା ପଠାଇଥିଲେ । ସେ ତାଙ୍କ ଅଶ୍ୱଚାଳନ କୌଶଳ ବଳରେ ଅନ୍ୟ ସମସ୍ତ ସୌଖୀନ ଘୋଡ଼ାଦୌଡ଼ାଳିଙ୍କୁ ପରାସ୍ତ କରିଦେଉଥିଲେ । ପୁଣି ଭୋଜିମାନ ହେଉଥିଲା, ଯେଉଁଥିରେ କୋଡ଼ିଏ କିମ୍ବା ତିରିଶ ଜଣ ଯୋଗ ଦେଉଥିଲେ । ଭଦ୍ରମହିଳାମାନେ ଚାଲିଯିବାପରେ

ଚାଲୁଥିଲା ଗରମ ହୁଇସ୍କି ଓ ପାଣି ଏବଂ ଅଧରାତିରୁ ବେଶି ପର୍ଯ୍ୟନ୍ତ ଗୀତ । କଟକଠାରେ ଗୋଟାଏ ମାନ୍ଦ୍ରାଜ ରେଜିମେଣ୍ଟ ଅବସ୍ଥାପିତ, ଅନ୍ତତଃ ସେତେବେଳେ ଥିଲା । ସେମାନଙ୍କ ମେସ୍‌ରେ ମଧ୍ୟ ବଡ଼ ବଡ଼ ଭୋଜିମାନ ଲାଗୁଥିଲା । ସେଣ୍ଟ୍‌ଜନ୍ ରଜନୀ (ଡିସେମ୍ବର ୨୭)ରେ ମ୍ୟାସନ ଗୃହରେ ବଡ଼ ଉତ୍ସବ ହେଉଥିଲା, ତା'ପରେ ଲଜ୍‌ଠାରେ ଭୋଜି ଯେଉଁଥିରେ ପ୍ରାୟ ପଚାଶ ସରିକି ଭ୍ରାତୃମଣ୍ଡଳୀ ଯୋଗ ଦେଉଥିଲେ । ସେଠାରେ ଖୁବ୍ ଖିଆପିଆ, ପାଟିତୁଣ୍ଡ ଚାଲେ ସକାଳଯାଏ ଏବଂ ବହୁ ଭାଣ୍ଡାମୀ ଓ ଥଟାତାମସାରେ ଶେଷ ହୁଏ ।

ସେତେବେଳେ ଏଇ ସ୍ଥାନଟି ଗୋଟିଏ ବଡ଼ ଶାସନ କେନ୍ଦ୍ର ଥିବାରୁ ଏବଂ ନିକଟବର୍ତ୍ତୀ କେତେଗୁଡ଼ିଏ ଛୋଟ ଛୋଟ କେନ୍ଦ୍ରର ମିଳନ ସ୍ଥଳ ଥିବାରୁ ବେଶ୍ ଜୀବନ୍ତ ଥିଲା । ମୋର ଜାଣିଥିବା ସମସ୍ତ ସ୍ଥାନ ମଧ୍ୟରେ ଏହା ଥିଲା ଅନ୍ୟତମ ସର୍ବୋତ୍କୃଷ୍ଟ ଆନନ୍ଦଦାୟକ, ସ୍ୱାସ୍ଥ୍ୟକର, ସୁନ୍ଦର ଏବଂ ସାଧାରଣ ଭାବରେ ପସନ୍ଦଯୋଗ୍ୟ—ଅନ୍ତତଃ ସେତେବେଳେ ଅର୍ଥାତ୍ ୧୮୬୯ରୁ ୧୮୭୮ ପର୍ଯ୍ୟନ୍ତ ଆମେ ଜାଣିଥିବା ସମୟରେ ଏହା ଏହିପରି ଥିଲା ।

୧୮୭୦ ନବବର୍ଷର ପ୍ରଥମ ସପ୍ତାହରେ ଆମେ ବାଲେଶ୍ୱର ଫେରିଲୁ । ବିରାଟ ଓ କୋଳାହଳମୟ କଟକ ତୁଳନାରେ ଏହା ଖୁବ୍ ଛୋଟ ଜଣାପଡ଼ିଲା । ରାସ୍ତାରେ ଚାଲିଥିବା ତୀର୍ଥଯାତ୍ରୀଦଳ ଥିଲେ ଏଠାରେ ସବୁଠାରୁ ବର୍ମମୁଖର । କଲିକତାରୁ ମାନ୍ଦ୍ରାଜ ପର୍ଯ୍ୟନ୍ତ ଲମ୍ବିଥିବା ଗ୍ରେଟ୍ ଇମ୍ପିରିଆଲ୍ ରୋଡ଼ର ଅଂଶବିଶେଷ ରୂପେ ଓଡ଼ିଶା ଟ୍ରଙ୍କ ରୋଡ଼ ସମଗ୍ର ବାଲେଶ୍ୱର ଜିଲ୍ଲାର ଦୈର୍ଘ୍ୟ ବ୍ୟାପୀ ଏହାର ମେରୁଦଣ୍ଡରୂପେ ଶହେ କୋଡ଼ିଏ ମାଇଲ ପର୍ଯ୍ୟନ୍ତ ଲମ୍ବିଛି । ସଂପୂର୍ଣ୍ଣ ନିଦା ଭାବରେ ତିଆରି ଏହି ରାସ୍ତାଟି ଯେଉଁ ବାଟ ଦେଇ ଯାଇଛି ସେହି ଅଞ୍ଚଳର ଭୂମିସ୍ତରର ପଦରରୁ କୋଡ଼ିଏ ଫୁଟ ଉଚ୍ଚରେ ନିର୍ମିତ ଏହି ରାସ୍ତା ସୁଦୃଢ଼ ଇଟାର ପୋଲ, ଧାଡ଼ି ଧାଡ଼ି ଛାୟାପ୍ରଦ ବୃକ୍ଷ ଏବଂ ଟେଲିଗ୍ରାଫ୍ ତାର ଓ ଖୁମ୍ବ ସବୁ ଥାଇ ଦୂରକୁ ଗୋଟାଏ ବିରାଟ ବନ୍ଧ ପରି ଦେଖାଯାଏ । ଏଇ ରାସ୍ତାର ଉପରିଭାଗ ମାଙ୍କଡ଼ାପଥରରେ ତିଆରି । ଓଡ଼ିଶାର ସର୍ବତ୍ର ବ୍ୟବହୃତ ଏଇ ପଥରରେ ରାସ୍ତା, ପୋଲ ଓ ଘରର ମନଲାଖି କାମ ସବୁ ହୋଇଥାଏ । ଏହି ପ୍ରସିଦ୍ଧ ପଥଦେଇ ବର୍ଷସାରା,ବିଶେଷକରି ପ୍ରଧାନ ପ୍ରଧାନ ଉତ୍ସବ ସମୟରେ ଦୋଳଯାତ୍ରା ବା ଜାନୁଆରୀର ବାସନ୍ତୀ ଉତ୍ସବ ଏବଂ ଜୁନ୍ ଜୁଲାଇର ରଥଯାତ୍ରାବେଳେ ଭାରତର ସର୍ବାଞ୍ଚଳରୁ ତୀର୍ଥଯାତ୍ରୀଙ୍କର ଧାର ଛୁଟେ । ଗରିବଲୋକେ କ୍ଳାନ୍ତମନରୁ ପଦବ୍ରଜରେ ଏବଂ ଧନୀଲୋକେ ଶଗଡ଼ କିମ୍ବା ପାଲିଙ୍କିରେ ପୁରୀର ବିରାଟ ଜଗନ୍ନାଥ ମନ୍ଦିରକୁ ଯାଉଥାଆନ୍ତି । ଏହି ତୀର୍ଥଯାତ୍ରୀମାନଙ୍କୁ ଡକାୟତି ଓ ଅତ୍ୟାଚାରରୁ ରକ୍ଷା କରିବା ପାଇଁ ରାସ୍ତାତମାମ ପୋଲିସ୍ ଜଗୁଆଳର ବ୍ୟବସ୍ଥା ଥାଏ । ପଥ ମଧ୍ୟରେ ଅତ୍ୟଧିକ କ୍ଳାନ୍ତି କିମ୍ବା ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ ବିନା ମୂଲ୍ୟରେ ଚିକିତ୍ସାର ସୁବିଧା ପାଇଁ ସ୍ଥାନେ ସ୍ଥାନେ ଚିକିତ୍ସାଳୟମାନ ମଧ୍ୟ ଅଛି । ଅବଶ୍ୟ ସେମାନଙ୍କ ମଧ୍ୟରୁ ଅନେକ ରୋଗରେ ପଡ଼ି ମରନ୍ତି ଏବଂ ପ୍ରାୟ ଫେରିବାବେଳେ ସେମାନେ ସଙ୍ଗରେ ଜ୍ୱର ଓ ବିସୂଚିକା ଧରି ଫେରନ୍ତି । ବସ୍ତୁତଃ ସ୍ତ୍ରୀଲୋକମାନେ ହିଁ ବେଶି କଷ୍ଟ ଭୋଗନ୍ତି ।

ଜଗନ୍ନାଥ (ଇଂରେଜୀ ଭାଷାରେ 'ଜଗର୍ନଟ') ମନ୍ଦିରରେ ପଣ୍ଡା ନାମରେ ଏକ ଜାତୀୟ ବ୍ରାହ୍ମଣ ଅଛନ୍ତି, ଯେଉଁମାନଙ୍କର କାମ ହେଲା ଭାରତର ସର୍ବତ୍ର ବହୁ ଦୂରଦୂରାନ୍ତରକୁ ଭ୍ରମଣ

କରି ଜଗନ୍ନାଥଙ୍କଠାରୁ ତୀର୍ଥଯାତ୍ରାରେ ଆସିବାର ସୁଫଳ ପ୍ରଚାର କରିବା ଏବଂ ସେଥିପାଇଁ ଲୋକମାନଙ୍କୁ ପ୍ରଣୋଦିତ କରିବା । ବର୍ତମାନର ହିନ୍ଦୁମାନଙ୍କର ତୀର୍ଥଯାତ୍ରା ପ୍ରତି କମିଆସୁଥିବା ଆଦର ଏମାନଙ୍କ ପ୍ରଚାର ଫଳରେ ବଞ୍ଚି ରହିଚି । ସେମାନଙ୍କ ସର୍ବାଧିକ ସଫଳତା ବିଶେଷ ଭାବରେ ସ୍ତ୍ରୀଲୋକଙ୍କଠାରେ । ଜଣେ ସବଳ ଦୀର୍ଘକାୟ ପଣ୍ଡା ରାସ୍ତାରେ ଚାଲି ଚାଲି ଯାଉଥିବ, ପଛେ ପଛେ ଗାଈପଲ ପରି ଖର୍ବକାୟ ବଙ୍ଗାଳୀ ସ୍ତ୍ରୀଲୋକଙ୍କ ଛୋଟ ଦଳଟିଏ, ପ୍ରତ୍ୟେକେ ଦେହରେ ଜଡ଼ି ରହିଥିବା ଖଣ୍ଡେ ଲେଖାଏଁ ଛୋଟ ଲୁଗା ପିନ୍ଧି, ତାଳପତ୍ର ପେଡ଼ିରେ ନିଜର ଲୁଗାପଟା ମୁଣ୍ଡରେ ମୁଣ୍ଡେଇ ଓ ପଣ୍ଡା ମହାପ୍ରଭୁଙ୍କ ବୁକୁଳାଟି କାନ୍ଧରେ ଓହଳାଇ ଚାଲୁଥିବାର ଦୃଶ୍ୟ ଅତି ସାଧାରଣ । ଏଇ ରାସ୍ତାସାରା ମଝିରେ ମଝିରେ ଚଟି ବା ପାନ୍ଥନିବାସ ଅଛି । ରାତିରେ ଏମାନେ ଏଇଥିରୁ ଗୋଟିକରେ ରହନ୍ତି । ଏଇଠି ପଣ୍ଡା ମହାପ୍ରଭୁ ଅବସ୍ଥାନ କରୁଥିବାବେଳେ ତାଙ୍କ ସ୍ତ୍ରୀଲୋକ ଦଳଟି ତାଙ୍କ ପାଇଁ ଖାଦ୍ୟପଦାର୍ଥ କିଣନ୍ତି, ରୋଷେଇ କରନ୍ତି, ବିଛଣା ବିଛେଇ ଦିଅନ୍ତି, ଖାଦ୍ୟ ପରଷନ୍ତି, ଚିଲମରେ ନିଆଁ ଧରେଇ ଦିଅନ୍ତି, ତାଙ୍କ ଅଙ୍ଗ ପ୍ରତ୍ୟେଙ୍ଗରେ ତେଲ ମର୍ଦ୍ଦନ କରନ୍ତି ଏବଂ ସେ ଇଚ୍ଛା କଲେ ତାଙ୍କ ଦୈହିକ କାମନାର ମଧ ପରିପୂରଣ କରନ୍ତି ।

ଅବଶେଷରେ ସେମାନେ ଯେତେବେଳେ ଜଗନ୍ନାଥଙ୍କଠାରେ ପହଞ୍ଚନ୍ତି ପଣ୍ଡା ତା'ର ଏଇ ଦଳଟିକୁ ସବୁ ପବିତ୍ର ସ୍ଥଳ ବୁଲାଇ ଦେଖାଏ, ସେମାନଙ୍କୁ ସବୁ ପ୍ରକାର ନୈବେଦ୍ୟ କରାଏ ଏବଂ ପଢ଼ିଆରୀ ବା ମନ୍ଦିର ପୂଜକମାନଙ୍କ ସହ ମେଳ ହୋଇ ଦାନ ଓ ଦକ୍ଷିଣା ବାବଦରେ ସେମାନଙ୍କଠାରୁ ଶେଷ କଉଡ଼ିଟି ପର୍ଯ୍ୟନ୍ତ ଟାଣିନିଏ । ଉତ୍ସବ ଅନୁଷ୍ଠାନ ସରିଗଲେ ତା'ର ମଧ ସେମାନଙ୍କଠାରୁ କାମ ସରିଯାଏ । ସେତେବେଳେ ସେ ବିନା ଦ୍ୱିଧାରେ ସେମାନଙ୍କୁ ଯଥାଶୀଘ୍ର ବିଦା କରିଦିଏ ଶହ ଶହ ମାଇଲ ଦୂର ସେମାନଙ୍କ ଘର ଖୋଜି ଖୋଜି ନିଃସହାୟ ଅବସ୍ଥାରେ ଫେରିବାପାଇଁ । ଏହିପରି ବେଳେ ବେଳେ ନିଜ ସ୍ୱାମୀମାନଙ୍କ ସଞ୍ଚିତ ଧନକୁ ଗୁପ୍ତରେ ହାତପୈଠ କରିଥିବା ଓ ବହୁ ଦୂରର ନିଜର ନିବାସ ସ୍ଥଳରୁ ଆସିଥିବା ଏହି ସ୍ତ୍ରୀଲୋକଗୁଡ଼ିକ ବିଚରା ବର୍ଷାରେ ଭିଜିଭିଜି କ୍ଳାନ୍ତ ପଦରେ ଘରକୁ ଫେରନ୍ତି, କାରଣ ଅଧିକାଂଶ ସମୟରେ ବର୍ଷାଋତୁରେ ପଡୁଥିବା ରଥଯାତ୍ରା ସମୟରେ ହିଁ ସେମାନେ ଆସିଥାନ୍ତି । କ୍ଷୁଧା, କ୍ଳାନ୍ତି ଓ ବର୍ଷା ଜାକର ସହି ସହି ସେମାନଙ୍କ ମଧରୁ ବହୁସଂଖ୍ୟକ ରାସ୍ତା କଡ଼ରେ ମରନ୍ତି । ବଳ ବୟସ ଜୋରରୁ ଯେଉଁମାନେ ଏହି ଯାତ୍ରାରୁ ରକ୍ଷା ପାଆନ୍ତି, ସେମାନେ ସ୍ୱାମୀର କ୍ରୋଧକୁ ଭୟ କରି ଘରକୁ ଫେରି ନ ପାରି କଲିକତାରେ ବେଶ୍ୟାମାନଙ୍କ ସଂଖ୍ୟା ବୃଦ୍ଧି କରିବସନ୍ତି । ଦୁଷ୍ଟ ଲୋକେ ଧର୍ମର ଏପରି ହୀନ ଉପଯୋଗ କରିପାରନ୍ତି ।

ଅନେକ ସମୟରେ ଜିଲ୍ଲାତମାମ ରାସ୍ତାରେ ଘୋଡ଼ାରେ ବସି ବୁଲି ବୁଲି ଆମେ କୋଡ଼ି କୋଡ଼ି ସଂଖ୍ୟକ ଶ୍ୱେତବସ୍ତ୍ରା ବଙ୍ଗୀୟା ନାରୀଙ୍କୁ ସନ୍ତସନ୍ତିଆ ଭୂଇଁ ଉପରେ ସେମାନଙ୍କ ଏକମାତ୍ର ଆବରଣ ଖଣ୍ଡେ ଛୋଟିଆ ଶାଢ଼ି ଗୁଡ଼େଇ ହୋଇ ଶୋଇ ରହିବାର ଦେଖିଛୁ । ସେମାନଙ୍କ ମଧରୁ କେତେ ଜୀବନ୍ତ, କେତେ ମୃତ ଆମେ ଜାଣି ନାହୁଁ । କେବଳ ନିତି ସକାଳୁ ମୁର୍ଦ୍ଦା ଫରାସ (ଶବ ବୁହାଳି କୁହାଯାଇଥିବା ଦଳେ ଲୋକ) ଗାଡ଼ି ଧରି ଆସନ୍ତି ଏବଂ ରାତି ମଧରେ ଇହସଂସାର ଯାତ୍ରା ଶେଷ କରିଥିବା ଏହି ଧବଳବସ୍ତ୍ରାବୃତାମାନଙ୍କୁ ବୋହିନେଇ ପୋତିଦିଅନ୍ତି । ଏହି ରାସ୍ତା କଡ଼େ କଡ଼େ ଏହିପରି ଶବ ପରିଷ୍କାର କରୁଥିବା ଅନେକ କର୍ମଚାରୀ ନିଯୁକ୍ତ ହୋଇଥିଲେ ।

ଏହି ସମୟରେ ଆମକୁ ସାକ୍ଷାତ କରିବାକୁ ଆସିଥିଲେ ଡଃ ଡବଲ୍ୟୁ, ଡବ୍‌ଲ୍ୟୁ ହଣ୍ଟର ନାମରେ ଜଣେ ଲେଖକ ଯାହାଙ୍କ ଲେଖା ଖୁବ୍ ଶକ୍ତିଶାଳୀ ହେଲେ ମଧ୍ୟ ସଂପୂର୍ଣ୍ଣ ନିର୍ଭୁଲ ନୁହେଁ । ତାଙ୍କର ସାତଦିନର ରହଣି ସମୟ ମଧ୍ୟରେ ସେ ମତେ ଅସରନ୍ତି ପ୍ରଶ୍ନରେ ଏତେ ଜର୍ଜରିତ କରିଥିଲେ ଯେ ସେ ଗଲାପରେ ଆଉ ମାସେ ପର୍ଯ୍ୟନ୍ତ କୌଣସି ପ୍ରକାର ପ୍ରଶ୍ନ ନ ପଚାରିବାକୁ ମୁଁ ସମସ୍ତଙ୍କୁ ନିଷେଧ କରିଦେଇଥିଲି । ସେତେବେଳେ ସେ ଥିଲେ କ୍ଷୀଣ ଖର୍ବକାୟ ଜଣେ ବ୍ୟକ୍ତି, ମୁହଁଟା କୁରାଢ଼ି ପରି ତୀକ୍ଷ୍ଣ । ତାଙ୍କର ଲେଖାର ଶୈଳୀ ସାମ୍ବାଦିକସୁଲଭ ପ୍ରଚାରମୁଖୀ ଓ ଆକର୍ଷଣୀୟ । ଟିକିନିଖି ତଥ୍ୟାବଳୀ ସଂଗ୍ରହ କରିବାରେ ସେ ଥିଲେ ଖୁବ୍ ଆଗ୍ରହୀ । ଏସବୁକୁ ପରବର୍ତ୍ତୀ ସମୟରେ ସେ ଅତି ଅଦ୍ଭୁତ ଓ ଭୟାନକ ଭାବରେ ବ୍ୟବହାର କରିଛନ୍ତି । କଟକରେ ଥିବା ସାମରିକ ବାହିନୀର ଖୁସ୍‌ମିଜାଜିର ଚଳିଆ ଅଫିସରଗଣ ତାଙ୍କର କାମରେ ଆସିବା ଭଳି ଅଦ୍ଭୁତ କାଳ୍ପନିକ କଥାର ଜାଲ ବୁଣି ନିଜେ ନିଜେ ଆମୋଦ ଲାଭ କରନ୍ତି । ଏହି ସବୁ କଥାକୁ ସେ ବିଧିମତେ ନିଜ ଟିପାଖାତାରେ ଲେଖି ଓଡ଼ିଶା ବିଷୟକ ନିଜର ବହିରେ ବ୍ୟବହାର କରିଛନ୍ତି । ଅତିଥି ଭାବରେ ସେ ଜଣେ ଅଦ୍ଭୁଆ ଲୋକ । କାରଣ ଆମର ସାଦାସିଧା ଖାଦ୍ୟରେ ସେ ସନ୍ତୁଷ୍ଟ ନ ଥିଲେ । ଭାରତର ଗ୍ରାମାଞ୍ଚଳସ୍ଥ ଜିଲ୍ଲାମାନଙ୍କରେ ରହଣି ସ୍ଥଳରେ ଥିବା ଅଧିକାଂଶ ଲୋକଙ୍କ ପରି ଆମେ ଚଳୁ । ଆମ 'ଛୋଟ ହାଜିର' ଅର୍ଥାତ୍ ଛୋଟ ଆହାର ସାଢ଼େ ପାଞ୍ଚରୁ ଛ'ଟା ମଧ୍ୟରେ ହୁଏ ଏବଂ ସେଥିରେ ଥାଏ ଚାହା, ସିଝା କିମ୍ବା ପୋଚ୍ ହୋଇଥିବା ଅଣ୍ଡା, ଟୋଷ୍ଟ ଓ ଫଳ । ତା'ପରେ ଘୋଡା ଚଢ଼ି ବୁଲିଯାଉ । ଏଗାରଟା ବେଳକୁ ପ୍ରାତରାଶରେ ଥାଏ ସିଝା କିମ୍ବା ଭଜା ମାଛ, ମାଂସ ଗୋଟାଏ ଦୁଇଟା ପ୍ରକାର, ସାଧାରଣତଃ କୁକୁଡା ମାଂସ ଭଜା, ଛୋଟ ମାଂସ ଖଣ୍ଡ ମିଶା ତରକାରି କିମ୍ବା ଥଣ୍ଡା କରାଯାଇଥିବା ମାଂସ ଓ ସାଲାଡ୍ । ପରେ ପରେ ଭାତ ଓ ପରିବା ତରକାରି ଏବଂ ମିଠା କିମ୍ବା ଫଳ । ଆମେ ପିଉ ବୋତଲରେ ଥିବା ବିଅର ଯେଉଁଟା କି ଥିଲା ସାଧାରଣ ପାନୀୟ କିମ୍ବା ପଣ୍ଡିଚେରୀ ବାଟେ 'ବଉଦ୍ରୁ'ରୁ ଆସୁଥିବା ଶସ୍ତା ସୁନ୍ଦର ଚାର୍‌ଲେଟ । ତା'ପରେ ଲାଗେ ଦିନ ତମାମ ଅଫିସ କାମ । ଚାରିଟାରୁ ପାଞ୍ଚଟା ମଧ୍ୟରେ ଚା ଓ କେକ୍ । ତା'ପରେ ଆମେ ବୁଲିଯାଉ କିମ୍ବା ଆମ ଘର ହତା ମଧ୍ୟରେ କାଠ ପେଣ୍ଡୁର ଖେଳ ଖେଳୁ । ସାଢ଼େ ସାତ କିମ୍ବା ଆଠଟା ବେଳର ପ୍ରଧାନ ଭୋଜନରେ ଥାଏ ସୁପ (ପରିବା କିମ୍ବା ମାଂସ ସିଝା ପାଣି), ଏଣ୍ଟ୍ରି, ସେକା ହୋଇଥିବା ବତକ କିମ୍ବା କୁକୁଡ଼ା, ବେଳେ ବେଳେ ଛେଳି ବା ମେଣ୍ଢା ମାଂସ, ଶିକାର କିମ୍ବା ଅନ୍ୟ କୌଣସି ସ୍ୱାଦ୍ୟ ମାଂସ ଏବଂ ମିଠା । ବିଅର କିମ୍ବା ଚାରଲେଟ୍ ପିଉ । ଏଇ ଖାଦ୍ୟ ଆମକୁ ବେଶ୍ ଭଲ ମନେହୁଏ; କିନ୍ତୁ ଆମ ଅତିଥିଙ୍କୁ ଏହା ପୋଷାଏ ନାହିଁ । ତାଙ୍କର ପ୍ରତ୍ୟେକ ରାତିରେ ଦରକାର ହୁଏ ସାମେନ ପାଟ୍-ଡ଼ି-ପଏଗ୍ରାମ ଏବଂ ଟିଣରେ ଆସୁଥିବା ଅନ୍ୟାନ୍ୟ ସୁଭୋଜ୍ୟ । ଟିଣ ଖାଦ୍ୟଗୁଡ଼ାକୁ ଆମେ ଅସ୍ୱାସ୍ଥ୍ୟକର ଓ ଅନେକ ସମୟରେ କଦର୍ଯ୍ୟ ମନେକରି ତା'ର ଧାର୍ ଧରୁନା, କିନ୍ତୁ ଭାରତରେ ଅନେକ ଲୋକ ସେଗୁଡ଼ାକୁ ମହାନ୍ ଆଭିଜାତ୍ୟ ବୋଲି ମନେକରନ୍ତି । ଅନେକ ସମୟରେ ଆମର ୟୁରେସୀୟ ବନ୍ଧୁମାନେ ଆମକୁ କହନ୍ତି— "ଓଃ ତମେ ସବୁ ଖୁବ୍ ପଇସାବାଲା, ସବୁଦିନ ତୁମେ ଟିଣ ଖାଦ୍ୟ ଖାଉଥିବ ନିଶ୍ଚୟ ।" ଏକଥା ଶୁଣିବାକୁ ଭାରି ଆମୋଦ ଲାଗେ । ସେମାନଙ୍କ ଭଳି ଆମେ ମଧ୍ୟ ସାଧାରଣ ମାଂସ ଓ କୁକୁଡ଼ା ସେକା ଖାଇ ବଞ୍ଚୁ ଏକଥା କହିଲେ ସେମାନେ ବିଶ୍ୱାସ କରନ୍ତି ନାହିଁ ।

ହଣ୍ଟରଙ୍କର ଦୁଇଖଣ୍ଡରେ ଲିଖିତ 'ଓଡ଼ିଶା' ପୁସ୍ତକ ତାଙ୍କର ଆମ ପାଖକୁ ଏଇ ଆସିବାର ଫଳ । ଏହି ପୁସ୍ତକ ଖୁବ୍ ଚାତୁର୍ଯ୍ୟପୂର୍ଣ୍ଣ ଓ ଅତ୍ୟନ୍ତ ସୁସମ୍ପାଦିତ, ଯଦିଓ ବହୁ ସଂଶୟପୂର୍ଣ୍ଣ । ମୁଁ ଏବଂ କଟକ ଓ ପୁରୀର କଲେକ୍ଟରମାନେ ତାଙ୍କୁ ଅନେକ ତଥ୍ୟ ଯୋଗାଇ ଦେଇଥିଲୁ; କିନ୍ତୁ ସେ ସବୁକୁ ସେ ତାଙ୍କର ବହିରେ ବିଶେଷ କିଛି ଉପଯୋଗ ନ କରି ପରିଶିଷ୍ଟରେ ଖୁବ୍ ଛୋଟ ଅକ୍ଷରରେ ଭର୍ତ୍ତିକରି ଦେଇଥିଲେ ।

ଏଇ ବର୍ଷ ବାଲେଶ୍ୱରରେ ନିଯୁକ୍ତ ଥିବା ଇଂରେଜ ଡାକ୍ତର ଜଣକ ପୀଡ଼ିତ ହୋଇ ବିଦାୟ ନେଇଗଲେ । ଯଥେଷ୍ଟସଂଖ୍ୟକ ଡାକ୍ତର ନ ଥିବାରୁ ସରକାର ତାଙ୍କ ସ୍ଥାନରେ ଜଣେ ୟୁରେସୀୟ ଔଷଧ ପ୍ରସ୍ତୁତକାରୀଙ୍କୁ ପଠାଇଦେଲେ । ଏହି ଅକୁଳୀନ, ଅର୍ଦ୍ଧଶିକ୍ଷିତ ବ୍ୟକ୍ତି ଜଣେ ଡାକ୍ତରଖାନା ସହକାରୀ ରୂପେ ସରକାରୀ ଚାକିରିରେ ଭର୍ତ୍ତି ହୋଇଥିଲେ । ସେଥିରେ ତାଙ୍କ କାମ ଥିଲା ଶଲ୍ୟ ଉପଚାର ସମୟରେ ଶଲ୍ୟକାରଙ୍କ ବୋଲହାକକାରୀ ରୂପେ ଜଗି ରହିବା, ଯନ୍ତ୍ରପାତି ସଫାକରିବା, କ୍ଷତବନ୍ଧା ପଟି ତିଆରି କରିବା ଏବଂ ଅନ୍ୟାନ୍ୟ ଶ୍ରମମୂଳକ କାର୍ଯ୍ୟ କରିବା । ସମୟକ୍ରମେ ସେ ଔଷଧ ପ୍ରସ୍ତୁତକାରୀ ପଦକୁ ଉଠିଲେ ଏବଂ ତା'ପରେ ଔଷଧ ଦାୟିତ୍ୱରେ ରହିଲେ । କ୍ରମେ ଔଷଧ ନିଦାନ ପତ୍ର ଦେବା କାମ କରି ପରେ ଅନ୍ତତଃ ଜଣେ କୁଶଳୀ କମ୍ପାଉଣ୍ଡର ବନିଗଲେ । କୌଣସି ଏକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ପରେ ସେ ଔଷଧ ଓ ଶଲ୍ୟ ଚିକିତ୍ସା ପୁସ୍ତକସବୁ ପଢ଼ିବାରେ ଲାଗିଗଲେ । ଡାକ୍ତରଖାନାରେ ରହି ଏବଂ ଡାକ୍ତରମାନଙ୍କ କଥା ଶୁଣି ଶୁଣି ଚିକିତ୍ସା ବିଷୟରେ ଏଣୁ ତେଣୁ ଜ୍ଞାନ କିଛି ସଂଗ୍ରହ କରିନେଲେ । ସୌଭାଗ୍ୟବଶତଃ ସେ ବଡଲାଟଙ୍କ ବ୍ୟକ୍ତିଗତ ଡାକ୍ତରମାନଙ୍କ ଅଧୀନରେ ଚାକିରି କଲେ ଏବଂ ଲର୍ଡ଼ ମେୟୋଙ୍କ ପାଇଁ ବଟିକା ତିଆରି କରିବାର ସୌଭାଗ୍ୟ ଲାଭ କଲେ । ତା'ପରେ ବଡଲାଟଙ୍କ ପରିବାରର ଭୃତ୍ୟ, ସେବିକା, ଜଗୁଆଳ ଓ ଇତର ବ୍ୟକ୍ତିମାନଙ୍କ ପାଇଁ ଔଷଧର ବିଧାନପତ୍ର ଦେବାର ଅନୁମତି ଲାଭ କଲେ । ଏହି ଅଭିଜ୍ଞତା ବଳରେ ସେ ଗୋଟାଏ ଜିଲ୍ଲାର ସିଭିଲ ମେଡ଼ିକାଲ ଅଫିସର ପଦର ଯୋଗ୍ୟତା ହାସଲ କରିଗଲେ । ଉପଯୁକ୍ତ ଶଲ୍ୟ ଚିକିତ୍ସକଙ୍କର ଅଭାବ ଥିବାରୁ ସରକାର ଚିକିତ୍ସାଜ୍ଞାନର ଯତ୍‌କିଞ୍ଚିତ ଜ୍ଞାନ ଥିବା ଯେ କୌଣସି ଲୋକଙ୍କୁ ନିଯୁକ୍ତି ଦେବାକୁ ବାଧ ହେଉଥିଲେ । ସେଥିଯୋଗୁଁ ତାଙ୍କୁ ଆମ ପାଖକୁ ପଠାଗଲା ।

ପ୍ରଥମେ ପ୍ରଥମେ ସେ ଅଜ୍ଞ ହେଲେ ମଧ ମାରାତ୍ମକ ଜନ୍ତୁ ନ ଥିଲେ । କାରଣ ତାଙ୍କର ଔଷଧ ଭଲ କରୁ ନ ଥିଲେ ମଧ ଅନ୍ତତଃ କ୍ଷତି କରୁନଥିଲା; କିନ୍ତୁ ସମୟକ୍ରମେ ଅଭ୍ୟାସବଶରୁ ତାଙ୍କର ସାହସ ବଢ଼ିଗଲା ଏବଂ ସେ ଏକ ନୂଆ ପଦ୍ଧତିରେ ଚିକିତ୍ସା ଆରମ୍ଭ କଲେ ଯାହାକୁ ସେ କହୁଥିଲେ 'ଔଷଧୀୟ ପ୍ରଦର୍ଶନ' । ଏହି ପଦ୍ଧତି ଅନୁସାରେ ରୋଗୀ ଆରୋଗ୍ୟ କିମ୍ବା ମୃତ୍ୟୁ ଲାଭ କରିବା ପର୍ଯ୍ୟନ୍ତ କେତେକ ଔଷଧ ମଧ୍ୟରୁ ଲାଗ ଲାଗ ଗୋଟାଏ ପରେ ଗୋଟାଏ ପ୍ରୟୋଗ କରୁଥିଲେ । ସେ ବର୍ଣ୍ଣକ୍ରମରେ ଆରମ୍ଭ କରିଥାନ୍ତି । ଯଦି 'କ' ନାମରେ ଥିବା ଔଷଧ କିଛି କାମ ନ କଲା ତେବେ 'ଖ' ନାମରେ ଔଷଧ ପ୍ରୟୋଗ କରୁଥିଲେ ଏବଂ ତା'ପରେ 'ଗ' ଏହିପରି । ସେ ଆରୋଗ୍ୟ କରିଥିବା ରୋଗୀମାନଙ୍କଠାରୁ ମାରିଥିବା ରୋଗୀଙ୍କ ସଂଖ୍ୟା ଯେ ବେଶି ହୋଇପାରିଲା ନାହିଁ, ତାହା ତାଙ୍କର ରୋଗୀମାନଙ୍କ ବୁଦ୍ଧି ସକାଶେ । ସେମାନେ ତାଙ୍କର ଏହି

ଅଦ୍ଭୁତ ପଦ୍ଧତି ବିଷୟ ଶୁଣି ଜାଣିପାରିଲେ ଯେ ତାଙ୍କୁ ଚିକିତ୍ସା କରିବା ଜଣା ନାହିଁ ଏବଂ ତାଙ୍କ ଔଷଧ ଖାଇଲେ ନାହିଁ ।

ମୋର ସ୍ତ୍ରୀ ଅନୁଭବ କଲେ ଯେ ତାଙ୍କର ଆଗତପ୍ରାୟ ପ୍ରସୂତି ସମୟ ପାଇଁ ଏହି ବ୍ୟକ୍ତିଟି ଉପରେ ନିର୍ଭର କରାଯାଇପାରେନା । ମୋତେ ୧୦୬ ମାଇଲ ଦୂରପଥ କଟକକୁ ଯାତ୍ରା କରିବାକୁ ପଡ଼ିଲା । ସେଇଠି ଷୋହଳ ଡିସେମ୍ବର ୧୮୭୦ ରେ ଆମର ୬ଷ୍ଠ ସନ୍ତାନ ଓ ତୃତୀୟା କନ୍ୟା କାଥାରାଇନ ଭୂମିଷ୍ଠ ହେଲା । ଏ ଘଟଣା ପରେ ପରେ ମୁଁ ଜିଲ୍ଲାକୁ ଫେରିଆସିଲି ଏବଂ ସମୁଦ୍ର ତୀରର ବିରାଟ ସରକାରୀ ଅଞ୍ଚଳର ନିର୍ଜନ ସମତଳ ପ୍ରାନ୍ତରର ନୂଆନନ୍ଦ ଶିବିରରେ ବଡ଼ଦିନଟା ଯାକ ଏକୁଟିଆ କଟେଇ ଦେଲି । ଏ ସବୁ ସମତଳ ଅଞ୍ଚଳରେ ଲୁଣ ମରାହୁଏ । ୧୮୭୦ରେ ମୁଁ ଇଲିଅଟ ପାଖକୁ ଯେଉଁ ପତ୍ର ଦେଇଥିଲି ସେଥିରେ ଉପରୋକ୍ତ ଅଞ୍ଚଳର ଏହିପରି ବର୍ଣ୍ଣନା ପାଉଛି ।

"ଏ ଲୁଣ ଭୂମି ସବୁ ମୋର ମନେ ପଡ଼େ ଅନେକ ବର୍ଷତଳେ 'ଇଲଷ୍ଟ୍ରେଟେଡ୍ ଲଣ୍ଡନ ନିଉଜ'ରେ ପ୍ରକାଶିତ ନିମ୍ନଦାନ୍ୟୁବ୍‌ର ବୁଲ୍‌ଗେରୀୟ କେଉଟର ଛବି ପରି, ଯାହାକି ମୁଁ କୋଡ଼ିଏ ବର୍ଷ ଧରି ଦେଖି ନ ଥିଲେ ମଧ୍ୟ ମୋର ସ୍ମୃତିପଟରେ ପୂରା ଭାସିଯାଉଛି, ବିରାଟ ମନ୍ଥରଗାମୀ ନଦୀ— 'ବୁସ୍ ଅଫ ଦି ବିଟର୍ନ' । ସାଧାରଣତଃ ମୁହଁ ଅନ୍ଧାର ବେଳ—ଦିଗ୍‌ବଳୟରୁ ଆସୁଥିବା ଧାରେ ଧାରେ ଆଲୁଅ ଏବଂ ଆଉ ସବୁ ଦୃଶ୍ୟ ଠିକ୍ ସେହିପରି । ଏଇ ଲୁଣ ଅଞ୍ଚଳ ସବୁ ବଣୁଆ ତୃଣଭୂମି—ସମୁଦ୍ର କୂଳେ କୂଳେ ବାଲି ପାହାଡ଼ ଦୁର୍ଗନ୍ଧଯୁକ୍ତ ସମୁଦ୍ର ନିକଟସ୍ଥ ଜଳଭାଗ ଆଂଶିକ ଲୁଣିଆ, ଆଂଶିକ ମଧୁର, କୁମ୍ଭୀରିଆ, ଚିକ୍‌କଣ କଳା ପଙ୍କ, ଅବସାଦକର ବିରାଟ ସାଗର— ଓଦା ବାଲି ଉପରେ ଖୁବ୍ ଦୂରରୁ ଗର୍ଜନ କରି ମଥାପିଟୁଥିବା ଏହାର ଜଳର ଦୃଶ୍ୟ ଖୁବ୍ ଗମ୍ଭୀର । ବିପରୀତ ଦିଗର ଦୃଶ୍ୟଟି କ୍ଲାନ୍ତି ହରଣ କରେ । ଛୋଟ ସୁନ୍ଦର ପାହାଡ଼ର ଧାଡ଼ିଟିଏ—ଖୁବ୍ ଦୂରରେ ନୀଳରୁ ନୀଳତର ହୋଇ ଦେଖାଯାଉଥିବା ପାହାଡ଼ର ଆରପଟେ ସୂର୍ଯ୍ୟ ଏଇମାତ୍ର ବୁଡ଼ିଯାଉଛନ୍ତି ।

ଲୁଣ ମରା ହେଉଥିବା ସେଇ ନିର୍ଜନ ଭୟଙ୍କର ନିମ୍ନାଞ୍ଚଳ ସମୁଦ୍ର ତଟ ଅମ୍ଳଗୁଳ୍ମଦ୍ୱାରା ଲାଲ, ଲବଣ ଦ୍ୱାରା ଧବଳ, ଶୁଷ୍କ ଘାସରେ ଧୂସର । କିଆବୁଦା ଦ୍ୱାରା ଘେରା ଏହି ଭୂମି ସେପଟେ କର୍ଦ୍ଦମାକ୍ତ ସମୁଦ୍ରର ଗର୍ଜନ—ଘର ନାହିଁ, ଲୋକବାକ ନାହାନ୍ତି, କିଛି ନାହିଁ ।

"ଯେ ଭୂମିରେ ପାଦ କେବେ ଦେଇନି ମାନବ
ସୃଷ୍ଟିର ସର୍ଜ୍ଜନକାଳୁ ଶୁଭିନି କା ରବ ।"

ସେଠାରୁ ମୁଁ ଫେରିଆସିଛି । ସେ ନିର୍ଜନ ଅଞ୍ଚଳରେ ମୋତେ ବେଶ୍ କିଛି କଠିନ କାମ କରିବାକୁ ପଡ଼ିଥିଲା ଏବଂ ୧୮୭୦ର ଶେଷ ପର୍ଯ୍ୟନ୍ତ ରହିବାକୁ ପଡ଼ିଥିଲା ।

ବାଲେଶ୍ୱର ନଦୀର ମୁହାଣରେ 'ବଳରାମ ଗଡ଼ି' ନାମରେ ଗୋଟିଏ ପୁରୁଣା ଭଙ୍ଗା ବଙ୍ଗଳାଘର ଥିଲା । ଆଗେ ଇଷ୍ଟଇଣ୍ଡିଆ କମ୍ପାନୀର ଏଇଟା ଥିଲା କାରଖାନା ଘର ଏବଂ 'ଅନ୍ଧକୂପ'ରୁ ବର୍ତ୍ତି ଯାଇଥିବା କେତେକ ଇଂରେଜ ଏଇଠାକୁ ଆଶ୍ରୟ ପାଇଁ ପଳାଇ ଆସିଥିଲେ । ମୁଁ ଥିବା ସମୟରେ ଏହାର ମାଲିକ ଥିଲେ ଜଣେ ଧନୀ ଦେଶୀୟ ବ୍ୟବସାୟୀ । ସେ ମୋ

ଅନୁରୋଧକ୍ରମେ ଏହାକୁ ମରାମତି କରି ଗ୍ରୀଷ୍ମକାଳଟା ପାଇଁ ମୋତେ ଭଡ଼ା ଦେଇଥିଲେ । ଗରମ ସମୟରେ ଆମେ ସେଠାକୁ ଯାଉ । ଦିନ ଓ ରାତିରେ ସମୁଦ୍ରରୁ ବହୁଥିବା ଶୀତଳ ପବନ ଯୋଗୁଁ ପଙ୍ଖାର ଆବଶ୍ୟକତା ପଡ଼େ ନାହିଁ ।

ଫେବୃୟାରୀ ୧୮୭୧ରେ ସାର ଉଇଲିଅମ୍ ଗ୍ରେ ଅବସର ନେବାରେ ସାର ଜର୍ଜ କ୍ୟାମ୍ପବେଲ୍ ବଙ୍ଗଳାର ଲାଟ ହେଲେ ଏବଂ ବଙ୍ଗଳାରେ କର୍ମତତ୍‌ପରତାର ସମୟ ଆରମ୍ଭ ହୋଇଗଲା । ଗ୍ରେ ଥିଲେ ଧୀର ଓ ମନ୍ଥର ସ୍ୱଭାବର ଲୋକ । ତାଙ୍କର ସମସ୍ତ କର୍ମସମୟ କେବଳ ସଚିବାଳୟରେ ହିଁ କଟିଗଲା ଏବଂ ପ୍ରଦେଶର ଗ୍ରାମାଞ୍ଚଳର ଶହେରୁ ଅନେଶତ ଭାଗର ସଂପର୍କରେ ତାଙ୍କର ଜ୍ଞାନ ଥିଲା ସଂପୂର୍ଣ୍ଣ ପୋଥିଗତ । ବିସ୍ତୃତ ଟିକିନିଖି ବିବରଣୀ ଲେଖିବାରେ ସେ ଖୁବ୍ ଆଗ୍ରହୀ; କିନ୍ତୁ କିଛି ଉଲ୍ଲେଖନୀୟ କାମ କରିପାରିଲେ ନାହିଁ । ତେଣୁ ସେ ଅବସର ନେବାବେଳେ ବିଶେଷ କିଛି ଚାଞ୍ଚଲ୍ୟ ପ୍ରକାଶ ପାଇଲା ନାହିଁ । କ୍ୟାମ୍ପବେଲ୍ ଥିଲେ ସଂପୂର୍ଣ୍ଣ ଭିନ୍ନ ଧରଣର । ତାଙ୍କର ଥିଲା ଚଞ୍ଚଳ କର୍ମତତ୍‌ପରତା ଓ ପରିବର୍ତ୍ତନ ପାଇଁ ଦୁର୍ଦମ ଇଚ୍ଛା; ତା'ସାଙ୍ଗକୁ ପ୍ରବଳ ଆତ୍ମବିଶ୍ୱାସ । ଏହାରି ଫଳରେ ସେ ସବୁ ଓଲଟ ପାଲଟ କରିଦେଲେ । କର୍ମଚଞ୍ଚଳତା ହୀନ, ସନ୍ତସନ୍ତିଆ ଓ ଆବଦ୍ଧ, ପୁରାତନ ବଙ୍ଗ ସବୁ ଖୁବ୍ ଗୋଟାଏ ହଲଚଲ ଆବଶ୍ୟକ କରୁଥିଲା ଏବଂ ତାଙ୍କର କାର୍ଯ୍ୟକଳାପ ବହୁକ୍ଷେତ୍ରରେ କାମ ଦେଲା ବୋଲି ସ୍ୱୀକାର ନ କଲେ ତାଙ୍କ ପ୍ରତି ଅବିଚାର ହେବ । ଅବଶ୍ୟ ତାଙ୍କର ଉତ୍ତରାଧିକାରିଗଣ ତାଙ୍କର ଆରମ୍ଭ କରିଥିବା କାମର ଯୋଜନାକୁ ସଠିକ୍ କାର୍ଯ୍ୟକାରୀ କଲେ ନାହିଁ । ଜଣେ ଲାଟଙ୍କ କାର୍ଯ୍ୟକାଳ ଯେ ଅତି କମ୍—ମାତ୍ର ପାଞ୍ଚବର୍ଷ ଏବଂ ତାଙ୍କ କ୍ଷେତ୍ରରେ ଆହୁରି କମ୍ ହେବ ସେ କଥା ସେ ଆଦୌ ଚିନ୍ତା କଲେ ନାହିଁ । ଆହୁରି ମଧ୍ୟ ସେ ଆଦୌ ଧାରଣା କରିପାରିଲେ ନାହିଁ ଯେ ଯେଉଁସବୁ ସଂସ୍କାର ପ୍ରଚେଷ୍ଟା ସେ କରୁଛନ୍ତି ତା'ର ସଫଳତା ପାଇଁ ବହୁ ବର୍ଷର ସଯତ୍ନ ଅନୁଧ୍ୟାନ ଓ ପରିଚାଳନା ଆବଶ୍ୟକ ଓ ସେତିକି ସମୟ ସେ ଦେଇପାରିବେନି; ଯାହା ଫଳରେ କି ଭଲ ଅପେକ୍ଷା ସେ ମନ୍ଦହିଁ ଅଧିକ କରି ବସିବେ । ତାଙ୍କର ଅନେକ କାମ ଭଲ ଥିଲା ଏବଂ ଖୁବ୍ ଭଲ ଫଳ ମଧ୍ୟ ଦେଲା; କିନ୍ତୁ ଦୁର୍ଭାଗ୍ୟବଶତଃ କେତେଗୁଡ଼ିଏ କାମ ସେ ନିଜେ ଥାଇ ବୁଝୁଥିବା ପର୍ଯ୍ୟନ୍ତ ଭଲ ଚାଲିଥିଲା; କିନ୍ତୁ ପରେ ତାଙ୍କ ଉତ୍ତରାଧିକାରୀମାନଙ୍କ କୁପରିଚାଳନା ଯୋଗୁଁ ନଷ୍ଟ ହୋଇଗଲା । ତାଙ୍କର କେତେକ ସଂସ୍କାରମୂଳକ ଯୋଜନାକୁ ପୂରାପୂରି ବାଦ ଦିଆଗଲା, ଯାହା ଫଳରେ ଲୋକଙ୍କର ଏବଂ ଦେଶର ବହୁତ କ୍ଷତି ହେଲା ।

ଅଧିକାଂଶ ଉତ୍ସାହୀ ସଂସ୍କାରକାମୀଙ୍କ ପରି ସେ ମଧ୍ୟ ତାଙ୍କ ସଂସ୍କାର ପରିସର ମଧ୍ୟରେ ପଡୁଥିବା ଲୋକମାନଙ୍କୁ ଚିହ୍ନିବାରେ ସଂପୂର୍ଣ୍ଣ ଉଦାସୀନ ଥିଲେ । ଉନ୍ନୟନ ପାଇଁ ଆଗ୍ରହ ଫଳରେ ସେ ବଙ୍ଗାଳୀମାନଙ୍କର ଅତି ପ୍ରିୟ ସଂସ୍କାରଗୁଡ଼ିକ ଉପରେ ମାଡ଼ିଦଳି ଚାଲିଲେ ଏବଂ ତା' ସଙ୍ଗେ ସଙ୍ଗେ ସେ ନିଜେ ମଧ୍ୟ ଥିଲେ ଜନମତ ପ୍ରତି ଅତ୍ୟନ୍ତ କଠୋର ଯେତେ ବିରୋଧ ଓ ସମାଲୋଚନା ହେଉନା କାହିଁକି ତାଙ୍କ ପ୍ରିୟ ଲକ୍ଷ୍ୟରୁ ସେ ହଟୁନଥିଲେ; କିନ୍ତୁ ଯେତେବେଳେ ଉଭୟ ଇଂରାଜୀ ଓ ଦେଶୀୟ ସମ୍ବାଦପତ୍ରମାନେ ଏ ବିଷୟରେ ତାଙ୍କୁ ଆକ୍ରମଣ କଲେ ତାଙ୍କର ଖୁବ୍ ଦୁଃଖ ହେଉଥିଲା । ସେ ରାଗିଯାଇ ଖୁବ୍ କଠୋର ଓ ରୂକ୍ଷ ଭାଷାରେ ନିର୍ଦ୍ଦେଶନାମାମାନ ପଠାଉଥିଲେ ।

ତାଙ୍କର ପୂର୍ବବର୍ତ୍ତୀମାନଙ୍କ ଅନୁସୃତ ଉଚ୍ଚ ରୁଚିଜ୍ଞାନ ଓ ସରକାରୀ ଭାଷାର ଭଙ୍ଗୀ ନ ମାନି ସେ ବହୁଦୂର ଆଗେଇଗଲେ । ଯେଉଁ ସ୍ଥଳରେ ଅନ୍ୟ ଲାଟମାନେ ଲେଖନ୍ତେ "ଏ ବିଷୟରେ ମାନ୍ୟବର ସରକାର ତାଙ୍କର ଅସନ୍ତୋଷ ପ୍ରକାଶ କରିବାକୁ ବାଧ ହେଉଛନ୍ତି..." କ୍ୟାମ୍ପବେଲ ଲେଖିଲେ, "ଲାଟ ଏ ସବୁ ହଟପଟକୁ ଘୃଣା କରନ୍ତି ଏବଂ ଭବିଷ୍ୟତରେ ଏପରି ବାଜେ ଧରଣର ବ୍ୟବହାର ଯେ ଦେଖାଇବ ତାକୁ କଠୋର ଦଣ୍ଡ ଦେବେ ।" ଥରେ ସେ ତାଙ୍କର ଅଧୀନସ୍ଥ କର୍ମଚାରୀମାନଙ୍କୁ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ନିର୍ଦ୍ଦେଶନାମା ପଠାଇ ସେଥିରେ ଜଣାଇ ଦେଲେ ଯେ, ଥରେ ଗସ୍ତ ସମୟରେ ସେ ଗୋଟିଏ ଅଞ୍ଚଳର ସହକାରୀ କଲେକ୍ଟରଙ୍କୁ ସାକ୍ଷାତ କରି ଦେଖିଲେ ଯେ ସେ ଖୁବ୍ ଭୋରରୁ ବୁଲି ବୁଲି ଗୁଡ଼ାଏ କୁକୁରଛୁଆ ଖେଳାଉଛନ୍ତି । ଏହା ଦେଖି ସେ ଖୁବ୍ ଚକିତ ହୋଇଛନ୍ତି । ଏହା ସମୟରେ ଦାରୁଣ ଅପଚୟ ବୋଲି ସେ ମନେ କରନ୍ତି। ଏହି ନିର୍ଦ୍ଦେଶନାମାଟି ବ୍ୟଙ୍ଗାତ୍ମକ ପତ୍ରିକାମାନଙ୍କୁ ଖୁବ୍ ଖୋରାକ ଯୋଗାଇଲା । ସେ ତରୁଣଟି ବିଚରା ଯେତେବେଳେ କୈଫିୟତ ଦେଲା ଯେ 'ଅଫିସ ସମୟ ବାହାରେ' ସେ ନିଜ ମନ ମୁତାବକ ଟିକିଏ ମଉଜ କରିବାରେ ବାଧା ନାହିଁ ବୋଲି ସେ ମନେ କରେ, କ୍ୟାମ୍ପବେଲଙ୍କ କ୍ରୋଧର ସୀମା ରହିଲା ନାହିଁ । ସେ ଉତ୍ତର ଦେଲେ, "ଅଫିସ୍ ସମୟ ବୋଲି କିଛି ଜିନିଷ ନାହିଁ । ଦିନ ଓ ରାତିର ସବୁ ସମୟରେ ସରକାର ଜଣେ ସରକାରୀ କର୍ମଚାରୀଙ୍କ ସେବା ଆବଶ୍ୟକ କରିପାରିବେ ।" ମୋର ପୂର୍ବବର୍ତ୍ତୀ ବାଲେଶ୍ୱର କଲେକ୍ଟର ଫ୍ରାଙ୍କ ବିଗନଲ ବିଚରା ଖୁବ୍ ଚତୁର ଓ ଉପସ୍ଥିତବୁଦ୍ଧିସମ୍ପନ୍ନ ହେଲେ ମଧ ତାଙ୍କର ସମୟାନୁବର୍ତ୍ତିତା କିମ୍ବା କାର୍ଯ୍ୟର ଧାରାବାହିକତା ନ ଥିଲା । ଫଳରେ ତାଙ୍କୁ ଯେଉଁ ଜିଲ୍ଲାର ଦାୟିତ୍ୱ ଦିଆହୁଏ ତାହା ନଷ୍ଟ ହୁଏ। ସେ ଲାଟଙ୍କ ଉପରୋକ୍ତ ଉକ୍ତି ସମ୍ପର୍କରେ କେତେକ ଚାତୁର୍ଯ୍ୟପୂର୍ଣ୍ଣ ପଂକ୍ତି ଲେଖିଥିଲେ । ବଡ଼ କବିତାଟାଏ; ସେଥିରୁ ଅଂଶବିଶେଷ ମୋର ମନେ ପଡ଼ୁଛି । ତାହା ହେଉଚି—

"ରାତି ସାରା ଚିନ୍ତାକରି ଦିନସାରା କରେ ଯେ ତଦନ୍ତ
ଭଲ ଜିଲ୍ଲାପାଳ ସେହୁ ଅଧିକାରୀ ଦିଅନ୍ତି ଇଙ୍ଗିତ ।
ସମାନ ଧୁରୀଣ, ଦକ୍ଷ ଅଟେ ପୁଣି ସେହି କିରାଟର
ଦିନସାରା ଚିଠି ଲେଖି ରାତିସାରା ପେଷେ ଯେ ଖବର ।"

ନିମ୍ନ ପ୍ରଦେଶମାନଙ୍କରେ କ୍ୟାମ୍ପବେଲ୍ ଆଦୌ ଚାକିରି କରିନଥିଲେ । ଅବଶ୍ୟ କିଛିକାଳ କଲିକତା ହାଇକୋର୍ଟରେ ବିଚାରପତି ଥିଲେ । ସେ ପଦବୀରେ ଥାଇ ଆଇନକାନୁନ ସମ୍ପର୍କରେ ତାଙ୍କର ଅଖାଡ଼ୁଆ ବିଚାର ଦ୍ୱାରା ଖୁବ୍ ବଦନାମ୍ ହେଲେ । ବଙ୍ଗଳାର ଶାସନ ବିଭାଗ ତାଙ୍କ କର୍ମକ୍ଷେତ୍ରରେ ପ୍ରକୃତ ପରିଚୟ ନୁହେଁ । ତାଙ୍କର ଅଧିକାଂଶ କାର୍ଯ୍ୟକାଳ ଉତ୍ତର ପଶ୍ଚିମ ସୀମାନ୍ତ ପ୍ରଦେଶରେ କଟିଥିଲା ଏବଂ ବଙ୍ଗଳାକୁ ଆସିବାର ଠିକ୍ ପୂର୍ବରୁ ସେ ମଧ୍ୟପ୍ରଦେଶର ଚିଫ୍ କମିଶନର ଥିଲେ । ସେ ଧରି ନେଇଥିଲେ ଯେ ବଙ୍ଗଳାରେ ଥିବା ସିଭିଲିଆନ୍‌ମାନଙ୍କ ମଧ୍ୟରୁ କେହି ଜଣେ ହେଲେ ତାଙ୍କ ସେକ୍ରେଟାରୀ ହେବାକୁ ଉପଯୁକ୍ତ ନୁହନ୍ତି । ତେଣୁ ମଧ୍ୟପ୍ରଦେଶରୁ ତାଙ୍କ ମନୋମତ ବ୍ୟକ୍ତି ସି.ଇ. ବର୍ଣ୍ଣାଡ଼ଙ୍କୁ ଆମଦାନୀ କଲେ ।

ବର୍ଣ୍ଣାଡ଼ ଥିଲେ ମୋର ସମସାମୟିକ ଏବଂ ହ୍ୟାଲିବରୀରେ ମୋର ପ୍ରତିଯୋଗୀ । ସେ ଥିଲେ ସାର୍ ଜନ୍ ଲରେନ୍ସଙ୍କ ପୂତୁରା ଏବଂ କେତେକାଂଶରେ ସେଇଥିପାଇଁ ତାଙ୍କର କ୍ଷିପ୍ର

ପଦୋନ୍ନତି ହୋଇଥିଲା । ଯାହାହେଉ ପାରିବାରପଣିଆଁ ମଧ ତାଙ୍କର ବହୁତ ଥିଲା । ନ ହେଲେ ଏତେ ଉଚ୍ଚ ସମ୍ପର୍କ ସତ୍ତ୍ୱେ ଯେତେ ଉପରକୁ ସେ ଉଠିଥିଲେ ସେଯାକେ ଯାଇପାରିନଥାନ୍ତେ ।

ବର୍ଣ୍ଣାଡ୍ ଥିଲେ ଅଭିଜ୍ଞ, ବିବେକବାନ୍, ନିରଳସ, ବିଚାରଶୀଳ ଏବଂ କୌଣସି ବିଷୟର ଭାବ ଗ୍ରହଣରେ ଚଞ୍ଚଳ କିନ୍ତୁ ସ୍ୱତଃସ୍ଫୂର୍ତ୍ତ ବା ନିଜସ୍ୱ ପ୍ରଜ୍ଞା ତାଙ୍କର ନ ଥିଲା । କ୍ୟାମ୍ପବେଲଙ୍କ ପରି ଜଣେ ନିଜତ୍ୱ ଶକ୍ତିସମ୍ପନ୍ନ ଓ ସୁଦକ୍ଷ କର୍ମଚାରୀଙ୍କ ପାଇଁ ବର୍ଣ୍ଣାଡ୍ ହିଁ ସେକ୍ରେଟେରୀ ହେବାକୁ ଉପଯୁକ୍ତ । କୌଣସି ଦୀର୍ଘ ଜଟିଳ ବିଷୟରେ ପ୍ରାଞ୍ଜଳ ବିଶ୍ଳେଷଣ ଆବଶ୍ୟକ ହେଲେ ବର୍ଣ୍ଣାଡ୍ କୌଣସି ଗୁରୁତ୍ୱପୂର୍ଣ୍ଣ ବିଷୟ ନ ଛାଡ଼ି, ମୂଳ ଉଦ୍ଦେଶ୍ୟରୁ ଆଦୌ ଲକ୍ଷ୍ୟଭ୍ରଷ୍ଟ ନ ହୋଇ ପରସ୍ପରବିରୋଧ ମତାମତରେ ଭଳିନଯାଇ ଗଦାଗଦା ନଥିପତ୍ର ଘାଣ୍ଟିବେ ଏବଂ ଦକ୍ଷତାପୂର୍ଣ୍ଣ ବିବରଣୀଟିଏ ପ୍ରସ୍ତୁତ କରିଦେବେ ଯାହାକି ଗୋଳମାଳିଆ ଅବସ୍ଥାକୁ ସୁଧାରିଦେଇପାରିବ ଏବଂ ଅନ୍ଧକାରରେ ଆଲୋକ ଦେଖାଇପାରିବ । ସାର ଜର୍ଜଙ୍କ ପକ୍ଷରେ ତାଙ୍କର ସାହାଯ୍ୟ ଅତି ମୂଲ୍ୟବାନ୍ ଥିଲା ଏବଂ ଯଦିଓ ବଙ୍ଗଳାରେ ତାଙ୍କରି ପରି ସୁଦକ୍ଷ ଆଠଦଶଜଣ ଥିଲେ ତଥାପି କ୍ୟାମ୍ପବେଲ୍‌ଙ୍କୁ ତାଙ୍କ ହାତ ପାଖରେ ଏପରି ଜଣେ ବ୍ୟକ୍ତି ଜଣାଥିବାରୁ ଏବଂ ବଙ୍ଗଳାର ଅଧିକାଂଶ ବିଷୟରେ ନିଜେ ଅଜ୍ଞ ଥିବାରୁ ତାଙ୍କୁ ହିଁ ନିଜ ସେକ୍ରେଟାରୀ ରୂପେ ବାଛିଲେ । ଏ ବିଷୟରେ ବଙ୍ଗଳାର ଲୋକମାନଙ୍କ ପ୍ରତି କେତେ ଅନ୍ୟାୟ କରାଯାଉଛି ତାହାର ବିଚାର ନ କରି ଜଣେ ବାହାର ଲୋକଙ୍କୁ ଏପରି ଏକ ଲୋଭନୀୟ ପଦବୀ ଅର୍ପଣ କରିବା ତାଙ୍କ ପକ୍ଷରେ କିଛି ଅବାସ୍ତବ ନ ଥିଲା ।

ସାର ଜର୍ଜଙ୍କ କାମ ଥିଲା ଅଦ୍ଭୁତ ପ୍ରକାରର । ତାଙ୍କର ଅଭିଜ୍ଞ କର୍ମଚାରୀମାନେ ଯେତେବେଳେ ପରାମର୍ଶ ଦିଅନ୍ତି ଯେ ଏଇ ପ୍ରଥାସବୁ ବହୁକାଳୁ ପ୍ରଚଳିତ ଅଛି, ଭଲ କାମ ଦେଇଚି ଏବଂ ପ୍ରଦେଶର ଆଞ୍ଚଳିକ ବୈଶିଷ୍ଟ୍ୟକୁ ଠିକ୍ ଖାପ ଖାଇଚି ସେ ସେଥିରେ ଆଦୌ ସନ୍ତୁଷ୍ଟ ହୁଅନ୍ତି ନାହିଁ । ବହୁବର୍ଷ ତଳେ ଅଯୋଧାରେ (ଇଂରେଜମାନଙ୍କଦ୍ୱାରା ଏହା Oudh ବୋଲି ଲିଖିତ ଓ ଉଚ୍ଚାରିତ ହେଉଥିଲା) ନିମ୍ନ ପାହ୍ୟାର କର୍ମଚାରୀ ଥିବାବେଳେ ସେ ଏକ ବହି ଲେଖିଥିଲେ । ସେଥିରେ ସେ ଶାସନର ସବୁ ବିଭାଗକୁ ଏକାବେଳକେ ଆକ୍ରମଣ କରିଥିଲେ । ପୋଲିସ୍, ଫୌଜଦାରୀ, ବିଚାରାଳୟ, ଦେବାନୀ, କାରାଗାର, ଭୂରାଜସ୍ୱ ଟିକସ ଆଦାୟ, ଘରଭଡ଼ା ନାଲିସ୍, ନିର୍ମାଣ ବିଭାଗ, ରାସ୍ତାଘାଟ, ଶିକ୍ଷା (Education) ଟିକାଦାନ (Vaccination) ପରିଚ୍ଛନ୍ନତା (sanitation) (ବିଗ୍‌ନୋଲଡ୍ ତାର କବିତାରେ ଲେଖିଚି ଆଉ ଯାହା ସବୁ ଇଂରାଜୀ ଶବ୍ଦ ation ରେ ଛିଡ଼ିବ)* ନଗର ପାଳିକା, ମଦ୍ୟ ଓ ଔଷଧ ଉପରେ ଅବକାରୀ କର, ଆମଦାନୀ ରପ୍ତାନୀ ଶୁଳ୍କ ଲୁଣ— ଏ ସମସ୍ତ ପର୍ଯ୍ୟାୟକ୍ରମେ ତାଙ୍କ ସନ୍ଧାନୀ ହସ୍ତର ସ୍ପର୍ଶ ଅନୁଭବ କଲେ । ତାଙ୍କ ଯୋଜନାନୁଯାୟୀ ପ୍ରସ୍ତୁତ କରୁଥିବା ଟିକିନିଖି କର୍ମବିବରଣୀରେ ପ୍ରକାଶିତ ହେଉଥିଲା ଯେ ସେ ଏ ବିଭାଗ କିମ୍ବା ସେ ବିଭାଗ କାମରେ ସନ୍ତୁଷ୍ଟ ନୁହନ୍ତି ଏବଂ ସେଥିପାଇଁ ଶ୍ରୀ ବର୍ଣ୍ଣାଡ୍ ଓ ଅନ୍ୟ କେତେକ କର୍ମଚାରୀଙ୍କୁ ନେଇ ଏ ବିଷୟରେ

* Education, Vaccination, Sanitation ପ୍ରଭୃତି ଇଂରାଜୀ ଶବ୍ଦ ସହିତ ଯମକ ପକାଇ କାମ୍ପବେଲଙ୍କୁ ଏପରି ବିଦ୍ରୂପ କରାଯାଇଛି ।

ତଦନ୍ତ କରି ରିପୋର୍ଟ ଦେବା ପାଇଁ ଏକ କମିଟି ନିଯୁକ୍ତ କରନ୍ତି । ବର୍ଣ୍ଣାଡ୍ ଯଥାସମୟରେ ଏକ ସୁବିସ୍ତୃତ ରିପୋର୍ଟ ଦିଅନ୍ତି ଯାହା ଉପରେ ମହାମାନ୍ୟ ଲାଟ ଆମୂଳ ପରିବର୍ତ୍ତନ ପାଇଁ କେତେକ ନିୟମ ଗଢ଼ି ଦିଅନ୍ତି। ସତ କହିବାକୁ ଗଲେ ଅବଶ୍ୟ କେତେକ କ୍ଷେତ୍ରରେ ସେ ଆଖିଦୃଶିଆ ଉନ୍ନତି ଆଣି ପାରିଥିଲେ ଯଦିଓ ଅନ୍ୟ କେତେକ କ୍ଷେତ୍ରରେ ଏହି ନୂତନ ପଦକ୍ଷେପ ଅତି ଅଦୂରଦର୍ଶିତା ହେଲା । କହିବା ବାହୁଲ୍ୟ ଯେ ତାଙ୍କର ଏଇ ଧରଣର କାମ ଦେଶୀୟ ଲୋକଙ୍କ ଅତି ନିଜସ୍ୱ ବିଶ୍ୱାସକୁ ଦଳି ଚକଟି ଦେଉଥିବାରୁ ସେମାନଙ୍କ ପକ୍ଷରେ ଏହା ଅତି ତିକ୍ତ ହୋଇପଡ଼ିଲା । ଫଳତଃ ସେମାନେ ଏହାକୁ ଘୃଣା କରିବାକୁ ଲାଗିଲେ ।

ବାଲେଶ୍ୱରର ନୀରବ କର୍ମଚଞ୍ଚଳହୀନ ପରିବେଶରେ ମୋର କାମ ବହୁବିଧ ଥିଲେ ମଧ ଗୁରୁଭାର ନ ଥିଲା । ଛୋଟ ଜିଲ୍ଲାଟିରେ ଏଇ ସୁବିଧା ଥିବାରୁ ମୁଁ ବ୍ୟକ୍ତିଗତ ଭାବରେ ସବୁ କାମ ଟିକିନିଖି ଦେଖାଚାହାଁ କରିପାରୁଥିଲି । ଏଣୁ କ୍ୟାମବେଲଙ୍କ ସଂସ୍କାରଗୁଡ଼ିକୁ ସଫଳ ଭାବରେ କାର୍ଯ୍ୟକାରୀ କରିବାର ସୌଭାଗ୍ୟ ଲାଭ କରି ତାଙ୍କୁ ସନ୍ତୁଷ୍ଟ କରିପାରିଥିଲି । ସେଥିରେ ମୋ ନିଜ ମନ ନ ମାନୁ ପଛକେ—ଏବଂ ଯେତେବେଳେ ମୋ ମନ ମାନୁ ନ ଥିଲା, ମୁଁ ସିଧା ପ୍ରକାଶ କରୁଥିଲି; କିନ୍ତୁ ଆଦେଶ ପାଳନ କରିବା ମୋ କର୍ତ୍ତବ୍ୟ ଥିବାରୁ ମୁଁ ବିଶ୍ୱସ୍ତ ଭାବରେ ପାଳନ କରୁଥିଲି ଏବଂ କ୍ୟାମବେଲ ଏଥିରେ ସନ୍ତୁଷ୍ଟ ଥିଲେ । ଏହି ସମୟରେ ମୋର 'ତୁଳନାତ୍ମକ ବ୍ୟାକରଣ' ବହିଟିର ପ୍ରଥମ ଖଣ୍ଡ ପ୍ରକାଶ ପାଇଲା । ଏ ଖଣ୍ଡଟି ସେ ସହୃଦୟତାର ସହ ଗ୍ରହଣ କରିଥିଲେ ଏବଂ ଏପରି ଏକ ଆବଶ୍ୟକୀୟ କାର୍ଯ୍ୟରେ ରାଜକର୍ମଚାରୀମାନେ ସେମାନଙ୍କର କିଛି କିଛି ସମୟ ବ୍ୟୟ କରିବାରେ ତାଙ୍କର କିଛି ନିଷେଧ ନାହିଁ ବୋଲି କହି ଖୁବ୍ ଆନ୍ତରିକତା ଦେଖାଇଥିଲେ । ଇଂଲଣ୍ଡ ଓ ୟୁରୋପରେ ମୋର ବ୍ୟାକରଣ ବହିଟି ଆଦୃତ ଓ ଉତ୍ତମ ସମାଲୋଚିତ ହୋଇଥିଲା ଏବଂ ଜଣେ ଭାଷାତତ୍ତ୍ୱଜ୍ଞ ଭାବରେ ମୋର କିଛି ସୁନାମ ବଢ଼ାଇ ଥିଲା ।

ଭାଷା କାମ କରିବା ପାଇଁ ସମୟ ପାଇବା ଥିଲା ବଡ଼ କଠିନ । ମୋର ଅଫିସ କାମର ଭାର ଯେ ଏହାର କାରଣ ତାହା ନୁହେଁ । ମୋର ସ୍ଥାନରେ ଥିବା ଲୋକେ ସବୁ ସମୟରେ ଏଇ ସବୁ ବାଧାବିଘ୍ନର ମୁହାଁମୁହିଁ ହୁଅନ୍ତି । ତଥାପି ପ୍ରାୟ ପ୍ରତ୍ୟେକ ଦିନର କିଛି ସମୟ ମୋର ବ୍ୟାକରଣ ପାଇଁ ଓ ୟୁରୋପୀୟ ଭାଷାମାନଙ୍କ ବିଷୟରେ ମୋର ସାମାନ୍ୟ ଜ୍ଞାନ ପରିସରକୁ ବଢ଼ାଇବା ପାଇଁ ବ୍ୟୟ କରିପାରୁଥିଲି । ଥରକେ ଗୋଟିଏ ଭାଷାକୁ ନେଇ ତା' ଉପରେ ମାସେ ବା ଦୁଇ ମାସ ଲାଗି ପଡ଼ୁଥିଲି । ତା'ପରେ ଆଉ ଗୋଟିକୁ ଧରୁଥିଲି । ଥରେ ଶୀତ ଋତୁରେ ମୁଁ ମୂଳ ସ୍ପେନୀୟରୁ ଡନ୍ କ୍ୟୁଇକସୋ ପଢ଼ିଗଲି ଏବଂ ଏର୍ସିଲାଙ୍କ ଦୀର୍ଘ ଏବଂ କିମ୍ଭୂତ କ୍ଲାନ୍ତିକର କବିତା 'ଲା ଆରାକାନା'ର ବହୁ ଅଂଶ ପଢ଼ିଲି । ଶେଷୋକ୍ତ ଗ୍ରନ୍ଥରେ ଥିବା ହାମ୍‌ବୋଲ୍‌ଟଙ୍କ କସ୍‌ମସ୍‌ର ବିସ୍ତୃତ ବର୍ଣ୍ଣନା ପଢ଼ିଲା ପରେ ମୁଁ ନିରାଶ ହେଲି । ଆଉଥରେ ଗେଟେ, ଟାସୋ ଓ ବାଲ୍‌ଜାକ୍‌ରୁ କିଛି ଦେଖିଲି ଅଦ୍ଭୁତ ମିଶ୍ରଣ ! ବ୍ୟାକରଣ ଥିଲା ମୋର ବେଶି ଦରକାର । ମୋର ତୁଳନାତ୍ମକ ବ୍ୟାକରଣ ଲେଖିବା ପାଇଁ ସେହି ବିଷୟକ ଜର୍ମାନ ଲେଖକମାନଙ୍କ ଅନୁଧ୍ୟାନ ଆବଶ୍ୟକ ଥିଲା । ବିକ୍ଷ, ଗ୍ରୀନ୍ ଓ ପୋଟ ପ୍ରଭୃତିଙ୍କୁ ବହୁତ ଘାଣ୍ଟିବାକୁ ପଡ଼ିଲା । ସେ ସବୁ ପରେ ଯେତେବେଳେ

ରେଭ୍ନ ସାଞ୍ଚୋ କିମ୍ୱା ଏଲସିଡ଼୍ କ୍ୟାମ୍ପିଡ଼ରଙ୍କ ଅତି ପୁରାତନ ସ୍ପେନୀୟ ବ୍ୟାଲାଡ୍ ପଢୁଥିଲି ସେତେବେଳେ ବେଶ୍ ହାଲୁକା ଲାଗୁଥିଲା । ସେତେବେଳେ ଅବଶ୍ୟ ରାଜସ୍ୱ ଆଦାୟର କିମ୍ୱା ଅପରାଧ ଅନୁସନ୍ଧାନର କୌଣସି ଜଟିଳ ସମସ୍ୟା ପହଞ୍ଚିଗଲେ ଅନେକ ସମୟରେ ଏ ଉଭୟ ପ୍ରକାର ଗ୍ରନ୍ଥ ଆଡ଼େଇ ରଖି ଦେବାକୁ ପଡୁଥିଲା । ଏହି ସମୟରେ ମୋର ମନ ଓ ତାର କ୍ରିୟାର ଏକ ଅପୂର୍ବ ଅନୁଭୂତି ମୁଁ ପାଉଥିଲି ।

ପ୍ରାୟ ଏହି ସମୟରେ ମୁଁ ସାପ୍ତାହିକ ଇଣ୍ଡିଆନ ଅବଜରଭରର ଜଣେ ଧାରାବାହିକ ଲେଖକ ହୋଇଗଲି । ଏହି ସାପ୍ତାହିକଟି ଶାସନ ଓ ସାମରିକ ବିଭାଗର ଅଳ୍ପ କେତେକ ପ୍ରତିଭାବାନ୍ ବ୍ୟକ୍ତି, କେତେକ ଶିକ୍ଷାବିତ୍ ଓ ପ୍ରସିଦ୍ଧ ଆଇନଜୀବୀଙ୍କ ପୃଷ୍ଠପୋଷକତାରେ ପ୍ରତିଷ୍ଠିତ ହୋଇଥିଲା । ଏହାର ଅଧିକାଂଶ ଲେଖା ଚାତୁର୍ଯ୍ୟପୂର୍ଣ୍ଣ, ବୁଦ୍ଧିଦୀପ୍ତ ଓ ଅବଶ୍ୟ ଖୁବ୍ ବିଦ୍ରୂପାତ୍ମକ । କାଗଜଟି ଖୁବ୍ ଜନପ୍ରିୟ ହେଲା ଏବଂ ପ୍ରାୟ ଦୁଇବର୍ଷ ପର୍ଯ୍ୟନ୍ତ ଭଲ ଚାଲିଲା । ଅତି ଶୀଘ୍ର ଏହା କେତେକ ପଦସ୍ଥ କର୍ମଚାରୀଙ୍କ କ୍ରୋଧର ଶିକାର ହୋଇପଡ଼ିଲା, କାରଣ ଏଥିରେ ଲର୍ଡ଼ ମେୟୋ ସରକାରଙ୍କ କେତେକ କର୍ମପନ୍ଥା, ବିଶେଷ କରି ତାଙ୍କର ଦୁଇଜଣ ବିଶିଷ୍ଟ ଉପଦେଷ୍ଟା ସାର ଜନ ଷ୍ଟ୍ରାଚି ଓ ସାର ରିଚାର୍ଡ଼ ଟେମ୍ପଲ୍‌ଙ୍କ ପ୍ରତି ତିକ୍ତ ବିଦ୍ରୂପାତ୍ମକ ଆକ୍ରମଣ ହୋଇଥିଲା । ଯଦିଓ ମୁଁ କୌଣସି ରାଜନୀତିକ ଲେଖା ଲେଖି ନ ଥିଲି, ତଥାପି କେତେ ବର୍ଷ ପରେ ଟେମ୍ପଲ୍ ଯେତେବେଳେ ବଙ୍ଗଳାକୁ ଲାଟ ହୋଇ ଆସିଲେ ସେ କାଗଜ ସହ ମୋ ସମ୍ପୃକ୍ତି ହିଁ ମୋର ବହୁତ କ୍ଷତି ଘଟାଇଲା । ୧୮୭୨ ରେ ସରକାରୀ କାର୍ଯ୍ୟକ୍ରମର ନିର୍ଲିପ୍ତ ଓ ମୃଦୁ ସମାଲୋଚନା କରିବାର ଅଧିକାର ମଧ ସରକାରୀ କର୍ମଚାରୀମାନଙ୍କର ନ ଥିଲା । ଅର୍ଥ ଓ ବୈଦେଶିକ ନୀତି ସଂପର୍କରେ ଅବଜରଭରରେ ପ୍ରକାଶ ପାଇଥିବା ଲେଖା ଇଂଲଣ୍ଡରେ ଅନୁମୋଦନର ସୀମାରେଖା ଭିତରେ ବୋଲି ସାଧାରଣତଃ ବିଚାର କରାଯାଏ; କିନ୍ତୁ ଭାରତରେ ଆମ ଶାସକମାନେ ସ୍ପର୍ଶକାତର ଏବଂ ପର୍ଯ୍ୟାୟକ୍ରମେ ସେମାନେ ଅବଜରଭରର ଲେଖକମାନଙ୍କୁ ଜଣାଇ ଦେଲେ ଯେ ଏଥିରେ ଆଉ ଲେଖାଲେଖି କରିବା ନିରାପଦ ନୁହେଁ । ତେଣୁ ସେମାନେ ଆମକୁ ଗୋଟିଏ ଗୋଟିଏ କରି ଖସାଇଲେ । ଆମର ସଂସ୍ଥାରେ ଥିବା ସେତେବେଳର ଜେଲ୍ ଇନିସ୍‌ପେକ୍ଟର ଜେନେରାଲ୍ ବିଚରା ଉଇଲଫ୍ରେଡ଼୍ ହିଲିଙ୍କୁ ଏତେ ନିର୍ଯାତିତ କରାଗଲା ଯେ, ସେ ଭଗ୍ନ ହୃଦୟରେ ମୃତ୍ୟୁ ବରଣ କଲେ । ମୁଁ ଓ ଆଉ କେତେଜଣ ମଧ ନିର୍ଦ୍ଦୟ ଭାବରେ ନିର୍ଯାତିତ ହେଲୁ । ଓଡ଼ିଶାର କୃଷକ, ନୂଆ ପଥକର, ମୋ ନିଜ ସଂସ୍ଥାରେ ଥିବା ଲୋକମାନଙ୍କ ତାଲିମ ଏବଂ ଆଉ କେତେକ ସାମାଜିକ ସମସ୍ୟା ଉପରେ ମୁଁ କେତେଗୁଡ଼ିଏ ଲେଖା ଲେଖିଥିଲି । କ୍ରମେ କ୍ରମେ ଏହି ପତ୍ରିକାଟିରେ ରାଜନୀତିକ ପ୍ରଭାବ କ୍ଷୀଣତର ହୋଇ ଖାଣ୍ଟି ସାହିତ୍ୟ ବିଭାଗ ବଳିଷ୍ଠ ହୋଇଗଲା । ତା'ପରେ ମୁଁ ସେମାନଙ୍କୁ ଭାରତର ଭାଷାମାନଙ୍କ ସମ୍ପର୍କରେ କେତେକ ଦୀର୍ଘ ଲେଖା ଦେଲି । ସେଥିରେ ପ୍ରତ୍ୟେକ ମଧ୍ୟଯୁଗୀୟ ଲେଖକଙ୍କର ସଂକ୍ଷିପ୍ତ ପରିଚୟ ସହ ସେମାନଙ୍କ କାବ୍ୟକୃତିର କ୍ଷୁଦ୍ର ଅଂଶ ମଧ ରହିଥିଲା । ମୋରିସଙ୍କର 'ଲଭ ଇନ୍ ଏନଫ୍' ଓ ଅନ୍ୟାନ୍ୟ ଲେଖାର ଆଲୋଚନା ମଧ ମୁଁ ସେଥିରେ କରିଥିଲି । ପତ୍ରିକାଟିର କ୍ରମଅଧଃପତନ ହୋଇ ୧୮୭୩ ବେଳକୁ ତାହା ବନ୍ଦ ହୋଇଗଲା ।

ଆଗରୁ କହିଛି ଯେ ପଥକର ବିଷୟରେ କେତେକ ଲେଖା ଲେଖିଥିଲି । ଏହା ସମ୍ପର୍କରେ ସେତେବେଳେ ସରଗରମ ଆଲୋଚନା ଚାଲିଥିଲା ଏବଂ ଯେତେ ଗଣ୍ଡଗୋଳ ହେଲା ତା'ଠାରୁ ବେଶି ହେବା ଆଶଙ୍କା ଥିଲା । ପ୍ରକୃତ ପକ୍ଷରେ ଯେତେବେଳେ କୌଣସି ପଦ୍ଧତି ଥରେ ସ୍ୱୀକୃତ ହୋଇଗଲା, ଆଉ ତା' ଉପରେ ବାଦାନୁବାଦ କରିବାର କିଛି ନାହିଁ ଏବଂ ଏହି ଆଇନ ବିଧାନଶାସ୍ତ୍ରରେ ସ୍ଥାନ ଲାଭକରି ଲୋକମାନଙ୍କୁ ଦିଆଗଲା । ବିଶେଷ ପାଟି ତୁଣ୍ଡ ହେଲାନାହିଁ ; ଦେଶୀ ଖବରକାଗଜମାନେ ଯାହା କିଛି ଗଣ୍ଡଗୋଳ ତୋଳାଇବାକୁ ଚେଷ୍ଟା କରିଥିଲେ ।

କଥାଟା ହେଲା ଏହିପରି—ବଙ୍ଗଳାର ଜମିଦାରମାନେ ଚିରସ୍ଥାୟୀ ବନ୍ଦୋବସ୍ତ ବଳରେ ଏକ ନିର୍ଦ୍ଦିଷ୍ଟ କରରେ ସବୁଦିନ ପାଇଁ ନିଜ ଜମିଦାରୀ ଉପରେ ଅଧିକାରି ସାବ୍ୟସ୍ତ କରି ( ୧୭୯୩ର ସେଇ ଗଣ୍ଡଗୋଳିଆ ପରିସ୍ଥିତିରେ ଅନ୍ୟର ଜମିଦାରୀକୁ ମଧ୍ୟ ଯେତେ ପାରିଲେ ମାଡ଼ିବସି) କଳ୍ପନା କରି ନେଲେ (କିମ୍ବା ସେମାନେ ସେପରି କଳ୍ପନା କରିଥିଲେ ବୋଲି ସେମାନଙ୍କ ଓକିଲମାନେ କହିଲେ) ଯେ ତା'ଦ୍ୱାରା ଶାସନ ଖର୍ଚ୍ଚ ବାବଦକୁ ସରକାର ଆଉ କୌଣସି ଦେୟ ସେମାନଙ୍କ ଠାରୁ ଦାବି କରିବେ ନାହିଁ ବୋଲି ଚୁକ୍ତି କରିଦେଇଛନ୍ତି । ସେମାନେ ଭାବୁଥିଲେ ଯେ ସମସ୍ତ ପ୍ରକାର ଟିକସ୍ ଶୁଳ୍କ ଓ କରରୁ ସବୁଦିନ ପାଇଁ ସେମାନଙ୍କୁ ଛାଡ଼ି ଦିଆଯାଇଛି । ବଙ୍ଗଳାରେ ରାସ୍ତା ତିଆରି ପାଇଁ ଅର୍ଥ ଦରକାର ପଡ଼ିବାରୁ ଏବଂ ଏହି ବ୍ୟୟବହୁଳ କାର୍ଯ୍ୟ ପାଇଁ ଅର୍ଥର ଅଭାବ ଥିବାରୁ ଅଧିକ କର ବସିବା ଦରକାର ହେଲା । ତେଣୁ ଲାଟଙ୍କ କାଉନସିଲ୍‌ରେ ଏଥି ନିମିତ୍ତ କର ବସାଇବାର ବନ୍ଦୋବସ୍ତ କରିବା ପାଇଁ ଏକ ବିଲ୍ ଆଗତ କରାଗଲା । ଜମିଦାରି ଭୋଗାଧିକାରରେ ଥିବା ଜମି ଏବଂ ଜୋତବନ୍ଦିରୁ ପ୍ରାପ୍ତ ବାର୍ଷିକ ଲାଭାଂଶ ଉପରେ କେତେକ ହାରରେ ଏହି କର ବସିବା କଥା ଏବଂ ଜମି ମାଲିକ କିମ୍ବା ତାଙ୍କ ଅଧୀନରେ ଜମିର ଭୋଗାଧିକାର କରୁଥିବା ବ୍ୟକ୍ତି ଏବଂ ଜମିର ପ୍ରକୃତ ରଇତ ଏ କର ଦେବାର କଥା । ସଙ୍ଗେ ସଙ୍ଗେ ହଲ୍ଲା ଉଠିଲା ଯେ ସରକାର ଚିରସ୍ଥାୟୀ ବନ୍ଦୋବସ୍ତ ସମୟରେ କରିଥିବା ଚୁକ୍ତି ଲଙ୍ଘନ କରୁଛନ୍ତି ଏବଂ କାଗଜ କଲମର ଯୁଦ୍ଧ ଜୋରରେ ଆରମ୍ଭ ହୋଇଗଲା । ମୁଁ ଏଥିରେ କୌଣସି ଅଂଶ ଗ୍ରହଣ କରି ନ ଥିଲି, କାରଣ ପ୍ରଥମରୁ ମୋର ମତ ଯେ ଏ ଧରଣର ହଇଚଇର କୌଣସି ଭିତ୍ତି ନାହିଁ ବରଂ ଅତି ସ୍ପଷ୍ଟ ଐତିହାସିକ ସତ୍ୟର ଏହା ବିରୋଧୀ । ପୂର୍ବ ସରକାର ନିଜେ ଏବଂ ନିଜ ଉତ୍ତରାଧିକାରୀଙ୍କ ପକ୍ଷରୁ ଚୁକ୍ତି କରିଛନ୍ତି ଯେ ସେ ଜମିଦାରମାନଙ୍କଠାରୁ କୌଣସି କାଳରେ ହେଲେ ଗୋଟିଏ ବିଷୟରେ ଅର୍ଥାତ୍ ଜମି ଉପରେ ଅଧିକ ଦାବି କରିବେ ନାହିଁ; କିନ୍ତୁ ସେମାନଙ୍କଠାରୁ ଅନ୍ୟ ବାବଦରେ ଅଧିକ ଆଦାୟ କରିବାର କୌଣସି ବାଧା ନ ଥିଲା । କିନ୍ତୁ ପ୍ରତ୍ୟେକ ବ୍ୟକ୍ତିଠାରୁ କେତେ ଆଦାୟ ହେବ ତାହା ନିର୍ଦ୍ଧାରଣ କରିବାର ପଦ୍ଧତିହିଁ ବିରୋଧକୁ ବେଶି ରଙ୍ଗ ଦେଲା । ଜମିଦାରୀରୁ କେତେ ଆୟ ହେଉଛି ତାହା ନିର୍ଦ୍ଧାରଣ କରିବାକୁ ହେବ ଏବଂ ତା' ଉପରେ କର ଧାର୍ଯ୍ୟ କରିବାକୁ ହେବ । ଜମିଦାରମାନଙ୍କୁ ସେମାନଙ୍କ ଆୟ ହିସାବ ଦାଖଲ କରିବାକୁ କୁହାଯାଏ ଏବଂ ମିଛ ହିସାବ ଦେଲେ ଫୌଜଦାରୀ ମକଦ୍ଦମାରେ ପଡ଼ିବା ଆଶଙ୍କା ସେମାନଙ୍କଠାରୁ ସତକଥା ଆଦାୟ କରାଇବା ପାଇଁ ଯଥେଷ୍ଟ ହେବ ବୋଲି ଆଶା କରାଯାଉଥିଲା । ଜମିଦାରଙ୍କୁ ମଧ୍ୟ ତାଙ୍କ ପ୍ରଜା ଓ ରଇତଠାରୁ ସେମାନଙ୍କ ଦେୟ ଅସୁଲ କରି, ନିଜ ପରିଶ୍ରମ ବାବଦ ଅଳ୍ପ କିଛି କମିଶନ କାଟିରଖି ବାକି ଅର୍ଥ କଲେକ୍ଟରଙ୍କ ପାଖରେ ପୈଠ କରିବା ପାଇଁ ଅନୁମତି ଦିଆଯାଉଥିଲା ।

ଏହି ଯୋଜନାରେ ଗୁଡ଼ିଏ ଦୋଷ ରହିଗଲା । ଯେ ଜମିଦାରଙ୍କୁ ପ୍ରକୃତରେ ଚିହ୍ନି ନ ଥିବା ଲୋକ କେବଳ ଆଶା କରିବ ଯେ ସେମାନେ ଠିକ୍ ଠିକ୍ ହିସାବ ପଠାଇ ଦେବେ । ସେମାନଙ୍କ ମଧ୍ୟରୁ ଅନେକ ବେହୁସିଆରୀ, ଅଳସୁଆ ଓ ସେମାନଙ୍କର ଅବିବେକୀ ଗୋଡ଼ାଣିଆମାନଙ୍କ ହାତରେ ଖେଳକୁଣ୍ଢେଇ ପରି । ଆଉ ଅନେକ ଥିଲେ କୌଶଳୀ ଅର୍ଥପିପାସୁ । ସେମାନଙ୍କ କଥାରେ କୌଣସି ଆସ୍ଥା ସ୍ଥାପନ କରାଯାଇ ନ ପାରେ । ଫୌଜଦାରୀ ମକଦ୍ଦମାର ଧମକ ମଧ୍ୟ କେବଳ ବହ୍ୱାରମ୍ଭେ ଲଘୁକ୍ରିୟା ପରି, କାରଣ ଦୋଷରେ ସେମାନଙ୍କୁ ଦଣ୍ଡ ଦେବାକୁ ହେଲେ ପ୍ରଥମେ ସେମାନଙ୍କ ହିସାବକୁ ଭୁଲ ବୋଲି ପ୍ରମାଣ କରିବାକୁ ହେବ । ଦ୍ୱିତୀୟରେ ସେ ସବୁ ହିସାବ ଇଚ୍ଛାକୃତ ଭାବରେ ଗଣ୍ଡଗୋଳିଆ କରାହୋଇଥାଏ । ପ୍ରଥମଟିକୁ ପ୍ରମାଣ କରିବା ପାଇଁ ଆମ ପାଖରେ କିଛି ହିସାବ ନ ଥାଏ, କାରଣ ସେମାନଙ୍କ ଜମିଦାରୀ ପରିଚାଳନା ଉପରେ କୌଣସି ସରକାରୀ ନିୟନ୍ତ୍ରଣ ବା ଅଙ୍କୁଶ ନ ଥିଲା ଏବଂ ଦ୍ୱିତୀୟ କ୍ଷେତ୍ରରେ ସେ ଅତି ସହଜରେ ଗାଁର ଅଧାଅଧି ଲୋକଙ୍କୁ ଅଣାଇ ସାକ୍ଷୀ ଦିଆଇ ପାରିବେ ଯେ ସେ ଭାରି ବେହିସାବୀ, ସରଳିଆ ଲୋକ; ଜୀବନସାରା କିଛି ହିସାବ ରଖି ନାହିଁ ଏବଂ ତା'ର ଆୟ କେତେ ସେ ବିଷୟରେ ତା'ର ବିନ୍ଦୁମାତ୍ର ଧାରଣା ନାହିଁ; ତେଣୁ ଯେଉଁ ହିସାବ ଦାଖଲ କରାଯାଇଛି, ତାହା ସବୁ ଅନୁମାନ ଉପରେ ଏବଂ ଜାଣିଶୁଣି ଭୁଲ ତଥ୍ୟ ଦିଆଯାଇ ନାହିଁ । ପୁନଶ୍ଚ ରୟତମାନେ ଜମିଦାରମାନଙ୍କ ଉପରେ ଏତେ ନିର୍ଭରଶୀଳ ଯେ ଜମିଦାରମାନଙ୍କୁ ଦର ଆଦାୟର ଅଧିକାର ଦେବା ଅର୍ଥ ଜୋର ଜୁଲମର ଦ୍ୱାରା ଉନ୍ମୁକ୍ତ ଦେବା ।

ଇଣ୍ଡିଆନ୍ ଅବଜରଭରରେ ମୁଁ ଏହି ସବୁ ବିଷୟ ବର୍ଣ୍ଣନା କରି ଏହିପରି ଏକ ଜମିଦାରଙ୍କ ଇଲାକାରେ ଘଟିଥିବା ଘଟଣାକୁ ଗୋଟିଏ କାଳ୍ପନିକ ଇତିହାସ ପରି ଲେଖିଥିଲି ଏବଂ ସେଥିପାଇଁ ଜମିଦାର ଚରିତ୍ରଟିଏ ସୃଷ୍ଟି କରିଥିଲି । ଆହୁରି କେତେକ ଲେଖାରେ ମଧ୍ୟ ମୁଁ ରଇତମାନଙ୍କ ବାସ୍ତବ ଅବସ୍ଥା ଓ ଜମିଦାରଙ୍କ ସହିତ ସେମାନଙ୍କ ସମ୍ପର୍କକୁ ପ୍ରାଞ୍ଜଳ ଭାବରେ ଉଲ୍ଲେଖ କରିଥିଲି । ସେତେବେଳେ ହଇଚଇ ସୃଷ୍ଟି କରିଥିବା ପ୍ରବନ୍ଧଗୁଡ଼ିକର ଲେଖକ ଯେ ମୁଁ ଏକଥା ସାର ଜର୍ଜ କ୍ୟାମ୍ପବେଲ ଜାଣିଥିଲେ ବୋଲି ପରେ ଜଣାପଡ଼ିଲା ।

ସେ ଯାହାହେଉ ମୁଁ ମନ ମଧ୍ୟରେ ସରକାରଙ୍କ ନୀତିକୁ ଅନୁମୋଦନ କରୁନଥିଲେ ମଧ୍ୟ ଆଦେଶ ପାଳନ ମୋର କର୍ତ୍ତବ୍ୟ । ପଥକର ପ୍ରଥମ ପ୍ରବର୍ତ୍ତନ କରିବାପାଇଁ ମୋର ଛୋଟ ଜିଲ୍ଲା ବାଲେଶ୍ୱରକୁ ବଛା ଯାଇଥିବାରୁ ମୁଁ ପୂରା ଦମରେ ଲାଗିପଡ଼ିଲି ଏବଂ ଦେୟ ପରିମାଣ ନିର୍ଦ୍ଧାରଣ କରି ଜିଲ୍ଲାଟି ଯେ ପଥକର ଦେବାପାଇଁ ପ୍ରସ୍ତୁତ ହୋଇଗଲା ସେକଥା ସରକାର ଯେବେ ଆଶା କରୁଥିଲେ ତା'ପୂର୍ବରୁ ଜଣାଇ ଦେଲି । ଲାଟ ଏଥିପାଇଁ ମୋତେ ଆନ୍ତରିକ ଧନ୍ୟବାଦ ଜଣାଇଥିଲେ । ଏ ବିଷୟ କାର୍ଯ୍ୟକାରୀ କଲାବେଳେ କଅଣ ସବୁ ବାସ୍ତବ ଅସୁବିଧା ଉପୁଜି ପାରେ ସେ ସମ୍ପର୍କରେ ସେ ଓ ରେଭିନ୍ୟୁ ବୋର୍ଡ଼ ମୋ ସହିତ ବାରମ୍ବାର ଆଲୋଚନା କରୁଥିଲେ ଏବଂ ମୋର ବିବରଣୀକୁ ଆଦର୍ଶ ରୂପେ ଗ୍ରହଣ କରିବାପାଇଁ ଅନ୍ୟ ଜିଲ୍ଲାମାନଙ୍କରେ ବୁଲା ଯାଇଥିଲା । ମଝିରେ ମଝିରେ ଘଟୁଥିବା ଏହିପରି କୃତିତ୍ୱମୂଳକ ଘଟଣା ଭାରତର ଅଭ୍ୟନ୍ତରସ୍ଥ କୌଣସି ଏକ ଜିଲ୍ଲାରେ ଏକାକୀ କାମ କରୁଥିବା ଜଣେ କର୍ମଚାରୀକୁ ସାହସ ଦିଏ ।



# ଷୋଡ଼ଶ ପରିଚ୍ଛେଦ

## ବାଲେଶ୍ୱର : ୧୮୭୧-୭୩

ଏଠାରେ ଆମର ପାରିବାରିକ ଜୀବନ ସମ୍ପର୍କରେ କିଛି କୁହାଯାଉ । ବାଲେଶ୍ୱର ନଦୀର ମୁହାଣରେ ସହରଠାରୁ ଷୋହଳ ମାଇଲ ଦୂରରେ ବଳରାମ ଗଡ଼ି ନାମରେ ପୁରୁଣା ଭଙ୍ଗା ଘରଟିଏ ଥିଲା । ଇଂରେଜମାନଙ୍କ କାରଖାନା ଭାବରେ ନାଁ ଡାକ ସେଇ ଘରକୁ 'ଅନ୍ଧକୂପ'※ ରୁ ବର୍ତ୍ତିଥିବା ଲୋକେ ଆଶ୍ରୟ ପାଇଁ ପଳାଇଆସିଥିଲେ ।

ବାଲେଶ୍ୱର ସମୁଦ୍ରର ଏତେ ନିକଟ ହେଲେହେଁ ସମୁଦ୍ର କୂଳ ଓ ସହର ମଧ୍ୟରେ ଜଳବାୟୁରେ ବେଶ୍ ପାର୍ଥକ୍ୟ ଅଛି । ବହୁଦିନରୁ ୟୁରୋପୀୟ ଅଧିବାସୀଗଣ ଖରାଦିନେ କେତେ ସପ୍ତାହ ପାଇଁ ଚାନ୍ଦିପୁର ନାମକ ସ୍ଥାନରେ ସମୁଦ୍ର କୂଳର ବାଲିସ୍ତୂପ ନିକଟରେ ଥିବା ଦୁଇଟି ଛୋଟ ବଙ୍ଗଳାଘରକୁ ବାସ କରିବାକୁ ଆସୁଥିଲେ । କିନ୍ତୁ ମୋର ପୂର୍ବବର୍ତ୍ତୀ କଲେକ୍ଟରଙ୍କ ସମୟରେ ଏହି ବଙ୍ଗଳା ଦୁଇଟି କଲିକତାର ଜଣେ ଡାକ୍ତରଙ୍କ ହାତରେ ପଡ଼ିଲା । ତାଙ୍କ ମୁଣ୍ଡରେ ଢୁକିଲା ଯେ ସେ ଏହିଠାରେ ଗୋଟିଏ ଲୋକପ୍ରିୟ ସମୁଦ୍ରତୀର ସ୍ୱାସ୍ଥ୍ୟନିବାସ ଗଢ଼ିବେ । ତେଣୁ ସେ ଏହି ଛୋଟ ଜାଗାଟାର ଅଦ୍ଭୁତ ସ୍ୱାସ୍ଥ୍ୟକର ପ୍ରଭାବ ଇତ୍ୟାଦି ବିଷୟରେ ମନୋମୁଗ୍ଧକର ଚିତ୍ର ଓ ବୈଜ୍ଞାନିକ ମତାମତ ଦେଇ ଆକର୍ଷଣୀୟ ବିଜ୍ଞାପନ ପ୍ରକାଶ କଲେ । କିନ୍ତୁ କଲିକତାରୁ ସେଠାକୁ ଯିବାପାଇଁ ବାଟଘାଟ ନ ଥିବାରୁ ଏବଂ ସେଠାକୁ ଗଲେ ପିଇବା ପାଣି ଓ ଦରକାରି ଜିନିଷପତ୍ର ପାଇଁ ଦୋକାନ ବଜାର ନ ଥିବାରୁ କଲିକତା ଲୋକେ ପର୍ବତ ଆଡ଼କୁ ଯିବାକୁ ପସନ୍ଦ କଲେ ଏବଂ ଯୋଜନାଟି ସଫଳ ହେଲା ନାହିଁ । ଯାହାହେଉ ଇତି ମଧ୍ୟରେ ସେ ଡାକ୍ତର ଜାଗାଟିର ପ୍ରଚାର ଫଳରେ ତାଙ୍କର କେତେକ କଲିକତିଆ ବନ୍ଧୁଙ୍କୁ ସେଠାକୁ ଯିବାକୁ ପ୍ରବର୍ତ୍ତାଇ ବଙ୍ଗଳା ଦୁଇଟିକୁ ଭଡ଼ାକୁ ଦେଇଦେଲେ । ଫଳତଃ ବାଲେଶ୍ୱରର ୟୁରୋପୀୟମାନେ ସେ ଦୁଇଟି ହରାଇଲେ । ନଦୀ ମୁହାଣରେ ଥିବା ପୁରୁଣା କାରଖାନାଘରଟାକୁ ଗ୍ରୀଷ୍ମାବକାଶ ଗୃହରୂପେ ବ୍ୟବହାର କରାଯାଇ ପାରେ ବୋଲି ମୋ ମନକୁ ପାଇଲା ଏବଂ ତାହାର ମାଲିକ ଜଣେ ଧନୀ ଜମିଦାର, ଏଥିରେ ସମ୍ମତହୋଇ ତାହାର ମରାମତି କରି ମୋତେ ଭଡ଼ା ଦେଲେ । ଗ୍ରୀଷ୍ମଋତୁ ଆସିବା ମାତ୍ରେ ଆମେ ସବୁ ସେଇଠିକି ଉଠିଯାଉ ।

ପୁରୁଣା ଘରଟି ତିନିଫୁଟ ଉଚ୍ଚ ମୂଳଦୁଆ ଉପରେ ତିଆରି । ସବୁ ଭାରତୀୟ ଘର ପରି ଏହା ମାତ୍ର ଏକ ମହଲା ଏବଂ ଏଥିରେ ତିନୋଟି ବଡ଼ ଓ ପାଞ୍ଚୋଟି ଛୋଟ କୋଠରି ଥିଲା ।

---

※ ଇଂରେଜ ଐତିହାସିକମାନଙ୍କଦ୍ୱାରା ପଲାସୀ ଯୁଦ୍ଧ ସମୟରେ ଅନ୍ଧକୂପ ହତ୍ୟାର ମନଗଢ଼ା କାହାଣୀ ଜନ୍ ବୀମ୍ସଙ୍କ ସମୟରେ ସତ୍ୟ ବୋଲି ଗୃହୀତ ହେଉଥିଲା ।—ସଂକଳକ ।

ବାହାର ଚାରିପଟ ଯାକ ଚଉଡ଼ା ବାରଣ୍ଡା ଏବଂ ଆଗପଟେ ସମୁଦ୍ର ମୁହାଁ ଗୋଟିଏ ପ୍ରଶସ୍ତ ବେଦୀ, ଯେଉଁଠିକି ଚଉଡ଼ା ପାହାଚମାନ ପଡ଼ିଚି ଗୋଟିଏ ଛୋଟ ଉଦ୍ୟାନକୁ । ତା ତଳକୁ ବଣୁଆ ଘାସପୂର୍ଣ୍ଣ ଓ ଅଳ୍ପ କେତେକ ଆମ୍ବ ଓ ତାଳଗଛ ଥାଇ ବିରାଟ ଏକ ପତିତ ଜମି । ତା'ରି ପାଖରେ ନଈଟା ସମୁଦ୍ର ଆଡ଼େ ବୋହୁଚି । ସାମ୍ନାରୁ ଅଧମାଇଲ ପର୍ଯ୍ୟନ୍ତ ଘାସ ପଡ଼ିଆ ଲମ୍ବିଛି ଗୋଟିଏ ଗୋଟିକିଆ ତାଳଗଛ ପର୍ଯ୍ୟନ୍ତ । ସେଇଠି ସମୁଦ୍ରରେ ନଦୀ ମିଶିଛି । ନଦୀ ଆରପଟେ ଦକ୍ଷିଣର ଚାନ୍ଦିପୁର, ସେଠାରୁ ମାଇଲିଏ ପର୍ଯ୍ୟନ୍ତ ଘାସପୂର୍ଣ୍ଣ ସରୁ ଧାଡ଼ିଏ ପାହାଡ଼ ଏବଂ ଆମ ପଛରେ ପଶ୍ଚିମ ଦିଗରେ ନୀଳଗିରି ପର୍ବତମାଳାର ସୌନ୍ଦର୍ଯ୍ୟ । ଆଠଜଣ ନାବିକ ବାହୁଥିବା ନୌକାଟିଏ ନିକଟରେ ଥାଏ ଏବଂ ସବୁଦିନ ସକାଳେ ସେମାନେ ଆମକୁ ନଦୀ ମୁହାଣ ପର୍ଯ୍ୟନ୍ତ ବାହିନିଅନ୍ତି । ସେଠାରେ ଆମେ ବେଳାର ବାଲିରେ ବହୁତ ବୁଲାବୁଲି କରୁ । ସନ୍ଧ୍ୟାବେଳେ ଛୋଟ ବଡ଼ ଅନେକ ଦେଶୀ ଜାହାଜ ଧଳା ମେଘ ପରି ପାଲ ଉଡ଼ାଇ ଦିଗ୍‌ବଳୟ ସୀମାରେ ଦେଖାଯାନ୍ତି ଏବଂ ନଦୀ ମଧ୍ୟକୁ ଆସି ଲଙ୍ଗର ଭିଡ଼ନ୍ତି । ଧୀବରମାନେ ଭଟା ସମୟରେ ଯାଇଥାଆନ୍ତି ଏବଂ ଜୁଆର ବେଳେ ଅତି ସ୍ୱାଦଯୁକ୍ତ ମତ୍ସ୍ୟ ସମ୍ଭାର ନେଇ ଫେରନ୍ତି । ସେ ମାଛ ଆମକୁ ଯଥେଷ୍ଟ ମିଳେ ।

ଜୀବନଟା ଏଠି ଥିଲା ଖୁବ୍ ଆମୋଦଦାୟୀ । ମୋ ସ୍ତ୍ରୀ ଏବଂ ପିଲାମାନେ ସେଠାରେ ବରାବର ରହିଲେ ଏବଂ ମୁଁ ପ୍ରତିଦିନ ସକାଳୁ କାମରେ ବାଲେଶ୍ୱରକୁ ଘୋଡ଼ାରେ ଯାଇ ସନ୍ଧ୍ୟାବେଳକୁ ଫେରିଆସେ । ବ୍ୟବହାର୍ଯ୍ୟ ପଦାର୍ଥ ଏବଂ ପିଇବା ପାଣି ବାଲେଶ୍ୱରରୁ ଡଙ୍ଗାରେ ଆଣିବାକୁ ପଡ଼େ । ଦୁର୍ଭାଗ୍ୟବଶତଃ ସେ ବର୍ଷ ୧୮୭୧ ରେ ପାଗ ଖୁବ୍ ଖରାପ ହେଲା । ସାଧାରଣତଃ ମାର୍ଚ୍ଚ ମାସରେ ଦକ୍ଷିଣ ପଶ୍ଚିମ ବାୟୁ ଉପକୂଳ ଓ ଉପର ମୁଣ୍ଡରେ ଘୂରି ନଦୀ ପାଖରେ ଦକ୍ଷିଣକୁ ମୁହାଁଏ; ତେଣୁ ବଳରାମଗଡ଼ିର ଆମ ଘର ଦକ୍ଷିଣମୁହାଁ ହୋଇଥିବାରୁ ଆମେ ଏଠାରେ ଦିବରାତି ସର୍ବଦା ମୃଦୁ, ଶୀତଳବାୟୁ ପ୍ରବାହ ଲାଭ କରୁ । ବାଲେଶ୍ୱରର ସମତଳ ଭୂମିରେ ମଧ ଏ ବାୟୁ ବହେ । ଅବଶ୍ୟ ସେଠାରେ ପହଞ୍ଚିଲାବେଳକୁ ସଦ୍ୟ ଶୀତଳତା ଅନେକ ପରିମାଣରେ ନ ଥାଏ । ବାଲେଶ୍ୱର ଏବଂ ସେଠାରୁ ଆଠ ମାଇଲ ମାତ୍ର ଦୂରରେ ଥିବା ଏହି ତୀର ଭୂମି ମଧ୍ୟରେ ତାପମାତ୍ରାର ପାର୍ଥକ୍ୟ ବହୁତ । ଯେଉଁ ସମୟରେ ଆମେ ବଳରାମଗଡ଼ିରେ ରହିଲୁ ସେଥର ପ୍ରକୃତିର ଗତିପଥ ବଦଳିଗଲା । ସମୁଦ୍ରରୁ ବହୁଥିବା ନିର୍ମଳ ପବନ ସବୁବେଳେ ଆସିଲା ନାହିଁ । ତା' ସ୍ଥାନରେ ଅନିୟମିତ ଭାବରେ ସ୍ଥଳଭାଗ ଆଡୁ ଆମ ଆଡ଼କୁ ସନ୍ତସନ୍ତିଆ ଭୂମି ଉପର ଦେଇ ପବନ ବହିଲା ଏବଂ ତା' ସହିତ ଆଣିଲା ମ୍ୟାଲେରିଆ-ବାହୀ ଦୂଷିତ ବାଷ୍ପ । ଆମର ଦେଶୀ ଚାକରଗୁଡ଼ାଙ୍କୁ ଜ୍ୱର ଧରିବାରୁ ସେମାନଙ୍କୁ ସହରକୁ ପଠାଇ ଦେବାକୁ ହେଲା । ଶେଷରେ ଆମେ ମଧ ଆକ୍ରାନ୍ତ ହୋଇ ବାଲେଶ୍ୱର ଫେରିଗଲୁ ଓ ପରେ କେତେ ଦିନ ପର୍ଯ୍ୟନ୍ତ ବେମାର ରହିଲୁ । ମୋ ସ୍ତ୍ରୀ ବିଚରା ଅନେକ କାଳ ମ୍ୟାଲେରିଆ ଜ୍ୱର ଭୋଗ କଲେ ।

କେବଳ ଯେ ଅନିୟମିତ ପାଗ ଯୋଗୁଁ ଆମେ ବେମାର ହେଲୁ ତା' ନୁହେଁ, ପରିବେଶ ମଧ ଅନେକ ପରିମାଣରେ ଏଥିପାଇଁ ଦାୟୀ । ବଳରାମଗଡ଼ି ସହିତ ଆମର ପ୍ରଥମ ପରିଚୟବେଳେ ସେ ପୁରୁଣାଘର ଚାରିପାଖ ଘନ ଜଙ୍ଗଲ ହୋଇ ସେଇଟା ନଈରୁ ପ୍ରାୟ ଦେଖା ଯାଉନଥିଲା । ଘରଟି ମରାମତି ହେବା ପୂର୍ବରୁ ସେ ସବୁ ଅବଶ୍ୟ ସଫା ହୋଇ ଯାଇଥିଲା ।

କିନ୍ତୁ ଅନ୍ୟାନ୍ୟ ସ୍ଥଳ ପରି ଭାରତରେ ମଧ ନୂଆ ଜଙ୍ଗଲ ସଫା ହୋଇଥିବା ସ୍ଥାନ ଅସ୍ୱାସ୍ଥ୍ୟକର ଏବଂ ସମ୍ଭବତଃ ପାଗ ଏତେ ପ୍ରତିକୂଳ ହୋଇନଥିଲେ ମଧ ଆମେ ସେହିପରି ରୋଗ ଭୋଗିଥାଆନ୍ତୁ । ଯାହା ହେଉ ଲୁଣମରାଳିମାନେ ବର୍ଷର ଅଧିକାଂଶ ମାସ କୌଣସି ପ୍ରକାର ଜ୍ୱର ଭୋଗ ନ କରି ସେଇଠି ରହନ୍ତି । କିନ୍ତୁ ସେମାନେ ଅଦ୍ଭୁତ ପ୍ରକାର ଏକ ଜାତି ଓ ସେଥିରେ ଅଭ୍ୟସ୍ତ ।

ଭାରତର ପୂର୍ବ ଉପକୂଳ ତମାମ ଲୁଣମରା ଖୁବ୍ ଗୋଟିଏ ଲାଭଜନକ ଶିଳ୍ପ, ଅନ୍ତତଃ ସେତେବେଳେ ଥିଲା (କାରଣ ସେଦିନଠାରୁ ଏବେ ଅନେକ ପରିବର୍ତ୍ତନ ହୋଇଗଲାଣି) । ଦୁଇ ପ୍ରକାରରେ ଏହା ମରାଯାଏ । ମାନ୍ଦ୍ରାଜ ଏବଂ ଦକ୍ଷିଣ ଓଡ଼ିଶାର ଉପକୂଳରେ ଯେଉଁ ଉପାୟରେ ଲୁଣ ମରାଯାଏ ତାହାକୁ କୁହାଯାଏ କରକଚ । ଏହି ପଦ୍ଧତି ଅନୁଯାୟୀ ସମୁଦ୍ର ତୀରବର୍ତ୍ତୀ ବାଲିରେ ଅନତିଗଭୀର ଖାଲ ସବୁ ଖୋଳି ଦିଆଯାଏ ଏବଂ ଜୁଆରବେଳେ ନାଳୀବାଟ ଦେଇ ତା' ମଧକୁ ସମୁଦ୍ର ପାଣି ଛାଡ଼ିଦିଆଯାଏ । ସୂର୍ଯ୍ୟକିରଣରେ ପାଣି ଉଡ଼ିଯାଏ ଏବଂ ଖାଲମାନଙ୍କରେ ବହଳ ଲୁଣ ଖଣ୍ଡ ସବୁ ଜମିଯାଏ । ତା'ପରେ ଏ ସବୁ ଓଳେଇ ନେଇ ଗୋଦାମରେ ରଖାଯାଏ । ଏହା ଦେଖିବାକୁ ମଇଳା ଓ ମାଟିଆ ଏବଂ କୌଣସି କଡ଼ା ଗନ୍ଧ ଏଥିରେ ନ ଥାଏ । ନୈଷ୍ଠିକ ହିନ୍ଦୁମାନେ ଏହାକୁ ପସନ୍ଦ କରନ୍ତି କାରଣ ଏଥିରେ ମଣିଷ ହାତ ଲାଗିନଥାଏ; ଉତ୍ସବରେ ବ୍ୟବହାର ପାଇଁ ଏହା ନିଃସନ୍ଦେହରେ ଶୁଦ୍ଧ ।

ଅନ୍ୟ ପଦ୍ଧତିଟି ଜଟିଳତର । ଏହା ଉତ୍ତର ଓଡ଼ିଶା ଓ ବଙ୍ଗଳାରେ ଅନୁସୃତ ହୁଏ ଏବଂ ପଙ୍ଗା ନାମରେ କଥିତ । ସମୁଦ୍ର ନିକଟରେ ସମୁଦ୍ରରୁ ନାଳି ସବୁ ଛୋଟ ଛୋଟ ଖାତକୁ ଖୋଳାଯାଏ; ଏ ଖାତ ସବୁ କିନ୍ତୁ ବାଲିର ନୁହେଁ, କାଦୁଆ ମାଟିର । ତା' ପରେ ଦୁଇପଟୁ ଉଚ୍ଚ ମାଟିର ଓ ଘାସର ଗଦାଟିଏ କରାଯାଏ । ତା'ପରେ କେତେକ ଛିଦ୍ରଥିବା ବଡ଼ ମାଟି ହାଣ୍ଡିଟିଏ ରଖାଯାଏ । ସେ ହାଣ୍ଡି ଭିତରେ ଘାସ ଓ ଛୋଟ ଡାଳିର ଗୋଟିଏ ସ୍ତର ପଡ଼େ ଏବଂ ତା'ଉପରେ ସମୁଦ୍ର ପାଣିରେ ସବୁବେଳେ ବୁଡ଼ିରହି ଲୁଣିଆ ହୋଇଥିବା ପାଖାପାଖି ଥିବା କାଦୁଅର ବହଳ ସ୍ତରଟିଏ ଦିଆଯାଏ । ତା'ପରେ ସେହି ଖାତର ପାଣି ନେଇ ସେ ହାଣ୍ଡି ପୂରିବା ପର୍ଯ୍ୟନ୍ତ ଢଳାଯାଏ । ସମୁଦ୍ର ପାଣି ଲୁଣିଆ ମାଟି ମଧ୍ୟ ଦେଇ ନିଗିଡ଼ି ଆହୁରି ବେଶି ଲୁଣିଆ ହୁଏ । ସେହିପରି ଅତି ଲୁଣିଆ ଯେଉଁ ପାଣି ତିଆରି ହୁଏ ତାହା ଏକ ବାଉଁଶ ନଳୀ ଦ୍ୱାରା ଆଉ ଏକ ହାଣ୍ଡିକୁ ଛାଡ଼ି ଦିଆଯାଏ । ପାଖରେ ଥାଏ ଏକ ଗମ୍ବୁଜାକୃତି ଚୁଲା ଯାହାର ଭୂମି ସ୍ତରରେ ଗୋଟାଏ କଣା ଥାଏ ଏବଂ ଗୋଲାକାର ହୋଇ ଚୁଲାଟି ଉପରକୁ ଉଠିଥାଏ । ଗୁଡ଼ିଏ ଅଣ୍ଡାକୃତି ମାଠିଆ କାଦୁଅ ଲେସା ହୋଇ ସେଇ ଚୁଲା ସହିତ ସଂଯୁକ୍ତ ଥାଏ । ସେଗୁଡ଼ିକର ମୁହଁ ସବୁ ବାହାରକୁ ରହିଥାଏ । ଏ ସବୁକୁ ପନ୍ଦ ପର୍ଯ୍ୟନ୍ତ ସେହି ଲୁଣ ପାଣିରେ ଭର୍ତ୍ତି କରାଯାଏ । ଚାରିଆଡ଼େ ଉଠିଥିବା ଲମ୍ବା ଲମ୍ବା ଶୁଖିଲା ଘାସରେ ସେ ଚୁଲି ଜଳାଇ ମାଠିଆମାନଙ୍କରେ ଥିବା ପାଣିକୁ ଫୁଟେଇ ଦିଆଯାଏ । ତା ପରେ ଲୁଣ ଖଣ୍ଡ ସବୁ କଢ଼ାଯାଇ ଗୋଲାକୁ ଚାଲାଣ କରିବା ପାଇଁ ଚଟ ଉପରେ ଜମା କରାଯାଏ ।

ଲୁଣ ମାରିବା କାମ ସରକାରଙ୍କର ଏକଚାଟିଆ । ବ୍ରିଟିଶ ଶାସନର ଆଦ୍ୟ ଅବସ୍ଥାରେ ସରକାର ଲୁଣ ମାରିବା ପାଇଁ ଲୋକ ଭଡ଼ାରେ ରଖୁଥିଲେ ଏବଂ ସେ କାମ ତଦାରଖ କରିବାପାଇଁ ମୋଟା ଦରମାର ବହୁସଂଖ୍ୟକ କର୍ମଚାରୀ ପୋଷା ହେଉଥିଲେ । ଯେଉଁ ଲୁଣ ଏଜେଣ୍ଟ ଜଣକ ମେଦିନୀପୁର ଉପକୂଳର କଣ୍ଟାଇ (ଓଡ଼ିଆ ଉଚ୍ଚାରଣ କାନ୍ଥି)ର ବିରାଟ ପ୍ରାସାଦରେ ବାସ କରୁଥିଲେ ସେ ହେଉଛନ୍ତି ଚୁକ୍ତିବଦ୍ଧ ସେବାସଂସ୍ଥା (Covenanted Civil Service)ର ଜଣେ ପୁରଣା ସଭ୍ୟ । ସେ ଖୁବ୍ ମୋଟା ଦରମା, ମାସକୁ ପ୍ରାୟ ଟ ୪୦୦୦ ପାଆନ୍ତି । ଏହି ପ୍ରଥା ଖୁବ୍ ବ୍ୟୟସାପେକ୍ଷ; କିନ୍ତୁ ସୁଦକ୍ଷ ନ ଥିଲା । ଠକାମି ଓ ଆତ୍ମସାତ୍ ପ୍ରବଳ ହେଲା । ବହୁଗୁଡ଼ାଏ ଦେଶୀ କର୍ମଚାରୀଙ୍କ ଜଗାରଖା କାମ ବାଜେ ଧରଣର ଥିଲା ଏବଂ ସେଇମାନଙ୍କ ଇସାରାରେ ଚୋରାଚାଲାଣ ଜୋରସୋରରେ ଚାଲିଲା । ଲୁଣ ଦାରୋଗାଗୁଡ଼ାକ ମାସକୁ ଚାଳିଶ ପଚାଶ ଟଙ୍କା ଦରମା ପାଇ ବଡ଼ ବଡ଼ ଜମିଦାରୀ କିଣିଗଲେ, ସୁନ୍ଦର ଘରସବୁ ତିଆରି କଲେ ଏବଂ ମଲା ବେଳକୁ ଅସୁମାରି ଟଙ୍କାର ମାଲିକ ହୋଇଯାଉଥିଲେ । ପୁରୁଣା ପ୍ରଥାକୁ ଉଠାଇ ଦେଇ ନୂଆ ପ୍ରଥା ପ୍ରବର୍ତ୍ତନ କରାଗଲା । ଲୁଣ ଏଜେଣ୍ଟ ଓ ତାଙ୍କର ଦାରୋଗା ବାହିନୀକୁ ଲୋପ କରି ଦିଆଗଲା ଏବଂ ବହୁ କଷ୍ଟକର ଗୁରୁଦାୟିତ୍ୱ ବହନ କରୁଥିବା କଲେକ୍ଟରଙ୍କ କାମର ଲମ୍ବା ତାଲିକା ସାଙ୍ଗକୁ ଲୁଣ ବିଭାଗଟା ମଧ୍ୟ ଯୋଡ଼ି ଦିଆଗଲା । ସରକାର ନିଜେ ଲୁଣ ତିଆରି ଛାଡ଼ି ଏଥିପାଇଁ ବେସରକାରୀ ଲୋକଙ୍କୁ ଆହ୍ୱାନ କଲେ ।

ଉଦ୍ୟମୀ ବ୍ୟବସାୟୀ, ଠିକାଦାର ଏବଂ ଅଳ୍ପ ମୂଳଧନ ଥିଲାବାଲା ଏହି ଲାଭଦାୟକ କାର୍ଯ୍ୟରେ ସାଙ୍ଗେ ସାଙ୍ଗେ ଲାଗିଗଲେ । ଜମି ମାଲିକମାନଙ୍କଠାରୁ ଲୁଣପାଣି ମାଡୁଥିବା ଅଞ୍ଚଳରୁ ସମୁଦ୍ର କୂଳେ କୂଳେ ଥିବା ନିମ୍ନ ଭୂମି ଦଶପନ୍ଦର ମାଇଲ ପଟା ନେଇ ଠିକାଦାରମାନେ ସରକାରଙ୍କୁ ଲୁଣ ମାରିବା ପାଇଁ ଅନୁମତି ମାଗିଲେ । ତାଙ୍କ ଜମି ଚାଚିପଟେ ବାଡ଼ବୁଲାଇବାକୁ ପଡ଼ିବ, ମୂଲିଆମାନଙ୍କୁ ଭଡ଼ାରେ ଆଣି ସେମାନଙ୍କ ରହିବାପାଇଁ କୁଡ଼ିଆ ଘର କରିବାକୁ ପଡ଼ିବ, ଛୋଟ ପୋଲିସ ଦଳ, ଜଣେ ଛାଡ଼ ଅଫିସର (Pass Officer) ଓ ଦଣ୍ଡିଦାରଙ୍କ ଦରମା ବାବଦ ତାଙ୍କୁ କଲେକ୍ଟରଙ୍କ ନିକଟରେ କେତେ ପରିମାଣରେ ଟଙ୍କା ଜମା ଦେବାକୁ ପଡ଼ିବ ।

ଭାରତରେ ପ୍ରତ୍ୟେକ ଧନ୍ଦାପରି ଏଇ ଧନ୍ଦାରେ ନିଯୁକ୍ତ ଲୋକେ ମଧ୍ୟ ଏକ ବିଶେଷ ଜାତିର ଲୋକ; ଓଡ଼ିଶାରେ ଏମାନଙ୍କୁ କୁହାଯାଏ ମାଲ୍ଙ୍ଗୀ ଏବଂ ବଙ୍ଗଳାରେ ନୁନିଆ । ସେମାନଙ୍କ ମଧ୍ୟରୁ କେତେକ ଚାଷ କରନ୍ତି କିନ୍ତୁ ଅଧିକାଂଶ ଲୁଣମାରି (ଏବଂ ଚୋରା ଚାଲାଣ କରି) ଚଳନ୍ତି ।

ଲୁଣମରା ଅଡ଼ା ବା ଅଡ଼ଙ୍ଗରେ କାମ ପ୍ରାୟ ଡିସେମ୍ବର ଆଡ଼କୁ ବର୍ଷାପାଣି ଶୁଖିଗଲା ପରେ ଆରମ୍ଭ ହୁଏ । ମଲ୍ଙ୍ଗୀମାନେ ଭୂମି ସଫା କରି ଶରଛାଆଣି-ଚାଳିଆ, ମାଟିଗଦା ଓ ଚୁଲି ତିଆରି କରନ୍ତି, ଲୁଣପାଣି ମଡ଼େଇବା ପାଇଁ ନାଳୀ ଖୋଳନ୍ତି । ସେମାନେ ମଧ୍ୟ ସେଠାରେ ଚାରିଆଡ଼ରେ ଉଠିଥିବା ତେଙ୍ଗା ଘାସ ଗଛ ସବୁ କାଟନ୍ତି, ଯାହାର ବହଳ କାଣ୍ଡ ଓ ଗଣ୍ଠିଆ ଚେର ଖୁବ୍ ଭଲ ଓ ଶସ୍ତା ଜାଳ କାମ ଦିଏ । ସକାଳୁ ନିଆଁ ଲଗାଯାଇ କାମ ଆରମ୍ଭ ହୁଏ ଏବଂ ଶେଷ ହୁଏ ସୂର୍ଯ୍ୟାସ୍ତର ପ୍ରାୟ ଘଣ୍ଟାଏ ପୂର୍ବରୁ ଯେତେବେଳେ କି ଲୁଣ ସବୁ ଓଦା ଓ ଉଷୁମ ଥାଏ । ସେ

ସବୁ ଟୋକେଇରେ ଭର୍ତ୍ତିକରି ଅଡ଼ା ଭିତରକୁ ନିଆଯାଇ ଓଜନ ହୁଏ ଏବଂ ଦିନର କାମ 'ଛାଡ଼ କର୍ମଚାରୀ' ଲେଖି ରଖନ୍ତି । ତାଳପତ୍ରରେ ଛୁଆଣି ଚାଳି ତଳେ ଲୁଣ ସବୁ ଯତ୍ନରେ ଗଦାକରି ରଖାଯାଏ । ପରେ ତାହା ସ୍ଥଳବାଟେ ଭାରୁଆ ବଳଦ ଦ୍ୱାରା କିମ୍ବା ପଙ୍କୁଆ ସାମୁଦ୍ରିକ ଅଞ୍ଚଳ ବାଟେ ନୌକାଦ୍ୱାରା ଦେଶମଧ୍ୟସ୍ଥ କୌଣସି ସହର ବା ହାଟକୁ ପଠାଯାଏ ।

ଲୁଣ ତିଆରିର ପ୍ରତ୍ୟେକ ସୋପାନକୁ ସରକାରଙ୍କୁ ସାବଧାନରେ ଜଗିବାକୁ ପଡ଼େ ଏବଂ ପ୍ରତ୍ୟେକ ସ୍ଥଳରେ ବିଭିନ୍ନ ଓ ବିଶେଷ ଧରଣର ଠକାମି ଚାଲେ । ରେଭେନ୍ୟୁବୋର୍ଡ଼ ଯେତେପ୍ରକାର ସତର୍କ ବ୍ୟବସ୍ଥା ବାହାର କରନ୍ତି ଚୋରା ଚାଲାଣକାରୀଙ୍କ ବୋର୍ଡ଼ ସେଥିରୁ ଖସିବା ପାଇଁ ଉପାୟ ଉଦ୍ଭାବନ କରିଦିଅନ୍ତି ।

ଅଡ଼ଙ୍ଗର କ୍ଷେତ୍ର ଖୁବ୍ ବିସ୍ତୃତ । କେବଳ ସଫା କରା ହୋଇଥିବା ସ୍ଥାନକୁ ଛାଡ଼ି ଅନ୍ୟ ସ୍ଥାନ ସବୁ ଲମ୍ବା ରୁକ୍ଷ ଘାସ ଓ ବୁଦାରେ ପୂର୍ଣ୍ଣ । ଅନେକ ସ୍ଥଳ ସନ୍ତସନ୍ତିଆ ଓ ଚୋରା ବାଲି ପୂର୍ଣ୍ଣ ଜଣେ ମଣିଷ ଯାଇପାରୁଥିବା ଅଙ୍କାବଙ୍କା ଏକପଦୀ ରାସ୍ତାଗୁଡ଼ିକ କେବଳ ମଲ୍ଲାଙ୍ଗୀଙ୍କୁ ହିଁ ଜଣା । ଅଡ଼ଙ୍ଗକୁ ଜଗିବା ପାଇଁ ଥିବା ପୋଲିସ ଦଳରେ ସାଧାରଣତଃ ଚାରିଜଣ ଲୋକ ଓ ଜଣେ କନେଷ୍ଟବଲ ଥାଆନ୍ତି । ସ୍ଥାନ ଅସ୍ୱାସ୍ଥ୍ୟକର ଓ ଜିନିଷପତ୍ର ମିଳିବା କଷ୍ଟକର ଥିବାରୁ ସେମାନଙ୍କର କାମ ଆଦୌ ସୁଖକର ନୁହେଁ । ତେଣୁ ପୋଲିସ ବାହିନୀର ସବୁଠାରୁ ନିକୃଷ୍ଟ ଲୋକଙ୍କୁ ସେଠାକୁ ପଠାଯାଏ ଏବଂ ଅଡ଼ଙ୍ଗଗୁଡ଼ିକ ଦଣ୍ଡ ଭୋଗିବାର ସ୍ଥଳରୂପେ ବ୍ୟବହୃତ ହୁଅନ୍ତି । ଯେଉଁ ପୋଲିସ କୌଣସି ଭୁଲ କାମ କରେ ତାକୁ ଦଣ୍ଡ ଭୋଗିବା ପାଇଁ ଲୁଣ ଅଡ଼ଙ୍ଗକୁ ପଠାଯାଏ । ଯା ସାଙ୍ଗକୁ ପୁଣି ଚୋରା ବେପାରୀମାନେ ଲାଞ୍ଚ ଦେବାରେ ମୁକ୍ତହସ୍ତ । ସେମାନଙ୍କୁ ସାହାଯ୍ୟ କରନ୍ତି ଧନୀ ପ୍ରଭାବଶାଳୀ ଲୋକେ ଯେଉଁମାନେ କି ଅସୁବିଧାଜନକ ଯେ କୌଣସି ସଚ୍ଚୋଟ ପୋଲିସ କର୍ମଚାରୀଙ୍କ ବିରୋଧରେ ମିଥ୍ୟା ଅଭିଯୋଗ ଆଣିବା ଓ ତାହା ପ୍ରମାଣିତ କରିବା ପାଇଁ ଭଡ଼ାଟିଆ ମିଛ ସାକ୍ଷୀ ପଞ୍ଚାଏ ଯୋଗାଡ଼ କରିବାରେ କୁଣ୍ଠା କରନ୍ତି ନାହିଁ । ଏପରି ପରିସ୍ଥିତିରେ ଦୁର୍ନୀତିପ୍ରବଣତା ଯେ ବଢ଼ିବ ଏବଂ ବହୁ ରାଜସ୍ୱ ଯେ ତୋଷରପାତ ହେବ ଏଥିରେ ଆଶ୍ଚର୍ଯ୍ୟ ହେବାର ନାହିଁ ।

ଚୁଲା ନିକଟରୁ ଓଜନ ହେବା ଜାଗାକୁ ଲୁଣ ବୋହିନେବାବେଳେ ମଲଙ୍ଗିମାନେ ସେଥିରୁ କିଛି ଅଂଶ ଏପରି ଜାଗାରେ ଲୁଚାଇ ଦିଅନ୍ତି ଯାହାକି କେବଳ ତାଙ୍କୁହିଁ ଜଣା ଏବଂ ପରେ ତାକୁ ନେଇ ପାଖାପାଖି ଗାଁରେ ବିକ୍ରି କରିଦିଅନ୍ତି । ସୂର୍ଯ୍ୟାସ୍ତବେଳେ ଚୁଲି ଲିଭାଇ (ଅନ୍ତତଃ ଲିଭିଲା ପରି ଦେଖାଇ) ଲୁଣ ବୋଝ ନେଇ ଚାଲିଯାଆନ୍ତି, କିନ୍ତୁ ରାତିରେ ପୁଣି ଲୁଚି ଚାଲିଆସନ୍ତି । ଲିଭି ନ ଥିବା ନିଆଁକୁ ଫୁଙ୍କି ଜଳାଇ ରାତିସାରା ଲୁଣ ମାରନ୍ତି ଏବଂ ସକାଳ ପୂର୍ବରୁ ଜଙ୍ଗଲ ଭିତରେ ଲୁଚାଇ ଦେଇଯାଆନ୍ତି । ପୋଲିସଙ୍କର ରାତିସାରା ବୁଲିବା କଥା ଏବଂ ସମଗ୍ର ଅଞ୍ଚଳଟି ପିଠାପରି ଚଟକା ହୋଇଥିବାରୁ ସେମାନେ ପୂର୍ବବର୍ଷରୁ ପରିତ୍ୟକ୍ତ କୌଣସି ଭଙ୍ଗା ଚୁଲା ଉପରେ କେବଳ ଠିଆ ହୋଇଗଲେ ସମସ୍ତେ ଜଙ୍ଗଲକୁ ଦେଖିପାରିବେ ଏବଂ ରାତିରେ ନିଆଁ ଓ ଧୂଆଁରୁ ଚୋରା ଲୁଣମରା ଜାଗାର ସନ୍ଧାନ କରିପାରିବେ । ତା'ପରେ ଛପି ଛପି ନିଃଶବ୍ଦରେ ଓ ସାବଧାନରେ

ସଙ୍କୀର୍ଣ୍ଣ ଓ ଦୁର୍ଗମ ପଥ ଦେଇ ତାଙ୍କ ପାଖକୁ ଯିବାକୁ ପଡ଼ିବ । ବାଟରେ ଚିତାବାଘ, ବାରହା କିମ୍ବା ବେଳେ ବେଳେ ବଣୁଆ ମଇଁଷିଟାଏ ହାବୁଡିବା ମଧ ସମ୍ଭବ । ଜାଗା ଉପରେ ପହଞ୍ଚିବା ମାତ୍ରେ ପୋଲିସକୁ ହାତାହାତି ଲଢ଼େଇ କରିବାକୁ ପଡ଼େ ଯେଉଁଥିରେ କି ଚୋରା ବେପାରୀମାନେ ସଂଖ୍ୟାଧିକ ଥିବାରୁ ସୁବିଧାରେ ଖସିଯାଇ ଅନ୍ଧାର ମଧରେ ଆତ୍ମଗୋପନ କରିଯାନ୍ତି । ସେଠାରେ ସେମାନଙ୍କୁ ଅନୁଧାବନ କରିବା ମୂଲ୍ୟହୀନ, ଅବଶ୍ୟ ଏପରି ସାହସ ଓ କର୍ମଦକ୍ଷତା ପୋଲିସ କେବେ ଦେଖାଏ ନାହିଁ । କେବଳ ଚୋରା ବେପାର ଖୁବ୍ ବଢ଼ିବା ଫଳରେ ମାଜିଷ୍ଟ୍ରେଟ ରାଗି ଧମକା ଧମକି କଲେ ସେମାନେ ସାମୟିକ ଚେଇଁଉଠି କିଛି ଚେଷ୍ଟା ଚଳାନ୍ତି । କିନ୍ତୁ ଗୋଟାଏ ଦୁଇଟାକୁ ଧରି ଦେଲା ପରେ ସେମାନେ ପୁଣି ଢିଲା ହୋଇଯାଆନ୍ତି ଏବଂ ଚୋରା କାରବାର ପୂର୍ବପରି ଆରାମ୍‌ରେ ଚାଲେ ।

ଲୁଣର ଏପରି ଏକ ଧର୍ମ ଯାହା ଚୋରା କାରବାରକୁ ଖୁବ୍ ସୁହାଏ । ମରା ହେଲା ବେଳେ ଏହା ଓଦା ଥାଏ ଏବଂ ଆସ୍ତେ ଆସ୍ତେ ଶୁଖେ । ଅବଶ୍ୟ ଶୁଖିଲେ ଓଜନ କମିଯାଏ । ପଠାଯିବା ପୂର୍ବରୁ ଏହା ଅଡ଼ଙ୍ଗରେ ଓଜନ ହୁଏ ଏବଂ ଗୋଲାରେ ପହଞ୍ଚିଲେ ଆଉଥରେ ଓଜନ ହୁଏ, ଯଦି ଦୁଇ ଓଜନ ନ ମିଳିଲା ତେବେ ଠିକାଦାର ଉପରେ କଡ଼ା ଜୋରିମାନା ହୁଏ । ବାଟରେ ଯାଉଥିବା ବେଳେ ଶୁଖିଯାଉଥିବାରୁ ସେଥିପାଇଁ କିଛି ଛାଡ଼ ଦିଆଯାଏ । ଏଠାରେ ଠକାମିର ସାଧାରଣ କୌଶଳ ହେଲା ରାତିରେ ବଳଦ ଉପରେ ଲୁଣ ବୁହାଗଲା ବେଳେ ବସ୍ତାମାନଙ୍କରେ କଣା କରିଦେବା, କାରଣ ଯିବାପାଇଁ ଦୁଇତିନି ଦିନ ଲାଗେ ଏବଂ ଅନେକ ପରିମାଣର ଲୁଣ ସେଇ ମଧରେ କାଢ଼ି ନିଆହୁଏ । ତା'ପରେ ବଳଦକୁ ପଙ୍କୁଆ ଗଡ଼ିଆ ବା ଖାଲ ମଧ ଦେଇ ନିଆ ହୁଏ, ଯେପରିକି ତାହା ଏକ ଦୁର୍ଘଟଣା ! ଫଳରେ ଲୁଣ ଓଦା ହୋଇ ଓଜନ ବଢ଼ିଯାଏ ଏବଂ କଡ଼ା ହୋଇଥିବା ଲୁଣର ଓଜନର ପରିପୂରଣ ହୋଇଯାଏ ।

ଡଙ୍ଗାରେ ନିଆଗଲେ ଲୁଣକୁ ବସ୍ତାରେ ରଖାଯାଏ ନାହିଁ; ଡେକ୍ ନ ଥିବା ଡଙ୍ଗାରେ ଖାଲି ଲଦାଯାଏ—ବାରବାରି ଭାଷାରେ 'ମୋଟାଦାରିଆ' ଭାବରେ । ଉପରେ ସବୁଠି ଆଡ଼ଲ ବା ଠିକାଦାର ନାମ ଉଲ୍ଲେଖ ଥିବା କାଠର ମୁଦଚିହ୍ନ ଦିଆଯାଏ । ଗୋଲାରେ ପହଞ୍ଚିବା ପରେ ଡଙ୍ଗାରୁ କାଢ଼ିବା ପୂର୍ବରୁ ଏହି ଆଡ଼ଲ ଚିହ୍ନ ଠିକ୍ ଅଛି କି ନାହିଁ ଜାଣିବା ପାଇଁ ଭଲକରି ପରୀକ୍ଷା କରାଯାଏ ।

ଡଙ୍ଗାରୁ ମଧ ଲୁଣ ଚୋରିହୁଏ । ଥରେ ରାତିରେ ଲୁଣ ବୋଝେଇ ବଡ଼ ଡଙ୍ଗାଟାଏ ସମୁଦ୍ରର ଏକ ଖାଡ଼ିରେ ନିର୍ଜନ ସ୍ଥାନରେ ଉଚ୍ଚ ବନ୍ଧତଳେ ବନ୍ଧା ଯାଇଥିଲା । ନାଉରିଆ ଓ ପୋଲିସମାନେ ବନ୍ଧ ଉପରେ ଘାସ ଓ କୁଟା ଉପରେ ମହମପାଲ ବିଛାଇ ଉଷୁମ ବିଶ୍ରାମସ୍ଥଳ ତିଆରି କରି, ଭାତ ରାନ୍ଧି, ଖାଇ ଶୋଇ ଯାଇଥିଲେ । ତା'ପରେ ଜଙ୍ଗଲ ଭିତରୁ ଗୋଟିକିଆ ଧାଡ଼ିରେ ଷୋହଳ ସତର ଜଣ ଲୋକ ସଂପୂର୍ଣ୍ଣ ଉଲଗ୍ନ ହୋଇ ଦେହକୁ ତେଲରେ ଜୁଡୁ ବୁଡୁ କରି ଲମ୍ବା ଦଉଡ଼ିଟାଏ ଓ ଟୋକେଇମାନ ଧରି ଆସିଗଲେ । ସେମାନେ ଡଙ୍ଗା ଭିତରକୁ ଓହ୍ଲାଇଗଲେ ଏବଂ କେତେକ ଲୋକ ଟୋକେଇ ସବୁ ଲୁଣରେ ଭର୍ତ୍ତି କରୁଥିଲାବେଳେ ଅନ୍ୟ କେତକ ସେ

ସବୁକୁ ଦଉଡ଼ି ସାହାଯ୍ୟରେ ଉପରକୁ ଉଠାଇ ନେଲେ । ଅନ୍ୟ ଏକ ଖାଡ଼ିରେ ଲୁଚାଇ ରଖାଯାଇଥିବା ଏକ ଡଙ୍ଗାକୁ ଟୋକେଇ ଟୋକେଇ କରି ଲୁଣ ବୁହାଗଲା । ତାହା ପୂର୍ଣ୍ଣ ହୋଇଯିବା ମାତ୍ରେ ସେମାନେ ଡଙ୍ଗା ଭିତରକୁ ଉଠିଯାଇ ବାହାରି ପଡ଼ିଲେ । ସେମାନଙ୍କର ଭୟ ଥିଲା ଆହୁଲା ମାରିଲେ ତା ଶବ୍ଦ ଅନ୍ୟକୁ ଶୁଣାଯିବ; ତେଣୁ ନିଃଶବ୍ଦରେ ଧୀରେ ଧୀରେ କାତମାରି ଖାଡ଼ିରୁ ବାହାରିଗଲେ । ସେତେବେଳକୁ ଭୋର ହୋଇ ଆସୁଥିଲା ଏବଂ ସେମାନେ ଖାଡ଼ି ମଧ୍ୟରୁ ବାହାରି ନଦୀ ମଧ୍ୟକୁ ପଶିଲାବେଳକୁ ସେଇ ବାଟେ ଆସୁଥିବା ଏକ ପୋଲିସ ଜଗୁଆଳି ନୌକାର ମୁହାଁମୁହିଁ ହୋଇଗଲେ । କନେଷ୍ଟବଲ ସାଙ୍ଗେ ସାଙ୍ଗେ କିଛି ଅସୁବିଧାର ଗନ୍ଧ ବାରିନେଲା ଏବଂ ନୌକା ଉପରକୁ ଯାଇ ତାହାକୁ ଲୁଣରେ ପୂର୍ଣ୍ଣ ଦେଖି ଅପରାଧୀ ନାବିକଙ୍କୁ ଧରିବାକୁ ଚେଷ୍ଟାକଲା । ସେମାନଙ୍କ ଦେହ କିନ୍ତୁ ତେଲରେ ଜୁଡ଼ୁବୁଡ଼ୁ ହୋଇଥିବାରୁ ସେମାନେ ପୋଲିସଙ୍କ ହାତରୁ ଖସିଯାଇଁ, ପାଣିକୁ ଡେଇଁ ପଡ଼ି, ପହଁରି ପହଁରି କୂଳକୁ ଚାଲିଲେ ଏବଂ ବଣ ମଧ୍ୟରେ ଅଦୃଶ୍ୟ ହୋଇଗଲେ ଯେଉଁଠିକି ସେମାନଙ୍କ ପଛରେ ଗୋଡ଼େଇବା ଚେଷ୍ଟା ବୃଥା ।

ଲୁଣ ଉପରେ ଥିବା ଚଢ଼ା କର, ମହଣ ପିଛା ୩/୪ ଟଙ୍କାର (ଇଂଲିଶ୍ ଓଜନରେ ଟନ ପ୍ରତି ୮ ପାଉଣ୍ଡ) ଏହି ସବୁ ଚୋରା ବେପାରର କାରଣ । ଗୋଲାରୁ ଲୁଣ ପାଇବା ପୂର୍ବରୁ ଏହି କର ଠିକାଦାରକୁ ଦାଖଲ କରିବାକୁ ପଡ଼େ । ତା'ପରେ ଗୋଟିଏ 'ଛାଡ଼' ବଳରେ ତାକୁ ଲୁଣ ଦିଆଯାଏ । ଏହି 'ଛାଡ଼'ରେ ନାନାପ୍ରକାର ବିବରଣୀ ରହେ—ନାମ, ବାପ ନାମ, ଜାତି, ସଂପୃକ୍ତ ପ୍ରତ୍ୟେକ ବ୍ୟକ୍ତିର ଠିକଣା, ସେ ଲୁଣ ମାରିଥିବା ଅଢ଼ଙ୍ଗର ନାମ, ବର୍ତ୍ତମାନ ତାହା କୁଆଡ଼େ ଯାଉଛି ଇତ୍ୟାଦି ଇତ୍ୟାଦି । ଠିକାଦାର ମୋଟା ବେପାରୀକୁ ବିକେ ଯେଉଁମାନେ (ଆଉ ଏକ ଛାଡ଼ ବଳରେ) ଖାଉଟି ଜନସାଧାରଣଙ୍କୁ ବିକନ୍ତି । କଡ଼ାରେ ଦାନା ବାନ୍ଧିବା ମୁହୂର୍ତ୍ତରୁ ଖାଉଟି ହାତକୁ ଆସିବା ପର୍ଯ୍ୟନ୍ତ ଲୁଣକୁ ଛାଡ଼, ଗୁପ୍ତ ପର୍ଯ୍ୟବେକ୍ଷଣ ପ୍ରଭୃତି ବିଭିନ୍ନ କର୍ମଚାରୀମାନଙ୍କ ତଦାରଖ ଓ ଆଇନଗତ ଦଣ୍ଡବିଧାନ ଦ୍ୱାରା ଜଗାରଖା କରାଯାଉଥାଏ । ସରକାରୀ ରାଜସ୍ୱ ରକ୍ଷାପାଇଁ ଅହରହ ଦୃଷ୍ଟି ଦେଇ ଦେଇ କଲେକ୍ଟରର ଜୀବନ ଦୁର୍ବିଷହ ହୋଇଉଠେ । ଏଣେ ଲୁଣର ଦାମ ଅଯଥା ବଢ଼ାଇ ଦିଆଗଲା ଏବଂ ଲୁଣିପାଣି ମାଡୁଥିବା ଅଞ୍ଚଳ ଦାଢ଼ରେ ଥିବା ଗ୍ରାମବାସୀମାନେ ବାରମ୍ବାର ପୋଲିସର ଧାଉଡ଼ ଫଳରେ ବ୍ୟତିବ୍ୟସ୍ତ ହୋଇଗଲେ । ସେମାନଙ୍କ ହାତ ପାଖରେ ବିସ୍ତୃତ ସମତଳ ଲୁଣି ଅଞ୍ଚଳ ପଡ଼ିଛି । ସେମାନେ ଖାଲି ଚେନାଏ ଲୁଣିମାଟି ଖୋଳି, ନିକଟତମ ଖାଡ଼ିରୁ ଲୁଣିପାଣି ଆଣି ସେଥିରେ ଫୁଟେଇ ଦେଲେ ଜୀବନର ଅତ୍ୟାବଶ୍ୟକୀୟ ଏହି ଜିନିଷଟି ଯଥେଷ୍ଟ ପରିମାଣରେ ପାଇଯିବେ । କିନ୍ତୁ ଏହା କଲେ ସେମାନଙ୍କୁ ଜେଲ୍, ଜୋରିମାନା ହେବ । ପୋଲିସ, ପେସାଦାର ଚୋରାବେପାରୀମାନଙ୍କ ପାଖରେ ଶକ୍ତିହୀନ ହେଲେ ମଧ୍ୟ ଯେଉଁ କେତେକ ଗରିବ ନିଃସହାୟ ବିଧବା ଭାତ ସାଙ୍ଗରେ ଲଗାଇ ଖାଇବାପାଇଁ ଲୁଣିପାଣି ଟିକିଏ ମାଟି ଘଡ଼ିରେ ଫୁଟେଇ ଲୁଣ ମାରୁଥିଲେ, ସେମାନଙ୍କୁ ଧରି ନେଇ ନିଜର କାର୍ଯ୍ୟଦକ୍ଷତା ପ୍ରକାଶ କରୁଥିଲେ । ଗରିବ ଭୀତତ୍ରସ୍ତ ସେଇ ପ୍ରାଣୀଟିକୁ ପଚାଶ କିମ୍ୱା ଷାଠିଏ ମାଇଲ ଦୂର ବାଲେଶ୍ୱରକୁ ଟାଣି ମ୍ୟାଜିଷ୍ଟ୍ରେଟଙ୍କ ଆଗରେ ହାଜର କରୁଥିଲେ । ମ୍ୟାଜିଷ୍ଟ୍ରେଟ ଅନିଚ୍ଛାସତ୍ତ୍ୱେ ତାକୁ ଜୋରିମାନା ଦଣ୍ଡ ଦେବାକୁ ବାଧ ହେଉଥିଲେ । ବେଆଇନ ଲୁଣ ରଖିଥିବା

ବା ତିଆରି କରୁଥିବା ଯେ କୌଣସି ବ୍ୟକ୍ତିକୁ ଧରିପାରିଥିବା ପୋଲିସ୍‌କୁ ପୁରସ୍କାର ଦେଇ ବୋର୍ଡ଼ ଅବସ୍ଥାକୁ ଆହୁରି ଖରାପ କରିଦେଲେ । ଯେଉଁ ପ୍ରକାରେ କାମ ଚାଲିଥିଲା ତାହା ମୋତେ ଏବଂ ଅନ୍ୟ ମାଜିଷ୍ଟ୍ରେଟମାନଙ୍କୁ ଏତେ ଅଯୌକ୍ତିକ ଓ ନିର୍ଯାତନାମୂଳକ ଜଣାଗଲା ଯେ ପ୍ରଥମେ ମୁଁ ଏ ସବୁ ସ୍ଥଳରେ କୌଣସି ଦଣ୍ଡ ଦେବାକୁ ଏବଂ ପରେ ଏ ସବୁ ଧରିଥିବା ପୋଲିସକୁ କୌଣସି ପୁରସ୍କାର ଦେବାକୁ ମନା କରିଦେଲି । ଅବଶ୍ୟ ଖୁବ୍ ହଲ୍ଲା ଉଠିଲା ଏବଂ ମୁଁ କାହିଁକି ଏପରି ବ୍ୟବହାର ଦେଖାଉଛି ବୋଲି ବୋର୍ଡ଼ ଖୁବ୍ କ୍ରୋଧରେ ମୋତେ କୈଫିୟତ ମଗାଇଲେ । ମୁଁ ଯେଉଁ ସୁଯୋଗ ଖୋଜୁଥିଲି ତାହା ମୋତେ ମିଳିଗଲା । ଗୁଡ଼ାଏ ଲେଖାଲେଖି ଚାଲିଲା ଏବଂ ଶେଷରେ ସରକାର ଲୁଣିପାଣି ମାଡୁଥିବା ଓ ତା'ପାଖାପାଖି ଅଞ୍ଚଳର ଲୋକଙ୍କ ଦାବି ମାନିନେଇ ସେମାନେ ନିଜ ବ୍ୟବହାର ପାଇଁ ଅଳ୍ପ ଲୁଣ ମାରିପାରିବେ; କିନ୍ତୁ ବିକିପାରିବେ ନାହିଁ ବୋଲି ଅନୁମତି ଦେଲେ । ଏହା ଫଳରେ ଛୋଟକାଟର ଅତ୍ୟାଚାରସବୁ, ଯାହାକି ଆମ ପକ୍ଷରେ ଯେତେ ଛୋଟ ହେଉ ନା କାହିଁକି ମଫସଲର ଗରିବ ଲୋକଙ୍କ ପକ୍ଷରେ ଖୁବ୍ ଗୁରୁତର ସେ ସବୁ ବନ୍ଦ ହୋଇଗଲା ।

ସେମାନେ ଖୁବ୍ ଅତ୍ୟାଚାରିତ ହେଉଥିଲେ ଏବଂ ନିଜ ଦେଶର ଲୋକଙ୍କ ଦ୍ୱାରା ଏତେ ପ୍ରକାର ଲୁଣ୍ଠିତ ହେଉଥିଲେ ଯେ ତା' ସତ୍ତ୍ୱେ ସେମାନେ ଯେ କିପରି ବଞ୍ଚି ରହିଥିଲେ ତାହାହିଁ ଆଶ୍ଚର୍ଯ୍ୟର କଥା । ସେମାନଙ୍କୁ ରକ୍ଷା କରିବାପାଇଁ ଆମେ ଯଥାସାଧ ଚେଷ୍ଟା କଲୁ; କିନ୍ତୁ ଏତେ ବଡ଼ ଦେଶରେ ମୁଷ୍ଟିମେୟ ବିଦେଶୀ ଲୋକ, ସେମାନଙ୍କ ପଛପଟେ ଯେ କି କାମ ଚାଲିଛି ସେ ସବୁ ଶୁଣିବା ସମ୍ଭବପର ନ ଥିଲା । ଲୋକେ ଅଭିଯୋଗ କରିବାକୁ ଭୟ କରୁଥିଲେ; କାରଣ ଇଂରେଜ ମାଜିଷ୍ଟ୍ରେଟ ଯଦି ଅତ୍ୟାଚାରିତମାନଙ୍କ ପାଇଁ କ୍ଷତିପୂରଣ ଆଦାୟ ନିର୍ଦ୍ଦେଶ ଦିଅନ୍ତି, ତେବେ ସବଳ ଅତ୍ୟାଚାରୀ ସେମାନଙ୍କ ଉପରେ ପ୍ରତିଶୋଧ ନେବାପାଇଁ ଅନେକ ସୁଯୋଗ ସୃଷ୍ଟି କରିପାରିବେ । ଦୈବଯୋଗକୁ ମାତ୍ର ଆମେ ଅନେକ ଦୁଷ୍କ୍ରିୟା ଜାଣୁଥିଲୁ । ଏ ସବୁ ଦୂର କରିବାକୁ ବହୁ ସାବଧାନତା ଅବଲମ୍ବନୀୟ; ନ ହେଲେ ସେଥିରେ ଯେତେ ସଦୁଦ୍ଦେଶ୍ୟ ରଖି ଆମେ ହାତ ଦେଉନା କାହିଁକି ଭଲ ଅପେକ୍ଷା ମନ୍ଦ ହିଁ ଅଧିକ ହେଉଥାନ୍ତା । ଏପରି ଏକ ଘଟଣା ସେ ସମୟରେ ଘଟି ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ତାହା 'ଅନ୍ୟାୟ କର ଆନ୍ଦୋଳନ' ନାମରେ ବିଦିତ ।

ଜିଲ୍ଲାର ସମସ୍ତ ଦକ୍ଷିଣାଂଶକୁ ନେଇ ଗଠିତ ଭଦ୍ରଖ ସବଡିଭିଜନ ଦାୟିତ୍ୱରେ ଥିବା ମୋର ସହକାରୀ ଫିଡ଼ିୟାନ ଦିନେ ତାଙ୍କ ପରିଦର୍ଶନ ଗସ୍ତରେ ଯାଇ ଡେରାରେ ରହିଥିଲେ । ଜିଲ୍ଲାର ଏକ ସୁଦୂର ଅଭ୍ୟନ୍ତର ଯେଉଁଠି ଲୋକେ ବ୍ରିଟିଶ ଶାସନର ନୀତି ସମ୍ପର୍କରେ ଅତି ସାମାନ୍ୟ ଜାଣନ୍ତି କିମ୍ବା କିଛି ଜାଣନ୍ତି ନାହିଁ ସେଇଠାରେ ସେ କ୍ଷେତ ଭିତର ଦେଇ ଘୋଡ଼ାଚଢ଼ି ଯାଉଥିବାବେଳେ ଜଣେ ରଇତ ତାଙ୍କ ପାଖକୁ ଆସି ପଚାରିଲା— "ଆମକୁ ଟିକସ ଦେବାକୁ କଅଣ ହୁକୁମ ହୋଇଛି ?" ଫିଡ଼ିୟାନ କହିଲେ— "ଟିକସ ଅର୍ଥ କଅଣ ?"

ରଇତଟି ଉତ୍ତର ଦେଲା— " ତା' ଅର୍ଥ ଅନେକ । ଆମ ଜମିଦାର କହୁଛନ୍ତି ଆମକୁ ସବୁ ଟିକସ ଦେବାକୁ ପଡ଼ିବ । ସେ କହୁଛନ୍ତି ଯେ ତାଙ୍କୁ ସରକାରଙ୍କୁ ଦେବାକୁ ପଡୁଚି, ତେଣୁ ଘରପିଛା ଟଙ୍କାଏ କରି ସେ ଆମଠାରୁ ଆଦାୟ କରିବେ ତା'ପରେ 'ତାର' ପାଇଁ ଟଙ୍କାଏ ଲେଖାଏଁ, ତା'ପରେ ପୁଣି ତାଙ୍କର ଯେତେବେଳେ ପୁଅ କି ଝିଅ ବାହାହେବ କିମ୍ବା ସେ କୌଣସି ଧର୍ମୋତ୍ସବରେ ବ୍ରାହ୍ମଣ ଭୋଜନ ଦେବେ ବା ଜଗନ୍ନାଥଙ୍କଠାକୁ ତୀର୍ଥଯାତ୍ରାରେ ଯିବେ କିମ୍ବା ଘର ମରାମତି କରିବେ କିମ୍ବା ଅନ୍ୟ ସେହିପରି କିଛି କାମପାଇଁ 'ମାଗଣ' ଲୋକପିଛା ଟଙ୍କେ ଦୁଇଟଙ୍କା, ଏପରିକି ତିନିଟଙ୍କା କରି । ଫିଡ଼ିୟାନ କହିଲେ— " ନା ତୁମକୁ କେବଳ ଖଜଣା ଦେବାକୁ ପଡ଼ିବ, ଆଉ କିଛି ନୁହେଁ ।" ଲୋକଟି ପ୍ରାୟ ସନ୍ତୁଷ୍ଟ ହେବାପରି ଚାଲିଗଲା ।

ସେ କିନ୍ତୁ ଭାବିବାକୁ ଲାଗିଲେ ଏବଂ ଅନୁସନ୍ଧାନ ପରେ ଜାଣିବାକୁ ପାଇଲେ ଯେ ଜମିଦାରମାନଙ୍କର ଅନେକପ୍ରକାର ଆଳରେ ସବୁ ରଇତଙ୍କଠାରୁ ଘରପିଛା ଟଙ୍କେ କରି ଦେୟ ଅସୁଲ କରିବାର ଅଭ୍ୟାସ ରହିଛି । ଇଂରାଜୀ ଶବ୍ଦ 'ଟ୍ୟାକ୍ସ'ର ସେମାନଙ୍କ ଉଚ୍ଚାରଣ 'ଟିକସ' । ଜମିଦାରମାନଙ୍କୁ ବହୁନିନ୍ଦିତ ଆୟକର ଦେବାକୁ ପଡ଼ିଲା ଏବଂ ସେମାନେ ସେମାନଙ୍କ ପ୍ରଜାଙ୍କ ଉପରେ ଘରପିଛା ଟଙ୍କାଏ କରି ବସାଇ ଏହି କର ଉପରେ ଆଉ ଅଧିକ କିଛି ଆୟ କରିଗଲେ ।

ଟ୍ରଙ୍କରାସ୍ତା ତମାମ ଯେତେବେଳେ ଟେଲିଗ୍ରାଫ ତାର ଟଣାଗଲା ଜମିଦାରମାନେ ଏଥିପାଇଁ କିଛି ଦେଇ ନ ଥିଲେ ମଧ, ଦେଇଥିବା ପରି ଛଳନା କରି ଏ ବାବଦ ପ୍ରଜାଙ୍କ ଉପରେ କିଛି ପକେଇଲେ । ଏଇଟା ହେଲା 'ତାର' କାରଣ ଟେଲିଗ୍ରାଫ୍‌କୁ 'ତାର ବିଜୁଳି' କୁହାଯାଏ । ଲୋକଙ୍କଠାରୁ ଅସୁଲ କରିବା ପାଇଁ ଅନେକ ଘଟଣା ସୃଷ୍ଟି କରାଯାଏ ଏବଂ ରଇତ ବିଚରା ତଳିତଳାନ୍ତ ହୋଇ ଅତି ଦୁସ୍ଥ ଜୀବନ ଯାପନ କରେ । ମୁଁ ଏହି ବିଷୟ ଉପରେ ଗୁରୁତ୍ୱ ଦେଇ ଅନୁସନ୍ଧାନ କଲି ଏବଂ ଜାଣିଲି ଯେ ଜିଲ୍ଲାଧାରା ଏପରି ଅନ୍ୟାୟ କର ଆଦାୟ ଅତି ସାଧାରଣ କଥା ହୋଇ ପଡ଼ିଥିଲା । ମୁଁ କମିଶନର ରେଭେନ୍‌ସାଙ୍କୁ ଏ ବିଷୟ ଜଣାଇଲି । ସେ କଟକ ଓ ପୁରୀରେ ଅନୁସନ୍ଧାନ ଚଳାଇଲେ । ସେଥିରୁ ଜଣାଗଲା ଯେ ଏହି ପ୍ରଥା ସବୁଠାରେ ମଧ ଚାଲିଛି । ସେ ଏକଥା ସରକାରଙ୍କୁ ଜଣାଇଦେଲେ । ଏହି ସମୟରେ ବଙ୍ଗଳାରେ ଓ ଦେଶସାରା ପ୍ରଚାରିତ ହୋଇଗଲା ଯେ ହାକିମମାନେ ଟ୍ୟାକ୍‌ସକୁ ବେଆଇନ ଘୋଷଣା କରିଛନ୍ତି । ବଙ୍ଗଳାରେ ଖୁବ୍ ହଇଚଇ ସୃଷ୍ଟି ହେଲା । କେତେକ ଜିଲ୍ଲାରେ ଏଥିପାଇଁ ଦଙ୍ଗା ଆରମ୍ଭ ହୋଇଗଲା ।

ଏହା ବନ୍ଦ କରିବାପାଇଁ ଅନେକ ଯୋଜନା କରାଗଲା; କିନ୍ତୁ କୌଣସିଟା ବିଶେଷ ଫଳ ଦେଲା ନାହିଁ । ତେଣୁ ଛୋଟଲାଟ ଏ ସମ୍ପର୍କରେ ଏକ ଆଇନ ପ୍ରଣୟନର ପ୍ରସ୍ତାବ କଲେ ଏବଂ ଏପରି କାରବାରକୁ ଅବୈଧ ଘୋଷଣା କରିବାପାଇଁ ଦୋଷୀକୁ ଦଣ୍ଡ ଦେବାର ବ୍ୟବସ୍ଥା ଥାଇ ଏକ ନିୟମ ଖସଡ଼ା ପ୍ରସ୍ତୁତ କଲେ । କିନ୍ତୁ ସେତେବେଳେ କାଉନସିଲ ସଭ୍ୟ ଥିବା ରିଚାର୍ଡ୍ ଟେମ୍ପଲଙ୍କ ପରାମର୍ଶ କ୍ରମେ ଭାରତ ସରକାର ଏହି ଉଦ୍ୟମ ବନ୍ଦ କରିଦେଲେ । ଟେମ୍ପଲଙ୍କର ବଙ୍ଗଳା ସମ୍ପର୍କରେ ସାମାନ୍ୟ ଧାରଣା ମଧ ନ ଥିଲା; କିନ୍ତୁ ପରବର୍ତ୍ତୀ ସମୟରେ ସେ ମୋତେ କହିଥିଲେ ଯେ, ଏହା ଅତି ଛୋଟକାଟର ଏକ ଆଞ୍ଚଳିକ ଆନ୍ଦୋଳନ ହୋଇଥିବାରୁ ଏ ସବୁକୁ ଉତ୍ସାହିତ କରିବା ବିଜ୍ଞତାର କାର୍ଯ୍ୟ ନୁହେଁ ବୋଲି ସେ ସ୍ଥିର କଲେ ।

ଏହା ଆମକୁ ଖୁବ୍ ନିରାଶ କଲା; କିନ୍ତୁ ଆମେ ଛାଡ଼ିଲୁ ନାହିଁ । ସରକାର ଆମକୁ ସାହାଯ୍ୟ କରିବେ ନାହିଁ ଜାଣି ଆମେ ନିଜକୁ ସାହାଯ୍ୟ କରିବାକୁ ବଦ୍ଧପରିକର ହେଲୁ । ଆମେ ଜାଣିଥିଲୁ ଯେ, ବହୁଦୂରରେ ଥିବା 'ଭାରତ ସରକାର' ବୋଲାଉଥିବା ସେ ଅଞ୍ଚଟି ଆମକୁ ସାହାଯ୍ୟ ନ କଲେ ମଧ ବଙ୍ଗଳା ସରକାର ଆମ ପକ୍ଷରେ ଥିଲେ । ତେଣୁ ହିଡ଼ିଯାନ ଓ ମୁଁ ଜିଲ୍ଲାର ସର୍ବାଞ୍ଚଳରେ ଧାରାବାହିକ ଭ୍ରମଣ କରି ସେହି ସମୟ ମଧରେ ପ୍ରତ୍ୟେକ ଜମିଦାରିରେ ନିଜ ଜମିଦାର କିମ୍ବା ତାଙ୍କ ଅନୁପସ୍ଥିତିରେ ତାଙ୍କ ପ୍ରତିନିଧିଙ୍କ ସହିତ ରଇତମାନଙ୍କୁ ଠୁଳ କଲୁ । ଲୋକମାନଙ୍କୁ ପଚରା ଉଚରା କରି ଏବଂ ଜମିଦାରଙ୍କ ଖାତାପତ୍ର ଦେଖି ସେମାନେ କଅଣ କଅଣ ଜୋର ଜବର ଅସୁଲ କରୁଛନ୍ତି ତାହା ଜାଣିପାରିଲୁ ଏବଂ ସେସବୁ ମଧରୁ କେଉଁଟା ବେନିୟମ ତାହା ଲୋକଙ୍କୁ ବୁଝାଇ ଦେଲୁ, ଏହିପରି ଭାବରେ ଆମେ ସେମାନଙ୍କ ଆଖି ଖୋଲି, ଅନ୍ୟାୟଦାବିର ପ୍ରତିରୋଧ ପାଇଁ ସେମାନଙ୍କୁ ଜାଗ୍ରତ କରିବାରେ ସଫଳ ହେଲୁ । କିଛିସମୟ ପାଇଁ ପରିସ୍ଥିତି ଗଣ୍ଡଗୋଳିଆ ହୋଇରହିଲା । ଅନ୍ୟାୟ ଅସୁଲ ପାଇଁ ଜମିଦାରଙ୍କ ଭିତରେ ପ୍ରଚେଷ୍ଟାକୁ ଚାଷୀମାନେ ବଳପ୍ରୟୋଗ କରି ପ୍ରତିରୋଧ କରନ୍ତେ ଅଳ୍ପ କେତେ ସ୍ଥଳରେ ମାଡ଼ପିଟ ହେଲା ଏବଂ ମୁଣ୍ଡ ଫାଟିଲା । କିନ୍ତୁ ଆସ୍ତେ ଆସ୍ତେ ଗୋଳମାଳ ଥମିଗଲା । ଜମିଦାରମାନେ ଏପରି ଜବରଦସ୍ତ ଆଦାୟ ଆଉ କରିପାରିବେ ନାହିଁ ଜାଣି ତାହା ପରିତ୍ୟାଗ କଲେ । ଏପରି ନିରୀହ ଚାଷୀକୁଳ, ଏପରି କ୍ଷମତାଶାଳୀ ମାଲିକ ଶକ୍ତି ଓ ଏପରି ଧୂର୍ତ୍ତ ଗୁମାସ୍ତା ଗୋଷ୍ଠୀ ଯେଉଁଠି ଅଛନ୍ତି, ସେଠାରେ ଯେ ଅନ୍ୟାୟ ଅସୁଲ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା ସେ ବିଷୟରେ ଆମେ ନିଧାର୍ଯ୍ୟ ଭାବରେ କହିପାରୁ ନ ଥିଲୁ; କିନ୍ତୁ ଏହା ଯେ ସର୍ବାଞ୍ଚଳରେ ବହୁତ କମିଗଲା ଏବଂ ଅଧିକାଂଶ ସ୍ଥଳରେ ସମ୍ପୂର୍ଣ୍ଣ ବନ୍ଦ ହୋଇଗଲା ତା'ର ଯଥେଷ୍ଟ ପ୍ରମାଣ ଆମେ ଅତି ଶୀଘ୍ର ପାଇଲୁ । ଏହାର ଫଳସ୍ୱରୂପ କୃଷକ କୁଳର ସମ୍ପଦ ଓ ସ୍ୱାଚ୍ଛନ୍ଦ୍ୟ ବେଶ୍ ବୃଦ୍ଧି ପାଇଲା ଏବଂ ନିଜର ଅଧିକାର ବିଷୟରେ ସେମାନଙ୍କର ଜ୍ଞାନ ଜନ୍ମିଲା, ଫଳରେ ଭବିଷ୍ୟତରେ ଉତ୍ପୀଡ଼ନ ଓ ବାଧ୍ୟତାମୂଳକ ଆଦାୟର ପୁନଃ ପ୍ରଚଳନର ଆଉ ସମ୍ଭାବନା ରହିଲା ନାହିଁ । ଆମେ ଯଦି ଏହି ଆନ୍ଦୋଳନକୁ ଯଥାଯଥ ଭାବରେ ସାହାଯ୍ୟ କରିଥାନ୍ତୁ ତେବେ ତାହା ଏକ ସଫଳ ବିପ୍ଳବରେ ପରିଣତ ହୋଇଥାନ୍ତା ଏବଂ ଅଧଃପତିତ କୃଷକସମାଜର ଅବର୍ଣ୍ଣନୀୟ ଉପକାର କରିଥାନ୍ତା । ଯାହାହେଉ ଆମେ ଆମ ସାଧ୍ୟମତେ କଲୁ ଏବଂ ଫଳଲାଗି ନିଜକୁ ଧନ୍ୟ ମନେ କଲୁ ।

୧୮୭୧-୭୨ର ଶୀତଋତୁରେ ଭାଇସରାୟ ଲର୍ଡ଼ ମେୟୋ ଅବହେଳିତ ଓ ଅନ୍ଧକାରାଚ୍ଛନ୍ନ ଏ ପ୍ରଦେଶକୁ ଭ୍ରମଣରେ ଆସୁଛନ୍ତି ଶୁଣି ଆମେ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲୁ । ଭାରତରେ ଇଂରେଜ ରାଜତ୍ୱ ହେଲାଦିନଠାରୁ କୌଣସି ଭାଇସ୍‌ରାଏ ଓଡ଼ିଶା ଆସିନଥିଲେ । ତାଙ୍କୁ ଅଭ୍ୟର୍ଥନା ଜଣାଇବା ପାଇଁ ବିରାଟ ଆୟୋଜନ ଚାଲିଲା ଏବଂ ପାର୍ବତ୍ୟାଞ୍ଚଳରେ ଅର୍ଦ୍ଧସ୍ୱାଧୀନ ଭାବରେ ରାଜତ୍ୱ କରୁଥିବା ଛୋଟ ଛୋଟ ରାଜ୍ୟର ବହୁ ରାଜାଙ୍କ (ଯାହାକୁ ଆମେ ପର୍ବତାଞ୍ଚଳ ବାସୀ 'କିଙ୍ଗ ଅଫ ଦି ଆମୋରାଇଟ୍' ବୋଲି କହୁଥିଲୁ) ଜୋରରେ ହୃତ୍‌ସ୍ପନ୍ଦନ ହେବାକୁ ଲାଗିଲା । ପଶ୍ଚିମାଞ୍ଚଳରେ ଘୋର ଜଙ୍ଗଲ ମଧରେ ପାର୍ବତ୍ୟ ଗଡ଼ମାନଙ୍କଠେ ରହୁଥିବା ମୟୂରଭଞ୍ଜ, କେନ୍ଦୁଝର, ଢେଙ୍କାନାଳ ପ୍ରଭୃତିର ମହାରାଜାମାନେ ସେମାନଙ୍କ ସୁନା ରୁପା ଖଚିତ ଜଙ୍ଗଲ ଅନୁଚରମାନଙ୍କ ଧାଡ଼ିନେଇ ବାହାରିଲେ । ଏହି ଅନୁଚରମାନଙ୍କର ପୋଷାକ ଅଦ୍ଭୁତ ଧରଣର ।

କାହାର କଳଙ୍କି ଲଗା ପୂରା ସାଞ୍ଜୁ, ବର୍ମ, ପିତଳ ଶିରସ୍ତ୍ରାଣ ବା ବାଘ ଚମଡ଼ାର ଅଙ୍ଗାବରଣ ତ କିଏ ଅଣ୍ଟା ଚାରିପାଖେ ପତ୍ରମାଳ ଗୁଡ଼େଇଛି । ସେମାନେ ଧୁମ୍‌ଧାମ୍‌ରେ ଶୋଭାଯାତ୍ରା କରି କଟକରେ ପହଞ୍ଚିଲେ । ଶୋଭାଯାତ୍ରା ସବୁର ଆଗରେ ଶିଙ୍ଘା ଓ ଢୋଲର ଶ୍ରୁତିକଟୁ ବେସୁରା ବାଦ୍ୟ ବାଜୁଥାଏ ଏବଂ ରାଜାମାନେ ପୋଷାକର ଚାକଚକ୍ୟରେ ଓ ନିଜ ସହ ଥିବା ଅନୁଚରମାନଙ୍କ ସଂଖ୍ୟା ବିଷୟରେ ପରସ୍ପର ପ୍ରତିଯୋଗିତା କରୁଥାଆନ୍ତି । ଏଣେ କଟକରେ ଦରବାର, ତମ୍ବୁ, ବାଣ, ଆଲୋକ ସାଜସଜ୍ଜା ଏବଂ ଆନୁଗତ୍ୟ ପ୍ରଦର୍ଶନମୂଳକ ବକ୍ତୃତା ସବୁର ପ୍ରସ୍ତୁତି ଚାଲିଥାଏ । ଯଥାସମୟରେ ଫିଡ଼ିୟାନ ଓ ମୁଁ ସଦଳବଳ ପହଞ୍ଚିଗଲୁ ଏବଂ ସାଙ୍ଗେ ସାଙ୍ଗେ କଟକର କଲେକ୍ଟର ମାକଫରସନଙ୍କୁ ସବୁ ବ୍ୟବସ୍ଥା କାର୍ଯ୍ୟକାରୀ କରିବାରେ ପୂର୍ଣ୍ଣ ସାହାଯ୍ୟ ଓ ସହଯୋଗ ଦେଲୁ । ହଠାତ୍ ଏକ ତାର ସମ୍ବାଦ ଆସି ପହଞ୍ଚିଲା ଯେ, ଲର୍ଡ ମେୟୋ ଆଣ୍ଡାମାନ ଦ୍ୱୀପପୁଞ୍ଜର ମାଉଣ୍ଟ ହ୍ୟାରିଏଟ୍‌ଠାରେ ଦଣ୍ଡିତ ଅପରାଧୀମାନଙ୍କ ନିବାସସ୍ଥଳ ପରିଦର୍ଶନ କରୁଥିବା ବେଳେ ଜଣେ ଅପରାଧୀର ଛୁରା ମାଡ଼ରେ ନିହତ ହୋଇଛନ୍ତି ।

କମିଶନର ରେଭେନ୍‌ସା ବହୁ ପଦସ୍ଥ କର୍ମଚାରୀଙ୍କ ଗହଣରେ ତତ୍କାଳୀନ ଓଡ଼ିଶାର ଏକମାତ୍ର ବନ୍ଦର ଫଲ୍‌ସପଏଣ୍ଟକୁ ଭାଇସରାଏଙ୍କୁ ଅଭ୍ୟର୍ଥନା ଜଣାଇବାକୁ ଯାଇଥିଲେ । ଭାଇସରାଏଙ୍କ ଷ୍ଟିମର ଆସୁଥିବା ସଙ୍କେତ ପାଇ କମିଶନର ତାଙ୍କୁ ଭେଟିବା ପାଇଁ ନିଜ ଷ୍ଟିମରରେ ଆଗେଇଗଲେ । ପାଖାପାଖି ହେବାରୁ ପୋତଟିରେ କିଛି ଅସ୍ୱାଭାବିକତା ତାଙ୍କ ଦୃଷ୍ଟି ଆକର୍ଷଣ କଲା ଏବଂ ଦୂରବୀକ୍ଷଣ କାଚ ଦେଇ ସେମାନେ ଦେଖିଲେ ଯେ ପତାକା ଅର୍ଦ୍ଧନମିତ ! ପାଖକୁ ଯାଇ ସେମାନେ ଜାଣିଲେ ଯେ ତାହା ହେଉଛି ବଡ଼ଲାଟଙ୍କ ସାଙ୍ଗରେ ଥିବା ଆଉ ଏକ ଷ୍ଟିମର, ଯେଉଁଥିରେ କି କେତେକ କର୍ମଚାରୀ ରହିଥିଲେ । ବଡ଼ଲାଟଙ୍କ ନିଜ ଷ୍ଟିମରଟି ତାଙ୍କ ମୃତଦେହ ଓ ଶ୍ରୀମତୀ ମେୟୋଙ୍କୁ ଧରି କଲିକତା ଚାଲିଯାଇଛି । ସେମାନେ ସେ ଦୁଃସମ୍ବାଦ ଶୁଣିଲେ ଏବଂ ବଡ଼ଲାଟଙ୍କ କମଚାରୀମାନେ ସେମାନଙ୍କୁ ଶୀଘ୍ର କଟକ ଫେରିଯାଇ କଲିକତାକୁ ତାର କରିଦେବା ପାଇଁ କହିଲେ ଯେପରିକି ଷ୍ଟିମର ପହଞ୍ଚିବା ପୂର୍ବରୁ କଲିକତାରେ ଖବରଟା ପହଞ୍ଚେ, ସେମାନେ ସେହିପରି କଲେ । ଆମର ବିରାଟ ପ୍ରସ୍ତୁତି ବନ୍ଦ ରହିଲା । ରାଜାମାନେ ସେମାନଙ୍କ ପାର୍ବତ୍ୟ ରାଜ୍ୟମାନଙ୍କୁ ଫେରିଗଲେ ଏବଂ ସମବେତ ବିରାଟ ଜନତା ଦୁଃଖ ଓ ବିକ୍ଷୁବ୍‌ଧ ଚିତ୍ତରେ ଅପସରିଗଲେ । ହତ୍ୟାକାରୀ ଜଣେ ଆଫଗାନବାସୀ । ହତ୍ୟା ଅପରାଧ ଲାଗି ସେ ନିର୍ବାସନ ଦଣ୍ଡ ଭୋଗୁଥିଲା । ଅବଶ୍ୟ ଏ ଦଣ୍ଡ ତା ପ୍ରତି ଅନ୍ୟାୟ ବୋଲି ସେ ମନେକରୁଥିଲା ଏବଂ ନିଜ ଉପରେ ପ୍ରତିଶୋଧ ନେବାପାଇଁ ସୁଯୋଗ ଖୋଜୁଥିଲା । ଲର୍ଡ଼ ମେୟୋଙ୍କ ମୃତ୍ୟୁରେ ସମସ୍ତେ ଦୁଃଖିତ ହେଲେ । ସେ ଥିଲେ ଜଣେ ଦୀର୍ଘକାୟ, ମର୍ଯ୍ୟାଦାସମ୍ପନ୍ନ, ମେଳାପି ଓ ଖୁସିବାସିଆ ଲୋକ ଏବଂ ବ୍ୟକ୍ତିଗତ ଭାବରେ ଖୁବ୍ ଜନପ୍ରିୟ ଏବଂ କର୍ମକ୍ଷେତ୍ରରେ ନିପୁଣ, ବୁଦ୍ଧିମାନ୍ ଓ କର୍ମତତ୍ପର ଶାସକ । ଏ ଦୁଃଖଦାୟକ ଘଟଣା ବିଷୟରେ ଅଧିକ ଲେଖିବା ନିରର୍ଥକ । ଇଂରେଜ ଶାସିତ ଭାରତର ଘଟନା ପଞ୍ଜିକାରେ ଏସବୁ ବିଷୟ ଲେଖା ଯାଇ ନାହିଁ କି ?

ଏହାପରେ ଆମେ ବାଲେଶ୍ୱରର ତନ୍ଦ୍ରାଚ୍ଛନ୍ନ କୋଣର ନୀରବତା ମଧ୍ୟକୁ ଫେରିଗଲୁ ଏବଂ ନିତିଦିନିଆ ଧାରାବାହିକ କାର୍ଯ୍ୟ ଆରମ୍ଭ କଲୁ । ୧୮୭୨ ଅକ୍‌ଟୋବର ୧୩ ତାରିଖରେ

ଆମର ସପ୍ତମ ସନ୍ତାନ ଓ ଚତୁର୍ଥ କନ୍ୟା ଗ୍ରେଚ୍‌ନ୍‌ର ଜନ୍ମ ହେଲା । ପିଲାଟି ପ୍ରଥମେ ଦୁର୍ବଳିଆ ଥିଲା ଏବଂ ଆମକୁ ବହୁ ମନସ୍ତାପ ଦେଲା; କିନ୍ତୁ ପରେ ତାର ଧାତ୍ରୀ, ଡୋରାନ ନାମରେ ଆଗନ୍ତୁକା ଜଣେ ଆଇରିଶ୍ ବୃଦ୍ଧାଙ୍କ (ସେ ମାତା-ଡ଼ି ନାମରେ ସର୍ବତ୍ର ପରିଚିତା ଥିଲେ) ସେବା ଯତ୍ନରେ ତାର ସ୍ୱାସ୍ଥ୍ୟ ଆସିଗଲା ଏବଂ ସେ ଖୁବ୍ ସୁନ୍ଦର ହୋଇଗଲା ।

ଏହି ବର୍ଷ ମୁଁ ବାଲେଶ୍ୱର ଜିଲ୍ଲାର ଇତିହାସ, ଭୂଗୋଳ, ଜାତି, ଶିଳ୍ପ ଏବଂ ଅନ୍ୟାନ୍ୟ ବିଷୟ ସମ୍ବଳିତ ଏକ ବିବରଣୀ ପୁସ୍ତକ ଲେଖିଲି । ଏଥିରେ ମୋର ବହୁଶ୍ରମ ଓ ସମୟ ବ୍ୟୟିତ ହେଲା; କିନ୍ତୁ ତାହା ପ୍ରକାଶ ପାଇପାରିଲା ନାହିଁ; କାରଣ ମୁଁ ପରେ ଉଲ୍ଲେଖ କରିବି । ସେଇ ବର୍ଷ କିନ୍ତୁ ମୋର 'ଆଧୁନିକ ଭାରତୀୟ ଭାଷାମାନଙ୍କର ତୁଳନାତ୍ମକ ବ୍ୟାକରଣର ପ୍ରଥମ ଖଣ୍ଡଟି ପ୍ରକାଶ ପାଇଲା । ଏହା ଟ୍ରୁବନରଙ୍କ ଦ୍ୱାରା ପ୍ରକାଶିତ ହେଲା ଏବଂ ସଙ୍ଗେ ସଙ୍ଗେ ଇଂଲଣ୍ଡ ଓ ୟୁରୋପୀୟ ପ୍ରାଚ୍ୟ ଭାଷାବିଦ୍‌ମାନଙ୍କ ଦ୍ୱାରା ଗୃହୀତ ହେଲା । ଇଂରାଜୀ ଓ ଜର୍ମାନୀ କାଗଜଗୁଡ଼ିକରେ ଏହା ଉପରେ ଉତ୍ତମ ମତାମତ ପ୍ରକାଶିତ ହେଲା ଓ ଅନେକ ବିଶ୍ୱବିଦ୍ୟାଳୟରେ ପାଠ୍ୟରୂପେ ଗୃହୀତ ହେଲା । ଏହା ମୋ ପାଇଁ ବହୁ ସୁନାମ ଓ ସମ୍ମାନ ଆଣିଦେଲା ।

ମୁଁ ମଧ 'ଇଣ୍ଡିଆନ ଅବଜରଭର୍' 'ଇଣ୍ଡିଆନ ଆଣ୍ଟିକ୍ୱାରୀ' ଏବଂ 'ଜର୍ଣ୍ଣାଲ ଅଫ ଦି ବେଙ୍ଗଲ ଏସିୟାଟିକ ସୋସାଇଟି'ରେ ବରାବର ପ୍ରବନ୍ଧମାନ ଲେଖୁଥିଲି । ବାଲେଶ୍ୱର ଏପରି ଏକ ଛୋଟିଆ ମାନ୍ଦା ଜାଗା ଏବଂ ସେଠାରେ ଥିବା ମୁଷ୍ଟିମେୟ ୟୁରୋପୀୟ ଅଧିବାସୀ ଏତେ ନିର୍ବୋଧ ଓ ଗତାନୁଗତିକ ଯେ, ମୁଁ ନିଜକୁ ମରଣାନ୍ତକ ଅବସାଦରୁ ରକ୍ଷା କରିବାପାଇଁ କିଛି ନା କିଛି କାମରେ ନିଯୁକ୍ତ ରହିବାକୁ ବାଧ୍ୟ ହୁଏ । ସକାଳବେଳା ମୋର ସ୍ତ୍ରୀଙ୍କ ସହ ଘୋଡ଼ାରେ ବୁଲିଯିବା, ନୌ ବିହାର କିମ୍ବା ମାଛଧରା ପାଇଁ ସମୁଦ୍ରକୁ ଯିବା କିମ୍ବା ଯେଉଁ ବହି ସେଠାରେ ମିଳିଲା ତାକୁ ପାଠ କରିବା ଥିଲା ମୋର ପ୍ରଧାନ ଆମୋଦ । ମୋର ସ୍ତ୍ରୀ ଚାରା ରୋପଣକରି ଯେଉଁ ଉଦ୍ୟାନଟି କରିଥିଲେ ସେହି ବର୍ଷର ବାତ୍ୟାରେ ତାହା ସମ୍ପୂର୍ଣ୍ଣ ଧୋଇଯିବା ପର୍ଯ୍ୟନ୍ତ ଖୁବ୍ ମନୋରମ ହୋଇଥିଲା । ଗୋଲାପ ଚାରା ବଢ଼ାଇବାରେ ସେ ପ୍ରସିଦ୍ଧି ଅର୍ଜନ କରିଥିଲେ ଏବଂ ଆମ ନିକଟକୁ ମଝିରେ ମଝିରେ ଆସୁଥିବା ଅତିଥିମାନେ ତାଙ୍କ ଉଦ୍ୟାନକୁ ଖୁବ୍ ପ୍ରଶଂସା କରୁଥିଲେ । ବିଭିନ୍ନ ଧରଣର ରାଜକର୍ମଚାରୀ ବାଲେଶ୍ୱର ବାଟଦେଇ ସମୟେ ସମୟେ ଯାଉଥାନ୍ତି ଏବଂ ସେଠାରେ ଆମର ସ୍ଥିତି ଉପରେ କିଛି କିଛି ଜୀବନ ସଞ୍ଚାର କରୁଥାନ୍ତି ।

ସେହି ସ୍ଥିତି ଉପରେ ଦିନେ ହଠାତ୍ ଆଶାତିରିକ୍ତ ଭାବରେ ପୂର୍ଣ୍ଣଚ୍ଛେଦ ପଡ଼ିଗଲା, ଯେବେ ରେଭେନ୍‌ସା ଛୁଟି ନେଇ ଯାଉଥିବା ହେତୁ ମୋତେ ତିନିମାସ ପାଇଁ ଓଡ଼ିଶାର କମିଶନର ଦାୟିତ୍ୱ ତୁଲାଇବା ସକାଶେ ନିଯୁକ୍ତି ମିଳିଲା ୧୮୭୩ର ଅଗଷ୍ଟ ମାସରେ । ଏହାପରେ ମୁଁ ବାଲେଶ୍ୱରକୁ ଥରେ ଦୁଇଥର ବୁଲିବାକୁ ଆସିଚି; କିନ୍ତୁ ସେଠାରେ ଆମର ଚାରିବର୍ଷର ରହଣି ଶେଷ ହୋଇଗଲା ଏବଂ ଆମେ ସେଥିପାଇଁ ଖୁବ୍ ଖୁସି ହେଲୁ ।



# ସପ୍ତଦଶ ପରିଚ୍ଛେଦ

## କଟକ : ୧୮୭୩

୧୮୭୩ ଅଗଷ୍ଟ ୧୨ ତାରିଖରେ ମୁଁ କଟକରେ ପହଞ୍ଚି ଓଡ଼ିଶାଖଣ୍ଡର କମିଶନର ଅଫିସର ଦାୟିତ୍ୱ ନେଲି । ଇଂରେଜ ଶାସନରେ ଥିବା କଟକ, ପୁରୀ, ବାଲେଶ୍ୱର ଜିଲ୍ଲା ସାଙ୍ଗକୁ କମିଶନରଙ୍କ ସାଧାରଣ ତତ୍ତ୍ୱାବଧାନରେ ରହିଥିବା ରାଜଶାସିତ ୧୭ଟି କରଦ ରାଜ୍ୟ ମଧ ଏହି ଖଣ୍ଡର ଅନ୍ତର୍ଭୁକ୍ତ ଥିଲା । କମିଶନର ଏହିସବୁ କରଦ ରାଜ୍ୟର ସୁପରିନ୍‌ଟେଣ୍ଡେଣ୍ଟ ରୂପେ ଥିଲେ । ଏହି ସମସ୍ତ ରାଜ୍ୟ ସମତଳ ଜିଲ୍ଲାମାନଙ୍କର ପଶ୍ଚିମ ପଟକୁ ଜଟିଳ ପର୍ବତ ଶ୍ରେଣୀ ଓ ଅଧିକାଂଶ ଭାଗ ଦୁର୍ଗମ ଅରଣ୍ୟ ମଧ୍ୟରେ ଅବସ୍ଥିତ।

ରେଭେନ୍‌ସା 'ସ୍ୱତନ୍ତ୍ର ସୁବିଧା' ବୋଲି କୁହାଯାଉଥିବା ଛୁଟିରୁ ୩ ମାସ ନେଇଥିଲେ, ଏବଂ ସେଥିରୁ ଯେପରି ଗୋଟିଏ ଦିନ ନଷ୍ଟ ନ ହୁଏ ସେଥିପାଇଁ ମୋତେ କାଗଜପତ୍ର ହସ୍ତାନ୍ତର କରିବାବେଳେ ଷ୍ଟିମର୍‌ରେ ଚଢ଼ିବା ପର୍ଯ୍ୟନ୍ତ ହସ୍ତାନ୍ତର ପତ୍ରରେ ଦସ୍ତଖତ କରିବାକୁ ମନାକଲେ । ସେଥିପାଇଁ ମୋତେ ତାଙ୍କ ଓ ତାଙ୍କ ପତ୍ନୀଙ୍କ ସହ ଫଲସ୍‌ପଏଣ୍ଟ ପର୍ଯ୍ୟନ୍ତ ଯାଇ ଛୋଟ ସରକାରୀ ଷ୍ଟିମର ଉପରକୁ ଉଠିବାକୁ ପଡ଼ିଲା । ସେଠାରେ କଲିକତାରୁ ମାଡ୍ରାଜ ଯାଉଥିବା ବ୍ରିଟିଶ୍ ଇଣ୍ଡିଆ କୋମ୍ପାନୀର ଷ୍ଟିମର୍, ଯେଉଁଥିରେ କି ରେଭେନ୍‌ସା ଯିବାର କଥା, ତାହା କେତେବେଳେ ଫଲସ୍‌ପଏଣ୍ଟରେ ଲାଗିବ ସେଥିପାଇଁ ୨୪ ଘଣ୍ଟା ଅପେକ୍ଷା କରିବାକୁ ପଡ଼ିଲା । ଆମ ସମୟଟା ଆନନ୍ଦରେ କଟିଲା; କାରଣ ଅନେକ ଲୋକ ସେଠାରେ ଷ୍ଟିମର୍‌କୁ ଅପେକ୍ଷା କରୁଥିଲେ । ଶେଷରେ କଲିକତାରୁ ଷ୍ଟିମର୍ ଆସିଲା । ରେଭେନ୍‌ସା ବିଦାୟ ନେଲେ ଏବଂ ମୁଁ କଟକକୁ ଫେରିପାରିଲି । ମୋର ଅନୁପସ୍ଥିତି ଫଳରେ ବହୁତ ଅସୁବିଧା ସୃଷ୍ଟି ହୋଇଥିଲା । କେବଳ କାମଗୁଡ଼ାଏ ଜମି ଯାଇଥିବାରୁ ନୁହେଁ ବାଲେଶ୍ୱରରୁ ଆସିବା ଯାତ୍ରା ଫଳରେ ଆମର କନିଷ୍ଠ ସନ୍ତାନ ଗେରର୍ଟ୍ରୁଡ୍ ବେମାର ହୋଇପଡ଼ିଥିଲା । ପିଲାଟି ସମ୍ପର୍କରେ ମୋର ସ୍ତ୍ରୀଙ୍କୁ ଖୁବ୍ ଉତ୍କଣ୍ଠିତ ଅବସ୍ଥାରେ ଛାଡ଼ି ମୋତେ ଯିବାକୁ ହୋଇଥିଲା । ତେଣୁ ମୁଁ ଖଲାସ ପାଇବା ମାତ୍ରେ କାମକୁ ଫେରୁଥିବା ଆଉ ୨ଜଣ ବ୍ୟକ୍ତିଙ୍କ ସହ ବାଷ୍ପୀୟ ଲଞ୍ଚରେ ଫେରି ଆସିଲି। ଛୋଟ ଜଳଯାନଟି ତାର ପାରୁପର୍ଯ୍ୟନ୍ତ ଟାଣି ଆମକୁ ତା ପରଦିନ ସକାଳେ କଟକରେ ପହଞ୍ଚାଇ ଦେଲା । ଅବତରଣ ସ୍ଥଳରେ ଆମେ ବୃଦ୍ଧ ସବ୍‌ଜଜ୍ ରାଇଟ୍‌କୁ ଦେଖିଲୁ । ବିଚଳିତ ଚିତ୍ତରେ ସେ ଉପରତଳ ହୋଇ ବୁଲୁଥିଲେ ଏବଂ ତାଙ୍କ ମୁହଁ ଖୁବ୍ ଶେତା ପଡ଼ିଯାଇଥିଲା । ମୋର ଛାତି ଥରିଉଠିଲା, କାରଣ ପିଲାଟି ସମ୍ପର୍କରେ କିଛି ଦୁଃସମ୍ବାଦ ଆଶଙ୍କା କରୁଥିଲି । ଅବଶ୍ୟ ଦୁଃସମ୍ବାଦ ଥିଲା, କିନ୍ତୁ ଅନ୍ୟ ଧରଣର । ଆମେ ତାଙ୍କର ଶ୍ରବଣ ସୀମା ମଧ୍ୟକୁ ଯିବାମାତ୍ରେ ଆମକୁ କହିଲେ— "ଇର୍ ଭିନ୍ ମରିଗଲେ ।"

ଇର୍‌ଭିନ୍ ଥିଲେ କଲେକ୍‌ଟର ଏବଂ ୩ ଦିନ ପୂର୍ବରୁ ଆମେ ତାଙ୍କୁ ପ୍ରାୟ ହୃଷ୍ଟପୁଷ୍ଟ ଶରୀରରେ ଦେଖିଯାଇଥିଲୁ ।

୧୮୬୬ରେ ଓଡ଼ିଶାର ଭୀଷଣ ଦୁର୍ଭିକ୍ଷ ସମୟରୁ କର୍ମଜଞ୍ଜାଳ ପରିପୂର୍ଣ୍ଣ ବିରାଟ କଟକ କଚେରିରେ ବାକିଆ କାମ ବହୁ ପରିମାଣରେ ଜମି ରହୁଥିଲା । ଜଣକ ପରେ ଜଣେ କଲେକ୍‌ଟର ଯେ ସବୁ କାମ ସାରିବାକୁ ଚେଷ୍ଟାକରି ବିଫଳ ହୋଇଥିଲେ । ବର୍ଣ୍ଣିତ ସମୟର ପ୍ରାୟ ବର୍ଷକ ପୂର୍ବରୁ ଇର୍‌ଭିନ୍ ସେଠାରେ କଲେକ୍‌ଟର ରୂପେ ନିଯୁକ୍ତ ହୋଇଥିଲେ । ସେ ଜଣେ ବିଚକ୍ଷଣ ଆଇରିଶ୍ ଯୁବକ କିନ୍ତୁ ତାଙ୍କ କାମରେ ଶୃଙ୍ଖଳାର ଖୁବ୍ ଅଭାବ ଥିଲା । ଅବସ୍ଥାକୁ ଆହୁରି ଖରାପ କରିଦେଲେ ଦେଶୀୟ ଅଧସ୍ତନ କର୍ମଚାରୀମାନଙ୍କୁ ଅଯଥା ସନ୍ଦେହ କରି । ଫଳରେ ନିଜର ସମୟ ନ ଥିଲେ ମଧ ସବୁ କାମରେ ତାଙ୍କୁ ହାତ ଦେବାକୁ ପଡ଼ିଲା ଏବଂ ବହୁକାମ କରିବାକୁ ପଡ଼ିଲା, ଯାହାକୁ କି ସେମାନେ ଠିକ୍ ଭାବରେ କରିପାରିଥାନ୍ତେ । ଏହିପରି ବାକିଆ କାମ ବେଶି ଜମିଗଲା । ଅଫିସରେ ୧୦ ଟାରୁ ୬ଟା କାମ କରି ସନ୍ତୁଷ୍ଟ ନ ହୋଇ ସେ ରାତିରେ ତାଙ୍କ ଘରକୁ ଗୁଡ଼ାଏ କାଗଜପତ୍ର ନେଇଯାନ୍ତି ଏବଂ ରାତି ୨ଟା ୩ଟା ପର୍ଯ୍ୟନ୍ତ ବସି କାମ କରନ୍ତି । କଟକରେ ମୋର ପହଞ୍ଚିବା ଦିନ ରେଭେନ୍‌ସାଙ୍କ ସହିତ ତାଙ୍କ ଘରକୁ ଯାଉଥିଲାବେଳେ ଇର୍‌ଭିନ୍‌ଙ୍କୁ ଡାକବୁହା ଗାଡ଼ିରେ ଅଫିସ୍‌ରୁ ଫେରୁଥିବା ଦେଖିଥିଲି । ଗାଡ଼ି ପଛରେ ବଡ଼ ବଡ଼ ବସ୍ତାସବୁ ଖୁନ୍ଦା ହୋଇଥିଲା । ସେ କହୁଥିଲେ ଯେ, ସେ ସବୁରେ କାଗଜପତ୍ର ଅଛି, ରାତିରେ ଖାଇସାରି ସେସବୁ କାମ ସେ କରିବେ । ଜଣେ ସବଳ ପୂର୍ଣ୍ଣାବୟବ ମଣିଷ, ଯାର କାର୍ଯ୍ୟ ଦକ୍ଷତାର ସୁରକ୍ଷା ପାଇଁ ଯଥେଷ୍ଟ ବ୍ୟାୟାମ ଦରକାର, ତା'ଉପରେ ଏପରି ଏ ଧରଣର ଅତିରିକ୍ତ କାମ ମରଣାନ୍ତକ ହୋଇପଡ଼ିଲା । ଦିନେ ପ୍ରାୟ ରାତି ତମାମ୍ ସେ କାଗଜପତ୍ର କାମ କରିବା ପରେ କିଛି ସମୟ ଶୋଇପଡ଼ିବା ପୂର୍ବରୁ ଗାଧୋଇବା ପାଇଁ ଗଲେ । ଗାଧୁଆ ଘରେ ସେ ମୂର୍ଚ୍ଛାଗଲେ ଏବଂ ଚେତା ଆଉ ଫେରିଲା ନାହିଁ, କେତେ ଘଣ୍ଟାପରେ ପ୍ରାଣ ଚାଲିଗଲା ।

ମୁଁ ଦେଖିଲି ଅବସ୍ଥା ଖୁବ୍ ଗଣ୍ଡଗୋଳିଆ । କମିଶନର୍ କାମ ମଧ ମୋତେ ଶିଖିବାର ଥିଲା ଏବଂ ତା ଉପରେ କଟକ କଚେରିର ଅସମ୍ଭବ ଗୋଳମାଳିଆ ଅବସ୍ଥା । ସହଯୋଗୀ ମାଜିଷ୍ଟ୍ରେଟ୍ ଜେ.ଏଫ୍. ଷ୍ଟିଭେନ୍‌ସ ବୁଦ୍ଧିମାନ ହେଲେ ମଧ ତରୁଣ ଓ ଅନଭିଜ୍ଞ । ତେଣୁ ଯେଉଁ ନୂଆ ଦାୟିତ୍ୱର ବଡ଼ ବୋଝ ତାଙ୍କ ଉପରେ ପଡ଼ିଲା ସେଥିରେ ସେ ଘାବରେଇ ଗଲେ । କାରଣ କଲେକ୍‌ଟରଙ୍କ ମୃତ୍ୟୁ ହୋଇଗଲେ କ୍ଷମତାରେ ତାଙ୍କ ତଳକୁ ଥିବା ସହଯୋଗୀ ମାଜିଷ୍ଟ୍ରେଟ୍‌ଙ୍କ ଉପରେ ଜିଲ୍ଲାର କାମ ପଡ଼ିବା କଥା । ମୁଁ ଘରେ ପହଞ୍ଚିବାର ଘଣ୍ଟାଏ ନ ହେଉଣୁ ବିଚରା ଇର୍‌ଭିନ୍‌ଙ୍କର ବଡ଼ ବଡ଼ କାଗଜ ବସ୍ତା ସବୁ ଗାଡ଼ିରେ ବୋଝେଇ କରି ନେଇ ସେ ଯାଇ ମୋ ପାଖରେ ହାଜର ହୋଇଗଲା । ଭୟରେ ଥରି ଥରି ଶେତା ପଡ଼ିଯାଇଥାନ୍ତି । ପୂର୍ବଦିନ ତମାମ୍ ଜଜ୍ ମହାଶୟ, ଯାହାଙ୍କର କାମ ହେଉଛି ମୃତ ୟୁରୋପୀୟମାନଙ୍କର ସମ୍ପତ୍ତିର ଦାୟିତ୍ୱ ନେବା, ସେ ଇର୍‌ଭିନ୍‌ଙ୍କ କୋଠରିରେ କାଗଜ ସବୁ ଅତି ବିଶୃଙ୍ଖଳିତ ଭାବରେ ଏଣେତେଣେ ଖିନ୍ ଭିନ୍ ହୋଇ ପଡ଼ିଥିବାର ଦେଖି ସେ ସବୁ ବସ୍ତା ବସ୍ତା କରି ଷ୍ଟିଭେନ୍‌ସ୍‌ଙ୍କ ପାଖକୁ ପଠାଉଥାନ୍ତି । ଷ୍ଟିଭେନ୍‌ସଙ୍କ ଧାରଣା ଥିଲା ଯେ, ତାଙ୍କ କାମ ହେଉଛି ଇର୍‌ଭିନ୍‌ଙ୍କ ନିର୍ଦ୍ଦେଶ କାର୍ଯ୍ୟକାରୀ କରିବା

ଏବଂ ସବୁ କାଗଜପତ୍ର ପରବର୍ତ୍ତୀ ସମୟରେ ବିଚାରକୁ ଆସିଲା ପରି କ୍ରମାନ୍ୱୟରେ ସଜାଇ ରଖିବାରେ କର୍ମଚାରୀଗଣଙ୍କୁ କାମରେ ଲଗାଇବା; କିନ୍ତୁ ଏ ଧରଣର ପରିଶ୍ରମକୁ ମୁଁ ମୂଲ୍ୟହୀନ ମନେ କଲି । ପ୍ରଥମ କାର୍ଯ୍ୟ ହେଲା, ଜିଲ୍ଲାର ଦାୟିତ୍ୱ ସମ୍ପର୍କରେ ବନ୍ଦୋବସ୍ତ କରିବା । ସମୟ ନଷ୍ଟ କରିବାର ନୁହେଁ। ସେଥିପାଇଁ ଷ୍ଟିଭେନ୍‌ସଙ୍କୁ କାର୍ଯ୍ୟକାରୀ କଲେକ୍ଟର ରୂପେ ନିଯୁକ୍ତି ଦେବାପାଇଁ ମୁଁ ସରକାରଙ୍କୁ ତାର ଦ୍ୱାରା ଜଣାଇଲି । ସାର୍ ଜର୍ଜ୍ କାମ୍ପବେଲଙ୍କୁ ଚିଠିରେ ଜଣାଇଦେଲି ଯେ, ଦୂରରୁ ଜଣେ ଅଫିସର ପଠାଇବାରେ ବହୁ ବିଳମ୍ବ ହେବ । ଏ ଧରଣର ପଦୋନ୍ନତି ଖୁବ୍ ବଡ଼ ଓ ଓ ଆଶାତୀତ ହେଲେ ମଧ୍ୟ ଏତେ ବଡ଼ ଦାୟିତ୍ୱ ନେବାପାଇଁ ଷ୍ଟିଭେନସନ୍‌ଙ୍କର କିପରି ଏକ ଭୟ ଥିଲା । କିନ୍ତୁ ମୋ ସାହାଯ୍ୟର ପ୍ରତିଶ୍ରୁତି ପାଇ ସେ ରାଜି ହେଲେ । ସେହିଦିନ ତାରରେ ତାଙ୍କର ନିଯୁକ୍ତି ଆସିଗଲା ଏବଂ ପରଦିନ ବଡ଼ିସକାଳୁ ସେ ତାଙ୍କର ବସ୍ତା ବୋଝେଇ ଗାଡ଼ି ଧରି ମୋ ପାଖକୁ ଆସିଲେ । ଏଥର କିନ୍ତୁ ହସ ହସ ମୁହଁରେ ବସ୍ତା ସବୁ ମୋ ପଢ଼ାଘରକୁ ଅଣାଗଲା ଓ ସେ ପୂର୍ବ ବ୍ୟବସ୍ଥା ଅନୁଯାୟୀ ସେ ସବୁକୁ କ୍ରମାନ୍ୱୟରେ ସଜାଇବା କାମ ଆରମ୍ଭ କରିଦେଲେ ।

ମୁଁ କହିଲି— "କିନ୍ତୁ ଏ ସବୁ ଅଯଥା ଶ୍ରମ କାହିଁକି ? ଏ ଚିଠିସବୁର ଲମ୍ବା ତାଲିକା କରିବାରେ ଯେତେ ସମୟ ଲାଗିବ, ସେଥିଭିତରେ ସେ ସବୁର ଉତ୍ତର ଦିଆଯାଇପାରେ ।"

ସେ ମୋ ଆଡ଼େ ଫାଙ୍କା ଫାଙ୍କା ଆଖିରେ ଚାହିଁ ରହିଲେ । ପଚାରିଲେ— "କିପରି ?"

ମୁଁ କହିଲି— "ସେ ଟେବୁଲ୍ ଉପରେ ବସ୍ତାଗୁଡ଼ାକ ଖାଲି କରି ଦିଅନ୍ତୁ । ମୁଁ ଦେଖେଇଦେବି କିପରି ।"

ବସ୍ତାଗୁଡ଼ିକ ଗୋଟାଏ ବଡ଼ ଖାଇବା ଟେବୁଲ ଉପରେ ଖାଲି କରି ଦିଆଗଲା ଏବଂ ସେତିକିବେଳେ ଆସି ପହଞ୍ଚିଥିବା ଜଣେ ଖୁବ୍ ଫୁର୍ତ୍ତି ଯୁବକ ପୋଲିସ୍ ଅଫିସର ଗ୍ରେଭସ୍‌ଙ୍କୁ ମଧ୍ୟ ମୁଁ କାମରେ ଲଗାଇଦେଲି । ସେ ଦୁଇଜଣଙ୍କୁ ହାତରେ ପେନ୍‌ସିଲ୍ ଧରାଇ ମୋ ସାମନାରେ ବସାଇଲି ।

ପ୍ରଥମେ ଯେଉଁ ଚିଠିଟି ଖୋଲିଲି ସେଥିରେ ଉତ୍ତର ଦେବା ଆବଶ୍ୟକ ନ ଥିଲା । "ଏହା ଉପରେ ଫାଇଲ୍ ବୋଲି ଲେଖିଦିଅ ।" ସେମାନେ ସେହିପରି ଲେଖିଲେ ଏବଂ ଷ୍ଟିଭେନ୍‌ସ ସେଥିରେ ସନ୍ତକ ଦେଲେ । ସେପରି କରିବାର ଉଦ୍ଦେଶ୍ୟ ସେ ଚିଠିଟି ଯେଉଁ ଫାଇଲ ପାଇଁ ଉଦ୍ଦିଷ୍ଟ, କିରାଣି ସେଇ ଫାଇଲରେ ରଖିଦେବ । ପ୍ରତ୍ୟେକଟି କାଗଜ ବା ଚିଠି ଖୋଲା ହେଉଥାଏ, ମୁଁ ପଢୁଥାଏ, ସେ ଦୁଇଜଣଙ୍କ ମଧ୍ୟରୁ ଜଣକ ପାଖକୁ ଫିଙ୍ଗି ଦେଉଥାଏ ଏବଂ ମୁଁ ଡାକୁଥିବା ନିର୍ଦ୍ଦେଶାବଳୀକୁ ସେମାନେ ଲେଖୁଥାନ୍ତି । ଏହିପରି ଭାବରେ ଆମେ ପ୍ରାୟ ୩ଘଣ୍ଟା କାମ କଲୁ । ତା'ରି ଭିତରେ ସେହି ବିପୁଳ ପରିମାଣ କାଗଜରୁ ଅଧାଅଧି ଆମେ ସାରିଦେଲୁ । ଷ୍ଟିଭେନ୍‌ସ୍‌ଙ୍କର କେବଳ କାମ ହେଲା ସେ କାଗଜ ସବୁକୁ ତାଙ୍କ ହେଡ୍ କିରାଣିଙ୍କୁ ଦେଇଦେବା ଯେ କି ଅଳ୍ପ କେତେ ଘଣ୍ଟା ମଧ୍ୟରେ ସେ ସବୁରେ ଥିବା ନିର୍ଦ୍ଦେଶ ମୁତାବକ ଯାହା କରିବାର କଥା କରିଦେବେ । ଷ୍ଟିଭେନ୍‌ସ୍ ଖୁସିହୋଇ ବିଦାୟ ନେଲେ । ପ୍ରତିଦିନ କିଛି ସମୟ ମୁଁ ତାଙ୍କ ଅଫିସକୁ ଯାଇ ତାଙ୍କ ସହ କାମ କରେ ଏବଂ ତା'ପରେ ମୋ ନିଜ କାମ କରେ । କାମ ବୁଝିବାରେ ଏବଂ ଶୀଘ୍ର

ଶିଖିନେବାରେ ଜଣେ ସୁଦକ୍ଷ ବ୍ୟକ୍ତି ଥିବାରୁ ଷ୍ଟିଭେନ୍‌ସ୍ ମୋ ସହାୟତାରେ କିପରି କାମ ସବୁ ସାରିବାକୁ ହେବ ତାହା ଶୀଘ୍ର ଜାଣିଗଲେ । ଏକାବେଳକେ କମିଶନ୍‌ର ଓ କଲେକ୍‌ଟର ହେବା ବଡ଼ କଠିନ କାମ ଏବଂ ସେ ସମୟ ଯେତେବେଳେ ସରିଗଲା ମୁଁ ଦୁଃଖିତ ହେଲି ନାହିଁ ।

କିନ୍ତୁ ମୁଁ ଗୋଟିଏ କଥା ଜାଣିବାକୁ ପାଇଲି, ଯେଉଁ ବିପୁଳ ପରିମାଣ ବାକିଆ କାମ ଜମିଥିଲା ତାହା ଯେ ଦୁର୍ଭିକ୍ଷ ଜନିତ ଗୋଳମାଳିଆ ପରିସ୍ଥିତିରୁ କିମ୍ବା ପୂର୍ବ ୨ ଜଣ କଲେକ୍‌ଟରଙ୍କ ବିଶୃଙ୍ଖଳିତ ଅଭ୍ୟାସରୁ ହୋଇଥିଲା ତାହା ନୁହେଁ, ଦେଶୀୟ କିରାଣିମାନଙ୍କର ମନ୍ଥରତା ଓ ଅସାଧୁତା ଏଥିପାଇଁ ବହୁ ପରିମାଣରେ ଦାୟୀ । ଯେଉଁମାନେ ଭାରତୀୟ ଶାସନ ସଂସ୍ଥାରେ ଚାକିରି କରି ନାହାନ୍ତି ସେମାନେ ଏ ସବୁ ବିଭାଗୀୟ ସମସ୍ୟାର ଟିକିନିଖି ଅଧ୍ୟୟନ ନ କଲେ କିଛି ବୁଝି ପାରିବେ ନାହିଁ କିମ୍ବା ଏଇ ଲୋକଗୁଡ଼ାକ (କିରାଣି) କିପରି କାମ କରନ୍ତି ବା ସେତେବେଳେ କିପରି କରୁଥିଲେ ତାହା ଧରି ପାରିବେ ନାହିଁ । ବିଭିନ୍ନ ବିଭାଗର ମୁଖ୍ୟ ବୁଢ଼ା କିରାଣୀମାନେ ପୁରୁଣାକାଳିଆ ଗତାନୁଗତିକ କାର୍ଯ୍ୟପନ୍ଥାରେ ସମ୍ପୂର୍ଣ୍ଣ ଅଭ୍ୟସ୍ତ । ପ୍ରତ୍ୟେକଙ୍କ ଅଧୀନରେ ତଳିଆ କିରାଣିମାନଙ୍କର ଗୋଟାଏ ବାହିନୀ ଏବଂ ସବୁ ଖାଲି ସ୍ଥାନକୁ ସେ ନିଜର ବନ୍ଧୁବାନ୍ଧବମାନଙ୍କ ଦ୍ୱାରା ପୂରଣ କରନ୍ତି । ସେମାନେ ସମସ୍ତେ ଏକଜୁଟ୍ ହୋଇ ଯେ କୌଣସି ପ୍ରକାର ଉନ୍ନତି ବା ପରିବର୍ତ୍ତନର ପ୍ରବଳ ପ୍ରତିରୋଧ କରନ୍ତି ଏବଂ ତା' ସତ୍ତ୍ୱେ ଯଦି କୌଣସି ଉନ୍ନତି ପନ୍ଥା ଗ୍ରହଣ କରାଯାଏ ତେବେ ସେମାନେ ଏପରି ଜୋର୍‌ସୋର୍‌ରେ ଲାଗିଯାଆନ୍ତି, ଯାହା ଫଳରେ ତାହା କାର୍ଯ୍ୟକାରୀ କରିବା ଅସମ୍ଭବ ହୋଇଉଠେ । ଏହି ବିରାଟ ଓ ଗୁରୁତ୍ୱପୂର୍ଣ୍ଣ ଜିଲ୍ଲାର ଶୃଙ୍ଖଳା ଆଣିବା ପାଇଁ ଦରକାର ଥିଲା ସୁଦକ୍ଷ ହସ୍ତ, ଅଟଳ ମନ, ଦୃଢ଼ କାର୍ଯ୍ୟପନ୍ଥା ଓ ସମୟାନୁବର୍ତ୍ତିତା; ତେଣୁ କମିଶନର ଭାବରେ ମୋ ନିଜ କାମ ଚାଲୁ କରାଇଦେଇ ଓ ବାକିଆ କାମସବୁ ପୂର୍ଣ୍ଣ କରିବାକୁ ଷ୍ଟିଭେନ୍‌ସଙ୍କୁ ସମୟ ଦେଇ ସଙ୍ଗେ ସଙ୍ଗେ ମୁଁ କଟକ କଚେରିର ସରକାରୀ ପରିଦର୍ଶନ ଆରମ୍ଭ କରିଦେଲି । ମୋର ଅଭିଜ୍ଞତା ବଳରେ ଗଭୀର ଅନୁସନ୍ଧିତ୍ସାସହ ଟିକିନିଖି ପରିଦର୍ଶନ କଲି । ଫଳରେ ଅସଂଖ୍ୟ ଭୁଲ୍, ବିଶୃଙ୍ଖଳା ଏବଂ ଉନ୍ନତି ବା ପରିବର୍ତ୍ତନର ବିରୋଧ କରୁଥିବା ଦେଶୀୟ କର୍ମଚାରୀମାନଙ୍କର ଏକ ସଂଗଠିତ ଗୋଷ୍ଠୀ ଥିବା ଜାଣିପାରିଲି ।

ବିରୋଧର ଅଣ୍ଟା ଭାଙ୍ଗି ଦେବା ପାଇଁ ମୁଁ ଟାଣୁଆ ବ୍ୟବସ୍ଥା ଗ୍ରହଣ କରିବାପାଇଁ ସ୍ଥିର କଲି । ପୁରୁଣା ବିଭାଗୀୟ ମୁଖ୍ୟମାନଙ୍କୁ ଚାକିରିରୁ ବାହାର କରିଦେଲି କିମ୍ବା ଭତ୍ତାସହ ଅବସର ନେବା ପାଇଁ ବାଧ କଲି । ସେମାନଙ୍କ ସ୍ଥାନରେ ପ୍ରଗତିଶୀଳ ଦୃଷ୍ଟିକୋଣ ଥିବା ଅପେକ୍ଷାକୃତ କମ୍‌ବୟସର ଲୋକଙ୍କୁ ନିଯୁକ୍ତି କଲି । ସେମାନଙ୍କ ମଧ୍ୟରୁ କେତେକଙ୍କୁ ମୋର ପୁରୁଣା ଜିଲ୍ଲା ବାଲେଶ୍ୱରରୁ ଅଣାଇଲି । ରେଭେନ୍‌ସା ୩ ମାସର ଛୁଟିରୁ ଫେରି ଦେଖିଲେ ଯେ କଟକର ସବୁ ମୁଖ୍ୟ କର୍ମଚାରୀ ବଦଳି ହୋଇଯାଇଛନ୍ତି । ସବୁ କାମ ଶୃଙ୍ଖଳିତ ହୋଇଛି । ବାକିଆ କିଛି ନାହିଁ ! ସେ ଆଶ୍ଚର୍ଯ୍ୟ ହୋଇ ଆଖି ମଳିବାକୁ ଲାଗିଲେ, କିନ୍ତୁ ଆଦୌ ସନ୍ତୁଷ୍ଟ ହେଲେ ନାହିଁ ।

କିନ୍ତୁ ଏ ସବୁ ଭିତରେ ମୁଁ ବରାବର ସାର୍ ଜର୍ଜଙ୍କ ସହ ଯୋଗାଯୋଗ ରଖିଥାଏ ଏବଂ ମୋର ପ୍ରତ୍ୟେକ କାମ ପାଇଁ ତାଙ୍କର ସମ୍ମତି ଆଣୁଥାଏ । ଏପରି ଏକ ଅବହେଳିତ, କୁପରିଚାଳିତ ଓ ଢିଲା ଅଫିସରେ ଆମୂଳ ସଂସ୍କାର ତାଙ୍କର ଠିକ୍ ରୁଚି ଅନୁଯାୟୀ ଥିଲା । ମୁଁ ଅଫିସ୍‌ରେ ଯେଉଁ

ନୂତନ ରକ୍ତର ସଞ୍ଚାର କରାଇଲି ତାହାକୁ ମଧ୍ୟ ସେ ସମ୍ପୂର୍ଣ୍ଣ ସମର୍ଥନ କରୁଥିଲେ । ମୋତେ କଟକ ଜିଲ୍ଲାର କଲେକ୍ଟର ରୂପେ ନିଯୁକ୍ତି ଦେବା ଓ ମାସକୁ ୨୨୫୦ ଟଙ୍କା ଦରମାର ପ୍ରଥମ ଶ୍ରେଣୀୟ କଲେକ୍‌ଟର ପଦକୁ ଉନ୍ନୀତ କରିବା ସେହି ସମର୍ଥନର ପରିପ୍ରକାଶ ମାତ୍ର ।

କମିଶନର ଅଫିସରେ ମୋର ଅଳ୍ପ କାଳର କାମ ମଧ୍ୟରେ ବିଶେଷ ଉଲ୍ଲେଖଯୋଗ୍ୟ ଘଟଣା କିଛି ନ ଥିଲା ଏବଂ ରେଭେନ୍‌ସା ଫେରିବା ପରେ କଟକର କଲେକ୍ଟର ଭାବରେ ମୋର ଦାୟିତ୍ୱ ଗ୍ରହଣ କଲି । କଟକର ଉପକଣ୍ଠ ଚାଉଳିଆଗଞ୍ଜରେ ଆମେ ନେଇଥିବା ଘରଟି କିଛି ଅସୁବିଧାଜନକ ହେଲେ ମଧ୍ୟ ସୁନ୍ଦର । ନଦୀ ତୀରସ୍ଥ ଏହି ଅଞ୍ଚଳଟି ପ୍ରଶସ୍ତ, ଉନ୍‌ମୁକ୍ତ ଏକ ସମତଳ ଭୂମି; ନିକଟରେ ଏକ ଘୋଡ଼ାଦୌଡ଼ ପଡ଼ିଆ, ଗୋଟିଏ ନାଳ ଏବଂ ବଡ଼ ହତା ଥିବା ଧାଡ଼ିଏ ସୁନ୍ଦର ଘର । ସହରର ଏହା ହେଉଛି ସବୁଠାରୁ ସ୍ୱାସ୍ଥ୍ୟକର ସ୍ଥାନ ଯଦିଓ ଅନ୍ୟାନ୍ୟ ସରକାରୀ ଆବାସ ଓ ଅଫିସ ବହୁଦୂରରେ ଥିବାରୁ କିଛି ଅସୁବିଧା ହେଉଥିଲା; କଚିରିକୁ ତିନି ମାଇଲ ମୋତେ ଗାଡ଼ିରେ ଯିବାକୁ ପଡୁଥିଲା । ଏଠାରେ ଆମେ ଚାରିବର୍ଷ ରହିଲୁ । ଭାରତରେ ମୋର ଚାକିରିକାଳ ମଧ୍ୟରେ ଏହି ସମୟଟା ବୋଧହୁଏ ସବୁଠାରୁ ଅଧିକ କର୍ମରତ, ଉଜ୍ଜ୍ୱଳ ଓ ଆନନ୍ଦମୁଖର । ମୋର ଯେ କେବଳ କାର୍ଯ୍ୟପରିସର ଖୁବ୍ ବଢ଼ିଗଲା ତାହା ନୁହେଁ, ଆମେ ଯେଉଁ ସ୍ଥାନରେ ବାସ କଲୁ ତାହା ମଧ୍ୟ ଖୁବ୍ ବଡ଼ । ମାନ୍ଦ୍ରାଜ ପଦାତିକ ବାହିନୀର ଏକ ରେଜିମେଣ୍ଟ ସେଠାରେ ଥାଏ । ସେଠି ଥାଆନ୍ତି ସେଇ ରେଜିମେଣ୍ଟର ଛଅ ସାତଜଣ ଅଫିସର ଓ ସେମାନଙ୍କ ପତ୍ନୀମାନେ, ପୂର୍ତ୍ତ ବିଭାଗର ତଜନେ ଖଣ୍ଡେ ଯନ୍ତ୍ରୀ, ସିଭିଲ ସର୍ଭିସର ଛଅ ସାତ ଜଣ, ତା'ଛଡ଼ା ଧର୍ମ ପ୍ରଚାରକ, ବ୍ୟବସାୟୀ ଓ ଅନ୍ୟାନ୍ୟ ବିଭାଗର ଲୋକେ । ପ୍ରଦେଶର ଅନ୍ୟାନ୍ୟ ଅଞ୍ଚଳରେ ଥିବା ବହୁ ଅଫିସର କାମରେ କିମ୍ବା ଖୁସିରେ ବୁଲିବା ପାଇଁ ବରାବର ସେଠାକୁ ଆସୁଥାଆନ୍ତି; ତେଣୁ ବିଶେଷ ଉପଲକ୍ଷ୍ୟରେ ପୁରୁଷ ସ୍ତ୍ରୀ ମିଶି ଶହେ ଖଣ୍ଡେ ୟୁରୋପୀୟ ଏକାଠି ହେଉ; ଭାରତର ଯେ କୌଣସି ସ୍ଥାନ ପାଇଁ ଏ ସଂଖ୍ୟା ବେଶ୍ ବଡ଼ । ସେମାନେ ଯେ ଖାଲି ସଂଖ୍ୟାରେ ବେଶି ତାହା ନୁହେଁ, ଅନେକ ସମୟରେ ଖୁସ୍‌ମିଜାଜି, ଆନନ୍ଦମୁଖର । ସାମାଜିକ ଗୋଷ୍ଠୀ ରାସ୍ତାଘାଟ ଓ ପରିବହନ କ୍ଷେତ୍ରରେ ଅସୁବିଧା ହେତୁ ଏହାର ଅଧିବାସୀମାନେ ସାହାଯ୍ୟ, ସାମାଜିକ ମିଳନ ଓ ଆମୋଦପ୍ରମୋଦ ପାଇଁ ନିଜ ଉପରେ ଓ ନିଜ ପଡ଼ୋଶୀମାନଙ୍କ ଉପରେ ନିର୍ଭର କରନ୍ତି । ଛୋଟଲାଟ ସାର୍ ଉଇଲିୟମ୍ ଗ୍ରେ ଥରେ କହୁଥିଲେ ଯେ, କଟକକୁ ଯିବା ପାଇଁ ତାଙ୍କୁ ଲୋକ ମିଳନ୍ତି ନାହିଁ; କିନ୍ତୁ ଥରେ କେହି ସେଠାକୁ ଗଲେ ସେ ସେମାନଙ୍କୁ ସେଠାରୁ ଫେରାଇ ଆଣିପାରନ୍ତି ନାହିଁ । ଲୋକେ ସେଠାକୁ ଯିବାକୁ ଇଚ୍ଛା କରନ୍ତି ନାହିଁ, କାରଣ ତାହା ଏକ ଅପ୍ରାନ୍ତରେ ଅବସ୍ଥିତ; କିନ୍ତୁ ଥରେ ସେମାନେ ସେଠାକୁ ଗଲେ ଏତେ ସୁନ୍ଦର ସ୍ଥାନ ଦେଖି ରହିଯିବା ପାଇଁ ପସନ୍ଦ କରନ୍ତି ।

କମିଶନର ଥମାସ ଏଡ୍‌ୱାର୍ଡ଼ ରେଭେନ୍‌ସା ଥିଲେ ଓଡ଼ିଶାର ରାଜା ପରି । ତାଙ୍କର ଥିଲା ଏଗାରଟି ତୋପର ସଲାମି, ଅଙ୍ଗରକ୍ଷୀ ଓ ହାତୀ ଏବଂ ସରକାରୀ ଅନୁଷ୍ଠାନମାନଙ୍କରେ ସେ ଘନନୀଳ ବର୍ଣ୍ଣର ଯେଉଁ ପୋଷାକ ପିନ୍ଧୁଥିଲେ ତା' ଉପରେ ସୁନାର ଧଡ଼ି ସୂଚୀ କାମ, ବାଙ୍କଟୋପି, ପର ଓ ଖଡ୍‌ଗ । ସେ ଥିଲେ ସହାନୁଭୂତିଶୀଳ, ଜ୍ୟେଷ୍ଠୋପମ ବୃଦ୍ଧ ବ୍ୟକ୍ତି, ପକ୍ୱକେଶ ଓ

ସୁଦୃଢ଼ଶରୀରବିଶିଷ୍ଟ । ଅଫିସର୍‌ସୁଲଭ ଅହମିକା ବା ଟାଣପଣିଆ ତାଙ୍କର କିଛି ନ ଥିଲା । ତାଙ୍କର ଦକ୍ଷତା ଉପରେ ମୋର କିମ୍ବା ଅନ୍ୟ କାହାରି ବିଶେଷ ଶ୍ରଦ୍ଧା ନ ଥିଲା; କିନ୍ତୁ ସେ ଅଭିଜ୍ଞ ଥିଲେ ଏବଂ ତାଙ୍କ ଓଡ଼ିଶା ଓ ତାଙ୍କ ଓଡ଼ିଆଙ୍କୁ ସେ ଭଲରୂପେ ଚିହ୍ନିଥିଲେ । ଜଣେ ୟୁରୋପୀୟକୁ ଯେତେଦୂର ସ୍ନେହ କରାଯାଇପାରେ ସେମାନେ ତାଙ୍କୁ ସେତେ ଭଲ ପାଉଥିଲେ । ସେଇ ମନ୍ଥରତା, ବିଶୃଙ୍ଖଳତା ଓ କିଂକର୍ତ୍ତବ୍ୟ ଭାବ ହିଁ କର୍ମକୁଣ୍ଠ ଓଡ଼ିଆଙ୍କ ମନକୁ ବେଶ୍ ଆକର୍ଷଣ କରୁଥିଲା । ସେମାନଙ୍କ ହୃଦୟାଭ୍ୟନ୍ତରର କେତେକ ତନ୍ତ୍ରୀକୁ ସେ ସବୁ ସ୍ପର୍ଶ କରିପାରିଥିଲା । ତାଙ୍କ ଧରଣର ଲୋକେ ଭାରତରେ ଅଜଣା ନୁହନ୍ତି ଯେଉଁମାନେ କି କେବଳ ନିଜ କାମ ସକାଶେ ହିଁ ଜିଇଁ ରହିଥାନ୍ତି । ତାଙ୍କର କୃଷି ବା ସାହିତ୍ୟିକ ଅଭିରୁଚି କିଛି ନ ଥିଲା । ସେତେବେଳର ଇଂଲିଶ ସାଧାରଣ ବିଦ୍ୟାଳୟଗୁଡ଼ିକର ବାଳକମାନଙ୍କ ପରି ସେ ଥିଲେ ଅଧିକାଂଶ ବିଷୟରେ ଅଜ୍ଞ । ଅଧଘଣ୍ଟାଏ ନିଜ ବଗିଚାରେ ମନ୍ଥର ଗତିରେ କାମ କରିବା କିମ୍ବା ନିଜ କୁନ୍ଦଯନ୍ତ୍ର ପାଖରେ କଦବା କ୍ୱେମିତି ଛୁଟି ଦିନଟାଏ କଟାଇବା ଛଡ଼ା ଆଉ ସବୁ ସମୟ ସରକାରୀ କାଗଜପତ୍ର ଭର୍ତ୍ତି ହୋଇଥିବା ଟେବୁଲ ପାଖରେ ମୁହଁରେ ଚିରୁଟ୍ ଓ ହାତରେ କଲମଟିଏ ଧରି ବସି ରହିଥାନ୍ତି । ୱେଲସ୍ ଠାରୁ ଆକାରରେ କିଛି ବଡ଼ ଏଇ ପ୍ରଦେଶକୁ ଶାସନ କରିବାରେ ତାଙ୍କର ଚମତ୍କାରିତା ନ ଥିଲେ ମଧ୍ୟ ଦକ୍ଷତା ଥିଲା । ସେ ଥିଲେ ଭଲ ଶିକାରୀ ଓ ଘୋଡ଼ା ଚିହ୍ନିବାରେ ପାରଙ୍ଗମ; ମୋଟ ଉପରେ ସେ ଥିଲେ ପ୍ରତାରଣାଶୂନ୍ୟ ଜଣେ ଇଂରାଜୀ ଭଦ୍ରଲୋକ । ମୋ ସ୍ତ୍ରୀ କହନ୍ତି ଯେ, ମୋରି କଥାରେ ସେ ପରିଚାଳିତ ହୁଅନ୍ତି । ଅବଶ୍ୟ ଅନେକ କାମ କରିବାରେ ମୁଁ ତାଙ୍କୁ ଅନୁପ୍ରେରିତ କରିଛି ଯାହାକି ସେ ନିଜେ ନିଜେ କେବେ କରି ନ ଥାନ୍ତେ; କିନ୍ତୁ ସେ ରକ୍ଷଣଶୀଳ ହିନ୍ଦୁ ଗୋଷ୍ଠୀଙ୍କ ଦ୍ୱାରା ପରିଚାଳିତ ହେଉଥିଲେ । ଏହି ଗୋଷ୍ଠୀ ଓଡ଼ିଶାରେ ଖୁବ୍ ଶକ୍ତିଶାଳୀ ଥିଲେ ଯାହାଙ୍କ ବିଷୟରେ ପରେ ଅଧିକ କହିବି ।

ଗୋଟିଏ ବିରାଟ ଓ ବିଛିନ୍ନ ପ୍ରଦେଶର ରାଜଧାନୀ ଏହି ବିରାଟ କଟକ ନଗରୀ ହେଉଛି ଏକ କୌତୂହଳପୂର୍ଣ୍ଣ ଅଧ୍ୟୟନର ବସ୍ତୁ । ଏତେଗୁଡ଼ାଏ ଛୋଟ ଛୋଟ ଦୁନିଆ, ଏତେ ଲଗାଲଗି ଏଠାରେ ରହି ମଧ୍ୟ କେହି କାହାକୁ ଭଲଭାବରେ ଚିହ୍ନନ୍ତି ନାହିଁ: ପରସ୍ପରକୁ ଆନ୍ତରିକ ଘୃଣାକରି ବ୍ରିଟିଶ ଶାସନର ସୁଦୃଢ଼ ଆଇନ ଶୃଙ୍ଖଳା ତଳେ ମୋଟାମୋଟି ଶାନ୍ତିରେ ବାସ କରୁଛନ୍ତି । ଏହି ଧରଣ ଅବସ୍ଥା ଅତି ଅପୂର୍ବ ଏବଂ ଅନେକ ଦୃଷ୍ଟିରୁ ଅସୁବିଧାଜନକ । ଦୁଇ ମାଇଲ ଚଉଡ଼ାର ଏକ ବିରାଟ ନଦୀ—ମହାନଦୀ ପାର୍ବତ୍ୟାଞ୍ଚଳରୁ ବାହାରି ଦୁଇଟି ଧାରାରେ ବିଭକ୍ତ ହୋଇଯାଇଛି । ତାହା ପୁଣି ତଳେ ଆଉ ଅନେକ ଧାରାରେ ବିଭକ୍ତ । ଫଳରେ କେନ୍ଦ୍ର ଓଡ଼ିଶାର ଏହି ଅଂଶ ମହାନଦୀର ଏକ ତ୍ରିକୋଣ ଭୂମି, ଯାହାର ପ୍ରତ୍ୟେକ ପାଖ ପାଖାପାଖି ଏକଶହ ମାଇଲ ଲମ୍ବା । ଏହି ତ୍ରିକୋଣର ଶୀର୍ଷ ଭାଗରେ ପଶ୍ଚିମପଟ ବିନ୍ଦୁରେ ଏହି ସହର ଅବସ୍ଥିତ । ଷୋଡ଼ଶ ଶତାବ୍ଦୀରେ ଦେଶ ମୁସଲମାନମାନଙ୍କ ଦ୍ୱାରା ଆକ୍ରମିତ ହେବାବେଳେ ଏହି ସ୍ଥାନଟିକୁ ପ୍ରକୃତରେ ଓଡ଼ିଶାର ରାଜା ପ୍ରତିରକ୍ଷା ଦୃଷ୍ଟିରୁ ମନୋନୀତ କରିଥିଲେ । ସେ ତାଙ୍କର ପୂର୍ବ ରାଜଧାନୀ ଚୌଦ୍ୱାର ଅର୍ଥାତ୍ ଚାରୋଟି ଦ୍ୱାର (ଯାହାର ଧ୍ୱଂସାବିଶେଷ ଏବେ ମଧ୍ୟ ନଦୀର ଉତ୍ତର ତୀରରେ ଦେଖାଯାଏ) ତ୍ୟାଗକରି ଏହି ବିରାଟ ନଦୀର ଦୁଇ ବାହୁଦ୍ୱାରା ସୁରକ୍ଷିତ ସ୍ଥଳରେ ତାଙ୍କର ଶିବିର (ସଂସ୍କୃତ ଓ

ଓଡ଼ିଆରେ ଯାହାର ପ୍ରତିଶବ୍ଦ କଟକ) ସ୍ଥାପନ କଲେ । ଏହିଠାରେ ସେ ବାରବାଟୀ ନାମରେ ଏକ ବିରାଟ ଦୁର୍ଗ ନିର୍ମାଣ କଲେ ଯାହାକି ଭଗ୍ନାବସ୍ଥାରେ ଏବେ ମଧ ଦଣ୍ଡାୟମାନ ଏବଂ ଏହି ଶୀର୍ଷ ସ୍ଥଳର ଅନ୍ୟ ଅଂଶ ନଗରର ଗୃହସ୍ଥଳୀ ଦ୍ୱାରା ପୂରିତ ।

ଏହି ତ୍ରିକୋଣର ଦୁଇ ପଟରେ ପୂରା ଅଂଶରେ ଦୁଇ ନଦୀର କୂଳେ କୂଳେ ମରହଟ୍ଟାମାନେ ଏକ ବିରାଟ ବନ୍ଧ ବା ବଡ଼ ବଡ଼ ପଥରର କାନ୍ଥ ତିଆରି କରିଥିଲେ । ଧୂସରିଆ ଲାଲ ରଙ୍ଗର ଏହି ବିରାଟ ପ୍ରାଚୀର ଓ ସେଥିରେ ଥିବା ବୁରୁଜ ଓ ଘାଟ ସହିତ ଏହି ନଗରୀକୁ ଦକ୍ଷିଣପଟୁ ଦେଖିଲେ ଗୋଟିଏ ସୁରକ୍ଷିତ ସ୍ଥାନ ପରି ଦେଖାଯାଏ । ନଦୀର ଏହି ଦୁଇବାହୁ ମଧରୁ ନଗରର ଦକ୍ଷିଣପଟେ ପ୍ରବାହିତ ଧାରକୁ କୁହାଯାଏ କାଠଯୋଡ଼ି । ବର୍ତ୍ତମାନ ଏହାର ଉପରିସ୍ଥଳଠାରେ ଏକ ଆନିକଟ ବନ୍ଧାଯାଇଚି । ନଦୀର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏ ବନ୍ଧା ଏଇ ସୁଦୃଢ଼ ବନ୍ଧଦ୍ୱାରା ଉପରର ପାଣି ଅଟକି ଏକ ବଡ଼ ହ୍ରଦ ଆକାର ହୋଇଚି; ନଦୀର ତଳ ଭାଗ ବିରାଟ, ଶୁଷ୍କ ଓ ଉଜ୍ଜ୍ୱଳ ସୈକତଶଯ୍ୟାରେ ପରିଣତ ହୋଇଯାଇଛି । ତା' ମଧରେ କ୍ଷୀଣ ଧାରଟିଏ ଝରି ଯାଉଛି । ବର୍ଷା ଦିନେ କିନ୍ତୁ ନଦୀ ଏହି ବନ୍ଧକୁ ଡେଇଁ ଏଇ ନଦୀ ଶଯ୍ୟା ଉପରେ ବିରାଟ ଜଳସ୍ରୋତର ସୃଷ୍ଟି କରେ । ଶୁଖିଲା ଦିନରେ ମରହଟ୍ଟା ପ୍ରାଚୀରଟି ଏକ ମାଇଲରୁ ଅଧିକ ଚଉଡ଼ା ନଦୀଶଯ୍ୟାର ବାଲିଠାରୁ ଷାଠିଏ ଫୁଟ ଉଚ୍ଚରେ ଥାଏ; କିନ୍ତୁ ବର୍ଷାଦିନେ ସମସ୍ତ ବାଲୁକା ଶଯ୍ୟା ସହିତ ଏହି ପ୍ରାଚୀରର ଉପର ଅଂଶକୁ ମଧ ଜଳ ସ୍ପର୍ଶ କରେ । ଏଇଥିରୁ ବର୍ଷା ଦିନେ ପାଣିର ପରିମାଣ କେତେ ବଢ଼ିଯାଏ ତାହା କଳନା କରିହେବ । ନିକଟ ଅତୀତରେ ଥରେ ଦୁଇଥର ଖୁବ୍ ବଡ଼ ବଢ଼ିବେଳେ ପାଣି ପ୍ରାଚୀର ଉପରକୁ ଉଠିଯାଇଛି ଏବଂ ତଳେ ଥିବା ସହରକୁ ମଶି ଆସୁଥିବା ସ୍ରୋତରୁ ରକ୍ଷା କରିବା ପାଇଁ ଯନ୍ତ୍ରୀମାନଙ୍କୁ ବହୁ କଷ୍ଟସାଧ ଉଦ୍ୟମ କରିବାକୁ ପଡ଼ିଛି । କାଠଯୋଡ଼ିରେ ବିରାଟ ଜଳସ୍ରୋତ ମଧରେ ଉପରମୁଣ୍ଡର ନଦୀ ତୀରରୁ ଉପୁଡ଼ି ଆସିଥିବା ଗୋଟାସୁଦ୍ଧା ବଣ୍ୟ ବୃକ୍ଷ ସବୁ ଭାସିଆସେ ଏବଂ ନଗରର ଲୋକେ ଅତି ସହଜ କିନ୍ତୁ କୌଶଳପୂର୍ଣ୍ଣ ଏକ ଉପାୟରେ ସେ ସବୁକୁ ଧରି ଆମୋଦ ଅନୁଭବ କରନ୍ତି । ଅଳ୍ପ କେତେ ଇଞ୍ଚ ଲମ୍ବା ଦୁଇଖଣ୍ଡ ବାଡ଼ି ଛକି ପଡ଼ି ବନ୍ଧା ହୋଇଥାଏ ଏବଂ ତା' ସାଙ୍ଗରେ ବନ୍ଧା ଥାଏ ଖଣ୍ଡେ ପାତଳ କିନ୍ତୁ ଦମ୍ଭ ଡୋର । ସେମାନେ ବନ୍ଧରେ ଠିଆହୋଇ ଛକି ବାଡ଼ିକୁ ଶୂନ୍ୟକୁ ଫିଙ୍ଗନ୍ତି । ସେହି ଛକିବାଡ଼ି ସେଥିରେ ଥିବା ଡୋରକୁ ମଧ ଟିଟାଇ ନିଏ ଏବଂ ଭାସିଯାଉଥିବା ଗଛ ଉପରେ ପଡ଼ି ତା'ର ଶାଖାମାନଙ୍କରେ ଛନ୍ଦି ହୋଇଯାଏ । ତିନି ଚାରିଜଣ ଲୋକ ଡୋରକୁ ଟାଣି ଆସ୍ତେ ଆସ୍ତେ ଗଛଟାକୁ କୂଳକୁ ନେଇଆସନ୍ତି । ସେଠାରେ ତାହା କଟାଯାଇ ଜାଳେଣି ରୂପେ ବିକ୍ରି ହୁଏ । ଏହିପରି ନଗରବାସୀ ଗରିବ ଶ୍ରେଣୀର ଲୋକେ ବଢ଼ିରୁ ଭଲ ଲାଭ ଉଠାନ୍ତି ।

ସେହି ପ୍ରାଚୀରର ସର୍ବୋଚ୍ଚ ସ୍ଥଳରେ ଅଛି ଲାଲବାଗ, କମିଶନରଙ୍କ ବଙ୍ଗଳା ଉଦ୍ୟାନ ଶୋଭିତ ହତା ମଧରେ ଏକ ବଡ଼ ରାଜକୀୟ କୋଠା । ଆମ ସମୟରେ ଦଳେ କୃଷ୍ଣସାର ମୃଗ ତା' ମଧରେ ବୁଲୁଥିଲେ । ଏଇଠାରୁ ଦୁଇପଟେ ଉଚ୍ଚା ଉଚ୍ଚା ଗଛ (ଉଭାରିଆ ଜାତୀୟ) ଥିବା ଏକ ଲମ୍ବା ରାସ୍ତା ପ୍ରବେଶ ପଥ ପର୍ଯ୍ୟନ୍ତ ପଡ଼ିଛି; ତା'ପରେ ଦେଶୀୟ ନଗରୀ ।

ଲାଲବାଗ ପରି ତା'ର ଆଉ କିଛି ତଳକୁ ସେଇ ପ୍ରାଚୀରର ଉପରିଭାଗରେ ଅଛି କଲେକ୍ଟରଙ୍କ ଅଫିସ (କଚେରି) । କଚେରିର ସୁବିସ୍ତୃତ ଉଦ୍ୟାନ ପରେ ଏହି ଅଞ୍ଚଳରେ କଲେଜ ସହିତ ଅନ୍ୟ କେତେକ ଅଫିସ ମଧ୍ୟ ରହିଛି। ଦେଶୀୟ ନଗରରେ କୌଣସି ପୁରାତନ ବା ଉଲ୍ଲେଖଯୋଗ୍ୟ କୋଠା ନାହିଁ । ଏହି ବିରାଟ କର୍ମମୁଖର ନଗରରେ ଥିଲା ଅନେକ ଦୋକାନ, କେତେଗୁଡ଼ିଏ ସୁନ୍ଦର ରାସ୍ତା, ଗୋଟିଏ ହାଟ ଓ କେତେକ ପୁରୁଣା ମନ୍ଦିର । ନଗରୀର ଉତ୍ତରପଟେ ଥିଲା ମାଡ୍ରାଜ ରେଜିମେଣ୍ଟ, ସମରାଭ୍ୟାସ ପଡ଼ିଆ ରୂପେ ବ୍ୟବହୃତ ହେଉଥିବା ଗୋଟିଏ ବିସ୍ତୃତ ଉନ୍ମୁକ୍ତ ପ୍ରାନ୍ତର, ପ୍ରଶସ୍ତ ରାସ୍ତାମାନଙ୍କ ଉଭୟ ପଟରେ ୟୁରୋପୀୟମାନଙ୍କ ଘର, ଗୋଟିଏ ଗିର୍ଜା, ରୋମୀୟ କ୍ୟାଥଲିକ ପ୍ରାର୍ଥନା ଗୃହ, ବ୍ୟାପ୍‌ଟିଷ୍ଟ ପ୍ରାର୍ଥନା ଗୃହ ଏବଂ ଶେଷରେ ଥିଲା ପୁରୁଣା ବାରବାଟୀ ଦୁର୍ଗର ଭଗ୍ନାବଶେଷ । ଏହି ଦୁର୍ଗ ମଧ୍ୟରେ ଥିଲା ସ୍ଥାନୀୟ କ୍ଲବ, ରାକେଟ କ୍ରୀଡ଼ା ପ୍ରାଙ୍ଗଣ ଏବଂ ଅନ୍ୟାନ୍ୟ ଘର । ଉଭୟ ପଟେ ଥିବା ନଗରୀର ସଂପୂର୍ଣ୍ଣ ନିବାସ ସ୍ଥଳ ଲମ୍ବରେ ପ୍ରାୟ ପାଞ୍ଚ ମାଇଲ, ଚଉଡ଼ାରେ ଦୁଇ ମାଇଲ ଏବଂ ଦକ୍ଷିଣ ପୂର୍ବ ଦିଗକୁ ତଳେ ଅନେକ ଦୂର ପର୍ଯ୍ୟନ୍ତ ଖୁନ୍ଦାଖୁନ୍ଦି ସହରତଳି । ଜୋବ୍ରାର ଥିଲା ବିରାଟ କାରଖାନା, ଚାଉଳିଆଗଞ୍ଜରେ ଘୋଡ଼ାଦୌଡ଼ ପଡ଼ିଆ, ବଡ଼ ହତା ଥିବା ସୁନ୍ଦର ପ୍ରଶସ୍ତ କୋଠରି ଥାଇ ଧାଡ଼ି ଧାଡ଼ି ବାସସ୍ଥଳୀ ଯେଉଁଥିରୁ ଗୋଟିକରେ ଆମେ ଚାରିବର୍ଷ ରହିଲୁ ।

କଟକରେ ମୋର ସବୁ କାମର ବିଶଦ ବିବରଣୀ ଏଠାରେ ଦେବା ବୋଧହୁଏ ଅନାବଶ୍ୟକ । ପୂର୍ବ ଜିଲ୍ଲାଗୁଡ଼ିକରେ ଯେପରି ବର୍ଣ୍ଣନା କରାଯାଇଛି ତାହାଠାରୁ ଏହା ବିଶେଷ କିଛି ପୃଥକ୍ ନୁହେଁ, ଗୁରୁତ୍ୱ ଓ ବୈଚିତ୍ର୍ୟରେ ଯାହା ଅଧିକ। ବସ୍ତୁତଃ ଭାରତର ସିଭିଲ ଅଫିସରମାନଙ୍କ କାମ ପାଇଁ ସବୁଠାରୁ ଆକର୍ଷଣୀୟ ହେଉଛି ଏହାର ବୈଚିତ୍ର୍ୟ । ନିତିଦିନିଆ ଧରାବନ୍ଧା ପଦ୍ଧତି ମଧ୍ୟରେ ଅବସନ୍ନ ହୋଇପଡ଼ିବାର କିମ୍ବା ଗୋଟିଏ ଅପରିବର୍ତ୍ତନୀୟ କାମ ପିଛା ସବୁବେଳେ ଲାଗିପଡ଼ିବାର ଭୟ ନାହିଁ । ଗୋଟିଏ ଦିନରେ କାମ ମଧ୍ୟରେ ଡଜନେ କିମ୍ବା ଅଧିକ ପ୍ରକାର କାର୍ଯ୍ୟ କରିବାକୁ ହୁଏ, ପ୍ରତ୍ୟେକଥରେ କିଛି ନୂଆ ଆକର୍ଷଣୀୟ ଉପାଦାନ ଥାଏ, ତେଣୁ ରାତିରେ ଯଦି ତୁମେ କ୍ଳାନ୍ତ ହୋଇ ଶଯ୍ୟା ଗ୍ରହଣ କର ସେ କ୍ଳାନ୍ତି ଏକାପରି କୌଣସି ବିରକ୍ତିକର କାମ କରିବାର ଅବସାଦ ଯୋଗୁଁ ନୁହେଁ, ସେ କ୍ଳାନ୍ତି ସ୍ୱାସ୍ଥ୍ୟପ୍ରଦ ଯାହା ଫଳରେ ନିତ୍ୟ ନୂତନ ବହୁ ଉଦ୍ୟୋଗ ମଧ୍ୟରେ ନିଜର ଶରୀର ଓ ମନ ପ୍ରସାରିତ ହୋଇଯାଏ ଏବଂ ଏଥିରୁ ଯେଉଁ ଆନନ୍ଦ ମିଳେ (ଯାହାଠାରୁ ଅଧିକ ଆନନ୍ଦ ମୁଁ କିଛି ଜାଣି ନାହିଁ ଏବଂ କର୍ମବିହୀନ ଏ ବୃଦ୍ଧ ବୟସରେ ମୁଁ ଯାହାକୁ ଝୁରି ହେଉଛି) ତାହା ହେଉଛି କର୍ତ୍ତବ୍ୟ ଓ ଶାସନ ଭିତରେ ଭଗବାନ୍‌ଙ୍କ ରାଜ୍ୟରେ ନିଜକୁ ଉପାଦେୟ ରୂପେ ଗଢ଼ିପାରିବାର ଅନୁଭୂତି । ଗୋଟିଏ ସାଧାରଣ ଦିନର କାର୍ଯ୍ୟ ବିବରଣୀ ଥରକ ପାଇଁ ଦିଆଯାଇପାରେ—

ପ୍ରାୟ ପାଞ୍ଚଟାବେଳେ ଆମେ ଶଯ୍ୟା ତ୍ୟାଗ କରୁ। ଆମ ଘୋଡ଼ାସବୁ ଅଣାଗଲା ଭିତରେ କପେ ଚାହା ପିଇଦେଉ ଏବଂ ଘୋଡ଼ାରେ ବୁଲିବାକୁ ଯାଉ; ଯଦି ସରକାରୀ କାମ ଥାଏ ଏକୁଟିଆ ଯାଏ, ନ ହେଲେ ଅଧିକାଂଶ ସମୟ ମୁଁ ଓ ମୋର ସ୍ତ୍ରୀ ଏକାଠି ଯାଉଁ । ବୁଲୁ ବୁଲୁ ବନ୍ଧୁମାନଙ୍କ ସହ ସାକ୍ଷାତ ହେଲେ ସେମାନଙ୍କ ସହ ବୁଲୁ ନ ହେଲେ କିଛି ସମୟ କଥାବାର୍ତ୍ତା ପାଇଁ ରହି ପୁଣି

ବୁଲୁ । ପ୍ରାୟ ସାଢ଼େ ଛ'ଟାରେ ଫେରି ବାରଣ୍ଡାରେ ଛୋଟ ହାଜିରି ହୁଏ । ଆମ ଛୋଟ ଝିଅମାନେ ସେମାନଙ୍କ ଟଟୁ ଘୋଡ଼ା ଉପରେ ବସି ବୁଲିବାକୁ ଯାଇଥାଆନ୍ତି । ସେମାନେ ଆସି ଆମ ଚାରିପାଖରେ ଖେଳନ୍ତି । ତା'ପରେ ଆମେ ଆମର ସୁନ୍ଦର ବଗିଚାରେ ବୁଲିଆସୁ, ବିଭିନ୍ନ ବରାଦ କରୁ କିମ୍ବା ଯେଉଁ ବନ୍ଧୁମାନେ ଆସିଛନ୍ତି ତାଙ୍କୁ ଗୋଲାପ କିମ୍ବା ଅନ୍ୟ ଚାରା ସବୁ ଦେଖାଉଁ । ପ୍ରାୟ ସାତଟା ବେଳକୁ ଡାକ ଆସେ, ସେ ସମୟର ବଙ୍ଗଳାର ସର୍ବଶ୍ରେଷ୍ଠ 'ଇଂଲିଶି ମ୍ୟାନ୍' ପତ୍ରିକା ପଢୁ, ଆମର ଚିଠିପତ୍ର ଦେଖୁ ଓ ଆଉ କିଛି ବନ୍ଦୋବସ୍ତ କରିବାର ଥିଲେ ସେ ସମ୍ପର୍କରେ ଆଲୋଚନା କରୁ ଏବଂ ଆଠଟା ବେଳୁ ଦୁଇଘଣ୍ଟା ପର୍ଯ୍ୟନ୍ତ ମୁଁ ମୋର 'ତୁଳନାତ୍ମକ ବ୍ୟାକରଣ' ବହିଟି ଲେଖିବା ପାଇଁ ପଢ଼ା ଟେବୁଲ୍‌ରେ ବସିଯାଏ । ଦଶଟାବେଳେ ଗାଧୋଇ ଓ ପ୍ରାତରାଶ ସାରି ମୋର ଗୋଟିକିଆ ଘୋଡ଼ାଗାଡ଼ିରେ ତିନିମାଇଲ ଦୂର କଚେରିକୁ ବାହାରି ପଡ଼େ । ବାଟରେ ମୁଁ ସରକାରୀ ଚିଠି ପତ୍ର ପଢ଼ିଦିଏ ଏବଂ ଦିନର ସଂପର୍କରେ ଭାବିନିଏ । ପ୍ରାୟ ଏଗାରଟାବେଳେ ଅଫିସରେ ପହଞ୍ଚିବାପରେ ମୋର ପ୍ରଥମ କାମ ହେଲା ଫୌଜଦାରୀ କିମ୍ବା ମାଜିଷ୍ଟ୍ରେଟଙ୍କ କାମ ଆରମ୍ଭ କରିବା । ବିରାଟ ବିଚାର ଗୃହରେ ଲୋକେ ଭିଡ଼ କରିଥାନ୍ତି ଏବଂ ଅନେକ ଦରଖାସ୍ତ ଦେଇଥାନ୍ତି । ଜଣେ କିରାଣି ପ୍ରତ୍ୟେକଟି ଦରଖାସ୍ତ ମୋ ଆଗରେ ପଢ଼େ ଓ ତା'ଉପରେ ସାଙ୍ଗେ ସାଙ୍ଗେ ଆଦେଶ ଦିଆଯାଏ । ଅଧିକାଂଶ ହେଉଛି ଫୌଜଦାରୀ ସଂପର୍କୀୟ ଦରଖାସ୍ତ ଯାହାକୁ ବିଚାର କରିବା ପାଇଁ ତଳିଆ ମାଜିଷ୍ଟ୍ରେଟଙ୍କ ପାଖକୁ ପଠାଇ ଦିଆହୁଏ । ତା'ପରେ ଆସେ ବିରାଟ ପୋଲିସ ଅଭିଯୋଗ ବହି । ଏଥିରେ ସେ ଦିନ ଜିଲ୍ଲାର ବିଭିନ୍ନ ଥାନାରୁ ଆସିଥିବା ସବୁ ଫୌଜଦାରୀ ମାମଲା—ହତ୍ୟା, ଡକାୟତି, ଚୋରି, ସିନ୍ଧି ଇତ୍ୟାଦି ସବୁ ଉଠିଥାଏ । ଏସବୁ ମାମଲାରୁ କେତେକ ମୁଁ ନିଏ; କିନ୍ତୁ ଅଧିକାଂଶ ଭାଗ ଜଏଣ୍ଟ ମାଜିଷ୍ଟ୍ରେଟ ଓ ଅନ୍ୟାନ୍ୟମାନଙ୍କୁ ଦିଆଯାଏ । ତା'ପରେ ପଡ଼େ ବହୁ ପରିମାଣରେ ଏଣୁ ତେଣୁ କାମ-ଘାଟ, ଗୋରୁଅଡ଼ା, କାରାଗାର ବିଷୟ, ଜୋରିମାନା ଆଦାୟ ଓ ବାଜ୍ୟାପ୍ତି ରେକଡ଼ପତ୍ର ପ୍ରସ୍ତୁତି, କର୍ମଚାରୀମାନଙ୍କ ଦଣ୍ଡ, ପୁରସ୍କାର ଓ ପଦୋନ୍ନତି ପ୍ରଭୃତି ବିଷୟରେ ଦରଖାସ୍ତ ଓ ବିବରଣୀ । ଏସବୁ କାମ ସରିଲାବେଳକୁ ପ୍ରାୟ ସାଢ଼େ ବାରଟା ଏବଂ ଆଉ କୌଣସି ଫୌଜଦାରୀ ମାମଲା ବିଚାର ପାଇଁ ନ ଥିଲେ (ଯେଉଁଥିପାଇଁ ମୋର ପ୍ରାୟ ସମୟ ନ ଥାଏ)ମୁଁ ଦେଇଥିବା ଆଦେଶନାମାସବୁକୁ ପଠାଇବା ପାଇଁ ଏବଂ ଦିଆଯାଇଥିବା ଦାୟିତ୍ୱ କାର୍ଯ୍ୟକାରୀ କରିବାପାଇଁ ମାଜିଷ୍ଟ୍ରେଟ ପାହ୍ୟା କର୍ମଚାରୀମାନଙ୍କୁ ପଠାଇ ଦିଆଯାଏ । ତା'ପରେ ଚାଲେ ମାଜିଷ୍ଟ୍ରେଟ ଅଫିସ୍‌ୟ, ଅବକାରୀ, ଷ୍ଟାମ୍ପ, ଟ୍ରେଜେରୀ, ପଣ୍ୟକର, ଲୁଣ, ପଥକର, ନଗରପାଳିକା, ଶିକ୍ଷା, ରେଜିଷ୍ଟ୍ରେସନ୍, ଭୂକର ପ୍ରଭୃତି ବିଭାଗର ମୁଖ୍ୟ କିରାଣିଙ୍କ ସହ ସାକ୍ଷାତ । ନିର୍ଦ୍ଦେଶ ଦରକାର ପଡୁଥିବା କାଗଜପତ୍ର ନେଇ ସେମାନେ ଆସିଥାଆନ୍ତି ଏବଂ ତାହା ନେଇ ଚାଲିଯାଆନ୍ତି । ସେମାନେ ଗଲାପରେ ମୁଁ କମିଶନର ବୋର୍ଡ଼ ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କଠାରୁ ଆସିଥିବା ପତ୍ରର ଉତ୍ତର ଲେଖେ । ତା'ଭିତରେ ଡେପୁଟି କଲେକ୍ଟର ଓ ଅନ୍ୟାନ୍ୟ କର୍ମଚାରୀମାନେ ଏଣୁ ତେଣୁ ଆସୁଥିବାରୁ ବାଧାବିଘ୍ନ ସୃଷ୍ଟି ହୁଏ । ପ୍ରାୟ ଦୁଇଟା ବେଳକୁ ଚିଠିଲେଖା ଶେଷ ହୁଏ; ଶେଷ ହୋଇ ନ ଥିଲେ ମଧ୍ୟ ଦୁଇଟାବେଳେ ଜଳଖିଆ କରେ । ସେତେବେଳେ ଖାଇବାଟା ଆମର ଦରକାର ଥାଏ । ପ୍ରଶସ୍ତ ଛାତର ଗୋଟାଏ କଣ୍‌କୁ ଥିବା କୋଠରିରେ ଏହି ଖାଇବାଟା ହୁଏ । ଆଗରେ ପରିଦୃଶ୍ୟମାନ ବିରାଟ ନଦୀ ଓ ତା' ପଛକୁ ନୀଳ ପର୍ବତ । ଜଏଣ୍ଟ ମାଜିଷ୍ଟ୍ରେଟ ଷ୍ଟିଭେନସ୍ ଓ ଜିଲ୍ଲା ପୋଲିସ୍

ସୁପରିଣ୍ଟେଣ୍ଡେଣ୍ଟ ମୋ ସହିତ ଯୋଗଦିଅନ୍ତି । ଏଇ ଖାଇବାବେଳେ ଆମେ ଏଣୁତେଣୁ ଗପ କରୁ କରୁ ଅନେକ କାରବାର କରି ନେଉ । ସାଢ଼େ ଦୁଇଟାରେ ମୁଁ ଅଫିସ୍‌କୁ ଫେରି ବାକି ଥିବା ଚିଠି ଲେଖା ସାରିଦିଏ । ତିନିଟାବେଳେ କଲେକ୍ଟର କର୍ମଚାରୀମାନେ ଗଦାଏ ବିବରଣୀ ଓ ବେଳେ ବେଳେ ଗୋଟାଏ ଅଧେ ମକଦ୍ଦମା ବିଚାର ପାଇଁ ଧରିଆସନ୍ତି । ଚାରିଟାର ଟିକିଏ ପୂର୍ବରୁ ମୁଁ କଲେକ୍ଟରେଟ୍‌ରୁ ଆସିଥିବା ଦରଖାସ୍ତସବୁ ମଗାଇ ପଠାଏ । ମାଜିଷ୍ଟ୍ରେଟ୍ ଅଫିସରୁ ଆସୁଥିବା ଦରଖାସ୍ତ ପରି ଏ ସବୁର ସଂଖ୍ୟା ଏତେ ବେଶି ନୁହେଁ । ସେ ସବୁ ଶୁଣି ନିର୍ଦ୍ଦେଶନାମା ଓ ଚିଠିମାନଙ୍କରେ ଦସ୍ତଖତ କରି ଦେଉଥାଏ । ଚାରିଟା ସୁଦ୍ଧା କାମ ସରେ ଓ ମୁଁ ଘରକୁ ଫେରେ । ଅବଶ୍ୟ ଅତ୍ୟଧିକ ସମୟାନୁବର୍ତ୍ତିତା ଓ କଡ଼ାକଡ଼ି ଫଳରେ ଏତେ ପରିମାଣ କାମ ହୋଇପାରୁଥିଲା; କିନ୍ତୁ ପ୍ରତ୍ୟେକ କିରାଣି ଓ କର୍ମଚାରୀ ଜାଣିଥିଲେ ସେମାନେ କେତେ କାମ କରିବେ ଓ ଠିକ୍ କେତେବେଳେ ନିର୍ଦ୍ଦେଶନାମା ଓ ବିବରଣୀ ନେବା ପାଇଁ ମୋ ପାଖକୁ ଆସିବେ । ଦେଶୀୟମାନଙ୍କ ପାଇଁ ତୁମେ ଯଦି ଥରେ ଦସ୍ତୁର ଠିକ୍ କରିଦେଲ ('ଦସ୍ତୁର' ଏକ ପରମ୍ପରା ବା ନିର୍ଦ୍ଧାରିତ କାର୍ଯ୍ୟ ନିର୍ଘଣ୍ଟ) ତେବେ ସେମାନେ ଠିକ୍ କାମ କରିଯିବେ । 'ଦସ୍ତୁର' ଭଳି ଅନ୍ୟ ଯେଉଁ କଥାକୁ ସେମାନେ ଏତେ ଭଲ ପାଆନ୍ତି ନାହିଁ । ସେଥିରେ ସେମାନେ ନିଜକୁ ଯନ୍ତ୍ରରେ ପରିଣତ କରି ବଢ଼ିଆ କାମ କରନ୍ତି । ଚାରି ବର୍ଷର ମୋର କାର୍ଯ୍ୟ ସମୟ ମଧ୍ୟରେ କଟକ ଅଫିସରେ ବାକିଆ କାମ ରହୁ ନ ଥିଲା ଏବଂ ଏହା ଯେ ମୋର ଉଚ୍ଚ ଦକ୍ଷତା ବା ବୁଦ୍ଧିମତ୍ତା ଫଳରୁ ହେଉଥିଲା ତାହା ନୁହେଁ, ଧାରାବାହିକ ନିର୍ଘଣ୍ଟବନ୍ଧ କାର୍ଯ୍ୟର ପ୍ରଚଳନ ଫଳରେ ତାହା ସମ୍ଭବ ହୋଇଥିଲା ।

ଘରକୁ ଫେରି ମୁଁ କପେ ଚାହା ପିଏ ଓ ତା'ପରେ କୌଣସି ଦେଶୀ ରାଜା ବା ଭଦ୍ରଲୋକଙ୍କୁ ସାକ୍ଷାତ ଦିଏ । ଏହି କାମ ବଡ଼ ବିରକ୍ତିକର ଓ କ୍ଳାନ୍ତିଦାୟକ; କିନ୍ତୁ ଛ'ଟା ପୂର୍ବରୁ ମୁଁ ସେମାନଙ୍କଠାରୁ ନିଷ୍କୃତି ପାଇ ସ୍ତ୍ରୀଙ୍କ ସହ ଘୋଡ଼ାଗାଡ଼ିରେ ଚଢ଼ି ବୁଲି ବାହାରିଯାଏ । ଆମ ପାଖରେ ଗୋଟିଏ ସୁନ୍ଦର ଭିକ୍ଟୋରିଆ ଗାଡ଼ି ଓ ହଳେ ମାଟିଆ ରଙ୍ଗର ଆରବୀ ଘୋଡ଼ା ଥିଲେ । ଦୁର୍ଗ ଭିତରେ ଥିବା କ୍ଲବରେ ସାଧାରଣତଃ ଆମର ଗାଡ଼ି ରହେ ଏବଂ ଏହିଠାରେ ଏହି ସହରରେ ଥିବା ସମସ୍ତ ସ୍ତ୍ରୀ ପୁରୁଷଙ୍କ ※ ସହ ସାକ୍ଷାତ ହୁଏ । ଏଠାରେ ଅନେକ ପ୍ରକାର ଖେଳ ହୁଏ । କେହି ଲନ ଟେନିସ ଖେଳନ୍ତି, କେହି ବିଲିଆଡ୍ ବା ହୁଇଷ୍ଟ ଖେଳନ୍ତି । ଅନ୍ୟମାନେ ବିଶେଷକରି ବଡ଼ ଅଧିକାରୀମାନେ ବାରଣ୍ଡାରେ ରେଭେନ୍‌ସାଙ୍କ ଚାରିପଟେ ଘେରି ବସନ୍ତି ଏବଂ ଗପନ୍ତି—ଏଣୁତେଣୁ ଖୁସିଗପ ଅବଶ୍ୟ—କିନ୍ତୁ ମୋର ଆଶଙ୍କା ହୁଏ ତା'ଛଡ଼ା ଆଉ ଅନେକ କିଛି । ପ୍ରାୟ ସାଢ଼େ ସାତଟାବେଳେ ଘରକୁ ଫେରୁ ଏବଂ ରାତ୍ର ଭୋଜନ ସାରି ନ'ଟା ପରେ ପରେ ଶୋଇପଡ଼ୁ ।

କେତେଗୁଡ଼ିଏ ପ୍ରଭାତ ଆମେ ଜୋବ୍ରାରେ କଟାଉ । ଜୋବ୍ରା ହେଉଛି କଟକର ଏକ ଉପକଣ୍ଠ, ବିରାଟ ମହାନଦୀର ବନ୍ଧ ଉପରେ ସବୁଜ ତରୁବେଷ୍ଟିତ ଛୋଟ ଗାଁଟିଏ । ଏହାର ଠିକ୍ ଉପରପଟେ ନଦୀରେ ଆନିକଟ ବନ୍ଧାଯାଇଛି । ମାଇଲରୁ ଅଧିକ ଲମ୍ବ ଏହି ବନ୍ଧର ଗୋଟିଏ ପଟେ କେନାଲ ବିଭାଗର ବହୁବିଧ ନିର୍ମାଣୋଦ୍ୟମ --ଜର୍ଜ ଫକ୍‌ନରଙ୍କ ଦ୍ୱାରା ପରିଚାଳିତ । ଫକ୍‌ନରଙ୍କପରି ଲୋକ ହୁଏତ ଇଂଲଣ୍ଡରେ ଖୁବ୍ କମ୍ ପରିଚିତ, କିନ୍ତୁ ଭାରତରେ ବେଶ୍

※ ଜନବୀମ୍‌ସଙ୍କ 'ସମସ୍ତ ସ୍ତ୍ରୀ ପୁରୁଷ' ଅର୍ଥ ସମସ୍ତ ୟୁରୋପୀୟ ସ୍ତ୍ରୀ ପୁରୁଷ ।

ଜଣାଶୁଣା । ସେ ହେଉଛନ୍ତି ଏପରି ଜଣେ ବ୍ରିଟିଶ ଲୋକ ଯାହାଙ୍କର ଭାରତ ହେଉଛି ଦ୍ୱିତୀୟ ମାତୃଭୂମି ଏବଂ ସେ ଇଂଲଣ୍ଡରେ ସୁଖୀ ହୋଇପାରିବେ ନାହିଁ କି ନିଜକୁ ଖାପ ଖୁଆଇ ପାରିବେ ନାହିଁ ବରଂ ସେଠାରେ ଲୋକେ ତାଙ୍କୁ ଭୁଲ୍ ବୁଝିବେ । ଆଚାର ଓ ମନୋବୃତ୍ତିରେ ସେ ଏତେ ବେଶି ଇଂରାଜୀ ଯେ, ଭାରତରେ ଚାଳିଶ ବର୍ଷରୁ ଅଧିକ ରହିଥିଲେହେଁ ସେ କୌଣସି ଭାରତୀୟ ଭାଷାରେ ଡଜନେରୁ ଅଧିକ ଶବ୍ଦ କହିପାରିବେ ନାହିଁ । ନିଜର ଜନ୍ମଭୂମି ସଂପର୍କରେ ସେ ବହୁ ଗୌରବ ଓ ଅନୁରାଗର କଣ୍ଠରେ କହୁଥିଲେ ମଧ୍ୟ ସେଠାକୁ ଫେରିଯିବାପାଇଁ ଆଉ ତାଙ୍କର ଇଚ୍ଛା ନାହିଁ; ଭାରତକୁ ବାସଭୂମି ରୂପେ ବାଛିନେବାପାଇଁ ସେ ପସନ୍ଦ କଲେ ।

ସେ ମ୍ୟାଞ୍ଚେଷ୍ଟର ଅଧିବାସୀ ଏବଂ ଲାଙ୍କାଶାୟାରର ଗୋଟିଏ ବଡ଼ କାରଖାନାରେ ମେକାନିକାଲ ଇଂଜିନିୟର ରୂପେ ତାଲିମପାଇ ସେ ପ୍ରାୟ କୋଡ଼ିଏ ବର୍ଷ ବୟସରେ ଜଳସେଚନ କମ୍ପାନୀର କାର୍ଯ୍ୟରେ ଯୋଗ ଦେଇ ଭାରତ ଆସିଲେ (ଦ୍ୱିତୀୟବାର ଚିନ୍ତାକରି ମୁଁ ଏକଥାକୁ ନିଶ୍ଚିତ ଭାବେ ଗ୍ରହଣ କରିପାରୁ ନାହିଁ) ।

ମୁଁ ଭାବୁଚି ମାନ୍ଦ୍ରାଜକୁ ସେ ଆଉ କୌଣସି କାମରେ ଆସିଥିଲେ ଏବଂ ପରେ ସେଚନ କମ୍ପାନୀରେ ଯୋଗ ଦେଲେ । ତାଙ୍କପରି ବ୍ୟକ୍ତିମାନଙ୍କର ପୂର୍ବ ସ୍ମୃତିମୂଳକ ଗଳ୍ପସବୁ ଏହିପରି, ବିଶେଷକରି ରାତ୍ରି ଭୋଜନ ପରେ ଏପରି ହୋଇପଡ଼େ ଯେ, ତାହା ଶ୍ରୋତାର ଭ୍ରାନ୍ତି ସୃଷ୍ଟି କରିବା ସ୍ୱାଭାବିକ । ନାଳ ଖୋଳିବାପାଇଁ ଗଠିତ ଏହି କମ୍ପାନୀ ମାନ୍ଦ୍ରାଜ ପ୍ରେସିଡ଼େନ୍‌ସିର ଗୋଦାବରୀ ନଦୀରେ କେତେକ ନାଳ ଖୋଳିଛନ୍ତି ଏବଂ ତା'ପରେ ଏହାର କାର୍ଯ୍ୟପରିସର ଓଡ଼ିଶାକୁ ସଂପ୍ରସାରିତ କରି ଏଠାରେ ତିନୋଟି ନାଳ ଖୋଳିଛନ୍ତି, ଯାହା ବିଷୟରେ ପରେ ମୋର ବହୁକିଛି କହିବାର ଅଛି । ପରେ ପରେ ଏହି କମ୍ପାନୀ ଭାଙ୍ଗିଗଲା ଏବଂ ଏହାର ଲୋକ, କାରଖାନା ଓ ଯନ୍ତ୍ରପାତି ସବୁ ସରକାର ନେଇଗଲେ । ଏହିପରି ସଂକ୍‌ନର ଏବଂ ଆଉ କେତେକ ସରକାରୀ ଚାକିରିଆ ହୋଇଗଲେ ।

ସେ ଦେଖିବାକୁ ଦୀର୍ଘକାୟ, ଦୃଢ଼, ଶକ୍ତିମାନ୍ ବ୍ୟକ୍ତି: ମୁଖ ଆରକ୍ତ, ଶଣଘାସ ପରି ଧଳା ପଡ଼ିଯାଇଥିବା ଗୋଛାଏ ଜଟିଳ କେଶ । ବିପୁଳ ଶ୍ମଶ୍ରୁରାଶି ଚଉଡ଼ା ଛାତି ଉପରକୁ ପଡ଼ିଥାଏ ଏବଂ ମୁହଁସାରା ଖେଳୁଥାଏ । ବୃଦ୍ଧକେଶରୀ ପରି ସେ ପ୍ରଶାନ୍ତ, ହାସ୍ୟୋଜ୍ଜ୍ୱଳ, ରୁକ୍ଷ ଓ ନରଉଏ ରାଜ୍ୟର ପ୍ରାଚୀନ ଜଳଦସ୍ୟୁମାନଙ୍କପରି ପାନୋନ୍ମୁଖ । ସଙ୍ଗୀତ, ପରିହାସ ଓ ବହୁ ଅତିଅବାସ୍ତବ ଗଳ୍ପରାଶିର ସେ ଗନ୍ତାଘର । ବିଲକୁଲ ବେପରବାୟ ଭାବ ଓ ପଇସାପତ୍ର ବିଷୟରେ ଅସାବଧାନତା ହେତୁ ସେ ସବୁବେଳେ ଋଣଗ୍ରସ୍ତ ରହୁଥିଲେ ଏବଂ ସର୍ବଦା ଅଦ୍ଭୁତ ଯୋଜନାମାନ ଗଢୁଥିଲେ; ତଥାପି ଏହି ରୁକ୍ଷ ସ୍ୱଭାବର ବୃଦ୍ଧ ନକ୍‌ସାକାରୀ ଭାବରେ ଖୁବ୍ ସୁନ୍ଦର କମନୀୟ ରୁଚିଜ୍ଞାନସମ୍ପନ୍ନ ଥିଲେ ଏବଂ କଳାବିଦ୍ ଭାବରେ ମହାନ୍ କାରୁକଳାର ସ୍ପର୍ଶ ଦେଇପାରୁଥିଲେ । ସେ ଚିତ୍ର ଆଙ୍କୁଥିଲେ, ଖୋଦନ କରୁଥିଲେ, ମୂର୍ତ୍ତି ଗଢୁଥିଲେ, ଘର, ନୌକା ଓ ପୋଲର ନକ୍‌ସା କରୁଥିଲେ । ସେ ସୁନ୍ଦର ଫୁଲମାନ ଉତାରୁଥିଲେ ଏବଂ ସୁନ୍ଦର ଉଦ୍ୟାନମାନଙ୍କର ଯୋଜନା ଓ ନିର୍ମାଣ କରୁଥିଲେ । ତାଙ୍କ ପାଖରେ କାମ କରୁଥିବା ସର୍ବଶ୍ରେଷ୍ଠ କାରିଗର ପରି ସେ ବଟାଳି କିମ୍ବା ଯେ କୌଣସି ହତିଆର ବ୍ୟବହାର କରିପାରୁଥିଲେ । ତାଙ୍କର ଥିଲେ ଚାରିଜଣ ଧନୁର୍ଦ୍ଧର

ପୁତ୍ର: ସେଥିରୁ ତିନିଜଣ ଇଞ୍ଜିନିଅର ଏବଂ ଚତୁର୍ଥଟି ଡାକ୍ତର । ସେମାନେ ସମସ୍ତେ କଳାକାର ଏବଂ ହସ୍ତକୌଶଳ ନିପୁଣ । କିନ୍ତୁ ଆଶ୍ଚର୍ଯ୍ୟର କଥା ଯେ, ଏହି ବିରାଟ, ବପୁବନ୍ତ, ରୁକ୍ଷ, ସବଳ ପିତା ଓ ପୁତ୍ର ସମସ୍ତେ ପଢ଼ିବାକୁ ଭଲ ପାଉଥିଲେ; ଖୁବ୍ ପଢୁଥିଲେ ଏବଂ ଯାହା ପଢୁଥିଲେ ମନେ ରଖୁଥିଲେ। ସାହିତ୍ୟରେ ସେମାନଙ୍କର ଉନ୍ନତ ରୁଚି ଥିଲା ଏବଂ ରସ୍କିନ୍‌ଙ୍କ ଲେଖା ଭଲ ପାଉଥିଲେ । ସେମାନେ ଉଦ୍ଧୃତିମାନ ଦେଇ ଯୁକ୍ତିକରି ପାରୁଥିଲେ ଏବଂ ସୁନ୍ଦର କଥାବାର୍ତ୍ତା କରୁଥିଲେ । ବାଳକଗୁଡ଼ିକ ଅବଶ୍ୟ ମାନ୍ଦ୍ରାଜରେ ଜନ୍ମ ହୋଇଥିଲେ ଏବଂ ଶିକ୍ଷାପାଇଁ ଦେଶକୁ ପଠାହୋଇଥିଲେ । ତାଙ୍କର ତିନୋଟି ସୁନ୍ଦରୀ କନ୍ୟା ମଧ୍ୟ ଥିଲେ, ଯେଉଁମାନେ ଆଂଶିକ ଇଂଲଣ୍ଡ ଓ ଆଂଶିକ ପ୍ୟାରୀରେ ଶିକ୍ଷା ପାଇଥିଲେ । ସେମାନେ ଖୁବ୍ ରୁଚିସଂପନ୍ନା ଏବଂ ବିଶେଷକରି ପ୍ୟାରୀ ଉଚ୍ଚାରଣରେ, ଫରାସୀଭାଷା କହିବାରେ, ସଂଗୀତ ଏବଂ ଖେଳରେ ପ୍ରବୀଣା । ପରିବାରଟିଯାକ ବାସ୍ତବିକ ଆକର୍ଷଣୀୟ ଏବଂ ଆମେ ସେମାନଙ୍କର ଘନିଷ୍ଠ ବନ୍ଧୁ ହୋଇପଡ଼ିଲୁ । ଏପରି ଦୁର୍ଦ୍ଧର୍ଷ ଲୋକମାନଙ୍କ ସ୍ତ୍ରୀ ବିଶେଷ କେତେ କାରଣରୁ ସାଧାରଣତଃ ଯେପରି ହୁଅନ୍ତି ବୃଦ୍ଧା ଶ୍ରୀମତୀ ଫକ୍‌ନର ଠିକ୍ ସେହିପରି। ଖର୍ବକାୟା, କୋମଳ ଏବଂ ଦୁର୍ବଳାଙ୍ଗୀ, ତାଙ୍କ ସ୍ୱାମୀଙ୍କଠାରୁ ଅଧିକ କୁଳୀନ । ଯେତେ ରୁଗ୍‌ଣା ଦେଖାଗଲେ ମଧ ସେହି କ୍ଷୀଣ, ଦୁର୍ବଳ ଶରୀର ମଧରେ ଦୃଢ଼ତା ଓ ସାହସ ପୂରି ରହିଥିଲା ଏବଂ କେବଳ ତାଙ୍କରି ଯୋଗୁଁ ସେହି ତେଜୀୟାନ, ବେପରବାୟ, ଅଖାଡୁ ପରିବାରଟି ଚଳିଯାଉଥିଲା । ଦାସୀପରି ଖଟି ସେ ସେମାନଙ୍କୁ ବହୁ ଅସୁବିଧାରୁ ରକ୍ଷା କରୁଥିଲେ ଏବଂ ସର୍ବଦା ଆନନ୍ଦିତା ଓ ଆଶାବାଦିନୀ ଥିଲେ ଯଦିଓ ମୋ ସ୍ତ୍ରୀଙ୍କ ଆଗରେ ଥରେ ସ୍ୱୀକାର କରିଥିଲେ ଯେ, ସେମାନେ ତାଙ୍କ ଉପରେ ଗୋଟିଏ ଦୁରୂହ ବୋଝ ପରି ।

ଜୋବ୍ରା ଥିଲା ଫକ୍‌ନରଙ୍କ ଗୌରବ; କିନ୍ତୁ ପୂର୍ତ୍ତ ବିଭାଗର ଜଞ୍ଜାଳ । ଅସଂପୂର୍ଣ୍ଣ ଶିକ୍ଷା ଓ ପ୍ରକୃତିଗତ କାରଣରୁ ଫକ୍‌ନର ଅମଲାତନ୍ତ୍ର, ଲାଲଫିତା ବା କାର୍ଯ୍ୟାଳୟର ଧରାବନ୍ଧା ପଦ୍ଧତିର ମାନ ରକ୍ଷା କରିବାରେ ସଂପୂର୍ଣ୍ଣ ଅକ୍ଷମ। ସେ ଶୁଣାନଥିବା ଅଜବ ଅନିୟମିତ କାମ ସବୁରେ ହାତ ଦେଇ ଉପରିସ୍ଥ କର୍ମଚାରୀ ଓ କଲିକତାରେ ଥିବା ବିଭାଗୀୟ ମୁଖ୍ୟମାନଙ୍କର ମୁଣ୍ଡ ଖରାପ କରୁଥିଲେ । ଜୋବ୍ରାକୁ ସେ ନିଜ ଢଙ୍ଗରେ ଶାସନ କରୁଥିଲେ ଏବଂ କାମରେ ସରକାରୀ ରୀତିନୀତି ବୁଝିବା ପାଇଁ ଆଦୌ ପ୍ରସ୍ତୁତ ନ ଥିଲେ । କିନ୍ତୁ ତାଙ୍କ କାମସବୁ ସହି ନିଆ ହେଉଥିଲା; କାରଣ ତାଙ୍କ ବିନା ସେମାନେ କାମ ଠିକ୍ ତୁଲାଇ ପାରନ୍ତେ ନାହିଁ। ଅନ୍ୟପକ୍ଷରେ ସେ ଥିଲେ ଜଣେ ଅତି କୁଶଳୀ, ଆଶୁ ଉଦ୍ଭାବନକାରୀ ଏବଂ କଟକ ଜିଲ୍ଲାର ଚାରିଆଡ଼େ ଅତି ବିସ୍ତୃତ ଓ ଜଟିଳ ନାଳ କାର୍ଯ୍ୟରେ ଯଦି କିଛି ଗଣ୍ଡଗୋଳ ସୃଷ୍ଟି ହେଲା ଫକ୍‌ନର ସଙ୍ଗେ ସଙ୍ଗେ କୌଣସି ଏକ ଯନ୍ତ୍ର ବା ଉପାୟ ଉଦ୍ଭାବନ କରି ଅସୁବିଧା ଦୂର କରିବାରେ ସକ୍ଷମ ଥିଲେ । ତାଙ୍କ ତିଆରି ଜଳ ନିୟନ୍ତ୍ରଣଦ୍ୱାରର କବାଟି, ଭଲଭ୍, ପେଚ, ସ୍ୱୟଂକ୍ରିୟ ତାଲା ଓ ଅନ୍ୟାନ୍ୟ ଯନ୍ତ୍ରସବୁ ଅନ୍ୟ ଯେ କୌଣସି ବ୍ୟକ୍ତିଙ୍କୁ ବହୁ ସୌଭାଗ୍ୟର ଅଧିକାରୀ କରାଇ ପାରିଥାନ୍ତା । ତାଙ୍କ ସାଙ୍ଗରେ ବହୁସଂଖ୍ୟକ ତେଲୁଗୁ କାରିଗର ଥିଲେ ଯେଉଁମାନେ କି ଗୋଦାବରୀରୁ ତାଙ୍କ ସାଙ୍ଗରେ ଆସିଥିଲେ । ସେଥିରେ ଥିଲେ ଉଭୟ ପୁରୁଷ ଓ ସ୍ତ୍ରୀ । ପୁରୁଷମାନେ ବଢ଼େଇ, କମାର ଓ ସ୍ତ୍ରୀମାନେ କୁଲିରୂପେ କାମ

କରୁଥିଲେ । ବାହାରୁ ଓଡ଼ିଶାରେ ଆସି ରହିଥିବା ଏହି ଲୋକ କାରଖାନା ନିକଟରେ ଥିବା ଏକ ଛୋଟ ବସ୍ତିରେ ଖୁନ୍ଦି ହୋଇ ରହିଥିଲେ । ପ୍ରଥମେ ପ୍ରଥମେ ସେମାନଙ୍କ ମଧ୍ୟରେ ଅବାଧ ଯୌନ ମିଳାମିଶା ପ୍ରତିଷ୍ଠିତ ହେଲା । ସେମାନଙ୍କ ମଧ୍ୟରୁ କେତେକ ଦେଶୀୟ ଖ୍ରୀଷ୍ଟିଆନ୍ ହୋଇଥିବାରୁ ସେହି ଅନୁଷ୍ଠାନର ଖ୍ରୀଷ୍ଟିଆନ୍ ଧର୍ମ ପୁରୋହିତ ଫକ୍‌ନରଙ୍କ ନିକଟରେ ଆପତ୍ତି ଜଣାଇଲେ । ତେଣୁ ଫକ୍‌ନର କି ଖ୍ରୀଷ୍ଟିଆନ୍ କି ବିଧର୍ମୀ ପୌତ୍ତଳିକ ସମସ୍ତଙ୍କୁ ଏକାଠି କରାଇ କହିଦେଲେ ଯେ, ସେ କାରଖାନା ଭିତରେ ଅନୀତି କରାଇ ଦେବେ ନାହିଁ ଏବଂ ଏହା ବନ୍ଦ କରିବା ପାଇଁ ସେ ପ୍ରତ୍ୟେକ ବ୍ୟକ୍ତିଙ୍କୁ ମାତ୍ର ଗୋଟିଏ ସ୍ତ୍ରୀ ବାଛିନେବାପାଇଁ ଆଦେଶ ଦେଲେ । ତାହା ହେବା ପରେ ସେ ସମସ୍ତଙ୍କ ନାମକୁ ଗୋଟାଏ ଖାତାରେ ଚଢ଼ାଇଲେ ଏବଂ ବ୍ରିଟିଶ ଗିର୍ଜାର ବିବାହ ପଦ୍ଧତିରୁ କିଛି ଅଂଶ ମିଶାଇ ସେମାନଙ୍କୁ ଏକ ଅଦ୍ଭୁତ ଧରଣର ଉଦ୍‌ବୋଧନ ଦେଲେ ଏବଂ ତା'ପରେ ଅବସ୍ଥାଟାକୁ ଦୃଢ଼ୀଭୂତ କରିବାପାଇଁ ପ୍ରତ୍ୟେକ ବ୍ୟକ୍ତିଠାରୁ ଏକ ଟଙ୍କା କରି ଆଦାୟ କଲେ । ତା' ପରେ ଧାର୍ମିକ ରୀତିରେ ସମସ୍ତଙ୍କୁ ଜଣାଇଦେଲେ ଯେ, ସେମାନେ ସମସ୍ତେ ବର୍ତ୍ତମାନ ବିବାହିତ । ଅବଶ୍ୟ ସେ କ'ଣ କହିଲେ ସେମାନେ ବିଶେଷ କିଛି ବୁଝିପାରିଲେ ନାହିଁ, କାରଣ ସେ ଇଂରାଜୀରେ କହିଲେ ଓ ଅନୁବାଦ କରି ଶୁଣାଇ ଦିଆଯିବା ପର୍ଯ୍ୟନ୍ତ ସେମାନେ ଅପେକ୍ଷା କଲେ ନାହିଁ; କିନ୍ତୁ ସେହି ଉତ୍ସବ, ବିଶେଷକରି ସେହି ଟଙ୍କା ଦେବା ବିଷୟରୁ ସେମାନେ ବେଶ୍ ବୁଝିପାରିଥିଲେ । ଅବଶ୍ୟ ଫକ୍‌ନରଙ୍କୁ କୁହାଯାଇଥିଲା ଯେ, ସେମାନଙ୍କ ମଧ୍ୟରୁ କେତେକ, ସମ୍ଭବତଃ ଅଧିକାଂଶ ଆଗରୁ ବିବାହ କରିଛନ୍ତି । କିନ୍ତୁ ସେ କହିଲେ ଯେ ସେଥିରେ କିଛି ଯାଏ ଆସେ ନାହିଁ । ସେମାନଙ୍କ ଭିତରେ ଥିବା ବିଧବା ଓ ଅନାଥ ଶିଶୁଙ୍କ ସାହାଯ୍ୟ ପାଇଁ ଯେଉଁ ଟଙ୍କା ସେମାନେ ଦେଇଥିଲେ, ସେଇଥିରେ ସେ ସେମାନଙ୍କୁ ଘୁଷୁରି ମାଂସର ଏକ ବଡ଼ ଭୋଜି ଦେଲେ । ଏହି ଅଭୂତପୂର୍ବ ଯୋଜନା ଭଲ କାମ ଦେଲା । ଏହାପରେ ପ୍ରତ୍ୟେକ ଲୋକ ନିଜର ସେଇ ତଥାକଥିତ ସ୍ତ୍ରୀକୁ କଡ଼ାକଡ଼ି ଭାବରେ ରକ୍ଷାକଲେ । ପ୍ରତ୍ୟେକ ଆଗନ୍ତୁକଙ୍କୁ ଫକ୍‌ନରଙ୍କ ନିକଟକୁ ଆସି ପବିତ୍ର ରୀତିରେ ବିବାହ କରିବାକୁ ପଡୁଥିଲା ଏବଂ ସେହି ବଡ଼ ଖାତାରେ ସେମାନଙ୍କ ନାଁ ଲେଖା ହେଉଥିଲା । ଅନୈତିକ କାମ ସବୁ ବନ୍ଦ ହୋଇଗଲା ଏବଂ ଛୋଟ ବସ୍ତିଟିରେ ଶାନ୍ତି ଓ ଶୃଙ୍ଖଳା ବିରାଜିଲା । ଯଦି କୌଣସି ଲୋକ ସେଠାରୁ ଚାଲିଯାଉଥିଲା ତେବେ ସେ ବହିରୁ ସେ ତା' ନାଁ କଟାଇଦେଇ ଅତି ସହଜରେ ତା' ସ୍ତ୍ରୀକୁ ଛାଡ଼ପତ୍ର ଦେଇପାରୁଥିଲା ଏବଂ ସେ ସ୍ତ୍ରୀ ସଙ୍ଗେ ସଙ୍ଗେ ଅନ୍ୟ ଜଣକୁ ବାହାହୋଇ ପଡୁଥିଲା । ବୟସ ହୋଇଥିବା ଶ୍ରମିକ ବାଳକମାନଙ୍କ ପାଇଁ ଗୋଟିଏ ବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା ।

ଝୋବ୍ରାର ଧାଡ଼ି ଧାଡ଼ି ଲମ୍ବା କାରଖାନାରେ ସକାଳେ ଥରେ ବୁଲିଆସିବା ଖୁବ ଆକର୍ଷଣୀୟ । ନାସମିଥଙ୍କ ନିର୍ମିତ ବିରାଟ ବାଷ୍ପଚାଳିତ ହାତୁଡ଼ି ବଡ଼ ବଡ଼ ଖଣ୍ଡ ତପ୍ତ ଲାଲ ଲୁହା ଖଣ୍ଡକୁ ପିଟୁଥିବ କିମ୍ବା ନଟ ବାଡ଼େଇ ତିଆରି କରୁଥିବ କିମ୍ବା ଅନ୍ୟ ଯନ୍ତ୍ରସବୁ କେତେ ସେକେଣ୍ଡ ମଧ୍ୟରେ ଲୁହାକୁ କାଟି ଖଣ୍ଡ ଖଣ୍ଡ କରୁଥିବେ ବା ଲୁହା ଗଣ୍ଡିକୁ କରତି ପଟା କରି ଦେଉଥିବେ । ଫକ୍‌ନର ପୁଣି ମହିଳାମାନଙ୍କ ପାଇଁ ହାତୀଦାନ୍ତ ବା ଏବୋନି କାଠର କ୍ରୋକେଟ ଖେଳର ସୁନ୍ଦର ବାଡ଼ି ତିଆରି କରୁଥିଲେ । ତାଙ୍କ ବାକ୍‌ସ ମଧ୍ୟରୁ ସେ ଅନେକ ସୁନ୍ଦର ସୁନ୍ଦର କାମର ନକ୍‌ସା

ଦେଖାଉଥିଲେ—ମସୃଣ ଢାଲିକାମର ବ୍ରାକେଟ ଓ ପରଦା, ଚିତ୍ରିତ କାଚର ଝରକା, ପ୍ଲାଷ୍ଟର ବା ପଥର ଦେହରେ ନକ୍‌ସା କାମ ଏବଂ ଆଖି ଝଲସା ଅତି ସୁନ୍ଦର ସୁନ୍ଦର ପଦାର୍ଥ । ମୋ ସ୍ତ୍ରୀଙ୍କ ପାଇଁ ସେ ଶାଗୁଆନ କାଠର ଦୁଇଟି ଅତି ସୁନ୍ଦର ସଛିଦ୍ର ପରଦା କରି ଦେଇଥିଲେ ଯାହାର ନକ୍‌ସା କି ସେ ନିଜେ କରିଥିଲେ । ତାହା ଏ ପର୍ଯ୍ୟନ୍ତ ମୋ ପାଖରେ ଅଛି । ସେ ବୃଦ୍ଧ ଆମ ସମସ୍ତଙ୍କ ପାଇଁ ଆଉ ଅନେକ କାମ କରିଥିଲେ। ଆମ୍ଭମାନଙ୍କର ଘରେ ଯାହାକିଛି ଯନ୍ତ୍ରପାତି ବିଗିଡ଼ି ଯାଉଥିଲା, ତାହା ସଜାଡ଼ି ଦେବାପାଇଁ ସେ ସର୍ବଦା ପ୍ରସ୍ତୁତ ଥିଲେ । ସେତେବେଳେ କୁହା ଯାଉଥିଲା— " ବୃଦ୍ଧ ଫକ୍‌ନରଙ୍କୁ ଗୋଟାଏ ଚିରୁଟ୍ ଓ ଏକ ପେଗ୍ ('ପେଗ୍' ଏହି ଶବ୍ଦଟି ଭାରତରେ ସର୍ବତ୍ର ପ୍ରଚଳିତ । ଏହାର ଅର୍ଥ ବଡ଼ ଗ୍ଲାସେ ବ୍ରାଣ୍ଡି କିମ୍ବା ହୁଇସ୍କି ଏବଂ ସୋଡ଼ା ପାଣି । ଇଂଲଣ୍ଡରେ ଏହା ଜଣାଥିବା ପରି ବୋଧହୁଏ ନାହିଁ) ହୁଇସ୍କି ମଦ୍ୟ ଦେଲେ ଏପରି କିଛି କାମ ନାହିଁ ଯାହା ସେ କରି ନ ପାରିବେ ।" କଥାଟା ସତ୍ୟ । ତାଙ୍କର କଥା କହିବାରେ ଅନ୍ୟାନ୍ୟ ବିଶେଷତ୍ୱ ହେଉଛି, ସେ କହିଲାବେଳେ ଇଂରାଜୀ h (ଏଚ୍) ଅକ୍ଷରଟି ପୂରା ବାଦଦେଇ 'ହେଡ୍', 'ହାଣ୍ଡ' ପ୍ରଭୃତି ସ୍ଥଳରେ କହନ୍ତି 'ଏଡ୍', 'ଆଣ୍ଡ' 'ଆଏ' (igh), ଏଭି (eavy), ଅଟ (ot) ଇତ୍ୟାଦି । ସେ ଯେ କ'ଣ ଛାଡ଼ି ଦେଉଛନ୍ତି ସେ ବିଷୟରେ ସଜାଗ ନଥିବା ପରି ଜଣାପଡ଼େ, କେତେକ କହନ୍ତି ଏହା ହେଉଛି ଲାଙ୍କାଶାୟାରର 'ବୋଲି' । ଅନ୍ୟ ଦୃଷ୍ଟିରୁ ସେ ଶୁଦ୍ଧ ଇଂରାଜୀ କହନ୍ତି ।



# ଅଷ୍ଟାଦଶ ପରିଚ୍ଛେଦ

## କଟକ : ୧୮୭୪

୧୮୭୪ ବର୍ଷଟି ଆନନ୍ଦ ଓ କର୍ମମୁଖରତା ମଧ୍ୟରେ କଟିଗଲା । ଶୀତଋତୁରେ ଆମେ ନୂଆ ଜାଗାମାନଙ୍କରେ ବୁଲି ବୁଲି ବହୁତ ମଉଜ କଲୁ । ଜିଲ୍ଲାଟି ବିରାଟ, ଉର୍ବର ଏବଂ ବହୁ ଜନାକୀର୍ଣ୍ଣ । ବିଶେଷକରି ପ୍ରାକୃତିକ ଦୃଶ୍ୟ ଓ ଯେଉଁ ବଡ଼ ବଡ଼ ଆମ୍ବତୋଟାମାନଙ୍କରେ ଆମେ ତମ୍ବୁ ପକାଉ ସେ ସବୁର ଶୋଭାକୁ ଆମେ ଉପଭୋଗ କରୁଥିଲୁ । ନୂତନ ଦୃଶ୍ୟାବଳୀର ପ୍ରଭାବରେ ପଡ଼ି ମୁଁ ମୋର ପୁରାତନ ଚିତ୍ରାଙ୍କନ ଅଭ୍ୟାସ ପୁଣି ଆରମ୍ଭ କରିଦେଲି । ସେଠାରେ ଥିବା ଅନ୍ୟ ଅଙ୍କନକାରୀମାନଙ୍କ କାମ ମଧ୍ୟ ମୋତେ ପ୍ରେରଣା ଦେଲା । ମୋର ତୁଳନାତ୍ମକ ବ୍ୟାକରଣ (ଏହାର ପାଣ୍ଡୁଲିପିଟି ୧୮୭୫ରେ ଦେଶକୁ ପଠାଇଥିଲି) ଲେଖାରେ ମଧ୍ୟ ଜୋରରେ ଲାଗିଗଲି । ପୁଣି ଜଣେ ଉତ୍ସାହୀ ଉଦ୍ଭିଦବିତ୍ ସିଭିଲ୍ ସର୍ଜନ ଡାଃ ଷ୍ଟୁଆର୍ଟଙ୍କ ପ୍ରେରଣାରେ ମୁଁ ସେହି ମନୋଜ୍ଞ ବିଜ୍ଞାନରେ ମଧ୍ୟ ହାତ ଦେଲି । ଗୋଟିଏ କେନାଲ କୂଳରେ ଖଣ୍ଡେ ବଡ଼ ବାଲିଆ ଜାଗାରେ ସର୍ବସାଧାରଣ ଉଦ୍ୟାନଟିଏ ନିର୍ମାଣ କଲି, ଯେଉଁଠି କି କଲିକତାର ଉଦ୍ଭିଦ ଉଦ୍ୟାନରୁ ଅଣାଯାଇଥିବା ବହୁପ୍ରକାର ସୁନ୍ଦର ଚାରା ରଖିଥିଲି । ଏଇଠାରେ ମଧ୍ୟ ମୁଁ ଛୋଟ ଗଛମାନଙ୍କର ନର୍ସରୀଟିଏ କରିଥିଲି ଯେଉଁଠି ଗଛଗୁଡ଼ିକ ଯଥେଷ୍ଟ ବଢ଼ିଗଲେ ସର୍ବସାଧାରଣ ରାସ୍ତାକଡ଼ରେ ରୋପିତ ହେଉଥିଲା । ଏହିପରି ଭାବରେ ରାସ୍ତାରେ କଡ଼େ କଡ଼େ ମାଇଲ ମାଇଲ ବୃକ୍ଷ ରୋପିତ ପଥ ନିର୍ମାଣ କରିଥିଲି । ଆଜି କୋଡ଼ିଏ ବର୍ଷ ପରେ ସେ ସବୁ ସୁନ୍ଦର ଛାୟାପ୍ରଦ ବୃକ୍ଷରେ ପରିଣତ ହୋଇଯିବଣି; ଆଶାକରେ କ୍ଳାନ୍ତ ପଥିକମାନଙ୍କ ପକ୍ଷରେ ତାହା ଏକ ନିଶ୍ଚିତ ଆଶୀର୍ବାଦ ।

ଏ ବର୍ଷର ଏକମାତ୍ର ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ବଙ୍ଗଳା ଦୁର୍ଭିକ୍ଷ । ଚାଉଳ ବଙ୍ଗାଳୀମାନଙ୍କର ପ୍ରଧାନ ଖାଦ୍ୟ ହୋଇଥିବାରୁ ତାହାର ଚାହିଦା ଖୁବ୍ ବେଶି । ପ୍ରଥମେ ସରକାର ବ୍ରହ୍ମଦେଶରୁ ଚାଉଳ ଆମଦାନୀ କରୁଥିଲେ; କିନ୍ତୁ ବଙ୍ଗଳାର ଲୋକେ କୌଣସି କାରଣରୁ ବ୍ରହ୍ମଦେଶୀ ଚାଉଳକୁ ପସନ୍ଦ କଲେ ନାହିଁ। ଆମ ୟୁରୋପୀମାନଙ୍କୁ ସବୁ ଚାଉଳ ସମାନ ଦେଖାଯାଏ; କିନ୍ତୁ ସଂପୂର୍ଣ୍ଣ ଭାବରେ ଏହାର ଉପରେ ଚଳୁଥିବା ବଙ୍ଗାଳୀମାନଙ୍କୁ ବିଭିନ୍ନ କିସମ ମଧ୍ୟରେ ବହୁ ପାର୍ଥକ୍ୟ ଜଣାପଡ଼ିଯାଏ । ଓଡ଼ିଶାର ଚାଷୀମାନେ ପ୍ରାୟ ଶହେ କୋଡ଼ିଏ ପ୍ରକାର ଧାନ ଚିହ୍ନିପାରନ୍ତି; ପ୍ରତ୍ୟେକର ସ୍ୱତନ୍ତ୍ର ନାମ ରହିଛି । ମୋର ଦେଶୀୟ ସହକାରୀମାନଙ୍କର ବିସ୍ତୃତ ବ୍ୟାଖ୍ୟା ଫଳରେ ବହୁ ପରୀକ୍ଷା ଓ ତୁଳନା କରି ଧାନର (ବୀମସ୍‌ଙ୍କ ଭାଷାରେ unhusked rice) ଆକାର ପ୍ରକାର, ରଙ୍ଗ ଢଙ୍ଗ ସଂପର୍କରେ ଅନେକ ପାର୍ଥକ୍ୟ ଜାଣିପାରିଲି । କୁଣ୍ଡା (ଆବରଣ) କଢ଼ା ହୋଇଗଲେ ପାର୍ଥକ୍ୟ କମ୍ ଜଣାପଡ଼େ ।

ଓଡ଼ିଶା ପ୍ରଦେଶରେ ବହୁ ପରିମାଣରେ ଚାଉଳ ଉତ୍ପନ୍ନ ହୁଏ, ଅନ୍ତତଃ ମୋ ସମୟରେ ହେଉଥିଲା । ପ୍ରକୃତରେ ଚାଉଳ ବ୍ୟତୀତ ଏଠାରେ ଅନ୍ୟ କିଛି କରାଯାଏନା ଏବଂ କଟକ ଓ ବାଲେଶ୍ୱରର ବେପାରୀମାନେ ପ୍ରଧାନତଃ ମାଡ୍ରାଜକୁ ଚାଉଳ ରପ୍ତାନିର ଖୁବ୍ ବଡ଼ ବ୍ୟବସାୟ କରନ୍ତି । ଓଡ଼ିଶାର ପ୍ରଧାନ ବନ୍ଦର ଫଲସ୍‌ପଏଣ୍ଟକୁ ଅନେକ ଫରାସୀ ଜାହାଜ ଆସି ଚାଉଳ ନିଅନ୍ତି । ତାହା ମରିସସ୍, ବୋରବୋନ ଏବଂ ନିକଟସ୍ଥ ଅନ୍ୟାନ୍ୟ ଦ୍ୱୀପରେ ଆଖୁଚାଷରେ ନିଯୁକ୍ତ ଭାରତୀୟ କୁଲିମାନଙ୍କ କାମରେ ଲାଗେ । ସେଇ ଫରାସୀ ଜାହାଜଗୁଡ଼ିକର କ୍ୟାପ୍‌ଟେନ୍‌ମାନଙ୍କ ସଙ୍ଗେ (ନିଜକୁ ସେମାନେ capitaines and long cours ବା ଦୂର ପଥର କ୍ୟାପ୍‌ଟେନ୍‌ମାନଙ୍କ ବୋଲି ଲେଖୁଥିଲେ) ଖୁବ୍ ବନ୍ଧୁତା ଜମେଇ ଦେଇଥିଲି । ପୁଣି ସେଇ ଦୁର୍ଭିକ୍ଷ ବିଷୟକୁ ଫେରିଆସେ । କଟକରେ ବାସ କରୁଥିବା କେତେକ ବଙ୍ଗଳା ବେପାରୀ ମୋ ନିକଟକୁ ଆସି ଅନୁଯୋଗ କଲେ ଯେ ଦୁର୍ଭିକ୍ଷଗ୍ରସ୍ତ ଜିଲ୍ଲାମାନଙ୍କୁ ସରକାର ଯେଉଁ ଧାନ ଯୋଗାଇଛନ୍ତି ତାହା ଲୋକେ ପସନ୍ଦ କରୁନାହାନ୍ତି ଏବଂ ଓଡ଼ିଶାରେ ଉତ୍ପନ୍ନ ଧାନ ବଙ୍ଗଳା ଧାନ ସହ ସମାନ ଥିବାରୁ ଓଡ଼ିଶାରେ ଧାନ ବ୍ୟବସାୟ କରିବାର ଉତ୍ତମ କ୍ଷେତ୍ର ରହିଛି । ତେଣୁ ମୁଁ ସରକାରଙ୍କ ସେକ୍ରେଟାରିଙ୍କୁ ଟେଲିଗ୍ରାଫ୍ କରି ଓଡ଼ିଶା ଧାନ ପଠାଇବା ବିଷୟ ଜଣାଇଲି । ମୋ ପ୍ରସ୍ତାବ ଗୃହୀତ ହୋଇଗଲା ଏବଂ ଧାନ ଯୋଗାଣ ସକାଶେ କେତେକ ସଂସ୍ଥାକୁ ମୁଁ ସଙ୍ଗେ ସଙ୍ଗେ ଠିକା ଦେଇଦେଲି । ବରାଦର ପରିମାଣ ଥିଲା ପାଞ୍ଚଲକ୍ଷ ମହଣ ବା ଇଂରାଜୀ ମାପରେ ପ୍ରାୟ ୧୮, ୩୦୦ ଟନ୍ । ବେପାରୀମାନେ ନିଜ ନୌକାରେ ଧାନ ନେଇ ସବୁ ଖର୍ଚ୍ଚ ମିଶାଇ କଲିକତାଠାରେ ମହଣକୁ ଅଢ଼େଇ ଟଙ୍କା ହିସାବରେ ଅଥବା ଇଂରାଜୀ ମୁଦ୍ରା ୧୨୫,୦୦୦ ପାଉଣ୍ଡରେ ଯୋଗାଇଦେବା ପାଇଁ ରାଜି ହୋଇ ପ୍ରସ୍ତାବ ଦେଲେ । କାମ ଜୋରସୋରରେ ଚାଲିଲା । ବେପାରୀମାନେ ନୌକା ସହ ଚୁକ୍ତି କରିବା ଆରମ୍ଭ କଲେ ଏବଂ ପ୍ରକୃତରେ ଅନେକ ନୌକାସହ ଚୁକ୍ତି ସଂପାଦିତ ହୋଇସାରିଥିଲା ଏବଂ ବହୁ ପରିମାଣ ଧାନ ବନ୍ଦରମାନଙ୍କରେ ଜମା ହୋଇଯାଇଥିଲା । ସେମାନେ ଯଦି କେବଳ ଆମରି ହାତରେ ଛାଡ଼ିଦେଇଥା'ନ୍ତେ ମାସକ ମଧ୍ୟରେ ସେ ସବୁ କଲିକତାରେ ପହଞ୍ଚାଇ ଦିଆଯାଇ ପାରିଥା'ନ୍ତା; କିନ୍ତୁ ହଠାତ୍ ଆମକୁ ଏକ ଗଣ୍ଡଗୋଳିଆ ପରିସ୍ଥିତିରେ ପକାଇ ସରକାରଙ୍କଠାରୁ ଆଦେଶ ଆସିଲା ଯେ, ଆମେ ବେସରକାରୀ ନୌକାରେ ଧାନ ପଠାଇବୁ ନାହିଁ, ସରକାର ପଠାଉଥିବା ଷ୍ଟିମରକୁ ଅପେକ୍ଷା କରିବୁ । ମୁଁ ଏହାର ଜୋର୍ ପ୍ରତିବାଦ କଲି ଏବଂ ଅନେକ ଠିକାଦାର ମଧ୍ୟ କଲେ । ମୁଁ ଦର୍ଶାଇଲି ଯେ ଏହାଦ୍ୱାରା ସରକାରଙ୍କର ବହୁତ ଖର୍ଚ୍ଚ ହେବ, ଯେହେତୁ ବେପାରୀମାନେ ସେମାଙ୍କର ଖର୍ଚ୍ଚରେ ଧାନ ପହଞ୍ଚାଇ ଦେବାପାଇଁ ଚୁକ୍ତି କରି ସାରିଛନ୍ତି । ଆହୁରି ମଧ୍ୟ ଆମେ ଜାଣିଥିଲୁ ଯେ, ସେମାନଙ୍କ ନିକଟରେ ବହୁତ ଷ୍ଟିମର ନାହିଁ ଏବଂ ସେଥିପାଇଁ ବହୁ ଡେରିହେବ; କିନ୍ତୁ ଆମର ପ୍ରତିବାଦ ଅଗ୍ରାହ୍ୟ ହେଲା । ସପ୍ତାହ ସପ୍ତାହ ଧରି ବନ୍ଦରର ଜେଟିରେ ଧାନ ପଡ଼ି ରହିଲା । ବର୍ଷାଦିନ ଆସିଗଲା ଏବଂ ଛ'ସାତଟି ଷ୍ଟିମରରେ ଧରିଲାଭଳି ଧାନକୁ ତିନୋଟି ଛୋଟ ଷ୍ଟିମରରେ ବୋହୁ ବୋହୁ ଓଦାହୋଇ ସେଥିରୁ ଅନେକ ଅଂଶ ନଷ୍ଟ ହୋଇଗଲା । କଲିକତା କର୍ମଚାରୀମାନଙ୍କର ଡେରି ଓ କୁପରିଚାଳନା ଫଳରେ

ସବୁ କାରବାରର ଖର୍ଚ୍ଚ ବଢ଼ିଯାଇ ଟ ୧୨୫୦,୦୦୦ଙ୍କା ସ୍ଥାନରେ ହେଲା ଟ ୧ , ୫୨୩, ୩୭୩ ପ୍ରାୟ ୨୭୦୦୦ ପାଉଣ୍ଡ (*)ର କ୍ଷତି ।

ସେତେବେଳେ କେହି ସରକାରଙ୍କର ଏ କାର୍ଯ୍ୟର କାରଣ ବୁଝିପାରିଲେ ନାହିଁ । ସମସ୍ତଙ୍କର ଧାରଣା ହେଲା ଯେ, ଏହି ଦୁର୍ଭିକ୍ଷ ସାର୍ ରିଚାର୍ଡ ଟେମ୍ପଲଙ୍କର ବେପରବାୟ ବଦଖର୍ଚ୍ଚର ଅନ୍ୟ ଏକ ଘଟଣା । ସେ ସେତେବେଳେ ଦୁର୍ଭିକ୍ଷ ନିରୋଧ କାର୍ଯ୍ୟ ପରିଚାଳନା କରୁଥିଲେ । କେତେ ବର୍ଷପରେ ୧୮୮୧ରେ ମୁଁ ଏହାର ପ୍ରକୃତ ରହସ୍ୟର ସନ୍ଧାନ ପାଇଲି । ଜଣେ ବ୍ୟକ୍ତି, ଯେ ଜାଣି ନ ଥିଲେ ଯେ ମୁଁ ଓଡ଼ିଶାରୁ ଧାନ ପ୍ରେରଣ ଚୁକ୍ତି ସଂପାଦନ କରିଥିଲି, ମୋତେ ଏକ ମଜା କଥା ପରି ବର୍ଣ୍ଣନା କଲେ ଯେ, କିପରି ସେ ଆଉ କେତେଜଣଙ୍କ ସହ ମିଳିତ ହୋଇ (ଯେଉଁମାନଙ୍କର ମୁଖ୍ୟ ଥିଲା କ (k)—ନାମକ ଏକ ବଦମାସ, ସେତେବେଳର ସରକାରଙ୍କର ଏକ ସହକାରୀ ସଚିବ) ବହୁ ପରିମାଣର ବ୍ରହ୍ମଦେଶୀ ଧାନ ଯୋଗାଇଦେବାପାଇଁ ସରକାରଙ୍କ ସହ ଚୁକ୍ତି କଲେ । କିପରି ଚୁକ୍ତି ସଂପାଦିତ ହେବା ପୂର୍ବରୁ ଓଡ଼ିଶାରୁ ଜଣେ ଲୋକ ବହୁ ପରିମାଣର ଧାନ ଆହୁରି ଶସ୍ତାରେ ଯୋଗାଇ ଦେବା ପ୍ରସ୍ତାବ ଦେଇଛି ବୋଲି ଖବର ଶୁଣି ସେମାନେ ତ୍ରସ୍ତ ହୋଇ ପଡ଼ିଲେ ଏବଂ କଲିକତାର ଦୁର୍ଭିକ୍ଷ ଅଫିସର ଟୟନବି ଓଡ଼ିଶାରେ ଅନେକ ବର୍ଷ ଚାକିରି କରିଥିବାରୁ ଓଡ଼ିଶା ବେପାରୀଙ୍କ ପକ୍ଷ ନେଇ ସେମାନଙ୍କ ପ୍ରସ୍ତାବ ଗ୍ରହଣ କରି ନେବାପାଇଁ ସରକାରଙ୍କୁ ପ୍ରବର୍ତ୍ତାଉ ଥିଲେ; ତା'ପରେ ଖବର ଆସିଲା ଯେ, ଟୟନବି ସେଥିରେ ସଫଳ ହୋଇଛନ୍ତି, ତା'ର ପ୍ରଧାନ କାରଣ ବଙ୍ଗାଳୀମାନେ ବ୍ରହ୍ମଦେଶ ଚାଉଳ ଭଲ ପାଆନ୍ତି ନାହିଁ । ମୋର ସମ୍ବାଦଦାତା କହିଲେ ଯେ 'କ'—ନିଜ ପଦରେ ସୁବିଧା ନେଇ ସରକାରଙ୍କୁ ପ୍ରସ୍ତାବ କଲେ କି ଓଡ଼ିଆ ଠିକାଦାରମାନେ ସେଠାକାର ନୌକାରେ ଧାନ ପଠାଇବା ବିଷୟ ଉପରେ ନିର୍ଭର କରିବା ନିରାପଦ ନୁହେଁ, କାରଣ ସେମାନେ ଯଥେଷ୍ଟ ସଂଖ୍ୟାରେ ନୌକା ପାଇବେ ନାହିଁ । ଏପରି ଧରଣର ସରକାରୀ ଆଦେଶପତ୍ର ସେ କରାଇଦେଲେ ଯେଉଁଟାକି ଆମକୁ ଆଶ୍ଚର୍ଯ୍ୟ ଚକିତ କରିଥିଲା । ସେ ଓ ତାଙ୍କ ଅଂଶୀଦାରମାନେ ସେମାନଙ୍କ ବ୍ରହ୍ମଦେଶୀ ଚାଉଳ କଲିକତାକୁ ଆଣି ସରକାରଙ୍କୁ ବିକ୍ରୟକରି ସାରିବା ପର୍ଯ୍ୟନ୍ତ ସରକାରୀ ଷ୍ଟିମରଗୁଡ଼ିକ ଯିବାରେ ଯେପରି ଡେରି ହୁଏ ତାହାର ବନ୍ଦୋବସ୍ତ କରି ଦେବାରେ ମଧ୍ୟ ତାଙ୍କର କିଛି ଅସୁବିଧା ହୋଇ ନ ଥିଲା । ଅବଶ୍ୟ 'କ—' ଜଣେ ସରକାରୀ କର୍ମଚାରୀ ହୋଇ ଗୋଟାଏ ବ୍ୟକ୍ତିଗତ ଚୁକ୍ତିପତ୍ରରେ ତାଙ୍କର ଅଂଶ ଅଛି ବୋଲି ଜଣାପଡ଼ିଥିଲେ ସେ ଗୁରୁତର ଦଣ୍ଡ ଭୋଗ କରିଥାଆନ୍ତେ; କିନ୍ତୁ ଏହା ଯେପରି ଜଣା ନ ପଡ଼େ ତାହାର ଖୁବ୍ ଯତ୍ନ ସେ ନେଇଥିଲେ । ମୋର କାରବାର ବହୁ ଅସୁବିଧାଜନକ ଓ କ୍ଳେଶଦାୟକ ବୋଲି ଜଣାଯିବାରୁ ମୁଁ ସରକାରଙ୍କ ଠାରୁ ଧନ୍ୟବାଦ ଲାଭକଲି । କେତେ ବର୍ଷ ପରେ ଆହୁରି ଅଧିକ ଅପ୍ରୀତିକର ଭାବରେ ଏହି 'ଶ୍ରୀ କ—' ଆଉଥରେ ଓଲଟିପଡ଼ି ମୋର ସୌଭାଗ୍ୟ ସହିତ ନିଜକୁ ଗୋଳେଇ ପୋଳେଇ ଦେଲେ ।

---

| | | |
|---|---|---|
| (*) | ପ୍ରକୃତ ହୋଇଥିବା | ଖର୍ଚ୍ଚ—୧୫୨୩,୩୭୩ |
| | ଯୋଜନାନୁଯାୟୀ | ଖର୍ଚ୍ଚ—୧୨୫୦,୦୦୦ |
| | | କ୍ଷତି—ଟ୨୭୩,୩୭୩ |
| | | ପ୍ରାୟ ୨୭୦୦୦ ପାଉଣ୍ଡ |

ବର୍ତ୍ତମାନ ମଧ୍ୟ ସାର୍ ରିଚାର୍ଡ଼ ଟେମ୍ପଲ ମୋ ଜୀବନର ଗତିପଥକୁ ଆସିଗଲେ ମୋ ପାଇଁ ଅସୁବିଧା ସୃଷ୍ଟିକରି । ପଞ୍ଜାବରେ ପ୍ରଥମ ସାକ୍ଷାତ୍‌ରେ ସେ ମୋ ସହିତ କିପରି ବ୍ୟବହାର କରିଥିଲେ ତାହା କହିଛି ଏବଂ ସେଥିରୁ ଜଣାଯାଇପରେ ତାଙ୍କ ସମ୍ପର୍କରେ ମୋର ଅନୁଭୂତି ଖୁବ୍ ସୁଖକର ନୁହେଁ । ସେଇବର୍ଷ ଯେତେବେଳେ ବିହାର ଓ ଉତ୍ତର ବଙ୍ଗରେ ଦୁର୍ଭିକ୍ଷ ଲାଗିଗଲା, ବଡ଼ଲାଟ ଲର୍ଡ ନର୍ଥବ୍ରୁକ୍ ତାହାର ପରିଚାଳନା ପାଇଁ ଟେମ୍ପଲ୍‌ଙ୍କୁ ପଠାଇଲେ । ଏହା ଯେ କେବଳ ସଂପୂର୍ଣ୍ଣ ଅଦରକାରୀ ଥିଲା ତାହା ନୁହେଁ । ସାର ଜର୍ଜ କାମ୍ପବେଲଙ୍କ ପ୍ରତି ମଧ୍ୟ ଏହା ଏକ ଗୁରୁତର ଅବମାନନା ହେଲା ଯେ କି ସମସ୍ତ ଆବଶ୍ୟକୀୟ କାର୍ଯ୍ୟ ସଂପାଦନରେ ଖୁବ୍ ଦକ୍ଷ ଥିଲେ ଏବଂ ନିଜର ସ୍ୱଭାବସୁଲଭ କର୍ମପ୍ରବଣତାରେ ସମସ୍ତ ଦରକାରୀ ବନ୍ଦୋବସ୍ତ କରି ସାରିଥିଲେ । କିନ୍ତୁ ୧୮୬୬ର ଭୟଙ୍କର ଓଡ଼ିଶା ଦୁର୍ଭିକ୍ଷ ଓ ସେଥିରେ ଅତ୍ୟଧିକ ଜନକ୍ଷୟ ଭାରତ ସରକାରଙ୍କ ସ୍ମୃତିରେ ସଜାଗ ଥିଲା । ଓଡ଼ିଶାରେ ଜନକ୍ଷୟର ପ୍ରଧାନ କାରଣ ଥିଲା ପ୍ରଦେଶ ମଧ୍ୟକୁ ଖାଦ୍ୟ ଆଣିବାରେ ଅସୁବିଧା । ରାସ୍ତା ଥିଲା ଅତି କମ୍, ତାହା ପୁଣି ଖରାପ—କୌଣସି ନିରାପଦ ବନ୍ଦର ନ ଥିଲା । ବଙ୍ଗଳାର ଲାଟ ସାର୍ ସିସିଲ୍ ବିଡ଼ନ୍‌ଙ୍କ ନିଷ୍କ୍ରିୟତା ଏବଂ ରାଜସ୍ୱ ବୋର୍ଡ଼ର ସଭ୍ୟ ଶ୍ରୀ ଆର. ବି. ଚାପମ୍ୟାନଙ୍କ ଦୁର୍ବୁଦ୍ଧି ହିଁ ଏଥିପାଇଁ ବହୁପରିମାଣରେ ଦାୟୀ । ଉଭୟ ଏ ବିଷୟର ଗୁରୁତ୍ୱ ଲଘୁ ଦୃଷ୍ଟିରେ ଦେଖିଲେ । ଲର୍ଡ଼ ନର୍ଥବ୍ରୁକ୍ ବୋଧହୁଏ ଭାବିଲେ ଯେ ସାର ଜର୍ଜ କ୍ୟାମ୍ପବେଲ ୧୮୭୮ରେ ଏହି ଭୁଲ୍‌ର ପୁନରାବୃତ୍ତି କରିବାକୁ ଯାଉଛନ୍ତି ଏବଂ ଲୋକଙ୍କୁ ଖାଦ୍ୟ ଯୋଗାଇବା ସକାଶେ ଶସ୍ୟ ଆମଦାନୀରେ ଆଦୌ ଖର୍ଚ୍ଚ ନ କରିବା ପାଇଁ ଆଦେଶ ନେଇ ଆସି ପହଞ୍ଚିଲେ ଟେମ୍ପଲ୍ । ସେ ଏହି ଆଦେଶନାମାର ପ୍ରତ୍ୟେକଟି ଅକ୍ଷର ଓ ତା'ଠାରୁ ମଧ୍ୟ ଆହୁରି ଅଧିକ ଭାବରେ କାର୍ଯ୍ୟକାରୀ କରିବାକୁ ଲାଗିଲେ । ବଙ୍ଗଳା ସମ୍ପର୍କରେ ତାଙ୍କର କୌଣସି ପୂର୍ବ ଅଭିଜ୍ଞତା ନ ଥାଇ ଏବଂ କେତେକ ପରିମାଣରେ ଓ କି ଧରଣର ମରୁଡ଼ି ସାହାଯ୍ୟ ଦିଆଯିବ, ତାହା ବିବେଚନା କରିବାର ଶକ୍ତି ମଧ୍ୟ ନ ଥାଇ ସେ ସାର୍ ଜର୍ଜ କ୍ୟାମ୍ପବେଲ ଓ ମରୁଡ଼ିଗ୍ରସ୍ତ ଜିଲ୍ଲାସବୁର କଲେକ୍‌ଟରମାନଙ୍କର ମତାମତକୁ ଉପେକ୍ଷା କରିଦେଲେ ଏବଂ ନିଜର ଭିତ୍ତିହୀନ ବିଚାରଧାରାର ଅନୁସରଣ କଲେ । ନିଜର ସ୍ୱଭାବସୁଲଭ ନାଟକୀୟ ଭଙ୍ଗୀରେ ସେ ଜିଲ୍ଲାମାନଙ୍କରେ ଦିନକୁ ପଚାଶ ଷାଠିଏ ମାଇଲ ଘୋଡ଼ା ପିଠିରେ ବୁଲି ତାଙ୍କର କହିବା ମତେ 'ଲୋକଙ୍କର ଓ ଶସ୍ୟର ଅବସ୍ଥା କଳନା କଲେ' । ରାସ୍ତାଏ ରାସ୍ତାଏ ଘୋଡ଼ାଦୌଡ଼ରେ ଗଲେ କି ଧରଣର ଦେଖା ବା କି ଧରଣର ମତାମତ ସଂଗ୍ରହ କରାଯାଇପାରେ, ତାହା କେହି ବୁଝି ପାରିଲେ ନାହିଁ । ଫଳତଃ ଏଇଆ ହୁଏ ଯେ, ଏଇପରି ଥରେ ଘୁରିଆସିବାପରେ ସେ ରାତିରେ ବସିଯାଇ ଆଡ଼ମ୍ବରପୂର୍ଣ୍ଣ ବିବରଣୀ ଲେଖି ସେଥିରେ ଦର୍ଶାନ୍ତି ଯେ, ସେଦିନ ଅମୁକ ଅମୁକ ଅଞ୍ଚଳ ପୂର୍ଣ୍ଣ ଅନୁଧ୍ୟାନ କରି ସେଠାରେ ଲୋକଙ୍କୁ ଖୁଆଇବା ପାଇଁ ଏତେ ଗହମ ଚାଉଳ (ପ୍ରକୃତ ଆବଶ୍ୟକତାଠାରୁ ସାଧାରଣତଃ ତିନିରୁ ଚାରିଗୁଣ) ଆବଶ୍ୟକ ବୋଲି ସିଦ୍ଧାନ୍ତ କଲେ । ଯଦି କୌଣସି କଲେକ୍ଟର ସ୍ପଷ୍ଟବାଦୀ ହୋଇ ଏହାର ପ୍ରତିବାଦ କରି ଜଣାନ୍ତି ଯେ ଏହାଠାରୁ ବହୁତ କମ୍ ପରିମାଣରେ ମଧ୍ୟ ଚଳିଯିବ ଏବଂ ନିଜ ମତର ଯୌକ୍ତିକତା ପାଇଁ ନିଜେ ଓ ସହକାରୀମାନଙ୍କ ଦ୍ୱାରା ଗ୍ରାମକୁ ଗ୍ରାମ ଓ ଘରକୁ ଘର ଧୈର୍ଯ୍ୟର ସହ ଅନୁସନ୍ଧାନ ପରେ ସଯତ୍ନ ସଂଗୃହୀତ ତଥ୍ୟାବଳୀ

ଉପସ୍ଥାପିତ କରନ୍ତି ତେବେ ତାଙ୍କୁ ତାଚ୍ଛଲ୍ୟରେ କୁହାଯାଏ ଯେ, ତାଙ୍କୁ କାମ ଜଣା ନାହିଁ ଏବଂ ଟେମ୍ପଲଙ୍କ ମନରେ ଥିବା ଚରିତ୍ର ପଞ୍ଜିକାରେ ତାଙ୍କ ନାମରେ କଳାଗାର ପଡ଼ିଯାଏ ।

ଏ ଧରଣର କାର୍ଯ୍ୟପଦ୍ଧତିରେ ବିରକ୍ତ ହୋଇ କ୍ୟାମ୍ପବେଲ ଇସ୍ତଫା ଦେଲେ ଏବଂ ଟେମ୍ପଲଙ୍କୁ ୧୮୭୪ରେ ବଙ୍ଗଳାର ଲାଟ କରାଗଲା ଏବଂ ଢୋଲ ପିଟା (ନିଜର) ଶାସନ ଆରମ୍ଭ ହୋଇଗଲା। କେତେ ନିୟୁତ ପାଉଣ୍ଡ ବ୍ୟୟରେ ଦୁର୍ଭିକ୍ଷ ନିବାରଣ କରାଗଲା ଏବଂ ପରବର୍ତ୍ତୀ ଅନେକ କାଳ ପର୍ଯ୍ୟନ୍ତ କଲେକ୍ଟରମାନଙ୍କୁ ତାଙ୍କ ଜିଲ୍ଲାମାନଙ୍କୁ ପଠା ହୋଇଥିବା ବିପୁଳ ପରିମାଣ ବଳକା ଶସ୍ୟକୁ କଟାଇବା ପାଇଁ ବ୍ୟର୍ଥ ଉଦ୍ୟମ କରିବାକୁ ପଡ଼ିଲା । ଏସବୁ ସେମାନଙ୍କ ପ୍ରତିବାଦ ସତ୍ତ୍ୱେ ପଠାହୋଇଥିଲା ଯାହାକୁ କି ଲୋକେ କିଣିଲେ ନାହିଁ। ଏଥିରୁ ଅନେକ ଅଂଶ ସରକାରୀ ଶସ୍ୟାଗାରରେ ସଢ଼ିଲା ଏବଂ ମୂଷାଙ୍କ ଭୋଜ୍ୟ ହେଲା । ଅନେକ ବେପାରୀ ଓ ଚାଷୀ, ଉଭୟ ୟୁରୋପୀୟ ଏବଂ ଦେଶୀୟ ଏହି ଶସ୍ୟର ଯୋଗାଣ ଓ ପରିବହନର ଠିକା ନେଇ ଉଠିବସିଲେ । ଖବରକାଗଜ ସବୁ ଏ ଧରଣର ଅପବ୍ୟୟର ସମାଲୋଚନା, ତାଚ୍ଛଲ୍ୟ ଓ ବିଦ୍ରୂପାତ୍ମକ ଗୀତରେ ପୂରିଉଠିଲା । କିନ୍ତୁ ମହାତ୍ମା ଟେମ୍ପଲ ନିଜର ସ୍ୱଭାବସୁଲଭ ସୁଖକର ଆତ୍ମପ୍ରଶଂସାର ଜ୍ୟୋତିମଣ୍ଡଳ ମଧ୍ୟରେ ବାସ କରିବାକୁ ଲାଗିଲେ ।

ଏହି ସମୟରେ ମୁଁ କଟକ ସହର ଉନ୍ନୟନ କାର୍ଯ୍ୟରେ ବ୍ୟସ୍ତ ଥିଲି। ପୁରୁଣା ହାଟଟା ଥିଲା ନୀଚା, ଅନ୍ଧାରିଆ ଗହ୍ବରସମୂହର ଏକ ଅଦ୍ଭୁତ ଅବିନ୍ୟସ୍ତ ଶ୍ରେଣୀ । ତାହା ଥିଲା ଏକ ସୁସଙ୍ଗଠିତ ବ୍ୟକ୍ତିମାନଙ୍କ ହାତରେ ଯାହାଙ୍କୁ କୁହାଯାଉଥିଲା କୋୟାଲ । ସେ ଶବ୍ଦର ଅର୍ଥ ହେଲା, ଓଜନକାରୀ ଏବଂ ଦେଶୀୟ ସରକାରଙ୍କ ସମୟରେ ସେମାନଙ୍କର କାମ ଥିଲା ହାଟକୁ ଯେଉଁ ଶସ୍ୟ ଆସିବ ତାକୁ ଓଜନ କରିବା । ଏମାନେ ଓଜନ ନ କରିବାଯାଏ ବିକ୍ରୟ ହୋଇପାରିବ ନାହିଁ । ଏମାନେ ନିଜର ନିଯୁକ୍ତି ପାଇଁ ଦେଶୀୟ ସରକାରଙ୍କୁ କିଛି କର ଦେଉଥିଲେ ଏବଂ ନିଜର କାମ ପାଇଁ ଅଳ୍ପ କିଛି ପ୍ରାପ୍ୟ ଆଦାୟ କରୁଥିଲେ । ଭାରତର ସବୁ ମଝିକାରବାରିଆଙ୍କ ପରି ଏମାନଙ୍କର ଶକ୍ତି ମଧ୍ୟ ଆସ୍ତେ ଆସ୍ତେ ବଢ଼ିଲା । ସେମାନେ ବଜାର ଦରଦାମକୁ ନିଜ ନିୟନ୍ତ୍ରଣରେ ରଖିବା, ଅନେକ ଉପାୟରେ ବ୍ୟବସାୟରେ ପ୍ରତିବନ୍ଧକ ସୃଷ୍ଟି କରିବା, ବ୍ୟବସାୟୀଙ୍କୁ ଭୟଭୀତ କରାଇବା, ବିଭିନ୍ନ ଆଳରେ ବହୁତ ପାଉଣା ଦାବି କରିବା ଏବଂ ନାନା ଭାବରେ ଲୋକଙ୍କୁ ଉତ୍ପୀଡ଼ିତ ଓ ପ୍ରବଞ୍ଚିତ କରିବାର ଦୁଃସାହସ କଲେ । ମୁଁ ଯେତେବେଳେ ସେମାନଙ୍କ ହାଟର ପୁନଃନିର୍ମାଣର ପ୍ରସ୍ତାବ କଲି ସେମାନେ ପ୍ରତିବାଦ କଲେ ଏବଂ ସେଇ ଘରସବୁ ଉପରେ ସେମାନଙ୍କ ସ୍ୱତ୍ୱ ସାବ୍ୟସ୍ତ କରୁଥିବାପରି ଏକ ପୁରାତନ ଦଲିଲ ଆଣି ଦେଖାଇଲେ । ଏହି ଦଲିଲଟା ଅସଲ କି ନୁହେଁ (ବୋଧହୁଏ ନୁହେଁ) ତାହା ଜାଣିବା ଅସମ୍ଭବ । କିନ୍ତୁ ମୁଁ ଯେତେବେଳେ ଆଇନ ଅଫିସରଙ୍କ ସହ ପରାମର୍ଶ କଲି ସେମାନେ ମତ ଦେଲେ ଯେ, ଏ ସମ୍ପର୍କରେ ଆଗେଇବାରେ ଆଇନଗତ ସୁବିଧା କିଛି ନାହିଁ; କାରଣ ପୂର୍ବ କଲେକ୍ଟରମାନଙ୍କର ଅଣହୁସିଆରି ଫଳରୁ କୋୟାଲମାନେ ବହୁଦିନ ଧରି ଏହା ଅଧିକାର କରି ରହିବାର ସୁଯୋଗ ଫଳରେ ଘର ସବୁ ଉପରେ ଅଧିକାର ସଙ୍ଗେ ସଙ୍ଗେ କାରବାର ଉପରେ ମଧ୍ୟ ଏକଚାଟିଆ ଅଧିକାର ସାବ୍ୟସ୍ତ କରିନେଇଛନ୍ତି । ଯେଉଁ ଉଦ୍ୟାନ ମଧ୍ୟରେ ଲାଲବାଗ ବା କମିଶନର ନିବାସ ଅଛି, ତା' ଚାରିପଟେ

ବିରାଟ ପାଟେରିର ବାହାର ପଟକୁ ଲାଗି ଏ ହାଟଟି ତିଆରି । ଷୋଡ଼ଶ ଶତାବ୍ଦୀ କିମ୍ବା ତତ୍ ପୂର୍ବରୁ ନିର୍ମିତ ଏହି ସୁପ୍ରାଚୀନ ପ୍ରାଚୀରକୁ ଲାଗି ଆହୁରି ଅନେକ ଅର୍ଦ୍ଧଭଗ୍ନ ପ୍ରାଚୀନ କୋଠା ପରିତ୍ୟକ୍ତ ଅବସ୍ଥାରେ ପଡ଼ିଥିଲା । ସେଗୁଡ଼ିକ ଗାଢ଼ ଲାଲ ପଥରରେ ତିଆରି ଅଦ୍ଭୁତ ଧରଣର ଉଚ୍ଚା ଓ ଅନ୍ଧାରିଆ । ମୁଁ ପ୍ରଥମେ ଭାବିଥିଲି ଏହିଗୁଡ଼ିକରେ ଗୋଟିଏ ସାମନ୍ତରାଳ ହାଟ କରିବାପାଇଁ; କିନ୍ତୁ ସେଗୁଡ଼ିକ ଏତେ ଜୀର୍ଣ୍ଣ ଯେ ମରାମତି ହୋଇପାରିବା ଭଳି ମନେ ହେଲା ନାହିଁ ଏବଂ ସେଗୁଡ଼ିକର ଅବସ୍ଥିତି ଓ ଆକାର ପ୍ରକାର ମଧ୍ୟ ସୁବିଧାଜନକ ନ ଥିଲା । ତେଣୁ ମୋତେ ଅନ୍ୟ ସ୍ଥାନ ଦେଖିବାକୁ ପଡ଼ିଲା ଏବଂ ଶେଷରେ ସହର ପୂର୍ବ ସୀମାରେ (ପୁରୁଣା ହାଟଟି ପଶ୍ଚିମ ସୀମାରେ ଥିଲା) ଜଙ୍ଗଲିଆ ହୋଇ ଅବହେଳିତ ଅବସ୍ଥାରେ ଥିବା ଖଣ୍ଡେ ବଡ଼ ଜାଗା ପାଇଲି । ମରହଟ୍ଟା ଶାସକଙ୍କର ବିଚାରାଳୟ ନିର୍ମାଣ ନିମିତ୍ତ ଏହା ଉଦ୍ଦିଷ୍ଟ ଥିଲା ବୋଲି କୁହାଯାଏ । ତାହା ସରକାରୀ ସମ୍ପତ୍ତି, ତେଣୁ ମୋର ଯାହା ଇଚ୍ଛା ତାହା ସେଠାରେ କରିପାରିବି । ଶ୍ରମିକମାନେ ଜଙ୍ଗଲ ସଫାକରି ମାଟି ଖୋଳିବା ଫଳରେ ଛ' କିମ୍ବା ସାତ ଧାଡ଼ିର ସୁନ୍ଦର କାରୁକାର୍ଯ୍ୟ ଖଚିତ ସ୍ତମ୍ଭ ମିଳିଲା । କ୍ରମେ ସେ ସ୍ତମ୍ଭଗୁଡ଼ିକର ମୂଳ ମଧ୍ୟ ବାହାରିଲା ଏବଂ ଆଉ ମଧ୍ୟ ବାହାରିଲା ସୁନ୍ଦର ସୁନ୍ଦର ଖୋଦିତ ଅନେକ ପ୍ରସ୍ତର ଖଣ୍ଡ, ବହୁ ପରିମାଣ ମାଙ୍କଡ଼ା ପଥର, ଯେଉଁଗୁଡ଼ିକ କି ନିଶ୍ଚୟ କୌଣସି କୋଠା ତିଆରିରେ ଲାଗିଥିଲା । ଏଇ ସବୁ ଜିନିଷ ନେଇ ମୁଁ କାମ ଆରମ୍ଭ କଲି ଏବଂ ଗୋଟିଏ ସୁନ୍ଦର ହାଟର ନକ୍ସା କଲି । ତାହା ସେଇ ଜାଗାରେ ନିର୍ମିତ ହେଲା । ମାଙ୍କଡ଼ାପଥର ନିର୍ମିତ ଏଇ ବିରାଟ ହଲ ମଧ୍ୟରେ ଶସ୍ୟ ସାଇତିବା ପାଇଁ ବିଭିନ୍ନ କୋଠରି ରହିଥିଲା ଏବଂ ଆଗ ପଟେ ପୂର୍ବବର୍ଣ୍ଣିତ ସ୍ତମ୍ଭଗୁଡ଼ିକୁ ମରାମତି କରାଯାଇ ସେଗୁଡ଼ିକ ସାହାଯ୍ୟରେ ତିଆରି ପ୍ରଶସ୍ତ ବାରଣ୍ଡା ମଧ୍ୟ ଥିଲା । ଅଳ୍ପ କିଛି କଡ଼କୁ ଆମେ ଏକ ଗଭୀର ପୁରାତନ ପୁଷ୍କରିଣୀ ପାଇଲୁ । ଏହା ମାଙ୍କଡ଼ା ପଥରରେ ବନ୍ଧା ଯାଇଥିଲା ଏବଂ ସେଥିରେ ଧାଡ଼ି ଧାଡ଼ି ଦେବ, ଦେବୀ, ମଣିଷ, ପଶୁଙ୍କ ଖୋଦିତ ମୂର୍ତ୍ତି ଥିଲା । ଆମେ ଏସବୁ ସଂରକ୍ଷିତ ରଖି ପୋଖରୀଟିକୁ ସଫା କଲୁ; ଘାଟ ଓ ପାହାଚଗୁଡ଼ିକର ପୁନଃନିର୍ମାଣ କଲୁ ଏବଂ ଏହାକୁ ଏକ ସୁରମ୍ୟ ସ୍ଥାନରେ ପରିଣତ କଲୁ । ହାଟଘରର ଆଗପଟେ ଉପରେ ମୁଁ ଏକ ଉତ୍ସର୍ଗ ଲିପି ଖୋଦନ କରାଇଲି ଏବଂ କୋୟାଳମାନଙ୍କ ସମସ୍ତ ପ୍ରକାର ହସ୍ତକ୍ଷେପରୁ ମୁକ୍ତ ରଖି ଏହାକୁ ଏକ ସର୍ବସାଧାରଣ ହାଟ ରୂପେ ଉଦ୍‌ଘାଟନ କଲି । ଭାରତରେ କେହି ନିଜ କାମର ଫଳାଫଳ ଦେଖିବାପାଇଁ ବେଶି ଦିନ ରହେ ନାହିଁ । ଏ ନୂଆ ହାଟ ସଫଳତାର ସହ କାମ କଲା କି ନା ମୁଁ ଜାଣେ ନାହିଁ । ଆରମ୍ଭରେ ଖୁବ୍ ଭଲ ଥିଲା ଏବଂ ମୁଁ କଟକରେ ଥିବା ପର୍ଯ୍ୟନ୍ତ ଭଲ ଚାଲୁଥିଲା ।

ବର୍ଷର ଶେଷ ଆଡ଼କୁ ଖବର ପାଇଲୁ ଯେ, ନୂଆ ବଙ୍ଗଲାଟ ସାର ରିଚାର୍ଡ଼ ଟେମ୍ପଲ୍ ଆମ ଆଡ଼କୁ ସରକାରୀ ଭ୍ରମଣରେ ଆସୁଛନ୍ତି ଏବଂ ତାଙ୍କ ଅଭ୍ୟର୍ଥନା ପାଇଁ ବିରାଟ ବନ୍ଦୋବସ୍ତ ଆରମ୍ଭ ହୋଇଗଲା । ସମଗ୍ର ଓଡ଼ିଶାର କରଦ ରାଜ୍ୟମାନଙ୍କର ସମସ୍ତ ରାଜା ଓ ଜମିଦାରଙ୍କୁ ତାଙ୍କ ସହିତ ସାକ୍ଷାତ ପାଇଁ ଡକାହେଲା । ସେ ଗୋଟିଏ ସରକାରୀ ଷ୍ଟିମରରେ ଫଲ୍‌ସପଏଣ୍ଟ ଆସିଲେ ଯେଉଁଠି କମିଶନର ରେଭେନ୍‌ସା ତାଙ୍କୁ ସାକ୍ଷାତ୍ କଲେ ଓ ତାଙ୍କ ଗହଣ ସହ ଆମର ଦୁଇଟି ବାଷ୍ପ ଲଞ୍ଚ ପାଇଓନିଅର ଓ ଓଲଗାରେ ନାଳ ବାଟେ ଆଣିଲେ । ତାଙ୍କର ଜୋବ୍ରାରେ ଓହ୍ଲାଇବାର

ଥିଲା । ଅଭ୍ୟର୍ଥନା ପାଇଁ ମୁଁ ଗୋଟିଏ ସୁନ୍ଦର ଶିବିର ନିର୍ମାଣର ବନ୍ଦୋବସ୍ତ କରିଥିଲି । ଫକ୍‌ନର ବୁଢ଼ା ଏବଂ ତାଙ୍କ ପୁଅ ଜର୍ଜ ଏହି କାମ ହାତକୁ ନେଇଥିଲେ ଏବଂ ସେମାନଙ୍କ ସ୍ୱାଭାବିକ କୌଶଳ ଓ ରୁଚି ଅନୁଯାୟୀ ଗଢ଼ିଥିଲେ । ସ୍ୱଭାବସୁଲଭ ଉଦ୍ଭାବନ କୌଶଳ ବଳରେ ସେମାନେ ପୁରୁଣା ଖମ୍ବ, ଟେଲିଗ୍ରାଫ୍ ଖୁଣ୍ଟି, କାରଖାନାରେ ଏଣେତେଣେ ପଡ଼ିଥିବା କାଠ ଓ ଲୁହା ଖଣ୍ଡସବୁ ସାହାଯ୍ୟରେ ପ୍ରଶସ୍ତ ଓ ମନୋରମ ଶିବିରଟିଏ ତୋଳିଦେଲେ; ସେଥିରେ ଛାତ ରୂପେ କେର୍‌ପାଲ, ମହମପାଲ୍, ପୁରୁଣା ତମ୍ବୁର ଛିନ୍ନାଂଶ ଏବଂ ସବୁ କିଛି ବ୍ୟବହାର କରିଥିଲେ ।

କାମ ସରିବାପରେ ଏହା ଖିଲାଣବାଲା ଛାତ ଥିବା ବଡ଼ ହଲ୍‌ପରି ଦିଶିଲା । ପୁରୁଣା ଖୁମ୍ବ ଓ ଖୁଣ୍ଟିସବୁ ରଙ୍ଗ ହୋଇ ଉଜ୍ଜ୍ୱଳ ରଙ୍ଗର ବସ୍ତ୍ର ଓ ପତ୍ରମାଳାରେ ଆଚ୍ଛାଦିତ ହୋଇଥିଲା । ଛାତରେ ଥିବା ଏଣୁ ତେଣୁ ପଦାର୍ଥ ସବୁ ଧଳା, ଲାଲ ଓ ନୀଳ କନାର ଥାନ ଦ୍ୱାରା ଘୋଡ଼ାହୋଇ ପତ୍ର ଓ ପୁଷ୍ପର ମାଳା ଦ୍ୱାରା ସଜ୍ଜିତ କରାହୋଇଥିଲା । ଲମ୍ବା ଧାଡ଼ିର ଚୀନା ଲଣ୍ଠନମାନ ଏ ମୁଣ୍ଡରୁ ସେ ମୁଣ୍ଡଯାଏ ଝୁଲୁଥାଏ । ଚଟାଣ ଲାଲବସ୍ତ୍ର ଓ ଗାଲିଚାରେ ଆବୃତ ଥାଏ । ଧାଡ଼ି ଧାଡ଼ି ଚଉକି ଦୁଇପଟେ ପଡ଼ିଥାଏ ଏବଂ ମଝିରେ ମଝିରେ ଥାଏ ପ୍ରଶସ୍ତ ପଥ—ପଥର ଦୁଇ ଧାରରେ ଅନୁଚ୍ଚ ବାଡ଼ । ଗୋଟିଏ ପ୍ରାନ୍ତରେ କେତେ ପାହୁଣ୍ଡ ତଳେ ଅବତରଣ ସ୍ଥଳରେ ଦୁଇଟି ବଡ଼ ନୌକା ପରଦା ମାଳା ଓ ଗାଲିଚା ପ୍ରଭୃତିରେ ସଜ୍ଜିତ ହୋଇଥାଏ । ଅନ୍ୟ ପ୍ରାନ୍ତରେ ଗାଡ଼ିଗୁଡ଼ିକ ପାଇଁ ପ୍ରଶସ୍ତ ସ୍ଥାନଟିଏ ରଖାଯାଇଥାଏ ଏବଂ ତା'ପରକୁ ଅଭିବାଦନ ଦେବାପାଇଁ ସୈନ୍ୟବାହିନୀ । ନଦୀ ବନ୍ଦର ଦୁଇଆଡ଼େ ଉଭୟ ତଳ ଓ ଉପର ପଟେ ଉଚ୍ଚା ଭେନିସୀୟ ଖୁଣ୍ଟିମାନଙ୍କରେ ପତକା ଉଡୁଥାଏ । ଏହି ଖୁଣ୍ଟିସବୁ ମାଳଦ୍ୱାରା ସଂଯୁକ୍ତ ରହି ସେଥିରୁ ଚୀନା ଲଣ୍ଠନ ସବୁ ଝୁଲୁଥାଏ । ରାତ୍ରିରେ ଆଗମନ ହେଉଥିବାରୁ ନଦୀ କୂଳକୁ ଯେତେ ସମ୍ଭବ ଅଧିକ ଆଲୋକିତ କରିବା ଯୁକ୍ତିଯୁକ୍ତ ମନେହେଲା, ତେଣୁ ଫକନ୍‌ର ଆନିକଟ ବନ୍ଦର ମଝିରେ ମଝିରେ ଛୋଟ କାଠ ଗଦାଟିଏ ଲେଖାଏଁ ଥୋଇ ତା' ଚାରିପାଖରେ କେବଳ ତାଙ୍କୁ ହିଁ ଜଣାଥିବା କୌଣସି ପ୍ରକାର ରାସାୟନିକ ଦ୍ରବ୍ୟ ପ୍ରସ୍ତୁତ କରି ରଖିଲେ ଯାହାକି ଏକ ପ୍ରକାର ଉଜ୍ଜ୍ୱଳ ଆଲୋକ ସୃଷ୍ଟିକରି ଜଳିବ । ଅଭିବାଦନ ପାଇଁ ଆମକୁ କିଛି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼ିଲା । ବଙ୍ଗଲାଟ ପଦର କମାଣ ଅଭିବାଦନ ଗ୍ରହଣ କରିବା କଥା; କିନ୍ତୁ ସେ ଜାଗାରେ ଗୋଟିଏ ତୋପ ନାହିଁ । ଅବଶ୍ୟ ଜୋବ୍ରାକୁ କେତେଟା ପୁରୁଣା ବେକାର ତୋପ ଆସିଥିଲା କିଳିଣି ଫାଟକର କବିଜା ପ୍ରଭୃତି ଦରକାରୀ ଜିନିଷ ତିଆରି ହେବାପାଇଁ; କିନ୍ତୁ ସେସବୁ ଏତେ ଖତରା ଯେ, ସେ ସବୁରେ କମାଣ ଦାଗିବା ବିପଜ୍ଜନକ ହୋଇଥାନ୍ତା; କିନ୍ତୁ ଆମେ ସୁନ୍ଦର ଭାବରେ ଚଳେଇନେଲୁ । ପ୍ରାୟ ଚାରିଫୁଟ ଲମ୍ବର ବଡ଼ ବଡ଼ ବାଉଁଶ ଆଣିଲୁ । ସେ ସବୁରେ ବାରୁଦ ଭର୍ତ୍ତି ହୋଇ ଭଲ ଭାବରେ ଖୁନ୍ଦା ହେଲା ଏବଂ ଭଲକରି ମୁହଁ ବନ୍ଦକରି ଦିଆଗଲା । ତା'ପରେ ସେଗୁଡ଼ିକ କତା ଦଉଡ଼ି ଓ ଟାଣ ମାନିଲା ଦଉଡ଼ିରେ କେତେ ପରସ୍ତ ଗୁଡ଼ାଗଲା । ଗୋଟିଏ ପରେ ଗୋଟିଏ ରନ୍ଧ୍ରକରି ସେଇବାଟେ ହାଲୁକା ରଞ୍ଜକଟିଏ ଭର୍ତ୍ତିକରି ଦିଆଗଲା । ତା'ପରେ ପୂରା ଯନ୍ତ୍ରଟାକୁ ନଦୀ ବନ୍ଦରେ ବାଲିରେ ଅଧା ପୋତିଦେଇ ଦମ୍ଭ ଖୁଣ୍ଟିମାନଙ୍କରେ ବାନ୍ଧି ଦିଆଗଲା । ଏଇଥିରୁ ପନ୍ଦରଟି ଗୋଟିଏ ଧାଡ଼ିରେ ଶିବିରର ଅଳ୍ପ ଉପରକୁ ରଖାଗଲା । ଘୋଡ଼ାମାନେ କାଳେ ହୁରୁଡ଼ିବେ ସେଥିପାଇଁ ଖୁବ୍ ପାଖରେ ରଖାଗଲା ନାହିଁ । ସେହିପରି ଆଉ ଗୋଟିଏ ଧାଡ଼ି ନଦୀର ଆର ପଟେ ଜଗତପୁରଠାରେ ଯେଉଁଠି ନାଳ ଆସି ନଦୀରେ ମିଶିଛି ସେଠାରେ ରଖାଗଲା । ତାହାର ଲକ୍ଷ୍ୟ ହେଉଛି ସେମାନେ

କେତେବେଳେ ପହଞ୍ଚିଲେ ତାହା ଆମକୁ ଜଣାଇଦେବା । ଯେତେବେଳେ ହାଲୁକା ରଞ୍ଜକ ଭିତରର ବାରୁଦ ଅଗ୍ନି ସ୍ପର୍ଶ କରେ ପୂରା ଜିନିଷଟି ଠିକ୍ ତୋପପରି ବଡ଼ ଶବ୍ଦ କରି ଫୁଟେ । ଯେତେ ଟାଣିକରି ବାନ୍ଧିବ ଏବଂ ଯେତେ ଅଧିକ ଦଉଡ଼ି ଗୁଡ଼ାଇବ ସେତେ ବଡ଼ ଶବ୍ଦ ହେବ । ଏହା ମାଇଲ ମାଇଲ ଦୂରକୁ ଶୁଭିବ ।

ନିର୍ଦ୍ଦିଷ୍ଟ ଦିନ ସନ୍ଧ୍ୟା ଛ'ଟା ବେଳକୁ ସବୁ ପ୍ରସ୍ତୁତ ହୋଇଯାଇଥିଲା । ଶିବିରରେ ୟୁରୋପୀୟ କର୍ମଚାରୀ ଓ ମହିଳା, ରାଜା ଓ ଦେଶୀୟମାନଙ୍କ ମଧ୍ୟରୁ ବଡ଼ ବଡ଼ ଲୋକେ ଦାମିକା, ଚକମକିଆ ବସ୍ତ୍ର ଓ ସୁନା ଅଳଙ୍କାର ରାଜିରେ ଭୂଷିତ ହୋଇ ଜମା ହୋଇଯାଇଥିଲେ । ବାହାରେ ଲମ୍ବା ଧାଡ଼ିଏ ଦେଶୀୟ ସୈନ୍ୟ; ଯାନବାହାନର ବିରାଟ ସମାବେଶକୁ ଘୋଡ଼ସବାର ପୁଲିସମାନେ ଶୃଙ୍ଖଳିତ କରୁଥାଆନ୍ତି ଏବଂ ବିରାଟ ସାଗର ପରି ଦେଶୀୟ ଲୋକେ ସମସ୍ତ ଅଞ୍ଚଳରେ ଖୁନ୍ଦି ହୋଇ ଯାଇଥାନ୍ତି । କିଛି ସମୟର ଅପେକ୍ଷା ପରେ ଆମେ ଜଗତପୁରରୁ ତୋପ ଶବ୍ଦ ଶୁଣିଲୁ ଏବଂ ସଙ୍ଗେ ସଙ୍ଗେ ଯେପରିକି ମନ୍ତ୍ର କଳାପରି ସମଗ୍ର ନଦୀ ବନ୍ଧଟା ଉଜ୍ଜ୍ୱଳ ହୋଇଉଠିଲା । ଫକ୍‌ନର ପ୍ରତ୍ୟେକ ଜାଗାରେ ଲୋକ ରଖି ଆଦେଶ ଦେଇଥିଲେ—ତୋପ ଶୁଣିବା ମାତ୍ରେ ଆଲୋକ ଲଗାଇ ଦେବାପାଇଁ । ସେ ଆଦେଶ ଠିକ୍ ଠିକ୍ ପାଳିତ ହୋଇଥିଲା । ଲାଟଙ୍କ ବାଷ୍ପ ଲାଞ୍ଚରେ ଥିବା ଲୋକେ ଆମକୁ ପରେ କହିଲେ ଯେ, ଦୃଶ୍ୟଟି ଖୁବ୍ ଭଲ ହେଲା ଏବଂ ହଠାତ୍ ସବୁ ହୋଇଯିବାରୁ ଆହୁରି ବେଶି ମନୋହର ହେଲା । ଆମେ କ'ଣ କରିବାକୁ ଯାଉଛୁ, ତାହା ମୁଁ ରେଭେନ୍‌ସାଙ୍କୁ, ସେ ଫଲସ୍‌ପଏଣ୍ଟ ଯିବା ପୂର୍ବରୁ କହି ନ ଥିଲି । ଅଭ୍ୟର୍ଥନା ପାଇଁ ସାଧାରଣ କିଛି କରିବାର ନିର୍ଦ୍ଦେଶ ବ୍ୟତୀତ ସେ ମୋତେ ନିର୍ଦ୍ଦିଷ୍ଟ କିଛି ଆଦେଶ ଦେଇ ନ ଥିଲେ । ମୁଁ ମଧ୍ୟ ବଡ଼ଧରଣର କିଛି ଆୟୋଜନର କଳ୍ପନା କରି ନ ଥିଲି । ଆମେ କେହି ଟେମ୍ପଲଙ୍କୁ ଭଲ ପାଉ ନ ଥିଲୁ ଏବଂ ତାଙ୍କ ପାଇଁ କିଛି କରି ଦେଖାଇବାରେ ଆଗ୍ରହୀ ନ ଥିଲୁ । କିନ୍ତୁ ଦେଶୀୟ ଲୋକେ ସେମାନଙ୍କ ଶାସକଙ୍କୁ, ଯଦିଓ ତାଙ୍କୁ ବ୍ୟକ୍ତିଗତ ଭାବରେ ନୁହେଁ, ତାଙ୍କ ଅଧିକୃତ ପଦକୁ ଅଭିନନ୍ଦନ ଜଣାଇବା ପାଇଁ ଆଗ୍ରହୀ ଥିଲା ଏବଂ କଟକ ଇଚ୍ଛାକଲେ କ'ଣ କରିପାରେ (ଟୋଜର Todgerଙ୍କପରି) ତାହା ଦେଖାଇ ଦେବାପାଇଁ ଉଦ୍‌ଗ୍ରୀବ ଥିଲେ । ଫକ୍‌ନର ପରିବାର ମଧ୍ୟ କିଛି କଳାନୈପୁଣ୍ୟ କାମ ହୋଇପାରିବାରୁ ଖୁସି ହେଲେ । ତେଣୁ ଏହିପରି ଭାବରେ କାମଟା ହୋଇଗଲା । ଅନ୍ଧାରୁଆ ଲକ ଭିତରୁ ଷ୍ଟିମରଟା ବାହାରି ଆସିବାମାତ୍ରେ ସେଥିରେ ଥିବା ଲୋକେ ଆଗରେ ଦେଖିଲେ ଏକ ପ୍ରଶସ୍ତ ହ୍ରଦ—ଏଠି ନଦୀ ମାଇଲିଏଠାରୁ ବେଶି ଚଉଡ଼ା । ଉଭୟପଟରେ ଧାଡ଼ି ଧାଡ଼ି ପ୍ରଦୀପମାଳାର ବିଭିନ୍ନ ରଙ୍ଗର ଆଲୋକ ଜଳରେ ପ୍ରତିଫଳିତ ହେଉଛି । ଆନିକଟର ଧାରେ ଧାରେ ସମାନ ବ୍ୟବଧାନରେ ଉଜ୍ଜ୍ୱଳ ଆଲୋକର ସ୍ତମ୍ଭ ଏବଂ ମଧ୍ୟ ଦେଶରେ ବିରାଟ ଶିବିର, ବହୁସଂଖ୍ୟକ ଚୀନା ଲଣ୍ଠନ, ମଶାଲ ଓ ପତାକା ଅନ୍ଧକାର ମଧ୍ୟରେ ଉଜ୍ଜ୍ୱଳ ହୋଇ ଦେଖାଯାଉଛି । ସେମାନେ ମନ୍ତ୍ରମୁଗ୍ଧ ଓ ଚକିତ ହୋଇଗଲେ ।

ଅତିଶୀଘ୍ର ସେ ମହାମାନବ ଏବଂ ତାଙ୍କ ଗହଣ ଜେଟି ନିକଟରେ ପହଞ୍ଚିଲେ ଏବଂ ଅବତରଣ ସମୟରେ ମୁଁ ଅଭ୍ୟର୍ଥନା ଜଣାଇଲି । ମୁଁ କଟକ ନଗରପାଳିକାର ସଭ୍ୟମାନଙ୍କୁ ତାଙ୍କ ସହିତ ପରିଚିତ କରାଇଦେଲି । ସେମାନେ ଏକ ଅଭିନନ୍ଦନ ବାର୍ତ୍ତା ପାଠକଲେ ଏବଂ

ଲାଟ ତା'ର ଉତ୍ତର ଦେଲେ । ❊ ଅଭିନନ୍ଦନ ପତ୍ରଟି ସ୍ୱାଭାବିକ ରୀତିରେ ବାଗାଡ଼ମ୍ବର ଏବଂ ତୋଷାମଦପୂର୍ଣ୍ଣ ଶୈଳୀରେ ଲିଖିତ। ଏଥିରେ ଉଲ୍ଲେଖ ଥିଲା, ଯେ ଓଡ଼ିଶାବାସୀ ସେମାନଙ୍କର ଭକ୍ତି ଓ ସ୍ନେହାସ୍ପଦ ବହୁ-ବାଞ୍ଛିତ ଶାସକଙ୍କୁ ସେମାନଙ୍କ ଗହଣରେ ସଶରୀରେ ଲାଭକରି ଗଭୀର ହାର୍ଦ୍ଦିକ ଆନନ୍ଦ ଅନୁଭବ କରୁଛନ୍ତି । ଆହୁରି ମଧ୍ୟ ସେମାନେ କିପରି ତାଙ୍କର (ଟେମ୍ପଲ୍‌ଙ୍କର) ବଙ୍ଗଳା ଦୁର୍ଭିକ୍ଷର ସୁଦକ୍ଷ ନିରାକରଣକୁ ରୁଦ୍ଧଶ୍ୱାସ ଓ ଭାଷାହୀନ ପ୍ରଶଂସା ମଧ୍ୟରେ ପ୍ରତ୍ୟକ୍ଷ କରିଛନ୍ତି; ପୁଣି କିପରି ସେମାନଙ୍କର ଦୃଢ଼ ବିଶ୍ୱାସ ଆସିଛି ଯେ, ଯେଉଁ ଶାସକ ତାଙ୍କ ଲୋକଙ୍କ ପାଇଁ ଗଭୀର ଭାବରେ ସହାନୁଭୂତିଶୀଳ ଏବଂ ସେମାନଙ୍କ ପାଇଁ ସମ୍ପୂର୍ଣ୍ଣ ଆତ୍ମୋତ୍ସର୍ଗ କରିଛନ୍ତି ତାଙ୍କର ଅଧୀନରେ ଏହି ବଙ୍ଗଳାର ନିମ୍ନ ପ୍ରଦେଶ ବର୍ତ୍ତମାନ ଅବଶେଷରେ ଅତୁଳନୀୟ ସମୃଦ୍ଧି କ୍ଷେତ୍ରରେ ପ୍ରବେଶ କରିବ—ଇତ୍ୟାଦି । ବଙ୍ଗାଳୀ ବାବୁମାନେ ପ୍ରଭାତରୁ ଶିଶିରସିକ୍ତ ଗୋଧୂଳି ପର୍ଯ୍ୟନ୍ତ ଏ ଧରଣର ଜିନିଷ ନଟେଇରୁ ସୂତା କାଢ଼ିଲା ପରି କାଢ଼ିପାରନ୍ତି ଏବଂ ପୁଣି ଥରେ ଆରମ୍ଭକରି ପାରନ୍ତି ।

ସାର୍ ରିଚାର୍ଡ଼ ଟେମ୍ପଲ ତଦ୍ରୂପ ଉତ୍ତର ଦେଲେ । ସେ ଏ ସବୁ ବିଶ୍ୱାସ କରିଗଲେ । ସ୍ଥୂଳବୁଦ୍ଧି ଟେମ୍ପଲ୍ ପକ୍ଷରେ କୌଣସି ତୋଷାମଦ ମଧ୍ୟ ବିଶେଷ ବହଳ ନୁହେଁ । ସେ ସ୍ୱୀକାର କଲେ ଯେ, ତାଙ୍କୁ ମାନବ ଜାତିର ଶ୍ରେଷ୍ଠତମ ପୁରୁଷ ବୋଲି ବିଚାର କରି ସେମାନେ ଠିକ୍ କରିଛନ୍ତି ବୋଲି ସେ ମନେ କରନ୍ତି ଏବଂ ତାଙ୍କ ପ୍ରତି ଓ ତାଙ୍କ ସହ ସମ୍ପୃକ୍ତ ସମସ୍ତ ବିଷୟ ପ୍ରତି ସେମାନେ (ଏବଂ ସମଗ୍ର ମାନବ ଜାତି) କିପରି ଗଭୀର ଭାବରେ ଆଗ୍ରହୀ ହେବା ଉଚିତ ତାହା ମଧ୍ୟ ସେ ଠିକ୍ ବୁଝି ପାରିଛନ୍ତି ଇତ୍ୟାଦି ଇତ୍ୟାଦି । ଏହାପରେ ସେ ଶିବିର ସାରା କରମର୍ଦ୍ଦନ ଭ୍ରମଣରେ ବାହାରିଲେ। ତା'ପରେ ସୈନ୍ୟବାହିନୀ ଶସ୍ତ୍ରାଭିବାଦନ ଦେଲେ, ତୋପ ଫୁଟିଲା। ଲୋକେ ଆନନ୍ଦଧ୍ୱନି କଲେ । ତା'ପରେ ଆମେ ତିନି ମାଇଲ ବ୍ୟାପୀ ଉଜ୍ଜ୍ୱଳ ଆଲୋକିତ ପଥରେ ଗାଡ଼ିମାନଙ୍କରେ ଲମ୍ବା ଶୋଭାଯାତ୍ରାରେ ଆସିଲୁ । ବାଟଯାକ ଲୋକେ ଆନନ୍ଦ ଧ୍ୱନିରେ ପାରୁପର୍ଯ୍ୟନ୍ତ ଚିତ୍କାର କରୁଥାନ୍ତି ଯାହାର କାରଣ ସେମାନେ ଜାଣନ୍ତି ନାହିଁ । ସବୁ କୋଣରେ ପତାକା ଉଡୁଥାଏ । ଦାମୀ ଚାଦର ଓ କନା ସବୁ ବାଲକୋନିମାନଙ୍କରେ ଝୁଲା ହୋଇଥାଏ । ମଶାଲ, ତେଲବତିରେ ତିଆରି ତାରକା, ବାଉଁଶ ନିର୍ମିତ ବିଜୟ ତୋରଣ ଏବଂ ରାସ୍ତାର ଏ ମୁଣ୍ଡରୁ ସେ ମୁଣ୍ଡ ପତ୍ରପୁଷ୍ପରେ ସଜାଇ ସେଥିରେ ରଙ୍ଗିନ କନାରେ ବିଭିନ୍ନ ଭାଷାରେ 'ସ୍ୱାଗତ'ଶବ୍ଦର ଲେଖା ପ୍ରତ୍ୟେକ ମୋଡ଼ ଜାଗାରେ ଆମ ଆଖିରେ ପଡ଼ିଲା । ସବା ଶେଷରେ ଲାଲବାଗର ପ୍ରବେଶ ଦ୍ୱାର ଆଗରେ ଥିବା ବଡ଼ ଛକରେ ଥିଲା ପାର୍ବତ୍ୟାଞ୍ଚଳରୁ ଆସିଥିବା ବଣୁଆ ପାଇକଙ୍କ ❊ ବିରାଟ ଗହଳି । ସେମାନେ ବାଘ ଚମଡ଼ା ଓ ପକ୍ଷୀପର ଲଗା ଅଦ୍ଭୁତ ପୋଷାକ ପିନ୍ଧି ଚକ୍ ଚକ୍ ବର୍ଚ୍ଛା ଓ ଜ୍ୱଳନ୍ତ ମଶାଲ ଧରିଥିଲେ । ସେଇଠାରେ ଦୃଶ୍ୟ ଶେଷ ହେଲା ।

---

❊ ପୂର୍ବ ଦିନରୁ ମୁଁ ଏହି ବକ୍ତୃତାର ଏକ ନକଲ ସାବଧାନତା ସହ ସଂଗ୍ରହ କରିଥିଲି ଏବଂ ଦୂରପଥଗାମୀ ବିଶେଷ ବାର୍ତ୍ତାବହ ହାତରେ ରେଭେନ୍‌ସାଙ୍କ ନିକଟକୁ ପଠାଇଲି । ସେ ଅର୍ଦ୍ଧପଥରେ କେନାଲରେ ତାଙ୍କୁ ଭେଟିଲା ଏବଂ ସଙ୍ଗେ ସଙ୍ଗେ ଏହା ଟେମ୍ପଲ୍‌କୁ ଦିଆଗଲା ଏବଂ ଟେମ୍ପଲ ତାଙ୍କ ଅଭିନନ୍ଦନର ଉତ୍ତରମୂଳକ ବକ୍ତୃତାଟି ଏହିପରି ଭାବରେ ଦେଇପାରିଲେ ।

❊ ପାଇକ ହେଉଛନ୍ତି ଏକ ଅନିୟମିତ ପୋଲିସ ବାହିନୀ, ଅଦ୍ଭୁତ ବଣୁଆ ଜୀବ ପୂର୍ବର ଦେଶୀୟ ରାଜତ୍ୱର ଅବଶେଷ ।

ସେ ମହାମାନବ ଏପରି ଆଶାତୀତ ବିପୁଳ ଅଭିନନ୍ଦନରେ ଖୁବ୍ ଖୁସି ହୋଇଗଲେ । ସେ ଆଟୋପ ଆଡ଼ମ୍ବର, ଜନତାର ଧ୍ୱନି, ଆଲୋକସଜ୍ଜା, ତୋରଣ, ଶୋଭାଯାତ୍ରା, ଏ ସବୁ ତାଙ୍କର ଅନ୍ତରାତ୍ମାକୁ ସନ୍ତୋଷ କରି ଦେଇଥିଲା । ସେ ଏତେ ମୁଗ୍‌ଧ ହୋଇ ଯାଇଥିଲେ ଯେ, ମୋତେ କେତେ ସଂକ୍ଷିପ୍ତ ଶବ୍ଦରେ ଧନ୍ୟବାଦ ମଧ ଜଣେଇ ପକେଇଲେ । ସେତିକି କରିବାପାଇଁ ସେ ନିଶ୍ଚୟ ପ୍ରଣୋଦିତ ହୋଇଥିବେ ।

ତା'ପର ସପ୍ତାହଟା ଥିଲା ଗୋଟିଏ ଘୂର୍ଣ୍ଣି । ଯେଉଁ ଲୋକେ ଭାରତକୁ ଜାଣି ନ ଥିବେ ସେମାନେ ଭାବିବେ ଯେ, ଭାଇସରାୟ, ଲାଟ, ଗଭର୍ଣ୍ଣରମାନଙ୍କର ଏଇ ସବୁ ସରକାରୀ ଭ୍ରମଣ ଦ୍ୱାରା ବହୁତ ଉପକାର ହୁଏ; କିନ୍ତୁ ମୋ ନିଜ ଅଭିଜ୍ଞତା ମୋତେ ଏ ବିଷୟରେ ସନ୍ଦେହରେ ପକାଏ । ସ୍ଥାନୀୟ କର୍ତ୍ତୃପକ୍ଷମାନେ ଅବଶ୍ୟ ଲାଟଙ୍କୁ କୌଣସି ନିର୍ଦ୍ଦିଷ୍ଟ ସ୍ଥଳ ଦେଖାଇ ଏବଂ ତା'ର ଆବଶ୍ୟକତା ଓ ଉପକାରିତା ସମ୍ପର୍କରେ ଚାକ୍ଷୁଷ ପ୍ରମାଣ ଦେଇ ସେମାନଙ୍କ ଅଞ୍ଚଳରେ କୌଣସି ବଡ଼ଧରଣର କାମ କାର୍ଯ୍ୟକାରୀ ହେବାରୁ ମଞ୍ଜୁରି କରାଇ ନେବା ପାଇଁ ବେଳେ ବେଳେ ସମର୍ଥ ହୋଇପାରନ୍ତି । ଅଧଘଣ୍ଟାଏ ଖଣ୍ଡେ ସହରରେ କିମ୍ବା ନଦୀବନ୍ଧରେ ବୁଲି ଆସି ସେମାନେ ବେଳେ ବେଳେ ଯେଉଁ କାମ କରିପାରନ୍ତି, ବୁଝି ପାରୁ ନ ଥିବା କିମ୍ବା ବୁଝିବାକୁ ଇଚ୍ଛା କରୁ ନ ଥିବା ସେକ୍ରେଟେରିଏଟକୁ ମାସ ମାସ ଧରି ଲେଖାଲେଖି କରି ମଧ ସେଇ କାମ ସେମାନେ ହାସଲ କରିପାରନ୍ତି ନାହିଁ । ଭାରତ ପରି ଏକ ବିରାଟ ଦେଶରେ ସବୁ ପ୍ରକାର ଭ୍ରମଣ ତରତରିଆରେ ହିଁ କରିବାକୁ ହୁଏ, କାରଣ ଅଳ୍ପ ସମୟ ମଧରେ ବହୁ ଜାଗା ବୁଲିବାକୁ ପଡ଼େ ଏବଂ ଏପରିକି ଭ୍ରମଣ ସମୟରେ ଜଣେ ଲାଟ ଇଂଲଣ୍ଡ ପରି ଏକ ବିରାଟ ପ୍ରଦେଶ ସହିତ ପ୍ରକୃତରେ ପରିଚିତ ହୋଇଯିବ ବୋଲି ଭାବିବା ଏକ ଭ୍ରାନ୍ତି । ପ୍ରଥମତଃ ସ୍ଥାନଟି ତା'ର ରୂପରେ ନ ଥାଏ, କାରଣ ତାଙ୍କୁ (ଲାଟ ପ୍ରଭୃତିଙ୍କୁ) ଅଭିନନ୍ଦନ ଜଣାଇବା ପାଇଁ ସଜ୍ଜିତ ଥାଏ ଏବଂ ରବିବାସରୀୟ ପୋଷାକ ପରିହିତ ଶ୍ରମିକ ପରି କୃତ୍ରିମ ଦେଖାଯାଉଥାଏ । ସବୁ ପ୍ରକାର ଦୈନନ୍ଦିନ ଦୈନ୍ୟ ଓ ମଳିନତାକୁ ଦୃଷ୍ଟି ପଥରୁ ଅପସାରିତ କରାଯାଇଥାଏ । ଜଣେ କଲେକ୍ଟରଙ୍କ ବିଷୟରେ ବହୁଶ୍ରୁତ ଗଳ୍ପଟିଏ ଅଛି ଯେ, ସେ ନିଜ ଅଞ୍ଚଳରେ ରାସ୍ତାକଡ଼ରେ ଥିବା ଗଛ ଗଣ୍ଡିସବୁକୁ ଧଳାରଙ୍ଗ କରି ଦେଇଥିଲେ । ଏତେଦୂର ପର୍ଯ୍ୟନ୍ତ ନ ଗଲେ ମଧ ଭାରତରେ ସର୍ବତ୍ର ଏପରି ଏକ ବ୍ୟବସ୍ଥା ପ୍ରଚଳିତ ଅଛି ଯାହାକୁ କୁହାଯାଏ ଆଖି ବାହାର ଧୁଲେଇ (eye wash) । ତେଣୁ ସେ ମହାମାନବ କେବେ ପ୍ରକୃତ ସ୍ଥାନକୁ ଦେଖିପାରନ୍ତି ନାହିଁ । ବିଶେଷ ଅନ୍ତର୍ଦୃଷ୍ଟିସମ୍ପନ୍ନ ହୋଇ ନ ଥିଲେ ସେ ଉପରଠାଉରିଆ ଓ ତରବରିଆ ଭାବରେ ପାଇଥିବା କେତେକ ଧାରଣାକୁ ପ୍ରକୃତ ଜ୍ଞାନ ବୋଲି ଗ୍ରହଣ କରି ନିଅନ୍ତି, ଯାହା ଭଲ ଅପେକ୍ଷା ବେଶି ଖରାପ କରେ । ନିଜର ତରବରିଆ ଭ୍ରମଣ ସମୟରେ କେତେକ ଭ୍ରାନ୍ତ ଧାରଣା ପୋଷଣ କରି ଥିବାରୁ ପରବର୍ତ୍ତୀ ସମୟରେ ସ୍ଥାନୀୟ ଅଫିସରମାନଙ୍କ ପ୍ରସ୍ତାବଗୁଡ଼ିକୁ ମଞ୍ଜୁର କରିବାକୁ ମନାକରି ଦିଅନ୍ତି କିମ୍ବା ସେମାନଙ୍କ ବର୍ଣ୍ଣିତ ସତ୍ୟ ବିବରଣୀର ପ୍ରତିବାଦ କରନ୍ତି । ଯଦିବା କେତେବେଳେ ତାକୁ ଦେଖାଇ ବୁଝାଇ ଦେବା ଫଳରେ ସ୍ଥାନ ଉପରେ ସେ କୌଣସି ପ୍ରକଳ୍ପକୁ ମଞ୍ଜୁରି ଦିଅନ୍ତି, କଲିକତାକୁ ଫେରିଗଲା ପରେ ସେ ମଞ୍ଜୁରି ସେ ଫେରାଇ ନିଅନ୍ତି; କାରଣ ତାଙ୍କ ସେକ୍ରେଟାରୀମାନେ ତାଙ୍କୁ ମତେଇ କହିଦିଅନ୍ତି ଯେ, ସ୍ଥାନୀୟ ଅଫିସରମାନେ ତାଙ୍କୁ ପ୍ରତାରିତ କରିଛନ୍ତି, ନ ହେଲେ ମଧ ଭୁଲ୍ ତଥ୍ୟ ଦେଇଛନ୍ତି ।

ମହାପୁରୁଷଙ୍କର ଏପରି ସ୍ୱଚକ୍ଷୁରେ ସବୁ ଜିନିଷ ଦେଖିବା କିମ୍ବା ଦେଖିବା ପରି ଧରିନେବାରେ ଯେଉଁ ଅନିଶ୍ଚିତ ସୁଫଳ ରହିଛି ତାହାର ମଧ୍ୟ ଆମେ ବିରୋଧାଚରଣ କରୁଥିଲୁ; କିନ୍ତୁ ସେ ଏଭଳି ପରିଭ୍ରମଣ ଦ୍ୱାରା କେତେକ ନିଶ୍ଚିତ ଓ ବାସ୍ତବ ଅସୁବିଧା ସୃଷ୍ଟି କରୁଥିଲେ, ତାହା ହେଉଛି ବିଚାରାଳୟ ସବୁ ବନ୍ଦ ହୋଇଯିବା ଦ୍ୱାରା ବିଚାରଗୁଡ଼ିକ ସାରିବାରେ ଡେରି ହେଉଥିଲା । ସବୁ ପ୍ରକାର କାରବାର ବନ୍ଦ ହୋଇଯାଉଥିଲା, ବଡ଼ ବଡ଼ ନଗରପାଳିକା ଓ ଅନ୍ୟ ସାଧାରଣ ସଂସ୍ଥାମାନେ ସାଜସଜ୍ଜା, ବାଣରୋଶଣି, ଆଲୋକ ଓ ବିଜୟତୋରଣ ପ୍ରଭୃତିରେ ନିଜର ଶକ୍ତିଠାରୁ ଅଧିକ ଖର୍ଚ୍ଚ କରୁଥିଲେ । ଏଇଥିରୁ ଦେଖାଯିବ ଯେ, ଏଇସବୁ ଭ୍ରମଣରେ ଲାଭ କିଛି ନ ଥିଲା ବୋଲି କୁହା ନ ଗଲେ ମଧ୍ୟ ନିଟ୍ ଲାଭର ପରିମାଣ ଅତି ନଗଣ୍ୟ ।

ଏ କ୍ଷେତ୍ରରେ ମଧ୍ୟ ଠିକ୍ ସେଇଆ ହେଲା । କଟକରେ ଥିଲାବେଳେ ଟେଂପଲ୍ ସବୁ ଜିନିଷ ପାଇଁ ଖୋଲାଖୋଲି ପ୍ରତିଶ୍ରୁତି ଦେଇଗଲେ; କିନ୍ତୁ କଲିକତାକୁ ଫେରିଗଲା ପରେ ସେସବୁ ମଞ୍ଜୁର କରିବାକୁ ମନା କରିଦେଲେ । ସେ ଆମର ସବୁ କାମକୁ ଏପଟ ସେପଟ କରି ଦେଇ ଗଲେ ଓ ଆମ ଉପରେ ବାକିଆ କାମର ଗୁରୁ ବୋଝ ଛାଡ଼ି ଦେଇଗଲେ ଏବଂ ଅଭିନନ୍ଦନ ବାବଦ୍ ବ୍ୟୟ ଯୋଗୁଁ କଟକ ନଗରପାଳିକାର ଆୟବ୍ୟୟ ଫର୍ଦ୍ଦରେ ଅନେକ ନଅଣ୍ଟ ପଡ଼ିଲା । ସେ ଥିଲେ ଖୁବ୍ ବେଶି କର୍ମଚଞ୍ଚଳ ବ୍ୟକ୍ତି ଏବଂ ଆମକୁ ସକାଳ ପାଞ୍ଚଟା ଠାରୁ ରାତି ଅନେକ ଯାଏ ତାଙ୍କ ପାଖେ ପାଖେ ରହିବାକୁ ପଡୁଥିଲା । ସେ ସବୁଆଡ଼େ ଗଲେ । ସବୁ ନାଳରେ ଛୋଟ ସ୍ଥାନୀୟ ଷ୍ଟିମରମାନଙ୍କରେ ଯାଇ ସବୁ ଲକ୍ ଓ ଜଳସେଚନ କାମ ଏବଂ ଅନ୍ୟ ଜିନିଷ ଦେଖିଲେ । ଷ୍ଟିମରରେ ଆମ ସହିତ ଯାଉ ଯାଉ ସେ ଡେକ୍ ଉପରେ ଟେବୁଲ୍ ଚାରିପଟରେ ଆମକୁ ବସାଇ ଅସଂଖ୍ୟ ପ୍ରଶ୍ନର ଉତ୍ତର ଲୋଡ଼ନ୍ତି; ଗୋଟିଏ ନୋଟ ଖାତାରେ ସେ ସବୁ ଉତ୍ତର ଟିପି ରଖୁଥାଆନ୍ତି, କିନ୍ତୁ ସେ ଭୁଲ୍ ଲୋକକୁ ଭୁଲ୍ ପ୍ରଶ୍ନ ପଚାରୁ ଥାଆନ୍ତି—ଯନ୍ତ୍ରୀମାନଙ୍କୁ ପଚାରୁଥାଆନ୍ତି ଭୂ-କର, ଖଜଣା, ବିଭିନ୍ନପ୍ରକାର ଜମିର ସ୍ୱତ୍ୱ ସମ୍ପର୍କରେ ଯେଉଁ ବିଷୟରେ ସେମାନେ କିଛି ଜାଣନ୍ତି ନାହିଁ—ରେଭେନ୍‌ସାଙ୍କୁ ଓ ମୋତେ ପଚାରୁଥାଆନ୍ତି ଜଳଭଣ୍ଡାରର ଘନ ପରିମାଣ, ସେକେଣ୍ଡକୁ କେତେ ପାଣି ଖଲାସ କରେ, ଜଳ କବାଟ, ଟ୍ୟାପ୍ ଓ ଯନ୍ତ୍ରପାତିର ବିଭିନ୍ନ କାମ, ଯେଉଁ ବିଷୟରେ କି ଆମେ କିଛି ଜାଣୁନା—ସଠିକ ବ୍ୟକ୍ତି ଏ ସବୁର ଉତ୍ତର ଦେବାକୁ ଚେଷ୍ଟା କଲେ କ୍ରୁଦ୍ଧ ହୋଇ ତାକୁ ବନ୍ଦ କରାନ୍ତି । ମୋର ଆଶଙ୍କା ହେଲା ଯେ, ଯାହା କିଛି ସୂଚନା ସେ ସଂଗ୍ରହ କରି ନେଲେ ସବୁ କିଛି ଗୋଳମାଳିଆ । ଆହୁରି ମଧ୍ୟ ମୋର ଅନୁମାନ ସେ ସେହି ନୋଟ ବହିକି ହଜାଇ ଦେଲେ କିମ୍ବା କଟକରେ ଛାଡ଼ିଦେଇଗଲେ । ଯାହାହେଉ ସେ ସବୁର କିଛି ଗୁରୁତ୍ୱ ନ ଥିଲା । ସବୁ ବିଷୟରେ ସବୁ କିଛି ଜାଣନ୍ତି ବୋଲି ଭାବିନେବାର ଦୁର୍ବଳତା ତାଙ୍କର ସର୍ବଦା ଥିଲା । ତେବେ ଯାହାହେଉ ପରବର୍ତ୍ତୀ ସମୟରେ ସେ ନିଶ୍ଚିତ ଓ ଦୃଢ଼ବିଶ୍ୱାସ କରିବେ ଯେ, ସେ ଓଡ଼ିଶାକୁ ଭ୍ରମଣରେ ଯାଇଥିଲେ । ବ୍ୟକ୍ତିଗତ ଭାବରେ ଏହା ବିଷୟରେ ସବୁ ବୁଝିଥିଲେ ଏବଂ ଫଳତଃ ଅଦ୍ଭୁତ ଗୋଳମାଳିଆ ଭାବରେ ଯେଉଁ ତଥ୍ୟସବୁ ସେ ସାଙ୍ଗରେ ଆଣିଥିଲେ ତାହା ସହ ମିଳୁଥିବା ଯେ କୌଣସି ପ୍ରସ୍ତାବ ବା ସୁପାରିସକୁ ସେ ଅଗ୍ରାହ୍ୟ କରିଥିଲେ ।

ଅବଶ୍ୟ ଖୁବ ଜାକଜମକରେ ଦରବାର ବା ରାଜ୍ୟ ସମ୍ମିଳନୀ ହେଲା, ଯେଉଁଠାକୁ କି କରଦ ରାଜ୍ୟମାନଙ୍କର ସବୁ ରାଜା ଓ ମହାରାଜା ଯାହାକୁ ଆମେ କହୁ 'ପର୍ବତ ନିବାସୀ କିଙ୍ଗ୍

ଅଫ୍ ଦି ଆମୋରାଇଟ' ସେମାନେ ଆଦିମ ଧରଣର ରତ୍ନ ସୁବର୍ଣ୍ଣାଦି ଧାରଣ କରି ଆସିଥିଲେ; ସାଙ୍ଗରେ ଆଣିଥିଲେ କଳଙ୍କି ଲଗା ବର୍ମ, ବ୍ୟାଘ୍ରଚର୍ମ, ବର୍ଚ୍ଛା ଓ ରଣଝଣ କରୁଥିବା ଶୃଙ୍ଖଳଧାରୀ ବହୁ ଅଙ୍ଗରକ୍ଷୀ । ଜଣେ ଏହିପରି ଛଅଶହ ବଣୁଆ ଅନୁଚରଙ୍କୁ ତା' ସହିତ ଆଣିଥିଲା ଏବଂ ମୁଁ ସେଥିରୁ ତିନିଚତୁର୍ଥାଂଶ ଫେରାଇ ଦେବା ପାଇଁ ଜୋର ଦେବାରୁ ମୋ ଉପରେ ଖୁବ୍ କ୍ରୁଦ୍ଧ ହୋଇଗଲା । ଛଅଶହ ପାହାଡ଼ି ଗୁଣ୍ଡା ମୋର ଶାନ୍ତ କଟକ ନଗରରେ ଖଣ୍ଡା, ଛୁରା ଧରି ଗର୍ବୋନ୍ମତ୍ତ ଭାବରେ ଘୂରି ବୁଲିବେ, ତୁମୁଳ ଗଣ୍ଡଗୋଳ ସୃଷ୍ଟି କରୁଥିବେ—ଯେଉଁ ଜିନିଷଟା ଭଲ ଲାଗିଲା ସେଇଟାକୁ ଦୋକାନରୁ ବିନା ମୂଲ୍ୟରେ ଝିଙ୍କିନେଇ ଯାଉଥିବେ ଏହା ମୁଁ ଅନୁମତି ଦେଇ ପାରି ନ ଥାନ୍ତି । ଏହି ଖୁଙ୍ଖୁବୁଢ଼ିଆ ଭଦ୍ରବ୍ୟକ୍ତିମାନଙ୍କୁ ଶୃଙ୍ଖଳିତ କରିବାପାଇଁ ପୋଲିସ୍‌କୁ ନାକେଦମ୍ ହେବାକୁ ପଡ଼ିଲା ।

ତା'ପରେ ବଡ଼ ଧରଣର ଦିବାଭୋଜନ ଓ ପ୍ରତି ରାତିରେ ଭୋଜି ହୋଇ ଶେଷ ରାତିରେ ଲାଲବାଗଠାରେ ଗୋଟିଏ ଜାକଜମକିଆ ବଲ୍‌ନୃତ୍ୟ ଓ ଅଭିନନ୍ଦନର ଆୟୋଜନ କରାହେଲା । ସେଥିପାଇଁ ଏହି ପୁରୁଣା ରାଜକୀୟ ପ୍ରାସାଦର ଚମତ୍କାର ବାସସ୍ଥଳୀ ଓ ସମସ୍ତ କୋଠରିଗୁଡ଼ିକ ଉଜ୍ଜ୍ୱଳ ଭାବରେ ଆଲୋକିତ ଓ ସଜ୍ଜିତ ହୋଇଥିଲା । ସବୁ ୟୁରୋପୀୟମାନେ ଆସିଥିଲେ ଓ ଟେମ୍ପଲ୍‌ଙ୍କ ଆତ୍ମବଡ଼ିମା ଓ ଆଡ଼ମ୍ବରପ୍ରିୟତାକୁ ସନ୍ତୁଷ୍ଟ କରିବା ପାଇଁ ପ୍ରଥମେ ଏକ 'ଅଭିନନ୍ଦନ ଉତ୍ସବ' ହେଲା । ଏହି ମହାମାନବ ସର୍ବଶେଷ କୋଠରିରେ ଗଦି ଆସନରେ ଚକ୍‌ଚକିଆ ସୁନାଧଡ଼ିଲଗା ଓ ବକ୍ଷରେ ତାରକା ଚିହ୍ନିତ ତାଙ୍କର ଉଚ୍ଚଣ୍ଡସର ପୋଷାକ ପିନ୍ଧି, ପଛପଟେ ପୂର୍ଣ୍ଣ ପରିଚ୍ଛଦଧାରୀ ଗହଣକୁ ରଖି ବସିଥାନ୍ତି—କୁତ୍ସିତତାର ଏକ ଅଦ୍ଭୁତ, ବାସ୍ତବ ରୂପ ! ଜଣଙ୍କ ପରେ ଜଣେ ମହିଳାଙ୍କୁ ଅଣାଗଲା ଏବଂ ସେମାନେ ନତଜାନୁ ହୋଇ ସମ୍ମାନ ଜଣାଇ ଚାଲିଗଲେ । ତା'ପରେ ଜଣକ ପରେ ଜଣେ ପୁରୁଷ । ଏହା କୌଣସି ଦରବାର କକ୍ଷ କିମ୍ବା ସମ୍ରାଟ୍‌ଙ୍କୁ ପ୍ରଜାଙ୍କ ଦର୍ଶନୀ ପରି ଜଣାଯାଉଥିଲା । ତା'ପରେ ବାଦ୍ୟବାଜି ନୃତ୍ୟ ଆରମ୍ଭ ହେଲା । ମଧ୍ୟରାତ୍ରିରେ ଲମ୍ବା ବାରଣ୍ଡାରେ ରାତ୍ରିକାଳୀନ ଭୂରିଭୋଜନ । ଏଇ ବାରଣ୍ଡାର ଲମ୍ବା ପ୍ରାୟ ଶହେଫୁଟ ଓ ଚଉଡ଼ା କୋଡ଼ିଏ ଫୁଟ । ସ୍ତମ୍ଭଗୁଡ଼ିକରୁ ମାଳସବୁ ଲମ୍ବିଥାଏ ଏବଂ ଦୁଇ ସ୍ତମ୍ଭମଧ୍ୟସ୍ଥ ଖାଲିସ୍ଥାନ ତମ୍ବୁର ଅଂଶ (କନାତ୍) ଦ୍ୱାରା ଆବୃତ୍ତ ହୋଇଥାଏ । ରାତ୍ରିଭୋଜନ ପରେ ପୁଣି ନୃତ୍ୟ ଆରମ୍ଭ ହେଲା ଏବଂ ସେ ମହାତ୍ମା ଟିପିରଖିବାଯୋଗ୍ୟ କେତେକ ସରକାରୀ ବିବରଣୀର ଆଡ଼ମ୍ବରୀ ଘୋଷଣାପରେ ନିଜ କକ୍ଷକୁ ଚାଲିଗଲେ । ମୋ ଭଳି ଆଉ କେତେକ ବ୍ୟକ୍ତି ନୃତ୍ୟଆଗ୍ରହୀ ନ ଥିଲୁ ଏବଂ ରାତ୍ରିଭୋଜନ ଗୃହରେ ବସି ଧୂଆଁ ପିଉଥିଲୁ । ଗୋଟାଏ ଲମ୍ବା ଟେବୁଲର କଡ଼କୁ ସମସ୍ତେ ଘୁଞ୍ଚିଆସି ବସିଲୁ । ଆଉ କିଛି ସାମ୍ପେନ୍ ମଗେଇଲୁ ଏବଂ ପୁରୋଭାଗରେ ପଡ଼ିଥିବା ଲାଟଙ୍କ ଚୌକିରେ ବୁଢ଼ା ଫକନରଙ୍କୁ ବସାଇଲୁ । ଗୀତର ପ୍ରଶ୍ନ ଅବଶ୍ୟ ଉଠୁନଥିଲା । କିନ୍ତୁ ଆମେ ଆନନ୍ଦ ବିଭୋର ଥିବାରୁ ବକ୍ତୃତା ଆରମ୍ଭ ହୋଇଗଲା । ଫକ୍‌ନର ଉଠିପଡ଼ି ଖୁବ୍ ମଉଜିଆ ଭାଷଣରେ ବଙ୍ଗଳାର ଭାବି ଲାଟ ରୂପେ ମୋର ଶୁଭ କାମନା ପ୍ରସ୍ତାବ କଲେ । ଆନନ୍ଦଧ୍ୱନି ମଧ୍ୟରେ ଏହି ପ୍ରସ୍ତାବର ସ୍ୱାଗତ କରାଗଲା ଏବଂ ପରେ ମୁଁ ଏପରି ଏକ ନିର୍ବୋଧ କାମ କରିବସିଲି ଯାହାର ପ୍ରତିଫଳ ମୋର ଚାକିରିର ବାକି କୋଡ଼ିଏବର୍ଷ ଯାକ ମୋତେ

ଭୋଗିବାକୁ ପଡ଼ିଲା । ମୁଁ ଉଠିପଡ଼ି ଲାଟଙ୍କ ଭୂମିକା ଅଭିନୟରେ ଉକ୍ତ ପ୍ରସ୍ତାବର ଯେଉଁ ଧନ୍ୟବାଦ ଦେଲି, ସେଥିରେ ଟେମ୍ପଲ, ତାଙ୍କ ଆଗମନର ପ୍ରଥମ ରାତ୍ରିରେ କଟକ ନଗରପାଳିକା ପ୍ରଦତ୍ତ ଅଭିନନ୍ଦନ ଯେପରି ଉତ୍ତର ଦେଇଥିଲେ ତା'ର ବ୍ୟଙ୍ଗାନୁକରଣ କଲି ।

ମୁଁ ସମ୍ପୂର୍ଣ୍ଣ ନିଜ ନିୟନ୍ତ୍ରଣରେ ଥିଲି । ଥରେ କେବଳ ଅକ୍ସଫୋର୍ଡ଼ ବ୍ୟତୀତ ଆଉ କେଉଁଠାରେ କେବେ ମୁଁ ମାତାଲ ହୋଇଛି ବୋଲି ମନେହୁଏ ନାହିଁ । ଅବଶ୍ୟ ମୁଁ ଉତ୍ତେଜିତ ହୋଇପଡ଼ିଥିଲି । ଏହି ପବନମୁଣା ପରି ବ୍ୟକ୍ତିର ଅହମିକା ଓ ଆତ୍ମଶ୍ଳାଘା ହେତୁ ମୋ ମଧ୍ୟରେ ବହୁକାଳ ସଞ୍ଚିତ ବିରକ୍ତି ଭାବକୁ ଆଉ ଲୁଚାଇ ହେଲା ନାହିଁ । ମୁଁ ତାଙ୍କ ହାବଭାବର ବ୍ୟଙ୍ଗାନୁକରଣ କଲି; ତାଙ୍କ ବିଗତ କାର୍ଯ୍ୟକଳାପ, ବିଶେଷ କରି ଦୁର୍ଭିକ୍ଷ ସମ୍ପର୍କୀୟ କାର୍ଯ୍ୟକୁ ବିଦ୍ରୂପ କଲି; ସବୁ ପ୍ରକାର ଉଦ୍ଦାମ ଭାବ ମୋ ଓଠ ମଧ୍ୟଦେଇ ବାହାରି ଆସିଲା । ଶ୍ରୋତାମାନେ ହସି ହସି ଘର ଫଟେଇ ଦେଲେ ଏବଂ ଏତେ ଶବ୍ଦ ହେଲା ଯେ, ଆମେ କ'ଣ କରୁଛୁ ବୋଲି ଦେଖିବା ପାଇଁ ବୃଦ୍ଧ ରେଭେନ୍‌ସା ମଧ୍ୟ ଭିତରକୁ ପଶିଆସିଲେ । କିନ୍ତୁ ଲାଟଙ୍କ କର୍ମଚାରୀମାନଙ୍କ ମଧ୍ୟରୁ ଜଣେ, ଯେଉଁ ବଞ୍ଚକର ନାମ ମୁଁ ଏଠାରେ ଉଲ୍ଲେଖ କରୁ ନାହିଁ; ସେ ସମୟ ତମାମ ସେ ପରଦା ଆଡୁଆଳରେ ଥିଲା ଏବଂ ମୁଁ ସଙ୍ଗେ ସଙ୍ଗେ ଚାଲିଯାଇ ମୋର କହିଥିବା କଥା ସବୁ ଟେମ୍ପଲ୍ ଆଗରେ ଜଣାଇ ଦେଲା । ଜଣେ ଲୋକ ଯେ କି ଏହା ଦେଖିଥିଲା ମୋତେ ଆସି କହିଲା— " ମୋର ମନେହୁଏ ଆପଣ ବର୍ତ୍ତମାନ ଦୁଇବର୍ଷ ଛୁଟିମାଗି ଇଂଲଣ୍ଡ ଚାଲିଯିବେ ।" ମୁଁ ପଚାରିଲି, 'କାହିଁକି' ? ସେ ହସିଦେଇ ଚାଲିଗଲା । କିନ୍ତୁ ଆମେ ଯେତେବେଳେ ଗାଡ଼ିରେ ଘରକୁ ଫେରୁଥିଲୁ ମୋର ସ୍ତ୍ରୀ ସବୁବିଷୟ ମୋତେ କହିଲେ ଏବଂ ମୋତେ ଖୁବ୍ ଗାଳି ଦେଲେ ।

ଟେମ୍ପଲ୍ କିଛି କହିଲେ ନାହିଁ କିନ୍ତୁ ପରଦିନ ସକାଳେ ମୋତେ ଅତି ନିସ୍ପୃହ ଭାବରେ ଅଭିବାଦନ କଲେ ଏବଂ ତାଙ୍କ ରହଣିର ବାକିତକ ସମୟ ମୋ ପ୍ରତି ତାଙ୍କର ବ୍ୟବହାର ଖୁବ୍ ବିରକ୍ତିକର ଓ ଅସମ୍ମାନଜନକ ହୋଇପଡ଼ିଲା । ବାଲେଶ୍ୱର ଜିଲ୍ଲାର ଇତିହାସ, ପରିସଂଖ୍ୟାନ ପ୍ରଭୃତି ଥାଇ ଏକ ଜିଲ୍ଲା ମାନୁଆଲ ମୁଁ ଲେଖିଥିଲି । ଜିଲ୍ଲା ଅଫିସରମାନଙ୍କୁ ସେମାନଙ୍କ ଜିଲ୍ଲାର ମାନୁଆଲ ଲେଖିବା ପାଇଁ କୁହା ହେଉଥିଲା। ଟେମ୍ପଲ୍‌ଙ୍କ ଅନୁରୋଧ କ୍ରମେ ତାଙ୍କୁ ଦେଖାଇବା ପାଇଁ କେତୋଟି ମାନୁଆଲ ଆଣିଲି । ସେ କେତେକ ପୃଷ୍ଠା ଓଲଟାଇଲେ, କେତେକ ଜାଗାରେ ପ୍ରକାଶଭଙ୍ଗୀ ତାଙ୍କୁ ଭଲ ଲାଗିଲା ନାହିଁ, ନିଜ ପେନ୍‌ସିଲ୍‌ରେ ସେସବୁକୁ କାଟି ପକାଇଲେ ଏବଂ ମୋ ଉପରକୁ ଖିଙ୍କାରି ଉଠି କହିଲେ ଯେ, ମୁଁ ନିଜକୁ ଅନ୍ୟମାନଙ୍କ ଠାରୁ ଖୁବ୍ ବଡ଼ ବୋଲି ଭାବେ କିନ୍ତୁ ବହିଟା କାମ ଦେବ ନାହିଁ। ବହିଟା ଫେରାଇ ନେଇ ତାଙ୍କ ବର୍ଣ୍ଣନା ପ୍ରକାରେ ଆଉଥରେ ଲେଖି ଆଣିବା ପାଇଁ ସେ ମୋତେ କହିଲେ। ବହିଟା ଫେରାଇ ନେଇ ଡ୍ରରେ ଚାବି ପକାଇ ଦେଲି । ବର୍ତ୍ତମାନ ମଧ୍ୟ ତାହା ମୋଠାରେ ଅଛି । ସରକାରଙ୍କ ମଞ୍ଜୁରି ପାଇଁ ଆଉ ମୁଁ ତାଙ୍କୁ ଦେଇ ନାହିଁ ।

ବହୁଦିନ ପରେ ମୁଁ ଶୁଣିଲି ଯେ, ସେ କଲିକତାକୁ ଫେରି ନିଜ ପ୍ରଧାନ ସଚିବକୁ ମୋ ବକ୍ତୃତା ସମ୍ପର୍କରେ ସବୁ କଥା ବର୍ଣ୍ଣନା କରି ଶେଷକୁ ଅତି ଆଶ୍ଚର୍ଯ୍ୟ ଭାବ ପ୍ରକାଶ କରି କହିଲେ, " ସେ ପ୍ରକୃତରେ ମୋତେ ଥଟ୍ଟା କଲା, ମୋତେ ଥଟ୍ଟା କଲା !" ମହାତ୍ମା ଆର. ଟେମ୍ପଲଙ୍କୁ

ଥଟା କରିବାକୁ କେହି ଦୁଃସାହସ କରିପାରେ ! ! ସେଇ ସୂତ୍ରରୁ ମଧ ମୁଁ ଜାଣିଲି ଯେ, ସେ କଳା ପୁସ୍ତକ ❋ ରେ ମୋ ନାଁ ଲେଖି ସେଥିରେ ମୋ ଚରିତ୍ର ବିଷୟରେ ବହୁ ଖରାପ କରି ଉଲ୍ଲେଖ କରିଛନ୍ତି । ଯାହାହେଉ ସେ ଯିବାପରେ ତାଙ୍କର ସାଡ଼ମ୍ବର ଅଭିନନ୍ଦନ ପାଇଁ ଆମକୁ ଧନ୍ୟବାଦ ଜଣାଇ ପତ୍ର ଲେଖିଥିଲେ । ଆହୁରି ଲେଖିଥିଲେ ଯେ ବ୍ରିଟିଶ ଶାସନ ପ୍ରତି ସାର୍ବଜନୀନ ଭକ୍ତି ଓ ଅନୁରକ୍ତିରୁ ସେ ଭାବୁଛନ୍ତି ଯେ ସ୍ଥାନୀୟ ଅଫିସରମାନେ ଏପରି କାମ କରିଛନ୍ତି, ଯାହା ଫଳରେ ଲୋକମାନଙ୍କ ସ୍ନେହ ମିଳିପାରିଛି ।

ସେ ଚାଲିଗଲେ ଏବଂ ବାକିଆ କାମର ଛିନ୍ନ ଅଂଶ ଆମକୁ ଖୋଜି ସଜାଡ଼ିବାକୁ ପଡ଼ିଲା । ଏହାପରେ ମୋତେ ଶୀତକାଳୀନ ଗସ୍ତ ପାଇଁ ଡେରାକୁ ଚାଲିଯିବା ହେଲା ।

ଅବଶ୍ୟ ଖୁବ୍ ନିର୍ବୋଧ ପରି ମୁଁ ସେ ବକ୍ତୃତା ଦେଇଥିଲି । ମୋର କୌଣସି ଧାରଣା ନ ଥିଲା ଯେ କୌଣସି ଖୁଣ୍ଟାଣିଆ ମୋ କଥା ଶୁଣୁଛନ୍ତି । ସେ ବ୍ୟକ୍ତିଙ୍କ ଆତ୍ମମ୍ଭରୀ ଭାବନା ଆମ ସମସ୍ତଙ୍କୁ ବିରକ୍ତ କରିଥିଲା ଏବଂ ବେଶି କରିଥିଲା ମୋତେ; କାରଣ ମୋର କର୍ମଜୀବନର ଆରମ୍ଭରେ ସେ ମୋ ପ୍ରତି ଯେଉଁ ଅନ୍ୟାୟ କରିଥିଲେ ତାହା ମୁଁ ଭୁଲି ନ ଥିଲି। ତାଙ୍କ କଟକ ରହଣିର ପ୍ରଥମ ରାତିରେ ରେଭେନ୍‌ସାଙ୍କ ଘରେ ତାଙ୍କ ପାଖରେ ଭୋଜିରେ ବସିଥିବାବେଳେ ତାଙ୍କୁ ମୁଁ ସେଇ କଥା ମନେ ପକେଇ ଦେଇଥିଲି। ସେ ଖୁବ୍ ଉଚ୍ଚ ସ୍ୱରରେ ପଚାରିଲେ, "ମୁଁ ସେତେବେଳେ କ'ଣ ଥିଲି ?" ମୁଁ କହିଲି, "ଲାହୋରର କମିଶନର ।" ସେ ଉତ୍ତର ଦେଲେ, "ଆଃ ହଁ ! ପ୍ରାୟ ସେଇ ସମୟରେ ମୁଁ କମିଶନର ଥିଲି ।" ଯେପରିକି ତାଙ୍କର କହିବାର କଥା, ମୋ ସମୟରେ ମୁଁ ଏତେଗୁଡ଼ାଏ ସମ୍ମାନଜନକ ପଦବୀ ଅଧିକାର କରିଥିଲି ଯେ, ମୁଁ ଗୋଟିକ ଠାରୁ ଅନ୍ୟଟିକୁ ଅଧିକ କରି ମନେ ରଖିପାରୁ ନାହିଁ ।" କିନ୍ତୁ ମୋର ସ୍ତ୍ରୀ ଯେ ତାଙ୍କୁ ଭଲକରି ନିରୀକ୍ଷଣ କରୁଥିଲେ କହନ୍ତି ଯେ ତାଙ୍କ ହାବଭାବ ଓ ଚାହାଣିରୁ ଜଣାଯାଉଥିଲା ସେ ନିଶ୍ଚୟ ଭଲ ଭାବରେ ମନେ ରଖିଥିଲେ ।

ଟେମ୍ପଲଙ୍କ ଭ୍ରମଣ ଓ ବକ୍ତୃତା ଘଟଣାକୁ ଏତେ ବଡ଼ ଲେଖିବାର କାରଣ ମୁଁ ମନେକରେ ଏବଂ ମୋର ବନ୍ଧୁମାନେ କହନ୍ତି ଯେ, ସେହି ଘଟଣା ହିଁ ପରବର୍ତ୍ତୀ ଚାକିରି ଜୀବନରେ ମୋର ବିଫଳତାର ପ୍ରକୃତ କାରଣ । ମୋର ଉପରିସ୍ଥ କର୍ମଚାରୀ ସହ କଳହ କରି ଏବଂ ସେଥିପାଇଁ ସେମାନଙ୍କ ମଧ୍ୟରୁ ସବୁଠାରୁ ଅଧିକ ପ୍ରଭାବଶାଳୀ ଓ ଜନପ୍ରିୟ ବ୍ୟକ୍ତିଙ୍କୁ ବାଛି ମୁଁ ଆମ ବଂଶର ପୁରାତନ ପରମ୍ପରାଗତ ଅପରାଧ କରିବସିଲି । ମୋର ଜେଜେବାପା କଳହ କରିଥିଲେ ଚାନ୍‌ସେଲର ଲର୍ଡ଼ ଏଲଡ଼ନଙ୍କ ସହ—ମୋର ବାପା ସେଣ୍ଟଜେମସ୍‌ର ବିଶପ ଜ୍ୟାକ୍‌ସନଙ୍କ ସହ, ମୁଁ ରିଚାର୍ଡ଼ ଟେମ୍ପଲଙ୍କ ସହ ଏବଂ ବର୍ତ୍ତମାନ ମୁଁ ଶୁଣିବାକୁ ପାଉଛି ଯେ, ମୋ ବଡ଼ପୁଅ ଡାଭିଡ଼ ତା'ର କୋଲନେଲଙ୍କ ସହ କଳହ କରୁଛି ।

---

❋ ଏହି ବହିଟି ବଙ୍ଗ ସଚିବାଳୟରେ ଥାଏ, ଯେଉଁଥିରେ ଲାଟ୍‌ମାନେ ଅଫିସର୍‌ମାନଙ୍କ ଚରିତ୍ର ବିଷୟରେ ମତାମତ ଲେଖନ୍ତି । କୌଣସି ଅଫିସର କିଛି ପ୍ରଶଂସା ପାଇଲେ ବା ଭର୍ତ୍ସନା ପାଇଲେ ତାହା ସେଥିରେ ଲିପିବଦ୍ଧ ହୁଏ ।

ଟେଂପଲଙ୍କ ଆଗମନର କିଛିଦିନ ପୂର୍ବରୁ ଦିନେ ମୋର ସ୍ତ୍ରୀ ଦୈନିକ ସାନ୍ଧ୍ୟଭ୍ରମଣରେ ବାହାରିବା ସମୟରେ ବାରଣ୍ଡାରୁ ଗାଡ଼ିକୁ ଉଠୁ ଉଠୁ ଗୋଡ଼ ଖସାଇ ଜୋରରେ ପଡ଼ିଗଲେ । ଫଳରେ ଗର୍ଭପାତ ହୋଇ ମଲା ପୁଅଟିଏ ଜନ୍ମ ହେଲା ଏବଂ ସେ କିଛିଦିନ ଦୁର୍ବଳ ଓ ଅସୁସ୍ଥ ରହିଲେ । ସେଥିପାଇଁ ସେ ମୋ ସହିତ ଗସ୍ତରେ ଯାଇପାରିଲେ ନାହିଁ । ପରେ ଜିଲ୍ଲା ପୋଲିସ୍‌ପାଳ ଗ୍ରେଭସ୍ ଏବଂ ସହକାରୀ କଲେକ୍ଟର ଅଟକିନସନ୍ ମୋ ସହ ଯୋଗ ଦେଲେ । ମୋତେ ଏକ ଅପୂର୍ବ କଷ୍ଟକର କାମ କରିବାକୁ ପଡ଼ିଲା !

ମହାନଦୀ କଡ଼େ କଡ଼େ କଟକର ପ୍ରାୟ ଦଶ ମାଇଲ ଉପରକୁ ଡୋମପଡ଼ା ନାମରେ ଏକ ବଡ଼ ଜମିଦାରୀ ଅଛି । ଏହା ଥିଲା ପ୍ରାୟ ଦଶରୁ ବାର ମାଇଲ ଲମ୍ବ ଦୁଇ ମାଇଲ ପ୍ରସ୍ଥ ଏବଂ ଅଧିକାଂଶ ଅଞ୍ଚଳ ଘନ ବନାଚ୍ଛାଦିତ ଛୋଟ ଛୋଟ ପାହାଡ଼ ପୂର୍ଣ୍ଣ । ଅବଶ୍ୟ ନଦୀ କଡ଼େ କଡ଼େ କେତେକ ଅଞ୍ଚଳ ସମତଳ ଓ ଉତ୍ତମ କୃଷିଯୋଗ୍ୟ ଭୂମି ମଧ୍ୟ ଅଛି । ଏହି ଜମିଦାରୀକୁ ଏକ 'ରାଜ୍ୟ' ବୋଲି ଦାବି କରୁଥିବା ଜଣେ ରାଜା ଥିଲେ ତାହାର ମାଲିକ । ସେତେବେଳେ ଓଡ଼ିଶାରେ ତିନିପ୍ରକାର ରାଜା ଥିଲେ । ଇଂରେଜମାନେ ଯେତେବେଳେ ପ୍ରଥମେ ୧୮୦୪ରେ ମରହଟ୍ଟାମାନଙ୍କଠାରୁ ପ୍ରଦେଶଟିକୁ ନେଲେ ଏହି ପ୍ରଦେଶ ବିଷୟରେ ପ୍ରାୟ କିଛି ଜଣାନଥିଲା । ଯାହାହେଉ ଶୀଘ୍ର ଜଣାଗଲା ଯେ, ମଧ୍ୟାଞ୍ଚଳରେ ମୋଗଲବନ୍ଦି ନାମରେ ଖଣ୍ଡେ କୃଷି ଉପଯୋଗୀ ପ୍ରଶସ୍ତ ସମତଳ ଭୂମି ଅଛି । ଏହା ତିନୋଟି ଜିଲ୍ଲାର ବିଭକ୍ତ—ଉତ୍ତରରେ ବାଲେଶ୍ୱର, କେନ୍ଦ୍ରରେ କଟକ ଓ ଦକ୍ଷିଣରେ ପୁରୀ । ଯଥାରୀତି ସେ ସବୁରେ ବନ୍ଦୋବସ୍ତ କରାଗଲା । ବଙ୍ଗଳାର ଅନ୍ୟାଞ୍ଚଳର ରାଜାମାନେ ଯେପରି ତାଙ୍କର ରାଜ୍ୟ ଉପରେ ବସାଯାଇଥିବା ଭୂକର ଦିଅନ୍ତି ଏ ଜମିଦାରମାନେ ମଧ୍ୟ ସେହିପରି ଦିଅନ୍ତି । କିନ୍ତୁ ସମୁଦ୍ର କୂଳେ କୂଳେ ଏକ ଅନ୍ଧକାରାଚ୍ଛନ୍ନ ଭୂଖଣ୍ଡ ଅଛି ଯେଉଁଠି କେତେକ ରାଜାଙ୍କ ଅଧୀନରେ ବିରାଟ ଅଞ୍ଚଳ ସବୁ ଅଛି ଏବଂ ସେମାନେ ନିଜକୁ ଆଂଶିକ ସ୍ୱାଧୀନ ବୋଲି ଦାବି କରନ୍ତି । ଏହି ଅନାବାଦି ଜମି ଉପରେ କରଧାର୍ଯ୍ୟ କରିବାର କିଛି ନାହିଁ, ତେଣୁ ସଂପତ୍ତି ବା ଆୟ ସହ ସଂପୃକ୍ତ ନ ଥିବା ଅଳ୍ପ କିଛି ନିର୍ଦ୍ଦିଷ୍ଟ ପେଶ୍‌କସ୍ ବା ରାଜଭେଟି ଦେଇ ସେମାନେ ସେଇ ଜମି ଭୋଗ ଦଖଲ କରିବାର ଅନୁମତି ଲାଭ କରିଥିଲେ ।

ସେହିପରି ଭିତର ଆଡ଼କୁ ବା ତିନି ଜିଲ୍ଲାର ପଶ୍ଚିମ ସୀମାନ୍ତରେ ଧାଡ଼ିଏ ଜମିଦାରୀ ଥିଲା, ଯାହାର ଜମିଦାରମାନେ ନିଜକୁ ରାଜା ବୋଲାଉଥିଲେ ଏବଂ ସେଗୁଡ଼ିକ ଅନାବାଦି ଓ ଜଙ୍ଗଲ ପୂର୍ଣ୍ଣ ଥିବାରୁ ଓଡ଼ିଶା ଅଧିକାର ସମୟରେ ସେମାନଙ୍କଠାରୁ ଗୋଟାଏ ପେଶ୍‌କସ୍ ଆଦାୟ କରି ଛାଡ଼ିଦିଆହୋଇଥିଲା । ଡୋମପଡ଼ା ଥିଲା ସେମାନଙ୍କ ମଧ୍ୟରୁ ଗୋଟିଏ । ସେଗୁଡ଼ିକ ପଛରେ ସୁଦୂର ମଧ୍ୟପ୍ରଦେଶ ପର୍ଯ୍ୟନ୍ତ ବିସ୍ତୃତ ବଡ଼ ବଡ଼ କରଦ ରାଜ୍ୟ ସବୁ ଥିଲା ଯାହା ବିଷୟରେ ପରେ କହିବି ।

ବିଚରା କ୍ଷୁଦ୍ର ଡୋମପଡ଼ାର ରାଜା ଥିଲେ ଅସହାୟ, ନିର୍ବୋଧ, ପ୍ରାୟ ଦୁର୍ବଳ ମାନସିକ ଅବସ୍ଥାର ଲୋକ । କିନ୍ତୁ ତାଙ୍କ ଦୁର୍ଭାଗ୍ୟ ଯେ, ସେ ଠିକ୍ ସେଇଆ ନ'ଥିଲେ । ଯଦି ସେ ପାଗଳ ବୋଲି ଘୋଷିତ ହୋଇପାରିଥାନ୍ତେ ଏବଂ ଅବରୁଦ୍ଧ ହୋଇ ରହିଥାନ୍ତେ, ତେବେ ହୁଏତ

ସମୟକ୍ରମେ ସେ ସୁସ୍ଥ ହୋଇ ପାରିଥାନ୍ତେ ଏବଂ ସେଇ ସମୟ ମଧ୍ୟରେ କଲେକ୍ଟର ତାଙ୍କ ଜମିଦାରୀକୁ ଭଲରୂପେ ବୁଝାସୁଝା କରିପାରିଥାଆନ୍ତେ, କିନ୍ତୁ କଥାଟା ହେଲା ଯେ ନାନା ଗଣ୍ଡଗୋଳ ଜଡିବାରେ ତାଙ୍କର ଯଥେଷ୍ଟ ନିର୍ବୋଧତା ଥିଲେ ମଧ୍ୟ ଅବରୁଦ୍ଧ ହେବାଭଳି ଯଥେଷ୍ଟ ନିର୍ବୋଧ ସେ ନ ଥିଲେ । ସେ ଜଣେ ଚତୁର, ଧୂର୍ତ୍ତ ଅବିବେକୀର ପାଲରେ ପଡ଼ିଯାଇଥିଲେ, ଯାହାକୁ ସେ ଦେବାନ ବା ପ୍ରଧାନମନ୍ତ୍ରୀ ପଦରେ ନିଯୁକ୍ତ କରିଥିଲେ । ଏହି ବ୍ୟକ୍ତି ପ୍ରଜାଙ୍କୁ ଶୋଷଣ କରି ନିଜେ ଖୁବ୍ ଧନୀ ହେଉଥିଲା ଏବଂ ରାଜା ଓ ତାଙ୍କ ପରିବାରବର୍ଗଙ୍କୁ ଦୁସ୍ଥ ଅବସ୍ଥାରେ ରଖିଥିଲା । ରୟତମାନଙ୍କ ମଧ୍ୟରୁ ଅନେକ ମୋ ନିକଟକୁ ଆସି ଏଥିରେ ହସ୍ତକ୍ଷେପ କରିବାକୁ ଭିକ୍ଷାକଲେ; ବିଚରା ସେ ରାଜା ମଧ୍ୟ ଦେବାନ ହାତରୁ ନିଜକୁ ଉଦ୍ଧାର କରିବା ପାଇଁ ମୋତେ ଅନୁନୟ ଢ଼ଲେ, ଯାହାକୁ ଅବଶ୍ୟ ସେ କଲମ ଗାରକେ ଚାକିରିରୁ ବାହାର କରିଦେଇ ପାରିଥାନ୍ତେ; କିନ୍ତୁ ସେ ତାକୁ ଏତେ ଭୟ କରୁଥିଲେ ଯେ, ତାହା କରିପାରୁ ନ ଥିଲେ ।

ମୁଁ ଡୋମପଡ଼ା ଯାଇ ନଦୀ କୂଳର ଏକ ସୁନ୍ଦର ଗହଳିଆ ତୋଟାରେ ତମ୍ବୁ ପକାଇଲି । ସେଠାକୁ ଆସିଲେ ବହୁ ସଂଖ୍ୟକ ପ୍ରଜା, ଖାତା ପତ୍ର ଧରି ଧୂର୍ତ୍ତ ଦେବାନ ଓ ତା'ର ଗୁମାସ୍ତାମାନେ । ରାଜା ମଧ୍ୟ ଆସିଲେ ଗୋଟାଏ ପୁରୁଣା ରଙ୍ଗଢଙ୍ଗିଆ ପାଲିଙ୍କିରେ ଅଳ୍ପ କେତେକ ଜୀର୍ଣ୍ଣବେଶଧାରୀ ପାଇକ ଓ ଢୋଲିଆକୁ ନେଇ । ନିଜେ ପିନ୍ଧିଥିବା ସୁବର୍ଣ୍ଣ ଖଚିତ ପୋଷାକ ଓ କାଶ୍ମୀରୀ ଶାଲ ମଧ୍ୟ ପୁରାତନ, ଜୀର୍ଣ୍ଣ, ମଳିନ ଓ କୀଟଦ୍ରଷ୍ଟ । କେତେକ ଦିନ ଧରି ଆମେ କଥାବାର୍ତ୍ତା ଚଳାଇଲୁ ଓ ସମସ୍ତ ବିଷୟ ଭଲରୂପେ ବୁଝିଲୁ । ଅସୁବିଧାଟା ହେଲା ଯଦିଓ ଦେବାନଟା ନିହାତି ଅବିଶ୍ୱାସୀ, ତଥାପି ସେ ଅଞ୍ଚଳରେ ସେ ହେଉଛି ଏକମାତ୍ର ଲୋକ ଯାହା ମୁଣ୍ଡରେ କିଛି ମସଲା ଥିଲା । ଅବଶ୍ୟ କଟକରେ ଅନେକ ପାରିବାର ଲୋକ ଥିଲେ ଯେଉଁମାନେ ଖୁସିରେ ସେପରି ଚାକିରି ଗ୍ରହଣ କରନ୍ତେ; କିନ୍ତୁ ଦେବାନ୍‌ର ବହୁସଂଖ୍ୟକ ଅନୁରକ୍ତ ଅନୁଚର ଥିଲେ । କାରଣ ସେ ନିଜର ଅନେକ ସମ୍ପର୍କୀୟଙ୍କୁ ଗାଁ ଓ କୃଷିଜମି ସବୁ ପଟା ଦେଇଥିଲା । ତାହାର ସେ ସ୍ଥାନ ସମ୍ପର୍କରେ ଚିଜିନିଖି ଅଭିଜ୍ଞତା ଓ ବହୁ ସମର୍ଥକ ଥିବାର ସେଠାରେ ତା'ର ପ୍ରଭାବ ଏତେ ବେଶି ଯେ, ମୁଁ ନୂଆ ଲୋକଙ୍କୁ ସେଠାକୁ ପଠାଇ ଥାଆନ୍ତି, ତାହାର ସ୍ଥିତିକୁ ସେ ସମ୍ପୂର୍ଣ୍ଣ ଅଚଳ କରି ପକାନ୍ତା । ତାକୁ ସେ ରାଜ୍ୟରୁ ବାହାର କରିଦେବାର କ୍ଷମତା ମୋର ନ ଥିଲା ଏବଂ ତା'ଠାରୁ କମ୍ ଅନ୍ୟ କିଛି ଦଣ୍ଡ କିଛି ଫଳ ଦିଅନ୍ତା ନାହିଁ । ତେଣୁ ରୟତମାନଙ୍କର ଏକ ସାଧାରଣ ସଭାରେ ସେମାନଙ୍କ ଆଗରେ ସେ ଯେତେ ଯେତେ ବେଆଇନ ଓ ଶୋଷଣମୂଳକ ଆଦେଶ ଓ ବ୍ୟବସ୍ଥା କରିଥିଲା ସବୁ ରଦ୍ଦ କରିଦେଲି; ଶାସନ ପରିଚାଳନାର କେତେକ ସରଳ ନିୟମ କରି ସେଗୁଡ଼ିକୁ ଲୋକଙ୍କୁ ବୁଝାଇଦେଲି । ସେ ତାହାର ଅନୁରକ୍ତମାନଙ୍କୁ ବେନିୟମରେ ଦେଇପକାଇଥିବା କେତେକ ସମ୍ପତ୍ତି କାଢ଼ିଆଣିଲି, ଭବିଷ୍ୟତରେ ମୋର କୃତ ନିୟମାନୁଯାୟୀ ଚଳିବାକୁ ତାକୁ ନିର୍ଦ୍ଦେଶ ଦେଲି ଏବଂ ଯଦି ଆଉ ସେ ଖରାପ ବ୍ୟବହାର କରେ ତେବେ ମୁଁ କଅଣ କରିବି ସେ ସମ୍ପର୍କରେ ଅତ୍ୟନ୍ତ ଭୟ ପ୍ରଦର୍ଶନ କରି ତାକୁ ପ୍ରାଣାନ୍ତକ କରି ତା'ପରେ ତାକୁ ତାହାର ନିଜ ସ୍ଥାନରେ ଅବସ୍ଥାପିତ କରି ଚାଲିଆସିଲି । ମୋର ଆଶା ହେଲା ସେ ଏଥର ନିଜ କୃତ୍ୟ ପାଇଁ ଦୁଃଖ କରିବ, ଏହାହିଁ ଥିଲା ଏକମାତ୍ର ସମ୍ଭାବ୍ୟ ପନ୍ଥା । ବିଚରା ରାଜା କିନ୍ତୁ ଏଥିରେ ନିରାଶ ହେଲେ । ବର୍ଷ ବର୍ଷ ଧରି

ଦେବାନଙ୍କୁ ଅନ୍ଧଭାବରେ ବିଶ୍ୱାସ କରିବା ପରେ ସେ ବର୍ତ୍ତମାନ ତାଙ୍କୁ ଘୃଣା କରିବାକୁ ଆରମ୍ଭ କରିଥିଲେ ଏବଂ ତାଙ୍କ ମନ ଦୁର୍ବଳ ଥିବାରୁ ତା'ପ୍ରତି ପୂର୍ବରୁ ଥିବା ଅନୁରାଗ ପରି ବର୍ତ୍ତମାନର ବିରାଗ ମଧ୍ୟ ଥିଲା ଉତ୍କଟ ଓ ଅଯୌକ୍ତିକ । ମୁଁ ତାଙ୍କ ସହ ଏକାନ୍ତରେ ବହୁ କଥାବାର୍ତ୍ତା ହେଲି । ତାଙ୍କର ବିରାଟ ଅର୍ଦ୍ଧଜୀର୍ଣ୍ଣ ପ୍ରାସାଦର ଇଟା ଖସି ଜମିଯାଇଥିଲା ଏବଂ ଜଙ୍ଗଲ ଓ ଗୁଳ୍ମରେ ପୂରି ଯାଇଥିଲା । ପୂର୍ବ ଗୌରବର ଚିହ୍ନ ସ୍ୱରୂପ ଥିଲା ସୁନ୍ଦର କାରୁକାର୍ଯ୍ୟପୂର୍ଣ୍ଣ ଫାଟକଟିଏ, ଯାହାର ଜଳଙ୍କିଖିଆ କଡିକାରୁ କବାଟ ସବୁ ଅଧା ଖସି ଆସିଥିଲା, ଆଉ ଥିଲା ମନୋରମ ଭଗ୍ନ ମୂର୍ତ୍ତି ସବୁ ଥିବା ଏକ ପୁରୁଣା ମନ୍ଦିର । ଏହି ପ୍ରାସାଦଟି ଗୋଟିଏ ସୁନ୍ଦର ବନାକୀର୍ଣ୍ଣ ପାହାଡ଼ ଶିଖରର ଅର୍ଦ୍ଧଭାଗରେ ତାଙ୍କ ପିତାଙ୍କ ନିର୍ମିତ ଗୋଟିଏ ବିସ୍ତୃତ ରାଜକୀୟ ଉଦ୍ୟାନର ପ୍ରାନ୍ତ ଭାଗରେ ଅବସ୍ଥିତ ଥିଲା । ଏଇଠି ଜଙ୍ଗଲ ଆଚ୍ଛାଦିତ ଗୋଲାପ ଉଦ୍ୟାନ—ତାଳ ଓ ଅନ୍ୟାନ୍ୟ ବୃକ୍ଷମାନଙ୍କୁ ଛନ୍ଦି ରଖିଥିବା ବିପୁଳ ପୁଷ୍ପବତୀ ଲତାମାନଙ୍କ ଗହଳରେ ଏଇ ଅଜ୍ଞାନ ବିଚରା ଘଣ୍ଟା ଘଣ୍ଟା ଧରି ଦୀର୍ଘ ଗୁଳ୍ମାଚ୍ଛାଦିତ ଏକପଦୀ ରାସ୍ତାରେ ଏପଟ ସେପଟ ବୁଲି କଟାଇ ଦିଅନ୍ତି । ସେଇଠି ମୁଁ ତାଙ୍କୁ ଭେଟିଲି ଏବଂ ତାଙ୍କରି ସାଙ୍ଗରେ ଏପଟ ସେପଟ ବୁଲି ଗୋଟିଏ କଡ଼ା ବକ୍ତୃତା ଶୁଣେଇଲି । ମୋର ବିଶ୍ୱାସ ଏଥିରୁ ସେ କିଛି ସମୟ ପାଇଁ ଲାଭବାନ୍ ହୋଇଥିଲେ ଏବଂ ଡୋମପଡ଼ା ସମସ୍ୟା ଉପରେ ମୁଁ ଆଖି ରଖିଥିବା ସମୟ ପର୍ଯ୍ୟନ୍ତ ବେଶ୍ ଚାଲିଥିଲା । ମୁଁ ଆସିବା ପରେ କଅଣ ହେଲା ଜାଣେନି, ଭାରତରେ ଥିବା କେହି ମଧ୍ୟ ଜାଣିପାରନ୍ତି ନାହିଁ । ଗୋଟାଏ ଜାଗାରେ ଥିବା ପର୍ଯ୍ୟନ୍ତ ଜଣେ ତା' ପାରୁପର୍ଯ୍ୟନ୍ତ କରିଥାଏ ଏବଂ ତା'ପରେ ସେ କାମର ଭବିଷ୍ୟତ ତା'ର ଉତ୍ତରାଧିକାରୀ ହାତରେ ଛାଡ଼ିଦେଇ ଆସେ, ଯେ କି ସମ୍ପୂର୍ଣ୍ଣ ଭିନ୍ନ ଦୃଷ୍ଟିକୋଣ ଗ୍ରହଣ କରି ଜଣେ କରିଥିବା ବନ୍ଦୋବସ୍ତକୁ ଓଲଟ ପାଲଟ କରିଦେଇପାରେ ।

ବାସ୍ତବିକ ଭାରତ ଶାସନର ପ୍ରଧାନ ସମସ୍ୟାମାନଙ୍କ ମଧ୍ୟରୁ ଏହା ଗୋଟିଏ; ଯଦିଓ ଇଂଲଣ୍ଡର ଲୋକେ, ବିଶେଷତଃ ପାର୍ଲିଆମେଣ୍ଟରେ ଏ ସମ୍ପର୍କରେ କିଛି ନ ଜାଣି ବଡ଼ ବଡ଼ କଥା କହନ୍ତି ଏବଂ ଖୁବ୍ ଦୃଢ଼ ବିଶ୍ୱାସ ସହ ଆଇନମାନ ପ୍ରଣୟନ କରନ୍ତି । କହିବା ବାହୁଲ୍ୟ ଯେ, ଅସୁବିଧାଟା ନିୟମ କିମ୍ବା ଆଇନ୍ ପାସ୍ କରିବାରେ ନାହିଁ, ଅଛି ସେସବୁ କାର୍ଯ୍ୟକାରୀ କରିବାରେ । ଭୂ-ରାଜସ୍ୱ ଓ ଅନ୍ୟ କେତେକ ବିଷୟରେ ଯେଉଁ ଜଟିଳତା ଦେଖାଦିଏ, ତା'ର ନିରାକରଣ ପାଇଁ ସଠିକ ଆଇନ ତିଆରି କରିବା ସହଜସାଧ୍ୟ ନୁହେଁ ବୋଲି ମୁଁ ସ୍ୱୀକାର କରେ । ଆଇନ ତିଆରିରେ ଖୁବ୍ ସାବଧାନତା ଅବଲମ୍ବନ କରାଯାଏ । ବହୁ ବିଚାର ଯତ୍ନ ଓ ବିବେକ ବୁଦ୍ଧି ଦ୍ୱାରା ତଥ୍ୟସବୁ ସଂଗୃହୀତ ହୁଏ; ବିଷୟଟିକୁ ଜାଣିଥିବା (ଏବଂ ଅନେକ ନ ଜାଣିଥିବା) ଲୋକଙ୍କଠାରୁ ମତାମତ ଅଣାଯାଏ । ବିଲ୍‌ର ଖସଡ଼ାଟି ସମାଲୋଚନା ପାଇଁ ବହୁଳ ପ୍ରଚାରିତ ହୁଏ, ସମାଲୋଚନାଗୁଡ଼ିକୁ ଯତ୍ନର ସହ ବିଚାର କରାଯାଏ । ତା'ପରେ ବିଲ୍‌ଟିକୁ କାଉନ୍‌ସିଲରେ ଉପସ୍ଥାପିତ କରି ତା'ଉପରେ ସୁଚତୁର ବାଗ୍ମୀସୁଲଭ ଭାଷଣ ଦିଆଯାଏ । ତା'ପରେ ଏହାକୁ ବିଶେଷଜ୍ଞ କମିଟିକୁ ପଠାଯାଏ, ଯେଉଁମାନେ ଏଥିରେ କେତେକ କାରୁକାର୍ଯ୍ୟ, କଟାମିଶା କରନ୍ତି, ପ୍ରତ୍ୟେକ ସ୍ଥଳଟି ଉପରେ ଘଣ୍ଟା ଘଣ୍ଟା ଯୁକ୍ତି କରନ୍ତି ଏବଂ ଏହିପରି ସଂସ୍କାର କରି ପୁଣି କାଉନ୍‌ସିଲରେ ପେଶ୍ କରନ୍ତି । ସେଠାରେ ଏହା ଉପରେ ପୁଣି ବକ୍ତୃତା ଚାଲେ ଏବଂ ପ୍ରତିଟି

ଅଂଶ ପାଇଁ ଭୋଟ ନିଆଯାଏ । ଶେଷରେ ଯେତେବେଳେ ତାହା ପାସ୍ ହୋଇଯାଏ ଗଭର୍ଣ୍ଣର, ସଚିବ, କାଉନ୍‌ସିଲ୍ ଓ ବୋର୍ଡର ସଭ୍ୟମାନେ ହାତଯୋଡ଼ି ବସିପଡ଼ି କହନ୍ତି ଯେ, କାମ ହୋଇଗଲା ।

କିନ୍ତୁ କାମ କୌଣସିମତେ ସରିନଥାଏ । ପ୍ରକୃତରେ ବାସ୍ତବ ଅସୁବିଧା ଆରମ୍ଭ ହିଁ ହୁଏ । ଏପରି ଶବ୍ଦ ଚାତୁର୍ଯ୍ୟପୂର୍ଣ୍ଣ ଆଇନ ଓ ଏପରି ଉତ୍କଣ୍ଠିତ ଆଲୋଚନାପ୍ରସୂତ ବ୍ୟବସ୍ଥାକୁ ବର୍ତ୍ତମାନ ଦେଶସାରା କାର୍ଯ୍ୟକାରୀ କରାଯିବ । ମୁଦ୍ରିତ ଆଇନର ନକଲସବୁ କଲେକ୍ଟର ଓ ଅନ୍ୟ କର୍ମଚାରୀମାନଙ୍କ ପାଖକୁ ପଠାଯିବ । ସେମାନଙ୍କ ମଧ୍ୟରୁ ଅନେକ ନିର୍ବୋଧ, କେତେକ ଅଳସୁଆ ଓ ଅସାବଧାନ, ଆଉ କେତେକ ସେସବୁ ବ୍ୟବସ୍ଥାର ସର୍ବଦା ବିରୋଧୀ ଏବଂ ତାହାସବୁ କାର୍ଯ୍ୟକାରୀ କରିବା ପାଇଁ ଅନିଚ୍ଛୁକ । ତା'ପରେ ଅଛନ୍ତି ବହୁସଂଖ୍ୟକ ଦେଶୀୟ ଲୋକ ଯେଉଁମାନେ ଏଥିରେ ସଂପୃକ୍ତ । ଦେଶୀୟ ଓକିଲମାନେ ଛୁଞ୍ଚିପରି ତୀକ୍ଷ୍ଣ ଏବଂ ଏ ସବୁ ବ୍ୟବସ୍ଥା ମଧ୍ୟରୁ ତାହାର ଅନ୍ତରାତ୍ମାକୁ ଖୋଳି ପକାନ୍ତି । ଏହାର ଗୋଟିଏ ଅଂଶ ଗୋଟିଏ ପ୍ରକାର କାମ କରିବାର ଥିଲେ ଅନ୍ୟଟି ଅନ୍ୟ ପ୍ରକାରେ । ଦୁଇଟି ଅଂଶ ପରସ୍ପର ବିରୋଧୀ ରୂପେ ଦର୍ଶାଯାଇଥିବାବେଳେ ଅଧିକାଂଶର ଏକାଧିକ ଉପାୟରେ ଅର୍ଥ କରାଯାଇପାରେ । ଅବଶ୍ୟ ଗାଉଁଲି ଲୋକେ ଏଥିରୁ କିଛି ବୁଝନ୍ତି ନାହିଁ । ବିଚାରାଳୟରେ ବିଚାର ସବୁ ଆଗତ ହୋଇ ଅପିଲ ପରେ ଅପିଲ ହୋଇ ଉଠି ନ୍ୟାୟାଳୟକୁ ଯାଏ । ସେହି ମାନ୍ୟାସ୍ପଦ ବିଚାରକମଣ୍ଡଳୀ ନିଜକୁ ସବୁ ଆଇନର ଅର୍ଥ କରିବା ପାଇଁ ଆଇନତଃ ଅଧିକାରୀ ବୋଲି ବିଚାରନ୍ତି ଏବଂ ପ୍ରତ୍ୟେକ ଅଂଶଟି ଉପରେ ନିଜର ତର୍ଜମା କରି ବସନ୍ତି । ଏହି ତର୍ଜମାସବୁ ନ୍ୟାୟାଳୟର ବିଚାରାବଳୀରେ ସ୍ଥାନ ପାଏ ଏବଂ ଏହି ବିଚାର ସବୁ ରୁଲିଂ (ବିଚାର ସିଦ୍ଧାନ୍ତ) ରୂପେ ଛପାହୋଇ ପ୍ରକାଶ ପାଏ । ତେଣୁ ଅଳ୍ପ ସମୟ ମଧ୍ୟରେ ଆଇନ ଦୁଇ ପ୍ରକାର ହୋଇଯାଏ—ବିଧାୟକସଂସ୍ଥା ଦ୍ୱାରା ପ୍ରସ୍ତୁତ ମୂଳ ବିଧାନ ଏବଂ ତାହା ଉପରେ ବିଚାରସଂସ୍ଥାଦ୍ୱାରା ଘୋଷିତ ଗୁଡ଼ାଏ ସିଦ୍ଧାନ୍ତ । ଆଇନଜ୍ଞମାନେ ଏଥିପାଇଁ ଖୁବ୍ ଗର୍ବ କରନ୍ତି; ସେମାନେ ପ୍ରଥମଟିକୁ କହନ୍ତି ମୌଳିକ ଆଇନ (Substantive Law) ଏବଂ ଦ୍ୱିତୀୟଟିକୁ ଗୁଣ ପ୍ରକାଶକ ଆଇନ (Adjective law) ଏବଂ ଦ୍ୱିତୀୟଟିକୁ ନିଜର ସୃଷ୍ଟି ବୋଲି ଖୁବ୍ ପସନ୍ଦ କରନ୍ତି । ବିଚାରପତିମାନେ ଏ ସମ୍ପର୍କରେ କୌଣସି ସିଦ୍ଧାନ୍ତରେ ଉପନୀତ ହେବା ସମୟରେ କେଉଁ ପରିସ୍ଥିତିରେ ଏ ଆଇନ ପ୍ରଣୀତ ହେବା ଆବଶ୍ୟକ ହେଲା ସେ ବିଚାରରୁ ଯତ୍ନର ସହ ଦୂରେଇଯାଇ, ବିଧାନସଭା କେଉଁ ଉଦ୍ଦେଶ୍ୟରେ ଏ ଆଇନ କରିଛି, ତାହା ନ ଦେଖି ଏଥିରେ ଥିବା ଶବ୍ଦାବଳୀର କି ପ୍ରକୃତ ଅର୍ଥ ବାହାରୁଛି ତା'ର ପରୀକ୍ଷା କରନ୍ତି । ତେଣୁ ଅନେକ ସମୟରେ ଏପରି ଘଟେ ଯେ, ସେମାନଙ୍କ ସିଦ୍ଧାନ୍ତ ଆଇନର ପ୍ରକୃତ ଅର୍ଥର ଓଲଟା ହୋଇପଡ଼େ । ତା'ପରେ ଏଇ ଭୁଲ୍‌କୁ ସୁଧାରିବାକୁ ଆଉ ଏକ ନୂଆ ଆଇନ ପ୍ରଣୟନ ଆବଶ୍ୟକ ପଡ଼େ । 'ଆଇନର ସଂଶୋଧନ' ପରି ବୈଷୟିକ ଭାଷାକୁ ବାଦଦେଲେ ଏହା ନିଛକ ଭୁଲ୍‌ର ସ୍ୱୀକାରୋକ୍ତି ମାତ୍ର । ଏଥିରେ ପ୍ରକୃତରେ କୁହାହୋଇଥାଏ—ପ୍ରଥମ ଆଇନରେ ଆମେ ନିୟମ କରିଥିଲୁ ଯେ ଦୁଇ ଓ ଦୁଇ ମିଶି ଚାରି ହେବ; କିନ୍ତୁ ଆଇନର ଭାଷାରୁ ବାହାରୁଛି ଯେ, ଆମେ ଦୁଇ ଓ ଦୁଇ ମିଶି ପାଞ୍ଚହେବ ବୋଲି ନିୟମ ବାନ୍ଧିଛୁ । ବର୍ତ୍ତମାନ ଆମେ ସେଇ ଭାଷାର

ପରିବର୍ତ୍ତନ କରୁଛନ୍ତି ଏବଂ ନିମ୍ନୋକ୍ତ ଶବ୍ଦ ଦୁଇଟି ବଦଳାଉଛନ୍ତି, ଯାହା ଫଳରେ ଯାହକୁ ପରିଷ୍କାର ହୋଇଗଲା ଯେ, ଦୁଇ ଓ ଦୁଇ ମିଶି ଚାରି ହେବ ଓ ପାଞ୍ଚ ହେବ ନାହିଁ । ମୋର ଜାଣିବାରେ ଏପରି ଘଟିଛି ଯେ, ଗୋଟିଏ 'ସଂଶୋଧିତ ଆଇନ'ର ବିଚାର କରି ଉଚ୍ଚ ନ୍ୟାୟାଳୟ ମତ ଦେଇଛନ୍ତି ଯେ ଏହି ଆଇନର ସଂଶୋଧନ ଦୁଇ ଓ ଦୁଇ ମିଶି ଛଅ ହେବ ବୋଲି ସୂଚନା ଦେଉଛି ।

ବିଧାନ ଓ ବିଚାର ସଂସ୍ଥା ଯେତେ ଯତ୍ନରେ ଆଇନର ପ୍ରତିଷ୍ଠା ପାଇଁ ଚେଷ୍ଟା କରନ୍ତୁ ପଛକେ ଦେଶ ମଧ୍ୟରେ ତାକୁ ପ୍ରଚଳିତ କଲାବେଳେ ସେଥିରେ ଅନେକ ଦୁର୍ବଳତା ଓ ଅନିଶ୍ଚିତତା ରହିଯିବ । ଦେଶର ବିରାଟତା ଏବଂ ଏହାକୁ ଶାସନ କରିବାର ଦାୟିତ୍ୱରେ ଥିବା ବ୍ୟକ୍ତିମାନଙ୍କର ମତବାଦ ମାନସିକ ଓ ବୌଦ୍ଧିକ ସ୍ଥିତିର ପାର୍ଥକ୍ୟ ଫଳରେ ଦେଶର ବିଭିନ୍ନ ଅଞ୍ଚଳରେ ଦକ୍ଷତାର ପାର୍ଥକ୍ୟ ସୃଷ୍ଟି ହୁଏ ଏବଂ କମ୍ ବେଶିରେ ସବୁଠି ପ୍ରାୟ ଦୁର୍ବଳ ହୋଇପଡ଼େ । ବିଶେଷକରି ଜିଲ୍ଲା ଅଫିସରମାନଙ୍କ ଘନ ଘନ ବଦଳି ଫଳରେ ପ୍ରତ୍ୟେକ ଆଇନ୍‌ର କାର୍ଯ୍ୟକାରିତା ବାଧାପ୍ରାପ୍ତ ହୁଏ । ସଚିବାଳୟ ଘନ ଘନ ପରିବର୍ତ୍ତନର ପକ୍ଷପାତି । ସେମାନେ ଭାବନ୍ତି ଯେ, ଯଦି ଜଣେ ଲୋକ ଗୋଟିଏ ଜିଲ୍ଲାରେ ବହୁତ ଦିନଧରି ରହିଯାଏ ତେବେ ସେ "ଗୋଟାଏ ଗତରେ ପଡ଼ିଯାଏ ।" ଏହାର ଅର୍ଥ ଏହି ଯେ, ଜଣେ ଲୋକ ଗୋଟିଏ ଜିଲ୍ଲାରେ ଯଥେଷ୍ଟ ସମୟ ରହି ଲୋକଙ୍କ ଅଭାବ ଓ ଅବସ୍ଥା ବିଷୟରେ ଗଭୀର ଅଭିଜ୍ଞତା ଲାଭ କଲେ ସଚିବାଳୟ କିପରି ଭାବରେ ଅହମିକାର ସୂକ୍ଷ୍ମ କାଳ୍ପନିକ ବୁଢ଼ିଆଣୀ ଜାଲ ବୁଣିବାରେ ଆଗ୍ରହୀ ତାହା ଜାଣିଯାଆନ୍ତି ଏବଂ ସେହି ଅଞ୍ଚଳ ବିଷୟରେ ତା'ର ବିପୁଳ ଅଭିଜ୍ଞତା ବଳରେ ସେମାନଙ୍କର ଅନ୍ତଃସାରଶୂନ୍ୟତା ପ୍ରମାଣିତ କରି ଦେଇ ସେମାନଙ୍କ ବଡ଼ିମାର ପବନ ମୁଣାରେ ଛିଦ୍ର କରିଦିଅନ୍ତି । ତେଣୁ ସେମାନେ ଜିଲ୍ଲାରେ ନୂଆଲୋକ ଚାହାନ୍ତି, ଯେଉଁମାନେ ସେମାନଙ୍କ ସମସ୍ତ ଯୋଜନାକୁ ଗଳାଧଃକରଣ କରିଦେଇପାରିବେ । ଏ ସମ୍ପର୍କରେ ଗୋଟିଏ ଦୁଇଟି ବାସ୍ତବ ଘଟଣାର ଉଲ୍ଲେଖ ପରେ କରିବି ।

ଏସବୁ ଭିନ୍ନ କଥାମାନଙ୍କରୁ ମୁଁ ବର୍ତ୍ତମାନ ଫେରିଆସେ । ଡୋମପଡ଼ା ପରେ ପଡ଼ୋଶୀ ଜମିଦାରୀ ପଟିଆକୁ ଗଲି, ଏହା ଅଧିକତର ମନୋରମ ଓ ଜଙ୍ଗଲପୂର୍ଣ୍ଣ । ଏହାର ରାଜା ଅଧିକତର ବିଚାରଶୀଳ ହେଲେ ମଧ ଅଧିକ ବଦଖର୍ଚ୍ଚୀ । ଏଠାରେ ଥିଲା ପାରିବାରିକ ବିବାଦ । ରାଜାମାତା ମୃତ ପତିଙ୍କ ସମ୍ପତ୍ତିର ଅନେକ ଜମିବାଡ଼ି ପାଇଥିଲେ ଏବଂ ସବୁ ହିନ୍ଦୁ ବିଧବାଙ୍କ ପରି ବ୍ରାହ୍ମଣମାନଙ୍କ ଇଙ୍ଗିତରେ ପରିଚାଳିତ ହୋଇ ସେହି ଭଦ୍ରବ୍ୟକ୍ତିମାନଙ୍କ ସେବାରେ ନିଜର ଭୂସମ୍ପତ୍ତି ବ୍ୟୟ କରୁଥିଲେ । ରାଜାଙ୍କର ଅର୍ଥ ଆବଶ୍ୟକ ଥିଲା ଏବଂ ସେ ମାଆଙ୍କ ସଂପତ୍ତିକୁ ତାଙ୍କଠାରୁ ନେଇଯିବାର ଚେଷ୍ଟା କରୁଥିଲେ । ତେଣୁ ନଅରରେ ଚାଲିଥିଲା ରାଜକୀୟ କୋଳାହଳ ଏବଂ ଗ୍ରାମମାନଙ୍କରେ ଅକଥନୀୟ ବିଶୃଙ୍ଖଳା । ସେଠାରେ ରାଜମାତାଙ୍କ ଲୋକେ ବୁଲି ବୁଲି ଖଜଣା ଆଦାୟ କରି ରାଜମାତାଙ୍କ ନାମରେ ରସିଦ ଦେଉଥିଲେ ଏବଂ ରାଜାଙ୍କ ଲୋକେ ରାଜାଙ୍କ ନାମରେ ରସିଦ୍ କାଟୁଥିଲେ । ଦୁଃସ୍ଥ ରୟତମାନଙ୍କୁ ଦୁଇ ଦୁଇଥର ଦେବାକୁ ପଡୁଥିଲା । ଏହି ସମସ୍ୟାର ମଧ ବହୁ କଥାବାର୍ତ୍ତା ପରେ ମୀମାଂସା ହେଲା । ବୃଦ୍ଧା କିଛି ଭୂସଂପତ୍ତି ଛାଡ଼ିଦେଇ ବାକି ସଂପତ୍ତି ଉପରେ ନିଶ୍ଚିତ ଶାନ୍ତିପୂର୍ଣ୍ଣ ଅଧିକାର ସାବ୍ୟସ୍ତ କଲେ । ଉଭୟ ଶ୍ରେଣୀର ରୟତଙ୍କ ଖଜଣା

ଧାର୍ଯ୍ୟ ହୋଇଗଲା ଏବଂ ଦୁଇଥର ଦେଇଥିବା ଖଜଣା ଭବିଷ୍ୟତ ପାଇଁ ମଞ୍ଜୁରୀ ହୋଇଗଲା । ସେସବୁ ଫେରସ୍ତ ହୋଇପାରିଲା ନାହିଁ । କାରଣ ଅର୍ଥ କିଛି ସଂଗ୍ରହ କରିବା ମାତ୍ରେ ଯଥାଶୀଘ୍ର ବ୍ୟୟ ହୋଇ ଯାଉଥିଲା ।

ମୁଁ ରାଜାମାନଙ୍କ ବିଷୟରେ ଲେଖିଲାବେଳେ ପ୍ରାୟ ଏହି ସମୟରେ ଆମେ ଭେଟିଥିବା ଆଉ ଏକ ରାଜା, ଯାହାଙ୍କୁ ମହାରାଜା କୁହାଯାଏ ତାଙ୍କ ବିଷୟରେ ଉଲ୍ଲେଖ କରିପାରେ । ଉପକୂଳ ଅଞ୍ଚଳର ଯେଉଁ ରାଜାମାନଙ୍କ କଥା ମୁଁ ପୂର୍ବରୁ କହିଛି, ସେମାନଙ୍କ ମଧ୍ୟରୁ ସେ ଜଣେ ପ୍ରାଚୀନ ଓଡ଼ିଶାର ଦେଶୀୟ ସମ୍ରାଟ୍ । ପୁରୁଣା ଗଜପତି ବଂଶ ଯେଉଁମାନେ କି ସୂର୍ଯ୍ୟ ନା ଚନ୍ଦ୍ର କେଉଁଥିରୁ ଉତ୍ପନ୍ନ ହୋଇଛନ୍ତି ମୋର ଠିକ୍ ମନେ ନାହିଁ, ସେହି ବଂଶର ଦାୟାଦ ଓ ପ୍ରକୃତ ପ୍ରତିନିଧି ବୋଲି ଏ ରାଜା ଦାବି କରନ୍ତି । ତାହା ଯଥାର୍ଥ ବୋଲି ମୁଁ ମନେକରେ । ବ୍ରାହ୍ମଣୀ ନଦୀର ତଳ ଅଂଶରେ ପ୍ରବାହିତ ଗୋଟିଏ ଧାର ନିକଟରେ ଅବସ୍ଥିତ ଆଳି (AI) ନାମରେ ଗୋଟିଏ ଛୋଟ ଅପରିଷ୍କୃତ ସହରରେ ବିରାଟ ଅସଂଲଗ୍ନ, ଅବଶ୍ୟ ଅର୍ଦ୍ଧଜୀର୍ଣ୍ଣ ଏକ ନଅରରେ ସେ ବାସ କରନ୍ତି । ଏହି ନଅର ଖାଇ ଓ ବଂଶବନ ବେଷ୍ଟିତ ହୋଇଥିବାରୁ ଯେତେ ଅସ୍ୱାସ୍ଥ୍ୟକର, ଶିଉଳି ଓ ଗୁଳ୍ମାଚ୍ଛାଦିତ ହୋଇପାରେ ତାହା ହୋଇଛି । ଏହି କ୍ଷୁଦ୍ରକାୟ ଶୁଷ୍କମୁଖବିଶିଷ୍ଟ ବୃଦ୍ଧ ମହାରାଜା ତାଙ୍କ ସାଧମତେ ରାଜକୀୟତା ରକ୍ଷା କରି ଆମକୁ ଅଭିନନ୍ଦନ ଜଣାଇଲେ ଏବଂ ତାଙ୍କ ବଡ଼ପୁଅକୁ ମୋ ସ୍ତ୍ରୀ, ତାଙ୍କ ଇଂରେଜ ଧାତ୍ରୀ ଓ ଆମ ପିଲାମାନଙ୍କ ସଙ୍ଗରେ ଅନ୍ତଃପୁରକୁ ରାଣୀମାନଙ୍କ ସହ ସାକ୍ଷାତ କରାଇବାକୁ ପଠାଇଲେ। ସେ ମୋତେ କେତେଗୁଡ଼ିଏ ଭଙ୍ଗାରୁଜା ଅଗଣା ମଧ ଦେଇ ଏକ ଇଟା ତିଆରି ଚଉପାଢ଼ୀ ଉପରକୁ ନେଇଗଲେ । ତା'ଉପରେ ଧାଡ଼ି ଧାଡ଼ି ହୋଇ ଅନେକ ପିଲା ଠିଆହୋଇଥିଲେ। ସେମାନେ ସବୁ କାହାର ପିଲା ବୋଲି ମୁଁ ପଚାରିଲି । କାରଣ ସେମାନେ ଏତେ ଭଲ ପୋଷାକରେ ସଜ୍ଜିତ ଥିଲେ ଯେ, ଏପରି ଏକ ଦାରିଦ୍ର୍ୟ ପୀଡ଼ିତ ସହରର ଅଧିବାସୀଙ୍କ ସନ୍ତାନ ହୋଇଥିବା ସମ୍ଭାବନା ମୁଁ କରିପାରୁ ନ ଥିଲି। ସେ ସେମାନଙ୍କ ଆଡ଼େ ଚାରିଧାଡ଼ିର ଏ ମୁଣ୍ଡରୁ ସେ ମୁଣ୍ଡ ଆଙ୍ଗୁଠି ଦେଖାଇ ଦେଇ କହିଲେ— "ଏ ସମସ୍ତେ ମୋ ପିଲା—ନା , ସେଇଟି ପ୍ରଧାନମନ୍ତ୍ରୀଙ୍କର ଓ ସେଇଟି ଖାଜାଞ୍ଚିଙ୍କର—କିନ୍ତୁ ଆଉସବୁ ମୋର ।" ମୁଁ ଗଣିଲି । ସେମାନେ ଥିଲେ ୭୫ ଜଣ । ରାଜାଙ୍କ ବିଷୟରେ କବିତା ମୁଁ ମନେ ପକେଇଲି— "ସମରିଆ ପୁରେ ଥିଲେ ଆହବଙ୍କ ସତୁରୀନନ୍ଦନ ।" ତା'ପରେ ଆମେ ବଡ଼ ସ୍ତମ୍ଭ ସଂଯୁକ୍ତ ବାହାର ବାରଣ୍ଡାରେ ବସିଲୁ । ସାମ୍ନାରେ ଗୋଟିଏ ବିରାଟ ପୁଷ୍କରିଣୀ ଏବଂ ତା' ଚାରିପଟେ ସୁନ୍ଦର କିନ୍ତୁ ଅବହେଳିତ ଉଦ୍ୟାନ । ମୋ ସ୍ତ୍ରୀ ସାକ୍ଷାତରୁ ଫେରିଆସିବା ପର୍ଯ୍ୟନ୍ତ ଆମେ ସେଠି ଗପସପ ହେଲୁ । ତା'ପରେ ମହାରାଜା ମୋତେ ବୁଲାଇ ଦେଖାଇବା ପାଇଁ ଅଭ୍ୟର୍ଥନା ଗୃହରୁ ରାଣୀମାନଙ୍କୁ ଖାଲି କରିଦେବାପାଇଁ ଖବର ପଠାଇଲେ । କୋଠରିର ସଂଖ୍ୟା ଅନେକ, ପ୍ରାୟ ଛୋଟ ଛୋଟ ଅନ୍ଧାରିଆ; କିନ୍ତୁ ବହୁଳ ଭାବରେ ସଜ୍ଜିତ, ତାଙ୍କ ନିଜର ବିଶ୍ରାମ ଓ ଶୟନ କକ୍ଷର କାନ୍ଥ ସବୁ ବହୁ ଚିତ୍ରରେ ପରିପୂର୍ଣ୍ଣ, ଯାହାକୁ ସେ ନିଜେ ଆଙ୍କିଛନ୍ତି ବୋଲି କହିଲେ । ସେଗୁଡ଼ିକର ସୂଚିତ ବିଷୟବସ୍ତୁ ଏତେ ଉତ୍କଟ ଅରୁଚିକର ଯେ ସେସବୁ ମୋ ସ୍ତ୍ରୀ ଦେଖିଥିବା ଭାବି ମୁଁ ଶୀତେଇ ଉଠିଲି । ସୌଭାଗ୍ୟବଶତଃ ଯାହା ପଛରେ ଜାଣିପାରିଲି ମହିଳାମାନେ ତାଙ୍କୁ ଏତେ କୌତୂହଳୀ କରାଇ ଦେଲେ ଯେ କାନ୍ଥଆଡ଼େ ଚାହିଁବାପାଇଁ ତାଙ୍କର ଧାରଣା ହିଁ ରହିଲା ନାହିଁ । ଆହୁରି ମଧ

ସୌଭାଗ୍ୟର କଥା ଚିତ୍ରଗୁଡ଼ିକ ଏତେ ଅଦ୍ଭୁତ ଧରଣର ଯେ ଦେଶୀୟ ଚିତ୍ରକଳାରେ ଅନଭ୍ୟସ୍ତ ବ୍ୟକ୍ତି ପକ୍ଷରେ ସେ ସବୁର ଅର୍ଥ ବୁଝିପାରିବା ସମ୍ଭବ ହୁଅନ୍ତା ନାହିଁ । ❋ ଜଣାଯାଏ ମୋ ସ୍ତ୍ରୀ ଏବଂ ତାଙ୍କ ଦଳଟିକୁ ଯେତେବେଳେ ଏହି ସବୁ ପ୍ରକୋଷ୍ଠକୁ ନିଆଗଲା ସେ ମୂଲ୍ୟବାନ୍ ବସ୍ତ୍ର ଓ ଅଳଙ୍କାରରେ ସମ୍ପୂର୍ଣ୍ଣ ଆବୃତ୍ତ ଜଣେ ସ୍ଥୂଳାଙ୍ଗୀ ବୃଦ୍ଧାକୁ ସାକ୍ଷାତ କଲେ । ଯୁବକ ରାଜପୁତ୍ର ପରିଚୟ କରାଇ ଦେଲେ—ସେ ହେଉଛନ୍ତି ପ୍ରଧାନ ରାଣୀ (Patararu) ❋ ❋ ତାଙ୍କର ମାତା । ତା'ପରେ ଜଣକ ପରେ ଜଣେ ସ୍ତ୍ରୀ ଲୋକ ସେହିପରି ସୁସଜ୍ଜିତ ହୋଇ ଆସିଲେ । ଯେଉଁମାନଙ୍କୁ ସେ ଅନ୍ୟ ସବୁ ତଳିଆ ରାଣୀ ବୋଲି ବୁଝାଇଦେଲେ, ମୋ ସ୍ତ୍ରୀ ଗଣତି କଲେ ପ୍ରାୟ ଷାଠିଏରୁ ସତୁରି ଭିତରେ । ସେମାନେ ସବୁ ଧାଡ଼ି ଧାଡ଼ି ହୋଇ ଚଟାଣରେ ବସି ତାଙ୍କ ଆଡ଼େ ଚାହିଁ ରହିଲେ ଏବଂ ସେ ରାଜପୁତ୍ର ଜରିଆରେ ପ୍ରଧାନ ରାଣୀଙ୍କ ସହ କଥାବାର୍ତ୍ତା କଲେ । କଥାବାର୍ତ୍ତା ସ୍ୱଭାବତଃ ଅତି ଅଳସ ଓ ଇତର ସାଧାରଣ । ଏକମାତ୍ର କୌତୂହଳଜନକ ଘଟଣା ହେଲା ଯେ ସାଧାରଣତଃ ଅଳ୍ପ ଦାମିକା ପୋଷାକ ପରିହିତା ଜଣେ ବାଳିକା ମୋ ସ୍ତ୍ରୀଙ୍କ ପାଦତଳେ ପଡ଼ିଯାଇ ଗୁଡ଼ାଏ କଥା କହିଗଲେ । ଯାହାର ଅର୍ଥ ହେଲା ଯେ, ସେ ହେଉଛନ୍ତି ରାଜାଙ୍କର କନିଷ୍ଠତମା ରାଣୀ । ତାଙ୍କୁ କେବଳ ରୁପାର ଅଳଙ୍କାର ଦିଆଯାଉଛି । ରେଶମ ବସ୍ତ୍ର ବା ଶାଲ ଦିଆଯାଉ ନାହିଁ । ଅନ୍ୟମାନଙ୍କ ପରି ତାଙ୍କୁ ସୁନା ଅଳଙ୍କାର ଓ ରେଶମ ବସ୍ତ୍ର ଦେବାକୁ ମହାରାଜାଙ୍କୁ ଆଦେଶ କରିବା ପାଇଁ ସେ ମୋ ସ୍ତ୍ରୀଙ୍କ ନିକଟରେ ଭିକ୍ଷା କଲେ । ସଙ୍ଗେ ସଙ୍ଗେ ଅନ୍ୟମାନେ ତାଙ୍କୁ ଅସମ୍ମାନଜନକ ଭାବରେ ସେଠାରୁ ଘୋଷାରି ନେଲେ ଏବଂ ସମ୍ଭବତଃ ପରେ ପରାଭବ ଦେଲେ । ଆମେ ବିଦାୟ ନେଇ ଆମ ଡେରାକୁ ଫେରିଆସିଲୁ । ପଚରାପଚରି କରି ବୁଝିଲି ଯେ ପୁରାତନ ପ୍ରଥା ଅନୁଯାୟୀ ଅଧା ଧର୍ମ ଓ ଅଧା ପରମ୍ପରାକ୍ରମେ ଆଳିର ମହାରାଜାଙ୍କୁ ପ୍ରତ୍ୟେକ ବର୍ଷ କୌଣସି ଏକ ଉତ୍ସବରେ ଏକ ନୂତନ ସ୍ତ୍ରୀ ଗ୍ରହଣ କରିବାକୁ ପଡ଼େ । ବର୍ତ୍ତମାନର ମହାରାଜାଙ୍କୁ ୭୦ ବର୍ଷ ବୟସ ଏବଂ ଭାରତରେ ପ୍ରଚଳିତ ରୀତି ଅନୁଯାୟୀ ସେ ଅତି ଶୀଘ୍ର ବିବାହିତ ଜୀବନ ଆରମ୍ଭ କରିଥିବାରୁ କ୍ରମେ କ୍ରମେ ଏତେଗୁଡ଼ିଏ ସ୍ତ୍ରୀ ରୁଣ୍ଡେଇ ପାରିଛନ୍ତି ଏବଂ ଏତେଗୁଡ଼ିଏ ସନ୍ତାନ ଲାଭ କରିଛନ୍ତି । ସେମାନଙ୍କର ଅବସ୍ଥା କ'ଣ ହେବ ସେ କଥା କେହି ଜାଣନ୍ତି ନାହିଁ କି ଜାଣିବାକୁ ଇଚ୍ଛା କରନ୍ତି ନାହିଁ । ତାଙ୍କ ଜମିଦାରୀ ଖୁବ୍ ବଡ଼ ହେଲେ ମଧ୍ୟ ଲାଭଦାୟକ ନୁହେଁ । କିନ୍ତୁ ଭାରତରେ ଜୀବନ ନିର୍ବାହ ଖୁବ୍ ଶସ୍ତା ଏବଂ ଲୋକେ ଏସବୁ ଯଥାର୍ଥ ବୋଲି ଭାବନ୍ତି । ଅନ୍ତତଃ ସେହିପରି ମୁଁ ଅନୁମାନ କଲି, ସେ ନିଜେ ଖୁବ୍ ଆନନ୍ଦିତ ଏବଂ ନିଜର ବଡ଼ ପରିବାର ଲାଗି ଗର୍ବିତ ବୋଲି ବୋଧ ହେଲା ।



---

❋ ଭାରତୀୟ ଗବେଷକମାନଙ୍କ ଜାଣିବା ପାଇଁ ମୁଁ କହିବି ଯେ ସେଗୁଡ଼ିକ କୋକଶାସ୍ତ୍ରର 'ଶତ ସଙ୍ଗମ' ପ୍ରକାରରୁ ଗୃହୀତ ହୋଇଥିଲା ।

❋❋ ଏହା ବୋଧହୁଏ ପାଟରାଣୀ ସ୍ଥଳରେ ଏକ ମୁଦ୍ରଣ ପ୍ରମାଦ (ସଙ୍କଳନ) ।

# ଊନବିଂଶ ପରିଚ୍ଛେଦ

## କଟକ : ୧୮୭୫-୭୭

କଟକରେ 'ଲଜ୍‌ଷ୍ଟାର ଅଫ୍ ଓଡ଼ିଶା' ନାମରେ ଆମ ମାସନ ସଂସ୍ଥା ※ ର ଏକ ଆବାସ ଥିଲା । ତାହାରି ଭିତରେ, କେବଳ ତାହାରି ପାଇଁ ଉଦ୍ଦିଷ୍ଟ ଏବଂ ବିଶେଷରୂପେ ନିର୍ମିତ ଏକ ସୁନ୍ଦର ଘର ଥିଲା ଏବଂ କେତେ ଜଣ ସଭ୍ୟ ଥିଲେ । ୧୮୫୮ରେ ସୁପୁରୁଷ କ୍ୟାପଟେନ୍ 'ଏନେରୀ ଓଏ'ଙ୍କ ତତ୍ତ୍ୱାବଧାନରେ ଥିବା କଲିକତାରେ 'ଲଜ୍‌ଷ୍ଟାର ଅଫ୍ ଦି ଇଷ୍ଟ, ସହ ସଂପୃକ୍ତି ପରଠାରୁ ମୁଁ ଆଉ କୌଣସି ଲଜ୍‌ରେ ଯୋଗ ଦେବାର ସୁଯୋଗ ନ ପାଇ କିପରି ବିମର୍ଷ ହୋଇ ପଡ଼ିଥିଲି; କିନ୍ତୁ ଓ୍ୟାକର, ଫକନର ଓ ଅନ୍ୟମାନଙ୍କ ସନିର୍ବନ୍ଧ ଅନୁରୋଧ କ୍ରମେ ମୁଁ କଟକ ଲଜ୍‌ରେ ଯୋଗ ଦେଇଥିଲି ଏବଂ ୧୮୭୫-୭୬ରେ ମାଷ୍ଟର ପଦବୀ ପାଇଥିଲି। ଏହି ଲଜ୍ ହେଉଛି ଏକ ଆନନ୍ଦମୟ, ଉତ୍ସବମୁଖର ଅନୁଷ୍ଠାନ । କାମ ପରେ ପରେ ସେଠାରେ ସର୍ବଦା ଭୋଜି ହୁଏ ଏବଂ ତା'ପରେ ପାନ ଓ ଗାନ ଚାଲେ, ଯେଉଁଥିରେ ବୁଢ଼ା ଫକ୍‌ନର ସସମ୍ମାନ ସଭାପତିତ୍ୱ କରନ୍ତି । ଘଟଣାକ୍ରମେ ମୋତେ ଏହି ଲଜ୍‌ରୁ ବିଦାୟ ନେବାକୁ ପଡ଼ିଲା, କାରଣ ଅନେକ କପର୍ଦ୍ଦକଶୂନ୍ୟ, ଅନାଡ଼ି, ଫକ୍‌କଡ଼ ମିଶ୍ରଜାତୀୟ କିରାଣି, ଅଧଃପତିତ ୟୁରୋପୀୟ ଏବଂ ଅନ୍ୟାନ୍ୟ ଅନେକ ଯେଉଁମାନେ କି ଭାରତର ସବୁ ବଡ଼ ବଡ଼ ସ୍ଥାନମାନଙ୍କରେ ଭର୍ତ୍ତି ହୋଇଥାଆନ୍ତି, ଆସି ସେ ଲଜ୍‌ରେ ମିଶିବାକୁ ଆରମ୍ଭ କଲେ । ସେମାନେ ବାରମ୍ବାର ମୋ ଘରେ ପହଞ୍ଚି ମାସୋନୀୟ ଭ୍ରାତୃତ୍ୱର ପବିତ୍ର ବନ୍ଧନର ଦୁହାଇ ଦେଇ କିଛି ସାହାଯ୍ୟ କିମ୍ବା ଭଲ ଚାକିରି ପ୍ରାର୍ଥନା କରିବାକୁ ଲାଗିଲେ । ତାହା କ୍ରମେ ଏତେ ବିରକ୍ତିକର ହୋଇଉଠିଲା ଯେ ମୁଁ ମାସନ ସଂସ୍ଥାର ସକ୍ରିୟ ସହଯୋଗିତାରୁ ବାଧ ହୋଇ ଅପସରିଗଲି ।

ଜେ. ଏଚ୍. ଓ୍ୟାକରଙ୍କ (୧) ବିଷୟରେ ମୋର ପୂର୍ବରୁ କହିବା ଉଚିତ ଥିଲା । ସେ

---

※ ପରସ୍ପରକୁ ସାହାଯ୍ୟ କରିବା ପାଇଁ ଭ୍ରାତୃତ୍ୱମୂଳକ ଏକ ଆନ୍ତର୍ଜାତିକ ଗୁପ୍ତସଂସ୍ଥା ବା ସମିତିର ନାମ ମାସନବ । ଫ୍ରିମ୍ୟାସନ । କଟକରେ ତାହାର ଏକ ଶାଖା ଥିବାର ଏଠାରେ ଉଲ୍ଲେଖ କରାଯାଉଛି । ଅଭିଧାନରେ ତାହାର ବର୍ଣ୍ଣନା ଏହିପରି—One of a secret society of so called speculative masons united in lodges for social enjoyment and mutual assistance and laying dubious claims to a connection with the medieval organisations of free operative mansons (ସଙ୍କଳକ)

(୧) ହୁକି ଓ୍ୱାକର ନାମରେ ସେ ସବୁଠାରେ ପରିଚିତ ଥିଲେ । ଉତ୍ତରପୁରୁଷମାନଙ୍କୁ ଏହା ଜଣାଇ ଦେବା ଆବଶ୍ୟକ ଯେ, 'ଟିକ୍‌ସ ଦି ମାରାଇନ 'ଜିମ୍ କୋ'କିମ୍ବା ସେହିପରି ଅନ୍ୟାନ୍ୟ ପଦ ପରି 'ହୁକିଓ୍ୱାକର' ହେଉଚି ଚତୁର୍ଥ ବା ପଞ୍ଚମ ଦଶକରେ ରାସ୍ତାଘାଟରେ ବୁଲୁଥିବା ପିଲାଙ୍କ ତୁଣ୍ଡରେ ବହୁ ବ୍ୟବହୃତ କୌଣସି କାଳ୍ପନିକ ବ୍ୟକ୍ତିର ନାମ ବିଶେଷ । ସେ ବର୍ତ୍ତମାନ ଲୋକ ସ୍ମୃତିରୁ ସମ୍ପୂର୍ଣ୍ଣ ବିସ୍ମୃତ ବୋଧହୁଏ ।

କଟକ ସମାଜର ଜଣେ ମୁଖ୍ୟ ସଭ୍ୟ । ସେ ଥିଲେ ସୁପରିଣ୍ଟେଣ୍ଡେଣ୍ଟ ଇଂଜିନିଅର ବା ପୂର୍ତ୍ତ ବିଭାଗର ବିରାଟ ଓ ଅତ୍ୟାବଶ୍ୟକୀୟ ଜଳସେଚନ ଶାଖାର ମୁଖ୍ୟ ପଦାଧିକାରୀ । ସେ ଯେଉଁ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ, ତାହାକୁ ସେ ଉଇଣ୍ଡିୟୂଲସ୍ (Weendiweels) ବୋଲି ଉଚ୍ଚାରଣ କରନ୍ତି; କିନ୍ତୁ ମାନଚିତ୍ରରେ ତାହା କେଲସୋ ନିକଟରେ ଉଇଣ୍ଡିୱାଲ (Windywall) ବୋଲି ଜଣାପଡ଼େ । ସେ ସ୍କଟଲାଣ୍ଡର ନିମ୍ନାଞ୍ଚଳ ବାସୀଙ୍କର ଅବିକଳ ପ୍ରତିରୂପ; ଇଲିଅଟ ଓ ଆର୍ମଷ୍ଟ୍ରଙ୍ଗ୍ ସମ୍ପର୍କୀୟ ସୀମାନ୍ତ ପ୍ରଚଳିତ ବହୁ କାହାଣୀରେ ପରିପୂର୍ଣ୍ଣ, ସବଳକାୟ, ଦୃଢ଼ଚେତା ଓ ଚତୁର ବ୍ୟକ୍ତି । ସାହିତ୍ୟିକ ବା ବୌଦ୍ଧିକ ବିଷୟରେ ତାଙ୍କର ପ୍ରବଳ ଆଗ୍ରହ ଏବଂ ଯେ କୌଣସି ସମ୍ଭାବ୍ୟ ବିଷୟରେ ଯୁକ୍ତିତର୍କ କରିବାରେ ଖୁବ୍ ଉତ୍ସାହୀ । ଅନେକ ଆନନ୍ଦମୁଖର ଦିନ ମୁଁ ତାଙ୍କ ସହ କୌଣସି ନଦୀ ବା କେନାଲରେ କୌଣସି ଏକ ଛୋଟ ଷ୍ଟିମରରେ ଉଜ୍ଜ୍ୱଳ ସୂର୍ଯ୍ୟାଲୋକରେ ମୁହଁରେ ଚୁରୁଟ ଧରି ଯେ କୌଣସି ବିଷୟରେ ଯୁକ୍ତିତର୍କ ଓ ଆଲୋଚନା କରି କଟାଇ ଦେଇଚି । ତାଙ୍କରିଠାରୁ କିମ୍ବା ତାଙ୍କ ଡାକନାମରୁ ଫଲସ୍‌ପଏଣ୍ଟ (୧) ସ୍ଥାନଟିର ନାମକରଣ ହୋଇଛି । କେନ୍ଦ୍ର ଓଡ଼ିଶାରେ ଗୋଟିଏ ବନ୍ଦର ପ୍ରତିଷ୍ଠାର ଆବଶ୍ୟକତା ଯେତେବେଳେ ଉପଲବ୍ଧ ହେଲା ରେଭେନ୍‌ସା, ୱାକର ଓ କଲେକ୍ଟର ମ୍ୟାକଫରସନ ଛୋଟ ଷ୍ଟିମରମାନଙ୍କରୁ ଗୋଟିକର ଫଲସ୍‌ପଏଣ୍ଟ ଗଲେ ଏବଂ କିଛି ପରିଶ୍ରମ ପରେ ବନ୍ଦର ରକ୍ଷକ ଓ ଆମଦାନୀ କାର୍ଯ୍ୟାଳୟ ପାଇଁ ଉପଯୁକ୍ତ ଜାଗା ପାଇଲେ । ଜାଗାଟିରେ କୌଣସି ବସତି ନ ଥିବାରୁ କିଛିନାମ ମଧ ନ ଥିଲା ଏବଂ ସେମାନେ ଯା ପାଇଁ ଏକ ନାମ ଖୋଜି ବସିଲେ । ଅନେକ ନାମ ବଛାଗଲା ଏବଂ ବାତିଲ ହେଲା । ଶେଷରେ ମ୍ୟାକ୍‌ଫରସନ୍ କହିଲେ— "ବୃଦ୍ଧ ହୁକି ୱାକରଙ୍କ ନାମାନୁଯାୟୀ ଏହାର ନାମ ହୁକିଟୋଲା ରଖାଯାଉ । ସେଇ କଥାଟା ରହିଲା ଏବଂ ଦଳଟିଯାକ ନାମକରଣ ଉତ୍ସବ ପାଇଁ ବୋତଲେ ସାମ୍ପେନ ମଦ୍ୟ ପିଇ ପବିତ୍ର ଭାବରେ ସେ ଜାଗାଟିର ନାମକରଣ କରିଦେଲେ । ❋ ଯେଉଁ ଦେଶୀୟ କେଉଟ ଓ ନାବିକମାନେ ଏଇ ନିର୍ଜନ ଜଳଭୂମିକୁ ଆସନ୍ତି ସେମାନେ ଯଥାଶୀଘ୍ର ଏ ନାଁଟିକୁ ମନେ ରଖିଦେଲେ ଏବଂ ତାହା ସରକାରୀ ଭାବରେ ସ୍ୱୀକୃତ ହୋଇଗଲା ।

---

(୧) ଫଲସ୍‌ପଏଣ୍ଟ (ଭ୍ରାନ୍ତସ୍ଥଳ)କୁ ଏପରି କୁହାଯିବାର କାରଣ ଏହାର ପ୍ରାୟ ଚାଳିଶ ମାଇଲ ଉତ୍ତରକୁ ବ୍ରାହ୍ମଣୀନଦୀର ମୁହାଣରେ ଥିଲା ପଏଣ୍ଟ ପାମିରା । ବଙ୍ଗୋପସାଗରରେ ଯାଉଥିବା ଜାହାଜଗୁଡ଼ିକ ପାଇଁ ଏହା ଥିଲା ଏକ ଜଣାଶୁଣା ଚିହ୍ନିତ ସ୍ଥଳ । ମହାନଦୀ ମୁହାଣରେ ଥିବା ଏହି ସ୍ଥାନଟି ବେଳେ ବେଳେ ପଏଣ୍ଟ ପାମିରା ଭ୍ରାନ୍ତି ସୃଷ୍ଟି କରେ ଏବଂ ଫଳରେ ଜାହାଜ ବାଟବଣା ହୋଇ ଭାଙ୍ଗେ । ତେଣୁ ଏହା ଫଲସ୍‌ପଏଣ୍ଟ ପାମିରା ବୋଲି କଥିତ ହୋଇ ଶେଷରେ ଫଲସ୍‌ପଏଣ୍ଟ ହୋଇଗଲା ।

(❋) ସେମାନଙ୍କ ଚିନ୍ତାଧାରା ଯାହା ହେଉନା କାହିଁକି ନାମଟି କିନ୍ତୁ ତାହାଠାରୁ ଅଧିକ ଦେଶୀୟ । କାରଣ ଓଡ଼ିଆରେ ହୁକି ଶବ୍ଦର ଅର୍ଥ ଉଇମାନଙ୍କ ଘର ଏବଂ ଟୋଲା ଶବ୍ଦ ଭାରତର ସର୍ବତ୍ର ସାଧାରଣତଃ ଗ୍ରାମମାନଙ୍କର ନାମକୁ ବୁଝାଏ । ମୂଳତଃ ଏହାର ଅର୍ଥ ହାଟ— 'ତୁଲ' ଧାତୁର ଯାହାର ଅର୍ଥ ଓଜନ କରିବା ।

କିନ୍ତୁ କଲିକତାର ବଡ଼ବଡ଼ିଆମାନଙ୍କର ଏହାର ସୃଷ୍ଟି ସମ୍ପର୍କରେ କିଛି ଧାରଣା ନ ଥିଲା । କେତେ ବର୍ଷପରେ ପ୍ରସିଦ୍ଧ ଡବ୍ଲ୍ୟୁ, ହଣ୍ଟର ତାଙ୍କର ଗେଜେଟିଅର ସଙ୍କଳନ କଲାବେଳେ ଏହି ନାମ ବ୍ୟବହୃତ ହେଉଥିବାର ଦେଖିଲେ ଏବଂ ତାକୁ ଏକ ଦେଶୀୟ ଶବ୍ଦ ମନେକରି ଭାରତୀୟ ନାମଗୁଡ଼ିକ ଯେଉଁ ବୈଜ୍ଞାନିକ ପ୍ରଣାଳୀରେ ଉଚ୍ଚାରଣ କରାଯାଏ । ସେହିପରି ଠିକ୍ ଉଲ୍ଲେଖ କଲେ—ହୁକିଟୋଲା ।

ଫଲସ୍‌ପଏଣ୍ଟ ଓ ତା'ର ଇତିହାସ ସମ୍ପର୍କରେ ଅଧିକ କିଛି ଲେଖିବା ଆବଶ୍ୟକ । ମହାନଦୀ ମୁହାଣରେ ଥିବା ଏହା ଏକ ଲମ୍ବ ବାଲୁକାମୟ ଚଡ଼ାଭୂମି । ବଙ୍ଗୋପସାଗରର ସାମୁଦ୍ରିକ ସ୍ରୋତ ଭାରତର ଉପକୂଳତମାମ ଜୋରରେ ଉତ୍ତର ଆଡୁ ପ୍ରବାହିତ ହୁଏ । ତେଣୁ ଏହି ଉପସାଗରରେ ପଡ଼ିଥିବା ସବୁ ବଡ଼ ନଦୀର ଗତି ଉତ୍ତର ଆଡୁ ଠେଲି ହୋଇ ଆସୁଥିବା ବାଲିର ବନ୍ଧ ଦ୍ୱାରା ବାଧାପାଏ । ବର୍ଷକୁ ବର୍ଷ ଏହି ପ୍ରତିବନ୍ଧ ବଢ଼ି ଲାଗିଥାଏ । ଯେ ପର୍ଯ୍ୟନ୍ତ ନଦୀ ଏହି ବନ୍ଧକୁ ଖଣ୍ଡ ଖଣ୍ଡ ଦ୍ୱୀପଭଳି କାଟି ଆହୁରି ଉତ୍ତରକୁ ନୂଆ ମୁହାଣ ସୃଷ୍ଟି ନ କରିଛି । ୧୮୬୬ରେ ବ୍ୟାପକ ଭୟଙ୍କର ଦୁର୍ଭିକ୍ଷ ହେଲା । ସେତେବେଳେ ଜାହାଜମାନଙ୍କରୁ ମାଲ ଖଲାସ କରିବାପାଇଁ କୌଣସି ବନ୍ଦର ବା ଜାହାଜ ଲାଗିବା ସ୍ଥଳ ନ ଥିବାରୁ ଦୁରବସ୍ଥା ଖୁବ୍ ବଢ଼ିଯାଇଥିଲା । ଏହି ଉପକୂଳ ତମାମ ପୋତାଶ୍ରୟର ବଡ଼ ଅଭାବ । ପୁରୀ ହେଉଛି ତୀରଦେଶର ଏକ ଖୋଲା ସ୍ଥାନ, ମାତ୍ର ଯେଉଁଠାରେ ମାଲ ବୋଝେଇ ବା ଖଲାସ କରିବା ସର୍ବଦା ସମ୍ଭବ ବା ନିରାପଦ ନ ଥିଲା ଏବଂ ନଦୀ ମୁହାଣଗୁଡ଼ିକର ଯଥାଯଥ ଉନ୍ନତି ମଧ ହୋଇନଥିଲା । କିନ୍ତୁ ଯନ୍ତ୍ରୀମାନେ ଫଲସ୍‌ପଏଣ୍ଟ ଏବଂ ଧାମରାଠାରେ ବନ୍ଦର ହୋଇପାରେ ବୋଲି ଆଖି ରଖିଥିଲେ । ଦୁର୍ଭିକ୍ଷ କାମ ସରିବା ମାତ୍ରେ ସେମାନେ ଫଲସ୍‌ପଏଣ୍ଟରେ କାମ ଆରମ୍ଭ କଲେ । କଟକଠାରୁ ମାତ୍ର ପଚାଶ ମାଇଲ ଦୂର ମହାନଦୀର ପ୍ରଧାନଧାର କୂଳରେ ଅବସ୍ଥିତ ମାର୍ଶାଘାଇକୁ କେନାଲ ଖୋଲା ହୋଇଛି । ସେଠାରୁ ପ୍ରାୟ ଦଶ ମାଇଲ ନଦୀରେ ଯାଇ ଗୋଟିଏ ନାଳୀ ମଧଦେଇ ନଦୀଜଳ ଦ୍ୱାରା ସୃଷ୍ଟି ଏକ ବିରାଟ ଅଗଭୀର ହ୍ରଦ ମଧରେ ପହଞ୍ଚିବ । ଏହା ପ୍ରାୟ ତିନି ଚାରି ମାଇଲ ଚଉଡ଼ା ଏବଂ ଚାରିପଟରେ ଥିବା ନରମ କାଦୁଅ ମାଟିର ଟାପୁମାନଙ୍କରେ ହେନ୍ତାଳ ବାଉଁଶ ଓ ଲମ୍ବ ହୋଇ ମାଡ଼ିଥିବା ଲତାର ଗହଳ ବଣ । ଏହି ହ୍ରଦ ଓ ସମୁଦ୍ର ମଧରେ ଲମ୍ବ ଅନୁଚ୍ଚ ବାଲିଚଡ଼ାର ଉତ୍ତରକୁ ଥିଲା ପୋତାଶ୍ରୟ, ଯଦି ତାକୁ ପୋତାଶ୍ରୟ କୁହାଯାଏ । ଚଡ଼ାକୁ ଲାଗିଥିବା ହ୍ରଦର ଏହି ଅଂଶକୁ ଜାହାଜ ଆସିପାରିବା ପାଇଁ ଏଠାରେ ଗଭୀରତା ଅଛି—ପ୍ରାୟ ଷୋହଳରୁ କୋଡ଼ିଏ ଫୁଟ ପର୍ଯ୍ୟନ୍ତ । ଏହି ଚଡ଼ା ଉପରେ ଥିଲା ପୋତାଶ୍ରୟ ରକ୍ଷକଙ୍କର ଘର, କାର୍ଯ୍ୟାଳୟ ଏବଂ କୁଲି, ନାବିକ ଓ ଅନ୍ୟମାନଙ୍କ କୁଡ଼ିଆ । ମଝିରେ ଥିଲା ପର୍ଯ୍ୟବେକ୍ଷଣ ପାଇଁ ବ୍ୟବହୃତ ହେଉଥିବା ଖୁବ୍ ଉଚ୍ଚ ପତାକାସ୍ତମ୍ଭ । ଏହି ସୁଦୃଶ୍ୟ ଉପନିବେଶଟି ଥିଲା ହୁକିଟୋଲା । ତୀରର ଖୁବ୍ ନିକଟରେ ବିରାଟ ଫ୍ଲାଟଟିଏ (ତାକୁ ସେମାନେ ଯେପରି କହୁଥିଲେ) ନଙ୍ଗର ପକେଇ ଥିଲା । ନିମ୍ନାଂଶେ ଚଟକା ଥିବା ଏ ଧରଣର ବଡ଼ ମାଲବାହୀ ନୌକାର ଦୁଇପଟେ ଥିଲା ଧାଡ଼ିଧାଡ଼ି କୋଠରି, ଚଉଡ଼ା ଡେକ୍, ରୋଷେଇଶାଳ, ସ୍ନାନାଗାର ଓ ଅନ୍ୟାନ୍ୟ ସୁବିଧା । ଯାର ନାଁ ଥିଲା ଘାଜିପୁର ଏବଂ ସପ୍ତାହରେ ଥରେ ଆସୁଥିବା ବ୍ରିଟିଶ ଇଣ୍ଡିଆ ଷ୍ଟିମରକୁ ଅପେକ୍ଷା କରୁଥିବା ଯାତ୍ରୀଙ୍କ ପାଇଁ

ଏହା ଥିଲା ଏକ ଭାସମାନ ହୋଟେଲ । ତିନିଚାରୋଟି ଫରାସୀ ଜାହାଜ ଓ ଅନେକଗୁଡ଼ିଏ ଦେଶୀୟ ନୌକା ମରିସସ୍ ନେବାପାଇଁ ଚାଉଳ ବୋଝେଇ କରୁଥିଲେ । ପ୍ରାୟ ଦୁଇ ମାଇଲ ଦୂରରେ ଅନ୍ୟ ଚଡ଼ାମାନଙ୍କ ଅପେକ୍ଷା ସୁଦୃଢ଼ ଏକ ଦ୍ୱୀପରେ ପଥର ନିର୍ମିତ ଆଲୋକସ୍ତମ୍ଭ ଦଣ୍ଡାୟମାନ । ତାହା କଟକ ଦୁର୍ଗରୁ ନିଆ ମାକଡ଼ା ପଥରରେ ତିଆରି । ଏହା ଥିଲା ଜଣେ ଅକୁଳୀନ, କିନ୍ତୁ ସହୃଦୟ ଅବସରପ୍ରାପ୍ତ ଆଇରିଶ ଜାହାଜ କ୍ୟାପଟେନ ଶ୍ରୀଯୁକ୍ତ ଗିଅରିଙ୍କ ଦାୟିତ୍ୱରେ (ମୋ ସ୍ତ୍ରୀଙ୍କୁ ମୁଁ ଚିଡ଼ାଉଥିଲି ସେ ତାଙ୍କ ଭାଇ ସମ୍ବନ୍ଧ ହେବେ ବୋଲି କହି) । ସେ ସେହି ଅବସାଦକର ନୀରବତା ମଧ୍ୟରେ ରହି ତାଙ୍କ ସ୍ତ୍ରୀ ଓ ନ'ଟି ସନ୍ତାନଙ୍କୁ ନେଇ ରହୁଥିଲେ । ଆଲୋକ ସ୍ତମ୍ଭର ଚାରିପଟେ କ୍ୟାପଟେନ ଗିଅରିଙ୍କ ରୋପିତ ନଡ଼ିଆ ଗଛର ଘଞ୍ଚ ଜଙ୍ଗଲ । ସନ୍ଧ୍ୟା ସମୟରେ ଆଲୋକ ସ୍ତମ୍ଭ ଉପରୁ ପ୍ରାୟ ମାଇଲିଏ ବ୍ୟାପୀ ଜଙ୍ଗଲ ଦେଖାଯାଏ ଏବଂ ଅନେକ ସମୟରେ ମଝିରେ ମଝିରେ ଥିବା ଖାଲି ସ୍ଥାନମାନଙ୍କୁ ବାଘ ଛପି ଛପି ପାର ହେଉଥିବାର ମଧ୍ୟ ଦୃଷ୍ଟିଗୋଚର ହୁଏ । କ୍ୟାପ୍‌ଟେନ୍ ଗିଅରି ଉଚ୍ଚାପାଚେରି ମଧ୍ୟରେ ରଖିଥିବା ଗୋରୁଙ୍କ ସନ୍ଧାନରେ ସେମାନେ ଆସନ୍ତି । ବାଘମାନେ ଏ ପାଚେରିକୁ ଡେଇଁପଡ଼ି ଗୋରୁ ମାରି ଦେଉଥିଲେ—ଅନ୍ତତଃ ତାହାହିଁ ସେ କହୁଥିଲେ; କିନ୍ତୁ ଜାହାଜର କାପ୍ତାନମାନେ କଳ୍ପନାର ଜାଲ (୧) ବୁଣିବାର ଅଭ୍ୟସ୍ତ । ପୋତାଶ୍ରୟର ଜାହାଜମାନଙ୍କୁ ଲହୁଣୀ ବିକି ସେ ନିଜର ଯତ୍‌କିଞ୍ଚିତ୍ ସମ୍ବଳ ବୃଦ୍ଧି କରୁଥିଲେ ।

କିନ୍ତୁ ଫଲସ୍‌ପଏଣ୍ଟର ପ୍ରକୃତ ନାୟକ ଥିଲେ କ୍ୟାପ୍‌ଟେନ ହ୍ୟାରିସ। ସେ ହିଁ ଥିଲେ ଫଲସ୍‌ପଏଣ୍ଟ ଏବଂ ସେ ମଲାପରେ ଫଲସ୍‌ପଏଣ୍ଟ ଆଉ ସେପରି ଦିଶିଲା ନାହିଁ । ସେ ଏହାକୁ ଗଢ଼ିଥିଲେ, ବଢ଼େଇଥିଲେ ଏବଂ ଭଲ ପାଉଥିଲେ । ଉପକୂଳ ତମାମ କାମ କରୁଥିବା ବହୁଲୋକଙ୍କ ଭିତରେ ଏହି ବୃଦ୍ଧ ଜାହାଜ ମାଲିକ ଜଣେ ଯେ ତାଙ୍କ ବୟସବେଳେ ସୁଏଜ ଓ କେପ୍‌ଠାରୁ ହଂକଂ ଓ ବାଟାଭିଆକୁ ଯାଇ ଭାରତୀୟ ସାଗର ସମୂହ ପାର ହୋଇଛନ୍ତି । ବର୍ତ୍ତୁଳ ଶରୀର, ଲାଲ ମୁଖ ଓ ବଡ଼ ପାଟି ବିଶିଷ୍ଟ ଏହି ଜାହାଜ ମାଲିକ ହାତକାମରେ ଚତୁର, ଜରୁରୀ ଅବସ୍ଥା ପାଇଁ ପ୍ରସ୍ତୁତ, ମାଛ ପରି ପାନପ୍ରିୟ ଓ କୁହାଳିଆ; ବଚନ କର୍କଶ ହେଲେ ମଧ୍ୟ ଅତ୍ୟନ୍ତ ଭଦ୍ର, ଉପକାରୀ, କଠୋର ପରିଶ୍ରମୀ ଏବଂ ତାଙ୍କ ପଦପାଇଁ ସଂପୂର୍ଣ୍ଣ ଉପଯୁକ୍ତ । ତାଙ୍କ ତଳେ ବ୍ଲାକ୍ ନାମରେ ଜଣେ ସଦାଜାଗ୍ରତ, ସ୍ୱଳ୍ପଭାଷୀ ବୃଦ୍ଧ ନାବିକ ଥିଲେ ଏବଂ ସେ ଦୁହେଁ ହୁଙ୍କିଡୋଙ୍ଗାର ସେ ନିର୍ଜନ ଅବସାଦକର ସ୍ଥଳରେ ରହି ତାକୁ ଉନ୍ନତ ଓ ସୁନ୍ଦର କରିବା ଚେଷ୍ଟାରେ ସେମାନଙ୍କ ଜୀବନ ବ୍ୟୟ କରିଥିଲେ ।

କ୍ୟାପ୍‌ଟେନ ହ୍ୟାରିସଙ୍କ ସହ ମୋର ପ୍ରଥମ ପରିଚୟ ଘଟଣା ଉଲ୍ଲେଖଯୋଗ୍ୟ । ରେଭେନ୍‌ସା ଛୁଟିନେଇ ଯାଉଥିବାବେଳେ ମୁଁ ତାଙ୍କସହ ଫଲସ୍‌ପଏଣ୍ଟ ଯାଇଥିବା ବେଳର

---

(୧) ଥରେ ମୁଁ ବାଘମାନଙ୍କୁ ସେଠି ଦେଖିଚି; କିନ୍ତୁ ଗୋରୁ ଅଡ଼ାର ପାଚେରିର ଉଚ୍ଚତା ପ୍ରାୟ ୮ ଫୁଟ, ବାଘ ଯେ ଏତେ ଉଚ୍ଚ ପାଚେରି ଡେଇଁ ପାରିବ ନାହିଁ ସେ କଥା ମୁଁ ସଠିକ କହୁ ନାହିଁ; କିନ୍ତୁ ଗୋରୁ ପୂର୍ଣ୍ଣାବୟବ ଗାଈକୁ ପଂଝାରେ ଧରି ସେ ପୁଣି ପଳେଇ ଯାଇପାରେ ବୋଲି ମୁଁ ମନେ କରୁ ନାହିଁ ।

କଥା। ଆମ ଷ୍ଟିମର ସେଠାରେ ସନ୍ଧ୍ୟାରେ ପହଞ୍ଚିଲା । ସେଇ ବିରକ୍ତିକର ଲେଗୁନ (ହ୍ରଦ)ରେ ଆମେ ଲଙ୍ଗର ପକାଇଲୁ । ଅନତିଦୂରରେ ଥିଲା 'ଘାଜିପୁର' ଏବଂ ତା' ଡେକ୍ ଉପରେ ପଲର ଛାତତଳେ ଟେବୁଲ ନିକଟରେ ଜଣେ ବ୍ୟକ୍ତି ବସିଥିଲେ। ମୁଣ୍ଡ ଉପରେ ଝୁଲୁଥିବା ଜାହାଜର ଲଣ୍ଠନଟିର କ୍ଷୀଣ ଆଲୋକରେ ତାଙ୍କର ଛାୟାମୂର୍ତ୍ତି ଦେଖାଯାଉଥିଲା । ଟେବୁଲ ଉପରେ ଥିଲା ପାଣି ବୋତଲ ଓ ଗ୍ଲାସ ଏବଂ ଟେବୁଲ ତଳେ ଛୋଟ ମଦ ପିମ୍ପାଟିଏ । ଯାନ୍ତ୍ରିକ ଖେଳନାପରି ନିୟମିତ ବ୍ୟବଧାନରେ ସେ ବ୍ୟକ୍ତି ନଇଁ ପଡୁଥାନ୍ତି। ପିମ୍ପାର ମୁହଁ ଖୋଲୁଥାନ୍ତି; ମଦ୍ୟ ଚାଲିଆସୁଥାଏ ଗ୍ଲାସକୁ । ତା'ପରେ ସେ ଗ୍ଲାସରେ ପାଣିଭରି ପିଉଥାନ୍ତି । ଅଳ୍ପକିଛି ସମୟର ବିଶ୍ରାମ ମଝିରେ ସେ ତମାଖୁନଳୀର ଧୂମ ପାନ କରି ପୁଣି ସେଇ କାମ ଚାଲୁ କରନ୍ତି । ଆମେ ସେଇକ୍ଷଣ ଷ୍ଟିମରରେ ଭୋଜନ ଶେଷ କରିଥିଲୁ ଏବଂ ଡେକ୍‌ରେ ବସି ଚିରୁଟ ଟାଣୁଥିବାବେଳେ 'ଘାଜିପୁର'ରେ ଥିବା ସେହି ଗୋଟିକିଆ ମୂର୍ତ୍ତିଟାର କାମକୁ ଚାହିଁ ଆମୋଦ ପାଉଥିଲୁ। ସେହି ସମୟରେ ଡଙ୍ଗାଟିଏ ଆମ ପାଖକୁ ଆସି ଜଣାଇଲା ଯେ, ଶ୍ରୀଯୁକ୍ତ ଫକ୍‌ନର ଯଦି ଷ୍ଟିମରରେ ଥାଆନ୍ତି ତେବେ କ୍ୟାପ୍‌ଟେନ ହ୍ୟାରିସ୍ ତାଙ୍କୁ ସାକ୍ଷାତ କରିବାକୁ ଚାହୁଁଛନ୍ତି । ଫକ୍‌ନର ବୁଢ଼ା ସେ ଡଙ୍ଗାରେ ବାହାରି ଗଲେ । କିଛି ସମୟ ପରେ 'ଘାଜିପୁର' ନୌକାର ଡେକ୍ ଉପରେ ତାଙ୍କୁ ବାହାରିବାର ଦେଖିଲୁ । ସେଇଠି ସେ ଗୋଟିକିଆ ମୂର୍ତ୍ତିଟିର ବିପରୀତ ପାଖରେ ଚୌକିଟି ଅଧିକାର କଲେ ଏବଂ ଏଥର ପିମ୍ପାରୁ ଦୁଇଟି ଗ୍ଲାସ ଭର୍ତ୍ତିହେଲା ଏବଂ ନିୟମିତ ଭାବରେ ଖାଲି ହେବାକୁ ଲାଗିଲା । ଷ୍ଟିମରରେ ଥାଇ ଆମେ ଏ ନୂତନ ଘଟଣାକୁ ଯେପରି ବଧାଇ ଜଣାଇଲୁ ତା'ର ଅଟ୍ଟହାସ୍ୟ ଧ୍ୱନି ବୋଧହୁଏ ସେମାନଙ୍କୁ ଶୁଣାଗଲା; କାରଣ ସଙ୍ଗେ ସଙ୍ଗେ ଗୋଟାଏ ପରଦା ପଡ଼ିଗଲା ଏବଂ ସେମାନେ ଆମ ଦୃଷ୍ଟିପଥରୁ ଲୁଚିଗଲେ । ପରଦିନ ଆମ ସମସ୍ତଙ୍କ ଆଗରୁ ଫକ୍‌ନର ଓ ହ୍ୟାରିସ୍ ଉଠିଲେ—ବୋଧହୁଏ ରାତି ତମାମ ବସିଥିଲେ, ସମୁଦ୍ରରେ ବୁଡ଼ିପଡ଼ିଲେ ଏବଂ ସଜ ଗୋଲାପୀ ଚେହେରା ଧରି ପ୍ରାତଃ-ଭୋଜନକୁ ଆସିଗଲେ ।

ସେ ଖୁବ୍ ପିଉଥିଲେ ମଧ୍ୟ କଠୋର ପରିଶ୍ରମ କରୁଥିଲେ। ସରକାର ସ୍ୱାଭାବିକ ରୀତିରେ ଫଲସ୍‌ପଏଣ୍ଟଠାରେ ବନ୍ଦର ଅଫିସର ନିର୍ମାଣ ମଞ୍ଜୁର କରିଦେଇ ଏବଂ ହ୍ୟାରିସ ଏବଂ ତାଙ୍କ କର୍ମଚାରୀମାନଙ୍କୁ ନିଯୁକ୍ତ କରିଦେଇ ଭାବିଦେଲେ ଯେ, ତାଙ୍କର ଯାହା କରିବାର କଥା କରିଦେଲେ ଏବଂ ଆଉ ଅଧିକ ଅର୍ଥ ମଞ୍ଜୁର କରିବାକୁ ମନାକରିଦେଲେ । ବହୁ ଆବେଦନ, ନିବେଦନ ଓ ବାରମ୍ବାର ଚାପ ପକାଇ ଦରକାରୀ ଘରବାଡ଼ି, ଜେଟି, ବୟାଁ ଓ ଅନ୍ୟାନ୍ୟ ଆବଶ୍ୟକତା ପାଇଁ ରେଭେନ୍ୟୁ ଅଳ୍ପକିଛି ଅର୍ଥ ମଞ୍ଜୁର କରାଇପାରିଲେ; ଯାହାକି ପ୍ରକୃତ ଆବଶ୍ୟକତା ଠାରୁ ବହୁତ କମ୍ । ସେହି ସୀମିତ ସମ୍ବଳ ମଧ୍ୟରେ ହ୍ୟାରିସ ଯେ କେତେ କରିପାରିଛନ୍ତି ତାହାହିଁ ଆଶ୍ଚର୍ଯ୍ୟର କଥା । ସମୟେ ସମୟେ ସେ ଅନେକ କୌଶଳରେ ନାମ ହାସଲ କରୁଥିଲେ, ଯେଉଁଟା କି କେବଳ ସରକାରଙ୍କ କୃପଣତା ପାଇଁ ତାଙ୍କୁ · କରିବାକୁ ପଡୁଥିଲା । ଥରେ ଅତି ଜୀର୍ଣ୍ଣାବସ୍ଥା ହେତୁ କୌଣସି କାମପାଇଁ ଅନୁପଯୁକ୍ତ ହେବାରୁ କଲିକତା ବନ୍ଦର ସଂସ୍ଥା ଗୋଟିଏ ପୁରୁଣା ମାଲବାହୀ ନୌକାକୁ ପରିତ୍ୟାଗ କରିଦେଲେ । ତାହା ଗୋଟିଏ ବାତ୍ୟାରେ ଭାସିଆସି ଫଲସ୍ ପଏଣ୍ଟଠାରେ ଲାଗିଲା । ହ୍ୟାରିସ୍ ସାଙ୍ଗେ ସାଙ୍ଗେ ଏହା ବୁଡ଼ିଗଲା ବୋଲି ଖବର ପଠାଇଦେଇ

ଅବିଳମ୍ବେ ତା'କୁ ଭାଙ୍ଗିଦେଲେ ଏବଂ ତା'ର କାଠ ଓ ଲୁହା ଅଂଶ ଛେଟି ଓ ନିଜ ଅଫିସର ଚଟାଣ ନିର୍ମାଣରେ ଲଗାଇ ଦେଲେ । ଏଇ ଘଟଣା ଯଥାସମୟରେ ସରକାରଙ୍କ କାନରେ ପଡ଼ିଲା । କେତେ ମାସପରେ ଚିଠି ଆସିଲା ଯେ, ବୁଡ଼ିଯାଇଥିବା ନୌକାଟି ନିଲାମରେ ବିକ୍ରି ହୋଇ ଲବ୍‌ଧଧନ ଆମଦାନୀ ବିଭାଗରେ ପୈଠ ହେଉ । ଏହାର ଉତ୍ତରରେ ହ୍ୟାରିସ୍ ସଂପୂର୍ଣ୍ଣ ସତ୍ୟକଥା ଲେଖି ଜଣାଇଦେଲେ ଯେ, ନୌକାଟି ଖଣ୍ଡ ଖଣ୍ଡ ହୋଇଯାଇଛି ଏବଂ ସେ ବୁଡ଼ିଯାଇଥିବା ଜାଗାରେ ତାହାର କିଛି ଅବଶେଷ ମିଳୁ ନାହିଁ । ଏଇ ଘଟଣାର ସୁଯୋଗ ନେଇ ସେ ଗୋଟିଏ ନୂଆ ମାଲବାହୀ ନୌକା ଓ ନିଜ ବ୍ୟବହାର ପାଇଁ ଗୋଟିଏ ଛୋଟ ନୌକା ମଗାଇଲେ ଏବଂ ଆଶ୍ଚର୍ଯ୍ୟର କଥା ପାଇଲେ ମଧ ! ଅଳ୍ପଦିନ ମଧରେ ସୁନ୍ଦର ସୁଦୃଢ଼ ମାଲବାହୀ ନୌକା ଏବଂ ମନୋରମ ସବୁଜ ବର୍ଣ୍ଣର ଛୋଟ ନୌକାଟିଏ ସେମାନଙ୍କର ସମସ୍ତ ଆନୁଷଙ୍ଗିକ ବସ୍ତୁ, ପାଲ ଓ ଅଧିକା ମଙ୍ଗ ଇତ୍ୟାଦି ସହ ଆସି ପହଞ୍ଚିଗଲା । ନୌକାଟି ଖୁବ୍ ଚମତ୍କାର ଓ ଦ୍ରୁତଗାମୀ ଥିଲା ଏବଂ ହ୍ୟାରିସ୍ ତାଙ୍କର ସବୁ ସମୟ ସେଇଥିରେ କଟାଇଲେ ।

କେତେଦିନ ପରେ ଆମଦାନୀ ଶୁଳ୍କ ବିଭାଗର ମୁଖ୍ୟଙ୍କୁ ଭେଟି ମୁଁ ପଚାରିଲି ଯେ, ଫଲସ୍‌ଏପଣ୍ଡ ପାଇଁ ପ୍ରଥମେ ନୌକା ଓ ଅନ୍ୟାନ୍ୟ ପଦାର୍ଥ ପାଇବାପାଇଁ ଏତେ କଷ୍ଟକର ହେଉଥିବାବେଳେ ପରେ ଏତେ ମୁକ୍ତହସ୍ତରେ ସେମାନେ ତାଙ୍କ ଅନୁରୋଧ ପୂରଣ କରିଦେଲେ କିପରି ? ସେ ହସିଲେ ଏବଂ କହିଲେ ଯେ ଫଲସ୍‌ପଏଣ୍ଡ ଏକ ନୂଆ ଜାଗା ହୋଇଥିବାରୁ ବିଭାଗୀୟ 'ବହିପତ୍ର'ରେ ତା'ର ନାମ ଉଠିନଥିଲା, ତେଣୁ ତା' ପାଇଁ କୌଣସି ବନ୍ଦୋବସ୍ତ ହୋଇପାରୁ ନ ଥିଲା । ଭାରତ ସରକାର ହଜାର ହଜାର ମାଇଲ ଦୂର ସିମଳାରେ ଥିବାରୁ ଏହାର ନାଁ ଶୁଣି ନ ଥିଲେ, ତେଣୁ କୌଣସି ଖର୍ଚ୍ଚ ଏଥିପାଇଁ ମଞ୍ଜୁର କରୁ ନ ଥିଲେ । କିନ୍ତୁ ଥରେ ବହୁ କଷ୍ଟ ଓ ବୁଝାଶୁଝା ପରେ ସେମାନେ କୁନ୍ଥୁ କୁନ୍ଥୁ ହୋଇ ସେଠାକୁ କିଛି ପୁରୁଣା ଓ ବ୍ୟବହାର ଅନୁପଯୋଗୀ ପଦାର୍ଥ ପଠାଇ ଦେବାପରେ ସ୍ଥାନଟିର ନାଁ 'ବହିପତ୍ର'ରେ ଉଠିଗଲା ଏବଂ ତା'ପରେ ଜାହାଜ ଜୀର୍ଣ୍ଣହୋଇ ବା ବୁଡ଼ି କୌଣସି ପଦାର୍ଥ ନଷ୍ଟ ହେଲେ ତା'ର ପରିପୂରଣ କରିବା କଷ୍ଟକର ହେଲା ନାହିଁ । ସେ ପୁଣି ମତେ ଉପଦେଶ ଦେଲେ— 'ଫଲସ୍‌ପଏଣ୍ଡ ପାଇଁ ତୁମର ଯାହା ଦରକାର ଅମୁକ ଜିନିଷ ଜୀର୍ଣ୍ଣ ହୋଇଗଲା ବା ହଜିଗଲା ବୋଲି ତା'ର ପୂରଣ ପାଇଁ ଅନୁରୋଧ ଜଣାଅ । ସାଙ୍ଗେ ସାଙ୍ଗେ ତାହା ପାଇବ, କିନ୍ତୁ ତୁମର ନ ଥିବା ଜିନିଷକୁ ନୂଆ କରି ଦେବାକୁ ମାଗି ପଠାଇଲେ କିଛି ଫଳ ହେବ ନାହିଁ । ମୁଁ ହ୍ୟାରିସଙ୍କୁ ଏହା କହିଲି । ସେ ଏହିପରି କରି ସେ ଜାଗାର ସବୁ କଳଙ୍କି ଲଗା ଶିକୁଳି, ପୁରଣା ଲଙ୍ଗର ଏବଂ ପୋକଖିଆ ପଟା ନଷ୍ଟ ବୋଲି ଜଣାଇ ସେ ସବୁର 'ପୂରଣ' କରାଯାଉ ବୋଲି ଲେଖିଲେ ଏବଂ ଅନତି ବିଳମ୍ବେ ବନ୍ଦରର ଆବଶ୍ୟକୀୟ ଅନେକ ଜିନିଷ ପାଇଗଲେ, ଯାହାକି ଅନ୍ୟଥା ହୋଇପାରି ନ ଥାନ୍ତା । ଥରେ ଡାକ ତାର ଅଫିସକୁ (ଯାହାକି ବୁଦ୍ଧିମାନ ଡାକ ବିଭାଗ ହ୍ରଦ ଆରପରି ପ୍ରାୟ ୪ ମାଇଲ ଦୂରରେ ପ୍ରତିଷ୍ଠା କରିଥିଲେ) ପତ୍ର ଓ ବାର୍ତ୍ତା ନେବାପାଇଁ ଗୋଟିଏ ଆହୁଲା ଡଙ୍ଗା ଦରକାର ହେବାରୁ ସେ ଜଣେ ଦେଶୀୟଠାରୁ ଅତି ଖତରା ପୁରୁଣା ମାଛଧରା ଡଙ୍ଗାଟିଏ ଚାରି ଟଙ୍କାରେ କିଣି ଷ୍ଟକ୍ ହିସାବରେ ଚଢ଼େଇ ଦେଲେ । ତା'ପରେ ସପ୍ତାହେ ଖଣ୍ଡେ ଏହାକୁ ଡାକଘରକୁ

ପଠାଇଲେ । କାଳେ ଏହା ବୁଡ଼ିଯିବ ଏବଂ ତା' ସାଙ୍ଗେ ଆହୁଲା ମାରିଲାବାଲା ବୁଡ଼ିଯିବେ ସେଥିପାଇଁ ସାଙ୍ଗରେ ଆଉ ଏକ ନୌକା ପଠାଇଲେ । ଏହାର କାମ ଯଥେଷ୍ଟ ହୋଇଗଲା ବୋଲି ଯେତେବେଳେ ସେ ଅନୁଭବ କଲେ ଏପରି ବନ୍ଦୋବସ୍ତ କଲେ ଯେ, ଦିନେ ରହସ୍ୟଜନକ ଭାବରେ ଏହା ବୁଡ଼ିଗଲା । ସେ ତା'ର 'ପୂରଣ' ପାଇଁ ମଗାଇ ପଠାଇଲେ ଏବଂ ପାଇଲେ କାପ୍ତାନଙ୍କ ବ୍ୟବହାରଯୋଗ୍ୟ ସୁନ୍ଦର ବିଲାତି ଲମ୍ବା, ହାଲକା ନୌକା, ଗୋଟିଏ ପାଲ ଏବଂ ଅନେକ ପ୍ରଥମଶ୍ରେଣୀୟ ପରିଚାଳନା ଉପକରଣ ।

ଏହିପରି ଭାବରେ ଆମର ସବୁ ଆବଶ୍ୟକତା କ୍ରମେ ପୂରଣ ହୋଇଗଲା । ସରକାର ସହ ଏପରି ବ୍ୟବହାର କରିବାକୁ ହେଲା ଯେପରି ସେ ନିଜର ଭଲମନ୍ଦ କ'ଣ ଜାଣିନଥିବା ଶିଶୁଟିଏ । ପରେ ପରେ ହ୍ୟାରିସଙ୍କ ଅକ୍ଲାନ୍ତ ଉତ୍ସାହ ଫଳରେ ସେଠାରେ ବନ୍ଦର ଆବଶ୍ୟକୀୟ ସମସ୍ତ ସରଞ୍ଜାମ ପୂରଣ ହୋଇଗଲା । ସରକାରଙ୍କଠାରୁ ଏଥିପାଇଁ କୌଣସି ପ୍ରକାରେ ଖସେଇ ଆଣି ପାରୁଥିବା ସ୍ୱଳ୍ପ ଅର୍ଥରେ ଏ ସବୁ କିପରି ହୋଇପାରିଲା କେହି ଜାଣନ୍ତି ନାହିଁ । ପ୍ରଶଂସା ସେ ପାଉନଥିଲେ ବରଂ କୌଣସି ତ୍ରୁଟିପାଇଁ ଅନେକ ନିନ୍ଦା ଶୁଣୁଥିଲେ; କିନ୍ତୁ ଭାରତରେ ଥିବା ଅନେକ ଇଂରେଜଙ୍କ ପରି କୌଣସି ପ୍ରଶଂସା ବା ପ୍ରତିଦାନ ଆଶା ନ କରି ନିଜ ଦାୟିତ୍ୱରେ ନେଇଥିବା ସ୍ଥାନଟିର ମଙ୍ଗଳପାଇଁ ପାରୁପର୍ଯ୍ୟନ୍ତ ଆନନ୍ଦରେ ଏପରିକି ଖୁବ୍ ଉତ୍ସାହ ଉଦ୍ଦୀପନା ମଧ୍ୟରେ କାମ କରିଥିଲେ । ଅଳ୍ପକେତେ ବର୍ଷପରେ ସେ ଏହି ଉପସାଗରରେ ନିଜ କର୍ମସ୍ଥଳଟିକୁ ଆଖି ଆଗରେ ରଖି ବୁଡ଼ିମଲେ । ତାଙ୍କ ନାମ ସମ୍ଭବତଃ ବର୍ତ୍ତମାନ ସଂପୂର୍ଣ୍ଣ ବିଲୁପ୍ତ ହୋଇଯିବଣି । ଭାରତର ବ୍ରିଟିଶ ସାମ୍ରାଜ୍ୟ ହେଉଛି ପ୍ରଶାନ୍ତ ମହାସାଗରର ସେଇ ବିଶାଳ ଦ୍ୱୀପମାଳାପରି, ଯୁଗଯୁଗ ବ୍ୟାପୀ, ଲକ୍ଷଲକ୍ଷ ସଂଖ୍ୟକ ନଗଣ୍ୟ କୀଟମାନଙ୍କ ଦ୍ୱାରା ସୃଷ୍ଟ । ଲୋକେ ସେ ଭୂମିର ସୁଷମାର ପ୍ରଶଂସା କରନ୍ତି ଏବଂ ତା'ର ଉର୍ବରତାରୁ ଲାଭବାନ ହୁଅନ୍ତି । କିନ୍ତୁ ତାକୁ ଗଢ଼ିଥିବା କୀଟମାନଙ୍କ କଥା ପଚାରେ କିଏ ?

ଏଇ ଘଟଣାଟି ମୋ ମନରେ ପ୍ରାୟ ଏଇ ସମୟରେ ଘଟିଥିବା ଆଉ ଗୋଟିଏ ମରଣର ସ୍ମୃତି ଆଣେ । ଆଟକିସନ୍ ନାମରେ ମୋର ଜଣେ ସହକାରୀ ଥିଲେ । ପ୍ରଫୁଲ୍ଲ, ଚତୁର ଓ ଭବିଷ୍ୟତ ସମ୍ଭାବନାରେ ଉଜ୍ଜ୍ୱଳ ଏହି ତରୁଣ କଟକରୁ ପ୍ରାୟ ୩୦ ମାଇଲ ଦୂର କେନ୍ଦ୍ରାପଡ଼ା ସବ୍‌ଡିଭିଜନ୍‌ରେ ଅବସ୍ଥାପିତ ଥିଲେ । ସେ ଜାତୀୟ ବିଦ୍ୟାଳୟ (ହାରୋ କିମ୍ବା ରୁଗ୍‌ବି ମୁଁ ଭୁଲିଯାଇଛି) ଓ ଅକ୍‌ସଫୋର୍ଡ଼ରେ ସୁନାମ ଅର୍ଜନ କରିଥିଲେ, ସିଭିଲ୍ ସର୍ଭିସ୍ ପରୀକ୍ଷାରେ ଉଚ୍ଚ ସ୍ଥାନ ପାଇଥିଲେ ଏବଂ ଯେଉଁ ଅଳ୍ପ ସମୟ ମୋ ଅଧୀନରେ କାମ କରିଥିଲେ ତା'ରି ମଧ୍ୟରେ ତାଙ୍କର ଖୁବ୍ ଦକ୍ଷତା ଓ ଉଜ୍ଜ୍ୱଳ ଭବିଷ୍ୟତର ସୂଚନା ମିଳୁଥିଲା । ସେ ବୁଢ଼ା ଫକ୍‌ନରଙ୍କ ସୁନ୍ଦରୀ କନ୍ୟା ଫ୍ଲୋରୀ ଫକନରଙ୍କ ପ୍ରଣୟ ପାଶରେ ଆବଦ୍ଧ ଥିଲେ ଏବଂ ଆଉଥରେ କଟକ ଆସିଲେ ବିବାହ ପାଇଁ ପିତାଙ୍କ ଅନୁମତି ଲୋଡ଼ିବେ ବୋଲି ଫ୍ଲୋରୀଙ୍କ ସହ କଥାବର୍ତ୍ତା ହୋଇଥିଲେ । ଅନେକ ସମୟରେ ଆମେ ବଲ କିମ୍ବା ଅନ୍ୟ ଉତ୍ସବ ସବୁ କରୁ । ସେଦିନ ସେହିପରି କିଛି ହେବାର ଥିଲା । ମୋର ମନେହୁଏ ସେଦିନ ଥିଲା ରାଣୀଙ୍କ ଜନ୍ମଦିନ । ସେଦିନଟି ଆମେ ଛୁଟି କରି ଉତ୍ସବ ପାଳନ କଲୁ । ସେ କଟକ ଆସିବା ପାଇଁ ଛୁଟି ନିମନ୍ତେ ମୋତେ ଅନୁରୋଧ

କରିଥିଲେ ଓ ମୁଁ ମଞ୍ଜୁର କରିଥିଲି । ସେ ଥିଲା ମେ ମାସର ଖୁବ୍ ଗରମ ଓ ଝାଳୁଆ ଦିନ । ଖୁବ୍ ଖରା ହୋଇଯିବା ପୂର୍ବରୁ କଟକରେ ପହଞ୍ଚିଯିବା ପାଇଁ ସେ ବଙ୍ଗଳା ବାହାରି ଆସି ଶୀଘ୍ର ଘୋଡ଼ା ଛୁଟାଇଥିଲେ । ଯାତ୍ରାର ଠିକ୍ ଶେଷ ବେଳକୁ କଟକର ଧୂଆଁକଳ (କୋବ୍ରା କାରଖାନାର) ଦେଖା ଯାଉଥିବାବେଳେ ତାଙ୍କୁ ନଦୀ ପାର ହେବାକୁ ପଡ଼ିଲା । ପ୍ରାୟ ମାଇଲିଏ ଓସାର ବିସ୍ତୀର୍ଣ୍ଣ ଚଉଡ଼ା ବାଲୁକା ଶଯ୍ୟା ମଝିରେ ଝରିଯାଉଛି ସରୁ ପାଣି ଧାରଟିଏ । ସେବାଟେ ଯାଉଥିବା ଧାଡ଼ି ଧାଡ଼ି ଶଗଡ଼ର ଚକରେ ହୋଇଥିବା ଗଭୀର ଗୁଳାରାସ୍ତା ବାଲିରେ ପଡ଼ିଥିଲା । ସବୁଠୁ କମ୍ ପାଣି ଥିବା ସ୍ଥାନରେ ପାରିହେବା ପାଇଁ ସେ ରାସ୍ତା ଏପଟ ସେପଟ ବଙ୍କେଇ ହୋଇଯାଇଥିଲା । କିନ୍ତୁ ନଈକୂଳେ ଆଟକିସନ ପହଞ୍ଚିଲାବେଳକୁ ଖରା ଟାଣ ହୋଇଯାଇ ଥିବାରୁ ପାରି ହୋଇପଡ଼ିବା ପାଇଁ ସେ ଉତ୍କଣ୍ଠିତ ହୋଇପଡ଼ିଲେ ଏବଂ ସିଧାବାଟ ଦେଇ ଚାଲିଯିବାର ଚେଷ୍ଟା କଲେ ବୋଲି ଅନୁମାନ । କିନ୍ତୁ ପାଣିର ସେ ସରୁଧାର ଖୁବ୍ ଦଗାଦିଆ। ସାଧାରଣତଃ ସେଥିରେ ଫୁଟେ ଦୁଇଫୁଟରୁ ଅଧିକ ପାଣି ନ ଥିଲେ ମଧ ସ୍ଥାନେ ସ୍ଥାନେ ଗଣ୍ଡଆକାର ହୋଇଥିଲା । ସେଠାରେ ବର୍ଷା ସମୟରେ ପ୍ରବଳ ଜଳଘୂର୍ଣ୍ଣ ଦ୍ୱାରା ବାଲି ସବୁ ଖୋଳି ହୋଇଯାଇଥାଏ । ଏଇଥିରୁ ଗୋଟିଏ ଗଣ୍ଡ ମଧକୁ ସେ ଘୋଡ଼ାଚଢ଼ି ପଶିଗଲେ । ଘୋଡ଼ାଟି ଧସେଇ ପଶିଯିବା ଜୋରରେ ତାଙ୍କୁ ଫୋପାଡ଼ି ଦେଲା, ଆଉ କୌଣସି ପ୍ରକାରେ କୂଳରେ ଲାଗି ଧାଇଁ ପଳାଇଲା; କିନ୍ତୁ ସେ ଆଉ ଉଠିଲେ ନାହିଁ । ଫକନର ତାଙ୍କୁ ତାଙ୍କ ଘରେ ରହିବା ପାଇଁ ନିମନ୍ତ୍ରଣ କରିଥିଲେ ଏବଂ ତାଙ୍କ ଭୃତ୍ୟ ମଧ ତାଙ୍କ ବିଛଣାପତ୍ର ଧରି ଆସି ପହଞ୍ଚିଯାଇଥିଲା । ସେମାନେ ତାଙ୍କୁ ଗୋଟାଏ ବେଳଯାଏ ଅପେକ୍ଷା କରି ତା'ପରେ ଉତ୍କଣ୍ଠିତ ହୋଇଉଠିଲେ । ବୁଢ଼ା ଫକନର ଦୁଆର ପାଖକୁ ଯାଇ ଦେଖିଲେ ଯେ ଜଣେ ପୋଲିସ୍ ଗୋଟିଏ ସବାରହୀନ ଘୋଡ଼ାକୁ ନେଇ ପୋଲିସ୍ ଲାଇନ୍ ଆଡ଼େ ଯାଉଛି । ସେ ତାକୁ ଅଟକାଇ ଆଟକିସନଙ୍କ ଘୋଡ଼ାକୁ ଚିହ୍ନିଲେ । ଲୋକଟି କହିଲା ଯେ ନଦୀ ଆଡ଼କୁ ପଡ଼ିଥିବା ରାସ୍ତାରେ ଘୋଡ଼ାଟି ଚରୁଥିବାର ସେ ଦେଖିଲା ଏବଂ ଦାବିଦାର ନ ଥିବା ସଂପତ୍ତି ଭାବରେ ଥାନାକୁ ନେଉଛି । ସବାର କାହିଁ ବୋଲି ପଚରାଯିବାରୁ ସେ ସେମାନଙ୍କ ସ୍ୱାଭାବିକ୍ ରୀତିରେ ଚାହିଁରହି କହିଲା ଯେ ସେ ଜାଣେ ନାହିଁ । ସେ ବିଷୟରେ ଥରେ ଚିନ୍ତାକରିବା ମଧ ତା' ବିଚାରକୁ ଆସିନଥିଲା । ଫକନର ପାଖରେ ଥିବା ମୋ' ଘରକୁ ଧାଇଁ ଆସିଲେ ଏବଂ ମୁଁ ସାଙ୍ଗେ ସାଙ୍ଗେ ଦଳେ ଟାଣୁଆ ପୋଲିସ୍‌କୁ ଖୋଜିବା ପାଇଁ ଆଦେଶ ଦେଲି । ନଦୀକୂଳ ଅନୁସନ୍ଧାନ କରି ଇନ୍‌ସ୍‌ପେକ୍‌ଟର ଦେଖିଲେ ଯେ ଦଳେ ଲୋକ ପ୍ରତିଦିନ ପରି ଘୋଡ଼ାପାଇଁ ଘାସ କାଟୁଚନ୍ତି । ଏ ବିଷୟରେ ପ୍ରଶ୍ନ ହେବାରୁ ସେମାନେ ଆନନ୍ଦରେ କହିଉଠିଲେ— "ହଁ ହଁ ! ଜଣେ ସାଇବ ନଇ ଆରପଟୁ ବାଲିରେ ଘୋଡ଼ା ଚଢ଼ି ଆସିଲା ଏବଂ ନଦୀ ପାର ହେବାକୁ ଚେଷ୍ଟା କରୁଥିବା ସେମାନେ ଦେଖିଚନ୍ତି । ସେମାନେ ଦେଖିଲେ ଯେ ସେ ଗୁଳାଛାଡ଼ି ଗୋଟିଏ ଗହୀର ଗଣ୍ଡ ଆଡ଼କୁ ଗଲା ଏବଂ ଘୋଡ଼ାରୁ ପଡ଼ିଗଲା; ଆଉ ସେମାନେ ଦେଖିଲେ ଘୋଡ଼ାଟା ତାକୁ ନ ନେଇ ଚାଲି ଆସିଲା ଏବଂ ଦୌଡ଼ି ପଳେଇଲା ।" — "ସେ ସାହେବ କାହିଁ ?" —ସେମାନେ ଜାଣନ୍ତି ନାହିଁ । ବୋଧହୁଏ ସେ ପାଣିରେ ଅଛି । ତାକୁ ବିପଦରୁ ସାବଧାନ କରାଇ ଦେବାପାଇଁ ସେମାନେ ପାଟିକଲେ ନାହିଁ—ନା ସେଇଟା ସେମାନଙ୍କ କାମ ନୁହେଁ । ସେ ପଡ଼ିଯିବାର ଦେଖି ସେମାନେ କଅଣ କଲେ—ସେମାନେ ? ସେମାନେ ସେମାନଙ୍କ

ଘୋଡ଼ାପାଇଁ ଘାସ କାଟିଲେ ( ୧ ) ଜଣେ କାନୁନ୍‌ଗୋ ( ୨ ) ମଧ ତାଙ୍କ ଟଟୁଘୋଡ଼ାରେ ଯାଉଥିଲେ ଓ ତାଙ୍କ ଭୃତ୍ୟ ପଛେ ପଛେ ଯାଉଥିଲା । ସେ ସଂପୂର୍ଣ୍ଣ ଦୃଶ୍ୟ ଦେଖିଥିଲେ ମଧ ନିଜ କାମରେ ଚାଲିଗଲେ । ସେ ସେହି ସାହେବର ଖୁବ୍ ନିକଟରେ ଥିଲେ ଏବଂ ସେ ବିପଦ ମୁହଁକୁ ଯାଉଥିବାର ଦେଖିଥିଲେ; କିନ୍ତୁ ଏଇଟା ତାଙ୍କର କାମ ବି ନୁହେଁ । (ମୁଁ ସାଙ୍ଗେ ସାଙ୍ଗେ ସେ କାନୁନ୍‌ଗୋଙ୍କୁ ସରକାରୀ ଚାକିରିରୁ ବହିଷ୍କାର କରିଦେଲି ଯେଉଁଥିରେ କି ସବୁ ଦେଶୀ ସରକାରୀ ଓ ବେସରକାରୀ ଲୋକେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—ସେ କି ଦୋଷ କରିଥିଲେ ଯେ, ଦଣ୍ଡିତ ହେଲେ !) ।

ଗଣ୍ଡକୁ ଉଝାଳି ଦେଇ ଆମେ ତରୁଣଟିର ଶରୀର ପାଇଲୁ । ସେ ମରିଯାଇଥିଲେ । ସେଇଦିନ ତାଙ୍କୁ କବର ଦିଆଗଲା । ଫ୍ଲୋରୀ କାନ୍ଦିଲା । ବର୍ଷକ ପରେ ସେ ଆଉ ଜଣକୁ ବିବାହ କଲା ।

କଟକରେ ଆମର ଆମୋଦକର ଜୀବନଧାରା ଯେ କେବଳ ତାହାର ୟୁରୋପୀୟ ଅଧିବାସୀମାନଙ୍କର ମେଳାପୀ ଓ ବନ୍ଧୁଭାବ ଯୋଗୁଁ ହେଉଥିଲା ତାହା ନୁହେଁ, କଟକର ବିଚିତ୍ରତା ଯୋଗୁଁ ମଧ । ସବୁବେଳେ ସଂପୂର୍ଣ୍ଣ ନୂତନ ଓ ଆଶାତୀତ ଘଟଣାମାନ ଘଟୁଥିଲା । ଉଦାହରଣତଃ ପ୍ରାୟ ସେହି ସମୟରେ ଘଟିଲା ଭେଲେଦା ଜାହାଜ ଦୁର୍ଘଟଣା । ସେଇଟି ନାନ୍ତେରୁ ଆସିଥିବା ଗୋଟିଏ ଫରାସୀ ଜାହାଜ । ମୁଁ ପୂର୍ବ ପୃଷ୍ଠାରେ କହିଛି ଫଲସ୍‌ପଏଣ୍ଟକୁ ଫରାସୀ ଜାହାଜମାନେ ଆସୁଥିଲେ । ସେପରି ଅନେକ ଆସୁଥିଲେ । ସେମାନେ ଫରାସୀ ବନ୍ଦରମାନଙ୍କରୁ ମଦ୍ୟ, ସ୍ପିରିଟ ଓ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ ଧରି ବାଟାଭିଆ ଯାଉଥିଲେ ଏବଂ ସେତିକିବେଳେ ଭାରି ଜିନିଷ ଦ୍ୱାରା ଭାରସାମ୍ୟ ସ୍ଥିର ରଖିବା ପାଇଁ ଫଲସ୍‌ପଏଣ୍ଟ ଆସୁଥିଲେ ମରିସସ୍‌ରେ କାମ କରୁଥିବା ଭାରତୀୟ କୁଲିଙ୍କ ପାଇଁ ଚାଉଳ ବୋଝେଇ କରି ନେବାକୁ । ମରିସସ୍‌ରୁ ଫ୍ରାନ୍‌ସ ପାଇଁ ଚିନି ବୋଝେଇ କରୁଥିଲେ । ଏହିପରି ଭାବରେ ସେମାନଙ୍କ ପରିକ୍ରମା ଚାଲିଥିଲା । ଦିନେ ଏଇଥିରୁ ଗୋଟିଏ ଜାହାଜ 'ଭେଲେଦା' ଏକ ବାତ୍ୟାରେ କୂଳକୁ ଟାଣି ହୋଇଆସିଲା । ବିଚକ୍ଷଣ ପୋଲିସ୍, କାହିଁକି କେଜାଣି, କାରଣ ତାଙ୍କୁ ଜଣା—ଦେଶୀୟ ପୋଲିସ୍‌ମାନଙ୍କର ବିଚାରଧାରା ତ ସର୍ବଦା ଅନ୍ଧକାରାବୃତ, ଉତ୍ପୀଡ଼କ ଓ ଦୁର୍ବୋଧ—ସେ ଜାହାଜର କାପ୍ତାନ ଓ ନାବିକମାନଙ୍କୁ ଗିରଫ କଲେ ଏବଂ ଦୟାନଦୀ ମୁହାଣରେ କୂଳରେ ଲାଗିଥିବା ସେ ଜାହାଜ ଉପରେ ଜଣେ ଜଗୁଆଳି ରଖିଲେ । ଶେଷୋକ୍ତ ବନ୍ଦୋବସ୍ତଟି ବୁଦ୍ଧିମାନର କାର୍ଯ୍ୟ, କାରଣ ତା' ଦ୍ୱାରା ଜାହାଜଟି ଲୁଣ୍ଠନରୁ ରକ୍ଷା ପାଇଲା । ପୁରୀର ମ୍ୟାଜିଷ୍ଟ୍ରେଟ ଯୋସେଫ ଆର୍ମଷ୍ଟ୍ରଙ୍ଗ ଜଣେ ଖାମଖିଆଲି ଲୋକ । ସେ ସେହି ଲୋକମାନଙ୍କୁ କ'ଣ କରାଯିବ ସେ ବିଷୟରେ ନିର୍ଦ୍ଦେଶ ପାଇଁ ମୋ ପାଖକୁ ତାର କଲେ ।

(୧) ପ୍ରିୟ ଶବାଧାର ଆଖି ଆଗେ ତା'ର
ବୁହା ହେଉଥିବା ଚାହିଁ
ଅବଳା ସୁଣୀଳା ନୂଆ ବୋହୂ ପରି
ରନ୍ଧନ ଯୋଗାଉଥାଇ ।

(୨) ଭାରତରେ ସାଧାରଣତଃ କରଦାତାଙ୍କ ରେଜିଷ୍ଟର ରଖିଥିବା ଜଣେ କର୍ମଚାରୀ । ଓଡ଼ିଶାରେ ଏ ହେଉଛନ୍ତି ଜଣେ ଦେଶୀୟ ଜମି ଜରିପକାର ଏବଂ ଜମିଦାରୀ ପରିଚାଳନାକାରୀ । ଏ ହେଉଛନ୍ତି ଶିକ୍ଷିତ ବ୍ୟକ୍ତି ତେଣୁ ମୂର୍ଖ ଘାସକଟାଳିମାନଙ୍କଠାରୁ ଅଧିକ ଜାଣିବା କଥା ।

(୧) ଉତ୍ତରରେ ମୁଁ ଜଣାଇ ଦେଲି ଯେ ସେମାନଙ୍କୁ ଖାଦ୍ୟ ଓ ସେମାନଙ୍କର ଆବଶ୍ୟକୀୟ ଅନ୍ୟାନ୍ୟ ପଦାର୍ଥ ଯୋଗାଇ ଦିଆଯାଉ ଓ ଶଗଡ଼ କରି ସେମାନଙ୍କୁ ସାଙ୍ଗେ ସାଙ୍ଗେ କଟକ ପଠାଇ ଦିଆଯାଉ । ଅଳ୍ପ କିଛିଦିନପରେ କ୍ଷୁଧାର୍ତ୍ତ, ମଳିନ ଓ ଛିନ୍ନବସ୍ତ୍ର ପରିହିତ ୯ ବିପର୍ଯ୍ୟସ୍ତ ଜଣନେ ଫରାସୀ ଲୋକ ଆସି ପହଞ୍ଚିଲେ। ଆମେ ପୋଲିସ୍ ଛାଉଣୀରେ ସେମାନଙ୍କୁ ରଖାଇ ଖାଦ୍ୟ, ବସ୍ତ୍ର ଓ ଚିକିତ୍ସାର ବନ୍ଦୋବସ୍ତ କରିଦେଲୁ । କ୍ୟାପଟେନ ସେମେଲିନ୍ କ୍ଷୁଦ୍ରକାୟ, ପୃଥୁଳ ସାଙ୍ଗୋପାଙ୍ଗୀ ପ୍ରକାରର ଜଣେ ମଉଜିଆ ଲୋକ ଏବଂ କଟକରେ ଥିବା ପର୍ଯ୍ୟନ୍ତ ସେ ଆମକୁ ବହୁତ ଆମୋଦ ଦେଇଥିଲେ ।

କିନ୍ତୁ ତାଙ୍କ ସହ ମୋର କାମ କଷ୍ଟସାଧ୍ୟ ହେଲା । ଜାହାଜ ଦୁର୍ଘଟଣାର ସମସ୍ତ ଭୟାତୁରତା ଭିତରେ ସେ ତାଙ୍କ ଜାହାଜର କାଗଜପତ୍ର ଓ 'କୋଡ୍ ମାରିଟାଇମ' ନାମରେ ବହୁ ବ୍ୟବହୃତ ଓ ଛିନ୍ନପତ୍ରବିଶିଷ୍ଟ ମୋଟାଳିଆ ବହିଟିଏ ତାଙ୍କ କାନ୍ଧରେ ଝୁଲୁଥିବା ଥଳିରେ ଯତ୍ନରେ ରଖିଥିଲେ । ସେ ତାହା ବାହାର କରି ନିୟମାବଳିର ଅନେକ ଧାରା ମୋତେ ପଢ଼ି ଶୁଣାଇଲେ ଏବଂ ସେପରି ଅବସ୍ଥାରେ ତାଙ୍କର କ'ଣ କରିବା କଥା ତାହା ପ୍ରକାଶ କଲେ । ପ୍ରଥମେ ମୋତେ ଘଟଣାର ମୌଖିକ ବର୍ଣ୍ଣନା ଲିପିବଦ୍ଧ କରିବାକୁ ପଡ଼ିଲା । ତାହା ହେଲା ଏକ ଖୁବ୍ ଲମ୍ବା ଦଲିଲ୍ । ସେଥିରେ ଦୁର୍ଘଟଣାର ସମସ୍ତ ବର୍ଣ୍ଣନା କିପରି ଘଟିଲା ସେ ସଂପର୍କରେ କ୍ୟାପଟେନ ଓ ନାବିକମାନଙ୍କର ବିବୃତି ବର୍ଣ୍ଣିତ ଥିଲା । ତା'ପରେ ମୋତେ ଏକ ଲମ୍ବା ତାଲିକା ପ୍ରସ୍ତୁତ କରିବାକୁ ପଡ଼ିଲା— ଜାହାଜର ମଙ୍ଗ, ମାସ୍ତୁଲ, ଦଉଡ଼ା, ପାଲ, ମାଲପତ୍ର ଓ ଜାହାଜତଳିଟାକୁ ଛାଡ଼ିଦେଲେ ଆଉ ସବୁ ଜିନିଷର । ମୋର ଫରାସୀ ଭାଷାଜ୍ଞାନ ମୌଖିକ ବର୍ଣ୍ଣନା ଶୁଣିବା ଓ ବିବୃତି ନେବାଯାଏ ବେଶ୍ ଚଳିଲା; କିନ୍ତୁ ଜାହାଜ ମଙ୍ଗ, ମାସ୍ତୁଲ ଦଉଡ଼ି ପ୍ରଭୃତି ସଂପର୍କରେ ଯେତେବେଳେ ବୈଷୟିକ ବିଷୟ ପଡ଼ିଲା ମୁଁ ସଂପୂର୍ଣ୍ଣ ହଟିଲି । ତେଣୁ ମୁଁ ଡୋନେରେଙ୍କୁ ଡକାଇ ପଠାଇଲି । ସେ ଜଣେ ଫରାସୀ ଯୁବକ-ମଧୁର ସ୍ୱଭାବର, ତେଜସ୍ୱୀ, କର୍ମଚଞ୍ଚଳ, ବୁଦ୍ଧିମାନ ତରୁଣ । ସେ ବଙ୍ଗଳା ପୋଲିସ ଅଧୀନରେ ଚାକିରି କରି କଟକରେ ଅବସ୍ଥାପିତ ଥିଲେ, କିନ୍ତୁ ମୁଁ ଆଶ୍ଚର୍ଯ୍ୟ ହେଲି ଯେ ସେ ମଧ୍ୟ ହଟିଲେ । ଅବଶ୍ୟ ସେ ଏବଂ ସେମେଲିନ୍ ଦୁଇଜଣଯାକ ନିଜ ମାତୃଭାଷାରେ ଅନର୍ଗଳ ଗପିଲେ। କିନ୍ତୁ ସମୁଦ୍ର ଯାତ୍ରାର ଭାଷା ସଂପର୍କରେ ସେ ଥିଲେ ମୋ ପରି ଅଜ୍ଞ । ପରିଶେଷରେ ଆମେ ଦୁହେଁ ବହୁ ପ୍ରକାର ମୁଖ ଭଙ୍ଗୀ ଓ ମୂକ ଅଭିନୟ କରି ଏବଂ ସ୍ପାୟର୍ସ ଅଭିଧାନର ସାହାଯ୍ୟ ନେଇ ତାଲିକା ସଂପୂର୍ଣ୍ଣ କଲୁ, ଫରାସୀ ଆଇନ ଅନୁଯାୟୀ ସମସ୍ତ ପ୍ରକାର ଆବଶ୍ୟକ କାଗଜ ପ୍ରସ୍ତୁତ କଲୁ ଏବଂ କଲିକତାରେ ଥିବା ଫରାସୀ କନସଲ୍ ଜେନେରାଲଙ୍କ ପାଖକୁ ପଠାଇଦେଲୁ । ସେ ଯଥାସମୟରେ ଆମକୁ ଅନୁରୋଧ କଲେ ଯେ, ଜାହାଜଟିକୁ ବିକ୍ରିକରି ଲବ୍ଧ ଧନ ତାଙ୍କ ପାଖକୁ ପଠାଇଲେ ସେ ଫ୍ରାନ୍ସରେ ଥିବା ତା'ର ମାଲିକଙ୍କୁ ପଠାଇଦେବେ । ସେହିପରି ହେଲା । କଟକରେ ଜଣେ ଧନୀ ବଣିକ ପଡ଼ି ରହିଥିବା ସେ ଜାହାଜଟିକୁ କିଣି ଭାଙ୍ଗିଦେଲେ ଓ ମୁଁ ଶୁଣିଲି

---

(୧) ସେ ମୋ ନିର୍ଦ୍ଦେଶାଧୀନ ନୁହନ୍ତି କିନ୍ତୁ ଜାହାଜ ଦୁର୍ଘଟଣାଟି ଆମ ଦୁଇ ଜିଲ୍ଲାର ସୀମାନ୍ତରେ ଘଟିଥିବାରୁ ଏବଂ ସାମୁଦ୍ରିକ ବ୍ୟାପାରରେ ତାଙ୍କର କୌଣସି କ୍ଷମତା ବା ଅଭିଜ୍ଞତା ନ ଥିବାରୁ ସେ ମୋ ଉପରେ ଦାୟିତ୍ୱ ପକାଇ ଦେଲେ ଯଦିଓ ତାଙ୍କ ପୋଲିସ ସେ ଲୋକମାନଙ୍କୁ ଗିରଫ୍ କରିଥିଲେ ।

ତା'ର ପଟା ଓ ଅନ୍ୟାନ୍ୟ ଜିନିଷ ବିକି ଭଲ ଲାଭ କଲେ । ସେମେଲିନ ସେଥିରେ ଅଂଶୀଦାର ଥିବାରୁ ତାଙ୍କ ଅଂଶ ରଖିଲେ ଏବଂ ବାକି କନସଲଙ୍କ ପାଖକୁ ପଠାଇ ଦିଆଗଲା; କିନ୍ତୁ ସେ ନିଜର ବ୍ୟବହାର ପାଇଁ ଅଳ୍ପ କିଛି ପ୍ରୟୋଜନୀୟ ପଦାର୍ଥ ଜାହାଜରେ ରଖିଥିଲେ । ସମୁଦ୍ରକୂଳରୁ ସେ ସବୁ ନେଇ ଆସିଲେ (ଦୁର୍ଘଟଣା ସ୍ଥଳରୁ କଟକ ପ୍ରାୟ ୫୦ ମାଇଲ)ଏବଂ ବିକ୍ରି କରିବାକୁ ଚାହିଁଲେ। କହିବା ବାହୁଲ୍ୟ ସେଗୁଡ଼ିକ ଅତି ଆଗ୍ରହରେ କିଣା ହୋଇଗଲା—ସାମ୍ପେନ୍, ପେଟେରେନ୍ ବର୍ଗଣ୍ଡି ମଦ୍ୟ., ଖୁବ୍ ସୁସ୍ୱାଦୁ ସୁରକ୍ଷିତ ଫଳ, ମାଛ, ଛେନା ଏବଂ ଅନ୍ୟାନ୍ୟ ପଦାର୍ଥ ତାହାର ଅନ୍ତର୍ଭୁକ୍ତ । ମୋ ସ୍ତ୍ରୀ ସେଥିରୁ ଅନେକ କିଛି ରଖିଥିଲେ ଏବଂ ଆମେ ସେ ସବୁର ପୂର୍ଣ୍ଣ ଆସ୍ୱାଦ ଲାଭକଲୁ । ସେ ସବୁ ଖୁବ୍ ଶସ୍ତା ଥିଲା ମଧ । ତା'ପରେ ବିଚରା ସେହି 'କ୍ଷୁଦ୍ର ସାଞ୍ଚୋପାଞ୍ଜା' ସେମେଲିନ୍ ବେମାର ପଡ଼ିଗଲେ । ଡାକ୍ତର କହିଲେ ଯେ ତାଙ୍କୁ କଲିକତା ନେଇଯିବା ଭଲହେବ । ସେଠାରେ ତାଙ୍କୁ ବୁଝିପାରିବା ଭଳି ଜଣେ ଫରାସୀ ଡାକ୍ତର ମିଳିବେ । ତାଙ୍କର ରୋଗ ଦେହ ଭିତରେ କୌଣସି ଏକ ଅଜ୍ଞାତ ଧରଣର । ତେଣୁ ମୁଁ ତାଙ୍କୁ ଓ ତାଙ୍କ ନାବିକ ଦଳଟିକୁ ଜାହାଜରେ କଲିକତା ପଠାଇଦେଲି । ଖବର ପାଇଲି ଯେ, ସେମାନେ ବିଭିନ୍ନ ଫରାସୀ ଜାହାଜରେ ଘରକୁ ଫେରିଲେ; କିନ୍ତୁ ବିଚରା ସେମେଲିନ କଲିକତା ଡାକ୍ତରଖାନାରେ ପ୍ରାଣ ତ୍ୟାଗ କଲେ । ମୋର ତାଙ୍କୁ ଦେଖାଇଥିବା ଦୟା ଲାଗି କନସଲ ଜେନେରାଲଙ୍କଠାରୁ ଧନ୍ୟବାଦମୂଳକ ଖଣ୍ଡେ ମର୍ମସ୍ପର୍ଶୀ ପତ୍ର ପାଇଲି ।

ଏହି ଫରାସୀ କ୍ୟାପନେଟମାନେ ନିଜକୁ 'ଦୂରପଥ ଯାତ୍ରାର କ୍ୟାପଟେନ୍' ବା ବୁଢ଼ା ସମୁଦ୍ର ଭାଲୁ ବୋଲି କହୁଥିଲେ । ମୋତେ ସେମାନେ ଖୁବ୍ ଆମୋଦଦାୟକ ଜଣାପଡ଼ନ୍ତି ଏବଂ ସେମାନଙ୍କ ସହ ଫରାସୀ କହିବାପାଇଁ ମୋତେ ଭଲଲାଗେ । ସେମାନଙ୍କର ରହିବା ପାଇଁ ଫାଲସ୍ପଏଣ୍ଟ ଏକ ବିରକ୍ତିକର ସ୍ଥାନ । ସହର ନାହିଁ, ପାନ୍ଥଶାଳା ନାହିଁ, ମନୋରଞ୍ଜନର କୌଣସି ବ୍ୟବସ୍ଥା ନାହିଁ—ଖାଲି ଗୋଟାଏ ବିସ୍ତୃତ ଅଗଭୀର ହ୍ରଦ । ଏହାର ଅର୍ଦ୍ଧେକ ଅଞ୍ଚଳ ଅଳ୍ପ ପାଣିରେ ଥିବା ପଚପଚିଆ କାଦୁଅରେ ପୂର୍ଣ୍ଣ । ଗୋଟିଏ ଦିଗ ବ୍ୟତୀତ ଅନ୍ୟ ସବୁଆଡ଼ ନୀଚ, ସନ୍ତସନ୍ତିଆ, ହେନ୍ତାଳ ଜଙ୍ଗଲରେ ଆବଦ୍ଧ । ଥରେ ରେଭେନ୍‌ସା, ଓ୍ୱାକର ଓ ମୁଁ 'ପାଇଓନିଅର'ରେ ସେଠାକୁ ଯାଇଥିଲୁ । ଏହି କ୍ୟାପ୍‌ଟେନମାନଙ୍କ ମଧରେ ଜଣେ ତୋପିନୋ ଆମକୁ ଭେଟିବାକୁ ଆସିଥିଲେ । ଡେକ୍ ଉପରେ ପ୍ରାତଃଭୋଜନ ପାଇଁ ଟେବୁଲ ସଜା ହୋଇଥିଲା ଏବଂ ସେଠାରେ ଅନ୍ୟାନ୍ୟ ପଦାର୍ଥ ମଧରେ ଗୋଟିଏ ପାତ୍ରପୂର୍ଣ୍ଣ ସଜ ଲେମ୍ବୁ ଥିଲା । ତୋପିନୋଙ୍କ ଆଖି ଝଲସି ଉଠିଲା । ସେ କହିଉଠିଲେ— "ଆଃ ! କି ସୁନ୍ଦର ଲେମ୍ବୁ, କି ସୁନ୍ଦର ଲେମ୍ବୁ" ସୁଦୂର ଜଳଯାତ୍ରା ପରେ ନାବିକମାନଙ୍କ ପକ୍ଷରେ ଲେମ୍ବୁ ଓ ଅନ୍ୟାନ୍ୟ ଫଳ ଯେ କେତେ ଭଲ ତାହା ଜାଣିପାରି ଆମେ ସେଥିରେ ତାଙ୍କ ପକେଟ ଭରିଦେଲୁ । ସେ ଆନନ୍ଦରେ ଚାଲିଗଲେ ଏବଂ ଅଳ୍ପ କିଛିସମୟ ପରେ ଆମ ପାଇଁ ଦୁଇ ବୋତଲ କ୍ଲାରେଟ ଦେଇ କହି ପଠାଇଲେ ଯେ ତାହା ବୋର୍ଦ୍ଦୋରେ ଥିବା ତାଙ୍କ ନିଜ ଫାର୍ମରୁ ଉତ୍ପନ୍ନ ଏବଂ ଗ୍ରସ୍‌ବୋନେ ନାମରେ ପ୍ରସିଦ୍ଧ । ତିଣେ ଛତୁଦିଆ ମାଂସ କବାବ ମଧ ଦେଇଥିଲେ । କଟକ ଫେରିଯାଇ ମୁଁ ସମଗ୍ର ବଜାରଟାକୁ ସଜ ଫଳ ଓ ପରିବା ପାଇଁ ବୁରି ପକାଇଲି ଓ ଡଙ୍ଗାରେ ଡଙ୍ଗାଏ କଖାରୁ, କଦଳୀ, ଲେମ୍ବୁ ଓ ଆଉ ଯାହା ଆମେ ପାଇଲୁ ତାଙ୍କ ପାଖକୁ ପଠାଇଦେଲି । ସେ ଗଭୀର କୃତଜ୍ଞତା ପ୍ରକାଶ କରି ମୋ ପାଖକୁ ଏକ ପତ୍ର ଦେଇଥିଲେ,

ଆମେ ଯେତେବେଳେ ଗ୍ରସ୍‌ବୋନେ ପାନକଲୁ, ତାହା ମେଡ଼ୋକ ଧରଣରେ ସୁସ୍ୱାଦକର ବୋଧ ହେଲା ।

ସେଇବର୍ଷ ଶୀତ ଦିନେ ମୁଁ ଗୋଟିଏ କୌତୂହଳଜନକ ସ୍ଥାନ ଭ୍ରମଣରେ ଯାଉଥିଲି । ତାହା ହେଉଛି ଉଦୟଗିରି ବା ସୂର୍ଯ୍ୟୋଦୟର ପର୍ବତ । ଏହା ମହାନଦୀ ତ୍ରିକୋଣ ଭୂମିରେ ଦୁଇଟି ବଡ଼ ନଦୀର ମଧ୍ୟବର୍ତ୍ତୀ ସ୍ଥାନରେ ଅବସ୍ଥିତ । ଓଡ଼ିଶାରେ ଥିବା ପର୍ବତମାଳାର ପୂର୍ବପଟକୁ ଥିବା ସର୍ବଶେଷ ନାସୀରେ ଅବସ୍ଥିତ ଥିବାରୁ ଏହାର ଏପରି ନାମକରଣ ହୋଇଛି । ଅଲଗା ହୋଇଥିବା ଏକ ନାଟ୍ୟକ ପର୍ବତର ଶିଖର ପ୍ରଦେଶରେ ଏହା ଅବସ୍ଥିତ, ଯାହାର ସର୍ବୋଚ୍ଚ ଚୂଡ଼ାରେ ଅଛି ନିକଟରେ ତିଆରି ଏକ ଛୋଟ କୁତ୍ସିତ ମସ୍‌ଜିଦ୍ । କିନ୍ତୁ ପୂର୍ବ ପାଖରେ ପ୍ରାୟ ମାଇଲିଏ ଲମ୍ବା ଏକ ବିରାଟ ଫାଟରେ ମୁଁ ଓ ମୋ ସହ ଯାଇଥିବା ଫକନର ଏକ ଅଦ୍ଭୁତ ସ୍ଥାନ ଦେଖିଲୁ । ଗିରିସଙ୍କଟର ଊର୍ଦ୍ଧ୍ୱଦେଶରେ କେତେକ ମୂର୍ତ୍ତିଥିବା ପରି ଆମକୁ ଜଣାଗଲା ଏବଂ ଆମେ ଆବିଷ୍କାର କରିବାକୁ ବାହାରି ପଡ଼ିଲୁ । ସେଇ ଗିରିସଙ୍କଟଟି ଛୋଟ କଣ୍ଟାବୁଦାର ଜଙ୍ଗଲରେ ପୂର୍ଣ୍ଣ; କିନ୍ତୁ କୁଲି ଲଗାଇ ସେଗୁଡାକ ସଫା କରାଇ ଆମେ ବାଓଲି (୧) (Baoli) ବୋଲି କଥିତ ଏକ ପ୍ରକାର ଗଭୀର କୂପ ମଧ୍ୟକୁ ଆସିଲୁ । ଏହା ହେଉଛି ବିରାଟ ଗୋଲାକାର ଗର୍ତ୍ତ ଯାହାର ପ୍ରାୟ ୫୦ ଫୁଟ ତଳଯାଏ ପଥରର ବନ୍ଧା ହୋଇଛି । କାନ୍ଥର ଗୋଟିଏ ପଟେ ଖିଲାଣ ଅଛି ଏବଂ ଉପରେ ଥିବା ଆଉ ଏକ ଖିଲାଣରୁ ଚଉଡ଼ା ପାହାଚ ସବୁ ତଳକୁ ପଡ଼ିଚି । ଏହି ସବୁ ପାହାଚର ନିମ୍ନଭାଗରେ ଗୋଟିଏ ପ୍ରଶସ୍ତ ବେଦିକାର ମଧ୍ୟ ଭାଗରେ ଅଛି କୂପର ମୁଖ । ଏହା ଅତି ଗଭୀର ଓ ଜଳପୂର୍ଣ୍ଣ ଥିବାର ଜଣାପଡୁଥିଲା । ତଳକୁ ପଡ଼ିଥିବା କାନ୍ଥ ଧାରରେ ଅନଭ୍ୟସ୍ତ ହସ୍ତରେ ଖୋଦିତ ଅନେକ ନାମ ରହିଥିଲା—ସମ୍ଭବତଃ ତୀର୍ଥଯାତ୍ରୀଙ୍କର । ସେଗୁଡ଼ିକ ପୁରାତନ ଲିପିର କୁଟିଳାକ୍ଷରରେ ଥିଲା ଯାହାକି ନବମ ଦଶମ ଶତାବ୍ଦୀଠାରୁ ଆଉ ବ୍ୟବହୃତ ହେଉ ନାହିଁ । ତେଣୁ ଏ ଶିଳାଲେଖଗୁଡ଼ିକ ହଜାରରୁ ଅଧିକ ବର୍ଷର ପୁରାତନ ହୋଇପାରେ । ସେଠାରେ ଭୂତର ଉତ୍ପାତ ଶୁଣାଯାଉଥିବାରୁ ଆମ କୁଲିମାନେ ସେ ଫାଟ ସ୍ଥାନକୁ ଯିବାକୁ କେତେ ପରିମାଣରେ ଭୟ କରୁଥିଲେ । ଅଧିକ ପଇସା ଦେଇ ଆମେ ସେମାନଙ୍କୁ ସେଠାକୁ ଯିବାକୁ ପ୍ରବର୍ତ୍ତାଇ ପାରିଲୁ । କୂଅ ପରେ ପଥର ଛଦା ପାଦଚଲା ରାସ୍ତା ଏବଂ ତାହାର ଦୁଇପଟରେ ବୁଦାମୂଳରେ ଅନେକ ବୁଦ୍ଧ ମୂର୍ତ୍ତି, ଅଧିକାଂଶ ଓଲଟପାଲଟ ହୋଇପଡ଼ିଚି । ସେଗୁଡ଼ିକ ଅଳ୍ପ କେତେକ ଇଞ୍ଚଠାରୁ ଚାରିଫୁଟ ପର୍ଯ୍ୟନ୍ତ ବିଭିନ୍ନ ଆକାରର । ସେଗୁଡ଼ିକ କେତେ ଶହ ପର୍ଯ୍ୟନ୍ତ ଥିବାର ଆମେ ଗଣିଲୁ । ପ୍ରାୟ ଅଧମାଇଲିଏ ଲମ୍ବ ପାଦଚଲା ରାସ୍ତା ଶେଷକୁ ଉପରକୁ ଉଠିଚି । ସେବାଟେ ଉପରକୁ ଆସି ଆମେ ଏକ ସୁନ୍ଦର ପଥର ଫାଟକ ପାଖରେ ପହଞ୍ଚିଲୁ ଯାହାର ଉପରିଭାଗ ଓ ପାର୍ଶ୍ୱସ୍ତମ୍ଭ ସବୁ ବୁଦ୍ଧଙ୍କର ପୂର୍ବଜନ୍ମର ବିଭିନ୍ନ ଜାତକ ଘଟଣାବଳୀର ସୂଚନା ଦେଇ କମନୀୟ ଭାବରେ ଖୋଦିତ ହୋଇଥିବା ମୂର୍ତ୍ତିସବୁରେ ପୂର୍ଣ୍ଣ । ଏଇ ଫାଟକ ବାଟ ଦେଇ ବହଳ ହୋଇ ଉଠିଥିବା ଗଛଲତାର ଗହଳି ମଧ୍ୟରେ ସ୍ୱଭାବତଃ ଧ୍ୟାନମୁଦ୍ରାରେ ବସିଥିବା ବୁଦ୍ଧଙ୍କର ଏକ ବିରାଟ ମୂର୍ତ୍ତି ଦେଖି ଆମେ ସ୍ତବ୍ଧ ହୋଇଗଲୁ । ମୂର୍ତ୍ତିଟି ଅଣ୍ଟା ପର୍ଯ୍ୟନ୍ତ ଧୂଳି ଓ ଅଳିଆରେ ପୋତି ହୋଇ ଯାଇଥିଲା; କିନ୍ତୁ ବିରାଟ ଊର୍ଦ୍ଧ୍ୱଭାଗ ଏତେ ଉଚ୍ଚ ଥିଲା ଯେ ଜଣେ ଡେଙ୍ଗା ଲୋକ ଠିଆହେଲେ ତା'ର ଡାହାଣ ହାତ ପାପୁଲିରେ କେବଳ ମୂର୍ତ୍ତିର କାନ୍ଧ ଛୁଇଁପାରିବ ।

---

(୧) Baoli 'ବାଳି' ଶବ୍ଦର ଇଂରାଜୀ ହସ୍ତାକ୍ଷରର ଏପରି ମୁଦ୍ରଣ ପ୍ରମୋଦ ସୃଷ୍ଟି ହୋଇଥାଇପାରେ । (ସଙ୍କଳକ)

ଏଥିରୁ ଜଣାଯାଏ ସମୁଦାୟ ଅଞ୍ଚଳଟି ପୂର୍ବକାଳରେ ଏକ ବୁଦ୍ଧମଠ ଓ ତୀର୍ଥସ୍ଥଳ ଥିଲା । ଓଡ଼ିଶାର ଅନ୍ୟ ସମସ୍ତ ସ୍ଥାନ ପରି ଏଠାରେ ମଧ୍ୟ ସବୁ ମୂର୍ତ୍ତିର ନାକ ଭାଙ୍ଗିଛି । ଭାରତର ସର୍ବାଞ୍ଚଳରେ ପୂଜା ପାଉଥିବା ଦେବତା ଓ ଅନ୍ୟ ମୂର୍ତ୍ତିଗୁଡ଼ିକୁ ବିକୃତ କରିଦେବା ମୁସଲମାନମାନଙ୍କର ଏକ ରୀତି ଥିଲା । ସ୍ଥାନୀୟ କିମ୍ବଦନ୍ତୀ କହେ କଳାପାହାଡ଼ର ଯୁଦ୍ଧବିଦ୍ୟା ଶୁଣି ଓଡ଼ିଶାର ସବୁ ଦେବତାଙ୍କର ନାକ ଖସିପଡ଼ିଥିଲା ।

ଏହିସବୁ ଭାସ୍କର୍ଯ୍ୟରୁ କିଛି ସଂରକ୍ଷିତ ହେବା ଉଚିତ ବୋଲି ମନେକଲି । ବିରାଟ ବୁଦ୍ଧ ମୂର୍ତ୍ତିଟି ଏତେ ବଡ଼ ଯେ ତାହା ଘୁଞ୍ଚାଇ ହେବନି; କିନ୍ତୁ ସଂକନ୍‌ର ନୌକା ଓ ଭାରୋତ୍ତଳନ ସରଞ୍ଜାମ ମଗାଇ ସେହି ମନୋରମ ଫାଟକ ଓ ସବୁଠାରୁ ଭଲ ମୂର୍ତ୍ତିରୁ ଅଧତଜନ ନେଇ ଆସିପାରିଲେ । ଏସବୁ ଚାଉଳିଆଗଞ୍ଜ ପାଖର କେନାଲ ନିକଟରେ ମୁଁ ଯେଉଁ ସର୍ବସାଧାରଣ ଉଦ୍ୟାନଟି କରିଥିଲି ସେଇଠାରେ ଅବସ୍ଥାପିତ କରାହେଲା । କଟକର ଏଇ ଉପକଣ୍ଠରେ ଶାସନବିଭାଗ ଅଫିସରମାନଙ୍କ ମଧ୍ୟରୁ ଅଧିକାଂଶ ରହନ୍ତି । ମୁଁ ଭାବୁଚି ସେଗୁଡ଼ିକ ଏବେବି ସେଠାରେ ଥିବ । ଉଦୟଗିରିର ସେ ପୁରାତନ ପବିତ୍ର ସ୍ଥଳିରେ କୌଣସି ପରିବର୍ତ୍ତନ ପାଇଁ ଅନୁମତି ନ ଦେବା ମୋ ପକ୍ଷରେ ଉଚିତ ହୋଇଥାନ୍ତା; କିନ୍ତୁ ମୂର୍ତ୍ତିଗୁଡ଼ିକ ଅବହେଳିତ ଅବସ୍ଥାରେ ଜଙ୍ଗଲ ଓ ମାଟିରେ ପୋତି ହୋଇରହିଥିଲା । ସ୍ଥାନଟି ଅନେକାଂଶରେ ଅଗମ୍ୟ ଓ କଟକର ସର୍ବସାଧାରଣ ଉଦ୍ୟାନଟି କେନ୍ଦ୍ରାଞ୍ଚଳରେ ଅବସ୍ଥିତ ଥିବାରୁ ସେହି ଦୁର୍ମିଳ ଓ ସୁନ୍ଦର ପଦାର୍ଥଗୁଡ଼ିକର ପ୍ରଦର୍ଶନ ଓ ଗବେଷଣା ସଙ୍ଗେ ସଙ୍ଗେ ସଂରକ୍ଷଣ ମଧ୍ୟ ହୋଇପାରିବ । ତେଣୁ ନଷ୍ଟ ବିନଷ୍ଟ କରିବା ଅଭିଯୋଗରୁ ମୁଁ ଏହିପରି ନିଜକୁ ମୁକ୍ତ କଲି । ବଙ୍ଗଳା ଏସିଆଟିକ ସୋସାଇଟି ପତ୍ରିକା (୧୮୭୫ ର XLIV ସଂଖ୍ୟା ୧ ୯ ପୃଷ୍ଠା) ରେ ମୁଁ ସେ ସ୍ଥାନରେ ବହୁଚିତ୍ର ସହ ଟିକିନିଖି ବିବରଣୀ ପ୍ରକାଶ କରିଥିଲି ।

ଓଡ଼ିଶା ପୁରାତନ ମନ୍ଦିର, ଦୁର୍ଗ ଓ ମୂର୍ତ୍ତିରେ ପୂର୍ଣ୍ଣ । ପୁରାତନ ଜଗତର ଏଇ ପ୍ରଦେଶରେ ମୋର ନ'ବର୍ଷର ରହଣି ମଧ୍ୟରେ ମୁଁ ଏ ସବୁ ଅନେକ ବୁଲି ଦେଖିଚି, ଛବି ଆଙ୍କିଚି ଏବଂ ସେ ବିଷୟରେ ଏସିଆଟିକ୍ ସୋସାଇଟିକୁ ଲେଖିଚି । ବର୍ତ୍ତମାନ (ଅନ୍ତତଃ ସେତେବେଳେ ଥିଲା) ଏହା ଭାରତର ସବୁଠାରୁ ଅଧିକ ବ୍ରାହ୍ମଣ ଅଧୁଷିତ ଧର୍ମାନ୍ଧ ହିନ୍ଦୁଙ୍କର ପ୍ରଦେଶ । ସେ ସବୁର ସବିଶେଷ ବର୍ଣ୍ଣନା କରିବା ପାଇଁ ବହୁ ଜାଗା ଦରକାର । ତା'ଛଡ଼ା ସେସବୁ କ'ଣ ଜର୍ଣ୍ଣାଲ ଅଫ୍ ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗଲରେ ଲିଖିତ ହୋଇ ନାହିଁ କି ?

୧୮୭୭ ବର୍ଷଟି କୌଣସି ଉଲ୍ଲେଖଯୋଗ୍ୟ ଘଟଣା ବିନା କଟିଗଲା । ନାନା ପ୍ରକାର କୌତୂହଳଜନକ କାମ ବାରମ୍ବାର ପଡୁଥିଲା । ମୋ ଭାଷା ଗବେଷଣା ପାଇଁ ମଧ୍ୟ ସମୟ ପାଉଥିଲି । ମୋର ବଳକା ସମୟର ଅଧିକାଂଶ ଭାଗ ତୁଳନାତ୍ମକ ବ୍ୟାକରଣର ତୃତୀୟ ଖଣ୍ଡଟି ପାଇଁ ବ୍ୟୟ ହେଲା ।

୧୮୭୬ ଅପ୍ରେଲ ୨୪ ରେ ମୋର ଶେଷ ପିଲାଟି ଜନ୍ମ ହେଲା । ମୁଁ ସେ ସମୟରେ 'Revue des Deux mondes' ନାମକ ଏକ ଉପନ୍ୟାସ ପଢୁଥିଲି ଯାହାର ନାୟିକାର ନାମ 'ଏଞ୍ଜେଲେ' । ତେଣୁ ମୋ ପିଲାଟିର ନାମ ଦେଲି ଏଞ୍ଜେଲା । ଡୋନେରେ କହିଲେ 'ଅତି କମନୀୟ ନାଁଟିଏ' (c'est un nomtre's gentil);କିନ୍ତୁ ପିଲାଟି ବଡ଼ ହେଲାପରେ ନିଜେ ଏ ନାଁଟି ଭଲ ପାଇଲା ନାହିଁ । ଇଂଲଣ୍ଡରେ ବୋଧହୁଏ ଏପରି ନାମ ଅସାଧାରଣ । ମୋର ସ୍ତ୍ରୀ ତାଙ୍କର ଏଇ ଶେଷ ପ୍ରସୂତି ସମୟରେ ଅନେକ କଷ୍ଟ ପାଇଲେ ଏବଂ ତାଙ୍କର ଘରକୁ ଯିବା

ଦରକାର ବୋଲି ମୋତେ କୁହାଗଲା । ଆହୁରି ମଧ୍ୟ ଟଟନ ନିକଟ କାର୍ପେରେ ମୋର ଭାଇ ପିଅର୍‌ସନ ପାଖରେ ଥିବା ମୋର ତିନି ପୁଅଙ୍କ ସମସ୍ୟା ଜଟିଳତର ହୋଇ ଯାଉଥିଲା । ଆମ ମଧ୍ୟରୁ ଜଣକୁ କାହାକୁ ଘରକୁ ଯାଇଁ ସେ ସବୁ ସଜାଡ଼ିବା ଦରକାର ପଡ଼ିଲା । ତେଣୁ ଆମେ କ୍ରମେ ଦୃଢ଼ସିଦ୍ଧାନ୍ତ କଲୁ ଯେ ମୋ ସ୍ତ୍ରୀଙ୍କୁ ଘରକୁ ଯିବାକୁ ପଡ଼ିବ । ମୋର ଆର୍ଥିକ ଅବସ୍ଥା ମୋ ଯିବା ପକ୍ଷରେ ଅନୁକୂଳ ନ ଥିଲା ଏବଂ ସାର୍ ରିଚାର୍ଡ଼ ଟେମ୍ପଲ ବଙ୍ଗଳା ଛାଡ଼ୁଥିବାରୁ ମୋର ଉନ୍ନତତର ସମ୍ଭାବନା ଆଶା କରୁଥିଲି । ରେଭେନ୍‌ସା ଛୁଟି ନେଇ ଯିବେ ବୋଲି କହୁଥିଲେ ଏବଂ ଜଣେ ନୂଆ ଲାଟଙ୍କ ଅମଳରେ ମୁଁ ତାଙ୍କ ସ୍ଥାନ ଅଧିକାରର ସୁଯୋଗ ପାଇ ପାରିଥାନ୍ତି । ସୁବିଧା ଥିଲେ ମଧ୍ୟ ଏ ସମୟରେ ମୋର ଉପକାର ଦୃଷ୍ଟିରୁ ଅନୁପସ୍ଥିତ ରହିବା ଚଳି ନ ଥାନ୍ତା । ତେଣୁ ୧୮୭୫-୭୬ର ଶୀତ ଋତୁରେ ମୁଁ ମୋର ଯୋଗାଡ଼ ଆରମ୍ଭ କଲି । ଛୋଟ ଝିଅଗୁଡ଼ିକ, ବିଶେଷକରି ସେମାନଙ୍କ ମଧ୍ୟରେ ବଡ଼ଟି ଏପରି ଏକ ବୟସରେ ପହଞ୍ଚିଥିଲା ଯେଉଁଥିରେ କି ସେମାନେ ଆଉ ଭାରତରେ ରହିପାରନ୍ତେ ନାହିଁ । ଆମକୁ ଅଲଗା କରିଦେବା ପାଇଁ ସବୁ ଶକ୍ତି ଆସି ଏକାଠି ହେଲେ । ଗଭୀର ମନକଷ୍ଟ ହେଲା । ଅଳ୍ପ କେତେ ଦିନ ବ୍ୟତୀତ ଅଠର ବର୍ଷ ଧରି ଆମେ କେବେ ଅଲଗା ହୋଇନଥିଲୁ । କିନ୍ତୁ ସ୍ତ୍ରୀଙ୍କ ସ୍ୱାସ୍ଥ୍ୟ ଓ ପିଲାଙ୍କ ଭଲପାଇଁ ତାହା ଆମକୁ କରିବାକୁ ପଡ଼ିଲା ।

କିନ୍ତୁ ଆମର ଏହି କଷ୍ଟଦାୟକ ଯୋଗାଡ଼ଯନ୍ତ୍ରକୁ ମଝିରୁ ଆଉ ଏକ ସରକାରୀ ଘଟଣା ବାଧା ଦେଲା, ଯାହାକି ସବୁ କର୍ମଚାରୀଙ୍କ କ୍ଷେତ୍ରରେ ଅନେକ ସମୟରେ ଘଟେ । ୧୮୭୭ ଜାନୁୟାରୀ ପହିଲାଦିନ ବଡଲାଟ ଲର୍ଡ଼ ଲିଟନ ଦିଲ୍ଲୀଠାରେ ଏକ ବିରାଟ ସମ୍ମିଳନୀ କରିଥିଲେ । ଏଇଥିରେ ସବୁ କରଦ ରାଜ୍ୟର ରାଜା, ଜମିଦାର ଓ ଆଞ୍ଚଳିକ ଶାସକବର୍ଗ ହୀରକାଦି ରତ୍ନରାଜି ଖଚିତ ପରିଚ୍ଛେଦରେ ଭୂଷିତ ହୋଇ, ସୁନା ଜରିଦିଆ ଆବରଣରେ ଆବୃତ ହାତୀ, ଘୋଡ଼ା ପ୍ରଭୃତି ସାଙ୍ଗରେ ନେଇ ଏବଂ ସବୁ ପ୍ରକାର ସମ୍ଭବ ଚାକଚକ୍ୟରେ ମଣ୍ଡିତ ହୋଇ ବହୁ ଆଡ଼ମ୍ବରରେ ଯୋଗ ଦେଇଥିଲେ । ବଡ଼ଲାଟଙ୍କ ଗହଣରେ ବହୁସଂଖ୍ୟକ ସୈନ୍ୟ, ପରାମର୍ଶଦାତା, ବିଭାଗୀୟ ମୁଖ୍ୟ ଓ ଅନ୍ୟମାନେ ଥିଲେ । ତା'ସହିତ ମଧ୍ୟ ବହୁ ପରିମାଣ ସାମ୍ବାଦିକ ଓ ପୃଥିବୀ ପର୍ଯ୍ୟଟକ ଥିଲେ । ସେଇଠାରେ ଏକ ଗମ୍ଭୀର ପରିବେଶରେ ରାଣୀ ଭିକ୍ଟୋରିଆ ଭାରତର ସାମ୍ରାଜ୍ଞୀ ରୂପେ ଘୋଷିତ ହେଲେ ।

ନିର୍ଦ୍ଦେଶ ଆସିଲା ଯେ ଭାରତର ପ୍ରତ୍ୟେକ ଆଞ୍ଚଳିକ ରାଜଧାନୀରେ ମଧ୍ୟ ଏହିପରି ଅନୁଷ୍ଠାନ ହେଉ । ଅବଶ୍ୟ କଟକ ଏ ବିଷୟରେ ପଛେଇବା ପରି ନ ଥିଲା । ତେଣୁ ଏପରି ଏକ ବିରାଟ ତମ୍ବୁ ଠିଆ କରାଇବା ପାଇଁ ମୋତେ ନିର୍ଦ୍ଦେଶ ଆସିଲା ଯେଉଁଥିରେ ଉଚ୍ଚସ୍ତରର ହେଉ ବା ନିମ୍ନସ୍ତରର ହେଉ ନିମନ୍ତ୍ରିତ ସମସ୍ତ ବ୍ୟକ୍ତି ସ୍ଥାନ ପାଇପାରିବେ । ତେଣୁ ଆମେ ଲାଗିପଡ଼ି ଦୁର୍ଗ ଆଗର ସମତଳ ଭୂମିରେ ବିରାଟ ଶିବିରଟିଏ ନିର୍ମାଣ କଲୁ । ତାହା ଖୁଣ୍ଟି ଓ କ୍ୟାନ୍‌ଭାସରେ ତିଆରି ହୋଇ ଲାଲ୍, ନୀଳ ଓ ଧଳା କନାରେ ଆବୃତ ହୋଇଥିଲା ଏବଂ ତାଳବରଡ଼ା ଓ ସବୁଜ ପତ୍ରର ତୋରଣ ଦ୍ୱାରା ସଜ୍ଜିତ ହୋଇଥିଲା । ଉପରେ ବହୁସଂଖ୍ୟକ ପତାକା ଉଡୁଥିଲା । ଭିତରେ ଗୋଟିଏ ମଞ୍ଚ ଓ ଭଦ୍ରଲୋକମାନଙ୍କ ପାଇଁ ଧାଡ଼ି ଧାଡ଼ି ଚଉକି ସଜା ହୋଇଥିଲା । ଚଟାଣରେ ପଡ଼ିଥିବା ବହଳ ଗାଲିଚାର ମଝିଆମଝି ପଟାଏ ରକ୍ତବର୍ଣ୍ଣର କନା ଲମ୍ବାଇ ଦିଆହୋଇଥିଲା । ମଞ୍ଚର ପଛ ଆଡ଼କୁ ମହିଳାମାନଙ୍କ ପାଇଁ ଗ୍ୟାଲେରି ଥିଲା । ସୈନ୍ୟବାହିନୀ ସାମରିକ ଅଭିନନ୍ଦନ ଦେଲେ । ରେଭେନ୍‌ସା ତାଙ୍କର ନୀଳ ଏବଂ ସୁବର୍ଣ୍ଣ ବର୍ଣ୍ଣର ଉଇଣ୍ଡସର ପୋଷାକରେ ଏବଂ ଏହି

ଲେଖକ ବିଚରା ସାଧାରଣ ସକାଳ ପୋଷାକରେ ମଞ୍ଚ ଉପରେ ବସିଥିଲୁ । ଗୋଟିଏ ପଟେ ବସିଥାନ୍ତି ଉଜ୍ଜ୍ୱଳ ରତ୍ନରାଜିରେ ଝଲମଲ କରୁଥିବା ସ୍ଥାନୀୟ ରାଜା, ମହାରାଜା ଓ ଜମିଦାରଗଣ, ଅନ୍ୟପଟରେ ୟୁରୋପୀୟ ଅଫିସର ଏବଂ ଉଭୟ ପଟର ପଛ ଆଡ଼କୁ ବହୁସଂଖ୍ୟକ ଦେଶୀୟ ଲୋକ ।

ତା'ପରେ ରାଣୀଙ୍କ ଘୋଷଣାପତ୍ର ପ୍ରଥମେ ଇଂରାଜୀ ଓ ପରେ ଓଡ଼ିଆରେ ପଢ଼ାଗଲା ଏବଂ ରାଜକୀୟ ତୋପ ସଲାମି (କିମ୍ବା ସେହିଭଳି ଆମେ ଯାହାକିଛି ଯୋଗାଡ଼ କରିଥିଲୁ) ଫୁଟାଗଲା । ଦେଶୀୟ ରାଜପୁରୁଷମାନେ ଜଣଜଣ କରି ଉଠୁଥାଆନ୍ତି ଏବଂ ତାଙ୍କୁ, ପ୍ରଣାମ ଆଦାନ ପ୍ରଦାନ ପାଇଁ କମିଶନରଙ୍କ ନିକଟକୁ କଢ଼େଇ ନିଆଯାଉଥାଏ । ତା'ପରେ ଭୃତ୍ୟମାନେ ହାତରେ ଅତରଦାନୀ ଓ ଟ୍ରେରେ ଗୁଆର ଛୋଟ ପୁଡ଼ିଆମାନ ନେଇ ଘୂରି ବୁଲିଲେ; ପ୍ରତ୍ୟେକ ରାଜାଙ୍କୁ ଅତର ଓ ଗୋଲାପ ପାଣିରେ ଭଲ କରି ଛିଞ୍ଚାଯାଇ ଗୋଟିଏ ଗୁଆ ପୁଡ଼ିଆ ଦିଆଗଲା । ତା'ପରେ ଉତ୍ସବ ସରିଲା ଏବଂ ସମସ୍ତେ ବିଦାୟ ନେଲେ । 'ପର୍ବତାଞ୍ଚଳବାସୀ କିଙ୍ଗସ୍ ଅଫ୍ ଦି ଆମୋରାଇଟଗଣ' ସେମାନଙ୍କ ଛୋଟ ଛୋଟ ଅନୁଚର ଦଳଦ୍ୱାରା ବେଷ୍ଟିତ ହୋଇ ବାହାରିଲେ । ଅବଶ୍ୟ ପ୍ରତ୍ୟେକଙ୍କ ଅନୁଚର ସଂଖ୍ୟା ଆମେ ୧୦୦ ରେ ସୀମିତ ରଖିଥିଲୁ ଯେଉଁଥିପାଇଁ କେତେକ ଅପମାନିତ ବୋଧ କରିଥିଲେ । ମୟୂରଭଞ୍ଜ ତାଙ୍କ ସହ ଏଥିରୁ ଆଣିଥିଲେ ୬୦୦ ଏବଂ ଅମାର୍ଜିତ ବେସୁରା ଧ୍ୱନିରେ ବଜାଉଥିବା ଆଉ ଦଳେ ବାଦ୍ୟକାର ।

ସନ୍ଧ୍ୟାବେଳେ ସେଇ ଶିବିରରେ ଏକ ସାମାଜିକ ମିଳନୀ ହେଲା । ସେଥିରେ ଉଚ୍ଚ ୟୁରୋପୀୟ କର୍ମଚାରୀ ଏବଂ ସେମାନଙ୍କ ପତ୍ନୀମାନେ ଆସିଥିଲେ ଏବଂ ଦେଶୀୟ ରାଜାମାନଙ୍କୁ ଯଥୋଚିତ ସୌଜନ୍ୟ ଦେଖାଇଥିଲେ। ସେଇ ସମୟରେ ନାଚବାଲୀମାନେ ସେମାନଙ୍କ ଆଗରେ ନାଚିଥିଲେ ଏବଂ ଅନୁନାସିକ ସ୍ୱରରେ ଦେଶୀ ସଙ୍ଗୀତ ଗାନ କରିଥିଲେ। ବହୁତ ରାତିଯାଏ ଏହିପରି କରି ସେମାନେ ଖୁବ୍ ସନ୍ତୁଷ୍ଟ ହେଲାପରି ବିଦାୟ ନେଲେ ।

ଏ ସବୁ କାମ ଓ ଆମର ଜିନିଷପତ୍ର ବନ୍ଧାବନ୍ଧି ସରିବା ମାତ୍ରେ ମୁଁ, ମୋ ସ୍ତ୍ରୀ ଓ ପାଞ୍ଚୋଟି ଝିଅଙ୍କ ସଙ୍ଗେ କଲିକତା ଗଲି ଏବଂ ଗୋଟିଏ ଷ୍ଟିମରରେ ସେମାନଙ୍କୁ ଇଂଲଣ୍ଡକୁ ବିଦାୟ ଦେଲି । ସମୟର ଏତେ ବ୍ୟବଧାନ ପରେ ମଧ ସେ ମୁହୂର୍ତ୍ତର ଗଭୀର ଦୁଃଖ ମୋର ମନେ ପଡ଼ିଯାଉଛି— ସେ ବିଷୟ କହିପାରୁ ନାହିଁ। କେତେଦିନ ପରେ ସମୁଦ୍ର ପଥରେ ମୁଁ ମୋ ଶୂନ୍ୟ ଆବାସକୁ ଫେରିଆସିଲି ।

ଏ ଦୁଃଖର କିଛି ଲାଘବ ହେଲା ଯେତେବେଳେ କେତେ ସପ୍ତାହ ପରେ ରେଭେନ୍‌ସା ବୋର୍ଡ଼ ଅଫ୍ ରେଭେନ୍ୟୁର କାର୍ଯ୍ୟ ତୁଲାଇବା ପାଇଁ ନିଯୁକ୍ତି ପାଇଲେ ଏବଂ ମୁଁ ତାଙ୍କ ସ୍ଥାନରେ ଓଡ଼ିଶା ଡିଭିଜନ୍‌ର କମିଶନର ଭାବରେ କାର୍ଯ୍ୟ ତୁଲାଇବା ନିଯୁକ୍ତି ପାଇଲି । ଏହି ପଦୋନ୍ନତି ଫଳରେ ମୋତେ ପ୍ରାୟ ବାର୍ଷିକ ୮୦୦ ପାଉଣ୍ଡ ଅଧିକ ମିଳିଲା ଏବଂ ମୋର ଦରମା ବାର୍ଷିକ ହାରାହାରି ୩୦୦୦ ପାଉଣ୍ଡ ହେଲା । କିନ୍ତୁ ମୋର ଦେୟ ଥିଲା ବହୁତ ଏବଂ ତା'ସାଙ୍ଗକୁ ଇଂଲଣ୍ଡରେ ସ୍ତ୍ରୀ ଓ ଆଠଟି ସନ୍ତାନଙ୍କ ଖର୍ଚ୍ଚ । ବର୍ତ୍ତମାନ ତିନୋଟି ପୁଅଙ୍କ ଶିକ୍ଷା ଖର୍ଚ୍ଚ ଗୁରୁଭାର ହୋଇଉଠିଲା । ସେ ପର୍ଯ୍ୟନ୍ତ ପୁଅ ପ୍ରତ୍ୟେକଙ୍କ ପାଇଁ ବାର୍ଷିକ ୧୦୦ ପାଉଣ୍ଡ ଖର୍ଚ୍ଚ ପଡୁଥିଲା, କିନ୍ତୁ ଏବେ ଖର୍ଚ୍ଚ ବହୁତ ବେଶି ବଢ଼ିଗଲା । ଅଳ୍ପସମୟ ମଧରେ ପ୍ରତ୍ୟେକଙ୍କ ପାଇଁ ବାର୍ଷିକ ହାରାହାରି ୨୦୦ ପାଉଣ୍ଡ କରି ଖର୍ଚ୍ଚ ଦେବାକୁ ପଡ଼ିଲା । କମିଶନର ଭାବରେ ମୋତେ ଅନେକ

ଅତିଥି ଚର୍ଚ୍ଚା କରିବାକୁ ପଡୁଥିଲା ଏବଂ ସବୁପ୍ରକାର କାମରେ ମୋର ଅନ୍ୟମାନଙ୍କଠାରୁ ଅଧିକ ଚାନ୍ଦା ଦେବା କଥା । ତେଣୁ ମୋ ରୋଜଗାର ମୋ ଉପରେ ଥିବା ଆର୍ଥିକ ଦାୟିତ୍ୱ ତୁଲାଇବା ଛଡ଼ା ଅନ୍ୟ କିଛି କାମ ଦେଲା ନାହିଁ।

ଯାହାହେଉ ଏ ପଦୋନ୍ନତି ଅନେକ ନୂଆ ନୂଆ ପ୍ରକାର କାମ ଯୋଗାଇ ଦେଇ ବହୁ ଉପକାର କଲା । କଟକ, ପୁରୀ, ବାଲେଶ୍ୱର ଏ ତିନି ଜିଲ୍ଲାର କଲେକ୍ଟରମାନେ ବର୍ତ୍ତମାନ ମୋ ଆଦେଶାଧୀନ ହେଲେ । ତା'ଛଡ଼ା ମୁଁ ମୋ ପଦାଧିକାର ବଳରେ କରଦରାଜ୍ୟମାନଙ୍କର ସୁପରିଣ୍ଟେଣ୍ଡେଣ୍ଟ ହେଲି। ଅନ୍ୟ କଥାରେ ଓଡ଼ିଶାର ପଶ୍ଚିମକୁ ଥିବା ପାର୍ବତ୍ୟାଞ୍ଚଳବାସୀ ସତରଟି ଛୋଟ ରାଜନ୍ୟଙ୍କର ମୁଁ ହେଲି ଏକରକମ ପରିଚାଳକ (Bear leader) । ଯେତେଦୂର ମନେହୁଏ ଏଇ ଲୋକମାନଙ୍କ ବିଷୟରେ ମୁଁ ବିଶେଷ କିଛି କହି ନାହିଁ । ସେମାନଙ୍କ ବିଷୟରେ କିଛି ସଂକ୍ଷିପ୍ତ ବର୍ଣ୍ଣନା ବୋଧହୁଏ ଚିତ୍ତାକର୍ଷକ ହୋଇପାରେ ।

୧୮୦୩ରେ ଇଂରେଜମାନେ ମାଡ୍ରାଜରୁ ଦୁଇ ରେଜିମେଣ୍ଟ ଦେଶୀୟ ସୈନ୍ୟସହ ଆସି ଓଡ଼ିଶା ଅଧିକାର କଲାବେଳେ ମରହଟ୍ଟାମାନେ ପଶ୍ଚିମର ଏହି ପାର୍ବତ୍ୟାଞ୍ଚଳ ଦେଇ ସେମାନଙ୍କ ନିଜ ରାଜ୍ୟକୁ ପଳାଇଲେ । ଓଡ଼ିଶାର ଭୌଗୋଳିକ ଅବସ୍ଥା ସମ୍ପର୍କରେ ସେତେବେଳେ ଆମର ଧାରଣା ଏତେ କମ୍ ଥିଲା ଯେ, ଛୋଟ ବାହିନୀର ଅଧିନାୟକ କଲନେଲ ହାରକୋଟ ସେମାନଙ୍କ ଅନୁଧାବନ କରିବାକୁ ସାହସ କଲେ ନାହିଁ । ଏଥିରେ ଅସୁବିଧା କିଛି ରହିଲା ନାହିଁ; କାରଣ ସେମାନେ ଠିକ୍ ସମୟରେ ଆସାଏଠାରେ ପହଞ୍ଚି ସାର୍ ଆରଥର ଓ୍ୱେଲେସଲିଙ୍କ ହାବୁଡ଼ରେ ପଡ଼ିଲେ ଏବଂ ସେମାନଙ୍କ ଜାତିର ସଂପୂର୍ଣ୍ଣ ପରାଜୟର ସମ୍ମୁଖୀନ ହେଲେ । ପରେ ପଚରା ଉଚୁରା କରି କଲନେଲ ହାରକୋଟ ଏବଂ ଚିଫ୍ କମିଶନର ସେଲଭିଲ୍ ଏହି ସବୁ ନିଘଞ୍ଚ ଜଙ୍ଗଲ ମଧ୍ୟରେ ଖଣ୍ଡେ ଖଣ୍ଡେ ଛୋଟ ଛୋଟ ଅଞ୍ଚଳକୁ ଶାସନ କରୁଥିବା ସ୍ୱାଧୀନ ବା ଅର୍ଦ୍ଧସ୍ୱାଧୀନ ଶାସକମାନଙ୍କ ଅବସ୍ଥିତି ସମ୍ପର୍କରେ ଜାଣିପାରିଲେ । ଏହି ବ୍ୟକ୍ତିମାନଙ୍କ ଅବସ୍ଥା ସମ୍ପର୍କରେ ବୁଝିନପାରି ଏବଂ ପ୍ରକୃତ ଅବସ୍ଥାଠାରୁ ସେମାନଙ୍କୁ ଯଥେଷ୍ଟ ଅଧିକ ଶକ୍ତିଶାଳୀ ବୋଲି ମନେକରି ହାରକୋଟ ଓ ମେଲଭିଲ ବ୍ରିଟିଶ ସରକାରଙ୍କ ତରଫରୁ ସେମାନଙ୍କ ପ୍ରତ୍ୟେକଙ୍କ ସହ ବନ୍ଧୁତ୍ୱମୂଳକ ସନ୍ଧିଚୁକ୍ତି କଲେ, ଯାହାଫଳରେ ସେମାନେ କେବଳ ଏକ ପେସକସ୍ ଓ ଅଳ୍ପ କିଛି ବାର୍ଷିକ କର ଦେଇ ସେମାନଙ୍କ ସ୍ଥିତ ବଜାୟ ରଖିଲେ । ଏହି କ୍ଷୁଦ୍ରାତିକ୍ଷୁଦ୍ର ପ୍ରତ୍ୟେକ ରାଜାଙ୍କ ସହ ହୋଇଥିବା ଚୁକ୍ତିରେ ବ୍ରିଟିଶ ସରକାରଙ୍କ ବିରୋଧରେ ଯୁଦ୍ଧ ଘୋଷଣା ନ କରିବା ପାଇଁ ଯେଉଁ ଉଲ୍ଲେଖ ରହିଛି ତାହା ପଢ଼ିଲେ ଜଣେ ନ ହସି ରହିପାରିବ ନାହିଁ । ଯେପରିକି ଡାଆଁଶଟିଏ ହାତୀ ବିରୋଧରେ ଯୁଦ୍ଧ ନ କରିବାପାଇଁ ଶପଥ ନେଉଛି । ପରେ ଏହି ବ୍ୟକ୍ତିମାନଙ୍କ ବିଷୟରେ ଆମେ ଯେତେବେଳେ ସବୁ ଜାଣିପାରିଲୁ ସେତେବେଳେ ସ୍ୱାଧୀନ ରାଜା ଭାବେ ଏମାନଙ୍କ ସହ ଚୁକ୍ତି କରି କି ଭୁଲ୍ ହେଲା ତାହା ଜଣାପଡ଼ିଲା । ପରେ ପରେ ଆବିଷ୍କୃତ ହୋଇଥିବା ଦଲିଲପତ୍ରର ସଯତ୍ନ ଅନୁସନ୍ଧାନ ଫଳରେ ନିଃସନ୍ଦେହରେ ଜଣାପଡ଼ିଲା ଯେ ଏହିସବୁ ପାର୍ବତ୍ୟ ରାଜାମାନେ ବହୁ ପୂର୍ବକାଳରୁ ଓଡ଼ିଶା ରାଜାଙ୍କ ଅଧୀନରେ କେବଳ ସାମରିକ ସେବା ଉଦ୍ଦେଶ୍ୟରେ ଭୂମିଲାଭ କରି ସାମନ୍ତରାଜା ରୂପେ ରହି ଆସିଥିଲେ । ଏହା ସେମାନେ ବର୍ତ୍ତମାନ ଖୋଲାଖୋଲି ସ୍ୱୀକାର କରନ୍ତି । ସେମାନେ କହିଲେ— 'ଆମେ ଏହା ଠିକ୍ ଜାଣୁ ଏବଂ ଓଡ଼ିଶାର ସମସ୍ତେ ଜାଣନ୍ତି; କିନ୍ତୁ ଯଦି କଲନେଲ୍ ହାରକୋଟ ଅତ୍ୟନ୍ତ ସଦୟ ହୋଇ ଆମକୁ ସ୍ୱାଧୀନ ଶାସକର ପଦବୀ ପ୍ରଦାନ କରନ୍ତି, ତେବେ ତାଙ୍କର ସେ ଭ୍ରାନ୍ତି ଦୂର କରିବାକୁ ଯିବା ଆମର କାମ ନୁହେଁ । ଏହି

ସନ୍ଧିଚୁକ୍ତି ସତ୍ତ୍ୱେ ପେସକସ୍ ବା ଦେୟ ପରିମାଣ ଯଦି ବୃଦ୍ଧି କରାନଯାଏ ତେବେ ସେମାନଙ୍କୁ ସାମନ୍ତରାଜା ରୂପେ ଗ୍ରହଣ କରିବାକୁ ସେମାନେ ସ୍ୱଇଚ୍ଛାରେ ସ୍ୱୀକୃତି ଦେଲେ । ତା'ପରେ ସେମାନଙ୍କୁ ଓଡ଼ିଶା କମିଶନରଙ୍କର ସାଧାରଣ ତତ୍ତ୍ୱାବଧାନରେ ରଖି ଦିଆଗଲା । ସୁପରିଣ୍ଟେଣ୍ଡେଣ୍ଟ ଭାବରେ ସେମାନଙ୍କୁ ନିୟନ୍ତ୍ରିତ, ପରିଚାଳିତ ଓ ପଦୋନ୍ନତି ଦେବାର ନିର୍ଦ୍ଦେଶ ମଧ୍ୟ ତାଙ୍କୁ ମିଳିଲା ।

ତା' ସଙ୍ଗେ ସେମାନଙ୍କ ଉପରେ କିଛି ଅଧିକାର ଦିଆଯାଇ ନ ଥିଲା । ସନ୍ଧିଚୁକ୍ତି ଅନୁସାରେ ସରକାର କ୍ଷମତା ପ୍ରୟୋଗରୁ ନିଜକୁ ବଞ୍ଚିତ କଲେ ଏବଂ ଯାହା ନିଜର ନାହିଁ, କମିଶନରଙ୍କୁ ତାହା ଅର୍ପଣ କରିପାରିଲେ ନାହିଁ । ତାଙ୍କୁ କୁହାଗଲା ଯେ, ସେ ତାଙ୍କ ନୈତିକ ପ୍ରଭାବ ପକାଇ ସେମାନଙ୍କୁ ଠିକ୍ ପଥରେ ରଖନ୍ତୁ । ଏହା ଏକ ଅଜବ ସମସ୍ୟା ଏବଂ ଏହାର କିପରି ସମାଧାନ କରାଗଲା ତାହାହିଁ ଆଶ୍ଚର୍ଯ୍ୟର ବିଷୟ । ଭାରତକୁ ଆମେ କିପରି ଶାସନ କରୁ ଏହା ତାହାର ଅନ୍ୟ ଏକ ନିଦର୍ଶନ । ପ୍ରଥମେ ଭାରତ ସରକାର କେତେକ ନିର୍ଦ୍ଦେଶନାମା ପ୍ରସ୍ତୁତ କରି ପଠାନ୍ତି । ଏସବୁ ନିୟମକାନୁନ୍‌କୁ ସେମାନେ ଗ୍ରହଣ କରୁଛନ୍ତି କି ନା ସେ ବିଷୟ ସେମାନଙ୍କୁ ପଚରାଯାଏ ନାହିଁ । ସେମାନଙ୍କୁ କେବଳ ଜଣାଇ ଦିଆଯାଏ ଯେ ଭବିଷ୍ୟତରେ ଏହି ସବୁ ନିୟମ ଲାଗୁ କରାହେବ । ସେସବୁ କିପରି ଲାଗୁ ହେବ ତାହା କୁହାଯାଇନଥାଏ; କିନ୍ତୁ ଆମ ବେଳକୁ ଆମେ ଜାଣିଯାଇଥିଲୁ ଯେ ଏ ରାଜାମାନେ କେତେ କ୍ଷୁଦ୍ର ଓ ଶକ୍ତିହୀନ ଏବଂ ସେମାନେ ଜାଣିଥିଲେ ଆମେ କେତେ ଶକ୍ତିଶାଳୀ । ତେଣୁ ସେମାନଙ୍କୁ କିପରି ବଶ କରାଯିବ ସେ ପ୍ରଶ୍ନ ଉଠାଇବାର ଆବଶ୍ୟକତା ପଡ଼ିଲା ନାହିଁ । ଏହି 'କିପରି'ର ନମୁନା ମିଳିଗଲା । ଏହି ନିୟମାବଳି ପ୍ରୟୋଗ କରାଯିବାର ଅଳ୍ପ କିଛିଦିନ ପରେ ଘଟିଥିବା ଘଟଣାରୁ । ଏହି ରାଜାମାନଙ୍କ ମଧ୍ୟରୁ ଦୁଇଜଣ—ଅନୁଗୁଳ ଓ ବାଙ୍କୀ ସେମାନଙ୍କ ପ୍ରଜାମାନଙ୍କ ଉପରେ ବହୁଦିନ ଧରି ଅତ୍ୟାଚାର ଓ ପୀଡ଼ନ ପରେ ବ୍ରିଟିଶ ସରକାରଙ୍କୁ ମାନିବାକୁ ଅସ୍ୱୀକାର କଲେ । ଏପରିକି ଅନୁଗୁଳ ବିଦ୍ରୋହ କରିବାପାଇଁ ଏକ କ୍ଷୁଦ୍ର ସୈନ୍ୟଦଳ ଗଢ଼ିବାରେ ମଧ୍ୟ ଆଗେଇ ଗଲା । ଏହାପରେ ଅଳ୍ପ କେତେଜଣ ସିପାହିଙ୍କୁ ଅନୁଗୁଳ ପଠାହେଲା, ରାଜାଙ୍କୁ ଧରିଆଣି କଟକ ଜେଲରେ ଛାଡ଼ିଦିଆଗଲା । ସେଠାରେ ତାଙ୍କର ନିଶ୍ଚିତ ପାଗଳାମିର ଲକ୍ଷଣ ପ୍ରକାଶ ପାଇଲା ଏବଂ ଅତିଶୀଘ୍ର ସେ ମୃତ୍ୟୁବରଣ କଲେ । ଅନୁଗୁଳ ରାଜ୍ୟକୁ ଖାସ କରିଦିଆହେଲା ଏବଂ ସେହିଦିନଠାରୁ ଜଣେ ଇଂରେଜ କର୍ମଚାରୀଙ୍କ ଦ୍ୱାରା ଶାସିତ ହେଲା । ବାଙ୍କୀର ମଧ୍ୟ ସେଇ ଅବସ୍ଥା ହେଲା । ତାଙ୍କୁ ମଧ୍ୟ ଖାସ କରିଦିଆହେଲା ।

ଏହିସବୁ ବାସ୍ତବ ଶିକ୍ଷାକୁ ଆଗରେ ରଖି ଅନ୍ୟ ରାଜାମାନେ ଏପର୍ଯ୍ୟନ୍ତ ସଂପୂର୍ଣ୍ଣ ବାଧ ହୋଇ ରହିଛନ୍ତି । ୧୮୭୭ ରେ ମୁଁ ଦାୟିତ୍ୱ ନେଲାବେଳେ ପ୍ରଚଳିତ ପରମ୍ପରା ନିମ୍ନୋକ୍ତ ପ୍ରକାରେ ଥିଲା । ରାଜାମାନଙ୍କୁ ସେମାନଙ୍କ ରାଜ୍ୟର ସାଧାରଣ ଶାସନ ଚଳାଇବା ପାଇଁ ଅନୁମତି ଦିଆଯାଉଥିଲା । କିନ୍ତୁ ସେମାନଙ୍କର କୌଣସି ପ୍ରଜା ଯଦି ରାଜାଙ୍କ କୌଣସି କାର୍ଯ୍ୟ ଯୋଗୁଁ କଷ୍ଟରେ ପଡ଼ିବାର ଅନୁଭବ କରନ୍ତି ତେବେ କମିଶନରଙ୍କ ପାଖରେ ଆପତ୍ତି କରିପାରୁଥିଲେ । କମିଶନର ରାଜାଙ୍କୁ କୈଫିୟତ୍ ମାଗୁଥିଲେ ଏବଂ ବିଚାର ନିର୍ଦ୍ଧାରଣ କରି ସେହି ବିଚାର ରାଜାଙ୍କୁ ଜଣାଇ ଦେଉଥିଲେ । ରାଜା ଯଦି ତାହା ନ ମାନନ୍ତି ତେବେ କ'ଣ ହେବ କେହି ଜାଣୁନଥିଲେ; କିନ୍ତୁ ଏହା ବେଶ୍ ଜଣାଥିଲା ଯେ ସେ ଅମାନ୍ୟ କରିବେ ନାହିଁ । ସେ କଥା ରାଜାମାନେ ଭଲ କରି ବୁଝୁଥିଲେ । ଏହାକୁ କୁହାଯାଉଥିଲା 'ନୈତିକ ପ୍ରଭାବ' । ସଙ୍ଗୀନ ଦେଖାଇ କରାଗଲେ, ତାହା ହେଲା ଏକ ଶକ୍ତି ପ୍ରଦର୍ଶନ । ପୁନଶ୍ଚ ପ୍ରତ୍ୟେକ ରାଜାଙ୍କର ଜଣେ ମନ୍ତ୍ରୀ ଥାଆନ୍ତି । ଏହା

ହେଉଛି ଅତି ପ୍ରାଚୀନ ଏକ ଦେଶୀୟ ପଦବୀ, ଆଦିମ କାଳରୁ ଅତି ପ୍ରାଚୀନ ହିନ୍ଦୁ ନୀତିଶାସ୍ତ୍ରମାନଙ୍କରେ ରାଜାଙ୍କ ଛଡ଼ା ଏହି ମନ୍ତ୍ରୀ ବା ବ୍ରାହ୍ମଣ ଉପଦେଷ୍ଟା (୧)ଙ୍କ ନାମୋଲ୍ଲେଖ ମିଳେ । ଯେଉଁ ରାଜା ମନ୍ତ୍ରୀଙ୍କ ନିର୍ଦ୍ଦେଶ ଅମାନ୍ୟ କରେ ତା'ବିରୋଧରେ ଅତି ଭୟଙ୍କର ଆଧାତ୍ମିକ ଦଣ୍ଡ ବିଧାନ କରାଯାଏ । ରେଭେନ୍‌ସା ଓ ତାଙ୍କ ପୂର୍ବାଧିକାରୀମାନେ ଅନେକ କ୍ଷେତ୍ରରେ ସେମାନେ ନିଜେ ଠିକଣା କରିଦେଇଥିବା ଲୋକକୁ ମନ୍ତ୍ରୀ ପଦରେ ନିଯୁକ୍ତ କରିବାକୁ ପ୍ରରୋଚନା ଦେଉଥିଲେ । ବ୍ରିଟିଶ ଅଞ୍ଚଳରେ ଅଧିବାସୀ ହୋଇଥିବା ଏବଂ ଆମର ବିଭିନ୍ନ କୋର୍ଟ ଓ ଅଫିସ୍‌ରେ କାମ କରୁଥିବା ଲୋକଙ୍କୁ ବାଛିବା ଫଳରେ ସେମାନେ ରାଜାଙ୍କ ଦରବାର ସହ ସଂଯୋଗ ରକ୍ଷା କରୁଥିଲେ। ସେମାନେ ଏପରି ଲୋକ ନିଯୁକ୍ତ କରୁଥିଲେ ଯେଉଁମାନେ ନିର୍ଭରଯୋଗ୍ୟ ଏବଂ ରାଜାଙ୍କୁ ଠିକ୍‌ବାଟରେ ରଖିବାକୁ ସକ୍ଷମ । ଲୋକଙ୍କୁ ମୃତ୍ୟୁଦଣ୍ଡ ଦେବାର ଅଧିକାର ସେମାନଙ୍କଠାରୁ କାଢ଼ି ନିଆଗଲା। କାରଣ ଦେଖାଗଲା ଯେ ସେ ବିଷୟରେ ସେମାନଙ୍କର ଦୃଷ୍ଟିକୋଣର ଅନୁକୂଳ ନୁହେଁ । ଉଦାହରଣସ୍ୱରୂପ ନୈଷ୍ଠିକ ହିନ୍ଦୁ ହୋଇଥିବାରୁ—ଯଦିଓ ସେମାନଙ୍କ ମଧ୍ୟରୁ ଅନେକ ମୂଳତଃ ଅଣଆର୍ଯ୍ୟ ଓ ଆଦିବାସୀ—ସେମାନେ ଗୋରୁମାରିବାକୁ ଅତି ଘୃଣ୍ୟ ଅପରାଧ ଓ ମୃତ୍ୟୁଦଣ୍ଡ ପାଇବା ଯୋଗ୍ୟ ଅପରାଧ ବୋଲି ବିଚାରୁଥିଲେ। କେତେକ ଅଞ୍ଚଳରେ ସେ ପର୍ଯ୍ୟନ୍ତ ମଧ୍ୟ ନରବଳୀ ପ୍ରଥା ପ୍ରଚଳିତ ଥିଲା । ତେଣୁ କମିଶନର ସବୁ ହତ୍ୟା ଅପରାଧଗୁଡ଼ିକୁ ବିଚାର କରୁଥିଲେ। ଯଦି କାହାକୁ ଫାଶୀଦଣ୍ଡ ମିଳୁଥିଲା ସେ ଆଦେଶ ସାବ୍ୟସ୍ତ ହେବାପାଇଁ ସରକାରଙ୍କ ପାଖକୁ ଆସୁଥିଲା ।

ଏହିସବୁ କ୍ଷୁଦ୍ର ରାଜ୍ୟମାନଙ୍କ ମଧ୍ୟରୁ ଅନ୍ୟତମ ବୃହତ୍ କେନ୍ଦୁଝରରେ ନରବଳି ପ୍ରଥା ବଞ୍ଚିରହିଥିବାର ଏକ କୌତୂହଳପୂର୍ଣ୍ଣ ଘଟଣା ଘଟିଥିଲା । ଅତି ପ୍ରାଚୀନ କାଳରୁ ପ୍ରଥା ଥିଲା ଯେ ବହୁସମୟବ୍ୟାପୀ ଜଟିଳ ଅଭିଷେକ ଉତ୍ସବରେ ଗୋଟିଏ ସ୍ଥଳରେ ରାଜାଙ୍କ ଆଗକୁ ଜଣେ ଲୋକକୁ ଅଣାଯାଏ। ରାଜା ଗୋଟିଏ ଖଣ୍ଡା ବାହାର କରି ତାକୁ ହାଣିଦିଅନ୍ତି । କ୍ଷତିପୂରଣ ସ୍ୱରୂପ ସେ ବ୍ୟକ୍ତିର ଉତ୍ତରାଧିକାରୀଙ୍କୁ ନିଷ୍କର ଭୂମି ଦିଆଯାଏ । କିନ୍ତୁ ଉପରୋକ୍ତ ନିୟମମାନ ପ୍ରବର୍ତ୍ତିତ ହେବାପରେ ପ୍ରଥମକରି ଯେତେବେଳେ କେନ୍ଦୁଝର ସିଂହାସନରେ ଜଣେ ରାଜାଙ୍କର ଅଭିଷେକ ହେଲା ସେହି ଉତ୍ସବରେ କମିଶନର ଉପସ୍ଥିତ ଥାଇ ଉତ୍ସବରେ ସେହି ଅଂଶକୁ ବନ୍ଦ କରାଇଲେ । ଯୁବକ ରାଜା, ତାଙ୍କର ସମଗ୍ର ପରିବାର ଓ ଦରବାର ତରଫରୁ ଖୁବ୍ ଅସନ୍ତୋଷ ପ୍ରକାଶ ପାଇଲା; କିନ୍ତୁ କମିଶନର ନିଜ ଆଦେଶରେ ଦୃଢ଼ ରହିଲେ । ବହୁ ଆଲୋଚନା ପରେ ଏହିପରି ସ୍ଥିର କରାଗଲା ଯେ ଲୋକଟିକୁ ପୂର୍ବପରି ରାଜାଙ୍କ ଆଗକୁ ଅଣାଯିବ । ରାଜା ଖଣ୍ଡାକୁ କୋଷମୁକ୍ତ କରି ଲୋକଟି ଉପରକୁ ଉଠାଇବେ । ସେ ମଲାପରି ତଳେ ପଡ଼ିଯିବ ଏବଂ ସାଙ୍ଗେ ସାଙ୍ଗେ ଅନୁଚରମାନେ ତାକୁ ବୋହି ନେଇଯିବେ । ତା'ପରେ ସେ ଲୋକ ରାଜ୍ୟରୁ ବାହାରିଯିବ ଏବଂ ଆଉ ରାଜାଙ୍କ ପାଖକୁ ଯେପରି କେବେ ନ ଆସେ ଏବଂ ରାଜାଙ୍କ ଦୃଷ୍ଟି କେବେ ତା' ଉପରେ ନ ପଡ଼େ ସେଥିପ୍ରତି ବରାବର ସଜାଗ ରହିଥିବ । ତାକୁ ବାସ୍ତବ କ୍ଷେତ୍ରରେ ମୃତ ବୋଲି ଧରିନିଆଯିବ । ଏହି ବ୍ୟବସ୍ଥାରେ ସଂପୃକ୍ତ ସମସ୍ତେ ସନ୍ତୁଷ୍ଟ ହେଲେ; କିମ୍ବା ସନ୍ତୁଷ୍ଟ ହେବାପରି ମନେହେଲା ।

(୧) ଆଶ୍ଚର୍ଯ୍ୟର କଥା ପର୍ତ୍ତୁଗୀଜମାନେ ଏହି ଶବ୍ଦଟିରେ ପ୍ରଭାବିତ ହୋଇ ଚୀନା ସମ୍ରାଟ୍‌ଙ୍କ ଉପଦେଷ୍ଟାମାନଙ୍କୁ ମାଡାରିନ୍ ବୋଲି ନାମ ଦେଲେ। ବର୍ତ୍ତମାନ ଏହି ମନ୍ତ୍ରୀ ଅର୍ଥରେ ହିନ୍ଦୁରାଜାମାନଙ୍କ ଦ୍ୱାରା ମଧ୍ୟ ପାରସ୍ୟ ଶବ୍ଦ 'ଦେଓ୍ୱାନ' ବ୍ୟବହୃତ ହେଉଛି ।

ସର୍ବମୋଟ ରାଜା ଥିଲେ ସତରଟି; ସେମାନଙ୍କର ରାଜ୍ୟର ଆୟତନ ଭିନ୍ନ ଭିନ୍ନ ଥିଲା । ଓଡ଼ିଶାର ଉତ୍ତରକୁ ଥିବା ମୟୂରଭଞ୍ଜ (ବେଳେ ବେଳେ ଭୁଲ୍‌କ୍ରମେ ମୋହରଭଙ୍ଗ Mohar bhunge ବୋଲି ଲେଖା ଯାଉଥିଲା) ଓ କେନ୍ଦୁଝର ଥିଲା ଖୁବ୍ ବଡ଼, ବୋଧହୁଏ କ୍ଷେତ୍ରଫଳରେ ପ୍ରାୟ ୩୦୦୦ ବର୍ଗମାଇଲ, ମଧ୍ୟାଞ୍ଚଳରେ ଥିବା ଢେଙ୍କାନାଳ ଥିଲା ପ୍ରାୟ ୨୦୦୦ ବ:ମା: । ଅନ୍ୟଗୁଡ଼ିକ ଖୁବ୍ ଛୋଟ । ସେଥିମଧ୍ୟରୁ ଗୋଟିଏ ଦୁଇଟି ଯଥା ବଡ଼ମ୍ବା ଓ ତିଗିରିଆ ପ୍ରକୃତ ପକ୍ଷେ ପ୍ରତ୍ୟେକେ ମାତ୍ର ଦୁଇଡଜନ କରି ଗ୍ରାମକୁ ନେଇ ଗଠିତ । ପ୍ରତ୍ୟେକଟିର କିନ୍ତୁ ଥିଲା ଗୋଟିଏ ସୁରକ୍ଷିତ ରାଜବସତି (ଗଡ଼ ବା ଦୁର୍ଗ ବୋଲି କଥିତ)ଏବଂ ଏହି କାରଣରୁ ସେଗୁଡ଼ିକୁ ସମୂହ ଭାବରେ କୁହାଯାଉଥିଲା ଗଡ଼ଜାତ ବା ଦୁର୍ଗସମୂହ ।

ମୁଁ ଦାୟିତ୍ୱ ନେବାର ଅଳ୍ପ କେତେଦିନ ପରେ ଏହିପରି ଏକ ଗଡ଼ଜାତରେ ଗୋଟିଏ ଘଟଣା ଘଟିଲା । ଦଶପଲ୍ଲାର ରାଜା ସେହି ରାଜାମାନଙ୍କ ମଧ୍ୟରେ ସବୁଠାରୁ ନିକୃଷ୍ଟତମ ବ୍ୟକ୍ତି । ସେ ଜଣେ ବିବାହିତା ସ୍ତ୍ରୀ ଲୋକ—ତାଙ୍କରି ଜଣେ ପ୍ରଜାର ସ୍ତ୍ରୀ ପ୍ରତି ଆକୃଷ୍ଟ ହେଲେ । ସେ ତାକୁ ତାଙ୍କ ଅନ୍ତଃପୁରକୁ ନେଇଆସିଲେ ଏବଂ ତା' ସ୍ୱାମୀ ପ୍ରତିବାଦ କଲାରୁ ତାକୁ ଦଶପଲ୍ଲା ରାଜ୍ୟ ବୋଲାଉଥିବା ଦଶ ବର୍ଗମାଇଲ ମଧ୍ୟରୁ ନିର୍ବାସିତ କରିଦିଆଗଲା ଏବଂ ଯଦି ଫେରେ ତେବେ ମୃତ୍ୟୁଦଣ୍ଡ ଦିଆଯିବାର ଧମକ ଦିଆଗଲା । ସେ ଗୃହହୀନ ହୋଇ ଘୂରିବୁଲିଲା । ତା'ର ଘର ଓ ଘରେ ଥିବା ସମସ୍ତ ଦ୍ରବ୍ୟ ବାଜ୍ୟାପ୍ତ କରି ନିଆଗଲା; କିନ୍ତୁ ଏପରି ବୁଲୁବୁଲୁ ସେ ଲୋକଟି ଦଶପଲ୍ଲାର ଶ୍ରୀଛାମୁଙ୍କୁ ଭୟ କରୁ ନ ଥିବା କେତେକ ବ୍ୟକ୍ତିଙ୍କ ସମ୍ପର୍କରେ ଆସିଲା । ସେମାନେ ତାକୁ ଉପଦେଶ ଦେଲେ ଯେ ସେ ନିର୍ଭୟରେ ଯାଇଁ ତା ସ୍ତ୍ରୀ ଓ ସଂପତ୍ତି ଦାବି କରୁ ଏବଂ ଯଦି ସେସବୁ ତା'କୁ ଫେରସ୍ତ ଦିଆନଯାଏ ତେବେ କଟକ ଯାଇ ବଡ଼ ସାହେବଙ୍କ ଆଗରେ ଅଭିଯୋଗ କରୁ। ତେଣୁ ସେ ସାହସ ସଂଚୟକରି ଦଶପଲା ଗଲା; କିନ୍ତୁ ସେ ପହଞ୍ଚିବାକ୍ଷଣି ରାଜାଙ୍କ ଆଦେଶକ୍ରମେ ଗିରଫ ହୋଇ ଗଡ଼କୁ ନିଆଗଲା । ଲୁଗା କାଢ଼ି ତା ଦେହସାରା ଉତ୍ତପ୍ତ ଲୁହାବାଡ଼ିରେ ଦାଗ ଦିଆଗଲା। ସେ ମୂର୍ଚ୍ଛା ହୋଇ ଯିବାପରେ ତା'ର ଅଜ୍ଞାନ ଶରୀରକୁ ନେଇ ନଦୀ ତୀରରେ ବାଲିରେ ପକାଇ ଦିଆଗଲା । ଯାହାହେଉ ରାତିରେ ତା'ର କେତେଜଣ ସଂପର୍କୀୟ ଗୋପନରେ ଆସି ତାକୁ ଡଙ୍ଗାରେ ପକାଇ କଟକ ନେଇଆସିଲେ । ସେ ଡାକ୍ତରଖାନାରେ ରହି ଆରୋଗ୍ୟ ହେଲା । ତା'ପରେ ସେ ମୋ ପାଖକୁ ଆସି ତା କାହାଣୀ ଶୁଣାଇ ପିଠିର ଓ ଜଙ୍ଘରେ ଲମ୍ବା କଳାଦାଗ ସବୁ ପୂରିଥିବାର ଦେଖାଇଲା ।

ଏହି ଘଟଣାଟି ଥିଲା ଅନ୍ୟାନ୍ୟ ଅପେକ୍ଷା ଅଧିକ ଚୂଡ଼ାନ୍ତ ଅତ୍ୟାଚାରମୂଳକ । ତେଣୁ ମୁଁ ଠିକଣା ବ୍ୟବସ୍ଥା ଗ୍ରହଣ କଲି । ମୁଁ ରାଜାଙ୍କୁ ପଦଚ୍ୟୁତ କରାଇ ପଦଚ୍ୟୁତି ଆଦେଶନାମାକୁ କେତେକ ଦେଶୀୟ ପୋଲିସ୍ ଗାର୍ଡ଼ଙ୍କ ଗହଣରେ ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ପୁଲ୍‌ଙ୍କଦ୍ୱାରା ପଠାଇଲି । ପୋଲିସ୍‌କୁ କୁହାଯାଇଥିଲା ସେ ରାଜାଙ୍କୁ କହିବେ ଯେ, ସେ ଯଦି ସାମାନ୍ୟ ପ୍ରତିରୋଧ କରନ୍ତି ତେବେ ମୁଁ କଟକରୁ ସିପାହି ରେଜିମେଣ୍ଟ ପଠାଇବି । ରାଜା ଟିକିଏ ଅବାଧ ହେଲେ; କିନ୍ତୁ ଶେଷରେ ଶ୍ରୀ ପୁଲ୍‌ଙ୍କୁ ପ୍ରତିଶ୍ରୁତି ଦେଲେ ଯେ, ଅଭିଯୋଗକାରୀ ମିଛ କହୁଛନ୍ତି ଏବଂ ସେ ନିଜେ କଟକ ଆସି ମୋତେ ସବୁ ବିଷୟ ବୁଝାଇଦେବେ । ଏହି ସମୟ ମଧ୍ୟରେ ସେ ଲୋକର ସାକ୍ଷୀମାନଙ୍କୁ ଅଣାଗଲା ଏବଂ ରାଜା ଆସିବା ପରେ ମୁଁ ଯଥାବିଧି ମକଦ୍ଦମାଟିର ବିଚାର କଲି । ରାଜାଙ୍କର ଦୋଷ ଓ ସେଥିରେ ତାଙ୍କ ମନ୍ତ୍ରୀ ଓ କର୍ମଚାରୀଙ୍କ ସଂପୃକ୍ତି ପରିଷ୍କାର ପ୍ରମାଣିତ ହେଲା । ଶାସନ ପରିଚାଳନା ପାଇଁ ମୁଁ ଜଣେ ବିଶ୍ୱାସୀ ଲୋକକୁ ପଠାଇଲି ଓ ଦେଓ୍ୱାନ ଓ ପ୍ରଧାନ

କର୍ମଚାରୀମାନଙ୍କୁ ବରଖାସ୍ତ କରିଦେଲି । ବିଚାର ସମୟରେ ଜଣାପଡ଼ିଲା ଯେ ଗତ କେତେଦିନ ଧରି ରାଜାଙ୍କ ଶାସନ ଅତି ବଦନାମ ଓ ଦୋଷଦୁଷ୍ଟ ହୋଇପଡ଼ିଥିଲା । ତେଣୁ ମୁଁ ତାଙ୍କୁ କଟକରେ ଅଟକାଇ ରଖି ସରକାରଙ୍କୁ ଲେଖି ପରାମର୍ଶ ଦେଲି ଯେ, ରାଜାଙ୍କୁ ପଦଚ୍ୟୁତ କରାଇ ତାଙ୍କ ନାବାଳକ ପୁଅ ସାବାଳକ ହୋଇ ରାଜା ହେବା ପର୍ଯ୍ୟନ୍ତ ଶାସନ ଜଣେ ଇଂରେଜ କର୍ମଚାରୀଙ୍କ ଦ୍ୱାରା ପରିଚାଳିତ ହେଉ । ମୁଁ ସେ ବ୍ୟକ୍ତିର ଅତୀତ ଇତିହାସ ମଧ ଦେଇଥିଲି, କିପରି ମୋର ପୂର୍ବବର୍ତ୍ତୀ କମିଶନରମାନେ ତାଙ୍କ ମନ୍ଦ ବ୍ୟବହାର ଅନୁଭବ କରିଛନ୍ତି ଏବଂ କିପରି ସେ ବାରମ୍ବାର ସେମାନଙ୍କ ଚେତାବନୀକୁ ବେଖାତିର କରିଛନ୍ତି, ତାହାସବୁ ଦର୍ଶାଇଲି । ତାଙ୍କ ଅତ୍ୟାଚାର ଫଳରେ ସାଧାରଣ ବିଶୃଙ୍ଖଳା, ଶାସନଗତ ତ୍ରୁଟି, ପ୍ରଜାଙ୍କ ଦୁର୍ଦ୍ଦଶା ବିଷୟ ମଧ ଦର୍ଶାଇଥିଲି । ରାଜା ଭୀତତ୍ରସ୍ତ ହୋଇପଡ଼ିଲେ । ସେ ଥିଲେ ବିରାଟ ମୋଟା, କଳା, କୁତ୍ସିତଦର୍ଶନ ଏକ ପଶୁ । ଭୀତ ହେବା ଫଳରେ ତାଙ୍କ ଚେହେରା ପ୍ରାକୃତିକ ଅବସ୍ଥାରୁ ଆହୁରି କଦାକାର ହୋଇପଡ଼ିଲା । ସେ ମୋ ଘରକୁ ଆସି ମୋ ଗୋଡ଼ତଳେ ପଡ଼ିଗଲେ । ପଗଡ଼ିକୁ ଚିରିପକାଇ ମୋ ପାଦକୁ ତାଙ୍କ ମୁଣ୍ଡରେ ରଖିବାକୁ ଚେଷ୍ଟାକଲେ ଏବଂ ଏପରି ଚିତ୍କାର ଓ ବୋବାଳି କଲେ ଯେ ମୋତେ ଚାକରମାନଙ୍କ ଦ୍ୱାରା ତାଙ୍କୁ ବାହାର କରିଦେବାକୁ ପଡ଼ିଲା । ଭୟରେ ସେ ସେହି ସ୍ତ୍ରୀଲୋକଙ୍କୁ ଖଲାସ କରିଦେଲେ, ଅଳଙ୍କାରରେ ସଜ୍ଜିତ କରି ତାକୁ ତା ସ୍ୱାମୀକୁ ଫେରାଇ ଦେଲେ, ବଡ଼ ଥଳିରେ ଥଳିଏ ଟଙ୍କା ଦେଲେ ଏବଂ ଦସ୍ତଖତ ମୋହର ପ୍ରଭୃତି ଦେଇ ଖଣ୍ଡେ ବଡ଼ ଜମିର ପଟା ସବୁଦିନ ପାଇଁ ନିଷର ରୂପେ ତାକୁ ଦେଲେ ।

ସରକାର ମୋର ପରାମର୍ଶ ଗ୍ରହଣ କରିବା ପାଇଁ ଇଚ୍ଛୁକ ଥିଲେ; କିନ୍ତୁ ସନ୍ଦେହ କଲେ କି ସେ ବ୍ୟକ୍ତିକୁ ପଦଚ୍ୟୁତି କରିବା ପାଇଁ ସେମାନଙ୍କର ପ୍ରକୃତ କ୍ଷମତା ଅଛି କି ନା । ମୋର ସେପରି କିଛି କ୍ଷମତା ଥିଲା ବୋଲି ମୁଁ ମନେ କରୁ ନାହିଁ; କିନ୍ତୁ ଏ ସାମୟିକ ପଦଚ୍ୟୁତି ସବୁଦିନର ପଦଚ୍ୟୁତି ପରି ମୋର ଉଦ୍ଦେଶ୍ୟ ସିଦ୍ଧ କଲା । କଲିକତାରେ ଥିବା ରେଭେନ୍‌ସାଙ୍କ ସହ ପରାମର୍ଶ କରିବାରୁ ସେ ପଦଚ୍ୟୁତି ବିରୋଧରେ ମତ ଦେଲେ; କିନ୍ତୁ ସ୍ୱୀକାର କଲେ ଯେ ସେ ବଦମାସ ସମୁଚିତ ଦଣ୍ଡ ପାଇବା ଯୋଗ୍ୟ । ଫଳତଃ ଆଦେଶ ହେଲା ଯେ ରାଜାଙ୍କୁ ପ୍ରକୃତରେ ପଦଚ୍ୟୁତ କରାଯିବ ନାହିଁ; କିନ୍ତୁ କିଛିଦିନ ପାଇଁ ସେ ରାଜ୍ୟ ଶାସନରୁ ଅବ୍ୟାହତି ପାଇ ରହିବେ । ସେ କେତେଦିନ ରାଜ୍ୟ ମୋ ଦ୍ୱାରା ପଠାଯାଇଥିବା ଲୋକଙ୍କ ହାତରେ ରହିବ । ରାଜାଙ୍କୁ କଠୋର ଭର୍ତ୍ସନା ଦିଆଗଲା ଯେଉଁଥିରେ ସେ ଟିକିଏ ଦୁଃଖିତ ମଧ ହେଲେ ନାହିଁ । ତାଙ୍କୁ ଧମକ ଦିଆଗଲା ଯେ 'ଆଉଥରକୁ' ତାଙ୍କୁ ପଦଚ୍ୟୁତ କରାଯିବ, ବନ୍ଦୀ ମଧ କରାଯାଇପାରେ ।

ଏହିପରି ଅନେକ ରାଜାଙ୍କ କ୍ଷେତ୍ରରେ ଏହିସବୁ ଧମକ ବା ଭର୍ତ୍ସନା ନିଷ୍ଫଳ, କାରଣ ସେମାନଙ୍କଠାରୁ କଅଣ ଆଶା କରାଯାଏ ତା ବୁଝିବା ପାଇଁ ବୁଦ୍ଧି ସେମାନଙ୍କର ନାହିଁ । ସେମାନେ ଥିଲେ ରୁକ୍ଷ, ଜଙ୍ଗଲୀ, ଅଶିକ୍ଷିତ ଜୀବ, ବାସ୍ତବରେ କେବଳ ବର୍ବର । ଅନ୍ୟ କେତେକ ଥିଲେ ଅଧିକ ବୁଦ୍ଧିମାନ ଓ ଶିକ୍ଷିତ । ସୁପରିଣ୍ଟେଣ୍ଡେଣ୍ଟଙ୍କ ଗସ୍ତଦ୍ୱାରା ଅନେକ ମଙ୍ଗଳ ହେଲା । ପ୍ରତ୍ୟେକ ବର୍ଷ ସେ ରାଜାମାନଙ୍କର ଦରବାର ଓ ଅଫିସ ସବୁ ବୁଲି ଦେଖନ୍ତି, ନିନ୍ଦା ବା ପ୍ରଶଂସା ଯାହା ଯେଉଁଠି ଦରକାର କରନ୍ତି, ଉନ୍ନତି କରିବା ସମ୍ପର୍କରେ ନିର୍ଦ୍ଦେଶ ଦିଅନ୍ତି । ଏହିପରି ଭାବରେ ସେଠା ଲୋକଙ୍କ ସାଂସ୍କୃତିକ ସ୍ତରର ଅନୁରୂପ ମୋଟାମୋଟି ଧରଣର ଏକ ଶାସନ ସଂସ୍ଥା ଖପାଇ ଦିଆଯାଇ ଚାଲୁ ରଖାଗଲା । ଜଙ୍ଗଲବାସୀ ଆଦିମ ଲୋକଙ୍କୁ ଉଚ୍ଚ କୃଷ୍ଟି ଅନୁଯାୟୀ ଶାସନ କରି ହେବ ନାହିଁ ବୋଲି ଥିବା ଭ୍ରାନ୍ତିକୁ ଦୂରେଇ ଦିଆଯାଇପାରିଲା । ଏହି ଲୋକମାନଙ୍କ ମଧ୍ୟରୁ ଅନେକ ବସ୍ତ୍ର ନ ଥାଇ ଗଛର ପତ୍ରରେ ଅଙ୍ଗ ଆବୃତ୍ତ କରନ୍ତି ଏବଂ ମୂଳ ଓ ଆଦିମ ଧରଣର

ଧନୁଶର ସାହାଯ୍ୟରେ ଯାହା କିଛି ଶିକାର କରନ୍ତି ତାହା ଖାଇ ଚଳନ୍ତି । ଏହି ବର୍ଷ ଘଟିଥିବା ଏକ ଘଟଣାରୁ ମୁଁ ଗଡ଼ଜାତ ଲୋକଙ୍କର ଚାଲିଚଳଣିର ଅନେକ ଭିତିରିକଥା ଜାଣିପାରିଲି । ଗଡ଼ଜାତ ରାଜାମାନଙ୍କ ମଧ୍ୟରେ ଢେଙ୍କାନାଳ ମହାରାଜା ହେଉଛନ୍ତି ଅନ୍ୟତମ ଧନୀବ୍ୟକ୍ତି । ତାଙ୍କ ରାଜ୍ୟ ଆକାରରେ ତୃତୀୟ ଏବଂ ଏହାର ଅଧିକାଂଶ ଅଞ୍ଚଳ ବନାକୀର୍ଣ୍ଣ ହେଲେ ମଧ ଅନେକ ଅଞ୍ଚଳରେ ଚାଷବାସ ଥିଲା ଏବଂ ତାଙ୍କ ଶାସନାଧୀନରେ ପ୍ରଜାମାନେ ସମୃଦ୍ଧ ଥିଲେ। ସେ ନିଜ ପାଇଁ ୟୁରୋପୀୟ ରୁଚିରେ ଏକ ମନୋରମ ପ୍ରାସାଦ ତିଆରି କରିଥିଲେ—କଟକ ଲାଲବାଗ୍‌ର କମିଶନର ନିବାସର ଏହା ଏକ ଅବିକଳ ପ୍ରତିରୂପ ବୋଲି ସେ ମନେ କରୁଥିଲେ। ତାଙ୍କ ଢେଙ୍କାନାଳ ସହରର ପରିଚ୍ଛନ୍ନତା ପ୍ରତି ଦୃଷ୍ଟି ଦିଆଯାଉଥିଲା ଏବଂ ସେ ଏକ ଡାକ୍ତରଖାନା, ଗୋଟିଏ ବିଦ୍ୟାଳୟ ଓ ଗୋଟିଏ ଅତିଥିଶାଳା ତିଆରି କରି ସେସବୁର ପରିଚାଳନା କରୁଥିଲେ । ସେ ଜଣେ ବିରାଟକାୟ ବ୍ୟକ୍ତି, ଓଜନରେ ପ୍ରାୟ ୨୨ ଷ୍ଟୋନ୍ (୧ ଷ୍ଟୋନ୍ = ୧୪ ପାଉଣ୍ଡ) । ବିରାଟକାୟ ହେଲେ ମଧ ସେ ଥିଲେ ଖେଳପ୍ରିୟ । ଆଠଟି କୋଣଥିବା ଏକ ଚଉକିରେ ବସି ବାଉଁଶ ସାହାଯ୍ୟରେ ୨୪ ଜଣ ଲୋକଙ୍କ ଦ୍ୱାରା ବୁହା ହୋଇ ସେ ଜଙ୍ଗଲକୁ ବାଘ ଶିକାର ପାଇଁ ଯାଉଥିଲେ । କେତେବର୍ଷ ଧରି ସେ କୌଣସି ପ୍ରକାର ଭିତରର ରୋଗ ଭୋଗୁଥିଲେ ଏବଂ ଯନ୍ତ୍ରଣାର ଉପଶମ ପାଇଁ ସେ ଅଫିମ ଖାଇବାର ଜାତୀୟ ଅଭ୍ୟାସ କରିଥିଲେ । କଟକର ଡାକ୍ତର ଷ୍ଟିଓ୍ୱାର୍ଟ ସେ ଖାଉଥିବା ଅଫିମର ପରିମାଣ କମାଇବା ପାଇଁ ଚେଷ୍ଟା କରୁଥିଲେ । ଯେତେବେଳେ ବ୍ୟାଧିର ଯନ୍ତ୍ରଣା ପ୍ରକାଶ ପାଏ ସେତେବେଳେ ମରଫିଆ ବ୍ୟତୀତ ଅନ୍ୟକିଛି ଔଷଧ (ମୋର ମନେ ନାହିଁ) ବ୍ୟବହାର କରିବାପାଇଁ ପରାମର୍ଶ ଦେଉଥିଲେ । ଦିନେ ରାଜା ରାତିରେ ଯନ୍ତ୍ରଣାରେ ଉଠିପଡ଼ିଲେ ଏବଂ ଷ୍ଟିଓ୍ୱାର୍ଟ ସୁପାରିସ୍ କରିଥିବା କୌଣସି ଔଷଧ ନ ପାଇ ଡାକ୍ତରଖାନାରୁ କିଛି ଅଣାଇବା ପାଇଁ ଲୋକ ପଠାଇଲେ । ଡାକ୍ତରଖାନା ଦାୟିତ୍ୱରେ ଥିବା ଜଣେ ଦେଶୀୟ ବଙ୍ଗାଳୀ ଡାକ୍ତର ଅଧରାତିରେ ଉଠି ନିଦବାଉଳାରେ ଗୋଟିଏ ଲ୍ୟାମ୍ପ ନେଇ ଔଷଧ ତିଆରି ବଖରାକୁ ଗଲେ ଏବଂ ଠିକ୍ ଔଷଧ ବୋଲି ଭାବିଥିବା ଗୋଟିଏ ବୋତଲରୁ ଯଥେଷ୍ଟ ପରିମାଣରେ ମାପି ଉଆସକୁ ପଠାଇଦେଲେ । ମହାରାଜା ତାକୁ ପିଇ ସ୍ୱାଦରୁ ଜାଣିପାରିଲେ ଯେ ତାହା ଭୁଲ ଜିନିଷ । ସେ ଭୀଷଣ ରୁଗ୍‌ଣ ଓ ବ୍ୟାଥାତୁର ହୋଇପଡ଼ିଲେ । କଟକକୁ (୫୦ ମାଇଲ ଦୂର) ସାଙ୍ଗେ ସାଙ୍ଗେ ଘୋଡ଼ସବାରହ ବାର୍ତ୍ତାବହ ପଠାହେଲେ ଷ୍ଟିଓ୍ୱାର୍ଟଙ୍କୁ ସାଙ୍ଗେ ସାଙ୍ଗେ ଆସିବାକୁ ଅନୁରୋଧ କରି। ଷ୍ଟିଓ୍ୱାର୍ଟ ସାଙ୍ଗେ ସାଙ୍ଗେ ତାଙ୍କ ପାକସ୍ଥଳୀ ଧୂଆ ପମ୍ପ ଧରି ଘୋଡ଼ାରେ ଧାଇଁଲେ । ସେ ଠିକ୍ ସମୟରେ ପହଞ୍ଚିଲେ । ସେତେବେଳକୁ ବିଚରା ରାଜାଙ୍କର ଅଙ୍ଗପ୍ରତ୍ୟଙ୍ଗ ସାରା ନୀଳ ଏବଂ କଳାଶିରା ବାହାରି ପଡ଼ିଥିଲା । ଉପଯୁକ୍ତ ଚିକିତ୍ସା ପରେ ଅବଶେଷରେ ରାଜା ସୁସ୍ଥ ହେଲେ। ତା'ପରେ ଷ୍ଟିଓ୍ୱାର୍ଟସଙ୍କୁ ସେ ବୋତଲଟି ଦେଖିବାକୁ କୁହାଗଲା । ସେ ପରୀକ୍ଷା କରି ଦେଖିଲେ ତାହା ବିଷ (୧) ସେ ସଙ୍ଗେ ସଙ୍ଗେ ଦେଶୀ ଡାକ୍ତରଙ୍କୁ ଘଚରା ଉଚରା କରିବାପାଇଁ ଡାକ୍ତରଖାନା

(୧) ରାଜାଙ୍କର ସେବନୀୟ ଔଷଧ ଥିଲା ହାଇଡ୍ରୋ–କିଛି; କିନ୍ତୁ ଦେଶୀ ଡାକ୍ତର ଯେଉଁ ଔଷଧ ପଠାଇଲେ ତାହା ହାଇଡ୍ରୋ—ଅନ୍ୟକିଛି ଏବଂ ଉୟଙ୍କର ବିଷ । ପରେ ଔଷଧ ଖାନାର ବୋତଲ ସବୁ ପରୀକ୍ଷା କରି ଷ୍ଟିଓ୍ୱାର୍ଟ ଦେଖିଲେ ଯେ ହାଇଡ୍ରୋ ଅମୁକ, ହାଇଡ୍ରୋ ସମୁକ ନାମରେ ଅନେକ ବୋତଲ ଥାକରେ ଏପରି ଲଗାଲଗି ହୋଇଛି ଯେ ସେ ସବୁଥିରେ କେବଳ 'ହାଇଡ୍ରୋ'ଟି ଦିଶୁନି ଏବଂ ଚିଟ୍‌ର ବାକି ଅଂଶ ପାଖ ବୋତଲରେ ଲୁଚି ଯାଇଛି । ଏହା ସଂପୂର୍ଣ୍ଣ ଭାବରେ ଏକ ଭ୍ରାନ୍ତି ମାତ୍ର ଏବଂ ଏଥିପାଇଁ ଦେଶୀ ଡାକ୍ତରଙ୍କର ଏତେ ତ୍ରସ୍ତ ହୋଇଯିବାର ନ ଥିଲା; କିନ୍ତୁ ସେ ଥିଲେ ଜଣେ ବଙ୍ଗାଳୀ । ବଙ୍ଗାଳୀମାନେ ପୃଥିବୀରେ ସବୁଠାରୁ ଅଧିକ କାପୁରୁଷ ଜାତି ।

ଗଲେ; କିନ୍ତୁ ଦେଖିଲେ ସେ ଯେ ଅନ୍ତର୍ଦ୍ଧାନ ହୋଇଯାଇଛନ୍ତି । ରାଜାଙ୍କୁ ବିଷ ଦିଆଯାଇଛି ବୋଲି ଖବର ଯେମିତି ଡାକ୍ତରଖାନାରେ ପହଞ୍ଚିଲା ସେ ଦୁର୍ଘଟଣାର କାରଣ ସେ ନିଜେ ବୋଲି ଜାଣିପାରି ସେ ଭୀରୁ ବଙ୍ଗାଳୀ କାକୁସ୍ଥ ହୋଇପଡ଼ିଲେ । ସେ କୋଠରିରୁ ଅନ୍ଧକାର ମଧ୍ୟକୁ ଧାଇଁଗଲେ ଏବଂ ଆଉ ଦେଖାଗଲେ ନାହିଁ। ହୋ ହଲ୍ଲା ଉଠିଲା, ସନ୍ଧାନୀମାନଙ୍କୁ ନିଯୁକ୍ତ କରାଗଲା, ସବୁ ଆଡ଼କୁ ଖବର ପଠାଗଲା, ଏପରିକି ବଙ୍ଗଳାରେ ତାଙ୍କ ନିଜ ଗାଁକୁ ମଧ୍ୟ । କିନ୍ତୁ ସେ ଦେଶୀ ଡାକ୍ତର ମିଳିଲେ ନାହିଁ । ଢେଙ୍କାନାଳ ଲୋକେ ବିଶ୍ୱାସ କଲେ ଯେ ତାଙ୍କ ଛୋଟ ସହର ଚାରିପଟେ ଥିବା ଘନ ଅରଣ୍ୟ ମଧ୍ୟରେ ବୁଲି ସେଠାରେ ବହୁ ପରିମାଣରେ ଥିବା ବାଘ ବା ଅନ୍ୟ ହିଂସ୍ରଜନ୍ତୁ ମୁହଁରେ ପଡ଼ି ମଲେ। ଏହା ଖୁବ୍ ସମ୍ଭବ ଏବଂ ଏହି ଜଙ୍ଗଲରେ ଜଣେ ମୃତ ଲୋକର ହାଡ଼ ଖୋଜିବା ଅର୍ଥ ନଡ଼ାଗଦା ଭିତରୁ ଛୁଞ୍ଚି ଖୋଜିବା। ଆମେ କେବଳ କହିପାରୁ ଯେ ସେ ଅନ୍ତର୍ଦ୍ଧାନ ହୋଇଗଲେ ।

ମହାରାଜା ସେଇ ମୁହୂର୍ତ୍ତରେ ବର୍ତ୍ତିଗଲେ; କିନ୍ତୁ ତାଙ୍କ ସ୍ୱାସ୍ଥ୍ୟ ପ୍ରତି ତାହା ଥିଲା ଏକ ଗୁରୁ ଧକ୍କା । ସେ ଅଧିକଦିନ ବଞ୍ଚିପାରିଲେ ନାହିଁ, ଦୁଇତିନି ମାସ ପରେ ମରିଗଲେ । ତାଙ୍କର ଏକମାତ୍ର ନାବାଳକ ପୁଅ ଥିଲା; ତେଣୁ ସରକାର କୋର୍ଟ ଅଫ୍ ଓ୍ୱାର୍ଡ୍‌ସ୍ ପରିଚାଳନା ପରି ରାଜ୍ୟଭାର ହାତକୁ ନେଲେ । ମୋତେ ସେଠାକୁ ଯାଇ ସବୁ ବିଷୟ ବୁଝିବାକୁ ପଡ଼ିଲା—ଅର୍ଥ ବ୍ୟବସ୍ଥାଠାରୁ ବିଚାର ବ୍ୟବସ୍ଥା ଏବଂ ଉଆସର ରୋଷେଇ ରାଜ୍ୟର ଭବିଷ୍ୟତ ପରିଚାଳନା, ମୃତ ମହାରାଜାଙ୍କ ପରିବାରର ଭରଣପୋଷଣ ଏବଂ ନାବାଳକର ଯତ୍ନ ଏବଂ ଶିକ୍ଷା ପର୍ଯ୍ୟନ୍ତ ।

ଏହା ଏକ ମାମୁଲି ଜମିଦାରୀ ହୋଇଥିଲେ କାମ ଖୁବ୍ ସହଜ ହୋଇଥାନ୍ତା ଏବଂ ସେପରି ଆଗରୁ ଅନେକଥର ମୁଁ କରିଛି; କିନ୍ତୁ ପ୍ରଥମ କଥା ହେଲା ଯେ କୌଣସି କରଦ ରାଜ୍ୟ (ସେତେବେଳେ Tributary ବୋଲି କୁହାଯାଉଥିଲା) ଏବଂ ଅର୍ଦ୍ଧ ସ୍ୱାଧୀନ ରାଜ୍ୟ ଉପରେ ହସ୍ତକ୍ଷେପ କରିବାର ଆଇନଗତ ଅଧିକାର ଆମର ନ ଥିଲା, ଏବଂ ଦ୍ୱିତୀୟତଃ ସବୁ କିସମର ରାଜପରିବାର ଏବଂ ତା' ସାଙ୍ଗକୁ ରାଜ୍ୟର ଲୋକମାନଙ୍କ ଇଚ୍ଛା, ଅନୁଭୂତି, ଅନ୍ଧବିଶ୍ୱାସ, ଅହମିକା ଓ ସଉକ୍‌କୁ ମଧ୍ୟ ବିଚାରକୁ ନେବାକୁ ପଡୁଥିଲା । ଆର୍ଥିକ ଦୃଷ୍ଟିରୁ ଢେଙ୍କାନାଳ ଥିଲା ଖୁବ୍ ସମୃଦ୍ଧ, ରାଜସ୍ୱ ଖୁବ୍ ବେଶି ନ ହେଲେ ମଧ୍ୟ ସମ୍ମାନଜନକ । ସ୍ୱର୍ଗତ ମହାରାଜା ଥିଲେ ଜଣେ ମିତବ୍ୟୟୀ ଆଧୁନିକ ଧରଣର ଲୋକ ଏବଂ ଜଣେ ଦକ୍ଷ ଶାସକ; ତାଙ୍କର ଏକମାତ୍ର ବଦଖର୍ଚ୍ଚ ଥିଲା, ତାଙ୍କ ଚାରିପଟେ ଥିବା ଲୋକଙ୍କୁ ଯଥେଷ୍ଟ (କିନ୍ତୁ ଆଖିବୁଜା ନୁହେଁ) ଦାନ କରିବା । କିନ୍ତୁ ତାଙ୍କ ଚରିତ୍ରର ଏଇ ମହନୀୟତା ହିଁ ଅସୁବିଧା ସୃଷ୍ଟିକଲା । ସେ ବହୁକାଳ ଧରି ଶାସନ କରିଥିଲେ ଏବଂ ନିଜକୁ ଲୋକଙ୍କ ନିକଟରେ ଏତେ ପ୍ରିୟ କରିଥିଲେ ଯେ ସେମାନେ ତାଙ୍କର କରିଯାଇଥିବା ବ୍ୟବସ୍ଥାକୁ ଏପଟସେପଟ କରିବା ସହିପାରୁ ନ ଥିଲେ । ଉନ୍ନତିପାଇଁ ସବୁପ୍ରକାର ପ୍ରସ୍ତାବର ବିରୋଧ କରାଗଲା ।

ଶେଷରେ ମୁଁ ସେ ବିଷୟକୁ ସେହିପରି ଛାଡ଼ିଦେବାକୁ ମନସ୍ଥ କଲି; ଲୋକମାନଙ୍କ ଭ୍ରାନ୍ତ କିନ୍ତୁ ପ୍ରଶଂସାର୍ହ ଭାବପ୍ରବଣତା ଉପରେ ଆଘାତ କରି କେବଳ ବୈଷୟିକ ଉନ୍ନତି କରାଇବା ଯୁକ୍ତିଯୁକ୍ତ ମନେହେଲା ନାହିଁ ।

ରାଜ ପରିବାର ପ୍ରତି କିନ୍ତୁ ସେସବୁ ପ୍ରଯୁଜ୍ୟ ନୁହେଁ । ରାଜପ୍ରାସାଦର ପଛପଟେ ଏକ ପ୍ରଶସ୍ତ ଅଗଣାର ଚାରିପଟେ ପ୍ରକୃତରେ ଏକ ବିରାଟ ଅନ୍ଧାରିଆ କୋଠା ଥିଲା ଯେଉଁଠାରେ କି ମୁଁ ଶୁଣିଲି ପ୍ରାୟ ଷାଠିଏ ଜଣ ସ୍ତ୍ରୀଲୋକ ବିଶିଷ୍ଟ ସ୍ୱର୍ଗତ ରାଜାଙ୍କର ଅନ୍ତଃପୁର ଥିଲା । ସାଧାରଣରେ

ଏକ ଅତି ଖରାପ ଧାରଣା ଥିଲା ଯେ ସ୍ୱାସ୍ଥ୍ୟ ଖରାପ ଯୋଗୁଁ ରାଜା ଅନେକ ବର୍ଷ ଧରି ତାଙ୍କ ସ୍ତ୍ରୀମାନଙ୍କ ପାଖକୁ ଯାଇପାରୁ ନ ଥିଲେ ଏବଂ ଉଆସର ଚାକରମାନଙ୍କଠାରୁ ଶୁଣିଲି ଯେ ସେ ଅନ୍ତଃପୁରକୁ ମଧ୍ୟ ଆସିପାରୁ ନ ଥିଲେ ।

ଆହୁରି ମଧ୍ୟ ଜଣାଗଲା ଯେ ଓଡ଼ିଶା ରାଜପରିବାରର ପରମ୍ପରା ଅନୁଯାୟୀ ରାଜା ମରିଗଲେ ତାଙ୍କ ରାଣୀମାନଙ୍କୁ ଅଲଗା କରି ଦିଆଯାଏ । ଯେଉଁମାନଙ୍କର ମୃତ ରାଜାଙ୍କ ଆଡୁ କୌଣସି ସନ୍ତାନ ନାହିଁ, ସେମାନଙ୍କୁ ବାହାରିଯାଇ ଅନ୍ୟ ବିବାହ କରିବାକୁ ଅନୁମତି ଦିଆଯାଏ । ଯେଉଁମାନଙ୍କର ଅଛି ସେମାନଙ୍କୁ ରହିବାକୁ ପଡ଼େ ଏବଂ ସେମାନଙ୍କ ଭରଣପୋଷଣ ପାଇଁ ଜୀବନବ୍ୟାପୀ ଭତ୍ତା ଦିଆଯାଏ । ଗୋଟିଏ ମାତ୍ର ନାବାଳକ ପୁତ୍ର ଥିବାରୁ ସେଇ ଅନ୍ଧାରିଆ କୋଠାଟାକୁ ବହୁ ପରିମାଣରେ ଖାଲିକରିବା ଦରକାର ପଡ଼ିଲା । ଉଆସର ଭୃତ୍ୟମାନଙ୍କର ବିରାଟ ବାହିନୀରୁ ଅନେକ କମେଇ ଦିଆଗଲା । ଏମାନଙ୍କ ନିଯୁକ୍ତି ଓ ଦରମା ଦେବାର ପ୍ରଥା ଥିଲା ଅଜବ ପ୍ରକାରର । ପ୍ରତ୍ୟେକ ପଦପାଇଁ ଥାନ୍ତି ଦୁଇଜଣ ଲୋକ—ଦୁଇଜଣ ପ୍ରଧାନ ପାଇକ, ଦୁଇଜଣ ରାନ୍ଧୁଣିଆ (ବ୍ରାହ୍ମଣ) । ଏପରି କାହିଁକି ହୋଇଛି ବୋଲି ପଚାରିବାରୁ ଶୁଣିଲି ଯେ ଚାକରମାନେ ଟଙ୍କା ଆକାରରେ ଦରମା ନ ପାଇ ନିଷ୍କର ଜାଗିରି ପାଇଥାଆନ୍ତି ଏବଂ ସେଥିପାଇଁ ପ୍ରତ୍ୟେକ ପଦ ପାଇଁ ଦୁଇଜଣ ଥାନ୍ତି ଯେପରିକି ଜଣେ ଜମିଚାଷ କରିବାକୁ ଯାଇଥିବାବେଳେ ଅନ୍ୟଜଣକ ଉଆସରେ ଖଟୁଥିବ । ସେମାନେ ବିଲାତ ରାଣୀଙ୍କ ସେବାରେ ନିଯୁକ୍ତ ଲର୍ଡ୍ (Lord in waiting)ଙ୍କ ପରି ପାଳିକରି ରହନ୍ତି । ଏପରିକି ରାଜାଙ୍କ ଭ୍ରମଣ ଚଉକିକୁ ବହନ ସେବାର ନିଯୁକ୍ତ ଚବିଶ ଜଣ ବାହକ ହେଉଛନ୍ତି, ପ୍ରକୃତରେ ଅଠଚାଳିଶ ଜଣ । ସେମାନଙ୍କ ଭିତରୁ ଅଧା ସେବାରେ ନିଯୁକ୍ତ ଥିବାବେଳେ ବାକି ଅଧକ ନିଜ ନିଜ ଜମି ଚାଷ କରୁଥାଆନ୍ତି । ଅଦ୍ଭୁତ ପ୍ରଥା ଇଏ; କିନ୍ତୁ ଅର୍ଥ ଆକାରରେ କେହି ପାଉ ନ ଥିବାରୁ ବ୍ୟୟସାପେକ୍ଷ ନୁହେଁ । ଜନବିରଳ ଜଙ୍ଗଲ ଅଞ୍ଚଳରେ ଭୂମିର ପରିମାଣ ଯଥେଷ୍ଟ କମ୍ ।

ଅତିଶୀଘ୍ର ସବୁକାମର ବନ୍ଦୋବସ୍ତ ଓ ଥଇଥାନ କରିବାପାଇଁ ସେଠାରେ କେତେଦିନ ରହି କଟକ ଫେରିଲି । ଘରକୁ ଫେରିବା ପରେ ପରେ ଏହି ଭ୍ରମଣ ବର୍ଣ୍ଣନା କରି ଇଲିଅଟ୍ ପାଖକୁ ଲେଖିଥିବା ଖଣ୍ଡେ ଚିଠି ଏବେ ମିଳିଛି । ଭାରତରେ କେତେକ ଅଞ୍ଚଳରେ ବର୍ଷାକାଳରେ ଭ୍ରମଣର ଯେଉଁ କଷ୍ଟ ଏହା ତାହାର ଏକ ସୁନ୍ଦର ଉଦାହରଣ ହୋଇଥିବାରୁ ତା'ର ନକଲଟି ଦେଉଛି ।

କଟକ, ଅଗଷ୍ଟ ୩୧, ୧୮୭୭

'ଗତ ରାତ୍ର ସାତଟାବେଳେ ଢେଙ୍କାନାଳ ଛାଡ଼ିଲି ଏବଂ ଆଉ ଫେରି ନ ହେବା ପରି ଅନେକ ବାଟ ଚାଲିଗଲା ପରେ ଆସିଗଲା—କୁଆପଥର ପରି ଘୋର ବର୍ଷା । ବିଜୁଳି ଘଡ଼ଘଡ଼ି ସହ ଚତୁର୍ଦ୍ଦିଗରେ ବର୍ଷିବାକୁ ଲାଗିଲା । ବାହକମାନେ ବିଶେଷକିଛି ବସ୍ତ୍ର ପରିଧାନ କରନ୍ତି ନାହିଁ, ମନେହୁଏ ତାଙ୍କ ଚମ ଉପରେ ସେସବୁ ପଡ଼ିବା ସେମାନେ ଭଲ ପାଆନ୍ତି ନାହିଁ । ଯାହାହେଉ ସେମାନେ ଠିକ୍ ଛାଡ଼ିଦେବାକୁ ବସିଚନ୍ତି, ଜଣେ ଜମାଦର ଲଣ୍ଠନଟିଏ ଧରି ଆସି ପହଞ୍ଚିଲା ଆଉ କହିଲା ଯେ, ବର୍ଷା ଦେଖି ସେ ରାଜାଙ୍କ ନିଜ କୋଠରିର ଲଣ୍ଠନଟି ନେଇ ଆସିଚି । ଲାଲ ଓ ନୀଳ କାଚ ପାତ ଥାଇ ଏହା ଏକ ଅଦ୍ଭୁତ ପଦାର୍ଥ, ଦୁଇପଟର ବହଳ ଜଙ୍ଗଲ ଭିତରେ ଏହା

ନିର୍ଜୀବ ବିବର୍ଣ୍ଣ ଆଲୋକ ପ୍ରଦାନ କରୁଥାଏ । ଏହି ଅଦ୍ଭୁତ ଧରଣର କ୍ଷୁଦ୍ର ପଛିମା (୧) ବା ଉତ୍ତର ଦେଶୀୟ ଲୋକ (ଏହି ଅଞ୍ଚଳରେ ଏହା ଏକ ସମ୍ମାନଜନକ ଉପାଧି) ହେଉଛି ଏକ ଅନ୍ତଃଉଚ୍ଚର ପୂର୍ବତନ ବାହିନୀର ମୁସଲମାନ । ତା'ର ଥିଲା ହଳେ ବଡ଼ ଜୋତା, ଗୋଟାଏ ଖଣ୍ଡା, ଗୋଟାଏ ପଦକ ଆଉ ଉଚ୍ଚ ସ୍ୱର । ବାହକମାନଙ୍କୁ ଥରେ ବେଟା ଏବଂ ଆଉଥରେ ବେଟିରେ—(୨) ବୋଲି ସମ୍ବୋଧନ କରି ଖୁବ୍ ଚିତ୍କାର ଓ ଉପର ତଳ ଧାଁ-ଧପଡ଼ କରି ସେମାନଙ୍କୁ ଯିବାପାଇଁ ପ୍ରବର୍ତ୍ତାଇଲା । ଶେଷକୁ ଆମେ ଏକ ନାଳ ନିକଟରେ ପହଞ୍ଚିଲୁ । ପୂର୍ବରୁ ତାହା ନ ଥିଲା; କିନ୍ତୁ ବର୍ତ୍ତମାନ ସେଠି ଗର୍ଜନକାରୀ ପ୍ରବଳ ସ୍ରୋତ । ପାଲିଙ୍କିକୁ ସେଠାରେ ରଖିଦେଇ ଢେଙ୍କାନାଳରୁ ହାତୀ ଅଣେଇବା ଛଡ଼ା ଅନ୍ୟ କିଛି କରିବାର ନ ଥିଲା । ପ୍ରକୃତିର ଯୁଦ୍ଧସଜ୍ଜା ମଧ୍ୟରେ ମୁଁ ଜାକିଜୁକି ହୋଇ ବସି ପାଇପ୍‌ଟିଏ ଟାଣୁଥାଏ । ବାହକମାନେ ଗଛତଳେ ବସି ଥରୁଥାଆନ୍ତି ଏବଂ ମୋର ଗୋଟିଏ ସିଗାର ନେଇ ନିଜ ନିଜ ମଧ୍ୟରେ ଟାଣୁଥାନ୍ତି, ପାଲିଙ୍କି ଛାତ ଉପରେ ବର୍ଷା ଛେଚୁଥାଏ । କବାଟରେ ଫାଟ୍‌ଦେଇ ପାଣିର କ୍ଷୁଦ୍ର ଶୀତଳ ସୂତାଟିଏ ଜଙ୍ଘ ଉପର ଦେଇ ବହିଯାଉଛି । ମୋତେ ଜଣାଗଲା ଯେ, ଗତ ଚିଠିରେ ଢେଙ୍କାନାଳ ବିଷୟରେ ଯେଉଁ ଧାଡ଼ିଟି ଲେଖିଥିଲି ସେଥିରେ ଶବ୍ଦଟିର ସଠିକ୍ ଉଚ୍ଚାରଣ ହୋଇନଥିଲା । ଚିତ୍କାର ସହ ଢେଙ୍କାନାଳର ସାମ୍ୟ ନାହିଁ । ମୋତେ ଜଣାଯାଏ "ଆମ ଜୀବନ୍ତ ପଡ଼ୋଶୀ"ର ଭାଷା (ସମ୍ବାଦପତ୍ରର ଉକ୍ତି ଅନୁଯାୟୀ) ସେଥିପାଇଁ ଅଧିକତର ପ୍ରଯୁଜ୍ୟ ହେବ । ତେଣୁ ମୁଁ ଲେଖୁଚି—

ଦୁର୍ଗନ୍ଧ ବନ୍ଧୁର ପଥେ ଯାଉଥିଲି ଢେଙ୍କାନାଳେ ମୁହିଁ
ପଥରେ ପ୍ରବଳ ବର୍ଷା
ବିଷୁବ ବାତ୍ୟାର ବେଗେ ଗର୍ଜୁଥିଲା ତହିଁ
ଢେଙ୍କାନାଳ ଚତୁର୍ଦ୍ଦିଗେ ପ୍ରଳୟ ବର୍ଷଣ
ଶୃଗାଳ ଗଧିଆଙ୍କର ତାହା ମଧ୍ୟେ
ଶୁଭୁଥିଲା କର୍କଶ ନିସ୍ୱନ
ଅଭେଦ୍ୟ ସେ କୁମାରୀ ବନରେ
ଢେଙ୍କାନାଳ ପଥେ ଯାଏ ସଂକୀର୍ଣ୍ଣ ସରଣୀ
ସୁପୁଷ୍ପିତ ବନସ୍ଥଳି ଯହିଁ
ଢାଳୁଥିଲେ ସୌରଭର ସ୍ୱକୀୟ ରାଗିଣୀ ।❋

---

(୧) ଶକ୍ତି ଓ ବୀରତ୍ୱରେ ଅଧିକ ଥିବାରୁ ସମର ଅନଭିଜ୍ଞ ବଙ୍ଗାଳୀ ଓ ଓଡ଼ିଆମାନେ ଏମାନଙ୍କୁ ଲୋଡ଼ନ୍ତି ।

(୨) ବେଟା—ପୁଅ, ବେଟିରେ—(ପୂରା ଶବ୍ଦଟା କହୁ ନାହିଁ) ଦେଶୀୟ ଲୋକେ ଖୁବ୍ ବ୍ୟବହାର କରୁଥିବା ଗାଳିଦେବାପାଇଁ ଏକ ଅଶ୍ଳୀଳ ଶବ୍ଦ ।

❋ Fe suis parti de Dhenkanal/Pasun chemintre's—ine'gal/uin gros orage tropical/Versait son torrent pluviate/Et tout autour de Dhenkanal/Harlaient les loups at les chacals Les sentiers de Dhenkanal Menent a' la foret Virginale/Dont les bocages fleuris uin parfum tres original.

(ଆହୁରି କେତେ ଅଛି । କିନ୍ତୁ ଏତିକି ଯଥେଷ୍ଟ ହେବ । ଫର୍ଦ୍ଦଟି ଚିରିଯାଇଛି ।) ଏହାପରେ ଦୁଇଟା ହାତୀ ଆସି ପହଞ୍ଚିଲେ । ଦୁଇଟି ମଧ୍ୟରୁ ବାସ୍ତବିକ ବଡ଼ିଆ ପଶୁଟିଏ, ବିରାଟ ଦନ୍ତା, ପୂରା ଦଶଫୁଟ ଉଚ୍ଚା । ମୋ ପାଲିଙ୍କିଟାକୁ ସେମାନେ ସିଧା ତା' ଉପରକୁ ଟେକିଦେଲେ । ବାଉଁଶ ଦୁଇଟା ଛକି କରି ରହିଲା, ଗଛମାନଙ୍କରେ ବାଜେ କି ନା ବାଜେ । ସାନ ପଶୁଟା ଉପରେ ମୁଁ ଚଢ଼ିଲି । ଏସବୁ ଆମେ ଦେଖିଥିବା ଜାଦୁ ଛବି (Rembrant) ଭଳି । ତୁମ ମନରେ ଛବି ଆଙ୍କି ନିଅ—ଅଣ ଓସାରିଆ ରାସ୍ତା, ଲମ୍ବା ଲମ୍ବା ଗଛର ଛାଇ, ଚାରିଆଡ଼େ ଘୋର ଜଙ୍ଗଲ । ସେଥିରେ କଳା କୁତ୍ସିତଦର୍ଶନ ଏକ ନାଳ ପାରିହେବା କଥା, ଯାହାର କଡ଼ସବୁ ଅତି ତୀଖା ହୋଇ ଅଦ୍ଭୁତ ଓ ଭୟଙ୍କର ଦେଖା ଯାଉଥାଏ । ଚନ୍ଦ୍ରକିରଣ ପଡ଼ିଥାଏ; କିନ୍ତୁ ବହଳ ଓ ମନ୍ଥରଗାମୀ ମେଘଯୋଗୁଁ ତାହା ଅତି କ୍ଷୀଣ ଓ ଅନିୟମିତ । ଆଗେ ଆଗେ ଗଛସନ୍ଧିର ଫାଙ୍କ ଦେଇ ଚାଲିଛି ବଡ଼ ହାତୀଟା । ସେଇ ଅଦ୍ଭୁତ ଅନିଶ୍ଚିତ ଆଲୋକରେ ତା' ଆକାରର ଦୁଇଗୁଣ ଦେଖାଯାଉଚି । ଆହୁରି ଉପରକୁ ଅଛି ପାଲିଙ୍କି । ପଛରେ ଇତସ୍ତତଃ ମଶାଲ ଆଲୁଅ ଏବଂ ଦଳେ କଳାକଳା ଲୋକ ଅନ୍ୟ ହାତୀଟିରେ ଦଳଦଳ ହୋଇ ନାଳ ପାର ହେଉଥାନ୍ତି । ଏହି ଦୃଶ୍ୟ ତୁମେ ଦେଖିପାରୁ ନାହଁ ? ଏହା ହେଉଛି ଛାଇ ଆଲୁଅର ଯାଦୁଖେଳ, ବିପୁଳ ଅନ୍ଧକାର ମଧ୍ୟରେ ଏଠିସେଠି ଆଲୋକର ବିନ୍ଦୁ ଏବଂ ସର୍ବୋପରି କ୍ଷୀଣ ରହସ୍ୟମୟ ଜ୍ୟୋତ୍ସ୍ନା । ତା'ସାଙ୍ଗକୁ ଯଦି ତୁମ ପାଦ ସହ ଡାହାଣ ଗୋଡ଼ର ଅଧାଅଧି ଓଦା ହୋଇଯାଇଥାଏ, ତୁମେ ଯଦି ହଲାହଲି ଫଳରେ କ୍ଳାନ୍ତ ଓ ତନ୍ଦ୍ରାତୁର ହୋଇପଡ଼ିଥାଅ, ତୁମ ଅଫିସ୍ ବାକ୍ସ ଜଣେ ଉଲଗ୍ନ ଜଙ୍ଗଲି ମୁଣ୍ଡରେ ବୋହି ସ୍ରୋତ ପାର ହେଉଥାଏ ଏବଂ ତା'କାନ୍ଧଯାଏ ପାଣି ଲାଗିଥାଏ; ପୁଣି ଆହୁରି ଦଶଟା ଖଣ୍ଡେ ପୋଲ ନ ଥିବା ନାଳ ଏବଂ କଟକ ଓ ତୁମ ମଧ୍ୟରେ ବିରାଟ ମହାନଦୀ ଅଛି ବୋଲି ତୁମେ ଅବହିତ ଥାଅ ତେବେ ତୁମେ ସେ ଦୃଶ୍ୟର ମହାଭୟଙ୍କରତା ହୃଦୟଙ୍ଗମ କରିପାରିବ । ସୌଭାଗ୍ୟବଶତଃ ମୋ ପାଖରେ ବ୍ରାଣ୍ଡି ବୋତଲଟାଏ ଥିଲା ଯାହାର ସଦ୍‌ବ୍ୟବହାର ମୁଁ ସେଠାରେ କଲି; ପୁନଶ୍ଚ ବିଚରା ସେ କ୍ଳାନ୍ତ ଜମାଦାର, ତା'ର ଜୋତା ଓ ଚିତ୍କାରକୁ ଧନ୍ୟବାଦ ଯାହାଫଳରେ ପଥର ସମସ୍ତ ଦୁର୍ଦ୍ଦଶାରୁ ଆମେ ନିର୍ବିଘ୍ନରେ ପାରି ହେଲୁ ଏବଂ ଭୋର୍‌ରୁ ମହାନଦୀ ନିକଟରେ ପହଞ୍ଚିଲୁ; ସେଠାରେ ଥିଲା 'ପାଇଓନିଅର' । ଡେକ ଉପରେ ଚକ୍‌ଚକିଆ କନା ପଡ଼ିଥିବା ଟେବୁଲ୍ ଉପରେ ଅଣ୍ଡା, ଟୋଷ୍ଟ, ଗ୍ରହା ଓ ଅନ୍ୟାନ୍ୟ ଆବଶ୍ୟକୀୟ ଦ୍ରବ୍ୟ ମୋତେ ସ୍ୱାଗତ କଲେ ଏବଂ ଘରେ ମୁଁ ସୁସ୍ଥ ଅବସ୍ଥାରେ ଆଠଟାରେ ପହଞ୍ଚିଲି ।

ଏହି ବର୍ଷ ଆଉ ଏକ ଗୁରୁତର ଘଟଣା ଘଟିଥିଲା ଓଡ଼ିଶାର ସର୍ବୋଚ୍ଚ ଦେଶୀୟ ରାଜାଙ୍କ ମନ୍ଦ ବ୍ୟବହାର ଫଳରୁ । ଅପରାଧୀ ଉଚ୍ଚ ଆସନ ଓ ବିଶେଷ ଧରଣର ପବିତ୍ର ଆସ୍ଥାନର ଅଧିକାରୀ ହୋଇଥିବାରୁ ଏହାକୁ ସମାଧାନ କରିବା ଖୁବ୍ କଷ୍ଟସାଧ ହୋଇ ପଡ଼ିଲା । ବାସ୍ତବରେ ସେ ଜଣେ ନିର୍ବୋଧ, ଲମ୍ପଟ ଓ ଆଡ଼ପାଗଳା ଟୋକା ହେଲେ ମଧ୍ୟ ଓଡ଼ିଶାର ହିନ୍ଦୁମାନଙ୍କ ଦ୍ୱାରା ସେମାନଙ୍କର ମହାନ୍ ଦେବତା ଜଗନ୍ନାଥଙ୍କ ଜୀବନ୍ତ ପ୍ରତିମୂର୍ତ୍ତି ବୋଲି ମନେ କରାଯାଉଥିଲେ । ପ୍ରାଚୀନ ଓଡ଼ିଶା ରାଜ୍ୟ ଷୋଡ଼ଶ ଶତାବ୍ଦୀରେ ମୁସଲମାନଙ୍କର ଅଧୀନକୁ ଆସିବା ପର୍ଯ୍ୟନ୍ତ ବହୁକାଳଧରି ବିଭିନ୍ନ ରାଜବଂଶଦ୍ୱାରା ଶାସିତ ହେଉଥିଲା । ଯେତେବେଳେ ସେ ଦୁର୍ଦ୍ଦଶା ପଡ଼ିଲା ରାଜା ତାଙ୍କ ରାଜଧାନୀ କଟକରୁ ପଳାଇଯାଇ ଦକ୍ଷିଣ ପଶ୍ଚିମ ଆଡ଼କୁ ଥିବା ଦୁର୍ଗମ ପାର୍ବତ୍ୟ ଅଞ୍ଚଳରେ ଆଶ୍ରୟ ନେଲେ । ସେଠାରେ ସେ ଏବଂ ତାଙ୍କ ବଂଶଧରଗଣ ଖୋର୍ଦ୍ଧାଠାରେ ବ୍ରିଟିଶ ଶାସନ ପର୍ଯ୍ୟନ୍ତ ଏକ ଦୟନୀୟ ଅର୍ଦ୍ଧସ୍ୱାଧୀନ ଅବସ୍ଥା ବଜାୟ ରଖିଥିଲେ । ସେମାନଙ୍କ ବଂଶର

ଇତିହାସ ଓ ଉତ୍‌ଥାନ ପତନ ଏତେ ଜଟିଳ ଓ ବହୁବିଧ ଯେ ତାହା ଏଠାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ଏତିକି କହିଲେ ଯଥେଷ୍ଟ ହେବ ଯେ ବ୍ରିଟିଶ ସରକାର ସମସ୍ତ ପ୍ରକାର ବାସ୍ତବ ଦାବିକୁ ସ୍ୱୀକାର କରିବା ବିଷୟରେ ତାଙ୍କର ନିର୍ଦ୍ଦିଷ୍ଟ କାର୍ଯ୍ୟପନ୍ଥା ଅନୁଯାୟୀ ସେହି ଖୋର୍ଦ୍ଧାର ରାଜା (ଆମେ ତାଙ୍କୁ ଯେପରି ଡାକୁ) ବା ଓଡ଼ିଶାର ରାଜା ( ଲୋକେ ତାଙ୍କୁ ଯେପରି ମନେ କରନ୍ତି) ଙ୍କୁ କେତେଗୁଡ଼ିଏ ଖୁବ୍ ବଡ଼ ଓ ଉର୍ବର ପ୍ରଗଣା ଭୋଗଦଖଲ କରିବା଼କୁ ଦେଇଥିଲେ । ଏହା ଆଂଶିକ ତାଙ୍କ ନିଜ ଭରଣପୋଷଣ ଏବଂ ଆଂଶିକ ଜଣାଶୁଣା ତୀର୍ଥସ୍ଥାନ ପୁରୀଠାରେ ଥିବା ଜଗନ୍ନାଥଙ୍କ ପ୍ରସିଦ୍ଧ ମନ୍ଦିରର ରକ୍ଷଣାବେକ୍ଷଣ ପାଇଁ ଉଦ୍ଦିଷ୍ଟ ଥିଲା । ଏହି ମନ୍ଦିର ଦ୍ୱାଦଶ ଶତାବ୍ଦୀରେ ଓଡ଼ିଶାର ରାଜାଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଏବଂ ପରବର୍ତ୍ତୀ ସମୟର ରାଜାମାନେ ଏହାକୁ ସୁରକ୍ଷିତ ରଖିଥିଲେ, ବହୁ ସମ୍ପତ୍ତି ଦାନ କରିଥିଲେ ଓ ଭଗବାନ୍‌ଙ୍କ ଅନ୍ୟତମ ସେବକ ଭାବରେ ପରିଚିତ ହେବା ଏକ ବଡ଼ ମହତ୍ତ୍ୱ ବୋଲି ଜ୍ଞାନ କରୁଥିଲେ । ଜଗନ୍ନାଥ ରଥରେ ବସି ଯିବାର ବଡ଼ ଉତ୍ସବଦିନ ରାଜା ମନ୍ଦିର ଆଗରେ ଥିବା ପାହାଚକୁ ସୁନାର ପହଁରାରେ ଓଳାନ୍ତି । ରାଜାଙ୍କୁ ତାଙ୍କ ପାର୍ବତ୍ୟ ନିବାସ ଖୋର୍ଦ୍ଧାରୁ ବାହାରକରି ଆଣିବା ଏବଂ ସରକାରୀ କର୍ମଚାରୀଙ୍କ ହାତରେ ତାଙ୍କ ଜମିଦାରୀର ଶାସନଭାର ନ୍ୟସ୍ତ କରିବା ଆବଶ୍ୟକ ପଡ଼ିଲା । ସେମାନେ ଆଦାୟ ହେଉଥିବା ରାଜସ୍ୱ ତାଙ୍କୁ ଦେଉଥିଲେ ଏବଂ ତାଙ୍କୁ ଓ ତାଙ୍କର ପରିବାରଙ୍କୁ ପୁରୀରେ ମନ୍ଦିର ନିକଟରେ ଥିବା ଗୋଟିଏ ସୁନ୍ଦର ଓ ବଡ଼ ପ୍ରାସାଦରେ ରଖାଇ ଦେଇଥିଲେ । ଏ ପର୍ଯ୍ୟନ୍ତ ମଧ୍ୟ ସେ ମନ୍ଦିରର ପ୍ରଧାନ କର୍ତ୍ତା ଓ ପରିଚାଳକ ରୂପେ ଗୃହୀତ ଓ ସ୍ୱୀକୃତ । ଏହି ହିସାବରେ ତାଙ୍କୁ କେତେଗୁଡ଼ିଏ କାର୍ଯ୍ୟ କରିବାକୁ ପଡୁଥିଲା । ସେଥିମଧ୍ୟରୁ ପ୍ରଧାନ ହେଉଚି ପ୍ରତିବର୍ଷ ବିଭିନ୍ନ ଉତ୍ସବ ସମୟରେ ବିଶେଷକରି ସବୁଠାରୁ ଗାମ୍ଭୀର୍ଯ୍ୟପୂର୍ଣ୍ଣ ରଥଯାତ୍ରାବେଳେ ଯେଉଁ ବହୁସଂଖ୍ୟକ ତୀର୍ଥଯାତ୍ରୀ ଆସନ୍ତି ସେମାନଙ୍କ ମଧ୍ୟରେ ଶୃଙ୍ଖଳା ରକ୍ଷାକରିବା । ଏହି ସମୟରେ ତାଙ୍କ କାମ ହେଉଛି ଭୀଷଣ ଭିଡ଼କୁ ରୋକିବା ଏବଂ ଯାତ୍ରୀଙ୍କୁ ମନ୍ଦିର ମଧ୍ୟକୁ ଜଣଜଣ କରି ଛାଡ଼ିବା ସକାଶେ ବହୁ ସଂଖ୍ୟକ ସ୍ୱତନ୍ତ୍ର କନେଷ୍ଟବଳ ନିଯୁକ୍ତ କରିବା । ପୁନଶ୍ଚ ମନ୍ଦିରର ବିରାଟ ଅଙ୍ଗନ ମଧ୍ୟରେ ଅସଂଖ୍ୟ ସେବକଙ୍କୁ ନିୟନ୍ତ୍ରିତ କରି ବିଭିନ୍ନ ପୂଜା ଓ ଭୋଗ ଯେପରି ଠିକ୍ ସମୟରେ ହେବ, ଯେପରି ତୀର୍ଥଯାତ୍ରୀମାନେ ବିନା ବାଧା ଓ ଦ୍ୱନ୍ଦ୍ୱରେ ସେଥିରେ ଯୋଗଦେଇ ପାରିବେ ଓ ସେମାନଙ୍କ ଧାର୍ମିକ କର୍ମ ସଂପାଦନ କରି ପାରିବେ, ତାହା ଦେଖିବାକୁ ମଧ୍ୟ ସେ ବାଧ୍ୟ ଥିଲେ । ଏ କାମ ଥିଲା କଠିଣ, କାରଣ ଲୋକ ଗହଳି ହେଉଥିଲା ଖୁବ୍ ବେଶି । ଏହି ସମୟରେ ପ୍ରାୟ ଦଶଲକ୍ଷ ପୁରୁଷ, ସ୍ତ୍ରୀ ଜମା ହେଉଥିଲେ, ପୁନଶ୍ଚ ପ୍ରତ୍ୟେକ ତୀର୍ଥଯାତ୍ରୀ ଭକ୍ତ ଯେଉଁ ଧର୍ମକ୍ରିୟା ସମ୍ପାଦନ କରୁଥିଲେ, ସେସବୁର ପନ୍ଥା ଥିଲା ଜଟିଳ । ମନ୍ଦିର ପୂଜକମାନେ ନିର୍ଲଜ୍ଜ, ଲୋଭୀ । ସେମାନେ ପୂଜାକର୍ମର ପ୍ରତ୍ୟେକ ସ୍ତରରେ ଯାତ୍ରୀଙ୍କଠାରୁ ପାଉଣା ଆଦାୟ କରୁଥିଲେ ଏବଂ ବେଳେ ବେଳେ ତାହା ନ ଦିଆଯିବା ପର୍ଯ୍ୟନ୍ତ ସବୁପ୍ରକାର କାର୍ଯ୍ୟ ବନ୍ଦକରି ଦେଉଥିଲେ । ତା' ଫଳରେ ପେଲି ପଶୁଥିବା ଯାତ୍ରୀମାନଙ୍କ ତୀବ୍ର ଚିତ୍କାର ଓ ସବୁପ୍ରକାର ଅତିରିକ୍ତ ସ୍ପୃହା ଫଳରେ ଖୁବ୍ ବିଶୃଙ୍ଖଳା ସୃଷ୍ଟି ହେଉଥିଲା ।

ମନ୍ଦିରର ଅଭ୍ୟନ୍ତର ଗୁଡ଼ିଏ ଅଗଣା, ଉଚ୍ଚା ପଥର ପାଚେରି ଦ୍ୱାରା ବିଭକ୍ତ ଓ ସରୁ କବାଟ ଦ୍ୱାରା ସଂଯୁକ୍ତ । ପ୍ରତ୍ୟେକ ଅଗଣାରେ ଦୁଇ ବା ତିନୋଟି କରି ଦେବ ଆସ୍ଥାନ । ଯାତ୍ରୀମାନଙ୍କୁ ଏ ସବୁ ସ୍ଥାନ ଗୋଟିକ ପରେ ଗୋଟିଏ ବୁଲିବାକୁ ପଡ଼େ ଏବଂ ଏଇସବୁ ଗୋଲକଧନ୍ଦା ମଧ୍ୟରେ ସେମାନେ ବିନା ସାହାଯ୍ୟରେ ବାଟ ପାଉ ନ ଥିବାରୁ ଅନେକ ବିଧିବଦ୍ଧ (Official) ପ୍ରଦର୍ଶକ ବା ପଢ଼ିଆରୀ ଥିଲେ । ଏମାନଙ୍କ ମଧ୍ୟରୁ ପ୍ରତ୍ୟେକେ ଗୋଟିଏ ଲେଖାଏଁ ଯାତ୍ରୀଦଳର ଦାୟିତ୍ୱ ନେଇ ସେମାନଙ୍କୁ ଅଗଣା ପରେ ଅଗଣା ପାରକରାଇ ନିଅନ୍ତି; ଶେଷରେ

ସେମାନେ ବିରାଟ ଜଗନ୍ନାଥଙ୍କ ନିକଟରେ ପହଞ୍ଚନ୍ତି । ସେଠାରେ ପୂଜାକରି ବଡ଼ଦୁଆର ବାଟେ ବିଦାୟ ହୋଇଯାଆନ୍ତି । କୌଣସି ୟୁରୋପୀୟ ବା ୟୁରୋପୀୟ ପୋଷାକ ପରିହିତ ଦେଶୀୟଙ୍କୁ ମନ୍ଦିରରେ ପ୍ରବେଶ ମନା । କିନ୍ତୁ ଭିତରେ ଶୃଙ୍ଖଳା ରକ୍ଷା କରିବା ଏବଂ ସବୁ ବନ୍ଦୋବସ୍ତ ସଠିକ କାର୍ଯ୍ୟକାରୀ ହେଉଛି କି ନା ଦେଖିବା ପାଇଁ ଜଣେ ଦେଶୀୟ ଡେପୁଟି ମାଜିଷ୍ଟ୍ରେଟ ଦେଶୀ ପୋଷାକ, ଯଥା ଧୋତି, ଚାଦର, ଖାଲି ପାଦ ଓ ଖାଲି ମୁଣ୍ଡରେ ଭିତରକୁ ଯିବାକୁ ଓ ସମସ୍ତ ଯାତ୍ରୀ ବାହାରିଯିବା ପର୍ଯ୍ୟନ୍ତ ସେଠାରେ ରହିବାକୁ ଅନୁମତି ପାଉଥିଲେ । ପ୍ରତ୍ୟେକ ଆସ୍ଥାନ ନିକଟରେ ପଢ଼ିଆରୀମାନେ ଯାତ୍ରୀମାନଙ୍କଠାରୁ ପାଉଣା ଦାବି କରୁଥିଲେ ଏବଂ ତାହା ନ ଦିଆଯିବା ପର୍ଯ୍ୟନ୍ତ ଯିବାପାଇଁ ଛାଡୁ ନ ଥିଲେ । ଖୁବ୍ ଶୋଷଣ ନ କରି ଯାତ୍ରୀମାନଙ୍କୁ ଛାଡ଼ିଦେବାପାଇଁ ଜୋରଦେବା କାମ ଡିପୋଟି ମାଜିଷ୍ଟ୍ରେଟଙ୍କ ପକ୍ଷରେ ଖୁବ୍ କଷ୍ଟସାଧ ଥିଲା । ମନ୍ଦିର ବାହାରେ ମହାରାଜାଙ୍କ ସ୍ୱତନ୍ତ୍ର କନେଷ୍ଟବଲଙ୍କ ସାଙ୍ଗକୁ ମାଜିଷ୍ଟ୍ରେଟ୍ ଓ ଜିଲ୍ଲା ପୋଲିସ୍ ଅଧିକାରୀ ବଡ଼ ପୋଲିସ୍ ଅଧିକାରୀ ବଡ଼ ପୋଲିସ ବାହିନୀଟିଏ ରଖିଥାଆନ୍ତି । ମନ୍ଦିରର ପ୍ରବେଶ ପଥ ସିଂହଦ୍ୱାରକୁ ଯିବାବାଟରେ ଦନ୍ତ ବାଉଁଶ ତଳେ ପୋତି ସେଥିରେ ବାଡ଼ ଦିଆହୋଇ ସରୁରାସ୍ତା କରାହୋଇଥାଏ ଯେପରିକି ଯାତ୍ରୀମାନେ ଗୋଟିକିଆ ଧାଡ଼ିରେ ଜଣକ ପରେ ଜଣେ ପାଇପାରିବେ । ସାଧାରଣ ବର୍ଷମାନଙ୍କରେ ଏ ବ୍ୟବସ୍ଥା ଯଥେଷ୍ଟ ହୁଏ ଏବଂ ଗତ କେତେବର୍ଷ ଧରି କୌଣସି ଦୁର୍ଘଟଣା ଘଟୁନଥିଲା । ଲୋକେ ଜଗନ୍ନାଥଙ୍କ ରଥ ତଳେ ନିଜକୁ ଫିଙ୍ଗି ଦେଉଥିଲେ ଏବଂ ପେଷିହୋଇ ଯାଉଥିଲେ ବୋଲି ମନେକରିବା ହେଉଛି ଇତର ଜନୋଚିତ ଏକ ଭ୍ରାନ୍ତି । ଏପରି ଘଟଣା କେବେ ଘଟି ନାହିଁ ଏବଂ ଯଦିବା ଆଗକାଳରେ ଏହା କେବେ ଘଟିଥାଏ (ଯେଉଁ ବିଷୟ କି ପଣ୍ଡାମାନେ ଦୃଢ଼ଭାବରେ ଅସ୍ୱୀକାର କରନ୍ତି) ଏପରି ହୋଇଥିବ" କୌଣସି କୁଷ୍ଠ କିମ୍ୱା ଅନ୍ୟରୋଗରେ ଆକ୍ରାନ୍ତ ଅଭାଗା ଏତେ ଅଚାନକ ଜନବନ୍ଧନୀ ଭାଙ୍ଗି ରଥଆଗରେ ପଡ଼ି ଯାଇଥିବ ଯେ ଟାଣୁଥିବା ଲୋକେ ଅଟକାଇ ଦେବା ପୂର୍ବରୁ ମୃତ୍ୟୁକାମୀ ଲୋକଟି ଉପରେ ରଥ ଚଢ଼ିଯାଇଥିବ । ବିଷ୍ଣୁ ଉପାସନା ପ୍ରଥା ରକ୍ତପାତର ଏତେ ବିରୋଧୀ ଯେ ଯଦି ଏପରି ଘଟଣା କେବେ ଘଟିଥିବ ତେବେ ତାହା ଏକ ଗୁରୁତର ଦୁର୍ଦ୍ଦଶା ବୋଲି ଗୃହୀତ ହୋଇଥିବ ଏବଂ ତାହା ଫଳରେ ଉତ୍ସବରେ ଯାହା କିଛି ଅପବିତ୍ରତା ହେଲା ବହୁ ମହାର୍ଘ ପୂଜାପଦ୍ଧତି ଦ୍ୱାରା ତା'ର ପ୍ରାୟଶ୍ଚିତ୍ତ ହୋଇଥିବ ।

ଯେଉଁ ରାସ୍ତାରେ ରଥ ଯାଏ ଏବେ ସେ ରାସ୍ତା ଦୁଇକଡ଼ରେ ବାଡ଼ ଦିଆଯାଇଛି ଏବଂ ପ୍ରାୟ ମାଇଲିଏ ଲମ୍ୱା ରାସ୍ତାକୁ ଆଜିକାଲି ପୋଲିସ୍ ଅବିଚ୍ଛିନ୍ନ ଧାଡ଼ିରେ ଜଗି ରହୁଛନ୍ତି । ପୁଣି ରଥର ଆଗପଟେ ରେଳଇଞ୍ଜିନ ଆଗପଟେ ଥିବାପରି ସୁଦୃଢ଼ ପଥ ପରିଷ୍କାରକ ବାଡ଼ା (Cowcatcher) ଥାଏ ଯାହାକି କୌଣସି ମନୁଷ୍ୟ ବା ପଶୁର ଶରୀରକୁ ଚକତଳକୁ ଆସି ପେଷିହୋଇ ଯିବାରୁ ଅଟକାଇ ଦେଇପାରିବ ।

ଜଗନ୍ନାଥଙ୍କ ରଥ ସମ୍ପର୍କରେ ଏପରି ଅସମ୍ଭବ ଧରଣର ଭ୍ରାନ୍ତି ଉଠିଲା କେଉଁଠୁ ମୁଁ ଆବିଷ୍କାର କରିପାରି ନାହିଁ ।

ମୋ ବର୍ଣ୍ଣନାକୁ ମୁଁ ଫେରିଯାଏଁ । ୧୮୭୭ ସାଲରେ ବାରାଣସୀର ବ୍ରାହ୍ମଣ ଜ୍ୟୋତିର୍ବିଦ୍‌ମାନଙ୍କ ଗଣନାନୁଯାୟୀ ନକ୍ଷତ୍ରମାନଙ୍କ ଏକ ସଂଯୋଗ ପଡ଼ିଲା ଯାହାକି ଶହେ ବା ତଦୁର୍ଦ୍ଧ୍ୱ ବର୍ଷରେ ଥରେ ପଡ଼େ । ଏପରି ଯେଉଁ ବଡ଼ ସଂଯୋଗ ପଡ଼େ ତାହା ବିଶେଷ ଭାବରେ ପବିତ୍ର ଏବଂ ଯେଉଁମାନେ ସେତେବେଳେ ଜଗନ୍ନାଥ ମନ୍ଦିରକୁ ତୀର୍ଥଯାତ୍ରା କରିବାକୁ ଯାଆନ୍ତି

ବିଶେଷ ଫଳ ଲାଭ କରନ୍ତି । ତେଣୁ ସେ ବର୍ଷ ଅସାଧାରଣ ବୃହତ୍ ଯାତ୍ରୀସମାଗମ ଆଶା କରାଯାଉଥିଲା । ବାରାଣସୀର ପଣ୍ଡିତମାନେ ମହାରାଜାଙ୍କ ପାଖକୁ ଲେଖିଲେ ଯେପରିକି ସେ ଅଧିକ କିଛି ବ୍ୟବସ୍ଥା ଗ୍ରହଣ କରନ୍ତି । ମହାରାଜା ପୁରୀ ଜ୍ୟୋତିର୍ବିଦମାନଙ୍କ ସହ ପରାମର୍ଶ କଲେ ଏବଂ ସେମାନେ ନିର୍ଦ୍ଦେଶ ଦେଲେ ଯେ ବାରାଣସୀବାଲାଏ ଭୁଲ୍ ଏବଂ ଗ୍ରହମାନଙ୍କର ଏପରି କିଛି ସଂଯୋଗ ସେ ବର୍ଷ ପଡୁ ନାହିଁ । କେତେକ ବିଚାରଶୀଳ ବ୍ୟକ୍ତି ସେ ନିର୍ବୋଧ ଟୋକା ନିକଟରେ ନିବେଦନ କଲେ କି ସମଗ୍ର ଉତ୍ତର ଭାରତ ବାରାଣସୀର ବ୍ରାହ୍ମଣଙ୍କୁ ବିଶ୍ୱାସ କରନ୍ତି ଏବଂ ସେଇମାନଙ୍କ ଦ୍ୱାରା ପରିଚାଳିତ ହେବେ, ତେଣୁ ସେମାନେ ଭୁଲ ହୁଅନ୍ତୁ ବା ଠିକ୍ ହୁଅନ୍ତୁ ବିଶେଷ ପବିତ୍ର ବର୍ଷ ସଂପର୍କରେ ଯେଉଁ ଘୋଷଣା ସେମାନେ କରିଛନ୍ତି ତାକୁ ନିଶ୍ଚୟ ବହୁ ଲୋକ ବିଶ୍ୱାସ କରିବେ ଏବଂ ଯାତ୍ରୀଙ୍କ ଭିଡ଼ ପ୍ରବଳ ହେବ । କିନ୍ତୁ ସବୁ ବ୍ୟର୍ଥ ହେଲା । ରାଜା ଏକଜିଦିଆ ଭାବରେ ପୁରୀ ଜ୍ୟୋତିର୍ବିଦମାନଙ୍କ ମତ ଉପରେ ଜୋର ଦେଇ ରହିଲେ ଏବଂ ସାଧାରଣ ବ୍ୟବସ୍ଥା ଛଡ଼ା ଆଉକିଛି କରିବାକୁ ମନାକଲେ ।

ଠିକ୍ ସମୟରେ ଅଭୂତପୂର୍ବ ବିପୁଳସଂଖ୍ୟକ ଯାତ୍ରୀ ଆସି ପହଞ୍ଚିଲେ ଏବଂ ଭୀଷଣ ବିଶୃଙ୍ଖଳା ସୃଷ୍ଟି ହେଲା । ମ୍ୟାଜିଷ୍ଟ୍ରେଟ ଯୋଶେଫ୍ ଆର୍ମଷ୍ଟ୍ରଙ୍ଗ୍ ତାଙ୍କର ସାଧ୍ୟମତେ ଏକ ବିରାଟ ପୋଲିସ ବାହିନୀ ଧରି ସାରା ରାତି ଘୋଡ଼ା ଉପରେ ବସି ସିଂହଦ୍ୱାର ପାଖରେ ଥିଲେ । ଯେଉଁ ବିପୁଳସଂଖ୍ୟକ ଜନତା ଆଖି ପାଉଥିବାଯାକେ ଖୋଲାସ୍ଥାନମାନଙ୍କରେ ଭର୍ତ୍ତିହୋଇ ସମସ୍ତେ ଏକାବେଳକେ ମନ୍ଦିର ଆଡ଼କୁ ପେଲି ହୋଇ ଆସୁଥାଆନ୍ତି, ସେମାନଙ୍କୁ ସେ ଅଟକାଉଥାଆନ୍ତି । ମଧ୍ୟରାତ୍ରିରୁ ଅନ୍ୟ ଏକ ନୂତନ ଦିନ ଆରମ୍ଭ ହୋଇଯିବ ଏବଂ ଭଗବାନ୍‌ଙ୍କ ଦର୍ଶନ ଜନିତ ଧର୍ମ ଆଉ ଲାଭ ହେବ ନାହିଁ । ଦିନସାରା ସେମାନେ ଗହଳି କରିଥିଲେ; କିନ୍ତୁ ରାତ୍ରକାଳରେ ତଥାପି ହଜାର ହଜାର ଜମି ରହୁଥିଲେ ଯେପରି ଅଧିକ ଡେରି ହୋଇନଯାଏ । ଅଧ ଡଜନ ଥର ଆର୍ମଷ୍ଟ୍ରଙ୍ଗ୍ ରାଜାଙ୍କ ପାଖକୁ ଖବର ପଠାଇଲେ ସାହାଯ୍ୟ ପାଇଁ; କିନ୍ତୁ ପ୍ରାସାଦରେ ସେ ଟୋକାର ଯଦିଓ ଅନେକ ଜଗୁଆଳି ଥିଲେ ସେଥିରୁ ଜଣକୁ ପଠାଇବାକୁ ମଧ୍ୟ ସେ ମନା କରିଦେଲେ । ସେମାନେ ତାଙ୍କ ନିଜ ସୁରକ୍ଷାପାଇଁ ଆବଶ୍ୟକ ବୋଲି ସେ କହିଲେ; କିନ୍ତୁ ତାହା ନିହାତି ଅଯୌକ୍ତିକ, କାରଣ ତାଙ୍କୁ ଆକ୍ରମଣ କରିବାକୁ ସ୍ୱପ୍ନରେ ସୁଦ୍ଧା କାହାର କଳ୍ପନାରେ ନ ଥିଲା । ଥରେ ସେ ବାହାରକୁ ଆସି ଜନତାକୁ ସମ୍ବୋଧନ କରିଥିଲେ ତାହାର ଖୁବ୍ ପ୍ରଭାବ ପଡ଼ିଥାଆନ୍ତା; କାରଣ ଲୋକଙ୍କ ନିକଟରେ ସେ ଖୁବ୍ ଭକ୍ତିଭାଜନ ଥିଲେ । ଦିନବେଳା କେତେକ ପୂଜାବିଧି ଆରମ୍ଭ କରିବା ପାଇଁ ବଡ଼ପଣ୍ଡାଙ୍କୁ ଖବର ଦେବାରେ ଡେରି କରି ମଧ୍ୟ ସେ ଖୁବ୍ ବିଶୃଙ୍ଖଳା ସୃଷ୍ଟି କରି ସାରିଥିଲେ । ସେ ଏପରି କରିବାର କାରଣ ହେଲା ସେ ସମୟରେ ଜଣେ ବଡ଼ ଧନୀ ବେପାରୀ ତାଙ୍କ ନିକଟରେ ଥିଲେ । ସେ ମନ୍ଦିରରେ ପ୍ରଥମେ ପ୍ରବେଶ କରିବା ସୁବିଧା ପାଇବା ପାଇଁ ତାଙ୍କୁ ବହୁପରିମାଣ ଅର୍ଥ ଦେଇଥିଲେ, ଯାହା ଫଳରେ ତାଙ୍କୁ ବହୁତ କିଛି ଧର୍ମ ମିଳିଯିବ । ଏ ସୁବିଧା ପାଇଁ କେତେ ଅର୍ଥ ଦିଆଯିବ ସେ ସଂପର୍କରେ ମହାରାଜା ଓ ବେପାରୀଜଣକ ଏକମତ ହୋଇପାରୁନଥିଲେ ଏବଂ ସେମାନେ ମୂଲଚାଲ କରୁଥିବାବେଳେ ପୂଜା ଡେରି ହୋଇଗଲା । ଏହାଫଳରେ ଜନତା ଅଧିକ ଅଧୈର୍ଯ୍ୟ ହୋଇ ପଡ଼ିଲେ। ଅବଶେଷରେ ଅଧରାତି ବେଳକୁ ଭିଡ଼ ଅସମ୍ଭାଳ ହୋଇଉଠିଲା । ଜିଲ୍ଲା ପୋଲିସ୍ ସୁପରିଣ୍ଟେଣ୍ଡେଣ୍ଟ ଘୋଡ଼ା ଉପରୁ ଖସି ପଡ଼ିଲେ ଏବଂ ମଡ଼ାଦଳାରେ ଭୀଷଣ ଆହତ ହେଲେ । ଆର୍ମଷ୍ଟ୍ରଙ୍ଗ କେବଳ ତାଙ୍କର ଦେଶୀୟ ଅଣ୍ଟ୍ରିମ (Antrim) ଠାରୁ ଆଣିଥିବା ବିଶାଳ ଜଳାଗୋବବାଲା ଠେଙ୍ଗାଟାକୁ ମନଇଚ୍ଛା ବୁଲାଇ ନିଜକୁ ରକ୍ଷାକରି ଦେଇପାରିଲେ । ବିପୁଳସଂଖ୍ୟକ ପୁରୁଷ ଓ ସ୍ତ୍ରୀ ବାଡ଼ ଭାଙ୍ଗି ମୁଖଶାଳାଆଡ଼କୁ ଧସେଇ

ପଶିଲେ। ତା'ପରେ ସେମାନଙ୍କର ଗୋଟିଏ ଅଣଓସାରିଆ ପଥ ଦେଇ ପ୍ରଥମ ଅଗଣାକୁ ଯିବା କଥା । ପଢ଼ିହାରୀମାନେ ଭୟରେ ଦୁଆର ବନ୍ଦ କରିଦେଲେ ଏବଂ ଗହଳି ସେ ବାଟର ଅନ୍ଧାରୁଆ ଘେର ଭିତରେ ରୁନ୍ଧି ହୋଇଗଲା । ତା'ପରେ ଭିତରୁ କେହିଜଣେ ପାଟିକରି ଆଦେଶ ଦେଲା କବାଟ ଫିଟାଇବାକୁ । କବାଟ ଖୋଲି ଦିଆଗଲା ଏବଂ ଆବଦ୍ଧ ରହିଥିବା ଗହଳି ପଛ ଲୋକଙ୍କ ଦ୍ୱାରା ଠେଲି ହୋଇ ଅଗଣାରେ ଅଙ୍କାଡ଼ି ହୋଇପଡ଼ିଲେ । ସବା ଆଗରେ ଥିବା ଯାତ୍ରୀମାନେ ତଳେ ପଡ଼ି ଦଳି ହୋଇ ମରିଗଲେ । ଭୟଭୀତ ପଢ଼ିହାରୀମାନେ ରକ୍ତ ବହୁଥିବାର ଦେଖି 'ଲୋକେ ମଲେ' ବୋଲି ଚିତ୍କାର କରି କରି ପଳେଇଲେ । ମନ୍ଦିରର ସର୍ବାଞ୍ଚଳକୁ ଏ ଖବର ବ୍ୟାପିଗଲା । ଖୁବ୍ ଶାରୀରିକ ବଳ ପାଇଁ ସ୍ୱତନ୍ତ୍ରରୂପେ ବଛାଯାଇଥିବା ଆଠଜଣ ସିଂହଦ୍ୱାର ଜଗୁଆଳି ଦୀର୍ଘକାୟ ବ୍ରାହ୍ମଣ ପ୍ରବଳ ବଳ ପ୍ରୟୋଗ କରି ଗହଳିକୁ ପଛକୁ ପେଲି ଦେଲେ ଏବଂ ଏକ ସାଙ୍ଗରେ ବିରାଟ କବାଟ ହଳକ ବନ୍ଦ କରିଦେଲେ ।

ଦିଅଁଙ୍କ ମହାପ୍ରସାଦ ରୋଷେଇ ସଦ୍ୟ ସାରିଥିବା ବ୍ରାହ୍ମଣ ରୋଷେଇଆମାନେ ମନ୍ଦିରରେ ରକ୍ତପାତ ହେଲା ବୋଲି ଚିତ୍କାର ଶୁଣିବାମାତ୍ରେ ସାଙ୍ଗେ ସାଙ୍ଗେ ସବୁ ଖାଦ୍ୟ ଅପବିତ୍ର ହୋଇଗଲା ବୋଲି ଫିଙ୍ଗିଦେଲେ ଏବଂ ରୋଷେଇ ଘର ନିକଟ ପାଚେରି ଉପରେ ଠିଆହୋଇ ତଳେ ଥିବା ଜନତାକୁ ଚିତ୍କାର କରି ଶୁଣାଇ ଦେଲେ ଯେ ସବୁ ସରିଗଲା—ମନ୍ଦିର ଅପବିତ୍ର ହୋଇଗଲା— ତୀର୍ଥଯାତ୍ରା ନିଷ୍ଫଳ ହେଲା— ଉତ୍ସବ ବନ୍ଦ ହୋଇଗଲା ।

ଦୁଃଖ ଓ ନୈରାଶ୍ୟର ଏକ ବିଳାପ ଧ୍ୱନି ଜନତାଙ୍କ ମଧ୍ୟରୁ ଶୁଣାଗଲା ଏବଂ ଫେରିଯିବା ପାଇଁ ସେମାନଙ୍କୁ ପ୍ରବର୍ତ୍ତାଇବା ଥିଲା ଏକ କଠିନ କାମ । ସେ କାମ ସରୁ ସରୁ ସକାଳ ହୋଇଗଲା ଏବଂ ଡେପୁଟି ମାଜିଷ୍ଟ୍ରେଟ ମନ୍ଦିର ଭିତରୁ ବାହାରି ଆସି ଠିକ୍ କ'ଣ କ'ଣ ଘଟିଲା ଆର୍ମଷ୍ଟ୍ରଙ୍ଗଙ୍କୁ ଜଣାଇଲେ । ମୋର ମନେପଡୁଚି ଗୋଟିଏ ଦ୍ୱାର ନିକଟରେ ୬ଜଣ ମରିଥିଲେ ଏବଂ ଅନ୍ୟଆଡ଼େ ଜଣେ ଦୁଇଜଣ ମରିଥିଲେ । ପ୍ରାୟ ୧୦ ଲକ୍ଷ ଲୋକ ଶହ ଶହ ମାଇଲ ଦୂରରୁ ବୃଥାରେ ଆସିଲେ, ପବିତ୍ର ଦେବ ଆସ୍ଥାନ ରକ୍ତରେ କଳୁଷିତ ହେଲା, ମହାର୍ଘ ପ୍ରାୟଶ୍ଚିତ୍ତ କର୍ମସବୁ ଦରକାର ପଡ଼ିଲା ଏବଂ ଏସବୁ ହେଲା ଜଣେ ଅର୍ଦ୍ଧପାଗଳ ଟୋକା ତା ଦାୟିତ୍ୱ ନ ତୁଲାଇବାରୁ । ସେମାନେ ଯେତେବେଳେ ଏ ଦୁର୍ଘଟଣା ବିଷୟ ତାଙ୍କୁ ଜଣାଇବାକୁ ଗଲେ ସେ ଏତେ ମାତାଲ ଅବସ୍ଥାରେ ଥିଲେ ଯେ ତାଙ୍କୁ କଅଣ କୁହାଗଲା ତାହା ବୁଝିପାରିଲେ ନାହିଁ। ଏ ଦୁର୍ବିପାକର ଖବର ମୋ ନିକଟରେ ପହଞ୍ଚିବା ମାତ୍ରେ ମୁଁ ସାଙ୍ଗେ ସାଙ୍ଗେ ସରକାରଙ୍କୁ ଜଣାଇ ଦେଲି ଏବଂ ଅତି ଶୀଘ୍ର ପୁରୀ ଯାଇ ଘଟଣାର ତଦନ୍ତ କଲି । ବହୁ ସମୟ ପର୍ଯ୍ୟନ୍ତ ସଯତ୍ନ ତଦନ୍ତ ଚଳାଇଲି। ଏଥିରେ ବଡ଼ପଣ୍ଡା ମୋତେ ଖୁବ୍ ସାହାଯ୍ୟ କଲେ। ସେ ହେଉଛନ୍ତି ଉଚ୍ଚଶିକ୍ଷିତ ଜଣେ ଦୟାର୍ଦ୍ର ହୃଦୟର ବୃଦ୍ଧ । ଆକାରରେ ସେ ଢେଙ୍କାନାଳର ପୂର୍ବ ମହାରାଜାଙ୍କ ଜଣେ ପ୍ରତିଦ୍ୱନ୍ଦ୍ୱୀ ଏବଂ ଗର୍ବକରି କହିଲେ ଯେ ସେ ତାଙ୍କଠାରୁ ୧୦/୧୫ ପାଉଣ୍ଡ ଓଜନରେ ବେଶି । ପୁରୀ ମହାରାଜାଙ୍କର କୁପରିଚାଳନା ହେତୁ ସେ ତାଙ୍କ ଉପରେ ଖୁବ୍ ବିରକ୍ତ ଥିଲେ । ମନ୍ଦିର ସେବକମାନେ ଖୋଲାଖୋଲି ମିଛସାକ୍ଷୀ ଦେଲେ । ଏଇ ଦୁର୍ଘଟଣା ଫଳରେ ସେମାନେ କଷ୍ଟ ଭୋଗ କରିଥିଲେ ଏବଂ ମହାରାଜାଙ୍କ ଦୋଷରୁ ଏ ସବୁ ହେଲା ବୋଲି ଜାଣିଥିଲେ ମଧ୍ୟ ଚଳନ୍ତା ବିଷ୍ଣୁଙ୍କ ପ୍ରତି ସେମାନଙ୍କର ଯେଉଁ ପାରମ୍ପରିକ ଭକ୍ତି ରହି ଆସିଥିଲା ତା'ଫଳରେ ତାଙ୍କୁ ଘଣ୍ଟ ଘୋଡ଼ାଇବା ଲାଗି ପାରୁପର୍ଯ୍ୟନ୍ତ ମିଛ କହିଲେ । ସେ ଟୋକାଠାରୁ କେତେକ ଅସଂପୃକ୍ତ ବାଉଚାଉଳିଆ କଥା ଛଡ଼ା ଆଉ କିଛି ଜାଣିପାରିଲି ନାହିଁ ।

ତଦନ୍ତ ଫଳରେ ରାଜାଙ୍କ ଦୋଷ ସାବ୍ୟସ୍ତ ହେଲା । ତାଙ୍କୁ କିପରି ଦଣ୍ଡ ଦିଆଯିବ ତାହା ଜାଣିବା କଷ୍ଟକର । ମନ୍ଦିର ସଂପର୍କୀୟ ତାଙ୍କର ପୁରୁଷାନୁକ୍ରମିକ କର୍ମକୁ ଆମେ ତାଙ୍କଠାରୁ ନେଇଯାଇପାରିଲୁ ନାହିଁ । ତାଙ୍କ ସ୍ଥାନ ଅଧିକାର କରିବାପାଇଁ କୌଣସି ଜୀବନ୍ତ ହିନ୍ଦୁ ସାହସ କରି ନ ଥାନ୍ତା । ଅବଶେଷରେ ବଡ଼ଲାଟ ତାଙ୍କଠାରୁ ମହାରାଜା ପଦବୀ କାଢ଼ିନେଲେ ଏବଂ ଆଦେଶ ଦେଲେ ତାଙ୍କୁ କେବଳ ରାଜା ବୋଲି ଡକାଯିବ । ଏଥିରେ ଅବଶ୍ୟ ତାଙ୍କର ସାମାନ୍ୟତମ କ୍ଷତି ମଧ୍ୟ ହେଲା ନାହିଁ । ମୁଷ୍ଟିମେୟ ବିଦେଶୀ ତାଙ୍କୁ କଅଣ ଡାକିବାକୁ ଇଚ୍ଛାକଲେ ସେଥିରେ ତାଙ୍କର ବା ଓଡ଼ିଶାର ଲୋକଙ୍କର କିଛି ଯାଏ ଆସେ ନାହିଁ । ନିଜ ପାଇଁ ଓ ତାଙ୍କ ଲୋକଙ୍କ ପାଇଁ ସେ ସର୍ବଦା ପ୍ରଭୁ (Leige Lord) ଓ ବିଷ୍ଣୁଙ୍କର ଏକ ଅବତାର ରୂପେ ରହିଥିବେ ।

ଯାହାହେଉ ଅଳ୍ପଦିନ ପରେ ପ୍ରତିଫଳ ତାଙ୍କ ଉପରେ ଆସି ପଡ଼ିଲା । ପୁରୀରେ ତାଙ୍କୁ ଦେଖା କରିବାକୁ ଯାଇଥିବା ଜଣେ ବୁଢ଼ା ଫକିର ଉପରେ ସେ ଅସନ୍ତୁଷ୍ଟ ହେଲେ । ଏକ ପ୍ରକାର ପାଶବିକ ଉପାୟରେ ଅତ୍ୟାଚାର କରି ତା' ପରେ ପ୍ରାସାଦ ପାଚେରି ବାହାର ପଟ ରାସ୍ତାକୁ ଫିଙ୍ଗି ଦେବା ପାଇଁ ସେ ଆଦେଶ ଦେଲେ । ରାତିରେ ପୋଲିସ୍ ଜଗୁଆଳି ସେ ରାସ୍ତାଦେଇ ବୁଲୁବୁଲୁ ଯନ୍ତ୍ରଣା ଧ୍ୱନି ଶୁଣିଲେ ଏବଂ ଧରିଥିବା ବତିର ଆଲୁଅରେ ମୃତପ୍ରାୟ ସେ ଲୋକଟିକୁ ଆବିଷ୍କାର କଲେ । ସେମାନେ ତାଙ୍କୁ ଡାକ୍ତରଖାନା ବୋହିନେଲେ । ସେଠାରେ ସେ ତା'ର ମୃତ୍ୟୁକାଳୀନ ବିବରଣୀ ଦେବା ପର୍ଯ୍ୟନ୍ତ ବଞ୍ଚି ରହିଲା । ମହାରାଜାଙ୍କୁ ବନ୍ଦୀକରି ବିଚାର କରାଗଲା ଏବଂ ଯାବଜ୍ଜୀବନ କାରାଦଣ୍ଡ ଦିଆଗଲା । ଯଦି ସେ ବର୍ତ୍ତମାନ ବଞ୍ଚିଥିବେ ତେବେ ଆଣ୍ଡାମାନ୍ ଦ୍ୱୀପରେ ବନ୍ଦୀଶାଳାରେ ଥିବେ । ଓଡ଼ିଶା ସାରା ଚାଞ୍ଚଲ୍ୟ ଖେଳିଗଲା ଏବଂ ପ୍ରତିଦିନ ବିଚାର ସମୟରେ ବିଚାରାଳୟ ଚାରିପଟେ ଲୋକଗହଳି ଜମିଲା । ସେ ଟୋକାକୁ ରାତିରେ କଡ଼ାପହରା ମଧ୍ୟରେ ଷ୍ଟିମର ଭିତରକୁ ଖସାଇ ନିଆଗଲା । ପ୍ରକୃତ ବିଦ୍ରୋହ କିଛି ଦେଖାଗଲା ନାହିଁ, ଯଦିଓ କର୍ତ୍ତୃପକ୍ଷ ସେପରି ହେବାର ପୂରା ଆଶଙ୍କା କରି ତଦନୁଯାୟୀ ବ୍ୟବସ୍ଥା ଗ୍ରହଣ କରିଥିଲେ । କିନ୍ତୁ ଓଡ଼ିଆମାନେ ବାସ୍ତବ କ୍ଷେତ୍ରରେ ବିଦ୍ରୋହ ଉଦ୍‌ଗାରଣ କରିବା ବିଷୟରେ ଖୁବ୍ ଭୟାଳୁ। ମହାରାଜାଙ୍କର ଗୋଟିଏ ପୁଅ ଥିଲା ଯେ କି କୋଟ ଅଫ ୱାର୍ଡ଼ସଙ୍କ ଦାୟିତ୍ୱରେ ରହିଥିଲା ଏବଂ ବର୍ତ୍ତମାନ ବୋଧହୁଏ ତା ପିତାର ପଦବୀ ଓ ଆସନ ଅଧିକାର କରିବଣି ।

ଏହାପରେ ମୁଁ ମନୋରମ ଚିଲିକା ତୀରକୁ ଗସ୍ତରେ ଯାଇଥିଲି ଏବଂ ଖୋର୍ଦ୍ଧାରେ ରହି ଜମିଦାରୀର ରାଜସ୍ୱ ଓ କର ନିର୍ଦ୍ଧାରଣ କରିବାରେ ବହୁ ଶ୍ରମ କଲି । ଏହା ଏକ ବଣ୍ୟ, ଅଭିନବ ପୁରାତନ ଯୁଗର ଅନଗ୍ରସର ଅଦ୍ଭୁତ ଜାତି ଅଧ୍ୟୁଷିତ ପାର୍ବତ୍ୟ ଅଞ୍ଚଳ। ଦୁଃଖ ହେଲା ଯେ, ସେମାନଙ୍କ ଗହଣରେ ରହି ସେମାନଙ୍କ ଅଦ୍ଭୁତ ସୁନ୍ଦର ଚଳଣି ଓ ପ୍ରାଚୀନ ପରମ୍ପରା ସବୁ ଅନୁଧ୍ୟାନ କରିବାର ସମୟ ମୋର ନ ଥିଲା । ଯାହାହେଉ, ଖଣ୍ଡଗିରିଠାରେ ଥିବା ବୁଦ୍ଧମଠ ଦେଖିବାର ସମୟ ମୁଁ ପାଇଥିଲି । ଏଠାରେ ନାଲି ପଥରରୁ ଖୋଳା ହୋଇଥିବା ଓ ସୁନ୍ଦର ଖୋଦନ କଳା ଥିବା ଧାଡ଼ି ଧାଡ଼ି ଗୁମ୍ଫାମାନ ଅଛି । ମୁଁ ମଧ୍ୟ ବହୁ ପ୍ରସିଦ୍ଧ ଧଉଳିପାହାଡ଼ ବୁଲି ଯାଇଥିଲି । ଏଠାରେ ୨୪୦ ଖ୍ରୀ:ଅ: (240 A.D.) ରେ ବୌଦ୍ଧ ଧର୍ମର ମହାନ ପ୍ରଚାରକ ରାଜା ଅଶୋକଙ୍କ ଆଦେଶରେ ଖୋଦିତ ବହୁ ଶିଳାଲେଖ ଏବେ ମଧ୍ୟ ଦେଖାଯାଏ । ଏହି ଶିଳାଲେଖ ବହୁବାର ଉତରା ହୋଇ ଅନୂଦିତ ହେଲାଣି । ୨୦୦୦ ବର୍ଷ ବିତିଯାଇ ଥିଲେହେଁ ଅକ୍ଷରଗୁଡ଼ିକ ଏ ପର୍ଯ୍ୟନ୍ତ ପରିଷ୍କାର ଓ ସୁପାଠ୍ୟ ହୋଇ ରହିଚି । କେତେ ମାଇଲ ଦୂରରେ ଭୁବନେଶ୍ୱରଠାରେ ଶିବଙ୍କର ଚମତ୍କାର ମନ୍ଦିର ଠିଆ ହୋଇଛି । ବୌଦ୍ଧଧର୍ମ ବଦଳରେ ଆସିଲା ଶୈବ ମତବାଦ; ପୁଣି ତା'

ସ୍ଥାନରେ ଆସିଗଲା ସର୍ବବ୍ୟାପୀ ବୈଷ୍ଣବବାଦ, ଯାହାର ପୁରୀଠାରେ ଥିବା ମନ୍ଦିର, ତା'ଠାରୁ ସୁନ୍ଦର କିନ୍ତୁ ଅବହେଳିତ ଭୁବନେଶ୍ୱର ଅପେକ୍ଷା ସହସ୍ରଗୁଣ ଉପାସକ ପ୍ରତିବର୍ଷ ଆକର୍ଷଣ କରେ ।

ଏହାପରେ ମୁଁ ମୋର ପୁରୁଣା ଜିଲ୍ଲା ବାଲେଶ୍ୱରକୁ ବୁଲିଗଲି। ସେଠାରେ ସହୃଦୟ ବ୍ୟକ୍ତିମାନେ ମୋତେ ଆନ୍ତରିକ ସ୍ୱାଗତ ଜଣାଇଲେ। ସେମାନେ ସହର ଓ ଷ୍ଟେସନକୁ ଆଲୋକିତ କରିଥିଲେ. ନାଚ, ବାଣ ଓ ଭୋଜିର ବ୍ୟବସ୍ଥା କରିଥିଲେ । ଏ ସବୁ ମୋ ପରବର୍ତ୍ତୀ ଅଫିସରଙ୍କୁ କିଛି ଈର୍ଷାନ୍ୱିତ କରିଥିଲା ଏବଂ ସେ ନିଜର ରୁଚିହୀନତା ଫଳରେ ଏସବୁ ଆନନ୍ଦ ଉତ୍ସବରେ ଯୋଗ ଦେଲେ ନାହିଁ ।

ନଭେମ୍ବରରେ ମୋ ସ୍ତ୍ରୀ ଫେରି ଆସିଥିଲେ । ସାଙ୍ଗରେ ଆଣିଥିଲେ ଦୁଇଟି ପିଲା— ୫ବର୍ଷର ଗେର୍ଟ୍ରୁଡ୍ ଏବଂ ୨ ବର୍ଷର ଆଞ୍ଜେଲା; ଆଉ ମଧ୍ୟ ଜଣେ ଇଂରେଜୀ ସେବିକା ଡୋରସେଣାୟରର ଗୋଟିଏ ଝିଅ-ଏମ୍ମା ଗେଲ । ମୋ ପକ୍ଷରେ ଆହୁରି ବିରକ୍ତିକର ହେଲା, କିଛି ଦିନ ପରେ ରେଭେନ୍‌ସା ଫେରିଆସିଲେ । ଆମେ ଆଶା କରିଥିଲୁ ଯେ, ସେ ଆଉ ଫେରିବେ ନାହିଁ ଏବଂ ଓଡ଼ିଶାର ସ୍ଥାୟୀ କମିଶନର ହେବାପାଇଁ ମୋର ମନ ଲାଗିଯାଇଥିଲା; କିନ୍ତୁ ସବୁ ଅନ୍ୟଥା ହୋଇଗଲା। ଟେମ୍ପଲଙ୍କ ପରେ ଆସିଥିବା ଲାଟ ସାର୍ ଆସ୍‌ଲେ ଏଡ଼େନ୍ ଭାବିଲେ ଯେ ମୁଁ ଓଡ଼ିଶାରେ ଖୁବ୍ ବେଶି ଦିନ ରହିଗଲିଣି ଏବଂ ୧୮୭୮ର ଆରମ୍ଭ ବେଳକୁ କମିଶନ୍‌ର ଓ ଜଜ୍ ରୂପେ ଚିଟାଗଙ୍ଗ୍‌କୁ ବଦଳି କରିଦେଲେ ।

ଯେଉଁ ଓଡ଼ିଶା ସହିତ ମୁଁ ଘନିଷ୍ଠ ଭାବରେ ସଂପୃକ୍ତ ହୋଇ ପଡ଼ିଥିଲି ତାକୁ ଛାଡ଼ିବାରେ ମୁଁ ଖୁବ୍ ନିରାଶ ହୋଇପଡ଼ିଲି ଏବଂ ଅସ୍ୱାସ୍ଥ୍ୟକର ସ୍ଥାନ ଭାବରେ ଖୁବ୍ ଦୁର୍ନାମ ଥିବା ଚିଟାଗଙ୍ଗ୍‌କୁ ମୁଁ ଭୟ କରୁଥିଲି । ଅବଶ୍ୟ ଅନ୍ୟ କିଛି ଉପାୟ ନ ଥିଲା । ଆମେ ଆମର ଅଧିକାଂଶ ଆସବାବ ପତ୍ର ବିକ୍ରି କରିଦେଲୁ । ବାକିତକ ବନ୍ଧାବନ୍ଧି କରିଦେଲୁ ଏବଂ ଫେବୃୟାରୀ ୧୮୭୮ରେ ୯ ବର୍ଷର ରହଣି ପରେ ଓଡ଼ିଶା ପରିତ୍ୟାଗ କଲୁ ।



# ବିଂଶ ପରିଚ୍ଛେଦ

## ଚିଟାଗଙ୍ଗ (ଚଟ୍ଟଗ୍ରାମ) : ୧୮୭୮-୭୯

ମୁଁ ଇଲିଅଟଙ୍କୁ ଲେଖିଥିବା ଚିଠିଗୁଡ଼ିକ ମଧ୍ୟରେ ମୋର ଚିଟାଗଙ୍ଗ ଯାତ୍ରାର ଏତେ ଟିକିନିଖି ବର୍ଣ୍ଣନା ଦିଆଯାଇଛି, ଯାହା ୨୨ ବର୍ଷ ପରେ ମୁଁ ମୋ ସ୍ମୃତିରୁ ଏବେ ଦେଇପାରିବି ନାହିଁ । ୨୭ ଫେବୃୟାରୀ ୧୮୭୮ରେ ଲିଖିତ ଚିଠିଟି ମୁଁ ଏଠାରେ ଦେଉଛି— "ଏଇ ସନ୍ଧ୍ୟାରେ ପହଞ୍ଚି ତୋ ଚିଠି ପାଇଲି । କେଉଁଠି ମୁଁ ଛାଡ଼ିଥିଲି ଏବଂ ଉତ୍‌ଥାନ-ପତନମୟ ଆମ ଯାଯାବର ଜୀବନର ବହୁବିଧ ଲମ୍ବା କାହାଣୀ କିପରି ଆରମ୍ଭ କରିବି ! ଆମର ସେ ସୁନ୍ଦର ଘର ଓ ଉଦ୍ୟାନକୁ ଭଙ୍ଗାଭଙ୍ଗି କରିବା ଥିଲା ହୃଦୟ ବିଦାରକ । ଦେଶରୁ ମୋ ସ୍ତ୍ରୀ ଆଣିଥିବା ସୁନ୍ଦର ସୁନ୍ଦର ପଦାର୍ଥମାନଙ୍କ ଦ୍ୱାରା, ତାହା ଚମତ୍କାର ଦିଶୁଥିଲା । ଯାହାହେଉ ଆମେ ବନ୍ଧାବନ୍ଧି କରି ଆସବାବପତ୍ର ସବୁ ବିକ୍ରି କରିଦେଲୁ । ତା'ପରେ ଆସିଲା ଶେଷଦିନ—ଜୋବ୍ରାଘାଟରେ ବିଦାୟ ନେବା । ବିପୁଳସଂଖ୍ୟକ ୟୁରୋପୀୟ ଓ ଦେଶୀୟ ଜନତା ଆମକୁ ବିଦାୟ ଦେବାକୁ ଆସିଥିଲେ । ଅନେକ କାନ୍ଦିଲେ। ଆମକୁ ଖୁବ୍ ବାଧିଲା ଏବଂ ମୁଁ ନିଜେ କାନ୍ଦି ପକେଇବା ଭଳି ହୋଇଗଲି। ମୋ ସ୍ତ୍ରୀ ବହୁ ଅଶ୍ରୁବର୍ଷଣ କଲେ । ଷ୍ଟିମର୍ ଛାଡ଼ିଲା ଏବଂ ଆମେ ଦୃଷ୍ଟିପଥରୁ ଅନ୍ତର୍ହିତ ହେବା ପର୍ଯ୍ୟନ୍ତ ଟୋପି ଓ ରୁମାଲ ହଲା ହେଉଥିଲା । ଷ୍ଟିମର ଆସିବା ଡେରି ହେବାରୁ ଫଲସ ପଏଣ୍ଟରେ ଆମର ଚାରିଦିନ ଡେରିହେଲା । ଫଳତଃ କଲିକତାରେ ଆମେ ମାତ୍ର ୩ଦିନ ରହିଲୁ । ସେଥିରୁ ଗୋଟିଏ ରବିବାର; ତେଣୁ ସେଠି ଏତେତେଣେ ବହୁ ଧାଁ ଧପଡ଼ କରିବାକୁ ପଡ଼ିଲା । କରିବାକୁ କାମ ଥିଲା ବହୁତ; କିନ୍ତୁ ସମୟ ଥିଲା କମ୍ । ହାଓଡ଼ା ନିକଟ ଗୁଜେରୀଠାରେ ବୃଦ୍ଧ ଷ୍ଟାଲକାର୍ଟଙ୍କ ଘରେ ଆମେ ରହିଥିଲୁ । ସେ ହେଉଛନ୍ତି ମୂର୍ତ୍ତିମନ୍ତ ଆତିଥେୟତା ଏବଂ ନଦୀକୂଳରେ ଥିବା ତାଙ୍କର ବିରାଟ ଗୃହଟି ସର୍ବଦା ଯିବାଆସିବା କରୁଥିବା ଲୋକଙ୍କ ଦ୍ୱାରା ସଂପୂର୍ଣ୍ଣ ଏବଂ ନିଜର ଘର ବୋଲି ତାକୁ ମନେ କରନ୍ତି । ମୁଁ ଲାଟଙ୍କୁ ଦେଖା କରିବାକୁ ଗଲି । ସେ ତାଙ୍କ ନାଳ ଯୋଜନା ନେଇ ଅତି ମନ୍ଦ ଓ ବର୍ବର ବ୍ୟବହାର ଦେଖାଉଥିଲେ । ସେ କଥା ପରେ ଅଧିକ କହିବି । ରବିବାର ସନ୍ଧ୍ୟାରେ ଷ୍ଟାଲକାର୍ଟଙ୍କ ଘରେ ଗୋଟିଏ ରାଜକୀୟ ଭୋଜି ପରେ ଆମେ ତାଙ୍କ ନୌକା (ଯାହାକୁ ସେମାନେ ବ୍ୟୁଲୁ-Beaulieu ବୋଲି କହନ୍ତି)ରେ ଉଠିଲୁ ଏବଂ ଆମ ଷ୍ଟିମର ନିକଟକୁ ଚଳେଇଲୁ। ବର୍ତ୍ତମାନ ନଦୀର ଉଭୟ ପଟ ଓ ହାଓଡ଼ା ପୋଲ ମଧ୍ୟ ବାଷ୍ପବତୀରେ ଆଲୋକିତ ହୋଇଗଲଣି । ତାରକାଖଚିତ ଆକାଶତଳେ ଅନ୍ଧାର ମଧ୍ୟରେ ନଦୀ ମଝିରେ ନୀରବରେ ଭାସି ଗଲାବେଳେ ଭେନିସ୍ ଭଳି ଲାଗେ । ଧାଡ଼ି ଧାଡ଼ି କଳା ଜାହାଜ ଭିତର ଦେଇ କୂଳର ଆଲୋକମାଳା ଚମତ୍କାର ଦୃଶ୍ୟ ସୃଷ୍ଟି କରେ । ଆମେ ବର୍ତ୍ତମାନ ଆସିଗଲୁ ଉଜ୍ଜ୍ୱଳ ଆଲୋକିତ କଲିକତାକୁ । ନଈ ମଝିରେ ଆମେ ଷ୍ଟିମର ଉପରକୁ ଆସି ଗହଳି କଲୁ ଏବଂ ଆମ କ୍ୟାବିନ ଭିତରେ ଯାଇଁ ଶୋଇଲୁ । ପରିଦିନ ସକାଳେ ଉଠିଲା ବେଳକୁ ଆମେ ନଈ ଭିତର ଦେଇ ଗାର୍ଡେନରିଚ ପାରହୋଇ ଗଲୁଣି । ଅତିଶୀଘ୍ର ଷ୍ଟିମର ପୂରା ଜୋର୍‌ରେ ଚାଲିଲା । ଦୁଇଦିନ ଧରି ଆମେ ବଙ୍ଗୋପସାଗର ମଧ୍ୟରେ

ଗଲୁ । ବୁଧବାର ସକାଳେ ପ୍ରଥମ ଅରୁଣାଲୋକରେ ଡେକ୍ ଉପରେ ଥାଇ ଦେଖିଲୁ ଯେ ଅସ୍ୱସ୍ତିକର ସମୁଦ୍ର ମଧ୍ୟରେ ଆମେ ଲଙ୍ଗର ପକାଇଛୁ । ଆଲୁଅ ହେବାରୁ ଜାହାଜ ଉପରୁ ଦକ୍ଷିଣଦିଗକୁ ଚାହିଁଦେଖିଲୁ ନୀଚ, ଲମ୍ବ ଉପକୂଳ ରେଖା ଘନ ଜଙ୍ଗଲ ପୂର୍ଣ୍ଣ । ଦୂରରେ ଖଣ୍ଡିତ ଛୋଟ ଛୋଟ ପାହାଡ଼ । ଉତ୍ତର ଦିଗରୁ ଦେଶୀୟ ନୌକାର ବିରାଟ ଭେଳାଟିଏ ସୁନ୍ଦରବନ ଆଡ଼ୁ ଆମରି ଆଡ଼କୁ ଆସୁଥାଏ ଏବଂ ଚାରିପଟେ ସମ୍ପନ୍ (୧)ରେ ଲଙ୍ଗଳା ନାଉରୀ ଦଳ କୋଳାହଳ କରୁଥାନ୍ତି । ସୂର୍ଯ୍ୟ ଉଠିଲାରୁ ଆମ ଲଙ୍ଗର ଉଠିଲା ଏବଂ ଏକ ଚଉଡ଼ା ନଦୀ ମଧ୍ୟରେ ତିନିଚାରିମାଇଲ ଗଲୁ । ଏହି ନଦୀ, ବିରାଟ ଚଉଡ଼ା, ବାୟୁ ବିକ୍ଷୁବ୍ଧ ଓ କର୍ଦ୍ଦମାକ୍ତ—ଉଭୟପଟୁ ଅନୁଚ୍ଚ ପାହାଡ଼ ଶ୍ରେଣୀ ଘନବନାକୀର୍ଣ୍ଣ—ସୁନ୍ଦର ତାଳିବନ୍ ଶୋଭିତ—ଅକଳ୍ପନୀୟ । ହଠାତ୍ ମୋଡ଼ ଉପରେ ଏକ କଣରେ ଦେଖାଗଲା ବହୁ ଇଂରାଜୀ, ଫରାସୀ ଓ ଆମେରିକାନ ଜାହାଜ, ଥାକକୁ ଥାକ ଲମ୍ବା ଗୋଦାମଘର, ଗୋଟିଏ ଜେଟି ଗୋଟିଏ ପତାକା ସ୍ତମ୍ଭ । ଗଛ ସନ୍ଧି ମଧ୍ୟରେ ଛାତ, ତା' ଉପରକୁ ଦିଶୁଛି ତାଳଗଛର ଉପରିଭାଗ ଏବଂ ତା'ର ଆହୁରି ଉପରକୁ ପୁଣି ଅପୂର୍ବ ଧରଣର ଛୋଟ ଛୋଟ ପାହାଡ଼, ପ୍ରତ୍ୟେକଟିର ଉପରେ ଡେଙ୍ଗା ଡେଙ୍ଗା ଝାଉଁଗଛ ଓ ଗୋଟିଏ ବଙ୍ଗଳା । ଖୁବ୍ ଦୂରକୁ ଝାପ୍‌ସା ଝାପ୍‌ସା ଦିଶୁଥିବା ବ୍ରହ୍ମଦେଶର ନୀଳ ପାହାଡ଼ମାଳା— Viola ଚିଟାଗଙ୍ଗ ।

ଚିଟାଗଙ୍ଗ ଡିଭିଜନଟି ବଙ୍ଗଳାର ପୂର୍ବ କୋଣରେ ଏବଂ ଉପସାଗରର ପୂର୍ବକୁ ଥିବା ବ୍ରହ୍ମଦେଶ ଆଡ଼କୁ ଅବସ୍ଥିତ । ଜନସଂଖ୍ୟାର ଏକ ବଡ଼ଭାଗ ହେଉଛନ୍ତି ମୁଗ୍—ବର୍ମୀମାନଙ୍କ ସହ ସାଦୃଶ୍ୟ ଥିବା ଏକ ଜାତି, ଅନ୍ୟ ଭାଗଟି ବୋଧହୁଏ ବଡ଼ଭାଗଟି ହେଉଛନ୍ତି ବଙ୍ଗାଳୀ ମୁସଲମାନ, ଭାରତର ସର୍ବାଧିକ କଳହପ୍ରବଣ, ମାମଲାବାଜ, ପ୍ରତିହିଂସାପରାୟଣ ଜାତି । ସେମାନଙ୍କ ମଧ୍ୟରୁ ଅଧିକାଂଶ ହେଉଛନ୍ତି ସାହସୀ ଓ କୌଶଳୀ ନାବିକ ଓ ସେଇମାନଙ୍କ ମଧ୍ୟରୁ ଭାରତୀୟ ଜଳଭାଗରେ ଚାଲୁଥିବା ଷ୍ଟିମର୍ ଓ ନୌକାମାନଙ୍କରେ ଅଧିକାଂଶ ନାବିକ ଆସିଥାଆନ୍ତି । ପର୍ତ୍ତୁଗୀଜମାନଙ୍କ ଯୋଗୁଁ ଚିଟାଗଙ୍ଗ ସହର ସାମୁଦ୍ରିକ ବନ୍ଦର ଭାବରେ ପ୍ରସିଦ୍ଧି ଲାଭ କଲି । ସେମାନେ ୧୫ଶ ଶତାବ୍ଦୀରେ ସେଠାରେ ବସତି ସ୍ଥାପନ କଲେ । ଗନ୍ ସାଲଭେଜ୍ ଏବଂ ଅନ୍ୟାନ୍ୟ ବର୍ଣ୍ଣସଂକର ପର୍ତ୍ତୁଗୀଜ ଦୁର୍ବୃତ୍ତମାନଙ୍କ ଅଧୀନରେ ଥିବା କେତେକ ଦଳ ସେଠାରେ ତାଙ୍କର ବାଣିଜ୍ୟ କେନ୍ଦ୍ର ଓ ଜଳଦସ୍ୟୁବୃତ୍ତିର ସୁବିଧାଜନକ ଗୁପ୍ତ ଆଡ଼୍ଡ଼ା କରିଥିଲେ, ବଙ୍ଗୋପସାଗରଯାକ ଖେଦୁଥିଲେ ଏବଂ ମୋଗଲ ସାମ୍ରାଜ୍ୟର ପ୍ରବଳ ବିରୋଧୀ ଥିଲେ । ଏହା ଏବେ ମଧ୍ୟ ପାପର ଏକ ଖତଗଦା ପରି ଏବଂ ବଙ୍ଗାଳୀ ହିନ୍ଦୁ ଓ ମୁସଲମାନ, ମୁଗ୍, ପର୍ତ୍ତୁଗୀଜ ଓ ଅନ୍ୟାନ୍ୟ ଜାତିର ଜାତିଛଡ଼ା ଅଧଃପତିତ ବ୍ୟକ୍ତିମାନଙ୍କ ଦ୍ୱାରା ପୂର୍ଣ୍ଣ । ଏହା ଭୟଙ୍କର ଅସ୍ୱାସ୍ଥ୍ୟକର, ଭାରତର ବାକି ଅଂଶରୁ ବିଚ୍ଛିନ୍ନ । ଏଠାକାର ଦାମ କେବଳ ଭାରୀ ନୁହେଁ, ଅତି ଅସୁବିଧାଜନକ ଏବଂ ଜଟିଳ । ଆବର୍ଜନା, କ୍ଷତିକାରକ ପୋକଜୋକ ଏବଂ ଦୁର୍ଗନ୍ଧରେ ସ୍ଥାନଟି ଅସାଧାରଣ । ଆମେ ଏହାକୁ କହୁ 'ଘୃଣ୍ୟ ଚିଟାଗଙ୍ଗ' । ଏ ସମ୍ପର୍କରେ ବୋଧହୁଏ ପରେ ଆଲୋଚନା କରିବା ଭଲ ।

ଚିଟାଗଙ୍ଗ ଜିଲ୍ଲାଟି ପଶ୍ଚିମରେ ବଙ୍ଗୋପସାଗର, ପୂର୍ବରେ ଢାଲଛନ୍ଦା ହେଲା ଭଳି ଅନୁଚ୍ଚ ବହଳ ଜଙ୍ଗଲରେ ପୂର୍ଣ୍ଣ ଜଟିଳ ପର୍ବତମାଳା ଦ୍ୱାରା ଆବଦ୍ଧ ଏକ ଅଣଓସାରିଆ ପଟି । ଏହା

(୧) ସମ୍ପନ୍ ହେଉଛି ଅନୁଚ୍ଚ ଲମ୍ବା ନୌକା, ଯାହାର ପଶ୍ଚାତ୍‌ଭାଗ ଦୁଇଭାଗ ହୋଇଥାଏ । ଏହା ଫଳରେ ନୌକା ପ୍ରାୟ ଉଲଟିଯାଏ ନାହିଁ ।

ତିରିଶ ମାଇଲରୁ ଅଧିକ ଚଉଡ଼ା ନୁହେଁ ଏବଂ ଶହେ ମାଇଲରୁ ଅଧିକ ଲମ୍ବ । ଗୁଡ଼ାଏ ବଡ଼ ନଈ ପର୍ବତରୁ ବାହାରି ଉପସାଗରରେ ପଡ଼ିଛନ୍ତି । ଏଥିମଧ୍ୟରୁ ସବୁଠାରୁ ବଡ଼ କର୍ଣ୍ଣଫୁଲିର ମୁହାଣରୁ ପାଞ୍ଚମାଇଲ ଅଭ୍ୟନ୍ତରରେ ଚିଟାଗଙ୍ଗ ସହର ଅବସ୍ଥିତ । ଏହିଠାରେ ନଦୀ କୂଳେ କୂଳେ ଅନ୍ୟ ଏକ ଧାର ପର୍ଯ୍ୟନ୍ତ ଖୋଲା ଖୋଲା ରାସ୍ତା ଥାଇ ନିର୍ମିତ ପର୍ତ୍ତୁଗୀଜମାନଙ୍କର ପୁରାତନ ପୋର୍ଟୋ ଗ୍ରାଣ୍ଡେ । ଏଠାରେ ଗୋଟିଏ ବିରାଟ ରୋମାନ କ୍ୟାଥଲିକ୍ ଗିର୍ଜା, ବିଶପ୍‌ଙ୍କ ନିବାସ ଏବଂ କୋଠାଘର ଅଛି । ଏହା ଚାରିପଟେ ବାଉଁଶ ଟାଟ ଓ ନଡ଼ା ତିଆରି ପର୍ତ୍ତୁଗୀଜମାନଙ୍କ ଘର । ଏ ଅଞ୍ଚଳର ଅନ୍ୟାନ୍ୟ ଘର ପରି ଏସବୁ ମଧ ଉଚ୍ଚ ମାଟିଗଦା ଉପରେ ତିଆରି । ଘରତଳେ ତିନିଫୁଟର ଖୋଲା ଜାଗା ସବୁପ୍ରକାର ଅଳିଆ ଓ ଆବର୍ଜନା ପକାଇବାରେ ବ୍ୟବହୃତ ହୁଏ । ଇଂରାଜୀ, ଫରାସୀ ଓ ଦେଶୀୟ ବ୍ୟବସାୟୀଙ୍କର ବିରାଟ ଗୋଦାମସବୁ ନଦୀର କୂଳେ କୂଳେ ଧାଡ଼ି ବାନ୍ଧିଚି ଏବଂ ବାକି ଜାଗା ଦେଶୀୟମାନଙ୍କର (ପ୍ରଧାନତଃ ମୁସଲମାନ) କୁଡ଼ିଆ ଓ ଗୋଟିଏ ଦୁଇଟି ସୁନ୍ଦର ଇଟା ମସ୍‌ଜିଦ୍‌ରେ ଅଧିକୃତ । ଏ ସମଗ୍ର ଅଞ୍ଚଳଟି ତାଳ, କଦଳୀ, ଆମ୍ବ ଓ ଅନ୍ୟାନ୍ୟ ବହୁ ଉଦ୍ଭିଦରେ ପୂର୍ଣ୍ଣ । ସେଗୁଡ଼ିକ ବଡ଼ ବଡ଼ ବିଷୁବମଣ୍ଡଳୀୟ ଲତା ଦ୍ୱାରା ପରସ୍ପର ଛନ୍ଦିହୋଇ ରହିଚି । ତଳେ ବହଳ ଗୁଳ୍ମ; ତାରି ଭିତରେ ମଝିରେ ମଝିରେ କଳାକଳା ଆବଦ୍ଧ ପାଣିର ପୋଖରୀମାନ ଜକ୍ ଜକ୍ କରୁଚି । ଏହି ନୀଚା ଅଞ୍ଚଳଟି ଉତ୍ତର ଦିଗରେ ପାହାଡ଼ର ନାସୀଦ୍ୱାରା ଆବୃତ୍ତ । ସେହି ନାସୀ ଝରଣାଗୁଡ଼ିକ ଦ୍ୱାରା ଖଣ୍ଡିତ ହୋଇ ଗୁଡ଼ିଏ ଛୋଟ ଗୋଜିଆ ଗୋଜିଆ ପାହାଡ଼ରେ ପରିଣତ ହୋଇଯାଇଛି । ଏହି ପ୍ରତ୍ୟେକଟି ପାହାଡ଼ରେ ଝାଉଁଗଛ ଘେର ମଧ୍ୟରେ ଗୋଟିଏ ଲେଖାଁଏ ୟୁରୋପୀୟ ଗୃହ, ତାଲୁ ଅଂଶଗୁଡ଼ିକ ବନ୍ୟ ତେନ୍ତୁଳିଗଛରେ ପୂର୍ଣ୍ଣ । ସେଠାରେ ଆହୁରି ଅଛି ବିରାଟ ବିରାଟ କୋଟ ଓ ସରକାରୀ ଘର, ଗୋଟିଏ ବଡ଼ ପ୍ରୋଟେଷ୍ଟାଣ୍ଟ ଗିର୍ଜା, ବିଦ୍ୟାଳୟ ଏବଂ ଡାକଘର । ଏହିସବୁ ବାଲିଆ ପାହାଡ଼ରୁ ଏଠିସେଠି ମଧୁର ପାଣିର ଝର ବାହାରି ଆସୁଚି । ସେଠାରେ ଅଧିବାସୀମାନଙ୍କୁ ପାନୀୟଜଳ ଯୋଗାଉଥିବା ଝରଗୁଡ଼ିକୁ ସେମାନେ ପ୍ରତିଯୋଗିତାମୂଳକ ଭାବରେ ଜଗିରହି ବନ୍ଧ ଦେଇଛନ୍ତି । ଏହିସବୁ ପାହାଡ଼ ଉପରୁ ଚାହିଁଲେ ଦେଖାଯାଏ ଦୂରରେ ସୁନ୍ଦର ନୀଳ ପର୍ବତମାଳା ଘେରିଥିବା ପ୍ରଶସ୍ତ ଉର୍ବର ସମତଳ ଭୂମି । ପ୍ରତ୍ୟେକ ଦୃଶ୍ୟର ସୌନ୍ଦର୍ଯ୍ୟ ସମ୍ମୋହନକାରୀ । ଦେଖିବାକୁ ଏତେ ସୁନ୍ଦର ଏବଂ ରହିବାପାଇଁ ଏତେ ଘୃଣ୍ୟସ୍ଥଳ ମୁଁ ଆଉ ଦେଖି ନାହିଁ । ସେଠାରୁ କଲିକତାକୁ ପ୍ରତିଦିନ ଡାକ ଚଳାଚଳ ହୁଏ; କିନ୍ତୁ ପାର୍ଶଲ ବା ମାଲ ଚଳାଚଳ ପାଇଁ କିମ୍ବା ସେ ଜାଗାକୁ ଯିବାଆସିବାପାଇଁ କଲିକତାରୁ ଆସୁଥିବା ପାକ୍ଷିକ ଷ୍ଟିମର ଉପରେ ନିର୍ଭର କରିବାକୁ ପଡ଼େ ।

ଇଲିଅଟ ପାଖକୁ ମୁଁ ଲେଖିଥିବା ଚିଠିର ଆଉ ଏକ ଅଂଶ: " ଏଇଠି ଅର୍କିଡ୍ ଫୁଲଫୁଟି ଝୁଲୁଥିବା ବାରଣ୍ଡାରେ ବସି ଆମେ ତଳକୁ ଚାହିଁଚୁ—ତାଳ ଓ ଅନ୍ୟାନ୍ୟ ଗଛର ଗହଳ ଏବଂ ବହୁତ ତଳେ ଖୁବ୍ ଛୋଟ ଛୋଟ ଦେଖାଯାଉଥିବା ଏବଂ ମନ୍ଥର ଗତିରେ ଚାଲିଯାଉଥିବା ଲୋକ ଓ ଶଗଡ଼ଗାଡ଼ି ଆଡ଼କୁ—ତା'ପରେ ଜାହାଜ ଭର୍ତ୍ତି ବିରାଟ ଶୁଭ୍ର ନଦୀ ଏବଂ ଲମ୍ବା ଧାଡ଼ିର ଗଛ ଉପରଦେଇ ଆମେ ଦେଖିପାରୁଚୁ ନୀଳାଭ ସମୁଦ୍ରର ରେଖା । ଏହି ସ୍ଥାନର ଦୃଶ୍ୟ ସବୁଦୃଷ୍ଟିରୁ ସୁନ୍ଦର । ଜଙ୍ଗଲ ପୂର୍ଣ୍ଣ ପାହାଡ଼ ଭିତରଦେଇ ରାସ୍ତାସବୁ ଲମ୍ବିଯାଇଛି । ତାଳଗଛ ଓ ଚକ୍‌ଚକ୍ କରିଥିବା ଛୋଟ ଛୋଟ ଜଳପ୍ରପାତର ସୀମା ନାହିଁ । କିନ୍ତୁ ହାୟ ! ଆମର ଦୁର୍ବଳ ମାନବ ପ୍ରକୃତି ଯେଉଁ ସୁବିଧା ଆବଶ୍ୟକ କରେ ସେସବୁ ଖୁବ୍ ଖରାପ । ନାକରମାନେ ଖୁବ୍ ବେଶି ଦରମା ପାଆନ୍ତି; କିନ୍ତୁ ଏତେ ଅସମ୍ଭବ ଭାବରେ ଅସମ୍ଭବ ଜୀବ ଯେ ସ୍ୱପ୍ନରେ ସୁଦ୍ଧା କଳ୍ପନା

କରିହେବ ନାହିଁ । ଘରମାନଙ୍କରେ ଉଢ଼ା ପୋକଭର୍ତ୍ତି ଏବଂ ଘରସବୁ ଏତେ ଦଦରା ଯେ ବିଶ୍ୱାସ କରି ହେବ ନାହିଁ ।

ଚାରିଆଡ଼େ ସମତଳ ଭୂମିର ମଝିରେ ମଝିରେ ଥିବା ଅନୁଚ୍ଚ ପାହାଡ଼ମାନଙ୍କରେ ବିସ୍ତୃତ ଚାହା ବଗିଚା। ଚାହା ଗଛ ଏଠାରେ ଭଲ ହୁଏ ଏବଂ ମୋ ମତରେ ଭାରତର ଅନ୍ୟ କୌଣସି ଜିଲ୍ଲା ଅପେକ୍ଷା ଉତ୍କୃଷ୍ଟ—ସେ ସମୟରେ ସିଂହଳରେ ଚା ହୋଇନଥିଲା । ସେଠାରେ ଅନେକ ୟୁରୋପୀୟ ଚା ଚାଷୀ ଥିଲେ, ପ୍ରଧାନତଃ ଇଂଲିଶ ଏବଂ ରୁକ୍ଷ, ଉଗ୍ର ଓ ଅବିବାହିତ ସ୍କଟଦେଶୀୟ ଲୋକ । ଫରାସୀମାନଙ୍କର ଏକ କ୍ଷୁଦ୍ର ଉପନିବେଶ ମଧ୍ୟ ସେଠାରେ ଥିଲା । ସେମାନଙ୍କ ମୁଖ୍ୟ ଥିଲେ ଜଣେ ଖର୍ବାକୃତିର କୌତୁକିଆ ବୃଦ୍ଧ। ଶୁଖିଲା ମଟରଦାନା ପରି ଲୋକ—ଏମ୍.ଡି. ଟରମସ୍ । ସେ ନିଜକୁ 'ଫ୍ରାନ୍ସର ପ୍ରତିନିଧି ଦୂତ' ବୋଲି କହୁଥିଲେ । ତାଙ୍କ ସ୍ତ୍ରୀ ଓ ଝିଅ ଥିଲେ ମେଳାପୀ ।

ଚିଟାଗଙ୍ଗର ପୂର୍ବକୁ ଥିବା ପାହାଡ଼ମାଳାରେ ଅଦ୍ଭୁତ ଧରଣର ଅଧାବର୍ମୀ ଉପଜାତିର ଲୋକ ବାସ କରୁଥିଲେ—ମୁଗ୍, ଚକ୍ମା ଏବଂ ଅନ୍ୟାନ୍ୟ । ଏହି ଅଞ୍ଚଳକୁ ଏକ ଅନିୟନ୍ତ୍ରିତ ଜିଲ୍ଲାରୂପେ ଗଠନ କରାଯାଇଥିଲା ଏବଂ 'ଚିଟାଗଙ୍ଗ ପାର୍ବତ୍ୟାଞ୍ଚଳ' କୁହାଯାଉଥିଲା । ତାହାର ଡେପୁଟି କମିଶନର ମେଜର ଗର୍ଡ଼ନ୍ ଇଭାନ୍ ଥିଲେ ଜଣେ ଭଦ୍ର, ବିଚକ୍ଷଣ, ଆକର୍ଷଣୀୟ ଯୁବକ, ଯେ କି ତାଙ୍କଦ୍ୱାରା ଶାସିତ ବଣୁଆ ଆଦିମ ଲୋକଙ୍କୁ ଭଲଭାବରେ ଚିହ୍ନିଥିଲେ । ସୀମାନ୍ତର ସୁରକ୍ଷାପାଇଁ ତାଙ୍କ ଅଧୀନରେ ଛୋଟ ସୈନ୍ୟଦଳଟିଏ ଥିଲା, କାରଣ ସୀମା ଆରପଟେ ରହୁଥିଲେ ଆହୁରି ହିଂସ୍ର ଏକ ଉପଜାତି । ଏମାନଙ୍କୁ ଲୁସାଇ କୁହାଯାଉଥିଲେ ମଧ୍ୟ ସ୍ଥାନୀୟ ଭାବରେ ହୋଲଙ୍ଗ, ସିଲୁ, ସେଣ୍ଡୁ ଏବଂ ଅନ୍ୟାନ୍ୟ ନାମରେ ବର୍ବର ଦଳରେ ସେମାନେ ବିଭକ୍ତ। ଏମାନେ ଆକ୍ରମଣ କରିବାରେ ଖୁବ୍ ଅଭ୍ୟସ୍ତ । ସେଇମାନଙ୍କୁ ଭୟ ଦେଖାଇବା ପାଇଁ ପାର୍ବତ୍ୟାଞ୍ଚଳର ରାଜଧାନୀ ରଙ୍ଗମାଟିଠାରେ ସୈନ୍ୟବାହିନୀ ରଖାଯାଇଥିଲା । ଗର୍ଡ଼ନଙ୍କୁ ସାହାଯ୍ୟ କରିବା ପାଇଁ ଥିଲେ ଜଣେ ସହକାରୀ—ଜାବ୍ରୋ, ପୋଲିସ ଅଧିକାରୀ କ୍ରାଉଚ ଏବଂ ଜଣେ ବୃଦ୍ଧ ପର୍ତ୍ତୁଗୀଜ ଇନସ୍‌ପେକ୍ଟର ରୋଜାରିଓ ।

ଚିଟାଗଙ୍ଗରେ ଆମେ ଅତି ଦୁଃଖରେ ଥିଲୁ । ବାସ୍ତବରେ ଆମ ଭାରତ ରହଣିର ଦୁଇଟି ଅତି ଦୟନୀୟ ବର୍ଷ ଆମେ ସେଠାରେ କଟାଇଲୁ । ଆମେ ଏତେ ସୁଖରେ ଥିବା କଟକଠାରୁ ଏହା ନିଷ୍ଠୁର ଭାବରେ ପୃଥକ । ଲାଟ ସାର୍ ଆସ୍‌ଲେ ଏଡ଼େନ୍ ଥିଲେ ମୋ ପ୍ରତି ଶତ୍ରୁଭାବାପନ୍ନ ଏବଂ ତଳିଆ ଲୋକଙ୍କୁ ଆଣି ମୋ ଉପରେ ଭଲ ସ୍ଥାନମାନଙ୍କରେ ନିଯୁକ୍ତି କଲେ । ଚିଟାଗଙ୍ଗର ଜଜ୍ ଓ କମିଶନ୍‌ର ରୂପେ ମୋର ଦରମା ଥିଲା ଅନ୍ୟ କମିଶନର ପଦବୀଠାରୁ ବାର୍ଷିକ ପ୍ରାୟ ୩୫୦ ପାଉଣ୍ଡ କମ୍। ଯଦିଓ ସମସ୍ତେ କହୁଥିଲେ ଯେ, ଏପରି ସ୍ଥାନରେ ରହିବାକୁ ହେଲେ ଜଣେ ବେଶି ପାଇବା ଉଚିତ, କମ୍ ନୁହେଁ । କମିଶନର କାର୍ଯ୍ୟର ଗୁରୁଦାୟିତ୍ୱ ସାଙ୍ଗକୁ, ପୂର୍ବରୁ ମୋର କିଛି ଅଭିଜ୍ଞତା ନ ଥିବା ଜଜ୍‌ର କାମ ଭୀଷଣ ବୋଝ (୧) ହୋଇଗଲା । ଏ ଦୁଇଟି ପଦ

(୧) ଏହି ଦୁଇଟି ପଦବୀକୁ ଏକାଠି ମିଳାଇଦେବା ଥିଲା ସାର୍ ଜର୍ଜ କାମ୍ପବେଲ୍‌ଙ୍କର ଏକ ପାଗଳାମି । କଲେକ୍ଟରମାନଙ୍କ ଦରମା ବଢ଼ାଇବାପାଇଁ ପାଣ୍ଠି ଯୋଗାଡ଼ କରିବାକୁ ଯାଇ ସେଥିରେ କିଛି ଅଂଶ ସେ ସଂଗ୍ରହ କଲେ ଚିଟାଗଙ୍ଗର ଏହି ଦୁଇଟି ପଦକୁ ଏକାଠି କରିଦେଇ, ଯଦିଓ ଏ ବିଷୟ ଜାଣିଥିବା ପ୍ରତ୍ୟେକ ଲୋକ ଏଥିରେ ଭୁଲ ଦେଖାଇଥିଲେ । ଶେଷରେ ସରକାରୀ କାମ ଖୁବ୍ ବାଧାପ୍ରାପ୍ତ ହେଲା ଏବଂ ସରକାର ଓ ହାଇକୋର୍ଟ ମଧ୍ୟରେ ବାରମ୍ବାର ବିବାଦ

ଏକାଠି ରହି ନ ପାରେ । ଗୋଟିକର କାମ ଅନ୍ୟଟିର ପ୍ରତିବନ୍ଧକ, ମୁଁ ଯଦି କମିଶନର କାମରେ, ପ୍ରଶାସନିକ କାମରେ ସମୟ ଦିଏ, ତେବେ ଜଜ୍ ହିସାବରେ ମୋର ବିଚାର କାମରେ ଅବହେଳା କଲାରୁ ହାଇକୋର୍ଟର ବିରାଗଜନକ ହେବି ଏବଂ ଏହାର ଓଲଟ ଦିଗଟା ମଧ୍ୟ ସତ। ଏପରି ବ୍ୟବସ୍ଥା ଅଚଳ। ସୌଭାଗ୍ୟବଶତଃ (ଅବଶ୍ୟ ମୋ ପରେ) ପରିସ୍ଥିତିର ଚାପର ସରକାର ଦୁଇଟି ପଦକୁ ଅଲଗା କରି ଜଜ୍ ପାଇଁ ଅଲଗା ଅଫିସର ଦେବାକୁ ବାଧ୍ୟ ହେଲେ ।

ବର୍ତ୍ତମାନ ଆମର ନୂତନ ଜୀବନର ଘଟଣାବଳୀକୁ ଏକପ୍ରକାର କ୍ରମାନୁୟରେ ବର୍ଣ୍ଣନା କରିବାର ବେଳ । ଆମର ସେ ସ୍ଥାନରେ ପହଞ୍ଚିବାର ସପ୍ତାହେ ବି ହୋଇ ନାହିଁ, ଜିନିଷପତ୍ର ଖୋଲି ନୂଆଘରେ ଅବସ୍ଥାପିତ ହୋଇ ନାହୁଁ, ସେଇ ବିଶୃଙ୍ଖଳିତ ଅବସ୍ଥାରେ ସାର୍ ଆସ୍ଲେ ଏଡ୍ଡେନ୍ ସଦଳବଳ ତାଙ୍କ ଷ୍ଟିମରରେ ପର୍ଯ୍ୟବେକ୍ଷଣ ଗସ୍ତରେ ଆସି ପହଞ୍ଚିଲେ । ସରକାରୀ ବଡ଼ ବଡ଼ିଆମାନେ ସେମାନଙ୍କ ଦ୍ୱାରା ସୃଷ୍ଟ ଅସୁବିଧା କଥା କେବେ ଚିନ୍ତାକରନ୍ତି ନାହିଁ। ସେ ସ୍ଥାନରେ ନୂଆ ହୋଇଥିବାରୁ ମୁଁ ଅବଶ୍ୟ କାମ ବିଷୟରେ କିଛି ବୁଝାଇପାରିଲି ନାହିଁ । ଗୋଟିଏ ଅଫିସରୁ ଅନ୍ୟ ଅଫିସକୁ ବାଟ ମଧ୍ୟ ମୁଁ ସଠିକ୍ ଜାଣିନଥିଲି । ମୋ ପୂର୍ବ କମିଶନର ଚାଲିଯାଇଥିଲେ ଏବଂ କଲେକ୍ଟର ଥିଲେ ଜଣେ ଅଳସୁଆ, ଯେ କି ନିଜ କାମ ବିଷୟରେ ଆଦୌ ଆଗ୍ରହୀ ନ ଥିଲେ । ତେଣୁ ଲାଟ ଆଉ ଭଲ ସମୟ ଦେଖି ଆସିଥିଲେ ସବୁ ବିଷୟରେ ଯେଉଁ ଅନ୍ତର୍ଦୃଷ୍ଟି ଲାଭ କରିଥାନ୍ତେ ତାହା ପାଇଲେ ନାହିଁ ବୋଲି ମୋର ଆଶଙ୍କା । ତାଙ୍କୁ ଠିକ୍ ହେଲା ! ସେ ତିନିଦିନ ମାତ୍ର ରହି ଚାଲିଗଲେ, ଆମେ ଖୁବ୍ ଆନନ୍ଦିତ ହେଲୁ ।

ଗୋଟିଏ ଘଟଣା, ଯେତେ ଛୋଟ ହେଲେ ମଧ୍ୟ ଏଠାରେ ବର୍ଣ୍ଣନା କରାଯାଇପାରେ, କାରଣ ସେଇଥିରୁ ସୂଚନା ମିଳେ ଫରାସୀମାନେ ଇଂରେଜମାନଙ୍କ ପ୍ରତି କେତେ ଈର୍ଷା ପରାୟଣ ନୀଚ ଅହଂଭାବ ପୋଷଣ କରନ୍ତି । ଗତାନୁଗତିକ ରୀତିରେ ଲାଟଙ୍କୁ ଅଭିନନ୍ଦନ ଜଣାଇବାପାଇଁ ବିଜୟ ତୋରଣ ତିଆରି ହେଲା, ସବୁ ସରକାରୀ ଅଫିସ୍‌ରେ ପତାକା ଉଡ଼ିଲା ଏବଂ ଉଭୟ ଇଂରାଜୀ ଓ ବିଦେଶୀ ସବୁ ଜାହାଜ ମଧ୍ୟ ସୁସଜ୍ଜିତ କରାଗଲା । କେବଳ ଫରାସୀ ବାଣିଜ୍ୟ ଦୂତାବାସ ଅଫିସର ପତାକାସ୍ତମ୍ଭ ଖାଲି ପଡ଼ିଥିଲା । ମହାନ୍ ଅତିଥିଙ୍କୁ ସ୍ୱାଗତ କରିବା ପାଇଁ ଆମେ ଜେଟିରେ ଠିଆ ହୋଇଥିଲୁ । ତାଙ୍କ ତରୀଟି ନଜରରେ ଦେଖାଗଲାଣି, ଏହି ସମୟରେ କଷ୍ଟମ କଲେକ୍ଟର ମୋ ଦୃଷ୍ଟି ଆକର୍ଷଣ କରାଇ ଦେଲେ । ମୁଁ ସାଙ୍ଗେ ସାଙ୍ଗେ ଜଣେ କର୍ମଚାରୀଙ୍କୁ ମୋର ଶୁଭେଚ୍ଛାସହ ଏମ୍.ଡି ଟରମସ୍‌ଙ୍କ ପାଖକୁ ପଚାରି ପଠାଇଲି ଯେ ସେ କାହିଁକି ତାଙ୍କ ପତକା ଉଡ଼ା ନାହାନ୍ତି । ସେ ଉତ୍ତର ଦେଲେ ଯେ ଫରାସୀ ପତାକାକୁ (୧) ଅପମାନିତ

---

ଉପୁଜି ଏ ବ୍ୟବସ୍ଥା ସଂପୂର୍ଣ୍ଣ ନ ଯଯୌ ନ ତସ୍ଥୌ ଅବସ୍ଥାକୁ ଆସିଗଲା । ଯେତେବେଳେ ଜିଲ୍ଲାର ଅଧିକାଂଶ ଅଞ୍ଚଳରେ ରାଜସ୍ୱ ନିର୍ଦ୍ଧାରଣ ଆରମ୍ଭ ହେଲା, ନିର୍ଦ୍ଧାରିତ ପରିମାଣ ସମ୍ପର୍କରେ ଅସନ୍ତୁଷ୍ଟ ହେଲେ, ଜମିଦାରମାନେ ଆଇନାନୁଯାୟୀ ସରକାର ବିରୋଧରେ ସିଭିଲକୋର୍ଟର ଆଶ୍ରୟ ନେଇପାରୁଥିଲେ । ଯେଉଁ କମିଶନର ରାଜସ୍ୱ ନିର୍ଦ୍ଧାରଣରେ ପ୍ରଧାନତଃ ଦାୟୀ, ଜଜ୍ ହିସାବରେ ସେ ତା' ବିରୋଧରେ ଅପିଲର ବିଚାର କରିବ, ଏହା ଅସମ୍ଭବ ହୋଇ ଉଠିଲା । ଆଇନଜୀବୀ ଏବଂ ଜନସାଧାରଣ ଏ ବ୍ୟବସ୍ଥା ବିରୋଧରେ ଏତେ ପାଟିତୁଣ୍ଡ କଲେ ଯେ, ପ୍ରାୟ ସାତ ବର୍ଷ (୧୮୭୩-୮୦) ଚାଲିଲା ପରେ ଏ କୃତ୍ରିମ ମିଶ୍ରଣକୁ ଉଠାଇଦେବାକୁ ପଡ଼ିଲା ।

(୧) Drapeau francais.

କରାଯାଉଥିବା ପର୍ଯ୍ୟନ୍ତ ସେ ତାହା କରିବେ ନାହିଁ । ଆମ ବାର୍ତ୍ତାବହ ଏହି ଉତ୍ତର ଧରି ଫେରି ଆସିଲା ଏବଂ ସରକାରୀ କକ୍ଷମ ଜାହାଜ ଆଡ଼କୁ ନିର୍ଦ୍ଦେଶ କରିଦେଲା । ସେଇଟିର ଏ ମୁଣ୍ଡରୁ ସେମୁଣ୍ଡ ପର୍ଯ୍ୟନ୍ତ ପତାକା ସଜ୍ଜିତ ହୋଇଥିଲା । ଆମେ ତା'ପରେ ଦେଖିଲୁ ଯେ ପ୍ରଧାନ ମାସ୍ତୁଲର ସବା ଉପରେ ସାଧାରଣ ସଙ୍କେତ ପତାକାଟିଏ ଓ ଠିକ୍ ତା ତଳକୁ ୨ୟ ସ୍ଥାନରେ ଥିଲା ଫରାସୀ ତ୍ରିରଙ୍ଗାଟି ! ଏମ୍.ଡ଼ି ଟରମ୍ସ୍‌ଙ୍କ ମତରେ ଯେ କୌଣସି ପତାକା ତଳେ ଫରାସୀ ପତାକାକୁ ରଖିବା ଅପମାନଜନକ । ଆମେ ହସିଲୁ, କିନ୍ତୁ ସାଙ୍ଗେ ସାଙ୍ଗେ ପତକା ବଦଳାଇ ଫରାସୀ ପତାକାକୁ ଅନ୍ୟଟିର ଉପରେ ରଖିବାକୁ ମୁଁ ଆଦେଶ ଦେଲି । ବଦଳି କରିବା ପାଇଁ ବେଶି ସମୟ ଲାଗିଲା ନାହିଁ ଏବଂ ଏହା ହୋଇଯିବା ସାଙ୍ଗେ ସାଙ୍ଗେ ଏମ୍.ଡି. ଟରମ୍ସ୍ ଯେ କି ତାଙ୍କ ଅଫିସ୍ ଝରକାବାଟେ ତାଙ୍କ କାଚ ଦେଇ ଜଗି ରହିଥିଲେ, ସବୁ ପତାକାର ପ୍ରଦର୍ଶନୀ ମଧ୍ୟରେ ୟୁନିଅନ ଜ୍ୟାକ (ବ୍ରିଟିଶ ପତାକା) ଓ ତ୍ରିରଙ୍ଗୀ (ଫରାସୀ)କୁ ଏକାଠି ଉଠାଇ ଦେଲେ ! ଏହା ଠିକ୍ ସମୟରେ ହେଲା କାରଣ ଅଳ୍ପ କେତେ ମିନିଟ ପରେ ଲାଟଙ୍କ ଷ୍ଟିମର ସେଇ ସ୍ଥାନରେ ଘୂରିଲା । ଡିଟରମ୍ସ୍‌ଙ୍କ ପ୍ରତି ନ୍ୟାୟ କରିବା ପାଇଁ କହିରଖେ ସେ ମୋତେ ପରେ କହିଲେ ଯେ ସେ ନିଜେ ଏ ବିଷୟରେ ଗୁରୁତ୍ୱ ଦିଅନ୍ତି ନାହିଁ ଏବଂ ଭୁଲବଶତଃ ଘଟିଥିବା ଏଇ ବିଷୟ ନେଇ ହଇଚଇ କରିବାକୁ ସେ ଚପଳତା ବୋଲି ମନେକରନ୍ତି; କିନ୍ତୁ ସେ ଫରାସୀମାନଙ୍କର ମେଳ ଭିତରେ ଥିଲେ । ସେମାନଙ୍କ ଭିତରୁ ଯେ କେହି ପ୍ୟାରୀକୁ ଏ ଘଟଣା ଜଣାଇ ଦେଇଥାଆନ୍ତା, ଫଳତଃ ସେ ଚାକିରି ହରାଇ ଥାଆନ୍ତେ ! ଫରାସୀ-ପ୍ରୁଷୀୟ ଯୁଦ୍ଧ ପରେ ବେଶ୍ କେତେ ବର୍ଷ ଧରି ଫରାସୀମାନେ ସେମାନଙ୍କର ସମ୍ମାନ ବିଷୟରେ ଖୁବ୍ ସ୍ପର୍ଶାତୁର ଥିଲେ । ପରବର୍ତ୍ତୀ ସମୟରେ ହୁଗୁଳିରେ ଥିବାବେଳେ ମୁଁ ଏହା ଅନୁଭବ କରିଛି । ଯଥାସମୟରେ ତାହା କହିବି ।

ଦେଶୀୟମାନେ ବିଭିନ୍ନ ସରକାରୀ କୋଠା ଓ ବିଜୟ ତୋରଣମାନଙ୍କରେ ଇଂରାଜୀ ଓ ବଙ୍ଗଳା ବାଣୀ ସବୁ ଉଲ୍ଲେଖ କରିଥିଲେ । ଅଧିକାଂଶ ସ୍ଥଳରେ ଏସବୁ ଥିଲା 'ସ୍ୱାଗତ' କିନ୍ତୁ ସରକାରୀ ଡାକ୍ତରଖାନା ଉପରେ କେହି ଜଣେ କୌତୁକରେ ଲେଖିଥିଲା, ଦାନ୍ତେ ନର୍କର ଦ୍ୱାର ସଂପର୍କରେ ଲେଖିଲା ପରି । ତାହାର ଅନୁବାଦ ହେବ 'ତୁମେ ଯିଏ ଆସୁଛ ଏଠାକୁ ଆଶା ଛାଡ଼ିଦିଅ । ସାର୍ ଆସ୍‌ଲେକ୍‌ଙ୍କୁ ଏହା ଖୁବ୍ ଆମୋଦ ଦେଲା କିନ୍ତୁ ଡାକ୍ତରଖାନାର ଇନ୍‌ସପେକ୍ଟର ଜେନେରାଲଙ୍କୁ ଖୁବ୍ ଅପମାନଜନକ ବୋଧ ହେଲା ।

ବର୍ତ୍ତମାନ ମୁଁ ଯାଇଁ ପଡ଼ିଲି ନୋଆବାଦରେ । ଏହି ଭୟଙ୍କର ଶବ୍ଦର ତାତ୍ପର୍ଯ୍ୟ ବୁଝାଇବା ପୂର୍ବରୁ ପାର୍ବତ୍ୟାଞ୍ଚଳକୁ ଆମର ଗସ୍ତ ବିଷୟରେ କହିବି । ମୁଗ୍‌ମାନଙ୍କର ବୋହମଙ୍ଗ୍ (ବୋହ-ମୁଣ୍ଡ, ମଙ୍ଗ୍-ମୁଖିଆ) ନାମକ ଏକ ଭଦ୍ରବ୍ୟକ୍ତିଙ୍କ ସମ୍ପର୍କରେ କିଛି ଅସୁବିଧା ଘଟିଲା ଏବଂ ତାହା ସମାଧାନ କରିବାକୁ ମୋତେ ଯିବାକୁ ପଡ଼ିଲା । ପରିବର୍ତ୍ତନ ପାଇଁ ମୁଁ ମୋ ସ୍ତ୍ରୀ ଓ ପିଲାଙ୍କୁ ସାଙ୍ଗରେ ନେଇଥିଲି । ଆମେ ତା ଫାଞ୍ଚରେ ଗଲୁ । ଏହା ହେଉଛି କମିଶନରଙ୍କ ବ୍ୟବହାର ପାଇଁ ସରକାରଙ୍କ ଦ୍ୱାରା ରଖାଯାଇଥିବା ବାସଗୃହ ସଂଯୁକ୍ତ ଥିବା ପରିଷ୍କୃତ ଓ ଆରାମଦାୟକ ସୁନ୍ଦର ଛୋଟ ଏକ ଷ୍ଟିମର । ରଙ୍ଗମାଟି ଠାରୁ ନଦୀପଥରେ ଦୂରତା ପ୍ରାୟ ୮୦ ମାଇଲ । ପ୍ରଥମ ପନ୍ଦର ମାଇଲ ଖଣ୍ଡେ ସମତଳ ଦେଇ ଏବଂ ଦୃଶ୍ୟ ଯଦିଓ ସବୁଜ ଓ ସୁନ୍ଦର ତଥାପି ଏକାପରି । ତା'ପରେ ଆସିବ ପର୍ବତ ଏବଂ ପ୍ରଶସ୍ତ, ଗଭୀର, ଖରସ୍ରୋତା ଏବଂ ଘନନୀଳ ଜଳରାଶିରେ ଘୂର୍ଣ୍ଣି ସୃଷ୍ଟି କରି ବହି ଯାଉଥିବା ନଦୀସବୁ । ଯେଉଁ ବାଲିପଥର ପର୍ବତର ତଳେତଳେ ଏମାନେ ବୋହିଯାଉଛନ୍ତି ତାହା ଉପରେ ଗୁଚ୍ଛ ଆକାରରେ ତାଳ, ଆମ୍ବ, ବାଉଁଶ ଓ ଅନ୍ୟାନ୍ୟ

ଗଛ ସବୁ ବିରାଟ ଉଜ୍ଜ୍ୱଳ ରଙ୍ଗର ଲତାମାନଙ୍କରେ ଗୁଡ଼େଇ ହୋଇରହିଛନ୍ତି । ଗୋଟିଏ ଗୋଟିଏ ଜାଗାରେ ସମସ୍ତ ପାହାଡ଼ର ପଚାଶ ଷାଠିଏ ଫୁଟ ପର୍ଯ୍ୟନ୍ତ ଉଚ୍ଚ ଯାଏ ଉଜ୍ଜ୍ୱଳ ଲାଲ ଦେଖାଯାଉଛି, ଆଉ ଜାଗାଏ ଉଜ୍ଜ୍ୱଳ ହଳଦୀ ବର୍ଣ୍ଣ, ଆଉ ଟିକିଏ ଆଗକୁ ତୂରୀ ଆକାରର ବିରାଟ ଧଳା ଫୁଲ ଫୁଟି ପ୍ରକାଣ୍ଡ ବିମୋନିଟା (Beamonita) ପାହାଡ଼ର ଅର୍ଦ୍ଧେକ ଆବୃତ୍ତ କରିଛି । ପାହାଡ଼ର ପ୍ରତ୍ୟେକ ସ୍ତର ଓ ଫାଟ ଅର୍କିଡ଼, ଫେର୍ଣ୍ଣ ଘାସରେ ଘୂର୍ଣ୍ଣ ଏବଂ ପାହାଡ଼ର ପାଦଦେଶ ଯେଉଁଠି ଜଳର ତରଙ୍ଗ ଧକ୍କା ଖାଉଛି ତାହା ନୀଳକାନ୍ତର ବହଳ ଗାଲିଚା ପରି ଶୈବାଳପୂର୍ଣ୍ଣ । ତା'ପରେ ଲମ୍ବ ଅଣଓସାରିଆ ଏକ ଉପତ୍ୟକାର ପ୍ରବେଶ ପଥଦେଇ ଯିବ । ତାହା ଉପରକୁ ଉପରକୁ ଯାଇ ଖୁବ୍ ଦୂରରେ ଧୂସର କୁହେଳି ମଧ୍ୟରେ ମିଶିଯାଇଛି । ପାହାଡ଼ ଉପରେ ଏଠି ସେଠି ସଫା ହୋଇଥିବା ଜାଗାରେ ଉଚ୍ଚସ୍ଥାନରେ ତିଆରି ମୁଗ୍‌ମାନଙ୍କର କିଛି କିଛି କୁଡ଼ିଆଘର ଏବଂ ସୁସ୍ଥ ସବଳ ମୁଗ୍ ସ୍ତ୍ରୀମାନେ ଲାଲ୍ ନିମ୍ନବାସ ଓ ନୀଳ ଉର୍ଦ୍ଧ୍ୱବାସ ପିନ୍ଧି, ମୁଣ୍ଡରେ ପାଣି ମାଠିଆ ଧରି ପାହାଡ଼ ଶିଖରରେ ମନ୍ଥର ଗତିରେ ଯାଉଥିବା ଦେଖାଯାଏ ।

ରଙ୍ଗମାଟି ହେଉଛି ଏକ ମାଳଭୂମି ଉପରେ, ତିନି ଦିଗରେ ନଦୀ ଘେରା ଏକ କ୍ଷୁଦ୍ର ସ୍ଥାନ (କିମ୍ବା ୧୮୭୮ ରେ ଥିଲା) । ପାଣିଠାରୁ ୩୦୦ ଫୁଟ ଉପରେ ଥିବା ଏହି ସ୍ଥାନଟିକୁ ଏହାର ଦୁର୍ଗମତା ହେତୁ ଆମେ ବାଛିଥିଲୁ । ଏଠାରେ ଅଛି ଏକ କ୍ଷୁଦ୍ର ଦେଶୀୟ ବଜାର, ସେନାବାହିନୀର ଧାଡ଼ି ଧାଡ଼ି ସମରାଭ୍ୟାସ ପଡ଼ିଆ ଏବଂ ବାଉଁଶ ପଟି କାନ୍ଥ ଓ ନଡ଼ା ଛପର ଥାଇ ଉଚ୍ଚ ସ୍ଥାନରେ ତିଆରି ଛ'ସାତଟା ଯାଏ ପ୍ରଶସ୍ତ ବଙ୍ଗଳା ଗୃହ । ମେଜର ଗର୍ଡ଼ନ ଏବଂ ଶ୍ରୀଯୁକ୍ତ କ୍ରାଉଚ ପୂର୍ଣ୍ଣ ପରିଚ୍ଛେଦ ଧାରଣ କରି ଅବତରଣ ସ୍ଥଳରେ ମୋତେ ଭେଟିଲେ । ସେନାବାହିନୀ ସେନାଭିବାଦନ କଲେ ଏବଂ ଆମ ଉପରେ ଥିବା ଏକ ପାହାଡ଼ ଉପରୁ ଏଗାରଥର ସଲାମି ତୋପ ଫୁଟିଲା । ପଦାଧିକାର ସୂତ୍ରେ ମୁଁ ବଡ଼ଲାଟଙ୍କ ପୂର୍ବ ସୀମାନ୍ତର ପ୍ରତିନିଧି ବୋଲି ମନେ ହେଲା ଏବଂ ଏଣୁ ସଲାମୀର ଅଧିକାରୀ । ତା'ପରେ ଆମେ ତୀକ୍ଷ୍ଣ ଜାଗାରେ ଥିବା ସର୍କିଟ୍ ହାଉସକୁ ଗଡ଼ିଗଲୁ । ଏହା ଖୁବ୍ ବଡ଼ ଏବଂ ଆରାମପ୍ରଦ ଗୃହ ।

ପରଦିନ ମୁଙ୍ଗ୍, ବହ୍‌ମଙ୍ଗ ଏବଂ ଚାକମାରାଜା ବହୁସଂଖ୍ୟକ ଅନୁଚରଙ୍କ ଗହଣରେ ମଙ୍ଗ୍ରୀ (ବଡ଼ ମୁଖିଆ, ଅର୍ଥାତ୍ କମିଶନର)ଙ୍କୁ ସମ୍ମାନ ଜଣାଇବା ପାଇଁ ପହଞ୍ଚିଲେ । ପରମ୍ପରା ଅନୁଯାୟୀ ପ୍ରଜାମାନେ ଦେଖା କରିବାକୁ ଆସିଲେ, ମୁଖ୍ୟ ତାଙ୍କୁ ଖାଇବାକୁ ଦେବେ । ତେଣୁ ବଡ଼ ଚାନ୍ଦୁଆଟିଏ ପୋତାଗଲା, ୟୁରୋପୀୟମାନଙ୍କ ପାଇଁ ଗାଲିଚା ପଡ଼ିଲା ଏବଂ ପ୍ରାୟ ୨ଟା ବେଳେ ସମସ୍ତେ ସେଠାରେ ଆସନ ଗ୍ରହଣ କଲୁ—ମୁଖିଆମାନେ ଗୋଟିଏ ପଟେ ଏବଂ ୟୁରୋପୀୟମାନେ ଅନ୍ୟପଟେ । ତା'ପରେ ସମଗ୍ର ଜନତା ଜଣଜଣ କରି ମୋ ଆଗକୁ ଆସିଲେ ଏବଂ ଦୁଇଗୋଡ଼ ଦୁଇହାତରେ ହାମୁଡ଼େଇ ଭୂମିରେ କପାଳ ଲଗାଇ ପ୍ରଣାମ କଲେ । ସେମାନେ ସମସ୍ତେ ମଙ୍ଗୋଲୀୟ ଧରଣର, ଖର୍ବାକୃତଲୀ, ଚଉଡ଼ା ଦେହ, ଅବିକଳ ଚୀନାମାନଙ୍କ ପରି, ଘୁଷୁରିମାନଙ୍କ ପରି ତେରେଛା ଆଖି, ଚଟକା ଓସାରିଆ ନାକ ଓ ଉଚ୍ଚ ହନୁହାଡ଼ । ସେମାନଙ୍କ ମଧ୍ୟରୁ ଅଧିକାଂଶ ସେମାନଙ୍କ ବିରାଟ କାନର ନିମ୍ନାଂଶରେ ଥିବା କଣରେ ଦଶଇଞ୍ଚ ଲମ୍ବର ଚିରୁଟ ଧରିଥାଆନ୍ତି । ସ୍ତ୍ରୀଲୋକମାନେ ସେମାନଙ୍କ କାନ ପଛରେ କିମ୍ବା ଜୁଡ଼ାରେ ବଡ଼ ବଡ଼ ବିମୋନିଟା କିମ୍ବା ଅର୍କିଡ଼ ଫୁଲ ପିନ୍ଧିଥାଆନ୍ତି । ତା'ପରେ ସେମାନେ ଧାଡ଼ି ଧାଡ଼ି ହୋଇ ବସିଗଲେ ଏବଂ ବାଉଁଶ ବୁଣା ପରିଷ୍କାର ଛୋଟ ଛୋଟ ଟୁଲ ଉପରେ କଦଳୀପତ୍ରମାନ ଯତ୍ନର ସହ ଭଙ୍ଗା ହୋଇ ପଡ଼ି ପ୍ରତ୍ୟେକଙ୍କ ଆଗରେ ଥୁଆ ହେଲା । ବାଉଁଶକୁ ତେରେଛା ଭାବରେ କଟାଯାଇ ତିଆରି

ହୋଇଥିବା ଗିନା ସବୁ ଆମକୁ ଦିଆଗଲା ଏବଂ ଜଣେ ଲୋକ ବୁଲିବୁଲି ମାଟି ମାଠିଆରୁ ସେଥିରେ ରମ୍ ମଦ୍ୟ ଓ ପାଣି ଢାଳିବାକୁ ଲାଗିଲା । ଆମେ ସମସ୍ତେ ପିଇଲୁ । ମନେହେଲା ଖାଇବା ଆଗରୁ ଏହା ପିଇବାର ନିଶ୍ଚିତ ବିଧି । ଏହାପରେ କଦଳୀ ପତ୍ର ଖୋଲି ଦିଆଗଲା । ମୁଗ୍‌ମାନେ ରନ୍ଧନ ବିଦ୍ୟାରେ ପ୍ରସିଦ୍ଧ । ଆମେ ଅଳ୍ପଟିକିଏ ଖାଇଲୁ, କିନ୍ତୁ ସବୁ ମୁଗ୍ ଖାଇଲାଗିଲେ ଏବଂ ଦୁଇଘଣ୍ଟା ପର୍ଯ୍ୟନ୍ତ ପୁରୁଷ, ସ୍ତ୍ରୀ, ପିଲା ଅବିରତ ଖାଇବା, ରମ୍ ପାଣି ପିଇବା, ହସିବା, ଚିତ୍କାର କରିବା ଓ କୌତୁକ କରିବାରେ ଲାଗିଲେ । ବଡ଼ ମାଟିପାତ୍ରମାନ ଧରି ଲୋକେ ଗହଳି ମଧ୍ୟରେ ଘୂରି ବୁଲୁଥାଆନ୍ତି ଏବଂ କଦଳୀପତ୍ରରୁ ସରିଯାଉଥିବା ମାତ୍ରେ ପୂରଣ କରି ଦେଉଥାଆନ୍ତି । ସେମାନେ ଅଦ୍ଭୁତ ପରିମାଣରେ ଖାଇଲେ ଓ ପିଇଲେ । ଏହାପରେ ବିଡ଼ା ବିଡ଼ା ଚିରୁଟ ବଣ୍ଟାଗଲା ଏବଂ ଆମେ ସମସ୍ତେ ଧୂଆଁ ପିଇଲୁ, 'ସୁନା କାନବାଲା ଓ ହାର ପିନ୍ଧଥିବା ସ୍ତ୍ରୀ ଲୋକମାନେ ମୋ ସ୍ତ୍ରୀ ଓ ପିଲାମାନଙ୍କ ଚାରିପଟେ ବେଢ଼ିଗଲେ ଏବଂ ସେମାନଙ୍କୁ ଅନୁସନ୍ଧିତ୍ସୁ ଦୃଷ୍ଟିରେ ପରୀକ୍ଷା କଲେ । କୁନିଝିଅ ଆଞ୍ଜୋଲାକୁ ହାତରୁ ହାତକୁ ନେଇ ସମସ୍ତେ ଚୁମା ଦେଲେ । ତା'ପରେ ପାନ ଓ ଗୁଆର ଛୋଟ ଖିଇମାନ କରି ସେମାନେ ଆମକୁ ଦେଲେ । ସେମାନଙ୍କ ପରି ଆମେ ତାହା ଚୋବାଉ ନାହୁଁ ଦେଖି ସେମାନେ ଆଶ୍ଚର୍ଯ୍ୟ ହେବାପରି ବୋଧ ହେଲା । ଏହି ସମୟ ମଧ୍ୟରେ ଆହୁରି ରମ୍ ବଣ୍ଟା ହେଉଥାଏ । ତେଣୁ ଆମେ ଉତ୍ସବ ଭାଙ୍ଗି ଉଠିଲୁ ଓ ବିଦାୟ ନେଲୁ । ପରେ ଉପରଓଳି ମୁଖିଆମାନେ ଭୋଜିଖିଆ ନିଦରୁ ଉଠିବାପରେ ଆମେ ଏକ ସଭାକରି ଅନେକ କିଛି କାମ ସାରିଦେଲୁ । ଦିବସର ଶେଷରେ ଏକ ମ୍ୟାଜିକ ଲଣ୍ଠନ ଦେଖାହେଲା, ଯାହାକି ସେମାନଙ୍କୁ ଅପାର ଆନନ୍ଦ ଦେଲା । ଏହିସବୁ ଭୋଜି ଦେବାପାଇଁ ସରକାର ଆମକୁ ଏକ ପାଣ୍ଠି ଦିଅନ୍ତି । ତା' ନ ହେଲେ ମୁଗ୍‌ମାନଙ୍କ ଭିତରେ କିଛି କାମ କରିହୁଅନ୍ତା ନାହିଁ ।

ମୁଗ୍‌ମାନଙ୍କ ସଂପର୍କରେ ଆମେ ଏକ କଠିନ ପ୍ରାୟ ଅସମ୍ଭବ କାମରେ ହାତ ଦେଇଥିଲୁ । ଯେଉଁ ଜଟିଳ ଦୁର୍ଗମ ପର୍ବତମାଳା ମଧ୍ୟରେ ସେମାନେ ବାସକରନ୍ତି ସେ ସବୁ ଘୋର ଅରଣ୍ୟପୂର୍ଣ୍ଣ ଏବଂ ସେଠାରେ ବହୁ ମୂଲ୍ୟବାନ କାଠ ରହିଛି । ଏହା ବନ୍ୟ ବିଭାଗ ଦାୟିତ୍ୱରେ ରଖାଯାଇଥିଲା । ଭାରତରେ ଯେ କୌଣସି ବିଭାଗ ଧରି ନିଅନ୍ତି ଯେ ପୃଥିବୀଟା କେବଳ ତାଙ୍କର ବ୍ୟବହାର ପାଇଁ ରହିଛି ଏବଂ ସେହି ବିଭାଗରେ ଯେଉଁଟା ବାଧା ସୃଷ୍ଟି କଲା ତାକୁ ଦୂର କରିଦେବା ଉଚିତ ବୋଲି ମନେକରନ୍ତି । ମୁଗ୍ ଓ ଅନ୍ୟାନ୍ୟ ଉପଜାତିମାନେ ସେମାନଙ୍କ ଦେଶୀୟ ଜଙ୍ଗଲକୁ ଅଯଥା ନଷ୍ଟ କରନ୍ତି ଏହା ନିଃସନ୍ଦେହରେ ସତ୍ୟ । ସେମାନଙ୍କ କୃଷି ପଦ୍ଧତିକୁ କୁହାଯାଏ ଝୁମ୍ । ବଣରେ ନିଆଁଲଗାଇ ସମଗ୍ର ପାହାଡ଼ଟାକୁ ଜାଳି ଦିଆଯାଏ ଏହିପରି ଭାବରେ ପରିଷ୍କୃତ ଜାଗାରେ ସେମାନେ ଗଛ ରୁଅନ୍ତି । ଆଗରୁ ଚାଷ ହୋଇ ନ ଥିବା ଉର୍ବର ମାଟିରେ ପ୍ରଚୁର ଫଳେ ଏବଂ ପୋଡ଼ିଥିବା ଜଙ୍ଗଲର ପାଉଁଶ ବଢ଼ିଆ ସାର ହୁଏ । ସେମାନେ କେତେବର୍ଷ ଧରି ସେଇ ଜାଗାରେ ଚାଷ କରନ୍ତି । ସେଠା ଜମିର ଉର୍ବରତା କମିଯିବା ଦେଖିଲେ ନୂଆ ଜାଗାକୁ ପୋଡ଼ନ୍ତି । ପୂର୍ବକାଳରେ ଉପଜାତିମାନଙ୍କ ମଧ୍ୟରେ ବାରମ୍ବାର ଯୁଦ୍ଧ ହୋଇ ଜନସଂଖ୍ୟା କମ୍ ହୋଇ ରହୁଥିଲା ଏବଂ ଜଙ୍ଗଲ ବୃଦ୍ଧି ରୋକିଲା ଭଳି ସେମାନଙ୍କ ସଂଖ୍ୟା ଏତେ ବେଶି ନ ଥିଲା । ଛାଡ଼ି ଯାଉଥିବା ଝୁମ୍‌ରେ ପୁଣି ଗଛ ଉଠୁଥିଲା । ପ୍ରାୟ ୪୦ ବର୍ଷ ପରେ ଲୋକେ ଆଉଥରେ ସେଇ ପାହାଡ଼କୁ ଜାଳିବାକୁ ବସିବାବେଳେ ସେଥିରେ ପୁଣି ବହଳ ଗଛ ଓ ଘୋର ଜଙ୍ଗଲ ହୋଇଯାଉଥିଲା । କିନ୍ତୁ ଏହି ବନାଞ୍ଚଳକୁ ଯେତେବେଳେ ବ୍ରିଟେନ୍‌ର ଶାନ୍ତି ବିସ୍ତାରିତ ହେଲା ଏବଂ ଆନ୍ତଃଉପଜାତୀୟ ଯୁଦ୍ଧ ବନ୍ଦ ହୋଇଗଲା ଜନସଂଖ୍ୟା ଏତେ ବଢ଼ିଲା ଯେ ମନେହେଲା ଏହା ଯଦି ରୋକା ନ ଯାଏ

ତେବେ ସେମାନେ ପର୍ବତରୁ ସବୁକିଛି ଜଙ୍ଗଲ ଜାଳିଦେବେ । ଜଙ୍ଗଲ ବିଭାଗର ଅଧିକାରୀ ଡଃ ସ୍ଲିଚ୍ ଧୀରସ୍ଥିର ଭାବରେ ପ୍ରସ୍ତାବଟିଏ ଦେଇଦେଲେ ଯେ ସବୁ ମୁଗ୍ ଓ ଚାକରମାନଙ୍କୁ ସେମାନଙ୍କ ପର୍ବତମାନଙ୍କରୁ ବାହାର କରି ଅଣାହେଉ ! ସେମାନେ ଯିବେ କୁଆଡ଼େ ସେ କଥା କେହି କିଛି କହିଲେ ନାହିଁ । କେବଳ ବିଭାଗୀୟ ଭାବଧାରା ନେଇ ସେ କହିଲେ— ଏହି ଲୋକେ ଜଙ୍ଗଲ ନଷ୍ଟ କରୁଛନ୍ତି । ତେଣୁ ସେମାନଙ୍କୁ ବାହାର କରି ଦିଆଯାଉ । ଅବଶ୍ୟ କମିଶନର ଓ ଜିଲ୍ଲା ଅଫିସରମାନେ ଏପରି ମତାମତର ଘୋର ବିରୋଧ କଲେ । କଥା ଏତେ ଦୂର ଗଲା ଯେ କମିଶନର (ମୁଁ ନୁହେଁ, ମୋର ପୂର୍ବବର୍ତ୍ତୀ) କହିଲେ, ଯଦି ଗଛ ଓ ମୁଗ୍ ଏକାଠି ରହିପାରୁ ନାହାନ୍ତି ତେବେ ଗଛଗୁଡ଼ାକ କାଟିଦେଲେ କମ କ୍ଷତି ହେବ । ଏଥିରେ ଡଃ ସ୍ଲିଚ୍ ରାଗରେ ଫଁ ଫଁ ହୋଇ ମନ୍ଦଶବ୍ଦ ସବୁ ଉଚ୍ଚାରଣ କଲେ । ଶେଷରେ କେହି ଜଣେ ବୁଦ୍ଧିମାନ ବ୍ୟକ୍ତି ସୂଚାଇ ଦେଲେ ଯେ ମୁଗ୍‌ମାନେ ନୁହନ୍ତି ସେମାନଙ୍କ ଝୁମ୍ କାମହିଁ କ୍ଷତି କରୁଚି ଏବଂ ପ୍ରସ୍ତାବ କଲେ କି ସେମାନଙ୍କୁ ବଙ୍ଗାଳୀମାନଙ୍କ ପରି ଜମି ହଳ କରିବା ଶିକ୍ଷା ଦେବା ଉଚିତ । ଝୁମ୍ ପଦ୍ଧତିରେ ହଳ ବ୍ୟବହାର କରାଯାଏ ନାହିଁ । ପୋଡ଼ିଯାଇ ଗୋଟାଏ ପଟ ମୁନିଆଁ ହୋଇଯାଇଥିବା ଖଣ୍ଡେ କାଠି ଦ୍ୱାରା ସେମାନେ ମାଟିରେ ଗାତ କରି ଦିଅନ୍ତି ଏବଂ ସେଥିରେ ମଞ୍ଜି ପକେଇ ଦିଅନ୍ତି । କୌଣସି ମୁଗ୍ କେବେ ହଳ କରିବା ଜଣା ନ ଥିଲା । ସାର୍ ଆସଲେ ଏଡ଼େନ୍ ଏହି ପ୍ରସ୍ତାବକୁ ପସନ୍ଦ କଲେ ଏବଂ ମୁଗ୍‌ମାନଙ୍କୁ ସେମାନଙ୍କୁ ଝୁମ୍ ଛାଡ଼ି ତା ବଦଳରେ ହଳ ଧରିବାକୁ ପ୍ରବର୍ତ୍ତାଇବା ବା ବାଧ କରିବାକୁ ଆମକୁ ଆଦେଶ ହେଲା । ତାଙ୍କର ସ୍ୱଭାବସୁଲଭ ଭୟପ୍ରଦର୍ଶନ ଭଙ୍ଗୀରେ ସେ ଜଣାଇ ଦେଲେ ଯେ ଆମେ ଯଦି ସଫଳ ନ ହେଉ ସେ ଧରିନେବେ ଯେ ଏହାର କାରଣ ଆମେ ଚେଷ୍ଟା କରି ନାହୁଁ କିମ୍ବା ଆମେ ସବୁ ଅପାରଗ ଓ ନିର୍ବୋଧ । ତେଣୁ ପୂର୍ବେ ଯାହା ସଂପୂର୍ଣ୍ଣ ଅସମ୍ଭବ ବୋଲି ଆମେ ଜାଣିଥିଲୁ ସେଇ କାମର ଚେଷ୍ଟା ଆମକୁ କରିବାକୁ ପଡ଼ିଲା । ମୁଗ୍‌ମାନେ କହିଲେ ଯେ ହଳ ଧଇଲେ ସେମାନଙ୍କ ଜାତି ନିଶ୍ଚୟ ଲୋପ ପାଇଯିବ । ସେମାନଙ୍କ ସ୍ତ୍ରୀଲୋକମାନଙ୍କ ବିରୋଧ ଏ ବିଷୟରେ ପୁରୁଷମାନଙ୍କ ଅପେକ୍ଷା ପ୍ରବଳତର । ସ୍ୱଭାବତଃ ସେମାନେ ଖୁବ୍ ଖୁସ୍‌ମିଜାଜି, ଅଳସୁଆ, ବେଖାତିର ଓ ଆମୋଦପ୍ରିୟ ଜାତି; କିନ୍ତୁ ଏଇ ବିଷୟରେ ସେମାନେ କଠୋର, ବିମର୍ଷ ଓ ଦୁଃଖାଭିଭୂତ ହୋଇପଡ଼ିଲେ । ସେମାନଙ୍କର ହାଲୁକା ମନ, ସହଜ ଜୀବନଯାତ୍ରା ପାଇଁ ଏ ଧରଣର କୃଷି ପଦ୍ଧତି କିଛି ମାତ୍ର ଅନୁକୂଳ ନୁହେଁ ବୋଲି ମନେହୁଏ । ସଂପୂର୍ଣ୍ଣ ପାହାଡ଼ଟାକୁ ଜାଳିଦେବା, ଯେ କୌଣସି ପ୍ରକାରେ କିଛି ମଞ୍ଜି ପକେଇ ଦେବା ଏବଂ ତା'ପରେ ଶସ୍ୟ ଉଠି ପାଚିବା ପର୍ଯ୍ୟନ୍ତ ବସି ରହି ଧୂଆଁ ପିଇ ହସଖେଳ କରିବା ପଦ୍ଧତି ଓ ସେମାନେ ପରସ୍ପର ପାଇଁ ଉଦିଷ୍ଟ ଥିବା ପରି ଜଣାପଡ଼େ । ନୈରାଶ୍ୟ ପ୍ରବଣ, କଳହପ୍ରିୟ, ଉଦ୍‌ବିଗ୍ନମନା ବଙ୍ଗାଳୀମାନଙ୍କର କଠୋର ପରିଶ୍ରମ କରି ଜମି ହଳ କରିବା, ମଇ ଦେବା, ଦଳ କାଢ଼ିବା, ପାଣି ମଡ଼େଇବା ପ୍ରଭୃତି ଠାରୁ ଏହା ସଂପୂର୍ଣ୍ଣ ଭିନ୍ନ । ପ୍ରକୃତିର ଏଇ ସନ୍ତାନମାନେ ନିଜ ଫସଲକୁ କାଟିବେ ମଧ ନାହିଁ । ପ୍ରତ୍ୟେକ ବର୍ଷ ବ୍ରିଟିଶ ଇଣ୍ଡିଆ କମ୍ପାନୀର ଷ୍ଟିମର ବଙ୍ଗଳାରୁ ଚିଟାଗଙ୍ଗ, ଆକ୍ୟାବ ଓ ରେଙ୍ଗୁନ୍‌କୁ ହଜାର ହଜାର ବଙ୍ଗାଳୀ ଶ୍ରମିକ ବୋହିନିଏ । ସେମାନେ ଫସଲକୁ କାଟି ଅମଳକରି ଦୁଇତିନିମାସ ଖଣ୍ଡେ ଭଲ ମୂଲ ପାଉଥିବାବେଳେ ଅଳସୁଆ ମୁଗ୍ ଜମିମାଲିକମାନେ ସେମାନଙ୍କ ବାରଣ୍ଡାରେ ବସି ରହି ଲମ୍ବ ଉତ୍କଟ ଚୁରୁଟମାନ ଲଗାଇ ପରିଶ୍ରମ ବଙ୍ଗାଳୀମାନଙ୍କୁ ଥଟ୍ଟା ପରିହାସ କରୁଥାଆନ୍ତି । ବର୍ତ୍ତମାନ ଆମେ ସେହି ମୁଗ୍‌ମାନଙ୍କୁ ହଳକାରୀ ଓ ଅମଳକାରୀ ରୂପେ ବଦଳାଇ ଦେବାକୁ ଆଦିଷ୍ଟ ହୋଇଚୁ । ଆମେ ଯେଉଁ ଉପାୟ ଅବଲମ୍ବନ

କଲୁ ତାହା ଏହିପରି—ମୁଗ୍‌ମାନଙ୍କ ମଧ୍ୟରେ ଚାକମା ନାମରେ ଗୋଟିଏ ଅଦ୍ଭୁତ ଶ୍ରେଣୀୟ ଲୋକ ଅଛନ୍ତି ଯେଉଁମାନେ ମୂଳତଃ ମଙ୍ଗୋଲୀୟ ଓ ବୌଦ୍ଧ ହେଲେହେଁ ହିନ୍ଦୁ ଓ ମୁସଲମାନ୍ ଧର୍ମର ବହୁ ପ୍ରଥା ଓ ଉତ୍ସବାଦି ଗ୍ରହଣ କରିଛନ୍ତି । ସେମାନଙ୍କର ଜଣେ ରାଜା ଅଛନ୍ତି । ମୋ ସମୟରେ ଏହି ରାଜାଙ୍କର ହିନ୍ଦୁନାମ ଥିଲା ହରିଶ୍ଚନ୍ଦ୍ର; କିନ୍ତୁ ତା ବାପର ମୁସଲମାନ ନାମ ଥିଲା । ଖାଣ୍ଟି ମୁଗ୍‌ମାନଙ୍କ ଭଳି ସେମାନେ ହଳପ୍ରତି ଏତେ ବିରୋଧୀ ନୁହନ୍ତି । ତେଣୁ ଆମେ ଚକ୍‌ମା ଅଞ୍ଚଳରେ ଖଣ୍ଡେ ସମତଳ ଜାଗା ଭଡ଼ା ନେଲୁ ଏବଂ ତା'ପରେ କେତେକ ମୁଗ୍‌ଙ୍କୁ ଚାଷ କରିବାକୁ ଦେଲୁ ଯେଉଁମାନେ କି ନିଜ ଜାତିର ମଙ୍ଗଳ ପାଇଁ ମହାନ୍ ଆତ୍ମତ୍ୟାଗ କଲେ (ଏହା କରିବାକୁ ଭଲ ରକମ ଅର୍ଥ ପାଇଥିଲେ ମଧ) ଏବଂ ଏହାକୁ ଚାଷ କରି ଏଥିରୁ ଧାନ ଅମଳ କଲେ । କିନ୍ତୁ ଆମେ ସରକାରଙ୍କୁ ଲେଖିଲୁ ଯେ ଅନ୍ୟାନ୍ୟ ଜଳାପରି ହଳ ମଧ ଶିକ୍ଷା କରିବାକୁ ହୁଏ । ତେଣୁ ମୁଗ୍‌ମାନଙ୍କୁ ଶିଖାଇବା ପାଇଁ ଅଳ୍ପକେତେକ ବଂଗାଳୀ ନିଯୁକ୍ତ କରିବାକୁ ଆମେ ଅନୁମତି ପାଇଲୁ । ଗର୍ଡ଼ନଙ୍କ ସହ ସେ ସ୍ଥାନକୁ ଯାଇ ମୁଁ ଦେଖିଲି ଯେ ବଂଗାଳୀମାନେ ଖୁବ୍ ପରିଶ୍ରମ କରି ସନ୍ତସନ୍ତିଆ ଭୂମିରେ ହଳକରି ମଞ୍ଜି ବୁଣୁଚନ୍ତି, ଆଉ ଯେଉଁ ମୁଗ୍‌ମାନଙ୍କୁ ସେମାନେ ଶିଖାଇବା କଥା ସେମାନେ ଢିପ ଜମି ଉପରେ ବଂଗାଳୀମାନଙ୍କ ଆଡ଼କୁ ପଛକରି ବସି ଧୂଆଁପିଇ ଥଟ୍ଟା ତାମସାରେ ମାତିଛନ୍ତି । ଆମେ ସେମାନଙ୍କୁ ଡାକିଲାରୁ ସେମାନେ ଖୁବ୍ ଆନନ୍ଦରେ ଆମ ପାଖକୁ ଚାଲିଆସିଲେ ଏବଂ ଆମ ପ୍ରଶ୍ନର ଉତ୍ତରରେ କହିଲେ, 'ଓ, ହଁ ! ଆମେ ଖୁବ୍ ଭଲ ଭାବରେ ଶିଖୁଚୁ । ଏହା ଖୁବ୍ ସହଜ । ଆମେ ଠିକ୍ ବୁଝିପାରୁଚୁ । ଅତି ଶୀଘ୍ର ଆମେ ହଳଧରି ପାରିବୁ ।' କିନ୍ତୁ ଏ ବିଷୟରେ ଆଉ ଅଧିକ କିଛି ହେବାର ମୁଁ ଶୁଣି ନାହିଁ । ଯାହାହେଉ ଆମର ବାର୍ଷିକ ବିବରଣୀ ଦେବାରେ ଏହା ବହୁତ ଖୋରାକ ଯୋଗାଇଲା ଏବଂ ସମ୍ଭବତଃ ସେଇଆ ହିଁ ଆବଶ୍ୟକ ଥିଲା । ଆମକୁ ଯେପରି କୁହାଗଲା ଆମେ ସେହିପରି କଲୁ, ଆମେ ପରୀକ୍ଷା ଆରମ୍ଭ କରିଦେଲୁ ଏବଂ ଏହା ସଫଳ ହେବ କି ନା ତାହା ଦେଖିବା ପାଇଁ ସମୟ ଉପରେ ଛାଡ଼ି ଦେଇଛୁ । ମୁଁ ଚିଟାଗଙ୍ଗ ଡିଭିଜନରେ ଥିବା ପର୍ଯ୍ୟନ୍ତ ବଂଗାଳୀମାନେ ହଳ କରିବା ଓ ମୁଗ୍‌ମାନେ ଚାହିଁରହି କୌତୁକ ଦେଖିବାଠାରୁ ଅଧିକ କିଛି ହୋଇ ନ ଥିଲେ ।

ନୋଆବାଦ ଲାଗି ବର୍ତ୍ତମାନ ମୋର ବହୁସମୟ ଗଲା । ଏହାକୁ ବୁଝାଇବାକୁ ଯାଇ ମୁଁ ନିରସ୍ତ୍ର, ବୁଝାଇପାରିଲେ ମଧ ହୃଦୟଗ୍ରାହୀ କରିପାରିବି ନାହିଁ । ମୋଟାମୋଟି ଅଳ୍ପରେ କହିଲେ ଏହା ହେଉଛି ଚିଟାଗଙ୍ଗ ଜିଲ୍ଲାର ଅଧିକାଂଶ ଭାଗବ୍ୟାପୀ ବହୁଗୁଡ଼ିଏ ଛୋଟଛୋଟ ଜମିଦାରୀ ଯେଉଁଗୁଡ଼ିକ କି କେତେକ ପରିସ୍ଥିତି ଯୋଗୁଁ ସରକାରୀ ସମ୍ପତ୍ତି ଥିଲା । ଏହିସବୁ ଜମିଦାରୀର ସେଟଲମେଣ୍ଟ (ଅର୍ଥାତ୍ ଜମିର କିସମ ଅନୁଯାୟୀ ମାପ, ବିଭାଗୀକରଣ, ଖଜଣା ନିର୍ଦ୍ଧାରଣ, ଜଳକର ନିର୍ଦ୍ଧାରଣ) କରାଯାଉଥିଲା । ପ୍ରତ୍ୟେକ ୩୦ ବର୍ଷରେ ଏହା ଥରେ ହୁଏ । ସାଧାରଣତଃ ବଙ୍ଗଳାରେ ଏହିସବୁ ଅଧିକାର ବିଷୟରେ ବହୁ ପରସ୍ପର ବିରୋଧୀ ଜଟିଳତା ଅଛି । ବହୁ କିସମର ପ୍ରଜାସ୍ୱତ୍ୱ ଅଛି; ସୀମା, ଖଜଣା ପରିମାଣ, ସ୍ୱତ୍ୱର ସ୍ୱରୂପ ଓ ସୁବିଧାର ବହୁ ଅନିର୍ଦ୍ଦିଷ୍ଟତା ଓ ବିବାଦ ରହିଚି—ଯେତେ ପ୍ରକାର ବିବାଦ ଥାଇପାରେ ସବୁ ଅଛି । ଏସବୁ ମଧ୍ୟରେ ପଶିଲେ ଜଣେ ଲୋକ ପାଗଳ ହୋଇଯିବ । ଯେ କୌଣସି ବିଷୟରେ ମକଦ୍ଦମା କରାଯାଇପାରେ । ପୃଥିବୀରେ ଏହି ସର୍ବାଧିକ ମାମଲାବାଜ ଲୋକେ ସବୁ ପ୍ରକାର ବିଷୟରେ ମକଦ୍ଦମା କରିବାରେ ଖୁବ୍ ଆଗ୍ରହୀ । ସେମାନଙ୍କୁ ଭଲ ଭାବରେ ଜାଣିଥିବା ଜଣେ ଅଭିଜ୍ଞ ଶାସକ ସାର୍ ହେନେରୀ ରିକେଟସ୍ ସେମାନଙ୍କ ସମ୍ପର୍କରେ ଯଥାର୍ଥରେ କହିଛନ୍ତି ଯେ 'ପ୍ରତ୍ୟେକ ଚଟ୍ଟଗ୍ରାମବାସୀ ସେମାନଙ୍କ

ହାତରେ ଖଣ୍ଡେ ଷ୍ଟାମ୍ପ କାଗଜ ( ୧ ) ଧରି ଜନ୍ମ ହୋଇଥାଏ ଏବଂ ଚାଲିପାରିବା ମାତ୍ରେ ଜଣେ ଓକିଲ ପାଖକୁ ଯାଇ ତା'ପାଇଁ କୋଟରେ ମକଦ୍ଦମା କରିବାକୁ କହେ । ଜଣେ ବିଚକ୍ଷଣ, କର୍ମକ୍ଷମ, ବୁଦ୍ଧିମାନ ସ୍କଟଲାଣ୍ଡ ଲୋକ ଫାସନ୍ ସେଟଲମେଣ୍ଟ ଅଫିସର ଥିଲେ ଏବଂ ଏହି କାମରେ ନିଜେ ଦରମରା ହେଲେ । ଅବଶ୍ୟ ମୁଁ ତାଙ୍କୁ ଉପଦେଶ ଓ ପଥ ନିର୍ଦ୍ଦେଶ ଦେଉଥିଲି। ଏସବୁ ଅତି ବିରକ୍ତିକର କାମ ଏବଂ ଏହାପାଇଁ ଆମର ବହୁ ବିନିଦ୍ରରଜନୀ ଓ କର୍ମକ୍ଲାନ୍ତ ଦିବସ ଯାଇଛି । ପ୍ରକୃତରେ ଚିଟାଗଙ୍ଗର କାମ ଓଡ଼ିଶାଠାରୁ ଖୁବ୍ କଷ୍ଟକର । ଏଥିରେ ପ୍ରଶଂସା ନାହିଁ, ବରଂ ଏହା ବିରକ୍ତି ଓ ଉତ୍ପୀଡ଼ନ ଦିଏ। ଜଣେ ନିଶ୍ଚୟ ଅନୁଭବ କରିପାରିବ ଯେ ଯଦି ଏହି କ୍ଷୁଧାର୍ତ୍ତ, ଭୟଙ୍କର ବିଷାକ୍ତ, କୃଷ୍ଣକାୟ, ଖର୍ବାକୃତି, ମୁସଲମାନମାନେ କିଛି ବିଚାରଶୀଳତା ଓ ସାଲିସଭାବ ପ୍ରଦର୍ଶନ କରନ୍ତେ ତେବେ ଦୁଇତୃତୀୟାଂଶ କାମ ସରିଥାଆନ୍ତା । ଏହି ଶତାବ୍ଦୀର ଆରମ୍ଭରୁ ଓ୍ୱାରେନ୍ ହେଷ୍ଟିଂସ୍‌ଙ୍କର ଜଣେ କୌଶଳୀ କର୍ମଚାରୀ ଜୟନାରାୟଣ ଭିଡିରିକାରବାର ( ୨ ) ଫଳରେ ଏହି ଜିଲ୍ଲାରେ ବିରାଟ ଅଞ୍ଚଳ ଖଣ୍ଡେ ପାଇବା ପରଠାରୁ ଏହି ନୋଆବାଦ କାମ ଚାଲି ଆସୁଥିଲା । ଶେଷରେ ତା' ଠକାମି ଧରାପଡ଼ିଲା ଏବଂ ଜମିକୁ ସରକାର ନେଲେ । ସର୍ବତ୍ର ବ୍ୟାପିଥିବା ଜଙ୍ଗଲରୁ ସେ ଜମିସବୁକୁ ନୂଆକରି ଆବାଦ କରାଯାଇଥିବାରୁ ଏହି ନାମ 'ନୋଆବାଦ' (ନୂଆ କରି ଆବାଦ କରାଯାଇଥିବା) ହେଲା; କିନ୍ତୁ ଜୟନାରାୟଣ ଆଇନଗତ ଭାବରେ ପାଇଥିବା ଜମି ଆହୁରି ଥିଲା ଏବଂ ସେସବୁ ସାଣ୍ଡିସ୍ ନାମକ ଜଣେ ଇଂରେଜଙ୍କ ଦ୍ୱାରା ଅଲଗା ପରିଚାଳିତ ହେଉଥିଲା ।

ଏହିସବୁ ବିରକ୍ତିକର ନୀରସ ମକଦ୍ଦମାର ଚିକିନିଖି ଜଞ୍ଜାଳ ଭିତରୁ ମଝିରେ ମଝିରେ ନିଜକୁ ମୁକ୍ତକରି ସ୍ତ୍ରୀ ଓ ପିଲାମାନଙ୍କ ସହ ଷ୍ଟିମର ଚାଫାଷ୍ଟ ଉପରେ ଉଠି ଘଣ୍ଟାଏ ଖଣ୍ଡେ ନଦୀ ମୁହାଣକୁ ବୁଲିଯିବା ଆରାମପ୍ରଦ ଥିଲା । ସମୁଦ୍ରର ମୁକ୍ତ ପବନ ଓ ଲୁଣିପାଣି ଆମର ଅବସାଦ ଦୂର କରି ଦେଉଥିଲା । ସେ ସମୟରେ ମୋର ଭାଇ ହ୍ୟାରୀ ଚିଟାଗଙ୍ଗ ଠାରୁ କେତେଶହ ମାଇଲ ଦୂର ଦକ୍ଷିଣକୁ ଥିବା କୋକ୍ସବଜାର ସବଡିଭିଜନ ଦାୟିତ୍ୱରେ ଥିଲା । ତା'ର ଥିଲା ଛୋଟ ସୁନ୍ଦର ସ୍କୁନର ନୌକା 'ଫାୟାର ଫ୍ଲାଏ' । ସେଥିରେ ସେ ମଝିରେ ମଝିରେ ଉପକୂଳକୁ ଆମକୁ ଦେଖିବାକୁ ଆସୁଥିଲା । ବର୍ଷର ଶେଷଆଡ଼କୁ ଆମେ କୋକସ୍‌ବଜାର ଯାଇଥିଲୁ । କି ମର୍ମାନ୍ତିକ ବର୍ଷ ୧୮୭୮ ! ମୁଁ ଅତ୍ୟନ୍ତ ଦୁଃଖରେ ଥିଲି । ବିରକ୍ତିକର ଚିଟାଗଙ୍ଗ ଏବଂ ତାହା ସହ ସମ୍ପୃକ୍ତ ପ୍ରତ୍ୟେକ ପଦାର୍ଥକୁ ମୁଁ ଘୃଣା କରୁଥିଲି । ଓଡ଼ିଶାକୁ ମନେପକାଇ ଝୁରୁଥିଲି । ଚିଟାଗଙ୍ଗ,

---

(୧) ଭାରତରେ ସମସ୍ତ ଆଇନଗତ କାଗଜପତ୍ର ଏବଂ ଅନେକ ପ୍ରକାର ଆଇନଗତ ଓ ବ୍ୟବସାୟିକ ଦଲିଲରେ ସରକାରୀ ଷ୍ଟାମ୍ପ ଲଗାଇ କାର୍ଯ୍ୟ କରାଯାଏ; ତା' ଫଳରେ ଷ୍ଟାମ୍ପ ରାଜସ୍ୱ ମିଳେ । ଏହା କେବଳ ସରକାରୀ ଅଫିସରୁ କିଣାଯାଏ । ମକଦ୍ଦମା କରାଯାଉଥିବା ଦରଖାସ୍ତ ସବୁ ସେହି ମକଦ୍ଦମା ସଂପୃକ୍ତ ଅର୍ଥର ପରିମାଣ ଅନୁଯାୟୀ କିଣା ଷ୍ଟାମ୍ପ କାଗଜ ଉପରେ ଲେଖାଯାଏ । ଛୋଟ ଛୋଟ ମକଦ୍ଦମାପାଇଁ ଷ୍ଟାମ୍ପ କାଗଜ ମୂଲ୍ୟ ଖୁବ୍ କମ୍ ଏବଂ ମାମଲାବାଜ ଚାଷୀ ଆଗ୍ରହରେ ତାକୁ କିଣିପାରନ୍ତି ।

(୧) ମନେକର ସେ ୧୦୦ ଏକର ପାଇଁ ଅନୁମତି ପତ୍ର ପାଇଛି ଏବଂ ତା'ରି ବଳରେ ସେ ୧୦୦୦ ଏକର ଅଧିକାର କରି ତା' ଉପରେ ଥିବା ଅଧିବାସୀମାନଙ୍କୁ ବାହାର କରିଦିଏ । ସେମାନଙ୍କର ଜମି ଉପରେ ଅଧିକାର ଏ ଲୋକର ଅଧିକାର ପରି ଅସ୍ପଷ୍ଟ ଥିବାରୁ ଏବଂ ସେମାନେ ଅନୁପ୍ରବେଶକାରୀ ଭାବରେ ରହୁଥିବାରୁ ତାହାର ବିରୋଧ କରିପାରନ୍ତି ନାହିଁ ।

ସେଠିକାର କାମ ଓ ସେ ଲୋକଙ୍କ ପ୍ରତି ମୋର ବିତୃଷ୍ଣା ! ସେ କାମ ଓ ସେ ଲୋକ ମୋତେ ମନ୍ଦ ଓ ଅନିଷ୍ଟକର ବୋଧ ହେଉଥିଲେ । ଏହାର ସୌନ୍ଦର୍ଯ୍ୟହିଁ ଏକ ମନ୍ଦ ସୌନ୍ଦର୍ଯ୍ୟ— A beauti du diable । ପାର୍ବତ୍ୟାଞ୍ଚଳର ଲୋକେ ଆମୋଦପ୍ରଦ ଏବଂ ଡିଭିଜନର ସେ ଭାଗଟି କେବଳ ମୋତେ ଭଲ ଲାଗେ । କିନ୍ତୁ ସେମାନଙ୍କର ସବୁବେଳେ କିଛି ନା କିଛି ଉଦ୍ଦେଶ୍ୟ ଥାଏ । ଜୁଲାଇରେ ମୋତେ ପୁଣି ସେମାନଙ୍କ କଥା ବୁଝିବାକୁ ପଡ଼ିଲା । ଏଥରକ ସୀମାନ୍ତ ଆର ପଟର ଲୁସାଇମାନଙ୍କର । ତଥାକଥିତ ଏ ସୀମାନ୍ତ ହେଉଛି ଏକ ପର୍ବତମାଳା ଉପରେ ଦେଇ ଯାଇଥିବା ଏକ କାଳ୍ପନିକ ରେଖାମାତ୍ର । ସାର୍ ରିଚାର୍ଡ୍ ଟେମ୍ପଲଙ୍କ ଦ୍ୱାରା ସଂପୂର୍ଣ୍ଣ ଏକ ପାକ୍ଷିକ ଭାବରେ ଏ ସୀମା ନିର୍ଦ୍ଦିଷ୍ଟ ହୋଇଯାଇଥିବାରୁ ଲୁସାଇମାନେ ସେଥିପ୍ରତି ଯେ ଆଦୌ ଦୃଷ୍ଟିଦେଉ ନ ଥିଲେ ସେଥିରେ ଆଶ୍ଚର୍ଯ୍ୟ କିଛି ନ ଥିଲା । ଟେମ୍ପଲ୍‌ଙ୍କ ଧାରଣା ଥିଲା ଯେ ଏହି ସୀମାର ବ୍ରିଟିଶ ଅଞ୍ଚଳ ପଟେ ବ୍ରିଟିଶ ଆଇନ ଲାଗୁ ହେବ; କିନ୍ତୁ ଜଣେ ଲୁସାଇ ସେ କଥା ବୁଝିବ କିପରି ? ବର୍ତ୍ତମାନ ଘଟଣାକ୍ରମେ ଲୁସାଇ ଜାତିର ଗୋଟିଏ ଶାଖାର ମୁଖ୍ୟ ବେମାର ପଡ଼ିଲା ଏବଂ ପରମ୍ପରା ଅନୁଯାୟୀ ତାକୁ କିଏ ଗୁଣିକରିଛି ବୋଲି ଯେତେବେଳେ ତା' ବନ୍ଧୁମାନେ ପଚାରିଲେ, ସେ ତାହାସହ କଳି ଥିବା ଜଣେ ପଡ଼ୋଶୀ ନାଁ କହିଲା । ଏହି ଲୋକ ବିଶ୍ୱାସ କରନ୍ତି ଯେ ସମସ୍ତପ୍ରକାର ରୋଗ ଗୁଣିଗାରିଡ଼ିରୁ ହୁଏ ଏବଂ ମୃତ୍ୟୁମୁଖୀ ଲୋକ ତାକୁ ଗୁଣିକରୁଥିବା ଲୋକଙ୍କୁ ଜାଣିପାରିଥାଏ । ମୁମୂର୍ଷୁ ମୁଖିଆଟି ଗୁଣିଆର ନାଁ କହିଦେବା ମାତ୍ରେ ତା' ପୁଅ ବା ଅନ୍ୟ ନିକଟ ସମ୍ପର୍କୀୟଙ୍କ କର୍ତ୍ତବ୍ୟ ହେଲା ଯେ ଗୁଣିଆ ବା ଗୁଣିଆମାନଙ୍କୁ ଖୋଜି ହତ୍ୟା କରିବା । ପିତାର ମୃତ୍ୟୁପରେ ପୁଅ ପିତାକୁ ଗୁଣିକରିଥିବା ଲୋକଙ୍କୁ ଖୋଜି ବାହାର କଲା ଏବଂ ହତ୍ୟାକଲା । ଏପରି କରିବାଦ୍ୱାରା ସେ ଏକ ପବିତ୍ର କର୍ତ୍ତବ୍ୟ କଲା ବୋଲି ଭାବିଲା । ତା'ର ଗୋଷ୍ଠୀ ସମସ୍ତେ ମଧ ସେଇଆ ମନେକଲେ ।

କିନ୍ତୁ ତା'ପକ୍ଷରେ ଦୁର୍ଭାଗ୍ୟର କଥା ଯେ ଯେଉଁ ସ୍ଥାନରେ ସେ ସେହି ଲୋକକୁ ଭେଟି ମାରିଥିଲା ତାହା ନୂଆ କରି ଟଣାଯାଇଥିବା ସୀମାନ୍ତର ବ୍ରିଟିଶ ଅଞ୍ଚଳ ପଟେ ଏବଂ କାର୍ଯ୍ୟତଃ ବ୍ରିଟିଶ ନିୟମାଧୀନ । ତେଣୁ ବିଚରା ସେ ଲୁସାଇ ଯୁବକକୁ ହତ୍ୟା ଅପରାଧରେ ଗିରଫ କରାଯାଇ ବିଚାର କରାଗଲା, ଦୋଷୀ ସାବ୍ୟସ୍ତ କରାଗଲା ଏବଂ ବହୁ ବର୍ଷ ପର୍ଯ୍ୟନ୍ତ କାରାଦଣ୍ଡରେ ଦଣ୍ଡିତ କରାଗଲା । ମୋ ପୂର୍ବବର୍ତ୍ତୀ କମିଶନର ଏବଂ ସମସ୍ତ ସ୍ଥାନୀୟ ଅଫିସର ଏହାର ଦୃଢ଼ ପ୍ରତିବାଦ କରିଥିଲେ; କିନ୍ତୁ ଲୁସାଇମାନେ ବ୍ରିଟିଶ ଅଞ୍ଚଳର ପବିତ୍ରତାକୁ ସମ୍ମାନ ଦେବାର ଔଚିତ୍ୟ ସମ୍ପର୍କରେ ଟେମ୍ପଲ୍ ତାଙ୍କର ସ୍ୱଭାବସୁଲଭ, ସାଡ଼ମ୍ବର ଅର୍ଥହୀନ ଭାଷାବିନ୍ୟାସ କରି ଲେଖିଲେ ଏବଂ ସେହି ଦଣ୍ଡକୁ କାର୍ଯ୍ୟକାରୀ କରିବାରେ ଜୋରଦେଲେ । ଅଳ୍ପ କେତେ ସପ୍ତାହ ବନ୍ଦୀରେ ରହିବାପରେ ସେ ବନ୍ଦୀ ଜଙ୍ଗଲର ସନ୍ତାନ ଯେ କି ସମସ୍ତ ଜୀବନ ମୁକ୍ତ ଆକାଶ ତଳେ ରହିଆସିଚି, ରୋଗଣା ହୋଇ ମରିଗଲା । ଲୁସାଇ ସମସ୍ତେ ଯଥାର୍ଥତଃ କହିଲେ ଯେ, ଆମେ ତାକୁ ମାରିଦେଲୁ ଏବଂ ଫଳରେ ବହୁଦିନ ଧରି ଗଣ୍ଡଗୋଳ ସୃଷ୍ଟି କଲେ ଓ ବିରୋଧୀ ହୋଇ ରହିଲେ । ଡେପୁଟି କମିଶନ୍‌ର କ୍ୟାପଟେନ୍ ଲେୱିନ ଏବଂ ତାଙ୍କ ପରବର୍ତ୍ତୀ ଇଭାନ ଗର୍ଡ଼ନ ଖୁବ୍ ଚତୁରତା ସହ ଦୃଢ଼ତା ଓ ସୌଜନ୍ୟର ମିଶ୍ରିତ ବ୍ୟବହାରରେ ସେମାନଙ୍କୁ ଆୟତ୍ତ କଲେ । ଯଥାର୍ଥତଃ ସେମାନଙ୍କ ପ୍ରତି ବଡ଼ସନ୍ତାନ ଭଳି ବ୍ୟବହାର ଦେଖାଇ ସେମାନଙ୍କ ଉପରେ କ୍ରମେ କ୍ରମେ ଖୁବ୍ ପ୍ରଭାବ ପକାଇଲେ । ମୁଗ୍ ଅଞ୍ଚଳକୁ ଆକ୍ରମଣ କରିବାରେ ସେମାନଙ୍କର ଯେଉଁ ଅଭ୍ୟାସ ଥିଲା ତାହାକୁ ଦମନ କରିଦିଆଗଲା; କିନ୍ତୁ ଚିଟାଗଙ୍ଗର ବଙ୍ଗାଳୀ ବ୍ୟବସାୟୀମାନେ ସେମାନଙ୍କୁ ଯେପରି ବନ୍ଧୁକ ଓ ଗୁଳିଗୁଳା ବିକ୍ରି କରି ନ ପାରନ୍ତି ସେଥିପାଇଁ ପାର୍ବତ୍ୟ ବାହିନୀକୁ ସୀମାନ୍ତରେ କଡ଼ାକଡ଼ି ପହରା

ଦେବାକୁ ପଡ଼ିଲା । ଅନ୍ୟ ଆଡ଼େ ଆକ୍ରମଣ କରି ସେମାନେ ଆମୋଦ ପାଆନ୍ତି । କୋଉଠି ନା କୋଉଠି ସେମାନେ ନିଶ୍ଚୟ ଆକ୍ରମଣ କରିବେ ଏହା ସେମାନଙ୍କ ପ୍ରକୃତି ।

୧୮୬୮ର ଅଗଷ୍ଟ ମାସରେ ହଲଙ୍ଗମାନଙ୍କ ପ୍ରରୋଚନାରେ ପୁଇଶେଣ୍ଟୁମାନେ ଆମର ଦକ୍ଷିଣ ପଡ଼ୋଶୀ ଆରାକାନର ଖଏମି ଗୋଷ୍ଠୀ ଉପରେ ଆକ୍ରମଣ କରି ଖଏମିଙ୍କ ମୁଖିଆ ଲାହକ୍‌ର ସ୍ତ୍ରୀ ଓ ଚାରୋଟି ପିଲାଙ୍କ ସହ ଅନ୍ୟାନ୍ୟ ପଦାର୍ଥ ଧରିନେଇ ଗଲେ । ଲାହକ୍ ଏବଂ ତା'ର ଲୋକେ ପୂର୍ବେ ହଲଙ୍ଗମାନଙ୍କ ଉପରେ ଯେଉଁ ଆକ୍ରମଣ କରିଥିଲେ, ତା'ର ପ୍ରତିଶୋଧ ନେବାପାଇଁ ଏପରି କରାଗଲା । ଶେଣ୍ଟୁମୁଖିଆ ସାଇପୋଇଆ ଧରି ନେଇଥିବା ବନ୍ଦୀମାନଙ୍କୁ ଦୁଇଟି ପୁରୁଣା ହାତ ବନ୍ଧୁକ (Tower musket) ବଦଳରେ ସାଇଲୁମାନଙ୍କୁ ଦେଇଦେଲେ । ସାଇଲୁମାନେ ସେମାନଙ୍କୁ କାଙ୍ଗସାଥଙ୍ଗ୍ ବା ନୀଳପର୍ବତର ଆରପଟର ବ୍ରହ୍ମଦେଶରେ ଥିବା ତାଙ୍କ ମୁଖିଆ ଜୋହ୍ନାଟର ଗାଁକୁ ନେଇଗଲେ । ସ୍ମରଣ ରଖିବାକୁ ହେବ ଯେ ୧୮୬୮ରେ ବ୍ରହ୍ମଦେଶ ସ୍ୱାଧୀନ ଥାଇ ରାଜା ଥୀବୋଙ୍କ ଦ୍ୱାରା ଶାସିତ ହେଉଥିଲା । ତାଙ୍କ ସହ ବନ୍ଦୀକୁ ଫେରାଇଦେବା ବିଷୟରେ କଥାବାର୍ତ୍ତା କରିବା ନିରର୍ଥକ ଥିଲା । ତାହାର କାରଣ ଲୁସାଇମାନଙ୍କ ଉପରେ ଥୀବୋଙ୍କର କିଛି ଶକ୍ତି ବା ପ୍ରଭାବ ନ ଥିଲା ଏବଂ ଦ୍ୱିତୀୟତଃ ଥିଲେ ମଧ୍ୟ ସେ ଆମକୁ ସାହାଯ୍ୟ କରିନଥାନ୍ତେ । ତେଣୁ ଗର୍ଡ଼ନ, ଲାହକ ଏବଂ ଲାଙ୍ଗଥା ହଲଙ୍ଗମାନଙ୍କର ଜଣେ ମୁଖ୍ୟ ସୋଇୟାଙ୍କୁ ସେମାନଙ୍କ ଅନୁଚରମାନଙ୍କ ସହ ଏ ସମ୍ପର୍କରେ ମୋତେ ଦେଖାକରିବାକୁ ଆଣିଲେ । ଅବଶ୍ୟ ମୋତେ ସେମାନଙ୍କୁ ଗୋଟିଏ ଭୋଜି ଦେବାକୁ ପଡ଼ିଲା । ସେମାନେ ଦୁଇଟା ଛେଳି, ଛ'ଟା କୁକୁଡ଼ା, ଗଦାଏ ଚାଉଳ, ବାର ବୋତଲ ରମ ଏବଂ ଅସଂଖ୍ୟ ପାନସୁପାରୀ (ଗୁଆ) ନେଲେ । ତା'ପରେ ସେମାନେ ଖବର ପଠାଇଲେ ଯେ ସେମାନେ ଗପସପ ହେବାପାଇଁ ପ୍ରସ୍ତୁତ । ତେଣୁ ଆଲୋଚନା ପାଇଁ ସେମାନଙ୍କୁ ବଡ଼ ହଲ ଘରକୁ ଅଣାଗଲା । ଏଥିରେ କିଛି ସମୟ ନେଲା, କାରଣ ମୁଁ ଇଂରାଜୀରେ କହିଲି ଯାହାକୁ ଗର୍ଡ଼ନ ମୁଗ୍ ଭାଷାରେ ଏବଂ ମୁଗ୍ ଭାଷାନ୍ତରକାରୀ ପୁଣି ତାକୁ ଲୁସାଇ ଭାଷାରେ ଅନୁବାଦ କରୁଥିଲା । ଯାହାହେଉ କଥା ଠିକ୍ ହେଲା । ବନ୍ଦୀମାନଙ୍କୁ ଫେରସ୍ତ ପାଇଁ ଏକ୍ ବିଚାର କରିବାକୁ ସେଇଆ ବନ୍ଦୋବସ୍ତ କଲା ଏବଂ ପର୍ଯ୍ୟାୟକ୍ରମେ ତାହା ହେଲା । ତା'ପରେ ସବୁକାମ ସରିବାରୁ ସେମାନେ ମୋ ଘର ଦେଖିବାକୁ କହିଲେ । ତେଣୁ ସେମାନଙ୍କୁ ମୋ ସ୍ତ୍ରୀ ଓ କେତେକ ମହିଳା ବସିଥିବା ମୋ ବାହାର ଘରକୁ ମୁଁ ନେଲି । ଜଙ୍ଗଲୀମାନେ ଖୁବ୍ ଭଲ ବ୍ୟବହାର କଲେ । ସେମାନେ ମହିଳାମାନଙ୍କୁ ସସମ୍ମାନେ ନମସ୍କାର କଲେ ଏବଂ ସେମାନେ ଯେ ସବୁ ସ୍ତ୍ରୀ ଲୋକ ତାହା ଶୁଣି ଖୁବ୍ ଆଶ୍ଚର୍ଯ୍ୟ ହେଲେ । ବୋଧହୁଏ ସେମାନେ ଭାବିଥିଲେ, ସେମାନେ ଅନ୍ୟ କୌଣସି ପ୍ରକାର ୟୁରୋପୀୟ ପୁରୁଷ । ଲାହକ କେବେ ଜଣେ ଇଂରାଜୀ ସ୍ତ୍ରୀଲୋକ ଦେଖିନଥିଲା ଏବଂ ଭାଷାନ୍ତରକାରୀକୁ ଗୁଡ଼ାଏ ଅଦ୍ଭୁତ ପ୍ରଶ୍ନ ପଚାରିଲା । ଗର୍ଡ଼ନ ପଛରେ ଦାନ୍ତଚିପି ହସୁଥିବାର ଦେଖିଲି ଏବଂ ପରେ ଯେତେବେଳେ ସେଇ ପ୍ରଶ୍ନର ପୁନରାବୃତ୍ତି କରି ପଚାରିଲା, ମୁଁ ଆଶ୍ଚର୍ଯ୍ୟ ହେଲି ନାହିଁ । କାନ୍ଥରେ ଥିବା ଛବି, ଟେବୁଲ ଓ ଥାକମାନଙ୍କରେ ଥିବା ଚୀନା ସାଜସଜ୍ଜା, ଭୋଜିପାଇଁ ସଜ୍ଜିତ ଟେବୁଲ୍, ବିଶେଷ କରି କୋଠରିରେ ଥିବା ଗୁଡ଼ିଏ କିରାସିନୀ ଲ୍ୟାମ୍ପର ଉଜ୍ଜ୍ୱଳ ଆଲୁଅ ପ୍ରତି ସେମାନେ ଖୁବ୍ ଆକୃଷ୍ଟ ହେଲେ; କିନ୍ତୁ ସେମାନେ ଖୁବ୍ ଡରି ଯାଇଥିଲେ ଏବଂ ପରେ ମୁଁ ଶୁଣିଲି ଯେ ଆମର ସରଳ ଇଂରାଜୀ ଗୃହର ଚମତ୍କାରିତା ତାଙ୍କୁ ଭୟଗ୍ରସ୍ତ କରିଦେଇଥିଲା । କେତେକ ପଦାର୍ଥକୁ ସେମାନେ ଯାଦୁବିଦ୍ୟା ବୋଲି ମନେ କରିଥିଲେ ।

ଜଙ୍ଗଲୀ ଲୁସାଇଙ୍କଠାରୁ ସଂପୂର୍ଣ୍ଣ ବିପରୀତ ଯଦି ଖୋଜାଯାଏ, ତେବେ ସେମାନେ ଥିଲେ ଚିଟାଗଙ୍ଗ ସହରରେ ଥିବା ପର୍ତ୍ତୁଗୀଜ । ଯଦି ତାଙ୍କ ମଧ୍ୟରେ ବିଶୁଦ୍ଧ ପର୍ତ୍ତୁଗୀଜ ରକ୍ତର କେହି ଥିବେ ସେମାନେ ବହୁତ କମ୍ । ପ୍ରଧାନତଃ ସେମାନେ ପୂର୍ବକାଳର ପର୍ତ୍ତୁଗୀଜ ଜଳଦସ୍ୟୁ ଓ ମୁଗ୍ ଦାସୀମାନଙ୍କ ସହବାସରୁ ଉତ୍ପନ୍ନ ଏବଂ ବଡ଼ ବଡ଼ ପର୍ତ୍ତୁଗୀଜ ନାଁ ଯଥା: ପେରେରା, ଟେକ୍ସେରା, ଦା ସିଲ୍‌ଭାଦା ସୋଜା, ଆଲମେଡ଼ା ପ୍ରଭୃତି ଧାରଣ କରିଥିଲେ ମଧ୍ୟ ସେମାନଙ୍କ ଆକାରପ୍ରକାର ପୂରା ମଙ୍ଗୋଲିଆନ୍ । ସେମାନେ ଥିଲେ ଅପରିଷ୍କାର, ନିଷ୍କର୍ମା, ଲମ୍ପଟ ଗୋଷ୍ଠୀ । ଥରେ ମୁଁ ୟୁରୋପରୁ ନୂଆ ହୋଇ ଆସିଥିବା ତାଙ୍କର ଜଣେ ଇଟାଲୀୟ ଧର୍ମଯାଜକଙ୍କୁ ପଚାରିଥିଲି ଏହି ଲୋକଗୁଡ଼ାଙ୍କ ସମ୍ପର୍କରେ ତାଙ୍କର ଧାରଣା କ'ଣ । ସେ ହସି ଗୋଟିଏ ଶବ୍ଦରେ କହିଲେ— 'ପଶୁ' । ସେ ନିଜେ ସୁଶିକ୍ଷିତ ବେନେଡ଼ିକ୍ଟ ସଂପ୍ରଦାୟୀ, ଖୁବ୍ ଭଲ ଏବଂ ଏପରି ଏକ ଗୋଷ୍ଠୀଙ୍କ ପାଇଁ ସଂପୂର୍ଣ୍ଣ ଅନୁପଯୁକ୍ତ । ସେମାନେ ଥିଲେ ଅହଂକାରୀ, ଅଳସୁଆ, ନୀତିହୀନ । ପୁରୁଷମାନେ ଧଳାକନାର ପ୍ୟାଣ୍ଟ, ଧଳା ସାର୍ଟ୍ ଏବଂ ଅଣ୍ଟାରେ ଲାଲ୍‌କନାର ପଟି ପିନ୍ଧନ୍ତି; ସ୍ତ୍ରୀ ଲୋକମାନେ କନାର ଗାଉନ୍ ସହ ସ୍ପେନୀୟ ନାରୀଙ୍କ ପରି କଳାଶିରାବରଣ ଏବଂ ଉଜ୍ଜ୍ୱଳ ବର୍ଣ୍ଣର ଛତା ବ୍ୟବହାର କରନ୍ତି । ଦେଶୀୟ ନଗରର ତଳଦେଶରେ ନଦୀ କୂଳେ କୂଳେ ସେମାନଙ୍କର ଦୋକାନ ଥାଏ, ଯେଉଁଠାରେ ସେମାନେ ନାବିକମାନଙ୍କୁ ଖରାପ ମଦ ବିକ୍ରୀ କରନ୍ତି ଏବଂ ପଛଘରଗୁଡ଼ିକ ସ୍ତ୍ରୀଲୋକମାନଙ୍କଦ୍ୱାରା ଅନୈତିକ କର୍ମପାଇଁ ବ୍ୟବହୃତ ହୁଏ । ବାରମ୍ବାର ଦଙ୍ଗାହାଙ୍ଗାମା ହୁଏ ଏବଂ ଦୁଇଜଣ ଇଂରାଜୀ କନେଷ୍ଟବଲଙ୍କ ଅଧୀନରେ ଥିବା ଗୋଟିଏ ଦେଶୀୟ ପୋଲିସ୍ ବାହିନୀକୁ ଏହି କଦର୍ଯ୍ୟ ବସ୍ତିରେ ଶାନ୍ତିରକ୍ଷା କରିବାକୁ ବହୁ ଶ୍ରମ କରିବାକୁ ପଡ଼େ । ଜଣେ ହଲାଣ୍ଡ ଦେଶୀୟ ରୋମାନ କ୍ୟାଥଲିକ୍ ବିଶପ ଓ ପୂର୍ବବର୍ଣ୍ଣିତ ଧର୍ମଯାଜକ ସେମାନଙ୍କ ଭିତରେ ରହି ବହୁ ଶ୍ରମ କଲେ; କିନ୍ତୁ ଫଳ ବିଶେଷ କିଛି ହେଲା ନାହିଁ । ବର୍ଷା ସମୟରେ ସହରର ଏହି ସବୁ ନିମ୍ନାଞ୍ଚଳ ପ୍ରାୟ ପାଣିରେ ବୁଡ଼ିରହେ ଏବଂ ହଇଜା ସହ ଅତି ଖରାପ ଧରଣର ମ୍ୟାଲେରିଆ ଜ୍ୱର ବ୍ୟାପିଯାଏ । ଚିଟାଗଙ୍ଗର ବର୍ଷା କେବଳ ଅନୁଭବର ବସ୍ତୁ । ଏଠାରେ ପୁଣି ମୋର ୧୮୭୮ ଅଗଷ୍ଟରେ ଭଲିଅଟଙ୍କୁ ଲେଖିଥିବା ଚିଠିର ଉଦ୍ଧାର କରୁଚି— 'ତୁମେ ଉତ୍ତର ଦେଶୀୟ ଲୋକେ ଆମର ଏଠିକା ପରି ବର୍ଷା ଦେଖି ନାହିଁ । ମାସର ପହିଲାର ଭୋର୍‌ରୁ ସଂପୂର୍ଣ୍ଣ ଦିବସ ନ ହେଉଣୁ ଏହା ଆରମ୍ଭ ହୁଏ ଏବଂ ୩୧ ତାରିଖ ରାତି ଦଶଟା ବେଳେ ତୁମେ ଶୋଇବାକୁ ଗଲାବେଳେକୁ ସେହିପରି ନିରବଚ୍ଛିନ୍ନ ଭାବରେ ଝିପିଝିପି ବର୍ଷା ହେଉଥାଏ । ପ୍ରତି ରାତିରେ ତୁମ ଜୋତାରେ ପରସ୍ତେ ଫିମ୍ପି ଧରିନିଏ । ମୋର ପ୍ରିୟ ବହିସବୁ ଏକମାତ୍ର ପଦାର୍ଥ ଯାହା ମୋତେ ଏଠାରେ ଚଳାଇ ରଖିଚନ୍ତି, ସେଗୁଡ଼ିକର ବନ୍ଧେଇ ସବୁ ଖୋଲି ଯାଉଛି ଏବଂ ସେସବୁ ମୋଡ଼ିମୋଡ଼ି ହୋଇ କାଦୁଅ ମେଞ୍ଚା ହୋଇଯାଉଛନ୍ତି । ଓଦା ଅସନା କାନ୍ଥଯାକ ଶିଉଳି ଜମିଯାଉଛି । ପାହାଡ଼ଯାକ କୁତ୍ସିତ ଦଳ ଭର୍ତ୍ତି ହୋଇଯାଉଚି ଏବଂ ବର୍ଷାପାଣିରେ ବଡ଼ ବଡ଼ ନାଳୀସବୁ ଖୋଳି ହୋଇ ତଳେ ଦୁର୍ଗନ୍ଧ ପଙ୍କ ଓ କାଦୁଅର କୁଢ଼ ସବୁ ହୋଇଯାଇଚି । ଯାହାକିଛି ପଦାର୍ଥ କୁତ୍ସିତ, ଯାହା କିଛି କର୍ଦ୍ଦମାକ୍ତ, ଦୁର୍ଗନ୍ଧକାରୀ, ଅବସାଦକାରୀ, ଭୟଙ୍କର, ଗଳିତ, ନଷ୍ଟ ଓ ନଷ୍ଟୋନ୍ମୁଖୀ, ରୋଗକାରକ, ମଳଯୁକ୍ତ, ପୂତିବାଷ୍ପମୟ, ମ୍ୟାଲେରିଆ ସୃଷ୍ଟିକାରୀ, ଘୃଣ୍ୟ ସେ ସମସ୍ତ ଚାରିଆଡ଼େ ବେଢ଼ିଚି ଏବଂ ସର୍ବୋପରି ଆସୁଚି ମନ୍ଥର ମୃତ୍ୟୁରୂପୀ ବର୍ଷା, ଧୀର, ଦୃଢ଼, ନିର୍ଦ୍ଦୟ ଓ ଆର୍ଦ୍ରରୂପ ଧରି, ଦିନ ଓ ରାତି ସବୁବେଳେ ସେ ଆସୁଚି, ଦଲ୍‌ଦଲିଆ ମାଟିର ଶବ ଉପରେ ଶବାଧାରର ଆବରଣ ପରି । ଏହା ଏକ ସୁନ୍ଦର ଲେଖାଟିଏ ପରି ଲାଗୁଥିଲେ ମଧ୍ୟ ସେପରି କିଛି ଚେଷ୍ଟା ମୁଁ କରୁନି—ସେସବୁ ପାଇଁ ମୋର ଆଦୌ ସ୍ପୃହା ନାହିଁ । ମୋ ବାରଣ୍ଡାରେ ବସି ତଳେ ଜଳାର୍ଦ୍ରଭୂମିର ଦୃଶ୍ୟ ମୋ ମନରେ ଯେଉଁ ପ୍ରଭାବ ସୃଷ୍ଟିକରୁଚି ଇଏତ ତାକୁଇ କାଗଜ ଉପରେ ରୂପ ଦେବାର ଚେଷ୍ଟା ।"

ଲୁସାଇମାନଙ୍କ ମଧ୍ୟରେ ପୁଣି ଗଣ୍ଡଗୋଳ ଲାଗିବାରୁ ମୋତେ ପୁଣି ରଙ୍ଗମାଟି ଫେରିବାକୁ ହେଲା । ଜଣେ ସାଇଲୁ ମୁଖିଆ ଲାଲବୁରା ଓ ସେଣ୍ଟୁଙ୍କ ମୁଖିଆ ପୋଇବୋଇ ଦଳଙ୍କର ଭାନହୋଇଆକୁ ଆକ୍ରମଣ କରି ତା'ର ପନ୍ଦରଜଣ ଲୋକଙ୍କୁ ମାରିଦେଲେ ବୋଲି ଅଭିଯୋଗ ହେଲା ଏବଂ ଭାନହୋଇଆ କେତେକ ବଙ୍ଗାଳୀ ବ୍ୟବସାୟୀଙ୍କ ଦ୍ୱାରା କେତେକ ରାଇଫଲ ଓ ବାରୁଦ ଡେମାଗିରି ସୀମାନ୍ତ ଚୌକିଠାରେ ଚୋରାଚାଲାଣ ଉଦ୍ୟମ କରୁଥିବାର ଦେଖାଗଲା । ଲୁସାଇମାନେ ତାଙ୍କ ବଣରୁ ଯେଉଁ ରବର ସଂଗ୍ରହ କରନ୍ତି ତାକୁ କିଣିବା ପାଇଁ ବଙ୍ଗାଳୀ ବ୍ୟବସାୟୀ ସେଠାକୁ ଯାଇଥିଲେ । ସୌଭାଗ୍ୟବଶତଃ ପୋଲିସ ଅଫିସର କ୍ରାଉଚ୍ ବନ୍ଧୁକ ଓ ଗୋଳିଗୁଳାଠକ ଉଦ୍ଧାର କରି ପାରିଥିଲେ । ପୋଇବୋଇ ଏବଂ ଲାଲବୁରା ଘନଜଙ୍ଗଲ ଭିତରକୁ ଚାଲିଯାଇଥିଲେ; କିନ୍ତୁ ମୋ ସହିତ ସାକ୍ଷାତ କରିବା ପାଇଁ ଭାନ୍‌ହୋଇଆକୁ ଅଟକା ଯାଇଥିଲା । ମୁଁ ସରକିଟ ହାଉସ୍‌ରେ ପହଞ୍ଚିଲାବେଳକୁ ସେ ମୋତେ ଦେଖାକରିବାକୁ ଆସିଲା । ସେଠାରେ ଗୋଟିଏ ମାତ୍ର ବସିବା ଘର ଥିଲା ଏବଂ ମୋ ସ୍ତ୍ରୀ ଓ ଆଉ କେତେଜଣ ମହିଳା ସେଠାରେ ଥିବାରୁ ତାକୁ ସେଠାକୁ ଆଣିବା ଅସୁବିଧା ହେଲା, କାରଣ ଭାନହୋଇଆ କିଛି ବି ଲୁଗା ପିନ୍ଧିନଥିଲା । ତାକୁ ଏକ ଲମ୍ବା କମ୍ବଳ ଦିଆଗଲା; କିନ୍ତୁ ସେ ପିନ୍ଧିବାକୁ ମନାକଲା । ଶେଷକୁ ଏକ ସାଲିସ କରାଗଲା । ସେ ଗୋଟିଏ ଚଉକି ନିକଟରେ ପହଞ୍ଚିବା ପର୍ଯ୍ୟନ୍ତ ଦୁଇଜଣ ଲୋକ କମ୍ବଳଟି ଧରି ତା' ଆଗେ ଆଗେ ଯିବେ । ଚଉକିରେ ତାକୁ ବସେଇ ଦିଆଯିବା ପରେ ଦୁଇଜଣ ଅନୁଚର ବରାବର କମ୍ବଳଟି ତା'ଆଗରେ ଧରି ଠିଆ ହୋଇଥିବେ, ଯେପରିକି କେବଳ ତା' ବାହୁ ଓ ମୁଣ୍ଡ ଦେଖାଯାଉଥିବ । ଏଇ ଅବସ୍ଥାରେ ରହି ସେ ବଡ଼ ପାଟିରେ କହି ଲାଗିଲା ଏବଂ ଭାଷାନ୍ତରକାରୀ ଅନୁବାଦ କରିଦେଲା । ସେ ପୂରା ଗିଲାସେ ଅମିଶ୍ରିତ ବ୍ରାଣ୍ଡି ଗିଳି ପକାଇ ଆଉ ଅଧିକ ପାଇଁ ଗ୍ଲାସକୁ ଟେକି ଧରିଲା; କିନ୍ତୁ ଗର୍ଡ଼ନ ସେଥିପ୍ରତି ଧ୍ୟାନ ନ ଦେଇ ତା' ସହ ଜୋରସୋରରେ କଥାବାର୍ତ୍ତା ଆରମ୍ଭ କରିଦେଲେ । ସେ ଥିଲା ଗୋଟିଏ ବଢ଼ିଆ ଜାନୁଆର—ଲମ୍ବା, ପେଶୀବହୁଳ, କାର୍ଯ୍ୟଦକ୍ଷ, ତୀକ୍ଷ୍ଣ ଉଜ୍ଜ୍ୱଳ ଆଖି ଏବଂ ରାଜକୀୟ ଚେହେରା । ଆମେ ଆଲୋଚନା ସାରି ଏକ ସନ୍ତୋଷଜନକ ସମାଧାନରେ ପହଞ୍ଚିବା ପରେ ସେ ବିଶ୍ରାମ ପାଇଁ ଉଠିଲା ଏବଂ ସେ ଯାଉଥିବାବେଳେ କମ୍ବଳଟି ତା' ପଛେ ପଛେ ଧରାଗଲା । ସେ ଏହାକୁ ନ ପିନ୍ଧିଲେ ମଧ୍ୟ ବିନୟର ସହ ଉପହାର ରୂପେ ଗ୍ରହଣ କଲା । ଗୋଟିଏ ବଡ଼ କାଚଗ୍ଲାସ ପ୍ରତି ଆକୃଷ୍ଟ ହୋଇ ସେଇଟିକୁ ମଧ୍ୟ ନେଲା ।

ଚିଟାଗଙ୍ଗକୁ ଆମେ ଫେରିଯିବା ପରେ ସଂପୂର୍ଣ୍ଣ ଭିନ୍ନ ଧରଣର ଏକ ମାମଲା ମୋ ଗୋଚରକୁ ଅଣାଗଲା । ମୁଁ ଦେଖିବାକୁ ପାଇଲି ମୁଁ ମୋ ପଦାଧିକାର ବଳରେ ଆଉ କେତେକ କର୍ତ୍ତବ୍ୟ ମଧ୍ୟରେ ପ୍ରଧାନ କଷ୍ଟମ କର୍ତ୍ତା ମଧ୍ୟ ଅଛି ଏବଂ ପାର୍ଲିଆମେଣ୍ଟର କୌଣସି ଆଇନ ଅନୁଯାୟୀ ନୌବିଭାଗୀୟ ମାମଲାଗୁଡ଼ିକ ମଧ୍ୟ ମୋର ବିଚାର କ୍ଷମତା ପରିସରଭୁକ୍ତ । ଏହି ସଂପୂର୍ଣ୍ଣ ନୂତନ ଅଧିକାର ବଳରେ ମୋତେ ଏକ ଇଂରାଜୀ ଜାହାଜ 'ଓସେନ ବେଲେ'ର କ୍ୟାପଟେନଙ୍କ ବିଚାର କରିବାକୁ ପଡ଼ିଲା । ସେ ତାଙ୍କ ଜାହାଜକୁ ଚିଟାଗଙ୍ଗ ନଦୀ ମୁହାଣରେ କୂଳକୁ ମଡ଼େଇ ଆଣିଥିଲେ । କଷ୍ଟମ କଲେକ୍ଟର ଓ ବନ୍ଦରରକ୍ଷକ ଶ୍ରୀଯୁକ୍ତ ଓ୍ୟାର୍ଡ଼େନ ତାଙ୍କ ପଦବୀ ବଳରେ ଏ ସବୁ କ୍ଷେତ୍ରରେ ଥିଲେ । ସରକାରୀ ଓକିଲ ଏବଂ ମୋ କୋର୍ଟରେ ମାମଲାଟି ଦାଏର କରି ସେ ମୋତେ ଜଣାଇଦେଲେ ଯେ, ମୁଁ ରଖାହୋଇଥିବା ସେ ଜାହାଜଟିକୁ ପରୀକ୍ଷା କରେ ଏବଂ ବନ୍ଦରରେ ଥିବା ଅନ୍ୟ ପଣ୍ୟ ଜାହାଜମାନଙ୍କର ଦୁଇଜଣ କ୍ୟାପଟେନ୍‌କୁ ବିଚାରରେ ପରାମର୍ଶଦାତା ରୂପେ ନିଯୁକ୍ତି କରେ । ତେଣୁ ମୁଁ ଯିବାପାଇଁ ବନ୍ଦୋବସ୍ତ କଲି । ମୋର ଓ ମୋର ପରିବାର ପାଇଁ ଏହା ଛୋଟ ଏକ ପ୍ରମୋଦଭ୍ରମଣ ପରି ହେବ । ପୂର୍ବପରି ମୋ ସ୍ତ୍ରୀ ପାଥେୟ

ଜିନିଷପତ୍ର ସଜାଡ଼ିଲେ । ଏ ବିଷୟରେ ଆଶାତୀତ ସାହାଯ୍ୟ ସ୍ୱରୂପ ସ୍ଥାନୀୟ ମାଂସ ବିକାଳିଠାରୁ ସେ ନିମ୍ନୋକ୍ତ ପ୍ରକାରେ ଲେଖାଟିଏ ପାଇଲେ । ତା'ର ସଠିକ୍ ନକଲ ମୁଁ ଏଠାରେ ଦେଉଛି: Shake Kadir Ali and Shake Laptoo begs to inform the following gentlemen that they will kill two gramfed sheeps much more Fatt and Biss than mutton club ditto—ଶେଖ କାଦିର ଅଲି ଏବଂ ଶେଖ୍ ଲୁଟ୍‌ପୁ ନିମ୍ନୋକ୍ତ ଭଦ୍ରବ୍ୟକ୍ତି ସମସ୍ତଙ୍କୁ ଜଣାଉଛନ୍ତି ଯେ ସେମାନେ ଦୁଇଟା ଦାନାଖିଆ ମେଣ୍ଢା ମାରିବେ ଯାହାକି ମଟନକ୍ଲବ...ଠାରୁ ବହୁତ ବେଶି ମୋଟ୍‌ଟା ଓ ବଡ଼ଡ଼' । ଏହାର ଶେଷାଂଶଟି ସବୁଠାରୁ ଦୁଃଖଦାୟକ ଉକ୍ତି କାରଣ ମୋ ସ୍ତ୍ରୀ ସ୍ଥାନୀୟ ମାଂସକବର ପରିଚାଳିକା ଏବଂ ତାଙ୍କ ବଢ଼ିଆ ମେଣ୍ଢାଗୁଡ଼ିକ ପାଇଁ କମ୍ ଗର୍ବ କରୁନଥିଲେ ।

ଯାହାହେଉ ଅନ୍ୟାନ୍ୟ ପଦାର୍ଥ ସହ ମୋ ସ୍ତ୍ରୀ ସେହି ଦାନାଖିଆ ଖୁବ୍ ବଡ଼ଡ଼ ମେଣ୍ଢା ମାଂସ ସଜାଡ଼ି ରଖିଲେ । ଆମ ଦଳଟି ବାସଗୃହ ସଂଯୁକ୍ତ ମୋ ଷ୍ଟିମରରେ ବାହାରିଲୁ । ଘଟଣାଟି ଏହିପରି ଘଟିଲା (ଇଲିଅଟ ପାଖକୁ ଦେଇଥିବା ଚିଠିରୁ)— 'ମୁଁ ନିଜେ ସାମୁଦ୍ରିକ ନୁହେଁ; କିନ୍ତୁ ଶ୍ରୀ ଓ୍ୟାଡ଼େନ ସେଥିରେ ଦକ୍ଷ । ବାସ୍ତବରେ ସେ ବିଷୟରେ ସେ ଏତେ ଅଭ୍ୟସ୍ତ ଯେ ତାଙ୍କର ଷ୍ଟାର ବୋର୍ଡ଼ କାନ (ଦକ୍ଷିଣ କାନ) କୁଣ୍ଡେଇ ହୁଏ (ଷ୍ଟାର ବୋର୍ଡ଼ ଅର୍ଥ ଜାହାଜର ସାମନାକୁ ଚାହିଁଥିବା ଲୋକର ଦକ୍ଷିଣ ପାର୍ଶ୍ୱ) ଏବଂ ସେ ତାଙ୍କ ଗୋଟିକିଆ ଘୋଡ଼ାଗାଡ଼ିକୁ ବନ୍ଦକରି ଖୋଲି ଦେଇଥାନ୍ତି ଏବଂ ପବନ ହେଲାବେଳେ ତାକୁ ଆଣି ଚଳାନ୍ତି । ଡଙ୍ଗିକୁ ଝୋଟ ବୋଝେଇ କରି ନେଇଯିବାପାଇଁ ରହିଥିବା ଧାଡ଼ିଧାଡ଼ି ପାଲଟଣା ଜାହାଜ ମଧଦେଇ ଆମେ ଷ୍ଟିମରରେ ଯାଉଥିବାବେଳେ ମୋର ସେଇ ସାମୁଦ୍ରିକ ଅଧସ୍ତନ କର୍ମଚାରୀଙ୍କଠାରୁ ଜାହାଜମାନଙ୍କ ସମ୍ପର୍କରେ ସମାଲୋଚନା ଶୁଣି ଖୁବ୍ ଆନନ୍ଦ ଅନୁଭବ କଲୁ । ପ୍ରିନ୍‌ସ ଓସକାର, ଚାରି ମାସ୍ତୁଲବାଲା ଜାହାଜ, ଯାହାର ବିରାଟ ଉପରିଭାଗ ଆମ ମୁଣ୍ଡର ବହୁ ଉପରେ ତାହା ମଧ ତାଙ୍କ ସମାଲୋଚନା ପରିସରର ବହିର୍ଭୂତ ନ ଥିଲା—ସମାଲୋଚନା କରିବା ଉଚିତ ନ ଥିବା ସ୍ଥଳେ ସେ କରୁଥିଲେ । ଏପରି ଲୋକ କେବେ ଦେଖିଛ ଯେ ତାଙ୍କ ନିଜ କଥା ଭିତରେ ଝୁଣ୍ଟନ୍ତି ଠିକ୍ ଲୋଟୋନା (Lotona) ଭଳି— but Lor' bless your eart the way these are merchantmen do things—Ah! you should have seen the 'Celerity—they knew ow to sail a ship in the old Injen Navy—I believe yer when I was in the old Ingen Navy—ତା'ପରେ ଚାଲିଲା କଥାର ଅଛିଣ୍ଡା ସୂତା । ନଦୀରେ ଆମର ଛ'ମାଇଲ ଯାତ୍ରାତମାମ ତାହା ଚାଲିଥିଲା । ମୁଁ ଦୃଶ୍ୟ ଦେଖୁଥିବାରୁ ସେସବୁ କଥାରେ ଅର୍ଥ ଧରିପାରି ନାହିଁ । ଓ୍ୟାଡ଼େନଙ୍କ ଶତ୍ରୁମାନେ କହନ୍ତି ସେ ଜାହାଜରେ ହିସାବରକ୍ଷକଙ୍କ କିରାଣି ଥିଲେ ଏବଂ ଗୋଟିଏ ଦଉଡ଼ିରୁ ଆଉ ଗୋଟିଏ ଦଉଡ଼ିକୁ ଅଲଗା କରି ଜାଣନ୍ତି ନାହିଁ । ସେ ଯାହାହେଉ ସେ ଅନେକଗୁଡ଼ିଏ ସୁନ୍ଦର ସାମୁଦ୍ରିକ ଭାଷାରେ ପ୍ରୟୋଗ କଲେ ଏବଂ ଯଦିବା ସେ ପ୍ରୟୋଗରେ କିଛି ଭୁଲଭାଲ ଥାଏ, ମୁଁ ତା'ଠାରୁ ଅଧିକ କିଛି ଜାଣେ ନାହିଁ । ଆମେ ଭିତର ବୟାଁକୁ ଗଲୁ । ତିନିମାଇଲ ଓସାର ନଦୀ ମୁହାଣ ମଧରେ ଦୃଶ୍ୟପଟଳ ଲୁଚିଗଲା—ଠିକ୍ ଆମ ସାମନାରେ ଝଟକୁଥିବା ଉଜ୍ଜ୍ୱଳ ସମୁଦ୍ର ପୃଷ୍ଠରେ କଳାବିନ୍ଦୁଟିଏ—ପଥ ପ୍ରଦର୍ଶକ ଜାହାଜଟି । ସେଥିରେ ଥିବା ପତାକାଟି ସେ ଜାହାଜର ଦୈର୍ଘ୍ୟ ସହ ସମାନ । ଅଳ୍ପକିଛି ଆଗକୁ, ଗତିପଥର ବାହାରେ ଥିଲା ତିନିମାସ୍ତୁଲ ବାଲା ବଡ଼ ଜାହାଜ 'ଓସେନ୍ ବେଲେ' । ଜଣାଯାଉଥାଏ ଯେପରି ଭୂମିଠାରୁ ବହୁତ ଦୂରରେ; କିନ୍ତୁ ପ୍ରକୃତରେ ଥିଲା ନରମ କାଦୁଅ ଶଯ୍ୟାରେ, ଯେଉଁ କାଦୁଅରେ ବାଟ କାଢ଼ିବା ପାଇଁ ସେ ଜୋରରେ କାମରେ ଲାଗିଥିଲା । ନୌଚଳାଚଳ ସମ୍ପର୍କରେ ମୋର ଘୋର ଅଜ୍ଞତା ଫଳରେ ମୁଁ

ସର୍ବଦା ଭାବୁଥିଲି ଯେ ଜାହାଜଟିଏ ଭୂମିରେ ଲାଗିଗଲେ ଜୋରରେ ଅଟକିଯାଏ, କିନ୍ତୁ ଏଠାରେ 'ଓସେନ ବେଲେ' ଧୀର ମନ୍ଥର ଗତିରେ ଏପଟସେପଟ ହେଉଛି ଏବଂ ଦୈର୍ଘ୍ୟପଟରେ ନିକଟକୁ ଯିବାରୁ ଦେଖିଲି ଯେ ମୁଁ ଯାହାକୁ ଜାହାଜର କମାଣ ରଖା ଫାଙ୍କ ବୋଲି ବିଚାରୁଥିଲି ସେଇ ବାଟ ଦେଇ କାଦୁଅ ପାଣିର ପ୍ରବଳ ସ୍ରୋତ ଆସୁଚି । ମୁଁ ଶୁଣିଲି— "bless yer, she ain't got no ports she ain't that's 'eh scuppers (ବି. ଦ୍ର: ପରେ ଜଣାପଡ଼ିଲା ଯେ ଏହା ସେ ଜାହାଜରେ ସ୍କୁପର ବା ପାଣିକଢ଼ା କଣା ନୁହେଁ; କିନ୍ତୁ ଥାଉ ସେ କଥା ।) ତା'ର ଡେକ୍‌ର ଆଗପଟେ କେତେଗୁଡାଏ ଅପରିଷ୍କାର ଇଂରାଜୀ ନାବିକ ଜାହାଜ ବାହାରପଟ ଧାରଣାରେ ଗୋଡ଼ ଦେଇ ବିଶ୍ରାମ କରୁଥିଲେ (ମୋର ସେଇ ଧାରଣା ଥିଲା) ସେମାନଙ୍କ ପାଦ ଖାଲି, କଣ୍ଠ ଖରାରେ ଖୁବ୍ ଲାଲ ଏବଂ ସାର୍ଟ ତେଲିଆ ହୋଇଯାଇଥିଲା । ଖରାକୁ ସେମାନଙ୍କର ଖାତିର ଥିବା ପରି ଜଣାଯାଉ ନ ଥିଲା । ମୁଣ୍ଡରେ ଥିଲା ନଡ଼ା ତିଆରି ଟୋପି ଏବଂ ଗ୍ରାଜ୍ ଓ ଧୂଆଁପତ୍ର ତିଆରି ହାଲୁକା ଆବରଣ । ମଧ୍ୟଭାଗରେ (ସମୁଦ୍ର ସମ୍ପର୍କରେ ମୁଁ କେତେ ଅଭିଜ୍ଞ ଦେଖ) ଦଳେ କୁଲି ଜାହାଜର ବୋଝେଇ ଜିନିଷସବୁ ଉଠାଉଠି କରୁଛନ୍ତି ଏବଂ ଦୁଇ ତିନିଜଣ ବଳଶାଳୀ ନିଗ୍ରୋ ପ୍ରାୟ ସେମାନଙ୍କୁ ନିର୍ଦ୍ଦେଶ ଦେଉଛନ୍ତି ଏବଂ ସେଇ ସମୟରେ ଗୋଟାଏ ବ୍ୟାରେଲ୍ ଉପରେ ବସି ଛେପ ପକାଉଛନ୍ତି । ଜାହାଜ ଚାରିପଟେ ଏପରି ଜଳଘୂର୍ଣ୍ଣି ହେଉଥିଲା ଯେ, ଷ୍ଟିମରଟି ପାଖକୁ ଯାଇପାରିଲା ନାହିଁ । ତେଣୁ ଆମେ ଏକ ଛାଲି ନୌକାରେ ଯାଇଁ ଯେଉଁ ପଟେ ମାସ୍ତୁଲ ଉପରୁ ତଳକୁ ଦଉଡ଼ି ପଡ଼ିଛି ସେଇପଟେ ଦଉଡ଼ି ଧରି ଉପରକୁ ଉଠିଲୁ । ଏହାକୁ ସେମାନେ କ'ଣ କହନ୍ତି ମନେ ନାହିଁ—ଚେନ କି ପାଲଦଉଡ଼ି ଏବେ ମୋ ମନରେ ସେସବୁ ମିଶାମିଶି ହୋଇଯାଉଛି । ମୋର ମନେଅଛି ସେଗୁଡ଼ିକ ରାଳ ଓ ଆବର୍ଜନାଯୁକ୍ତ ଥିଲା । ଡେକ୍ ଉପରର ଦୃଶ୍ୟ ଥିଲା ପାଶବିକ। ସେଥିରେ ବୋଝେଇ ହୋଇଥିଲା ମାଟିତେଲ (ମୋଟା ଧରଣର ପେଟ୍ରୋଲିୟମ ଏବଂ କଚ୍ (Kutch) ଆଉ ଦୁର୍ଗନ୍ଧ— ! ଡେକ୍‌ର ମୁହଁ ସବୁ ଖୋଲିଯାଇଥିଲା । ବ୍ୟାରେଲ ସବୁ ଖୋଲା ଗଡୁଥିଲା । ତେଲ ବାହାରି ପଡ଼ି ଜାହାଜ ମଝିରେ ଥିବା ପାଣିରେ ମିଶିଯାଉଥିଲା । (ମୁଁ ଜାଣେ ଏହା ସତ୍ୟ) ଫଳ କ'ଣ ହେଲା ତୁମେ ଅନୁମାନ କର । ଦାୟିତ୍ୱରେ ଥିବା ଭଦ୍ରଲୋକ ଯାହାଙ୍କର ବିଭାଗୀୟ ପଦବୀ କ୍ୟାପନ୍ (ଗୋଟିଏ ଅକ୍ଷର) ସେ ଏଜେଣ୍ଟମାନଙ୍କ ସହ ସାକ୍ଷାତ କରିବାକୁ କୂଳକୁ ଯାଇଥିଲେ ଏବଂ ଯାହା ପରେ ବୁଝିଲୁ ଫେରିବା ଉଦ୍ଦେଶ୍ୟ ତାଙ୍କର ନ ଥିଲା । ଯୁବକ ମେଟର ଧାରଣା ଖୁବ୍ ଅସ୍ପଷ୍ଟ । ସେ ଆରାମ୍‌ରେ (ସେଇଟାକୁ ସେମାନେ କଅଣ କହନ୍ତି ଟି ? ବିନାକଲ୍, କି କାପଷ୍ଟାନ, କି ଡାଭିଟସ୍, କି ଗୁଏସ୍, କି କ୍ୟାଟ୍‌ହେଡ୍, କି ଡେଡଆଇଜ—ଏସବୁ ମୁଁ ଅଲଗା ଅଲଗା ଶୁଣିଥିଲି) ଉପରେ ଶୋଇଯାଇଥିଲା । ଏହା ହେଉଛି ପିତଳ ଧାରଣା ଥିବା ଜାହାଜ କାନ୍ଥିର ବାହାରକୁ ବାହାରିଥିବା ଅଂଶ, ଯାହା ଉପର ଦେଇ ଜାହାଜର ମଝି ଅଂଶରୁ ସର୍ବୋଚ୍ଚ ସ୍ଥଳକୁ ଯାଇହୁଏ—ମୋ କଥା ବୁଝି ପାରିଲଟି ? ସେ ମଧ ଛେପ ପକାଉଥିଲା । ତା'ପାଖରେ ଖୁବ୍ ମୋଟା ଓ ଚମତ୍କାର ଦିଶୁଥିବା ବତକଟିଏ ବସିଥିଲା ଏବଂ ଡେକ୍ ଖୁବ୍ ଅଣେଇ ହୋଇ ପଡୁଥିବାବେଳେ ଡେଣା ହଲାଉଥିଲା ।

ମୁଁ ସି.ସି.ଏ. (ଚିଫ୍ କଷ୍ଟମ ଅଥରଟି) ସୁଲଭ ଗମ୍ଭୀର ହେବାପାଇଁ ଚେଷ୍ଟାକଲି; କିନ୍ତୁ ତାହା କରିପାରିବା ଖୁବ୍ କଷ୍ଟସାଧ ଥିଲା । ଜାହାଜର ଡେକ୍ ପ୍ରତିମୁହୂର୍ତ୍ତରେ ଭିନ୍ନ ଭିନ୍ନ ଆଡ଼କୁ ଅଣେଇ ହୋଇ ପଡୁଥିବାରୁ ପାଦ ଠିକ୍ ରଖିବା କଷ୍ଟ ହେଉଛି ଏବଂ ରାଳ ଓ ଅନ୍ୟ କଦର୍ଯ୍ୟ ପଦାର୍ଥ ସବୁ ଚାରିଆଡ଼େ ଥିବାରୁ ଜାହାକୁ ଧରି ପକାଇବାକୁ ମଧ ଭୟ ହେଉଛି । ମେଟ୍‌ଟି ଖୁବ୍

ପ୍ରଫୁଲ୍ଲ ଥିଲା ଏବଂ କହିଲା ଯେ, ଯଦି କ୍ୟାପନ ଅତିଶୀଘ୍ର ନ ଆସନ୍ତି, ତେବେ ସେ ଅନ୍ୟାନ୍ୟ ନାବିକ ସେମାନଙ୍କ ନୌକାରେ ବସି କୂଳକୁ ଯିବେ । ଓ୍ୱାଡ଼େନ କହିଲେ ଯେ, ସେଇଟା ପଳେଇଯିବା ପରି ହେବ ଏବଂ ସେମାନଙ୍କ ଉପରେ କୌଣସି ପ୍ରଭାବ ପଡ଼ିବ ନାହିଁ । ମେଟ ମନାକଲା ଏବଂ କିପରି ଜାହାଜ ଅଟକିଛି (Hogged) ତାହା ଦେଖାଇବାକୁ ଆମକୁ ଡାକିଲା । ଓ୍ୱାଡେନ୍ ଏହାକୁ ଦେଖିଲେ (କିମ୍ୱା ଦେଖିଲେ ବୋଲି କହିଲେ—ମୁଁ ଦେଖି ନାହିଁ । ଓ୍ୱାଡ଼େନ୍ ଯେତେବେଳେ ଦେଖିଲେ ଯେ ଜାହାଜର ପାଣିକଡ଼ା କଣାବାଟେ ପାଣି ବାହାରିଯାଉଛି ମେଟ ଉତ୍ତର ଦେଲା— "Scuppers be—d its er seams" । ତା'ପରେ ମୁଁ ଦେଖିପାରିଲି ଯେ ଜାହାଜ କଡ଼ର ପଟା ଘୁଞ୍ଚୁଛି । ମେଟ କହିଲା— "ଗଲା, ଭଗବାନ୍ ଆପଣଙ୍କର ମଙ୍ଗଳ କରନ୍ତୁ । କଣା ଭିତରେ ମୁଣ୍ଡ ଦେଇପାରନ୍ତି, ଆପଣ ଏଠି ଦେଖନ୍ତୁ, ଏଠି ଦେଖନ୍ତୁ ଏବଂ ସେ ଭୀଷଣ ବଡ଼ ଏକ ଫଟା ସ୍ଥାନ ଦେଖାଇଲା । ତା'ପରେ ଡବଲ୍ୟୁ ଓ୍ୱାଡ଼େନଙ୍କର ମନେପଡ଼ିଲା ଯେ, ସେ ଅମୁକ ପଦାର୍ଥଟି ତଳକୁ ଉଠାଇ ନାହାନ୍ତି, ଯାହାର ଉତ୍ତରରେ ମେଟ କହିଲା ଯେ, ସେ ରୟାଲ୍ ସବୁ ପଠାଇ ଦେଇଛି ଏବଂ କ୍ୟାପନ ଆସିଲେ ଅନ୍ୟ କେତେକ ଜିନିଷ ପଠାଇ ଦେବ। ତା'ପରେ ସେମାନେ ମୋ ଥିବା ସ୍ଥାନରୁ ବହୁତ ତଳକୁ ଗଲେ ଏବଂ ମୁଁ ବହୁକଷ୍ଟରେ ଯୋଗକୁ ପରିଷ୍କାର ଥିବା ଖଣ୍ଡେ ପିତଳ ଧାରଣାକୁ ଧରି ସରକାରୀ କାଇଦାରେ ଠିଆ ହେବାକୁ ଚେଷ୍ଟା କଲି । ଯାହାହେଉ ଓ୍ୱାଡ଼େନ ସୁନ୍ଦର ରୂପେ ନିଜର ଭାରସାମ୍ୟ ରକ୍ଷାକରି ପାରୁଥିଲେ । ଶେଷସୁଦ୍ଧା ଚରମ ସାମୁଦ୍ରିକ ଦକ୍ଷତା ସମ୍ପନ୍ନ ରହିଥିଲେ ଏବଂ ସମୁଦ୍ର ଅସୁସ୍ଥତା ଅନୁଭବ କରୁଥିବା ପରି ଜଣାପଡୁ ନଥିଲେ । ସେ ଯେତେବେଳେ ମୋ ପାଖକୁ ଆସି କହିଲେ ଯେ, ପରୀକ୍ଷା ନିରୀକ୍ଷା ଶେଷ କରିଛନ୍ତି, ମୁଁ ଖୁସି ହୋଇଗଲି । ମୁଁ ତଳକୁ ଯିବାକୁ ମନାକଲି ଏବଂ ଅନ୍ଧାରରେ ପଟାସବୁ ଥାପୁଡ଼େଇଲି—ମୁଁ ଯେ ଏସବୁ କିଛି ବୁଝେ ଏପରି ଛଳନା କରିବାର ଦୁର୍ବଳତାରୁ ମୁଁ ଊର୍ଦ୍ଧ୍ୱରେ, ତେଣୁ ଭଦ୍ରୋଚିତ ଭାବରେ ଜଣାଇଦେଲି ଯେ ତାଙ୍କଠାରୁ ଲିଖିତ ଉତ୍ତର ପାଇବା ପର୍ଯ୍ୟନ୍ତ ମୋ ମତାମତ ଦେବା ବନ୍ଦ ରଖିଲି । ଏହି ସମୟରେ ଡେକ୍‌ଟା ଖୁବ୍ ଅଣେଇ ହୋଇ ପଡ଼ିଲା ଏବଂ ଆମେ ସବୁ ଜାଲିନୌକା ଭିତରକୁ ଖସିଗଲୁ । କିପରି ଏହା ହେଲା ମୁଁ ଜାଣି ନାହିଁ । କେବଳ ଜାଣିଛି ଯେ ସେଇ ଆଲକାତରା ଲଗା ପାଲଦଉଡ଼ି, ନା ଚେନ୍ ନା କି ଜିନିଷ ସେମାନେ କହନ୍ତି ତାକୁ ଧରି ଓହଳିଥିବାବେଳେ ନାବିକମାନେ ମୋ ଗୋଡ଼ ଧରି ନେଇଥିଲେ । ଆମେ ଆମ ଷ୍ଟିମରକୁ ଫେରି ସେଥିରେ ନଦୀ ଭିତର ଦେଇ ଆସୁଥିବାବେଳେ ଆକଣ୍ଠ ଭୋଜନ କଲୁ।

ପରେ ମୁଁ ଦୁଇଜଣ ନୌଅଭିଜ୍ଞ ପରାମର୍ଶଦାତାଙ୍କ ସହ କ୍ୟାପଟେନଙ୍କ ବିଚାର କରି ବସିଲି । ମୁଁ ଭାବିଥିଲି ଯେ ସେ ବୀମାକାରୀମାନଙ୍କୁ ଠକେଇବାପାଇଁ ଜାହାଜକୁ ମଡ଼େଇ ଆଣିଚନ୍ତି, ଯାହାକି ଅନେକ ସମୟରେ ଘଟେ । ପରାମର୍ଶଦାତାମାନଙ୍କୁ ମଧ ସେଇ ବିଶ୍ୱାସ ଥିଲା ବୋଲି ମୁଁ ଆଶଙ୍କା କରୁଥିଲି । କିନ୍ତୁ ଏ ବିଷୟରେ ଏତେ ବୈଷୟିକ ବିଷୟ ସଂପୃକ୍ତ ଥିଲା ଯେ କୌଣସି ସ୍ଥଳବାସୀ ପକ୍ଷରେ ଏହାର ବିଚାର କରିବା କଠିନ । ତେଣୁ ମୁଁ ସେ ପରାମର୍ଶଦାତାମାନଙ୍କ ମତକୁ ଗ୍ରହଣ କଲି ଏବଂ ତାକୁ କେବଳ ନୌଚାଳନାରେ ଦକ୍ଷତାହୀନତା ବିଷୟରେ ଦୋଷୀ ସାବ୍ୟସ୍ତ କରି ଛ'ମାସ ପର୍ଯ୍ୟନ୍ତ ତାଙ୍କ ପ୍ରମାଣପତ୍ରକୁ ରହିତ କରିଦେଲି ।

ମନୋମତ ସମାଜ ନ ଥିବା ଫଳରେ ଚିଟାଗଙ୍ଗରେ ଜୀବନ ଏତେ କଷ୍ଟଦାୟକ ହୋଇପଡ଼ିଲା ଯେ, ଆମେ ସୁବିଧାପାଇଲା ମାତ୍ରେ ଏହି ସମାଜଠାରୁ ଦୂରେଇ ଯାଉଥିଲୁ ।

କର୍ମଚାରୀମାନେ ଏତେ ବେଶି ପସନ୍ଦଯୋଗ୍ୟ ନୁହନ୍ତି । ଅତି ଅସ୍ୱାସ୍ଥ୍ୟକର ହୋଇଥିବାରୁ ଚିଟାଗଙ୍ଗକୁ ଏକ ଦଣ୍ଡସ୍ଥାନ ବୋଲି ମନେ କରାଯାଉଥିଲା ଏବଂ ନିକୃଷ୍ଟତମ ସରକାରୀ ଲୋକମାନଙ୍କୁ ସେଠାକୁ ପଠାଯାଉଥିଲା । ମୁଁ ପରେ ଶୁଣିଲି ଯେ ଆମ ସଂସ୍ଥାର କର୍ମଚାରୀମାନେ ଏହାକୁ ଅତି ଲଜ୍ଜାର କଥା ବୋଲି ମନେ କରୁଥିଲେ। ଏହି ସଂସ୍ଥାରେ ମୋର ଖୁବ୍ ଉଚ୍ଚ ନ ହେଲେ ମଧ ବେଶ୍ ସୁନାମ ଥିଲା । ଏଡ଼େନ ବ୍ୟକ୍ତିଗତ ଦ୍ୱେଷ ଯୋଗୁଁ ମୋତେ ଏହି ଦଣ୍ଡସ୍ଥଳକୁ ପଠାଇଲେ । କର୍ମଚାରୀମାନଙ୍କ ସାଙ୍ଗକୁ ସେଠାରେ କେତେକ ବ୍ୟବସାୟୀ, ଚା ବଗିଚା ମାଲିକ ଥିଲେ ରୁକ୍ଷ, ଗୁଣ୍ଡାଶ୍ରେଣୀୟ ଅବିବାହିତ ବ୍ୟକ୍ତି— ଭଦ୍ର ଓ ମହିଳା ସମାଜ ପାଇଁ ସଂପୂର୍ଣ୍ଣ ଅନୁପଯୁକ୍ତ ଏବଂ ସମସ୍ତ କର୍ମଚାରୀମାନଙ୍କ ପ୍ରତି ଶତ୍ରୁଭାବାପନ୍ନ କିମ୍ବା ଅସନ୍ତୁଷ୍ଟ। 'ଓସେନ୍ ବେଲେ' ମାମଲା ସରିବା ସଂଗେ ସଂଗେ ଆମେ ବ୍ରହ୍ମଦେଶ ସୀମାରେ ଦକ୍ଷିଣ ପଟେ ଥିବା କୋକସ୍‌ବଜାର ସବ୍‌ଡିଭିଜନ ଭ୍ରମଣରେ ଗଲୁ । ନଭେମ୍ବର ୧୮୭୮ରେ (ମୁଁ ଭାବୁଛି) ଇଲିଅଟକୁ ଲେଖିଥିବା ଚିଠିରୁ ମୁଁ ସେଇ ଭ୍ରମଣ ବର୍ଣ୍ଣନା ଦେଉଛି । 'କୋକସ୍ ବଜାର ହେଉଛି ଚିଟାଗଙ୍ଗର ଏକ ସବ୍‌ଡିଭିଜନ ଏବଂ ଏଠାରୁ ୧୨୦ ମାଇଲ ଦକ୍ଷିଣରେ । ଏହା ଏକ ମୁଗ୍ ସହର । ୧୭୯୩ରେ ଆମେ ଯେତେବେଳେ ବର୍ମୀମାନଙ୍କ ସହ ଲଢୁଥିଲୁ ସେଇ ସମୟରେ କ୍ୟାପଟେନ କୋକସ୍ ନାମକ ଏକ ବ୍ୟକ୍ତିଦ୍ୱାରା ଭୁଲ୍‌ରେ ଏହି ସହର ସ୍ଥାପିତ ହୋଇଥିଲା । ବହୁଦିନୁ ମୃତ କୋକସ୍ ବିଶେଷ ଜଣାଶୁଣା ବ୍ୟକ୍ତି ନ ଥିବାରୁ (ତାଙ୍କର ବୋଧହୁଏ ଚୁଟିଥିଲା, ସେ ପାଉଡ଼ର ଲଗାଉ ଥିଲେ, ଟାଣ କଳା ମୋଜା, ଖୁବ୍ ଫୁଲାଦିଆ ଲାଲ କମ୍ବଳ, ଖାକି ପାଇଜାମା ଏବଂ ମୋଟା କନାର ଜୋତା ପିନ୍ଧୁଥିଲେ । ସେ 'ବ୍ରାଣ୍ଡିପନି' ପିଉଥିଲେ ଏବଂ (ଡେମ୍ 'demme' ଓ ଫୋର ଗାଡ୍ ସାର୍ Forc gad Sir !' ପ୍ରଭୃତି ଶବ୍ଦ କହୁଥିଲେ) ଆରାକାନୀ (୧) ମାନଙ୍କ ଅତ୍ୟାଚାର ଫଳରେ ପଳାଇ ଆସିଥିବା ମୁଗ୍‌ମାନଙ୍କ ଥଇଥାନ ପାଇଁ ଏକ କୀଟପୂର୍ଣ୍ଣ ଦୁର୍ଗନ୍ଧପୂର୍ଣ୍ଣ, ସନ୍ତସନ୍ତିଆ ସାମୁଦ୍ରିକ ନଳୀର କୂଳ ବ୍ୟତୀତ ଆଉ ଭଲ ଜାଗା ପାଇଲେ ନାହିଁ । ଅଠାଳିଆ କାଦୁଅ ମାଟିର ବନ୍ଧଟି ସମୁଦ୍ରଠାରୁ ସୁନ୍ଦର ଭାବରେ ଅଲଗା ହୋଇଛି । ହ୍ୟାରି ଚାରିବର୍ଷ ହେବ ଏହାର ଦାୟିତ୍ୱରେ ଅଛି ଏବଂ 'ଫାୟାର ଫ୍ଲାଇ'ରେ ଉପସାଗରରେ ଘୂରାଘୂରି କରି ନିଜକୁ ବଞ୍ଚାଇ ରଖିଛି । ଚିଟାଗଙ୍ଗର ଗନ୍ଧ ଯେତେ ନୀଚ, କଦର୍ଯ୍ୟ, ଅନ୍ତର୍ଭେଦୀ ଏବଂ ଶରୀର ଓ ଆତ୍ମାର ଧ୍ୱଂସକାରୀ ହେଲେ ମଧ କୋକସ୍ ବଜାର ତୁଳନାରେ କିଛି ନୁହେଁ । ସେଠାରେ ଲୋକେ ମାଟିଗଦା ଉପରେ ବାଉଁଶ କୁଡ଼ିଆରେ ବାସ କରନ୍ତି ଏବଂ ତଳ ସ୍ଥାନମାନଙ୍କରେ ଲୋକଙ୍କ ମଳମୂତ୍ର ଇତ୍ୟାଦି ଜମାହୋଇଥାଏ । ସେମାନଙ୍କ ପ୍ରଧାନ ଖାଦ୍ୟ ହେଉଛି ସଢ଼ିଯିବା ପର୍ଯ୍ୟନ୍ତ ରଖା ହୋଇଥିବା (ସେହି ଉଦ୍ଦେଶ୍ୟରେ) ମାଛ। ଏହାକୁ ନ୍ୟାପେ କୁହାଯାଏ ଏବଂ ଖୁବ୍ ସ୍ୱାଦ୍ୟ ବୋଲି ଧରାଯାଏ । ପବନ ଆସୁଥିବା ଦିଗରୁ ମାଇଲିଏ ଦୂରରୁ ତୁମେ ଜଣେ ମୁଗ୍‌କୁ ଶୁଙ୍ଘି ଜାଣିପାରିବ । ଯାହାହେଉ ସେମାନେ ସର୍ବଦା ଖୁସିଥାଆନ୍ତି, ହସୁଥାଆନ୍ତି ଏବଂ ପାଟିରେ ଗଜେଲମ୍ବର ଚିରୁଟ ଧରିଥାଆନ୍ତି । ସେମାନେ ପ୍ରାୟ କିଛି କାମ କରନ୍ତି ନାହିଁ । ଅପରିଷ୍କାର, ଖର୍ବକାୟ, ଶୁଷ୍କମୁଖ ବଙ୍ଗାଳୀମାନେ ସବୁ କାମ କରନ୍ତି ଏବଂ ଜଣାଯାଏ ମୁଗ୍‌ମାନଙ୍କୁ ଶୋଷଣ କରନ୍ତି । ମୁଗ୍‌ମାନେ କାମ କରିବା ଭିତରେ କେବଳ ମାଛଧରି ଜୀବନ ଧାରଣ କରନ୍ତି ।

---

(୧) ରାଜଶାସିତ ଆରାକାନ—ରାଜଧାନୀ ଆକ୍ୟାବ, ବ୍ରହ୍ମଦେଶର ଉତ୍ତରାଞ୍ଚଳକୁ ନେଇ ଗଠିତ ଏବଂ ବଙ୍ଗୋପସାଗର କୂଳେ କୂଳେ ଅବସ୍ଥିତ । ବ୍ରହ୍ମଦେଶର ଅନ୍ୟାନ୍ୟ ଅଞ୍ଚଳରୁ ୟୁମାଟଙ୍ଗ ନାମକ ଉଚ୍ଚ ପର୍ବତମାଳା ଦ୍ୱାରା ବିଚ୍ଛିନ୍ନ । ୧୮୨୬ରେ ଏହା ବ୍ରିଟିଶ ଶାସନାଧୀନ ହେଲା ।

ସେମାନେ ତାଙ୍କ ବେକ ଚାରିପଟେ ଚକ୍‌ଚକିଆ ଉଜ୍ଜ୍ୱଳ ରଙ୍ଗର ରେଶମ ରୁମାଲ ବାନ୍ଧନ୍ତି । ସେଗୁଡ଼ିକରେ ଘନ ସବୁଜ ଉପରେ ଉଜ୍ଜ୍ୱଳ ଲାଲ ଫୁଲ, କମଳା ରଙ୍ଗ ଉପରେ ବାଇଗିଣୀ ରଙ୍ଗର ଫୁଲ ପଡ଼ିଥାଏ । ଅବଶ୍ୟ ସେସବୁ ମାଞ୍ଚେଷ୍ଟରର ତିଆରି—ତା' ସାଙ୍ଗରେ ଉଜ୍ଜ୍ୱଳ ନୀଳ କିମ୍ବା ହଳଦିଆ କିମ୍ବା ଲାଲ କୁର୍ତ୍ତା ଏବଂ ସେଇଭଳି ଉଜ୍ଜ୍ୱଳ ରଙ୍ଗର ଧୋତି ପିନ୍ଧନ୍ତି । ସ୍ତ୍ରୀ ଲୋକମାନେ ଲାଲ ବର୍ଣ୍ଣର ସ୍ତନବନ୍ଧ ଛାତି ଉପରେ କୋରରେ ଭିଡ଼ି ବାହୁତଳେ ପିନ୍ଧି ଥାଆନ୍ତି ଏବଂ କାନ୍ଧକୁ ଖାଲି ରଖିଥାଆନ୍ତି । ତା'ଛଡ଼ା ପିନ୍ଧନ୍ତି ଉଜ୍ଜ୍ୱଳ ରଙ୍ଗିନ ଶାୟା । ବାଡ଼ରୁ ତୋଳା ହୋଇଥିବା ଗୋଟିଏ ଦୁଇଟା ଫୁଲ ଛଡ଼ା ମୁଣ୍ଡରେ ଆଉ କିଛି ନ ଥାଏ । ସେଠାରେ ଦୃଶ୍ୟ ଅତି ଆକର୍ଷଣୀୟ । ମୋ ଭାଇର ଘରଟି ସମୁଦ୍ର ତୀରକୁ ଲାଗିକରି ଥିଲା । ଆଗରେ ଲମ୍ବିଥିଲା ଚକ୍ ଚକ୍ ବାଲୁକାରାଶି, ତା'ପରେ ହଠାତ୍ ନୀଚା ପାହାଡ଼ର ଶୀର୍ଷ ପର୍ଯ୍ୟନ୍ତ ଜଙ୍ଗଲ ଆରମ୍ଭ ହୋଇଥିଲା ଏବଂ ଦକ୍ଷିଣକୁ ଖୁବ୍ ଦୂରରେ ଲମ୍ବ ନୀଳବର୍ଣ୍ଣର ସୀମା (ଏଲିଫାଣ୍ଟା ପଏଣ୍ଟ) ସମୁଦ୍ର ଆଡ଼କୁ ଲମ୍ବିଥିଲା । ଫେନଶୀର୍ଷ ତରଙ୍ଗମାଳା ବାଲିବନ୍ଧରେ ଧକ୍କାଖାଇ ଏଠିସେଠି ପଡ଼ିଥିବା କେତେକ ପ୍ରସ୍ତର ଉପରେ ସୀକରବିନ୍ଦୁ ବର୍ଷଣ କରୁଥିଲା । ଉତ୍ତରଆଡ଼କୁ ଗୁଡ଼ିଏ ସୁନ୍ଦର ବଣପୂର୍ଣ୍ଣ ଦ୍ୱୀପ । ଏହିସବୁ ଦ୍ୱୀପ ଓ କୂଳ ମଝିରେ ଆମର ଚିଟାଗଙ୍ଗ ଯିବା ରାସ୍ତା । ଏହି ଦ୍ୱୀପମାଳା ମଧ୍ୟରୁ ବୃହତ୍ତମଟିର ନାମାନୁସାରେ ଜଳପଥଟି ନାମିତ—ମହେଶଖାଲ୍ ।

ଆମକୁ ସେଠାରେ ଯଥେଷ୍ଟ ମାଛ ମିଳୁଥିଲା । ଓଏଷ୍ଟର, ଚିଙ୍ଗୁଡ଼ି, ଚାନ୍ଦି, ସୋଲ୍ ଏବଂ ସ୍କେଟ୍ ସବୁ ସଦ୍ୟଧାରା । ସାଗର କିଛି ବିକ୍ଷୁବ୍ଧ ରହୁଥିଲେ ମଧ୍ୟ ମୁକ୍ତ ପବନରେ ସେଠାକୁ ଯିବା ଓ ଫେରିବାଟାକୁ ଆମେ ଖୁବ୍ ଉପଭୋଗ କରୁଥିଲୁ; କାରଣ ଆମକୁ ନୌଚାଳନା ବେଶ୍ ଆସୁଥିଲା ।

ବଡ଼ଦିନ ଶାନ୍ତ ଭାବରେ କଟିଗଲା । ଅନେକଗୁଡ଼ିଏ ରୁକ୍ଷଦର୍ଶନ ଇଂରେଜ, ସ୍କଚ ଓ ଆଇରିଶ ଚାହାଚାଷୀ ପାଖରେ ଚା'ବଗିଚାମାନଙ୍କରୁ ଆସିଥିଲେ ଏବଂ କ୍ରିକେଟ ଖେଳିଲେ । ତା'ପରେ ବିରାଟ ରାତ୍ରି ଭୋଜନ-ବହୁ ପରିମାଣ ମଦ୍ୟପାନ ଓ ସଂଗୀତ ହେଲା । ପରଦିନ ସକାଳୁ ସେମାନେ ସେମାନଙ୍କ ଜଙ୍ଗଲ ଭିତରକୁ ଚାଲିଗଲେ ପୁଣି ଉତ୍କଟ ମଥାବ୍ୟଥା ନେଇ; କିନ୍ତୁ ଆନନ୍ଦରେ ଯେ କିଛିସମୟ କଟାଇଥିଲେ ଏହା ନିଶ୍ଚିତ ।

୧୮୭୯ ନବବର୍ଷ ଦିନ ମୁଁ ରାମକିଶୁ ଦତ୍ତ ନାମକ ଜଣେ ଦେଶୀୟ ବୃଦ୍ଧ ଭଦ୍ରବ୍ୟକ୍ତିଙ୍କଠାରୁ କେତୋଟି କବିତା ପାଇଲି । ସେ ଚିଟାଗଙ୍ଗରେ କବି ରୂପେ ସୁପରିଚିତ । ଜଣେ ଅତ୍ୟଧିକ ଆଗ୍ରହୀ ଲୋକ ବହୁ ଆଗେଇଯାଇ ତାଙ୍କୁ ବଙ୍ଗଳାର ବାଇରନ୍ ବୋଲି ନାମିତ କରିଥିଲା । ତାଙ୍କର ସବୁ ସାଙ୍ଗ କବିତାକୁ ଖୁବ୍ ପସନ୍ଦ କରନ୍ତି । ନିଜ ପ୍ରତିଭା ବିଷୟରେ ସେ ଏତେ ବେଶି ଆସ୍ଥାବାନ୍ ଯେ ବଡ଼ଲାଟ ଓ ବହୁ ଉଚ୍ଚପଦସ୍ଥ କର୍ମଚାରୀମାନଙ୍କ ପାଖକୁ ସେ ତାଙ୍କର ବଡ଼ ବଡ଼ କବିତାମାନ ପଠାନ୍ତି । ଏହିସବୁ ଭଦ୍ରସ୍ୱଭାବସମ୍ପନ୍ନ ଉଚ୍ଚପଦସ୍ଥ ବ୍ୟକ୍ତିମାନଙ୍କୁ ତାଙ୍କୁ ଉତ୍ତର ଦେଇ ତାଙ୍କ ସୁନ୍ଦର କବିତା ଲାଗି ଧନ୍ୟବାଦ ଦେଉଥିବାରୁ ସେମାନେ ଖୁବ୍ ପସନ୍ଦ କଲେ ବୋଲି ସେ ଦୃଢ଼ ବିଶ୍ୱାସ କରନ୍ତି । ସେ ନିମ୍ନପାହ୍ୟାର ଡାକ୍ତରୀ ସେବାସଂସ୍ଥାର ସଭ୍ୟ ଥିଲେ । ଏମାନେ ଖୁବ୍ ଆବଶ୍ୟକୀୟ ଶ୍ରେଣୀର ଏବଂ ଏମାନଙ୍କୁ ବିଭିନ୍ନ ସ୍ଥାନରେ ଥିବା ଡାକ୍ତରଖାନାର ଦାୟିତ୍ୱ ଦିଆଯାଉଥିଲା । ଅନେକ ବର୍ଷର କାର୍ଯ୍ୟପରେ ସେ ଭତ୍ତାସହ ଅବସର ନେଲେ ଏବଂ ନିଜ ସ୍ଥାନ ଚିଟାଗଙ୍ଗର ସବୁଠାରୁ ବେଶି ମ୍ୟାଲେରିଆ ପ୍ରପୀଡ଼ିତ ଅଞ୍ଚଳରେ ଆନନ୍ଦରେ ବାର୍ଦ୍ଧକ୍ୟ କଟାଇଲେ ଏବଂ ଇଂରାଜୀ କବିତା ବୋଲି ସେ ଯାହା ମନେ କରନ୍ତି, ତାହା ଲେଖିଲେ ।

ଏହି ଉପଲକ୍ଷେ ସେ ଯେଉଁ କବିତା ମୋ ପାଖକୁ ପଠାଇଥିଲେ, ତାହା ବଡ଼ ଖଣ୍ଡେ କାଗଜରେ ଡମ୍ଫାପଟା ଅକ୍ଷରପରି ସୁନ୍ଦର ଅକ୍ଷରରେ ଲେଖା; କାଗଜର ଧାରସବୁ ବହୁ ପ୍ରକାରେ ଅଙ୍କନ ଓ ରଙ୍ଗିନ୍ କରିଥିଲେ । ସେଥିପାଇଁ ବହୁ ସମୟ ଲାଗିଥିବ । ତାଙ୍କର ଉଦ୍ଦେଶ୍ୟ କ'ଣ ମୁଁ ଠିକ୍ ବୁଝିପାରିଲି ନାହିଁ । ତାଙ୍କୁ ଶେଷଥର ଦେଖିଲାବେଳେ ପ୍ରାୟ ପ୍ରୁସିଆ ଯୁଦ୍ଧ ସମ୍ପର୍କରେ କେତେ ହଜାର ଧାଡ଼ିର ଏକ କବିତା ଲେଖିଥିଲେ ଏବଂ ମୋତେ ପଢ଼ିବାକୁ ଦେଇଥିଲେ । ଦୁର୍ଭାଗ୍ୟବଶତଃ ଏ ବିରାଟ କାମ କରିବାକୁ ମୋର ସମୟ ନ ଥିଲା ।

୧୮୭୮-୭୯ର ଶୀତଦିନେ ସ୍ୱାଭାବିକ ପର୍ଯ୍ୟବେକ୍ଷଣ ଗସ୍ତ ଷ୍ଟିମରରେ ଯାଇ କରିବାକୁ ପଡ଼ିଲା । ବାସ୍ତବପକ୍ଷେ ପୂର୍ବବଙ୍ଗର ଅଧିକାଂଶ ଜାଗାକୁ ସ୍ଥଳଭାଗରେ ଯାତ୍ରା ଅସମ୍ଭବ ନ ହେଲେ ମଧ୍ୟ କଷ୍ଟକର । ଦେଶଟିଯାକ ନଦୀସବୁ ଜାଲ ଛନ୍ଦିଲାପରି, ସେଥିରୁ ଅଧିକାଂଶ ହେଉଛନ୍ତି ଗଭୀର, ପ୍ରଶସ୍ତ କୁଆରିଆ ନଦୀ । ଦେଶୀୟ ଲୋକେ ଅଧିକାଂଶ ସ୍ଥଳରେ ନୌକାରେ ଯାତାୟତ କରନ୍ତି । ବଡ଼ଗଛର ଗଣ୍ଡିକୁ ଖୋଳି କରାହୋଇଥିବା ଛୋଟ ପଣ୍ୟବାହୀ ନୌକା ସବୁରେ ସାଧାରଣତଃ ପରିବହନ ହୁଏ । ଯେଉଁଠାରେ ନଦୀ ନାହିଁ, ସେଠି ଅଛି ସନ୍ତସନ୍ତିଆ ପାଟ । ସେଠି ଯେତେ ଛୋଟ ଘରଟିଏ କରିବାକୁ ହେଲେ ମଧ୍ୟ ସେଥିପାଇଁ ଯଥେଷ୍ଟ ମାଟି ଆଣିବାକୁ ହେଲେ ଗୋଟିଏ ବଡ଼ ଗାତ କରିବାକୁ ହୁଏ । ସେଥିରୁ ହାଲୁକା ବାଲିଆ ମାଟି ଆଣି ପିଣ୍ଡିଭଳି କରାଯାଏ । ତା' ଉପରେ ନଡ଼ା ଓ ତଲେଇର ଘର ଠିଆ କରିବା ପାଇଁ ବାଉଁଶ ଖୁଣ୍ଟ ସବୁ ପୋତାଯାଏ । ସେଠାରେ ପୁଣି ଅଛି ଅସଂଖ୍ୟ ବଙ୍କେଇ ବଙ୍କେଇ ହୋଇ ଯାଉଥିବା ଅଣଓସାରିଆ ନାଳୀ । ଏଇସବୁ ଦେଇ ସନ୍ତସନ୍ତିଆ ପାଟର ଉଦ୍‌ବୃତ୍ତ ଜଳ ନଦୀ ମଧ୍ୟକୁ ଚାଲିଯାଏ । ଏଇସବୁ ନାଳୀ ଉପରେ ଛୋଟ ବାଉଁଶ ପୋଲ ସାହାଯ୍ୟରେ ପାର ଉତ୍ତାର ହୁଏ । କେତେଖଣ୍ଡ ବାଉଁଶ ଦୁଇକୂଳରେ ପୋତାଯାଏ ଏବଂ ନାଳୀ ମଝିଶଯ୍ୟାରେ ଗୋଟିଏ ବା ଦୁଇଟି ବାଉଁଶ ପୋତାଯାଏ । ପ୍ରତ୍ୟେକ ଯୋଡ଼ି ବାଉଁଶକୁ × ଭଙ୍ଗରେ ରଖାଯାଏ ଏବଂ ବାଉଁଶ ସବୁ ସିଧାଭାବରେ ଏହି × ଭଳି ଥିବା ବାଉଁଶ ଯୋଡ଼ିର ଯୋଡ଼ ଉପରେ ରଖିଦିଆଯାଏ । ଦେଶୀୟମାନେ ସେମାନଙ୍କ ଖାଲିପାଦରେ ଏଇ ଦୁର୍ବଳ ପୋଲ ଉପରେ ସହଜରେ ଯାଇପାରନ୍ତି; କିନ୍ତୁ ସଙ୍ଘା ବୋଲି କୁହାଯାଉଥିବା ଏହି ପୋଲ ବୁଟ୍‌ପିନ୍ଧା ୟୁରୋପୀୟଙ୍କ ପକ୍ଷରେ ପାରିହେବା ଦୁରୂହ । ତୁମକୁ ଘୋଡ଼ା ଉପରେ ପହଁରି କିମ୍ବା କାଦୁଅ ଭିତରେ ପଶି ଯିବାକୁ ପଡ଼ିବ । ସେ କାଦୁଅ ନରମ ଓ ଅଠାଳିଆ; ପୁଣି ସେଠାରେ କୁମ୍ଭୀର ଦେଖାଯାନ୍ତି । ତେଣୁ ସେ ସ୍ଥାନ ଆଦୌ ସୁଖକର ନୁହେଁ । ଏଇବାଟେ କାଠରେ ଖୋଳା ନୌକାରେ ଘଣ୍ଟା ଘଣ୍ଟାଧରି କୁଜାହୋଇ ବସି କେତେକ ଲୋକ ଯେପରି ଯାଆନ୍ତି, ତାହା ମଧ୍ୟ ଦୁଃଖଦାୟକ । ଟିକିଏ ହଲି ମଧ୍ୟ ପାରିବ ନାହିଁ, କାରଣ ଦୁଇ ତୀଖା ପାହାଡ଼ର ମଝିରେ ଯାଉଥିବାବେଳେ ଗଣ୍ଡରେ ଓଲଟି ପଡ଼ିବାର ଭୟ ଅଛି । ବାଉଁଶ ଓ ଅନ୍ୟାନ୍ୟ ଲତାର ଘନ ଆଚ୍ଛାଦନରେ ବାୟୁ ଓ ଆଲୋକ ରୁଦ୍ଧ ଥାଏ ଏବଂ ସେଥିରେ ଯେଉଁ ଗୁଳୁଗୁଳିଆ ଗରମ ବାମ୍ଫାରେ ନହିଁରେ ଦଂଶନକାରୀ କୀଟସବୁ ଆନନ୍ଦରେ ବଢ଼ନ୍ତି । ଗୋଟିଏ ସ୍ଥାନକୁ କୁହାଯାଏ ବନ୍ଦର ବନ । ଏହା ପର୍ବତମାଳାରେ ଗୋଟିଏ ଅଂଶରେ ଖୁଣ୍ଟି ବାଡ଼ ଦିଆଯାଇଥିବା ସ୍ଥଳ । ଜଙ୍ଗଲ ସଫାହୋଇ କେତୋଟି କୁଡ଼ିଆଘର ତିଆରି ହୋଇଛି ଓ ବାଡ଼ ଘେରା ହୋଇଛି । ଏହି ପାହାଡ଼ ତଳଦେଶରେ ବୋହୁଥିବା ସାଙ୍ଗୁନଦୀର ଉପତ୍ୟକା ଉପରେ ଲୁସାଇମାନେ ଆକ୍ରମଣ କରନ୍ତି । ଏହା କେବଳ ନଦୀବାଟ ଦେଇ ହୋଇପାରେ । ଜଣେ ଇଂରାଜୀ ଅଫିସରଙ୍କ ଅଧୀନରେ ଗୋଟିଏ ଛୋଟ ଗୁର୍ଖା ବାହିନୀ ଏ ସ୍ଥାନ ଜଗିଥାନ୍ତି । ସେ ଜଙ୍ଗଲରେ କିଛି ଖାଦ୍ୟ ମିଳେ ନାହିଁ । ସେମାନଙ୍କ ସମସ୍ତ ରସଦ ୬୦/୭୦ ମାଇଲ ଦୂର ଚିଟାଗଙ୍ଗରୁ ବୁଲେଇ ବଙ୍କେଇ ଯାଇଥିବା ସାଙ୍ଗୁନଦୀର ସେଇ ଶ୍ୱାସରୁଦ୍ଧକର, ଜ୍ୱରକାରୀ ପାଣିବାଟେ ଆଣିବାକୁ ପଡ଼େ । ଯୁବକ ଲେଫ୍‌ଟନାଣ୍ଟ (କାର୍ଣ୍ଣାକ)

ଜଣକ ଏହି ଅପ୍ରୀତିକର ସ୍ଥଳରେ ସେନାଧ୍ୟକ୍ଷ ଥିଲେ । ବହୁଦିନର ନିର୍ଜନତା ଓ କେତେ ମାସର କୁଖାଦ୍ୟ ଫଳରେ ସେ ଭୟଙ୍କର ଜ୍ୱର ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ । ସେମାନେ ତାଙ୍କୁ କାଠଖୋଳା ଡଙ୍ଗାରେ ପକେଇ ଯେତେଶୀଘ୍ର ପାରନ୍ତି ସାଙ୍ଗୁନଦୀ ବାଟେ ନେଇ ଆସିଲେ ମଧ୍ୟ ସେଇ ଭୟଙ୍କର ନଦୀରେ ତାଙ୍କୁ ଗୋଟିଏ ଦିନ ଓ ଗୋଟିଏ ରାତି କଟାଇବାକୁ ପଡ଼ିଲା । ଚିଟାଗଙ୍ଗରେ ଆମେ ଘର ପହଞ୍ଚିଲାବେଳକୁ ସେ ଯେ ପ୍ରଳାପ କରୁଥିବା ଅବସ୍ଥାରେ ଥିଲେ ଏଥିରେ ବିଚିତ୍ରତା କିଛି ନ ଥିଲା । ମୋର ସହୃଦୟା ପତ୍ନୀ ତାଙ୍କର ସଯତ୍ନ ସେବା କଲେ ଏବଂ ସେ ଉଠାଉଠି କରିବାକୁ ସମର୍ଥ ହେବାମାତ୍ରେ ସର୍ବପ୍ରଥମେ ପହଞ୍ଚିବା ବ୍ରିଟିଶ ଇଣ୍ଡିଆ ଷ୍ଟିମରରେ ତାଙ୍କୁ ବସାଇ ଦିଆଗଲା । ତାଙ୍କ ଜୀବନଟା ରକ୍ଷା ପାଇଗଲା । ଚିଟାଗଙ୍ଗର ଏ ଜ୍ୱର ଏତେ ଶୀଘ୍ର ମରଣାନ୍ତକ ହୋଇଯାଉଥିଲା ଯେ, ଯେଉଁ ଅଫିସର ଏଥିରେ ଆକ୍ରାନ୍ତ ହେଉଥିଲେ ତାଙ୍କୁ ଛୁଟି ଆଦେଶ ଆସିବାକୁ ଅପେକ୍ଷା ନ ରଖି ତାଙ୍କୁ ସାଙ୍ଗେ ସାଙ୍ଗେ ପଠାଇ ଦେବାକୁ ମୁଁ ସରକାରୀ ଅନୁମତି ଅଣାଇଥିଲି। ଏହି ଜ୍ୱର ସବୁସମୟରେ ମୁଣ୍ଡକୁ ଆକ୍ରମଣ କରେ ଏବଂ ଖୁବ୍ ପ୍ରଳାପ କରାଏ ।

ମୋର ସୌଭାଗ୍ୟ ଯେ ମୋତେ ବାରମ୍ବାର ଏପରି ସ୍ଥାନକୁ ଯିବାପାଇଁ ବାଧ ବାଧକତା ନ ଥିଲା । ଜଜ୍ ହିସାବରେ ମୋର ପ୍ରତିବର୍ଷ ମୁନସିଫ୍‌ମାନଙ୍କର କାର୍ଯ୍ୟର ତତ୍ତ୍ୱାବଧାନ କରିବା କଥା ଏବଂ ସେମାନେ ସବୁ ଦୂରଦୂରାନ୍ତରେ ଥିଲେ। କିନ୍ତୁ ଏ କାମକୁ ମୁଁ ହାଲୁକା ଭାବରେ ନେଉଥିଲି। ସହକାରୀ ପରି ମୋର ଜଣେ ଅତିରିକ୍ତ ଜଜ୍ ଥିଲେ । ତାଙ୍କ ଉପରେ ମୁଁ ଖୋଲାଖୋଲି ବିନା ଦ୍ୱିଧାରେ ଯେତେ ଇଚ୍ଛା ସେତେ କାମ ଛାଡ଼ି ଦେଉଥିଲି ଏବଂ ସେ ମୁନସିଫ୍‌ମାନଙ୍କ କାର୍ଯ୍ୟର ତଦାରଖ କରିବା ପାଇଁ ସମୟେ ସମୟେ ଗସ୍ତରେ ଯିବାକୁ ଦ୍ୱିଧା କରୁ ନ ଥିଲେ । ଏସବୁ ତଦାରଖ୍ ଏକ ଫାର୍ସ ପରି । ମୁନସିଫ୍ ହେଉଛି ବଙ୍ଗଳାର ସର୍ବନିମ୍ନ ପାହ୍ୟାର ବିଚାରପତି ଉପାଧି । ସେ ସରଳ ଓ ଅଳ୍ପଅର୍ଥ ସଂପୃକ୍ତ ସିଭିଲ୍ ମକଦ୍ଦମାର ବିଚାର କରି ପାରୁଥିଲେ । ଦେଶଯାକ ପ୍ରତ୍ୟେକ ଜିଲ୍ଲାରେ ଚାରିଟି କିମ୍ବା ପାଞ୍ଚଟି କରି ଏହିପରି ଛୋଟ ଛୋଟ ବିଚାରାଳୟମାନ ଛାଇଥିଲା ଯେପରିକି ପ୍ରତ୍ୟେକ ଦ୍ୱାରରେ ନ୍ୟାୟ ପହଞ୍ଚାଇ ଦିଆଯାଇପାରେ । ଯେଉଁ ଦେଶରେ ମାମଲା କରିବା ଲୋକମାନଙ୍କର ପ୍ରଧାନ ଆମୋଦ ଓ ଆନନ୍ଦ ସେଠାରେ ଏ ବ୍ୟବସ୍ଥା ଏକ ମହତ୍ ଆଶୀର୍ବାଦ ପରି । ବଙ୍ଗଳାରେ ସବୁଠାରୁ ମାମଲବାଜ ଚିଟାଗଙ୍ଗ ଜିଲ୍ଲାରେ ଏହିପରି ବାରଟା ବିଚାରାଳୟ ଚଳୁଥିଲା ! ସହରଠାରୁ ପ୍ରାୟ ବାରମାଇଲ ଉପରେ ପାହାଡ଼ର ଏକ ସୁନ୍ଦର ସ୍ଥଳରେ ଚିଟାଗଙ୍ଗ ନଦୀତୀରରେ ଏଥିରେ ଗୋଟିଏ ଅବସ୍ଥିତ—ତଳେଇ କାନ୍ଥ ଓ ନଡ଼ା ଛପର ଥାଇ ଗୋଟିଏ ଗୋଟିଏ ଛୋଟ ଚତୁଷ୍କୋଣ ଘରର ସମଷ୍ଟି। ଏହାର ମଝିଘରେ ଜଜ୍‌ଙ୍କ ବେଞ୍ଚ, ସାକ୍ଷୀମାନଙ୍କ ସ୍ଥାନ 'ସ୍ଥାନୀୟ ବାର' (ଓକିଲମାନେ ନିଜକୁ ସେହିପରି କହିବାକୁ ଭଲପାଆନ୍ତି) ଥିଲା ଏକ କଡ଼ ଘରଗୁଡ଼ିକ ଥିଲା କିରାଣି ଓ ଦଲିଲପତ୍ର ପାଇଁ । ମୁଁ ଯାଇଁ ମୁନସିଫ୍‌ଙ୍କ କଡ଼ ଚୌକିରେ ବସିଲି । ସେ ଜଣେ କର୍ମତତ୍ପର ବଙ୍ଗାଳୀ ଯୁବକ । ଅଳ୍ପଦିନ ତଳେ କଲିକତା ବିଶ୍ୱବିଦ୍ୟାଳୟରୁ ବି.ଏଲ.ଉପାଧି ପାଇ, ଓକିଲ ଭାବରେ କିଛିଦିନ କାମ କରିବା ପରେ ସେ ବିଚାର କ୍ଷେତ୍ରକୁ ଉନ୍ନୀତ ହୋଇଥିଲେ । ମୋର କାମ ହେଉଛି ବିଚାର ହେଉଥିବା ଗୋଟିଏ ମକଦ୍ଦମା ଶୁଣିବା ଏବଂ ତାହା ଠିକ୍ ବିଚାର ହେଉଛି କି ନା ତାହା ହାଇକୋର୍ଟ୍‌କୁ ଜଣାଇବା । ଅବଶ୍ୟ ମୁନସିଫ୍ ଏବଂ ତାଙ୍କ 'ବାର' ଏ ସଂପର୍କରେ ଆଗରୁ ସଚେତନ ଥିଲେ । ସବୁ ଦେଶୀୟମାନଙ୍କ ପରି ସେମାନେ ମଧ୍ୟ ଅଭିନୟରେ ଆଜନ୍ମ ଦକ୍ଷ ଏବଂ ମୋ ସୁନଜରକୁ ଆଣିବା ପାଇଁ ଗୋଟିଏ ସୁନ୍ଦର ମାମଲା ଠିଆ କରାଇ ଦେଇଥିଲେ। ଆଇନଗତ ବ୍ୟବସ୍ଥା ଓ ରୀତିସବୁ ଏତେ କଡ଼ାକଡ଼ି ପାଳିତ ହେଲା, ବିଚାର ଏତେ ସଠିକ୍ ପରିଚାଳିତ ହେଲା, ସାକ୍ଷୀମାନଙ୍କୁ

ଏତେ ଜୀବନ୍ତ ଓ ନିରୀକ୍ଷଣାତ୍ମକ ଭାବରେ ଜେରା କରାଗଲା ଓ ଓକିଲମାନେ ଜ୍ଞାନୀ ଓ ପଣ୍ଡିତମାନଙ୍କର ପ୍ରତିଷ୍ଠିତ ବହୁ ଉକ୍ତି ଓ ଉଦ୍ଧୃତି ପ୍ରୟୋଗ କରି ଏତେ ଜ୍ଞାନଗର୍ଭକ ବାଗ୍ମିତା ପ୍ରକାଶ କଲେ ଯେ ମୁଁ ସଂପୂର୍ଣ୍ଣ ଅଭିଭୂତ ହୋଇପଡ଼ିଲି । ମୁନସିଫ୍ ଏବଂ ଜଣେ ଓକିଲ ଆଇନର ଶେଷ ପରୀକ୍ଷାପାଇଁ ପ୍ରସ୍ତୁତ ହେଉଥିଲାବେଳେ ଯେତେ ଜ୍ଞାନ ସଂଗ୍ରହ କରିଥିଲେ ସବୁ ଅଜାଡ଼ିଦେଇ ଆଇନ୍‌ର ଗୋଟିଏ ଖିଅ ଧରି ବହୁ ଯୁକ୍ତି କଲେ । ଶେଷରେ ମୁନସିଫ୍ ଗୁରୁଗମ୍ଭୀରମୟ ବିଚାରର ଏକ ଲମ୍ବା ରାୟ ଦେଲେ; ବହୁ ହଜାର ଟଙ୍କା ସଂପୃକ୍ତ ମକଦ୍ଦମାରେ ମଧ୍ୟ ଏତେ ଗାମ୍ଭୀର୍ଯ୍ୟ ଦେଖାଯାଏ ନାହିଁ । ସେ ସ୍ଥଳରେ ମୁଁ ବୁଝିଲି ତାହା ମାତ୍ର ଦୁଇଟଙ୍କା ଚାରିଅଣାରେ ! ଅବଶ୍ୟ, ବିଶେଷ କରି ମୋର ସୁବିଧା ପାଇଁ, ଜ୍ଞାନର ଯେଉଁ ପ୍ରଦର୍ଶନ କରାଗଲା ସେଥିପାଇଁ ଆଗରୁ ଯତ୍ନରେ ବହୁ ମଡ଼ାଣ ହୋଇଥିଲା, ସେଇଟାହିଁ ଥିଲା ଆମୋଦଦାୟକ । ମୁଁ ଯଥୋପଯୁକ୍ତ ରୀତିରେ ମୋର କୃତଜ୍ଞତା ଜଣାଇଲି ଏବଂ ଆମେ ବନ୍ଧୁ ଭାବରେ ବିଦାୟ ନେଲୁ ।

ପ୍ରାୟ ଏହି ସମୟରେ ବିଚାରପତି ଭାବରେ ଗୋଟିଏ ଇଚ୍ଛାପତ୍ର (Will) ର ନକଲ ଦେବାକୁ ଯାଇ ମୋତେ ଏପରି ଅପୂର୍ବ ଧରଣର ଏକ ମକଦ୍ଦମା ବିଚାର କରିବାକୁ ପଡ଼ିଲା ଯେଉଁଥିରୁ ଚିଟାଗଙ୍ଗର ଅର୍ଦ୍ଧପର୍ତ୍ତୁଗୀଜୀୟ ସମାଜର ସ୍ୱଭାବ ଚରିତ୍ର ସଂପର୍କରେ ନିଖୁଣ ଚିତ୍ର ମିଳିବ । ସେଥିପାଇଁ ତାହା ଏଠି ଉଲ୍ଲେଖ କଲି । ନାମଗୁଡ଼ିକ ଅବଶ୍ୟ କାଳ୍ପନିକ, କାରଣ ପ୍ରକୃତ ଲୋକେ ଏ ପର୍ଯ୍ୟନ୍ତ ବଞ୍ଚିଛନ୍ତି ଏବଂ ବଙ୍ଗଳାରେ ସୁପରିଚିତ । ଜଣେ ବ୍ୟକ୍ତି ଯାହାକୁ ମୁଁ ଓ୍ୟାଲେସ୍ ବୋଲି କହିଚି (ପ୍ରକୃତରେ ସେ ଜଣେ ପ୍ରସିଦ୍ଧ ସ୍କଟ ନାମଧାରୀ, ଅବଶ୍ୟ ଯା ମଧ୍ୟକୁ ସେ କିପରି ତାହା ମୋ ପକ୍ଷରେ ଏକ ରହସ୍ୟ) ଖୁବ୍ କୃଷ୍ଣକାୟ, ବର୍ଣ୍ଣସଙ୍କର । ତିରିଶବର୍ଷରୁ ଅଧିକ କାଳ ଡେପୁଟି କଲେକ୍ଟର ଥିଲେ ଏବଂ କୌଣସି ଉପାୟରେ—ଯାହା ବିଷୟରେ ବିଶେଷ ଅନୁସନ୍ଧାନ ନ କରିବା ଭଲ—ଯଥେଷ୍ଟ ଧନ ସଂଗ୍ରହ କରିଥିଲେ । ଏହି ଧନକୁ ସେ ଚିଟାଗଙ୍ଗ ଜିଲ୍ଲାର ଦୁଇଟି ଉନ୍ନତ ଏବଂ ଲାଭଦାୟକ ଚା ବଗିଚା କିଣି ଖଟାଇଲେ । ଏସବୁ ସେ ତାଙ୍କର ନାବାଳକ ପୁଅ ହାତରେ ଛାଡ଼ି ଚାଲିଗଲେ । ସର୍ତ୍ତ ଥିଲା ଯେ ସେ ପରିବାରର ଅନ୍ୟମାନଙ୍କୁ ଯଥା ବୃଦ୍ଧ ଓ ଓ୍ୟାଲେସଙ୍କ ବିଧବା ସ୍ତ୍ରୀ ଏବଂ ଦୁଇ କିମ୍ବା ତିନୋଟି ପିଲାଙ୍କୁ ପ୍ରତିପୋଷଣ କରିବ । ସେ ତାଙ୍କପରି ଆଉଜଣେ ବୃଦ୍ଧ ବର୍ଣ୍ଣସଙ୍କର ଡେପୁଟି କଲେକ୍ଟର ବନ୍ଧୁଙ୍କୁ ତାଙ୍କ ସମ୍ପତ୍ତିର ନିର୍ବାହକ ଓ ପରିଚାଳକରୂପେ ନିଯୁକ୍ତ କଲେ, ଯାହାଙ୍କୁ ମୁଁ ମ୍ୟାସନ ବୋଲି କହୁଚି । ଇଚ୍ଛାପତ୍ରରେ ସେ ତାଙ୍କ ପୁଅକୁ ମ୍ୟାସନଙ୍କ ପରାମର୍ଶ ମାନି ପ୍ରତ୍ୟେକ ବିଷୟରେ ତାଙ୍କ ଦ୍ୱାରା ପରିଚାଳିତ ହେବାପାଇଁ ନିର୍ଦ୍ଦେଶ ଦେଇ ଯାଇଥିଲେ । ମକଦ୍ଦମାଟି ଆସିବାର କିଛିଦିନ ପୂର୍ବରୁ ଓ୍ୟାଲେସ୍ ମରିଯାଇଥିଲେ । ବିଧବା ଓ ପିଲାମାନେ ମ୍ୟାସନ୍‌ଙ୍କ ଉପରେ ସବୁ ଛାଡ଼ି ଦେଇଥିଲେ । ସେ ସମ୍ପତ୍ତି ପରିଚାଳନା କରୁଥିଲେ ଏବଂ ପରିବାରକୁ ଅତି ଉଦାର ଭାବରେ ନ ହେଲେ ମଧ୍ୟ ଯଥେଷ୍ଟ ପରିମାଣରେ ପୋଷଣ ଖର୍ଚ୍ଚ ଦେଉଥିଲେ । ସେ ସେହିସବୁ ଅର୍ଥ କ'ଣ କଲେ ଜଣାଗଲା ନାହିଁ । କାରଣ ଯେଉଁ ହିସାବ ଫର୍ଦ୍ଦ ସେ ଦାଖଲ କଲେ ତାହା ଥିଲା ଅତ୍ୟନ୍ତ ଦୁର୍ବୋଧ । ଏପରି ସେ ଇଚ୍ଛାକରି କରିଥିଲେ ବୋଲି ଅନ୍ୟପକ୍ଷ କହିଲେ, ତାହାହିଁ ବୋଧହୁଏ ଠିକ୍ । କେତେବର୍ଷ ପର୍ଯ୍ୟନ୍ତ ଅବସ୍ଥା ଏହିପରି ଚାଲିଲା । ଚା ବଗିଚାରେ ଥିବା ଆରାମପ୍ରଦ ବଙ୍ଗଳାଟି ଛାଡ଼ି ଚିଟାଗଙ୍ଗର ପର୍ତ୍ତୁଗୀଜ ବସତିରେ ଥିବା ଦଦରା ମାଟି ଘରକୁ ଚାଲିଯିବା ପାଇଁ ମ୍ୟାସନ ସେ ବିଧବାଙ୍କୁ ପ୍ରବର୍ତ୍ତାଇଲେ । ଅଫିସ କାମରେ ତାଙ୍କୁ ଚିଟାଗଙ୍ଗରେ ରହିଯିବାକୁ ପଡୁଥିବାରୁ ସେ ସେଠାରେ ସେମାନଙ୍କର ଅଧିକ ଯତ୍ନ ନେଇପାରିବେ ବୋଲି ଛଳନା କରି ଏପରି କହିଥିଲେ । ଅବଶ୍ୟ ତାଙ୍କର ପ୍ରକୃତ ଉଦ୍ଦେଶ୍ୟ ଥିଲା ଚା ବଗିଚାରେ ପରିବାରର ଦୃଷ୍ଟିର ଅଗୋଚରରେ ତାଙ୍କ ଦେଖିଲା କାମ କରିଯିବେ । ବଡ଼ପୁଅ ଦୁଇଜଣ ଯା ମଧ୍ୟରେ ସାବାଳକ ହୋଇଗଲେ । ଜ୍ୟେଷ୍ଠ ସନ୍ତାନ ଏଡ଼ିଥ୍

ଥିଲା ଜଣେ କୃଷ୍ଣକେଶା ସୁନ୍ଦରୀ ବାଳିକା । ସେ କେତେକ ଦେଶୀୟ ଓ ପର୍ତ୍ତୁଗୀଜ ଦୁଷ୍ଟରିତ୍ରଙ୍କ ଶଯ୍ୟାସଙ୍ଗିନୀ ହୋଇ ପତିତା ହୋଇ ପଡ଼ିଲା । (ସେ ସ୍ଥାନରେ ଥିବା ପ୍ରାୟ ସବୁ ୟୁରୋପୀୟଙ୍କୁ ମଧ୍ୟ ସେ ତା'ର ଅନୁକମ୍ପା ପ୍ରଦର୍ଶନ କରିଛି ବୋଲି ଗର୍ବ କରୁଥିଲା !) ଏବଂ ଫ୍ରେସର ନାମକ ଜଣେ ଦୁଃସାହସୀ, ନୀତିହୀନ ସ୍କଟୀୟ ବ୍ୟକ୍ତିର ରକ୍ଷିତା ହୋଇଗଲା । ସେ ବ୍ୟକ୍ତି ଅନେକ ଉପାୟରେ ଓ୍ୟାଲେସଙ୍କ ବଗିଚା ନିକଟରେ ଏକ ବଗିଚା ସାଙ୍ଗକୁ ଜିଲ୍ଲାରେ ଅନେକ ସମ୍ପତ୍ତି କରିଥିଲା । ଫ୍ରେସର, ମ୍ୟାସନ ଉପରେ ଆଖି ରଖିଥାଏ ଏବଂ ତା'ର କାମସବୁ ମଧ୍ୟ ଜଗିଥାଏ; କିନ୍ତୁ ଠିକ୍ ସମୟକୁ ଚାକିରହି ମୁହଁ ବନ୍ଦ କରିଥାଏ । ଏଡ଼ିଥ୍ ସହ ତା'ର ସମ୍ପର୍କକୁ ଘୋଡ଼େଇବାକୁ ଯାଇ ସେ ତାହାକୁ ପେରେରା ନାମକ ଜଣେ ପର୍ତ୍ତୁଗୀଜ ନାବିକ ସହ ବିବାହ କରାଇଦେଲା ଏବଂ ତାକୁ ସାଙ୍ଗେ ସାଙ୍ଗେ ବ୍ୟବସାୟ ଉଦ୍ଦେଶ୍ୟରେ ଆକ୍ୟାବକୁ ପଠାଇଦେଲା । ଏଡ଼ିଥ୍, ଶ୍ରୀମତୀ, ପେରେରା ହୋଇ ସ୍ୱାମୀ ଘରେ ରହିଲା ଯେଉଁଠିକୁ ଫ୍ରେସରର ଥାଏ ଅବାଧ ଗତି । ତା' ଅନୁପସ୍ଥିତିରେ ଏଡ଼ିଥ୍, ତା' ନିକଟକୁ ଢଳୁଥିବା ସବୁ ଲୋକଙ୍କୁ ଅନୁଗ୍ରହ କରିଥିଲା ବୋଲି ପରେ ସ୍ୱୀକାର କଲା । ପେରେରାକୁ ଅବଶ୍ୟ ଦୂରରେ ରହିବାପାଇଁ ପଇସା ଦିଆହେଉଥିଲା । ଦୁର୍ଭାଗ୍ୟବଶତଃ ଅନ୍ୟ ଏକ ଲୋକର ଦସ୍ତଖତ ଜାଲ କରିଥିବାରୁ ଅକ୍ୟାବ ଜେଲ୍‌ରେ ତାକୁ ଦୁଇବର୍ଷ କଟାଇବାକୁ ପଡ଼ିଲା । ତା'ଅନୁପସ୍ଥିତିରେ ସୁଯୋଗ ଜୁଟିଗଲା। କିନ୍ତୁ ଓ୍ୱାଶିଂଟନ ପେରେରା ବୋଲି ତା'ର ଗୋଟାଏ ଭାଇ ଥିଲା—ଛୋଟ କଳାମାଙ୍କଡ଼ ପରି, ଅନେକ ପରିମାଣରେ ମୁଗ୍ ପରି ଚେହେରା । ଏ ଲୋକଟା ନିଜ ଭାଇପାଇଁ ଏ ସମସ୍ତଙ୍କ ବିଷୟରେ ଗୁପ୍ତ ଖବର ସଂଗ୍ରହ କରୁଥିଲା ଏବଂ ପରେ ଜଣାଗଲା ଯେ ଏଡ଼ିଥ୍ ଏତେ ଲୋକଙ୍କ ସହ ଘନିଷ୍ଠତା ରଖିଥିଲେ ମଧ୍ୟ ମ୍ୟାସନ କିମ୍ବା ଫ୍ରେସର ବା ଅନ୍ୟ କେହି ଯେ ତାକୁ ତା' ସମ୍ପତ୍ତିର ଅଂଶରୁ ବଞ୍ଚିତ କରୁଛନ୍ତି, ତାହା ଜାଣି ନ ଥିଲା । ଅବଶ୍ୟ ଅଧାମୁଗ୍ ଓ୍ୟାଶିଂଟନ ତାହା ବଗିଚାର ସବୁ ମୁଗ୍ ଓ ବଙ୍ଗାଳୀ ଚାକିରିଆଙ୍କ ସାଙ୍ଗେ ସଦ୍‌ଭାବ ରଖିଥିଲା । ପୁଅ ହେନେରୀ ଓ୍ୟାଲେସ ଜଣେ ରୁଗ୍‌ଣ ଯୁବକ । ସେ ଭଉଣୀପରି ଲମ୍ପଟ ଓ ତା' ସାଙ୍ଗକୁ ମଦତି ଓ ଜୁଆଡ଼ି । ମ୍ୟାସନ ତାକୁ ମଉଜ କରିବା ପାଇଁ ଟଙ୍କା ଦେଉଥିଲା, ତା'ଠାରୁ ପ୍ରତ୍ୟେକ ଟଙ୍କାର ରସିଦ ନେଉଥିଲା ଏବଂ ମା ଓ ଭଉଣୀ ଆଗରେ ଏକଥା ଯେପରି ସେ ପ୍ରକାଶ ନ କରେ, ସେ ବିଷୟରେ ମଧ୍ୟ ଏ ଦୁର୍ବଳମନା ବାଳକକୁ ବାଧ୍ୟ କରିଥିଲା । ସାବାଳକ ହେବାମାତ୍ରେ ମ୍ୟାସନ ତା' ପିତାର ଇଚ୍ଛାପତ୍ର ଅନୁଯାୟୀ ତାକୁ ତା' ପରିବାରକୁ ତା' ବଗିଚା ଫେରାଇ ଦେଲା; କିନ୍ତୁ ତା' ସଙ୍ଗେ ସଙ୍ଗେ ତା' ବଗିଚା ପରିଚାଳନା ପାଇଁ ମ୍ୟାସନ କରିଥିବା ଖର୍ଚ୍ଚର ଏକ ଲମ୍ବା ହିସାବ ଫର୍ଦ୍ଦ ଦେଲା। ସେ ଯୁବକଟି ଅତି ସହଜରେ ଏକା ସଙ୍ଗେ ଦୁଇଟି ଦଲିଲରେ ଦସ୍ତଖତ କରିବାପାଇଁ ରାଜି ହୋଇଗଲା—ଗୋଟିଏ ହେଉଛି ଖର୍ଚ୍ଚର ପରିଶୋଧ ପାଇଁ ବଗିଚାଟିକୁ ମ୍ୟାସନଙ୍କୁ ବନ୍ଧାଦେବା ଏବଂ ଅନ୍ୟଟି ମ୍ୟାସନକୁ ତା' ସମ୍ପତ୍ତିର ମ୍ୟାନେଜର ରୂପେ ନିଯୁକ୍ତି ଦେବା । ହେନେରୀ ଓ୍ୱାଲେସ ନାବାଳକ ଥିବାବେଳେ ମ୍ୟାସନ ବଗିଚାକୁ ବନ୍ଧାରଖି ଅନେକ କରଜ କରିଥିଲା ଏବଂ ତାକୁ ଏସବୁ ଦଲିଲରେ ଦସ୍ତଖତ କରିବାକୁ ପ୍ରବର୍ତ୍ତାଇ ଥିଲା; ଫଳରେ ସେ ନିଜେ ଏହି ସବୁ ଅର୍ଥପାଇଁ ଦାୟୀ ହୋଇଗଲା। ଫ୍ରେସର ଏବଂ ଏଡ଼ିଥ୍ ଓ୍ୟାଶିଂଟନ ଓ ଅନ୍ୟ ଗୁପ୍ତଚରମାନଙ୍କ ଜରିଆରେ ଏ ସମସ୍ତ କାମ ଜାଣିଗଲେ; ଅବଶ୍ୟ ଫ୍ରେସର ନିଜେ ଏ ସମସ୍ତ ଋଣ କିଣି ନେଇଥିଲା ଏବଂ ନିଜର ଦେଶୀୟ କିରାଣି ନାମରେ ରଖି ଦେଇଥିଲା ।

ତା'ପରେ ଆସିଲା ଦୁର୍ବିପାକ । ହେନେରୀ ଓ୍ୱାଲେସ ରୋଗରେ ପଡ଼ିଲା। 'ସୁରାରାକ୍ଷସ ତା'ର କାମ ଦେଖାଇଲା । ତା'ର ଅନେକ ପ୍ରକାର ରୋଗ ଥିଲା ଏବଂ ତା' ସଂଗକୁ ଥିଲା ତା'ର ବର୍ଣ୍ଣସଙ୍କରସୁଲଭ ଦୁର୍ବଳ ଶରୀର । ମ୍ୟାସନ ଭୟତ୍ରସ୍ତ ହୋଇପଡ଼ିଲା ଏବଂ କାଳକ୍ଷେପ ନ କରି

ହେନେରୀକୁ ଏକ ଇଚ୍ଛାପତ୍ର କରିବାପାଇଁ ପ୍ରବର୍ତ୍ତାଇଲା । ସେଇ ଟୋକାର ଶଯ୍ୟା ପାଖରେ ବସି ସେ ଏହି ବିଷୟରେ ଏବଂ ସଂପତ୍ତିକୁ ବିକ୍ରୟ କରିବା ବିଷୟରେ ସୂଚାଇ ଦେଲା ଏବଂ ଟୋକାର ମନୋମତ ହେଲାଭଳି ଚିକିନିଖି ସବୁ ବିଷୟ ଲେଖିଲା । ତା'ପରେ ସେ କାଗଜକୁ ଶୁଦ୍ଧଭାବରେ ଉତାରିବାପାଇଁ ଘରକୁ ନେଲା ଏବଂ ଉତାରିସାରି ଦୁଇଜଣ ଦେଶୀ କିରାଣିଙ୍କ ହାତରେ ହେନେରୀର ଦସ୍ତଖତ ପାଇଁ ପଠାଇଲା । ସେମାନେ କହନ୍ତି ଯେ ହେନେରୀ ଏଥିରେ ଦସ୍ତଖତ କଲା; କିନ୍ତୁ ମ୍ୟାସନ ପାଖକୁ ଫେରେଇ ନ ଦେଇ ଲଫାଫାଟିଏ ମଗାଇଲା । ଇଚ୍ଛାପତ୍ରଟି ଲଫାଫାରେ ମୁଡି ନିଜ ତକିଆ ତଳେ ରଖିଲା ଏବଂ ତାହା ଯେପରି କେହି ନ ନିଅନ୍ତି ସେ ସମ୍ପର୍କରେ ତା' ସେବାରେ ନିଯୁକ୍ତ ଦୁଇଜଣ ଦେଶୀୟ ଭୃତ୍ୟଙ୍କୁ କଡ଼ା ନିର୍ଦ୍ଦେଶ ଦେଲା । ତା'ର ବନ୍ଧୁବାନ୍ଧବମାନେ ଯେତେବେଳେ ଶୁଣିଲେ ଯେ ସେ ବେମାର ପଡ଼ିଛି ଏବଂ ମରିଯାଇ ପାରେ ସେମାନେ ଶେଷ ଦର୍ଶନ ପାଇଁ ତା' ପାଖକୁ ଆସିଲେ । ଏ ସବୁ ଘଟଣା ନିଜ ଆଖିରେ ଦେଖିଥିବା ଜଣେ ସାକ୍ଷୀର ବର୍ଣ୍ଣନା ଥିଲା ଭୟଙ୍କର । ଗୋଟିଏ କୋଠରିରେ ଏଡ଼ିଥ୍ ତା'ର ଜଣେ ଦୁଇଜଣ ପୁରୁଷବନ୍ଧୁଙ୍କ ସହ ମଦ ପିଉଥିଲା, ତାସ୍ ଖେଳୁଥିଲା ଆଉ କଳି କରୁଥିଲା । ଅନ୍ୟ ଘରେ ବୃଦ୍ଧା ମାଆ କାନ୍ଦୁଥିଲେ, ପ୍ରାର୍ଥନା କରୁଥିଲେ । ପାଖ ଘରେ ଥିଲେ ଧର୍ମଯାଜକ ଓ କେତେକ ଖ୍ରୀଷ୍ଟ ସନ୍ନ୍ୟାସିନୀ । ଏଡ଼ିଥ୍ କହିଲା ଯେ କାଳେ ସେ ଟୋକା ଭୟ କରିବ ସେଥିପାଇଁ ସେମାନଙ୍କୁ ତା' ପାଖକୁ ଛଡ଼ାନଯାଉ । ଭିତରେ ଗୋଟିଏ ଛୋଟ ଘରେ ଗୋଟିଏ ଖଟ ଓ କେତେକ ପାତ୍ର ଛଡ଼ା ଅନ୍ୟ କିଛି ଆସବାବ୍ ନ ଥିଲା । ସେଇଠି ଭୟଭୀତ ଗୁଡ଼ାଏ ଦେଶୀ ଚାକରମାନଙ୍କ ଘେର ଭିତରେ ଶୋଇଥିଲା ବିଚରା ହେନେରୀ । ତା'ର ଥିଲା ନିମୋନିଆଁ ଓ ଆଉ କେତେକ ଉତ୍କଟ ନାମହୀନ ରୋଗ ଏବଂ ତା' ସଙ୍ଗକୁ ଥରିଥରି ପ୍ରଳାପ କରୁଥିଲା, ଭୟ ଓ ଯନ୍ତ୍ରଣାରେ ଅସ୍ପଷ୍ଟ ଚିତ୍କାର କରି ବାଉଳି ହେଉଥିବା ବେଳେ ଜଣେ ଅଜ୍ଞ ଦେଶୀ ଡାକ୍ତର ଦ୍ୱାରା ତାର ଚିକିତ୍ସା ହେଉଥିଲା; ତା' ପାଇଁ ଧର୍ମଯାଜକଙ୍କ ଧର୍ମକର୍ମ ମଧ ମନା କରାଗଲା, ଯାହାକି ରୋମାନ କ୍ୟାଥଲିକ ଭାବରେ ତା'ର ନିତାନ୍ତ ଆବଶ୍ୟକ ଥିଲା । ଏହିପରି କେତେ ଘଣ୍ଟା ସେ ବଞ୍ଚିରହି ମରିଗଲା । ମରିଯିବା ମାତ୍ରେ ତା' ଇଚ୍ଛାପତ୍ରଟିକୁ ପାଇବାପାଇଁ ସବୁ ବନ୍ଧୁବାନ୍ଧବ ତା'ପାଖକୁ ଧାଇଁଗଲେ; କିନ୍ତୁ ଇଚ୍ଛାପତ୍ରଟି ନ ଥିଲା !

ଚାକରମାନେ କହିଲେ ଯେ ସେମାନେ ଏ ବିଷୟରେ କିଛି ଜାଣନ୍ତି ନାହିଁ । ଯେତେ ଖୋଜାଖୋଜି କଲେ ମଧ ତାହା ମିଳିଲା ନାହିଁ । ତା'ପରେ ମ୍ୟାସନ କୌଣସି ଆଇନର ଏକ ଧାରା ଅନୁଯାୟୀ ଗୋଟାଏ ମୂଳ ଲେଖାକାଗଜ ପେଶ୍ କରି ତାହାର ସରକାରୀ ନକଲ ପାଇଁ ମୋତେ ପ୍ରାର୍ଥନା କଲା । ଏଡ଼ିଥ୍ ବିରୋଧ କଲା ଏବଂ ମକଦ୍ଦମା ଲଢ଼ିବାପାଇଁ (ଅବଶ୍ୟ ଫ୍ରେସର ଦେଇଥିବା ଅର୍ଥରେ) କଲିକତାରୁ ବାରିଷ୍ଟର ଅଣାଇଲା । ଇଚ୍ଛାପତ୍ର ନ ମିଳିଲେ ବି ସେ ତା'ର ମା ଓ ଭଉଣୀ ଥିଲେ ଉତ୍ତରାଧିକାରୀ ।

ଏହି ମକଦ୍ଦମା ବହୁ ଲୋକଙ୍କ ଦୃଷ୍ଟି ଆକର୍ଷଣ କଲା । ମକଦ୍ଦମା ଚାଲିଥିବା ତିନିଦିନ ଯାକ ମୋର ବିଚାରକକ୍ଷ ଲୋକାରଣ୍ୟ ହୋଇଗଲା । ଆମେ ମ୍ୟାସନକୁ ଗୋଟାଏ ଦିନ ସାକ୍ଷୀ ଖୁଆଡ଼ରେ ଠିଆ କରାଇଲୁ । ସେ ଜଣେ ଚର୍ବିଳ, ମୋଟା, କଳା, ଚେହେରାର ଲୋକ ଏବଂ ସେଦିନ ଅପରପକ୍ଷର ଓକିଲ ତା'ଅବସ୍ଥାକୁ ଶୋଚନୀୟ କରିଦେଲେ । ସେଇ ମୂଳ ନକଲଟି ଯେତେବେଳେ ବିଚାରାଳୟରେ ପଢ଼ାଗଲା ସେଥିରେ ଉଲ୍ଲେଖ ଥିଲା ଯେ ଇଚ୍ଛାପତ୍ରକାରୀ ତା'ର ପିତାର ଇଚ୍ଛାନୁଯାୟୀ ମ୍ୟାସନକୁ ସମ୍ପତ୍ତିର ପରିଚାଳନା ଦାୟିତ୍ୱ ଦେଇଥିଲା । ମ୍ୟାସନ ବିଶ୍ୱାସ ଓ ବୁଦ୍ଧିମତ୍ତାର ସହ ତା'ର କର୍ତ୍ତବ୍ୟ କରିଛି; କିନ୍ତୁ ପାଗ ଖରାପ ହେତୁ ବଗିଚାର ଖୁବ୍ କ୍ଷତି ହେଲା । ମ୍ୟାସନ ନିଜ ପକେଟରୁ ତା'ର ପୂରଣ କଲା । ତା'ଛଡ଼ା ପରିବାରର ପୋଷଣପାଇଁ

ବହୁ ଅର୍ଥ ହେଉଥିଲା । ଫଳତଃ ଇଚ୍ଛାପତ୍ରକାରୀ ତା' ନିକଟରେ ବହୁ ପରିମାଣରେ ଋଣୀ ହୋଇପଡ଼ିଲା । ତା'ପରେ ରହିଥିଲା ବନ୍ଧକି ଏବଂ ଅନ୍ୟ କେତେକ କାରବାରର ଉଲ୍ଲେଖ ଏବଂ ଇଚ୍ଛାପତ୍ରକାରୀର ସମସ୍ତ ସମ୍ପତ୍ତି ମ୍ୟାସନକୁ ଦେଇଦେବାର ଉଲ୍ଲେଖ ରହି ଦଲିଲଟି ସରିଥିଲା । ବିଚାରାଳୟରେ ମ୍ୟାସନ ଶପଥ କଲା ଯେ, ଇଚ୍ଛାପତ୍ରର ହଜିଯାଇଥିବା ଖସଡ଼ାଟି ମୂଳ ଲେଖାର ଅବିକଳ ନକଲ, ଏହା ଲେଖିବାରେ ସେ କିଛି ଇଙ୍ଗିତ ଦେଇ ନାହିଁ ଏବଂ ଇଚ୍ଛାପତ୍ରକାରୀ ସ୍ୱଇଚ୍ଛାରେ ତାହା ଲେଖିଅଛି । କଡ଼ାକଡ଼ି ଜେରା କରିବା ଫଳରେ ମ୍ୟାସନ କିପରି ନିର୍ଦ୍ଦୟ ଭାବରେ ଅନେକ ବର୍ଷ ଧରି ଅପହରଣ, ମିଥ୍ୟାଚାର ଓ କୃତଘ୍ନତା କରିଛି ଜଣାପଡ଼ିଗଲା । ବଗିଚାରେ ଆଦୌ କ୍ଷତି ହୋଇ ନାହିଁ ବରଂ ଖୁବ୍ ଲାଭ ହୋଇଛି । ସେସବୁ ମ୍ୟାସନ ଆତ୍ମସାତ୍ କରିଛି । ଏଡ଼ିଥ୍ ମଧ୍ୟ ସାକ୍ଷ୍ୟ ଦେଲା । ସେ ଥିଲା ଦୀର୍ଘାଙ୍ଗୀ, ସୁନ୍ଦରୀ, ଓଲିଭବର୍ଣ୍ଣା, ସାହସିନୀ, ଉଜ୍ଜ୍ୱଳ କୃଷ୍ଣନୟନା, ସବଳ ଶରୀର ବିଶିଷ୍ଟ— Vultus minium lubricus aspici ଓ୍ୱାଶିଂଟନ ମଧ୍ୟ ସାକ୍ଷ୍ୟ ଦେଲା । ଏହିସବୁ ଲୋକଗୁଡ଼ାକଙ୍କର ନୀଚ ଷଡ଼ଯନ୍ତ୍ର, ପଶୁସୁଲଭ କାମନା, ଅତ୍ୟନ୍ତ ନୀତିହୀନତାର ଟିକିନିଖି ବର୍ଣ୍ଣନା ଦେଲେ ବହୁତ କିଛି ହେବ। ଅବଶେଷରେ ମୁଁ ଇଚ୍ଛାପତ୍ରର ସରକାରୀ ସ୍ୱୀକୃତି ଦେବାକୁ ମନା କରିଦେଲି ଏବଂ ମ୍ୟାସନକୁ ଆଇନ୍‌ର ଭାଷାରେ ପ୍ରୁଥ ପକ୍ଷରେ କାର୍ଯ୍ୟନିର୍ବାହକ (Executor de son tort) ବୋଲି ଘୋଷଣା କଲି ଯାହାଦ୍ୱାରା ସେ ଦାୟିତ୍ୱରେ ରହିଥିବା ଦିନୁ ସମ୍ପତ୍ତିର ସମସ୍ତ ଆୟପାଇଁ ଦାୟୀ ରହିଲା ଏବଂ ଅପବ୍ୟୟ ଲାଗି ଫୌଜଦାରୀ ବିଚାରଯୋଗ୍ୟ ରୂପେ ସାବ୍ୟସ୍ତ ହେଲା। ଏଡ଼ିଥ୍‌ର ଧୂର୍ତ୍ତ ପ୍ରେମିକ ଫ୍ରେଜର ମଧ୍ୟ ଏହା ମଧ୍ୟରେ ପ୍ରବେଶ କରି ତା' ନିକଟରେ ସବୁ ବନ୍ଧକ ଓ ଚୁକ୍ତି ଆଦି ଥିବାର ପ୍ରମାଣ ଦେଖାଇ ତା' ଉପରେ ଏଡ଼ିଥ୍‌ର ସମ୍ପତ୍ତି ଦାବି କଲା ତେଣୁ ଫ୍ରେଜର ସମ୍ପତ୍ତି ପାଇଲା ଏବଂ କେତେଦିନ ଧରି ବିଗଚାକୁ ନିଜ ଲାଭ ପାଇଁ ଲଗାଇଲା । ଦୁର୍ଭାଗ୍ୟବଶତଃ ଓ୍ୱାଲେସ ପରିବାର ଖୁବ୍ ଗରିବ ଥିବାରୁ ମ୍ୟାସନ ବିରୋଧରେ ଆଇନର ଆଶ୍ରୟ ନେଇପାରିଲା ନାହିଁ । ତେଣୁ ସେ ଖସିଗଲା; କିନ୍ତୁ ସେ ଏଡ଼େବଡ଼ ଧକ୍‌କା ଖାଇଲା ଯେ ସେଥିରେ ଅଳ୍ପ କେତେଦିନ ପରେ ମରିଗଲା । ଫ୍ରେଜର ମଧ୍ୟ ଅଳ୍ପ କେତେଦିନ ପରେ ହଠାତ୍ ମରିଗଲା । ତା'ର ଇଚ୍ଛାପତ୍ରରେ ସେ ସମସ୍ତ ବଗିଚା ଏବଂ ଓ୍ୱାଲେସ ସମ୍ପତ୍ତିର ବାକି ସବୁ ଅଂଶ ଏଡ଼ିଥ୍ ନାମରେ ଛାଡ଼ିଯାଇଥିଲା । ସେତେବେଳକୁ ଏଡ଼ିଥ୍ ଆକ୍ୟାବ ଜେଲ୍‌ରୁ ଫେରିଆସିଥିବା ତା' ସ୍ୱାମୀ ପେରେରା ସହ ବାସ କରୁଥିଲା । ଶେଷଥର ମୁଁ ଶୁଣିଥିଲି ଯେ ସେ ଚିଟାଗଙ୍ଗର କୌଣସି ଏକ ଷ୍ଟେଟ୍‌ରେ ରହୁଥିଲା, ନିୟମିତ ପ୍ରାର୍ଥନାସଭାକୁ ଯାଉଥିଲା ଏବଂ ସମସ୍ତଙ୍କ ଦ୍ୱାରା ସମ୍ମାନିତା ହେଉଥିଲା। ଚିଟାଗଙ୍ଗରେ ସମସ୍ତେ ବିଶ୍ୱାସ କଲେ ଯେ, ଇଚ୍ଛାପତ୍ରଟି ଓ୍ୱାଲେସ୍‌ର ଚାକରମାନଙ୍କ ସହାୟତାରେ ଓ୍ୱାଶିଂଟନ୍ ପେରେରା ଚୋରାଇ ନେଇ ଏଡ଼ିଥ୍‌କୁ ଦେଇଦେଲା ଏବଂ ସେ ତାକୁ ନଷ୍ଟ କରିଦେଲା । ଫ୍ରେଜର ସବୁ ସମ୍ପତ୍ତି ହାତକୁ ନେବାରେ ଓ ସମ୍ପତ୍ତି ଅଧିକାର କରିବାରେ ଏଡ଼ିଥ୍ ମୌନସମ୍ମତି ଦେଇଥିଲା; ତା'ର ଆଂଶିକ କାରଣ ତା'ର ଅନ୍ୟ କିଛି କରିପାରିବାର ଶକ୍ତି ନ ଥିଲା ଏବଂ ଅନ୍ୟକାରଣ ସମୟକ୍ରମେ ସେ ଏସବୁ ଫ୍ରେଜରଠାରୁ ବାହାର କରି ନେଇଯାଇପାରିବ ବୋଲି ଆଶା କରୁଥିଲା । ଏଥିରେ ସେ ଫଳବତୀ ହୋଇଥିଲା ଏବଂ ଫ୍ରେଜର ବଞ୍ଚିଥିବା ପର୍ଯ୍ୟନ୍ତ ତାକୁ ଉତ୍ତମ ଆର୍ଥିକ ସାହାଯ୍ୟ ଦେଉଥିଲା ।



# ପରିଶିଷ୍ଟ-୧

## ଜଣେ ପରବର୍ତ୍ତୀ ଶାସକଙ୍କ ଦୃଷ୍ଟିରେ

ଏହି ଲେଖାଟି ମୂଳ ପୁସ୍ତକର 'ମୁଖବନ୍ଧ' ରୂପେ ପ୍ରକାଶିତ ଫିଲିପ୍ ମ୍ୟାନସନଙ୍କର ଜନ ବୀମ୍‌ସ୍‌ଙ୍କ ସଂପର୍କରେ ମତାମତ। ଶ୍ରୀ ମ୍ୟାନସନ ପରବର୍ତ୍ତୀ ସମୟରେ ଭାରତରେ ସିଭିଲ ସର୍ଭିସେସ୍‌ରେ ଥିଲେ ଏବଂ ଭାରତରେ ବ୍ରିଟିଶ ଶାସନ ସଂପର୍କରେ କେତେକ ଉପାଦେୟ ପୁସ୍ତକ ରଚନା କରିଛନ୍ତି ।

—ଅନୁବାଦକ

---

କେତେବର୍ଷ ତଳେ ଭାରତୀୟ ସିଭିଲ ସଂସ୍ଥା ସଂପର୍କୀୟ ଏକ ବହି ଲେଖିବା ପାଇଁ ଆବଶ୍ୟକୀୟ ଡାଇରୀ, ବିବରଣୀ, ପତ୍ର ଓ ଅନ୍ୟାନ୍ୟ ଅପ୍ରକାଶିତ ତଥ୍ୟ ଏକାଠି କଲି। ଯାହାସବୁ ଆସିଲା ସେଥିରୁ ଅନେକଙ୍କର ପାଠ ବିରକ୍ତିକର, କେତେକ ମୂଲ୍ୟହୀନ, କେତେକ ବୈଷୟିକ ଏବଂ କେତେକକୁ ସାଧାରଣରେ ବ୍ୟବହାର କରାଯାଇପାରିବ ନାହିଁ; କିନ୍ତୁ ଜନ ବୀମ୍‌ସ ନିଜ ଜୀବନ ସଂପର୍କରେ ଯେଉଁ ବିବରଣ ଲେଖିଛନ୍ତି, ତାହା ସଂପୂର୍ଣ୍ଣ ଅନ୍ୟଧରଣର । ସେ ବିବରଣ ପଢ଼ିବା ଓ ସେଥିରୁ ବହୁଳ ଉଦ୍ଧାର କରିବାକୁ ମୋତେ ଭଲ ଲାଗିଲା । ସେଥିରୁ ଆଉ ଅଧିକ ଉଦ୍ଧାର କରିବାର ବାସନା ମଧ ରଖିଲି ।

ବ୍ୟକ୍ତିବାଦୀ ବୋଲି ଯଦି କେହି ଥାଏ, ତେବେ ସେ ବୀମ୍‌ସଙ୍କ ଜୀବନୀର ଲେଖକ କିନ୍ତୁ ତାହା ସଙ୍ଗେ ସଙ୍ଗେ ଏହି ଲେଖା ଏକ ପ୍ରତିନିଧିମୂଳକ ରଚନା । ବୀମ୍‌ସଙ୍କ ଜୀବନରେ ଯାହା ଘଟିଲା, ସେହି ଦଶା ଭାରତରେ ଆମ ସମସ୍ତଙ୍କର ହୋଇଥିଲା, କେବଳ ବିଦ୍ରୋହ ପରବର୍ତ୍ତୀ ସମୟରେ ନୁହେଁ; କିନ୍ତୁ ସତୁରି ବର୍ଷ ପରେ ମଧ, ସେ ତାଙ୍କର ଉପରିସ୍ଥମାନଙ୍କୁ ଯେଉଁ ଦୃଷ୍ଟିରେ ଦେଖୁଥିଲେ, ତାଙ୍କ ଶ୍ରେଣୀର ଜଣେ ଉତ୍ତମ ଜିଲ୍ଲା ଅଫିସରଙ୍କ ଦୃଷ୍ଟିକୋଣ ସେଇଆହିଁ ରହିଥିଲା । ସେ ଦୃଷ୍ଟିରୁ ତାଙ୍କ ଲେଖା ଗତାନୁଗତିକ ହୋଇପାରେ; କିନ୍ତୁ ସହଜ ଓ ବାସ୍ତବ ଭାବରେ କିପରି ଉତ୍ତମ ଲେଖାଟିଏ ରଚନା କରାଯାଇପାରେ ତାହାର ରହସ୍ୟ ସେ ବୁଝିଥିବାରୁ ତାଙ୍କର ଲେଖା ପଢ଼ିବା ଆନନ୍ଦଦାୟକ । ତାଙ୍କର ବିଚାରଧାରା ସ୍ୱଚ୍ଛ ଥିବାରୁ ସେ ନିଜ ବକ୍ତବ୍ୟ ଭଲରୂପେ ଜାଣିଥିଲେ ଏବଂ ବିନା ଦ୍ୱିଧାରେ ତାହା ପ୍ରକାଶ କରୁଥିଲେ । ଟ୍ରୋଲେପ୍‌ଙ୍କ ପରି ଶୀଘ୍ର ଲେଖିଯିବାରେ ସେ ଅଭ୍ୟସ୍ତ । ମଝିରେ ମଝିରେ ଅଟକିଯାଇ ଝରକା ବାହାରକୁ ଚାହିଁ କଲମର ଶେଷାଂଶକୁ ନଖେଇବା ଅଭ୍ୟାସ ତାଙ୍କର ନ ଥିଲା । ଅନ୍ୟ କୌଣସି ବିଷୟ ବା ଅନ୍ୟ କାହା ମର୍ଯ୍ୟାଦାର ମୋହରେ ପଡ଼ି ସେ ନିଜକୁ ଦିଗଭ୍ରାନ୍ତ କରାଇ ନାହାନ୍ତି। ଅହଂକାର, ଆତ୍ମସଚେତନତା ବା ଭୀରୁତା ତାଙ୍କଠାରେ ନ ଥିଲା । କେବଳ ସେତିକି ଯଥେଷ୍ଟ ନୁହେଁ; ଉତ୍ତମ ଲେଖାପାଇଁ ନିରୀକ୍ଷକର ଦୃଷ୍ଟିକୋଣ, ସୁସ୍ଥ ମନ ଓ ନିଜର ପସନ୍ଦ ଅପସନ୍ଦ ସଂପର୍କରେ ଦୃଢ଼ ମତାମତ ମଧ ଆବଶ୍ୟକ । ଏହାରି ଫଳରେ ସୁପାଠ୍ୟ ଓ ଜୀବନ୍ତ ଇଂରାଜୀ ସୃଷ୍ଟି ହୁଏ, ଯାହାକି କାରଲାଇଲ ବା ରସ୍କିନ୍‌ଙ୍କ ଯୁଗରେ ଖୁବ୍ କମ୍‌ଲୋକ ଲେଖୁଥିଲେ । ଭିକ୍ଟୋରିଆନ ଇଂରାଜୀ ଅପେକ୍ଷା ସୁଇଫ୍ଟ

ଓ ଡିଫୋଙ୍କ ଇଂରାଜୀ ଆମ ସମୟର ନିକଟତର, ଆମର ଏ ଧରଣର ଭାବନା ଭିକ୍ଟୋରୀୟ ଲେଖକଙ୍କ ପ୍ରତି ଅନ୍ୟାୟ । ଟ୍ରୋଲେପ୍ ଓ ସର୍ଟିସ୍ଙ୍କ ଭାଷା ଓ ଭାରତୀୟ ସରକାରୀ କାଗଜପତ୍ର ଓ ଜିଲ୍ଲା ଗେଜେଟିଅର୍‌ମାନଙ୍କରେ ବ୍ୟବହୃତ ଇଂରାଜୀ ଯଥେଷ୍ଟ ପରିମାଣରେ ଉନ୍ମାଦକର । ଲେଖକ ଚେତନଶୀଳ ରହିଲେ ଏ ଅବସ୍ଥାରୁ ଦୂରେଇ ରହିପାରେ ଏବଂ ଯେଉଁଠି ସେ ଶୈଳୀ ଅପେକ୍ଷା ବିଷୟବସ୍ତୁରେ ବେଶି ବାନ୍ଧି ହୋଇପଡ଼େ ସେହିଠାରେ ଏହା ଦେଖାଦିଏ ।

ବୀମ୍ସ ତାଙ୍କ ପରିବାରକୁ ଆମୋଦ ଦେବାପାଇଁ ଲେଖିଥିଲେ, ପ୍ରକାଶ ପାଇଁ ନୁହେଁ । ପ୍ରକାଶିତ ହେବ ବୋଲି ଜାଣିଥିଲେ ମଧ୍ୟ ବିଶେଷ କିଛି ପରିବର୍ତ୍ତନ ହୋଇଥାନ୍ତା ବୋଲି ମନେ ହୁଏ ନାହିଁ । ସେ ନିଜ ମନୋଭାବରୁ ଲୁଚାଇ କେବେ ଆତ୍ମପ୍ରବଞ୍ଚନା କରି ନାହାନ୍ତି । ତାହାହିଁ ତାଙ୍କର ସବୁଠାରୁ ଆକର୍ଷଣୀୟ ଦିଗ । ବାସ୍ତବରେ ଅତ୍ୟନ୍ତ ସ୍ପଷ୍ଟବାଦିତା ଫଳରେ ସେ ସର୍ବଦା ଅସୁବିଧାରେ ପଡୁଥିଲେ । ଉଦାହରଣସ୍ୱରୂପ, ସୈନ୍ୟମାନଙ୍କ ସଂପର୍କରେ ସେ ନ୍ୟୂନ ମତ ପୋଷଣ କରୁଥିଲେ ଏବଂ ଲେଖିଥିଲେ 'ଭାରତ ସରକାର ମନେକରନ୍ତି ସାମରିକ ଲୋକେ ଯେ କୌଣସି କାମ କରିପାରିବେ ଏବଂ ସେମାନଙ୍କ ବାହିନୀରେ ଆପାତତଃ ସେମାନଙ୍କର ଆବଶ୍ୟକତା ନାହିଁ...' ସିଭିଲ ଏବଂ ଷ୍ଟାଫ କର୍ମଚାରୀଙ୍କ ଦରମା ସୈନ୍ୟ ବିଭାଗର ଦରମାଠାରୁ ଯଥେଷ୍ଟ ଭଲ ହୋଇଥିବାରୁ ତାଙ୍କର ଏହି ବିଶ୍ୱାସ ଅନେକ ଅଂଶରେ ସତ ଯେ, ସୈନ୍ୟବାହିନୀର କେତେକ ଲୋକ କୌଣସି ପ୍ରକାର ଉପରିସ୍ଥମାନଙ୍କର ଦୃଷ୍ଟି ଆକର୍ଷଣ କରି ସିଭିଲ ନିଯୁକ୍ତି ଲାଭ କରିଥିଲେ । ଅବଶ୍ୟ ସ୍ୱୀକାର କରିବାକୁ ପଡ଼ିବ ଯେ, ବେଳେ ବେଳେ 'ଡିଲାଇଲା ଆବରିଷ୍ଟ ଉଇଥ ଏବଂ ଉଲିସେସ୍ ଗନ୍ ପରି ଅତି ମନ୍ଦ ଘଟଣା ମଧ୍ୟ ଘଟୁଥିଲା ଏବଂ ଅନ୍ୟମାନଙ୍କଠାରୁ ବିଭାଗୀୟ ଭର୍ତ୍ସନା ଶୁଣିବାକୁ ପଡୁଥିଲା—ତେବେ ଏହା କେବଳ ସୈନ୍ୟମାନଙ୍କ ମଧ୍ୟରେ ସୀମାବଦ୍ଧ ନ ଥିଲା । ପୁଣି ସବୁ ସୈନ୍ୟବାହିନୀର ଲୋକେ କେବଳ ଚକ୍ରାନ୍ତ ବା ଖୋସାମଦ କରି ସିଭିଲ୍ ସଂସ୍ଥାରେ ନିଯୁକ୍ତି ଲାଭ କରିଥିଲେ ବୋଲି ବୀମ୍ସ ଯେଉଁ ଧାରଣା ପୋଷଣ କରିଛନ୍ତି, ତାହା ଉପରଠାଉରିଆ । ତାଙ୍କ ଜିଲ୍ଲାର ମୁଖ୍ୟ ରୂପେ ଥିବା ପୂର୍ବତନ ସୈନିକଙ୍କୁ ବୀମ୍ସ ତୁଳନା କରିଛନ୍ତି ପ୍ରଧାନ କ୍ୟାପଟେନ୍‌ଙ୍କ ଆଗରେ ସେଣ୍ଟ ପଲ୍‌ଙ୍କ ପରି ଯେ କି ବହୁ ମୂଲ୍ୟ ବିନିମୟରେ ତାଙ୍କ ସ୍ୱାଧୀନତା କିଣିଥିଲେ । ବୀମ୍ସ ପୁଣି କହନ୍ତି, 'ସେ ହେଉଛନ୍ତି ଆଜନ୍ମ ମୁକ୍ତ ।'

ଭଲ ପଦୋନ୍ନତି ପାଇବାକୁ ଥିବା ଲୋକର ସ୍ୱଭାବ ଏପରି ହେବାର ନୁହେଁ । ସବୁ ଲାଟ ବା ସେ ସ୍ତରୀୟ ଯେତେ ଲୋକଙ୍କୁ ସେ ଭେଟିଛନ୍ତି ସମସ୍ତଙ୍କୁ ସେ ନ୍ୟୂନ ଦୃଷ୍ଟିରେ ଦେଖୁଥିଲେ । ଜନ ଲରେନ୍‌ସଙ୍କୁ ସେ ମନେ କରୁଥିଲେ 'ଜଣେ ରୂକ୍ଷ କଠୋର ମଣିଷ ଯେ କି ଭଦ୍ରଲୋକ ଅପେକ୍ଷା ବେଶି ରେଲବାଇ କୁଲିପରି ଦିଶନ୍ତି' ଏବଂ ଯେ 'ତାଙ୍କ ଅଧସ୍ତନ ଅଫିସରମାନଙ୍କୁ ଗୃହହୀନ ଯାଯାବର ଜାତୀୟ ସରକାରୀ ଯନ୍ତ୍ରରେ ପରିଣତ କରିବା ଚେଷ୍ଟା କରୁଥିଲେ... ।' କିନ୍ତୁ ସେ ସବୁଠାରୁ ବେଶି ବିରକ୍ତ ଥିଲେ ସାର୍ ରିଚାର୍ଡ୍ ଟେମ୍ପଲଙ୍କ ପ୍ରତି ଯେ କି କ୍ରମାନ୍ୱୟରେ ତିନିଟି ପ୍ରଦେଶର ଲାଟ ଥିଲେ । ସେ ଟେମ୍ପଲଙ୍କୁ ସର୍ବଦା ବିଶେଷ କରି ୧୮୭୪ରେ ବିହାର ଦୁର୍ଭିକ୍ଷର ସମ୍ଭାବନା ନେଇ କଟୁ ସମାଲୋଚନା କରୁଥିଲେ । ସାର୍ ରିଚାର୍ଡ୍‌ସଙ୍କ ସମ୍ପର୍କରେ ସେ ଲେଖିଛନ୍ତି— "ନିଜ ସ୍ୱଭାବସୁଲଭ ନାଟକୀୟ ରୀତିରେ ସେ ନିଜେ ୫୦/୬୦ ମାଇଲ ଜାଣି ଜିଲ୍ଲାସାରା ଘୋଡ଼ାରେ ବୁଲନ୍ତି ଏବଂ ତଦ୍ୱାରା ଲୋକଙ୍କର ଓ ଫସଲର ଅବସ୍ଥା ସମ୍ପର୍କରେ ଧାରଣା କରିନେଲେ ବୋଲି ଭାବନ୍ତି । ଏହିପରି ଯଥେଚ୍ଛା ଭ୍ରମଣ ପରେ ସେ ରାତିରେ ବସିପଡ଼ି ଆତ୍ମଶ୍ଳାଘାପୂର୍ଣ୍ଣ ବିବରଣୀଟିଏ ଲେଖନ୍ତି... ।' ଏହି ଚମତ୍କାର ବ୍ୟକ୍ତିଙ୍କୁ ଜନ୍ ବୀମ୍ସ ଯେ କେବଳ

ଜଣେ ଆତ୍ମାଭିମାନୀ ରୂପେ ଚିତ୍ରଣ କରିଛନ୍ତି ତାହା ନୁହେଁ. କର୍ତ୍ତୃପକ୍ଷଙ୍କ ପ୍ରତି ତାଙ୍କ ମନୋଭାବର ଏହା ଏକ ନମୁନା ମାତ୍ର । ଜାଗାଏ ସେ ଲେଖିଛନ୍ତି— "ପ୍ରକୃତ ପକ୍ଷରେ ମୋତେ ଏକାବେଳକେ କାମ କରିବାକୁ ଓ ନ କରିବାକୁ କୁହାଗଲା । ସରକାର ନିଜ ଦାୟିତ୍ୱକୁ ଗୋଳାମିଶା କରିଦେଇ ଅଫିସରମାନଙ୍କୁ ଅସୁବିଧାରେ ପକାଉଥିଲେ । ସଚିବାଳୟର ଏହା ଥିଲା ଏକ ରୀତିମତ କୌଶଳ ।" ଯେଉଁ ଜିଲ୍ଲା ଅଫିସର ଓ ଉପନିବେଶର ଶାସକମାନେ କାମ ନ କଲେ ସେମାନଙ୍କର ଦୁର୍ବଳତାପାଇଁ ଏବଂ କାମ କଲେ ରୁକ୍ଷତା ପାଇଁ ନିନ୍ଦିତ ହୁଅନ୍ତି, ସେମାନଙ୍କର ପ୍ରତିବାଦର ସ୍ୱରକୁ ହିଁ ସେ ପ୍ରତିଧ୍ୱନିତ କରିଛନ୍ତି । ଅବଶ୍ୟ ଏହା ଅନ୍ୟାୟ । ଶାସନକୁ ଯେଉଁ ଖଣ୍ଡାଧାରରେ ଚାଲିବାକୁ ହେଉଥିଲା, ସେ ଅବସ୍ଥା ସଚିବାଳୟ (କିମ୍ବା ହ୍ୱାଇଟହଲ କିମ୍ବା ଉପନିବେଶ ଅଫିସ କିମ୍ବା ସେ ସମୟରେ ବିରକ୍ତିକର ବୋଲି ମନେ କରାଯାଉଥିବା ଯାହାକିଛି) ଦ୍ୱାରା ସୃଷ୍ଟି ନୁହେଁ । ଏହା ସେ ପରିସ୍ଥିତିରେ ସ୍ୱାଭାବିକ; ନ୍ୟାସାଲାଣ୍ଡରେ ଆଜି ହେଉଛି, ଭାରତରେ କାଲି ହେଉଥିଲା । ଏହା ଯେ ବୀମ୍‌ସ ଦେଖିପାରିଲେ ନାହିଁ ତା'ର କାରଣ ହେଉଛି ଅଫିସର ଭାବରେ ସେ ଦୁର୍ବଳ ଓ ଲେଖକ ଭାବରେ ସବଳ ଏବଂ ବହୁ ଦକ୍ଷ, କୌଶଳୀ ଓ ବିଚାରବାନ୍‌ଙ୍କ ଅପେକ୍ଷା ତାଙ୍କ ଲେଖା ପଢ଼ିବା ଅଧିକତର ଆରାମଦାୟକ ।

ତାଙ୍କୁ ଜଣେ ବୌଦ୍ଧିକ ଆତ୍ମାଭିମାନୀ କୁହାଯାଇପାରେ । ଯେଉଁ ଅଳ୍ପ କେତୋଟି ଜିଲ୍ଲାରେ ଚାଷମାଲିକମାନେ କ୍ଷମତାଶାଳୀ ଥିଲେ ଚମ୍ପାରଣ ସେମାନଙ୍କ ମଧ୍ୟରୁ ଅନ୍ୟତମ । ସେଠାରେ ନିଯୁକ୍ତି ପାଇଲାବେଳେ ସେ ଜିଲ୍ଲାର ସର୍ବେସର୍ବା ହେବାପାଇଁ ସଂକଳ୍ପ କରିଥିଲେ । ତାଙ୍କର କହିବା ମତେ, "କ୍ଷମତାର ଲାଳସା ଯୋଗୁଁ ନୁହେଁ, ସରକାର ମୋ ଉପରେ ଜିଲ୍ଲାଟିର ପବିତ୍ର ଦାୟିତ୍ୱ ନ୍ୟସ୍ତ କରିଥିବାରୁ ସେ ଦାୟିତ୍ୱ ତୁଲାଇବାକୁ ମୁଁ ବାଧ୍ୟ ଥିଲି । ମୁଁ ଯଦି ନିଜକୁ ହାଲୁକା କରିବାକୁ କିମ୍ବା ଲୋକପ୍ରିୟ ହେବାପାଇଁ ଅଳସରେ ବସିରହି ମୋ ସ୍ଥାନ ଓ ଦାୟିତ୍ୱ ଅଧିକାର କରିବାପାଇଁ ଅନ୍ୟମାନଙ୍କୁ ଛାଡ଼ି ଦେଇଥାନ୍ତି, ତେବେ ମୁଁ ଖୁବ୍ ନୀଚ ହୋଇଯାଇଥାନ୍ତି । ଲୋକମାନଙ୍କୁ ଶାସନ କରିବା କେବଳ ବୟସ୍କ (Lepremier Venu) ମାନଙ୍କ କାମ ନୁହେଁ ଏବଂ ବୟସରେ କନିଷ୍ଠତର ହେଲେ ମଧ ମୋର ଯଥେଷ୍ଟ ଶିକ୍ଷା ସହ ପାଞ୍ଚ ବର୍ଷର ତାଲିମ ଓ ଅଭିଜ୍ଞତା ଥିଲା । ଏକଦା ପଣ୍ୟବାହୀ ଜାହାଜର ସହକାରୀ ବା ବ୍ୟବସାୟୀ ପ୍ରତିଷ୍ଠାନର ଏହିସବୁ ପୂର୍ବତନ କିରାଣିମାନଙ୍କର ସେ ଅଭିଜ୍ଞତା ନ ଥିଲା ।" ଏହା ଅବଶ୍ୟ ଔଦ୍ଧତ୍ୟ; କିନ୍ତୁ ଏହା ପଛରେ ଅଛି ଯେ କୌଣସି ପରିସ୍ଥିତିରେ ମଧ ରୟତମାନଙ୍କ ପାଇଁ ନ୍ୟାୟ ଦେଇଯିବାର ମହତ ସଂକଳ୍ପ । ସେ ଏଠି ଚମ୍ପାରଣରେ ଜଣେ ଧନୀ ଚାଷୀମାଲିକର ଅତ୍ୟାଚାରରୁ ରକ୍ଷା କରିବା ପାଇଁ ଜଣେ ରୟତକୁ ସମର୍ଥନ ଜଣାଇଥିଲେ, ପରେ ଓଡ଼ିଶାରେ ନିଜ ଦ୍ୱାରରେ ସାଗରର ଅଯାଚିତ ଦାନକୁ ସଂଗ୍ରହ କରୁଥିବା ଜଣେ ଅଭିଯୁକ୍ତା ବୃଦ୍ଧାକୁ ରକ୍ଷାକରିବା ପାଇଁ ସରକାର ଓ ସରକାରୀ ଆଇନର ମୁକାବିଲା କରିଥିଲେ । ସରକାରଙ୍କଠାରୁ ବହୁ ତିରସ୍କାର ପାଇ ମଧ ସେ ଏହି ଘଟଣାରେ ବିଜୟୀ ହୋଇଥିଲେ ଏବଂ ଆଇନର ପରିବର୍ତ୍ତନ ହୋଇଥିଲା ।

ଜଣେ ବୈୟାକରଣିକ ଓ ଭାଷାବିଦ୍ ଭାବରେ ଏବେ ମଧ ଭାରତର କେତେକ ଗବେଷକ ବୀମ୍‌ସଙ୍କୁ ମନେ ପକାଉଛନ୍ତି; ହିନ୍ଦୁସ୍ଥାନୀରେ ପ୍ରଚଳିତ ପ୍ରବଚନ ଅନୁଯାୟୀ ଏହା ଥିଲା ତାଙ୍କର ବାଁ ହାତର କାମ ବା ସଉକ । ଭାଷାତତ୍ତ୍ୱରେ ସେ ବହୁତ କାମ କରି ପ୍ରସିଦ୍ଧି ଅର୍ଜନ କରିଥିଲେ । ଏହି ଦୁଇପୁରୁଷ ମଧ୍ୟରେ ଭାରତର ତାତ୍‌କାଳିକ ଅବସ୍ଥା ସଂପୂର୍ଣ୍ଣ ବଦଳି ଯାଇ ନାହିଁ । ଯେଉଁ ଲୋକେ ଏ କ୍ଷେତ୍ରରେ ତାଙ୍କର ଅନୁସରଣ କରିପାରିବେ ନାହିଁ ସେମାନେ ତାଙ୍କ ବର୍ଣ୍ଣନା ପଢ଼ି

ଆନନ୍ଦ ପାଇପାରିବେ । ଏଠାରେ ଏକ ନମୁନା ଦିଆଯାଇପାରେ । ୧୮୬୧ରେ ସଂସ୍କାର ପୂର୍ବର ଜଣେ ପୁରୁଣାକାଳିଆ ପୋଲିସ୍ ଅଫିସରଙ୍କ ବର୍ଣ୍ଣନା ସେ ଦେଇଛନ୍ତି । ସେ ବାଛିଥିବା ଲୋକଟି ଏହିପରି :— "ଜଣେ ଦୀର୍ଘକାୟ ପୃଥୁଳ ମୁସଲମାନ; ତା'ର ଦାଢ଼ି ପାଚିଲା, ଚାହାଣି ଚିକ୍‌ଣ, ମଧୁର, କୋକିଶିଆଳି ପରି ଧୂର୍ତ୍ତ, ବ୍ୟବହାରରେ ଖୁବ୍ ଭଦ୍ର, ଉଚ୍ଚ ଅଫିସରମାନଙ୍କ ପ୍ରତି ତା'ର ବ୍ୟବହାର ସଂପୂର୍ଣ୍ଣ ଅଲଗା; କିନ୍ତୁ ଅଧସ୍ତନଙ୍କ ପାଇଁ ସେ କ୍ରୋଧୀ ଓ ଅତ୍ୟାଚାରୀ । ତା'ର ଥିଲା ସୁନା ଜରିର ଧଡ଼ିଲଗା ବିରାଟ ଲାଲ ପଗଡ଼ି, କମରପଟିରୁ ଝୁଲୁଥିବା ସୁନା କାମକରା ଖଣ୍ଡା, ଉଜ୍ଜ୍ୱଳ ଧଳା ପୋଷାକ । ସେ ଚଢୁଥିବା ଛାପଛାପିଆ ରଙ୍ଗର ଦୁର୍ବଳିଆ ଘୋଡ଼ାଟିର ଚକ୍ଷୁ ଧୂସର, ନାକ ଲାଲ ଏବଂ ଲାଞ୍ଜ ଲମ୍ବ ଓ ଚିକ୍‌କଣ... ।" ଏହି ଧରଣର ବର୍ଣ୍ଣନାରେ ପୂର୍ଣ୍ଣ ତାଙ୍କ ବହିରେ ଇଷ୍ଟଇଣ୍ଡିଆ କମ୍ପାନୀର ହାଲିବରି କଲେଜର ପରିବେଶ, ବିଦ୍ରୋହର ଠିକ୍ ପରେ ପରେ କଲିକତାର ଜୀବନ, ପଞ୍ଜାବ ଏବଂ ଲରେନ୍‌ସ ଏବଂ ପରେ ପରେ ଉଭୟ ବିହାର ଓ ଓଡ଼ିଶାର ଚିତ୍ରଣ କରାଯାଇଛି । ତାଙ୍କର ନବପରିଣିତା ବଧୂ ଦୁଇବର୍ଷର ବିଚ୍ଛେଦ ପରେ ଦୀର୍ଘ ଜଳଯାତ୍ରାରେ ଭାରତକୁ ଆସି, ଅଜଣାଲୋକଙ୍କ ଗହଣରେ କଲିକତାରୁ ତିନି ସପ୍ତାହ କାଳ ଟଟୁଘୋଡ଼ାଟଣା ଗାଡ଼ିରେ ଯାତ୍ରାକରି ପଞ୍ଜାବରେ ତାଙ୍କ ସହ ଯେତେବେଳେ ମିଳିତ ହେବାକୁ ଆସିଲେ, ସେତେବେଳେ ତାଙ୍କ ଜୀବନ ବିଷୟ ଚିନ୍ତାକଲେ ସ୍ତବ୍ଧ ହେବାକୁ ପଡ଼େ । ଆମର ସୌଭାଗ୍ୟ ଯେ ବୀମ୍‌ସ ତାଙ୍କ ଉପରିସ୍ଥମାନଙ୍କୁ ସମାଲୋଚନା କରିବାରେ ଏତେ ମୁକ୍ତଜିହ୍ୱ ଥିଲେ । ଏହାରି ଫଳରେ ସେ ବହୁସମୟରେ ଅସୁବିଧାରେ ପଡ଼ି ବଦଳି ହୋଇଛନ୍ତି ଏବଂ ସେଥିପାଇଁ ଆମ ମଧ୍ୟରୁ ଅଧିକାଂଶଙ୍କ ଅପେକ୍ଷା ଭାରତକୁ ଅଧିକ ପରିମାଣରେ ଦେଖି ପାରିଛନ୍ତି ।

ବୀମ୍‌ସ୍ ଏକ ସହଜ ଲୋକ ଥିଲେ ବୋଲି ମନେ ହୁଏ ନାହିଁ । ମୋର ଆଶଙ୍କା ହୁଏ ସେ ଯଦି ମୋର କୌଣସି ଜିଲ୍ଲା ଅଫିସର ହୋଇଥାନ୍ତେ, ତେବେ କଠୋର ସମାଲୋଚନାର ଶରବ୍ୟ ହୋଇଥାଆନ୍ତେ । ସେଥିରେ ମୋର ବେଶି ଦୁଃଖ ହୋଇଥାଆନ୍ତା, କାରଣ ତାହାହିଁ ଯଥାର୍ଥ । କିନ୍ତୁ ମୁଁ ଯଦି ତାଙ୍କୁ ଜାଣିଥାନ୍ତି, ତେବେ ନିଶ୍ଚୟ ସମ୍ମାନ ଦେଇଥାଆନ୍ତି ଏବଂ ଏପରି ଜଣେ ଏକଜିଦିଆ, ବିଶ୍ୱସ୍ତ, ନିଜ ବିଶ୍ୱାସରେ ଏକାଗ୍ରଚିତ୍ତ, ସରଳ ଓ ଦୃଢ଼ମନା ଏବଂ ସର୍ବୋପରି ନିଜ ପ୍ରତି ଓ ନିଜେ ଭେଟିଥିବା ସମସ୍ତଙ୍କ ପ୍ରତି ଏତେ ସଚ୍ଚୋଟ ବ୍ୟକ୍ତିର ବହି ପଢ଼ିସାରିବା ପରେ ଯେ ତାଙ୍କ ପ୍ରତି ଶ୍ରଦ୍ଧାବାନ୍ ନ ହେବ ତାହା ପ୍ରତି ମୋର ନିଶ୍ଚୟ ନୀଚ ଧାରଣା ସୃଷ୍ଟି ହେବ ।

—ଫିଲିପ୍ ମ୍ୟାନସନ



# ପରିଶିଷ୍ଟ–୨

## ଶେଷକଥା

ଜନ ବୀମ୍ସ୍‌ଙ୍କ ସବାସାନ ଝିଅ ଏଞ୍ଜେଲାଙ୍କ ପୁଅ ଖ୍ରୀଷ୍ଟୋଫର କୁକ୍ ଥିଲେ ଭାରତର ସ୍ୱାଧୀନତା ସମୟର ଭାରତୀୟ ସିଭିଲ ସଂସ୍ଥାର କର୍ମଚାରୀ, ଯାହାଙ୍କ ଉଦ୍ୟମ ଫଳରେ ବୀମ୍ସ୍‌ଙ୍କ ଜୀବନୀ ଲୋକଲୋଚନକୁ ଆସିପାରିଲା ।

---

ମୋ ଅଜା ଜନ୍ ବୀମ୍ସ୍ ଏ ବହିଟିକୁ 'ମୋ ଜୀବନର କାହାଣୀ' ବୋଲି କହୁଥିଲେ; କିନ୍ତୁ ସେ କାହାଣୀ ଶେଷ କରିବା ଯାଏ ବଞ୍ଚିଲେ ନାହିଁ । ଭାରତରୁ ୧୮୯୩ରେ ଅବସର ନେଇ ପ୍ରଥମେ ଟଣ୍ଟନ ନିକଟସ୍ଥ ସମରସେଟ୍‌ରେ ଏବଂ ପରେ କ୍ଲେଭଡ଼ନଠାରେ ରହିଲେ ଏବଂ ସେଇଠାରେ ମାତ୍ର ୬୫ ବର୍ଷ ବୟସରେ ମେ ୧୯୦୨ରେ ପ୍ରାଣ ତ୍ୟାଗ କଲେ । ଏସବୁ କାହାଣୀ ସେ କାହିଁକି ଲେଖିଲେ ତାହା ନିଜ ମୁଖବନ୍ଧରେ କହିଚନ୍ତି । ପ୍ରକାଶ ପାଇବା ପାଇଁ ନୁହେଁ, ତାଙ୍କୁ ଓ ତାଙ୍କ ପରିବାରକୁ ଅବସର ସମୟରେ ଆନନ୍ଦ ଦେବା ଥିଲା ଏହାର ଉଦ୍ଦେଶ୍ୟ । ସେ ନିଜକୁ ରାଣୀ ଭିକ୍ଟୋରିଆଙ୍କ ଶାସନ କାଳରେ ଜଣେ 'ସାଧାରଣସ୍ତରର ଇଂରାଜୀ ଲୋକ' ବୋଲି କହିଛନ୍ତି; କାରଣ ରାଣୀ ଭିକ୍ଟୋରିଆଙ୍କ ଅଭିଷେକ ଦିନ ସେ ଜନ୍ମଗ୍ରହଣ କଲେ ଏବଂ ତାଙ୍କ ଶାସନର ମାତ୍ର ବର୍ଷକ ପରେ ତାଙ୍କର ମୃତ୍ୟୁ ହେଲା ।

ପ୍ରଥମ ପାଞ୍ଚଟି ପରିଚ୍ଛେଦରେ ଇଂଲଣ୍ଡରେ ତାଙ୍କର ଆଦ୍ୟଜୀବନ ଏବଂ ପରଗୁଡ଼ିକରେ ୧୮୫୮ ମାର୍ଚ୍ଚରେ କଲିକତାଠାରେ ପହଞ୍ଚିବାଠାରୁ ଭାରତରେ ଚାକିରି କାଳ, ଇଷ୍ଟଇଣ୍ଡିଆ କମ୍ପାନୀର ଶେଷଦଳର ପ୍ରାର୍ଥୀ ରୂପେ ବଛାଯିବା ଠାରୁ ୧୮୭୯ରେ ଚିଟାଗଙ୍ଗରେ ତାଙ୍କର ଶେଷ ରହଣି ପର୍ଯ୍ୟନ୍ତ ବର୍ଣ୍ଣିତ । ଗୋଟିଏ ବିରାଟ ଚମଡ଼ା ବନ୍ଧେଇ ବହିର ଶେଷ ପୃଷ୍ଠାରେ ସୁନ୍ଦର ସ୍ୱଚ୍ଛନ୍ଦ ହସ୍ତାକ୍ଷରରେ ଲିଖିତ ଏହି ବର୍ଣ୍ଣନା ହଠାତ୍ ଶେଷ ହୋଇଯାଇଛି । ଏହି ଶହଶହ ପୃଷ୍ଠା ବ୍ୟାପୀ ଲେଖାରେ କେଉଁଠି ଟିକିଏ ପଛରେ ଯୋଡ଼ାଯାଇନି କି କଟାଯାଇନି । ପାଠକ ଆଶ୍ଚର୍ଯ୍ୟ ହୋଇପାରନ୍ତି ଯେ, ବର୍ଣ୍ଣନାଟି ଅନ୍ତତଃ ଭାରତରୁ ସେ ଅବସର ନେବା ପର୍ଯ୍ୟନ୍ତ ଲେଖା ନ ଯାଇ ଅସମାପ୍ତ ରହିଲା କାହିଁକି ? ଏହାର ପ୍ରଧାନ କାରଣ ହେଲା ତାଙ୍କର ଅବସର ସମୟରେ ଅନ୍ୟାନ୍ୟ ଲେଖାଗୁଡ଼ିକରେ ସେ ବ୍ୟସ୍ତ ରହିଥିଲେ ଏବଂ ତାଙ୍କର ଏହି ପାଣ୍ଡୁଲିପିଟି ସରିବା ପୂର୍ବରୁ ମୃତ୍ୟୁବରଣ କରିଥିଲେ । ମୁଖବନ୍ଧରେ ସେ କହିଛନ୍ତି ଯେ, ତାଙ୍କର ଏହି ଜୀବନୀ ସେ କଟକଠାରେ ୧୮୭୫ରେ ଆରମ୍ଭ କଲେ ଏବଂ କେତେବର୍ଷ ପର୍ଯ୍ୟନ୍ତ ମଝିରେ ମଝିରେ ଲେଖୁଥିଲେ । ପରେ ଅବସର ନେବା ପର୍ଯ୍ୟନ୍ତ ଲେଖା ବନ୍ଦ ହୋଇ ଯାଇଥିଲା । ତା'ପରେ ୧୮୯୬ରେ ଟଣ୍ଟନ ନିକଟସ୍ଥ ବିଶପହଲଠାରେ ଥିବାବେଳେ ସେ ପୁଣି ଏହା ମୂଳରୁ ଲେଖିଲେ; କିନ୍ତୁ ମୂଳ ପାଣ୍ଡୁଲିପିର ୧୭ଶ ପରିଚ୍ଛେଦର ଶୀର୍ଷଟୀକାରେ ଅଛି 'ବ୍ରିଷ୍ଟଲ ନିକଟରେ କ୍ଲିଭଡ଼ନ, ଅଗଷ୍ଟ ୧୯୦୦ । ଏଥିରୁ ଜଣାଯିବ ଯେ, ପାଣ୍ଡୁଲିପି ଲେଖା ସେ ପୁଣି କିଛିଦିନ ବନ୍ଦକରି ଦେଇଥିଲେ ଏବଂ କ୍ଲିଭଡନକୁ ଯିବାପରେ ପୁଣି ଆରମ୍ଭ କଲେ । ତା' ପରେ ବେଶ୍ ଲମ୍ବା ସାଢ଼େ ତିନିଟି ପରିଚ୍ଛେଦ ଅଛି ଏବଂ

ସେତେବେଳେ ସେ 'ଭାରତର ଐତିହାସିକ ଭୂଗୋଳ ଲେଖିବାରେ ଏବଂ ତୁରସ୍କ ଭାଷାରୁ ବାବରଙ୍କ ଆତ୍ମଲିପି ଅନୁବାଦରେ ବ୍ୟସ୍ତଥିବାରୁ ଜଣାଯାଏ ଯେ ତାଙ୍କର ନିଜ ଜୀବନୀ ଲେଖା, ଅନ୍ୟାନ୍ୟ ଲେଖା ଯୋଗୁଁ ଏବଂ ମେ ୧୯୦୨ରେ ତାଙ୍କର ଅକାଳ ମୃତ୍ୟୁ ଯୋଗୁଁ ବାଧାପ୍ରାପ୍ତ ହେଲା ।

ବୋଧହୁଏ ଅନ୍ୟ ଏକ କାରଣ ହେଉଛି ସୂର୍ଯ୍ୟଘଟିକା ଭଳି ସେ କେବଳ ସୁଖର ସମୟଗୁଡ଼ିକୁ ଲେଖିରଖିବାକୁ ଇଚ୍ଛା କରିଥିଲେ । ଭାରତ ରହଣିର ଶେଷାଂଶ ସେ ଅଧିକାଂଶ ଭାଗ ନିଃସଙ୍ଗ ଥିଲେ । ସ୍ତ୍ରୀ ଓ ପରିବାର ଅଧିକାଂଶ ସମୟରେ ଇଂଲଣ୍ଡରେ ରହିଲେ ଏବଂ ଏହି ବିଚ୍ଛେଦ ସାଙ୍ଗକୁ ଏହି ଶେଷବର୍ଷଗୁଡ଼ିକରେ ତାଙ୍କ କର୍ମଜୀବନରେ ନୈରାଶ୍ୟର ମେଘ ଘୋଟିଗଲା ଯାହାକି ନିମ୍ନରେ ବର୍ଣ୍ଣିତ ହେଉଛି ।

କେହି ପାଠକ ଜନ୍ ବୀମ୍ସ୍‌ଙ୍କ ପରବର୍ତ୍ତୀ ଜୀବନ ବିଷୟ ଜାଣିବାରେ ଆଗ୍ରହୀ ଥାଇପାରନ୍ତି । ସେଥିପାଇଁ ନିମ୍ନୋକ୍ତ ଜୀବନୀ ସମ୍ବଳିତ ବିବରଣୀ ଦିଆଗଲା । ଏସବୁ ଅଂଶିକ ଭାବରେ ସେ ରଖିଯାଇଥିବା ସଂକ୍ଷିପ୍ତ ଟିପ୍ପଣୀ (ଯେଉଁଥିରେ କି ୧୮୮୦ରୁ ୧୮୯୯ ପର୍ଯ୍ୟନ୍ତ ପ୍ରତ୍ୟେକ ବର୍ଷର ଅଧଡଜନେ ହେବ ପ୍ରଧାନ ପ୍ରଧାନ ଘଟଣାର ତାରିଖ ଦିଆଯାଇଛି) ଏବଂ ଅଂଶିକ ଭାବରେ ତାଙ୍କର ସାନଝିଅ, ମୋ ମାଆ ଆଞ୍ଜେଲାଙ୍କ ସ୍ମୃତିରୁ ସଂଗୃହୀତ ହୋଇଛି । ୧୮୭୬ରେ କଟକଠାରେ ଆଞ୍ଜେଲାଙ୍କର ଜନ୍ମ ବିଷୟ ଉଲ୍ଲେଖ ରହିଛି । ତାଙ୍କୁ ମାତ୍ର ୩ ବର୍ଷ ବୟସରେ ଚିଟାଗଙ୍ଗରୁ ଇଂଲାଣ୍ଡ ପଠାଇ ଦିଆଯିବାରୁ ଏବଂ ଅବସର ପୂର୍ବରୁ ଅଳ୍ପ ସମୟ ପାଇଁ ଇଂଲାଣ୍ଡକୁ ବୁଲି ଆସିଥିବାବେଳେ ଥରେ ମାତ୍ର ତାଙ୍କ ବାପାଙ୍କୁ ଦେଖିଥିବାରୁ ଭାରତରେ ତାଙ୍କ ଚାକିରିର ଶେଷାଂଶ ସମ୍ପର୍କରେ ତାଙ୍କର (ଆଞ୍ଜେଲାଙ୍କ) ଜ୍ଞାନ ନିଶ୍ଚୟ ସୀମାବଦ୍ଧ । ମୋ ବାପା (ସେ ମଧ୍ୟ ଭାରତୀୟ ସିଭିଲ ସଂସ୍ଥାରେ ଥିଲେ)ଙ୍କୁ ବିବାହ କରିବା ପରେ ସେ ନିଜେ ୧୮୯୬ରେ ଭାରତ ଫେରିଲେ ଏବଂ ୧୯୦୦ ପର୍ଯ୍ୟନ୍ତ (ମୁଁ ସେତେବେଳେ ବର୍ଷକର) ଇଂଲାଣ୍ଡ ଫେରିନଥିଲେ । ତେଣୁ ତାଙ୍କ ବାପାଙ୍କ ମୃତ୍ୟୁ ପୂର୍ବରୁ ସେ ବିଶେଷ ଭାବେ ତାଙ୍କ ସମ୍ପର୍କରେ ଆସି ପାରିନଥିଲେ ।

ଉଲ୍ଲିଖିତ ଟିପପ୍‌ଣୀରେ ସେ ଚିଟାଗଙ୍ଗର ୧୮ ମାସ ରହଣିକୁ 'ନିରବଚ୍ଛିନ୍ନ ଦୁଃଖ' ଭାବରେ ବର୍ଣ୍ଣନା କରିଛନ୍ତି ଏବଂ ସେ ସ୍ଥାନର ଜଳବାୟୁ ଓ ଲୋକମାନଙ୍କ ସମ୍ପର୍କରେ ତାଙ୍କର ମତାମତ କେତେକ ପରିମାଣରେ ଅପ୍ରୀତିକର । ଓଡ଼ିଶାରେ ୯ ବର୍ଷର ଆନନ୍ଦ ପରେ ଏହି ସ୍ଥାନ ତାଙ୍କୁ ଅତ୍ୟନ୍ତ ବିରକ୍ତିକର ବୋଧ ହୋଇଛି । ଯାହାହେଉ ୧୮୭୯ ସେପ୍‌ଟେମ୍ବରରେ ଦୁଇମାସ ଛୁଟି ନେଇ ସେ କଲିକତା ଓ ମସୁରୀ ଗଲେ ଏବଂ ତାଙ୍କ ସ୍ତ୍ରୀ ଓ ସାନ ପିଲାମାନେ ଇଂଲଣ୍ଡ ଗଲେ । କାମକୁ ଫେରି ପରବର୍ତ୍ତୀ ବର୍ଷେ ଦୁଇବର୍ଷ ସେ କଲିକତା ନିକଟସ୍ଥ ହୁଗୁଳିର କଲେକ୍ଟର ଭାବରେ କଟାଇଲେ ଏବଂ ୧୮୮୧ରେ ବର୍ଦ୍ଧମାନର କମିଶନର ହୋଇ ଖାସ ବଙ୍ଗଳାର ଚିନ୍‌ସୁରାରେ ରହିଲେ । ପରବର୍ତ୍ତୀ ଚାରିବର୍ଷ ଚିନ୍‌ସୁରାରେ ପ୍ରାୟ ଏକାକୀ ରହିଲେ; କାରଣ ମୋ ଆଈଙ୍କୁ ଆଠଟି ସନ୍ତାନବିଶିଷ୍ଟ ବିରାଟ ପରିବାର ଧରି ଅଧିକାଂଶ ସମୟରେ ଇଂଲଣ୍ଡରେ ରହିବାକୁ ହେଲା ।

ତାଙ୍କ ଟିପ୍‌ପଣୀରେ ଏହି ସମୟରେ ଡିଭିଜନରେ ବିଭିନ୍ନ ସ୍ଥାନ ଗସ୍ତ ଓ ସରକାରୀ କାମ, ମଝିରେ ମଝିରେ ବଙ୍ଗଳାର ଛୋଟଲାଟଙ୍କ ଭ୍ରମଣ ଛଡ଼ା ବିଶେଷ ଉଲ୍ଲେଖଯୋଗ୍ୟ ଅନ୍ୟ କିଛି ନାହିଁ । ଥରେ ଭାଇସ୍‌ରାଏ ଲର୍ଡ଼ ରିପନ୍ ଗସ୍ତରେ ଆସିଥିଲେ ଡିସେମ୍ବର ୧୮୮୨ରେ । ତାଙ୍କ ସହ 'ଟ୍ରେନ୍‌ରେ ଜଳଖିଆ ଖାଇଲେ' ବୋଲି ଟିପିଛନ୍ତି । ପରବର୍ଷ ଉତ୍ତର ପଶ୍ଚିମ ପ୍ରଦେଶ

(ପରେ ଯୁକ୍ତପ୍ରଦେଶ ଓ ବର୍ତ୍ତମାନ ଉତ୍ତରପ୍ରଦେଶ)ର ବରେଲିକୁ ଗଲେ ତାଙ୍କ ପୁଅ ଡାଭିଡ଼୍‌ଙ୍କୁ ଦେଖା କରିବାକୁ । ସେ ଭାରତୀୟ ସେନାବାହିନୀରେ ନିଯୁକ୍ତି ପାଇଥିଲେ। ପନ୍ଦର ବର୍ଷ ହେବ ସେ ତାଙ୍କୁ ଦେଖି ନ ଥିଲେ । ତାଙ୍କ ୨ୟ ପୁଅ ଫ୍ରେଡ଼େରିକ ମଧ୍ୟ ପ୍ରାୟ ଏହି ସମୟରେ ଭାରତୀୟ ସିଭିଲ ସଂସ୍ଥାକୁ ଆସିଥିଲେ ଏବଂ ବିଶ୍ୱବିଦ୍ୟାଳୟରେ ଭାରତୀୟ ଭାଷା ଓ ଆଇନ ପ୍ରଭୃତି ଶିକ୍ଷା କରିବା ପାଇଁ ଶିକ୍ଷାନବିସ ସମୟ କଟାଉଥିଲେ । କିନ୍ତୁ ୧୮୮୪ରେ ଫ୍ରେଡ଼େରିକ ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇନପାରି ଭାରତରେ ତାଙ୍କ ପିତାଙ୍କ କର୍ମର ଅନୁସରଣ କରିବାରୁ ବଞ୍ଚିତ ହେବାରୁ ବୀମ୍‌ସ ଅତ୍ୟନ୍ତ ନୈରାଶ୍ୟଗ୍ରସ୍ତ ହୋଇପଡ଼ିଲେ ।

୧୮୮୫ରେ ବର୍ଦ୍ଧମାନର ବୃଦ୍ଧ ମହାରାଜା ମରିଯିବାରୁ ଜନ୍ ବୀମ୍‌ସ ଚିନ୍‌ସୁରାରୁ ବର୍ଦ୍ଧମାନକୁ ତାଙ୍କ ଅଫିସ୍ ଉଠାଇ ନେଲେ। ଜମିଦାରୀ ଓ ପଦବୀର ଉତ୍ତରାଧିକାର ସମ୍ପର୍କରେ ବହୁ ବିବାଦ ସୃଷ୍ଟି ହେବାରୁ ସେସବୁ ସହଜରେ ତୁଲାଇବା ପାଇଁ ବୋଧହୁଏ ସେ ଏପରି କଲେ । କେତେମାସ କାଳ ଏଇଥିରେ ସେ ମନୋନିବେଶ କଲେ । ଏହି ସମୟରେ ସ୍ୱାର୍ଥସଂପୃକ୍ତ କୌଣସି ପକ୍ଷ ତାଙ୍କ ପ୍ରତି ବିଷପ୍ରୟୋଗ ଚେଷ୍ଟା କରିଥିବାର ମଧ୍ୟ ସନ୍ଦେହ କରାଗଲା । ଗ୍ରୀଷ୍ମକାଳରେ ସେ କିଛିଦିନ ବେମାର ପଡ଼ିଲେ; କିନ୍ତୁ ନଭେମ୍ବରରେ ତାଙ୍କ ସ୍ତ୍ରୀ ଇଂଲାଣ୍ଡରୁ ଫେରିଲାବେଳକୁ ସେ ସୁସ୍ଥ ହୋଇ ଯାଇଥିଲେ । ସତର ବର୍ଷ ବୟସ୍କା ତାଙ୍କ ଜ୍ୟେଷ୍ଠାକନ୍ୟା ମାର୍ଗାରେଟ ମଧ୍ୟ ତାଙ୍କ ସ୍ତ୍ରୀଙ୍କ ସହ ଆସିଥିଲେ । ୧୮୮୫-୮୬ର ବଡ଼ଦିନ ଓ ଶୀତଦିନ ଆନନ୍ଦରେ କଟିଲା । ସେ ଟିପିଛନ୍ତି ଯେ ତାଙ୍କର ବହୁଦିନର ବନ୍ଧୁ ଇଲିଅଟ୍ ମଧ୍ୟ କଲିକତାରେ ତାଙ୍କ ସାଙ୍ଗରେ ରହିବାପାଇଁ ଆସିଥିଲେ ଏବଂ ଜାନୁୟାରୀ ଓ ଫେବୃୟାରୀ ତମାମ 'ବଲ୍ ନୃତ୍ୟ' ଓ ଭୋଜିଭାତ ଛଡ଼ା ଆଉ କିଛି ହେଉନଥିଲା ।

ସେ ବର୍ଷଟା ବର୍ଦ୍ଧମାନରେ ଘଟଣାବିହୀନ ଭାବରେ କଟିଗଲା; କିନ୍ତୁ ୧୮୮୭ର ପୂର୍ବଭାଗରେ ଏପରି ଏକ ଘଟଣା ଘଟିଲା, ଯାହାକି ତାଙ୍କର ପରବର୍ତ୍ତୀ ଚାକିରି ଜୀବନ ଉପରେ ଆଞ୍ଚ୍ ଆଣିଦେଲା । କଲିକତାର ଏକ ପବ୍ଲିକ କମିଶନ ଆଗରେ ଭାରତୀୟ ଶିକ୍ଷା ସଂପର୍କୀୟ ଏକ ପ୍ରଶ୍ନ ଉପରେ ତାଙ୍କୁ ସାକ୍ଷ ଦେବାକୁ କୁହାଗଲାବେଳେ ଏହି ଘଟଣା ଘଟିଲା । ଏ ସମ୍ପର୍କରେ ସେ ଯେଉଁ ଦୃଢ଼ ମତ ପୋଷଣ କରୁଥିଲେ ଏବେ ତାକୁ ପ୍ରତିକ୍ରିୟାଶୀଳ ବୋଲି କୁହାଯିବ । ଏ ଘଟଣା ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ତଥ୍ୟ କିଛି ମିଳୁ ନାହିଁ । ତେବେ ଏପରି ଏକ ସାଧାରଣ ଅନୁସନ୍ଧାନ କ୍ଷେତ୍ରରେ ସାକ୍ଷ ଦେବାପାଇଁ ସେ ଅନିଚ୍ଛୁକ ଥିଲେ; କିନ୍ତୁ ବିନା ଦ୍ୱିଧାରେ ତାଙ୍କୁ ମତ ଦେବାପାଇଁ ପ୍ରତିଶ୍ରୁତି ଦିଆଗଲା । ଯାହା ସେ ଠିକ୍ ବୋଲି ଭାବୁଥିଲେ ତାହାକୁ ଭୟଙ୍କର ଅପ୍ରିୟତା ସତ୍ତ୍ୱେ ପ୍ରକାଶ କରିବାରେ ସେ ଅଭ୍ୟସ୍ତ ଥିଲେ । ସେ ଦୃଷ୍ଟିରୁ ଏ କ୍ଷେତ୍ରରେ ତାଙ୍କର ଦ୍ୱିଧାରେ କାରଣ ସହଜରେ ବୁଝିହୁଏ ନାହିଁ; କିନ୍ତୁ ଯାହା ଜଣାଗଲା ଏ ଘଟଣାର ତାଙ୍କର ସତର୍କ ପଦକ୍ଷେପ ଯଥାର୍ଥ ଥିଲା। ଭାରତ ଇତିହାର ଅନୁସନ୍ଧିତ୍ସୁମାନେ ଜାଣିଥିବେ ଯେ ଏହା ହେଉଛି ଇଲବର୍ଟବିଲ ଆନ୍ଦୋଳନର ସମୟ, ଯାହାପାଇଁ ଭାରତ ତମାମ, ବିଶେଷ କରି କଲିକତାରେ ପ୍ରବଳ ଉତ୍ତେଜନା ସୃଷ୍ଟି ହୋଇଥିଲା । ଇଲ୍‌ବର୍ଟ ବିଲର ବ୍ୟବସ୍ଥା ସହ ଶିକ୍ଷା କମିଶନର ଯଦିଓ କିଛି ସମ୍ପର୍କ ନ ଥିଲା; କିନ୍ତୁ ସେ ସମୟରେ କୌଣସି ବିବାଦୀୟ ବିଷୟରେ ସାଧାରଣରେ ସାକ୍ଷଦେବା ପାଇଁ ସେ ଦ୍ୱିଧାକରିବା ସ୍ୱାଭାବିକ । କମିଶନ ଆଗରେ ଯାହା କହିଲେ ତାହା ନିଶ୍ଚୟ ଲିଖିତ ଭାବରେ ଦେଇଥିବେ, କିନ୍ତୁ ଏ ବିଷୟରେ କେତେକ ସଂକ୍ଷିପ୍ତ ଟିପ୍‌ପଣୀ ସେ ରଖି ଯାଇଛନ୍ତି। ୧୮୮୭ ଫେବୃୟାରୀ ୨୨ ତାରିଖର ଲେଖା ପ୍ରଣିଧାନ ଯୋଗ୍ୟ: 'ପବ୍ଲିକ ସର୍ଭିସ କମିଶନ ଆଗରେ ସାକ୍ଷ ଦେଲି ଏବଂ ତଦ୍ୱାରା ଯେ ନିଜ ତଣ୍ଟି କାଟିଲି ତାହା ଜାଣିପାରିଲି ନାହିଁ ।' ମାସକ ପରେ ରାଜସ୍ୱ

ପରିଷଦକୁ ତାଙ୍କର ପଦୋନ୍ନତି ହେଲା । ଲାଟଙ୍କ ତଳକୁ ଏହା ହେଉଛି ସର୍ବୋଚ୍ଚ ଶାସକୀୟ ପଦବୀ । ସେ ଦେଇଥିବା ମତ ଯେ ବଙ୍ଗସରକାରଙ୍କ ଅମନୋନୀତ ହୋଇନଥିଲା ଏହା ତାହାର ସୂଚନା ଦିଏ ।

କିନ୍ତୁ ଅପ୍ରେଲରେ ଜଣେ ଭାରତୀୟଙ୍କ ଦ୍ୱାରା ପରିଚାଳିତ ସମ୍ବାଦପତ୍ରରେ ତାଙ୍କ ଉପରେ ଭୀଷଣ ଆକ୍ରମଣ ହେଲା । ଜୁନ୍ ମାସରେ ଆଉଥରେ ସେ ସେହିପରି ଆକ୍ରାନ୍ତ ହେଲେ ଯାହାର ପରିଣାମ ସମ୍ପର୍କରେ ସୂଚନାତ୍ମକ ଟିପ୍‌ପଣୀ ଦେଇଛନ୍ତି, ଜୁଲାଇ ୧୪ରେ 'ଭାରତ ସରକାରଙ୍କ ଆଦେଶ ଅନୁଯାୟୀ ପରିଷଦରୁ ବାହାରିଗଲି' ଏବଂ ଏହାର ଠିକ୍ ପରେ ଆଉ ଏକ ଉଲ୍ଲେଖ ଅଛି 'ଜୁଲାଇ ୨୦ରେ ପୁନର୍ନିଯୁକ୍ତିର ପ୍ରତିଶ୍ରୁତିପତ୍ର ।' ଏହି ଘଟଣା ସମ୍ପର୍କରେ ଆଉ କିଛି ପ୍ରମାଣ ସେ ରଖି ନାହାନ୍ତି, ଏଣୁ ଏ ବିଷୟରେ କେବଳ ଅନୁମାନ କରାଯାଇପାରେ ଯେ କମିଶନ ଆଗରେ ତାଙ୍କର ସାକ୍ଷ ସେତେବେଳେ ସ୍ଥାନୀୟ ରାଜନୀତିଜ୍ଞମାନଙ୍କୁ ଅସନ୍ତୁଷ୍ଟ କରିଥିଲା ଏବଂ ସେତେବେଳର ରାଜନୀତିକ ଆନ୍ଦୋଳନକୁ ଶାନ୍ତ କରିବା ପାଇଁ ଭାରତ ସରକାର ତାଙ୍କୁ ନିମ୍ନ ପାହ୍ୟାକୁ ଖସାଇ ଆଣିଥିଲେ—ଏଠାରେ ଉଲ୍ଲେଖଯୋଗ୍ୟ ଯେ ବଙ୍ଗସରକାର ତାଙ୍କର ପୁନର୍ନିଯୁକ୍ତିର ପ୍ରତିଶ୍ରୁତି ଦେଇଥିଲେ ।

୧୮୮୭ ଅଗଷ୍ଟରେ ତାଙ୍କୁ ପୁଣିଥରେ ଖସାଇ ଭାଗଲପୁରର କମିଶନର କରାଗଲା । ସେଥିରେ ଦୁଇବର୍ଷ ରହି ଅପ୍ରେଲ ୧୮୮୯ ରେ କଲିକତାକୁ ଫେରିଲେ ଏବଂ ପୁଣି କେତେବର୍ଷ ରାଜସ୍ୱ ପରିଷଦରେ କାମ କଲେ । ତାହାପରେ ସେ ପ୍ରଧାନତଃ କମିଶନର ରୂପେ କଲିକତାରେ ରହିଲେ; କିନ୍ତୁ ମଝିରେ ମଝିରେ ରାଜସ୍ୱ ସମ୍ପର୍କୀୟ ସରକାରୀ ବିଲ ପ୍ରସ୍ତୁତ କରିବାରେ ଏବଂ ପୋଲିସ କମିଶନର ପ୍ରେସିଡେଣ୍ଟ ରୂପେ କାର୍ଯ୍ୟ କରୁଥିଲେ । ୧୮୯୧ର ଗ୍ରୀଷ୍ମକାଳରେ ସେ ଛ'ମାସ ପାଇଁ ଇଂଲାଣ୍ଡ ଫେରିଥିଲେ—ତାହା ତାଙ୍କ ୩୫ ବର୍ଷ ଚାକିରିକାଳରେ ମାତ୍ର ୨ୟ ଥର ପାଇଁ, କିନ୍ତୁ ନଭେମ୍ବରରେ କଲିକତାକୁ ଚାଲିଆସିଥିଲେ । ଶେଷ ୧୮ ମାସ ପ୍ରେସିଡେନ୍‌ସି ଡିଭିଜନର କମିଶନର ରୂପେ କଟାଇ ମାର୍ଚ୍ଚ ୧୮୯୩ରେ ଅବସର ଗ୍ରହଣ କଲେ । ଏହିପରି ତାଙ୍କର ଚାକିରିକାଳ ସରିଲା । ଏହାର ଶେଷ କେତେବର୍ଷ ଶିକ୍ଷା କମିଶନ ବ୍ୟାପାର ନେଇ ତିକ୍ତ ହୋଇ ଉଠିଥିଲା । ସ୍ତ୍ରୀ ଓ ପରିବାରରୁ ବିଚ୍ଛେଦ ଓ ନିଃସଙ୍ଗତା ଯୋଗୁଁ ତାଙ୍କ ଦୁଃଖ ଆହୁରି ଅଧିକ ହୋଇ ପଡ଼ିଥିଲା । ଭାରତରେ ଚାକିରି କରୁଥିବା ପ୍ରତ୍ୟେକଙ୍କୁ କେବେ ନା କେବେ ଏହିପରି ସହିବାକୁ ପଡ଼େ । ଏପରି ଏକ ଜୀବନୀମୂଳକ ବିବରଣୀରେ ସମାଲୋଚନା ଅଙ୍ଗୀଭୂତ ନୁହେଁ; କିନ୍ତୁ ଏ ବର୍ଣ୍ଣନା ପଢୁଥିବା ପ୍ରତ୍ୟେକେ ନିଶ୍ଚୟ ଜାଣିଥିବେ ଯେ ଜନ୍‌ବୀମ୍‌ସ ବ୍ୟକ୍ତିଗତ ମତାମତରେ ଅତ୍ୟନ୍ତ ଦୃଢ଼ ରହୁଥିଲେ ଏବଂ ଯେଉଁ ଉଚ୍ଚପଦସ୍ଥ କର୍ମଚାରୀଙ୍କ ମତକୁ ସେ ଗ୍ରହଣ କରୁନଥିଲେ, ସେମାନଙ୍କୁ ଆନନ୍ଦରେ ସ୍ୱୀକାର କରିଯିବାର ମନୋଭାବ ତାଙ୍କର ନ ଥିଲା; ଯେଉଁ ମନୋଭାବ ଆଜିକାଲିପରି ସେତେବେଳେ ମଧ ଆତ୍ମୋନ୍ନତି ପାଇଁ ଅତି ଆବଶ୍ୟକ ଥିଲା । ତାଙ୍କ ଲେଖାର ପ୍ରଥମ ଅଂଶରେ ତାଙ୍କ ଜେଜେଙ୍କୁ 'ଆଇନଜୀବୀ ବଦ୍‌ରାଗୀ ବୀମ୍‌ସ' ଭାବରେ ଯେପରି ବର୍ଣ୍ଣନା କରିଛନ୍ତି, ତାଙ୍କ ନିଜ ମନ ସେହିପରି ଉଗ୍ର ଓ ତୁଣ୍ଡ ପ୍ରଖର ଥିଲା । ତେଣୁ ଯେଉଁ ଉଚ୍ଚପଦସ୍ଥ ଅଫିସରଗଣ ତାଙ୍କର ଅତ୍ୟଧିକ ସ୍ପଷ୍ଟବାଦିତା ଓ ଅସମୟ ଆକ୍ଷେପୋକ୍ତିକୁ ସହ୍ୟ କରିପାରନ୍ତି ନାହିଁ, ସେଇମାନଙ୍କର ସେ ଶତ୍ରୁ ହୋଇଉଠିଲେ । ତାଙ୍କ କର୍ମର ବିଭିନ୍ନ ସ୍ତରରେ ସାର ରିଚାର୍ଡ଼ ଟେମ୍ପଲଙ୍କ ସହ ତାଙ୍କର ସଂଘର୍ଷ ଏହାର ଅନ୍ୟ ଏକ ଉଦାହରଣ । ସେ ଏହାକୁ ଯେପରି ଅକପଟ ଭାବରେ ବର୍ଣ୍ଣନା କରିଛନ୍ତି, ସେଥିରୁ ବୁଝାଯାଏ ଯେ ଲାଟମାନେ ଯେତେ ଆତ୍ମାଭିମାନୀ ଓ ବିରକ୍ତିକର ସ୍ୱଭାବର ହୁଅନ୍ତୁ ନା କାହିଁକି ସେମାନଙ୍କ ବିରୋଧରେ ବିଦ୍ରୂପୋକ୍ତିର ପ୍ରୟୋଗ

କରିବାର ବାସ୍ତବ ଫଳାଫଳ ସମ୍ପର୍କରେ ସେ ସଂପୂର୍ଣ୍ଣ ଅବହିତ ନ ଥିଲେ । କିନ୍ତୁ ଫିଲିପ୍ ମ୍ୟାନସନ ତାଙ୍କର 'ଦି ରୁଲରସ୍ ଅଫ୍ ଇଣ୍ଡିଆ'ରେ ଯେପରି ମନ୍ତବ୍ୟ ଦେଇଛନ୍ତି ତଦନୁଯାୟୀ ଜନ୍ ବୀମସ୍ ଲାଟ ଗୋଷ୍ଠୀଟାକୁ ବାସ୍ତବରେ ଖାତିର କରୁନଥିଲେ । ସମ୍ଭବତଃ ୧୮୮୭ର ଦୁଃଖଦାୟକ ଘଟଣା ଓ ତା'ର ପ୍ରତିକ୍ରିୟା ଫଳରେ ସେ ତାଙ୍କ ବର୍ଣ୍ଣନା ଶେଷ କରିବାରେ ଆଗ୍ରହୀ ହୋଇନଥିବେ ଏବଂ ଯଦିବା ସେ ବଞ୍ଚିଥାଆନ୍ତେ ତଥାପି ଯେଉଁ ଘଟଣାଗୁଡ଼ିକ ତାଙ୍କର ଅନ୍ୟଥା ଆନନ୍ଦଦାୟକ ଦୀର୍ଘ ଚାକିରି କାଳର ଶେଷ କେତେ ବର୍ଷରେ ଅନ୍ଧକାର ଘୋଟାଇଲା, ସେଗୁଡ଼ିକୁ ପୁଣି ମନେ ପକାଇ ଲିପିବଦ୍ଧ କରିବା ନିଶ୍ଚୟ ତାଙ୍କ ପକ୍ଷରେ ବିରକ୍ତିକର ହୋଇଥାନ୍ତା ।

ଜନ ବୀମ୍‌ସଙ୍କ ବର୍ଣ୍ଣନା ମଧ୍ୟରେ ଗୋଟିଏ ବିଷୟ ପୂର୍ଣ୍ଣ ପ୍ରକାଶ ପାଇ ନାହିଁ । ତାହା ହେଉଛି ତାଙ୍କ ସମୟରେ ଭାଷାତାତ୍ତ୍ୱିକ ଜଗତରେ ସେ ବେଶ୍ ପ୍ରସିଦ୍ଧି ଅର୍ଜନ କରିଥିଲେ । ଭାଷା ସମ୍ପର୍କରେ ତାଙ୍କର ଆଗ୍ରହ, ପ୍ରଥମ ଚାକିରି କାଳରେ ପାର୍ଶୀଭାଷାରେ ଦୁଇଟି ସୁନାପଦକ ପ୍ରାପ୍ତି ଓ ଭାରତରେ ଥିବା ସମୟରେ 'ଆଧୁନିକ ଭାରତୀୟ ଭାଷାମାନଙ୍କର ତୁଳନା' ପୁସ୍ତକର ପ୍ରକାଶ ବିଷୟ ସେ ବାରମ୍ବାର ଉଲ୍ଲେଖ କରିଛନ୍ତି । ୧୮୭୨ରୁ ୧୮୭୯ ମଧ୍ୟରେ ତିନିଖଣ୍ଡରେ ଏହା ପ୍ରକାଶିତ ହୋଇଥିଲା । ଏହା ପୂର୍ବରୁ ୧୮୬୭ରେ ଆଉଟ ଲାଇନ ଅଫ୍ ଇଣ୍ଡିଆନ ଫିଲଲଜି (ଭାରତୀୟ ଭାଷାତତ୍ତ୍ୱ ପରିଚୟ) ବହିଟି ପ୍ରକାଶିତ ହୋଇଥିଲା । 'ସେତେବେଳେ ଭାରତରେ ପ୍ରଚଳିତ ସମସ୍ତ କଥିତଭାଷାର ବିଜ୍ଞାନଭିତ୍ତିକ ସଂପୂର୍ଣ୍ଣ ବିଶ୍ଳେଷଣ ପାଇଁ ପ୍ରଥମ ପ୍ରଚେଷ୍ଟା' ରୂପେ ଏ ବହିଟି ଗୃହୀତ ହୋଇଥିଲା । ଏ ବହି ବର୍ତ୍ତମାନ ଅନେକ ଅଂଶରେ ପୁରୁଣାକାଳିଆ ରୂପେ ବିବେଚିତ ହେଉଥିଲେ ମଧ୍ୟ ନିକଟରେ ଲକ୍ଷ୍ନୌର ଉର୍ଦ୍ଦୁରେ ଅନୂଦିତ ହୋଇଛି । ସେ ଉଭୟ 'ରୟଲ ଏସିଆଟିକ୍ ସୋସାଇଟି ଅଫ୍ ଗ୍ରେଟବ୍ରିଟେନ' ଏବଂ 'ଏସିଆଟିକ ସୋସାଇଟି ଅଫ୍ ବେଙ୍ଗଲ'ର ସଭ୍ୟ ଥିଲେ । ଏହି ଉଭୟ ବିଜ୍ଞ ଅନୁଷ୍ଠାନର ପତ୍ରିକା ଏବଂ ଇଣ୍ଡିଆନ ଆଣ୍ଟିକ୍ୱାରୀକୁ ସେ ଅନେକ ପ୍ରବନ୍ଧ ଦେଇଥିଲେ । ୧୮୯୧ରେ ତାଙ୍କ ପ୍ରକାଶିତ 'ବଙ୍ଗଳାଭାଷାର ବ୍ୟାକରଣ' ସେହି ପ୍ରଦେଶରେ ଶିକ୍ଷାନବିସ ରୂପେ ଯୋଗ ଦେଉଥିବା ଆଇ.ସି.ଏସ୍.ମାନଙ୍କର ପାଠ୍ୟପୁସ୍ତକ ରୂପେ ୧୯୨୨ ପର୍ଯ୍ୟନ୍ତ ରହିଥିଲା । ତାଙ୍କର ଜଣେ ସହକର୍ମୀ ଓ ସମସାମୟିକ 'ଏ ଲିଙ୍ଗ ଉଇଷ୍ଟିକ ସର୍ଭେ ଅଫ୍ ଇଣ୍ଡିଆ'ର ଲେଖକ ସାର୍ ଜର୍ଜ ଗ୍ରିଅରସନ ତାଙ୍କର 'ତୁଳନାତ୍ମକ ବ୍ୟାକରଣ' ସମ୍ବନ୍ଧରେ ଲେଖିଛନ୍ତି—

"ଏହି ବ୍ୟାକରଣରେ ଯେଉଁ ଜ୍ଞାନ ପ୍ରଦର୍ଶିତ ହୋଇଛି କିମ୍ବା ଏହି ଜ୍ଞାନର ପ୍ରୟୋଗଦ୍ୱାରା ଫଳାଫଳର ଯେଉଁ ବିଶୁଦ୍ଧତା ମିଳିଛି, କେଉଁଟି ଅଧିକ ପ୍ରଶଂସାଯୋଗ୍ୟ ତାହା ନିର୍ଣ୍ଣୟ କରିବା କଠିନ । ତାଙ୍କର ଲେଖନୀ ଥିଲା ଶାଣିତ ଏବଂ ଆବଶ୍ୟକ ବୋଲି ମନେକଲେ, ସେ ଏହାର ସଫଳ ଉପଯୋଗ କରୁଥିଲେ; କିନ୍ତୁ ନିଜର ପ୍ରଧାନ ଗ୍ରନ୍ଥମାନଙ୍କରେ ଅନ୍ୟାନ୍ୟ ଗବେଷକମାନଙ୍କର ଯେଉଁ ମତାମତ ସେ ଉଦ୍ଧାର କରିଛନ୍ତି, ସେଥିରୁ ଜଣାଯାଏ ଯେ ସରସ୍ୱତୀଙ୍କ ମହିମାର ଦୁଇଦିଗର ସେ ଅଧିକାରୀ ଥିଲେ । ନିଜ ଜ୍ଞାନର ବିରାଟ ଭଣ୍ଡାର ସମ୍ପର୍କରେ ଯଥାଥ ଆସ୍ଥା ଏବଂ ସେଇ ଧରଣର ଗବେଷଣାରେ ନିଯୁକ୍ତ ଥିବା ଅନ୍ୟମାନଙ୍କ ଆବିଷ୍କାର ପ୍ରତି ଅକୁଣ୍ଠ ସ୍ୱୀକୃତି । ପ୍ରଥମ ପ୍ରାମାଣିକ ମତାଧିକାରୀ ରୂପେ ସ୍ୱୀକୃତ ହେବାରେ ତାଙ୍କର ଦାବି ସୁପ୍ରତିଷ୍ଠିତ ଥିଲା ।"

ପ୍ରାଚ୍ୟ ଭାଷା, ବିଶେଷକରି ପାର୍ଶୀ ଓ ସଂସ୍କୃତରେ ଆଗ୍ରହ ସାଙ୍ଗକୁ ଜର୍ମାନ୍, ଫରାସୀ, ଇଟାଲୀୟ ଓ ଅନ୍ୟ କେତେକ ୟୁରୋପୀୟ ଭାଷାରେ ମଧ୍ୟ ତାଙ୍କର କାମଚଳା ଜ୍ଞାନ ଥିଲା । ଭାରତରେ ଚାକିରି କରିଥିବା ପ୍ରତ୍ୟେକଙ୍କୁ ଖୁବ୍ ଆଶ୍ଚର୍ଯ୍ୟ ବୋଧ ହେବ ଯେ କର୍ମକ୍ଷେତ୍ରର ଦୀର୍ଘ

ଓ ଗୁରୁତର ଜଞ୍ଜାଳ ଭିତରେ ସେ ଭାଷା ଗବେଷଣରେ ଏତେ ଗଭୀରତା ମଧ୍ୟକୁ କିପରି ପ୍ରବେଶ କରିପାରୁଥିଲେ ।

ମୋ ବାପା ଭାରତରେ ୩୦ ବର୍ଷ ଚାକିରି ପରେ ୧୯୧୬ ରେ ଅବସର ନେଲେ । ଅଧିକାଂଶ ସମୟ ସେ ଯୁକ୍ତପ୍ରଦେଶରେ କଟାଇଥିଲେ । ଛ'ବର୍ଷର ବ୍ୟବଧାନ ପରେ ମୁଁ ସେହି ପ୍ରଦେଶରେ ସେଇ କାମରେ ଯୋଗଦେଲି । ଏହପରି ସେହି ଚାକିରିରେ ପାରିବାରିକ ସମ୍ପର୍କ ୯୦ ବର୍ଷ ପର୍ଯ୍ୟନ୍ତ ରହିଲା। ଏହା ଖୁବ୍ ବଡ଼ କିମ୍ବା ଅପୂର୍ବ କଥା କିଛି ନୁହେଁ, କିନ୍ତୁ ଦୀର୍ଘସମୟବ୍ୟାପୀ ନିଶ୍ଚୟ । ଭାରତରୁ ଫେରିବା ପରେ ଯାଇଁ ମୁଁ ମୋ ମା'ଙ୍କ ନିକଟରେ ଥିବା ପୁରୁଣା ପାରିବାରିକ କାଗଜପତ୍ର ମଧ୍ୟରେ ଅଜାଙ୍କ ନିଜ ଜୀବନ କାହାଣୀଟି ପାଇଲି । କେତେ ବର୍ଷ ପରେ ଜଣେ ପୁରାତନ ବନ୍ଧୁ ଓ ଭାରତରେ ସହକର୍ମୀ ଫିଲିପ୍ ମ୍ୟାନସନ ଭାରତୀୟ ସିଭିଲ ସଂସ୍ଥାର ଇତିହାସ ସମ୍ପର୍କରେ ବହି ଲେଖୁଥିବାରୁ ଏଇ ଧରଣର ଦଲିଲ ପତ୍ର ସବୁ ଧାର ମାଗିଲେ । ଅତି ଆନନ୍ଦରେ ମୁଁ ତାଙ୍କୁ ଏ ପାଣ୍ଡୁଲିପିଟି ଦେଲି । ଏହାର ସେ ଯଥେଷ୍ଟ ସାହାଯ୍ୟ ନେଇଛନ୍ତି । ଦୁଇଖଣ୍ଡରେ ପ୍ରକାଶିତ ତାଙ୍କର 'ଦି ମେନ ହୁ ରୁଲଡ୍ ଇଣ୍ଡିଆ' ବହିରେ ଏଥିରୁ ଉଦ୍ଧୃତିମାନ ସଂଯୋଜିତ ହୋଇଛି । ଏଇ ଅବସରରେ ଆନନ୍ଦ ସହ ମୁଁ ତାଙ୍କ ପ୍ରତି କୃତଜ୍ଞତା ଜଣାଉଛି, କାରଣ ତାଙ୍କର ଉତ୍ସାହ ଓ ଉପଦେଶ ବିନା ବର୍ତ୍ତମାନ ଏ ପୁସ୍ତକ ପ୍ରକାଶ ପାଇପାରି ନ ଥାନ୍ତା ।

ଶେଷରେ କଲିକତାର ଏସିଆଟିକ ସୋସାଇଟି ଅଫ୍ ବେଙ୍ଗଲର ସମ୍ପାଦକ ଡଃ ମହାଦେବ ପ୍ରସାଦ ସାହାଙ୍କୁ ମଧ୍ୟ ମୋର ଧନ୍ୟବାଦ । ସେ ପୂର୍ବରୁ ମୋର ଅପରିଚିତ ଥିଲେ ମଧ୍ୟ ଖୋଜାଖୋଜି କରିବାରେ ବହୁକଷ୍ଟ ସ୍ୱୀକାର କରି ମୋ ଅଜା ତାଙ୍କ ସମୟରେ ସେହି ସୋସାଇଟିକୁ ଦେଇଥିବା ଭାଷାତତ୍ତ୍ୱ ଓ ପୁରାତତ୍ତ୍ୱ ସମ୍ପର୍କୀୟ ଅନେକ ଲେଖା (ବହୁସଂଖ୍ୟକ ଯାହା ଏଠାରେ ପ୍ରକାଶ କରି ହେବ ନାହିଁ)ର ବିବରଣୀ ପଠାଇଛନ୍ତି ।

ଖ୍ରୀଷ୍ଟୋଫର କୁକ୍
ଗ୍ରେଟ ମିସେନ୍ ଡେନ: ୧୯୬୦





## ଜନ୍ ବୀମ୍ସ୍

(୧୮୩୭ ରୁ ୧୯୦୨)

ଜନ୍ ବୀମ୍ସ୍ ଇଂଲଣ୍ଡର ରାଣୀ ଭିକ୍ଟୋରିଆଙ୍କ ଅଭିଷେକ ୧୮୩୭ ମସିହା ଜୁନ୍ ମାସ ୨୧ ତାରିଖ ଦିନ ଜନ୍ମ ଗ୍ରହଣ କରିଥିଲେ ଓ ରାଣୀ ଭିକ୍ଟୋରିଆଙ୍କ ଶାସନର ମାତ୍ର ବର୍ଷକ ପରେ ଦେହ ତ୍ୟାଗ କରିଥିଲେ । ସେ ଓଡ଼ିଶାରେ ୯ ବର୍ଷ କାଳ ପ୍ରଶାସନସେବାରେ ରହି ଓଡ଼ିଶାର ଶିକ୍ଷା ବିସ୍ତାର , ଦୁର୍ଭିକ୍ଷ ନିରାକରଣ , ବାଣିଜ୍ୟ ବ୍ୟବସାୟର ପ୍ରସାର , ପ୍ରତ୍ନତାତ୍ତ୍ୱିକ ଅନୁସନ୍ଧାନ , ପୋତାଶୟର ବିକାଶ , ଜନତାଙ୍କୁ ନ୍ୟାୟ ପ୍ରଦାନ ଓ ଓଡ଼ିଆ ଭାଷାସାହିତ୍ୟର ପୃଷ୍ଠପୋଷକତା କ୍ଷେତ୍ରରେ ବିଶେଷ ଉନ୍ନତି ସାଧନରେ ବ୍ରତୀ ଥିଲେ। ଓଡ଼ିଶାକୁ ଓ ଓଡ଼ିଆ ଭାଷାକୁ ଭଲପାଉଥିବା ଜନ୍ ବୀମ୍ସ୍ ଥିଲେ ଜଣେ ଶ୍ରେଷ୍ଠ ବିଦେଶୀ ପ୍ରଶାସକ । ସେ ୧୮୬୯-୭୦ ପର୍ଯ୍ୟନ୍ତ ବାଲେଶ୍ବରରେ , ୧୮୭୩ ରୁ ୭୭ ପର୍ଯ୍ୟନ୍ତ କଟକରେ ଅବସ୍ଥାପିତ ହୋଇ ସାରା ଓଡ଼ିଶାର ବିକାଶ ଦିଗରେ ଅଭୂତପୂର୍ବ କାର୍ଯ୍ୟ କରିଥିଲେ । କଟକ ପ୍ରତି ଏହାଙ୍କର ଆକର୍ଷଣ ଥିଲା ସର୍ବାଧିକ।